ଶୁଦ୍ରମୁନି ୰ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ରମୁନି ଶାରଳା ଦାସଙ୍କ ବିରଚିତ

# ମହାଭାରତ

( କର୍ଣ୍ଣ ଠାରୁ ସ୍ୱର୍ଗାରୋହଣ ଦଶପର୍ବ )

ନୂତନ ମୁଦ୍ରଣ-୨୦୨୦




ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

## ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ-୨

ଫୋନ୍ : ୦୬୭୧-୨୫୦୮୨୯୬

Website : www.dharmagranthastore.com

ମୂଲ୍ୟ : ଏକଶହ ଚାଳିଶି ଟଙ୍କା ମାତ୍ର

## ମହାଭାରତ - କର୍ଣ୍ଣପର୍ବର

# ସୂଚୀ ପତ୍ର

**ବିଷୟ** **ପୃଷ୍ଠାଙ୍କ**



— କର୍ଣ୍ଣପର୍ବର ସୂଚୀପତ୍ର ସମାପ୍ତ —

**ସମାପ୍ତ**

# ମହାଭାରତ

## କର୍ଣ୍ଣପର୍ବ

—0—

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।

ତଂ ବେଦଶାସ୍ତ୍ରପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।

କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।

ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃନ୍ତଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଟାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।

ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣୋଧାରୋ ହରି ।

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃପ୍ରମୁଚ୍ୟତେ ।

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣୀ ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ।

## ଶାରଳା ଦେବୀଙ୍କ ବନ୍ଦନା

ଜୟ ଦୁର୍ଗତି ତାରିଣୀ ମାତା ନାରାୟଣୀ
ଜୟ ମାତା ସରସ୍ୱତୀ ବିପଦ ତାରିଣୀ ।
ଜୟ ଜୟ ଜନନୀ ଗୋ ଭକତ ବତ୍ସଳା
ଜୟ ଜୟ ଜନନୀ ଗୋ ତେଜ ଅନର୍ଗଳା ।
ଜୟ ଜୟ ଜନନୀ ଗୋ ସୁମନ୍ତ୍ର ଗାୟିତ୍ରୀ
ଜୟ ମାତ ବରଦେ ଗୋ ଭକ୍ତ କୃପାଦାତ୍ରୀ ।
ଜୟ ଜୟ ମାତା ତୁ ଗୋ ପ୍ରଳୟ ତାରିଣୀ
ଶାରଳାଦାସ ତୋ ପାଦେ ସେବକ ଯେ ଭଣି ।
ଜନମୁ ମୂରୁଖ ମୁହିଁ ନ ପଢ଼ିଲି କିଛି
ଅନୁଗ୍ରହ କର ମୋତେ ଅଭୟା କାମାକ୍ଷୀ ।

-୦-

## ଭରଦ୍ୱାଜଙ୍କର ଦ୍ରୋଣଙ୍କୁ ଅଭିଶାପ ପ୍ରଦାନ

ଶୁଣ ବୈବସ୍ୱତମନୁ ବଦନ୍ତି ଅଗସ୍ତି
ଶ୍ରୀମହାଭାରତ ଦ୍ରୋଣପର୍ବ ସମାପତି ।
ଭୀଷ୍ମ ଦଶଦିନ ପୁଣ ଦ୍ରୋଣ ପାଞ୍ଚଦିନ
ପଞ୍ଚଦଶ ଦିନରେ କର୍ଣ୍ଣ କଲେ ରଣ ।
ସଞ୍ଜୟ ବୋଇଲେ ରାଜା ଶୁଣ ଧୃତରାଷ୍ଟ୍ର
ଲଭିଲୁ ତୁ ଶତପୁତ୍ର ପାଇ ବହୁ କଷ୍ଟ ।
ଏହି ପୁତ୍ରମାନେ ଉପୁଜିଲେ ଯେତେବେଳେ
ବିଦୁର ପୁତ୍ରଙ୍କୁ ତୋର ଦେଲା ସେଇ କୋଳେ ।
ଆବର ବୋଇଲା ରାଜା ଶୁଣ ମହାମତି
ଜ୍ୟେଷ୍ଠପୁତ୍ର ହୋଇବ ଏ ତୋର ଚକ୍ରବର୍ତ୍ତୀ ।

ହସ୍ତ ପାଦେ ପଦ୍ମ ଚିହ୍ନ ଅଛଇ ଏହାର
ଲକ୍ଷ୍ମୀ ଏହାର କନ୍ଧରେ ଥିବେ ନିରନ୍ତର ।
ପନ୍ନଗ ଅବତାର ଏ ନାରାୟଣ ମୂର୍ତ୍ତି
ମାନଗୋବିନ୍ଦ ନାମରେ ହେବ ବହୁ ଖ୍ୟାତି ।
କର୍କଶ ମଧୁପିଙ୍ଗଳ ହେବ ମହାରାଗୀ
ଅନ୍ୟ ଉନଶତ ରଖ ଯାକୁ ତେଜ ବେଗି ।
ତା ନ କଲେ ଛାଡ଼ ତୁମ୍ଭେ ସବୁ ପ୍ରତିଆଶ
ଏହାର ଯୋଗୁ ସକଳ ହୋଇବ ବିନାଶ ।
ସେ କାଳେ ବିଦୂର ବୋଲ ନ କରିଲ ଶୁଣି
ଆଉ କି ମଙ୍ଗଳ ହେବ ବିଚାରୁଛ ପୁଣି ।
ଭୀଷ୍ମ ଶରଶଯ୍ୟା କଲେ ଦ୍ରୋଣ ଗଲେ ନାଶ
ମହାବୀର ଜୟଦ୍ରଥ ମଲେ ଅଳମ୍ବୁଷ ।
ଶୁଣି ଧୃତରାଷ୍ଟ୍ର ଏହା ପ୍ରକାଶ କରିଲେ
ମୋ କର୍ମକୁ ଘେନି ପୁତ୍ରେ ଅଯଶ ଲଭିଲେ ।
ଭୀଷ୍ମ ଦ୍ରୋଣ ପ୍ରାୟ ବୀରପ୍ରାଣେ ହେଲେ ହତ
ଯାହାକୁ ମୁଁ ଅର୍ଘ୍ୟ ଦେଲି ସେହି ହେଲା ଗତ ।
ସଞ୍ଜୟ ବୋଇଲା ଶୁଣ ରାଜା ଧୃତରାଷ୍ଟ୍ର
ତୁ ଯେ ପଚାରିଲୁ ସେନାପତିଙ୍କର କଷ୍ଟ ।
ଭୀଷ୍ମ ଶରଶଯ୍ୟା କଲେ ପାଣ୍ଡବଙ୍କ ହିତେ
ଦ୍ରୋଣ ଶିର ଛିନ୍ନ ହେଲା ଧୃଷ୍ଟଦ୍ୟୁମନ ହାତେ ।
ଧୃତରାଷ୍ଟ୍ର ପୁଚ୍ଛାକଲେ ଶୁଣ ହେ ସଞ୍ଜୟ
ଦ୍ରୋଣ କଥା ଶୁଣିବାକୁ ଲାଗିଲା ସନ୍ଦେହ ।
ସଞ୍ଜୟ କହିଲା ଆହେ ଶୁଣ ଧୃତରାଷ୍ଟ୍ର
ପୂର୍ବ ଶାପ ଥିବାରୁ ସେ ହେଲେ ମୁଣ୍ଡ କାଟ ।
ରାଜା ବୋଇଲେ କାହାର ଅଟେ ଏଡ଼େ ଶାପ
ଜାଣିଲା ଯେବେ ନ କଲାକିମ୍ପା ସେହୁ ତପ ।
ଆହେ ଧୃତରାଷ୍ଟ୍ର ଭରଦ୍ୱାଜ ଯେ ମହର୍ଷି
ଦ୍ରୋଣ ଗୁରୁ ଅଟନ୍ତି ଯେ ତାହାଙ୍କର ଶିଷି ।
ଯେତେ ଯନ୍ତ୍ର ମନ୍ତ୍ର ଆଦି ବ୍ରହ୍ମ କର୍ମମାନ
ପୁତ୍ରଙ୍କୁ ସକଳ କଥା କରିଲେ ପ୍ରଦାନ ।
ମନ୍ଦର ଋଷିଙ୍କ ଭାର୍ଯ୍ୟା ନାମ ତା ହରିତା
ଏହାର ନନ୍ଦିନୀ ନାମ ହେଲା ସୁରଜିତା ।
ଭରଦ୍ୱାଜ ଋଷି ତାଙ୍କୁ ବିବାହ ହୋଇଲେ
ସମୟରେ ଗୃହବାସ ହରଷେ ସେ କଲେ ।
ସୁରଜିତା ଦ୍ରୋଣଙ୍କର ଜନନୀ ଅଟଇ
ଦୈବବଳେ ସେହି ଗଲେ ପରଲୋକ ହୋଇ ।
କପିଳ ରାଜାଙ୍କ କନ୍ୟା ନାମ ଅନ୍ତାଦେଇ
ତାକୁ ଭରଦ୍ୱାଜ ପୁଣି ବିଭାହେଲେ ଯାଇଁ ।
ସେ ଅନନ୍ତ କନ୍ୟା କାଳେ ହେଲା ପୁଷ୍ପବତୀ
ସେ କାଳେ ତୀର୍ଥଭ୍ରମଣେ ଯାଇଥିଲେ ଯତି ।

ଗଙ୍ଗା ଗୟା ଗୋଦାବରୀ ପ୍ରୟାଗ କେଦାରେ
ଅଠରମାସ ଭ୍ରମଣ କରିଲେ କ୍ରମରେ ।
ସେ ଅନନ୍ତା ଦ୍ରୋଣଙ୍କର ବୈମାତୃଜନନୀ
ଗୃହ ମଧ୍ୟରେ ଏକତ୍ରେ ରହିଥିଲେ ବେନି ।
ସେ କପିଳ ରାଜକନ୍ୟା କାମାତୁର ହୋଇ
ପୁତ୍ରରୂପ ଦେଖି ଆଉ ନ ପାରିଲା ସହି ।
ପୁତ୍ରର ଦେଖିଲା ଯହୁଁ ସେ ଯୁବା ବୟସ
କାମସଂହାରି ନ ପାରି କରେ ପରିହାସ ।
ମାତା ଶୟନ ସ୍ଥାନକୁ ରାତ୍ରେ ଦ୍ରୋଣ ଗଲେ
କାମବତୀ ନାରୀ ପୁତ୍ର ସଙ୍ଗରେ ମାତିଲେ ।
ପୁତ୍ରସହ ସେ କନ୍ୟା ହ୍ୱନ୍ତେ ରଙ୍ଗରସ
ଏମନ୍ତେ ସେ ରାଜକନ୍ୟା ହେଲା ଗର୍ଭବାସ ।
ତହୁଁ ସାତମାସ ଆସି ହୋଇଲା ଅତୀତ
କ୍ରମେ କ୍ରମେ ଗର୍ଭ ତାର ଦିଶିଲା ବୃହତ ।
ଏହିକାଳେ ଭରଦ୍ୱାଜ ପଞ୍ଚତୀର୍ଥ ସାରି
ନିଜ କୁଟୀରେ ପ୍ରବେଶ ହେଲେ ଆସି କରି ।
ଦେଖିଲେ ହୋଇଛି ସେ କନ୍ୟା ଗର୍ଭ ବାସ
ତାକୁ ଉପେକ୍ଷି ନ ଗଲେ ଆଉ ତାର ପାଶ
ଦ୍ରୋଣକୁ ଡକାଇ ପୁଣି ପୁଛିଲେ କାରଣ
କହରେ ପୁତ୍ର ଏଥିର ସର୍ବ ବିବରଣ ।
ଅନେକ ରୂପେ ପୁଛିଲେ ତାଙ୍କୁ ମହାମୁନି
ସମସ୍ୟା ନ ଦେଇ କିଛି ହୋଇଲେକ ତୁନି ।
ଦିନ ଦୁଇ ଚାରି ଯହୁଁ ହୋଇଲା ଅତୀତ
ଅନ୍ୟ ଶିଷ୍ୟେ ସେ କଥାକୁ କଲେ ପ୍ରକାଶିତ ।
ଶୁଣି ମହାମୁନି ମନେ ହୋଇ ଅତି ରୋଷ
ଦ୍ରୋଣକୁ ଡକାଇ ପୁଣି ଅଣାଇଲେ ପାଶ ।
ବୋଇଲେକ ପାପାଶୟ ମୋ ପୁତ୍ର ହୋଇଣ
ଅନନ୍ତା ମାତାଙ୍କୁ ତୁହି କରିଲୁ ହରଣ ।
ଏବେ ତୋତେରେ ପାପିଷ୍ଠ ଦେବି ମୁହିଁ ଶାପ
ଗୃହ ଭାଜିଲା ମୋହର ଦେଲୁ ଏଡ଼େ ତାପ ।
ଜନ୍ମେ ଜନ୍ମେ ତୋର ପତ୍ନୀ ହେଉଥାଉ ନାଶ
ପତ୍ନୀ ସୁଖରେ କିଞ୍ଚିତ ନୋହିବୁ ତୁ ଦୋଷ ।
ଏହା କହି ଭରଦ୍ୱାଜ ଲଜ୍ଜିତ ହୋଇଣ
ପୁଣି ତୀର୍ଥକୁ ଚଳିଲେ ଗୃହକୁ ତେଜିଣ ।
ଦ୍ରୋଣ ବୋଇଲେ ପିଅର ବୟସ ମଦରେ
ମନ୍ଦକାର୍ଯ୍ୟ କରିଅଛି ମୁକ୍ତି କର ବାରେ ।
ଏ ପାପ ପଙ୍କରୁ ମୋତେ ବାରେ ରକ୍ଷା କର
ଏହାକହି ପିତାଙ୍କର ଧରିଲେ ପୟର ।
ଭରଦ୍ୱାଜ ବୋଲେ ଛାଡ଼ ତପୋଧନ ବେଶ
କ୍ଷତ୍ରିୟ ବୃତ୍ତି ଆଚରି ସମରରେ ପଶ ।

ଶିରଛେଦ ହୋଇବ ତୋ ରଣଯଜ୍ଞ କରି
ମାତା ହରଣ ଦୋଷରୁ ତେବେ ହେବୁ ପାରି ।
ମହାଭାରତର ଯୁଦ୍ଧେ ତୁ ଯାଇଁ ପଶିବୁ
ଶତେଜନ୍ମ ଉଦ୍ଧାରୁ ତୁ ମୁକତ ହୋଇବୁ ।
ପିତାଙ୍କ ବଚନେ ଦ୍ରୋଣ ଛାଡ଼ି ମୁନିବେଶ
ପର୍ଶୁରାମଙ୍କ ନିକଟେ ହୋଇଲେ ପ୍ରବେଶ ।
ତାହାଙ୍କୁ ମଣାଇ ନେଲେ ନାନାଜାତି ଶର
ଗର୍ଭବାସେ ଥାଉ କୃପୀ ଛାଡ଼ିଲେ ଶରୀର ।
ପିତାଙ୍କର ଅଭିଶାପ ପଡ଼ିଲା ତକ୍ଷଣେ
ପେଟ ଚିରି ପୁତ୍ର କାଢ଼ି ଆଣିଲେ ଯେ ଦ୍ରୋଣେ ।
ଅଶ୍ୱ ପରାୟେ ଗର୍ଜନ କରନ୍ତେ କୁମର
ତେଣୁ ଅଶ୍ୱଥାମା ନାମ ହୋଇଲା ତାଙ୍କର ।
ପିତାଙ୍କ ବଚନ ହୃଦେ ରଖିଥାନ୍ତି ଦ୍ରୋଣ
ତେଣୁ ଭାରତ ସମରେ ପଶିଲେ ଯାଇଁଣ ।
ମାତା ହରଣେ ଦ୍ରୋଣଙ୍କ ହେଲା ମୁଣ୍ଡ କାଟ
ଏତେବେଳେ ତୁମ୍ଭ ପକ୍ଷେ ହେଲା ତା ସଙ୍କଟ ।
ଆହେ ନୃପତି ପୂର୍ବରେ ଯେ ପାପ ଅର୍ଜଇ
ଇହଜନ୍ମରେ ସେ ପ୍ରାଣୀ ନିଶ୍ଚେ ତା ଭୁଞ୍ଜଇ ।
ଆପେ ଯାହା ଅର୍ଜିଥିବ କର୍ମ ବୋଲି ତାକୁ
ବିଧାତା ନିର୍ବନ୍ଧ ନିଶ୍ଚେ ଫଳିବ ତାହାକୁ ।
ଜୟଦେବ ବିଶ୍ୱନାଥ ହେ ପଞ୍ଚମଉଳି
ପରମ ଆନନ୍ଦ ସ୍ୱାମୀ ନମସ୍ତେ କପାଳୀ ।
ସଂସାରର ମଧ୍ୟେ ଦେବ ଅଟୁ ତୁ ଉତ୍ତମ
ଯାହାନାମ ଧଇଲେ ନ ଦଣ୍ଡେ କାଳଯମ ।
ଶଙ୍ଖ ଲେପନ ପିଙ୍ଗଳବର୍ଣ୍ଣ ପଞ୍ଚକୋଟି
ଲେଙ୍ଗୁଟି ଚିକୁଟି ସ୍ୱାମୀ କଟିରେ କାଛାଟି ।
ଅନ୍ଧକ ଅଇରୀ ଆର୍ତ୍ତଜନର ଯେ ବନ୍ଧୁ
ଲୋହିତ ପିଙ୍ଗଳନାଥ କୃପାଜଳ ସିନ୍ଧୁ ।
ବାଳକ ବୃଦ୍ଧ ତରୁଣ ଐରୀତପ ଭଞ୍ଜ
ବିଶ୍ୱମ୍ଭର ସ୍ୱାମୀ ପରସନ୍ନ ଦେବରାଜ ।
ଅଜପା ଯୋଗ ମନ୍ତ୍ରରେ ଭଲ ଅଛି ଜ୍ଞାନ
ନେତ୍ରାନଳେ କାମଦେବ କରିଛ ଦହନ ।
ଦିବ୍ୟାଙ୍ଗ ସୁନ୍ଦର ନାଥ ସଦା ରଙ୍ଗେ ଭୋଳା
ନବଲକ୍ଷ ଡମ୍ବରୁ ଯେ ବାଜଇ ମେଖଳା ।
ଜଗତ ମୋହନ ଦେବ ସଦା ଅଟ ରାଗୀ
ତୁମ୍ଭେ ଅଟ ଭୋଳାନାଥ ପୁଣି ମହାଯୋଗୀ ।
ଉମାଛଳେ ଦକ୍ଷ ଯଜ୍ଞ କରିଲେ ଦହନ
ଦକ୍ଷ ମୁଣ୍ଡ କାଟି ଦେଲେ ଛେଳିର ଆନନ ।
ମସ୍ତକରେ ଗଙ୍ଗାଦେବୀ କରନ୍ତି ବିହାର
ଚନ୍ଦ୍ରଶେଖର ବୋଲିଣ ନାମଟି ତୁମ୍ଭର ।
ଜଗତ ବନ୍ଧନ ନାଥ କଣ୍ଠେ କାଳକୂଟ
ଜଗତ ଜୀବନ ନାଥ ନାମ ନୀଳକଣ୍ଠ ।
ସୁଶ୍ରୀଧିର ହାର ହୃଦଗତେ ଯାର ଉମା
ଦରଶନେ ମୋ ଦୁରିତ କର ଦେବ କ୍ଷମା ।
କୌଶିକ ବିବାଦେ ସ୍ୱାମୀ ବ୍ରହ୍ମା ଦର୍ପ ହରି
ପରଶୁଘାତେ କମ୍ପିଲା ସର୍ବ ବସୁନ୍ଧରୀ ।
ସମସ୍ତ ପାତକ ଯାଏ ତୁମ୍ଭ ନାମ ଧରି
ବଞ୍ଚିଲି ମୁଁ କାଳଦଣ୍ଡୁ ରୁଦ୍ର ମନ୍ତ୍ର ସ୍ମରି ।
ହେ ଅଭୟ ବରଦାତା ଘେନ ଏ ଜଣାଣ
ଶାରଳା ଦାସ ପଶଇ ତୋ ପାଦେ ଶରଣ ।



## କୁରୁଥାଟରେ କର୍ଣ୍ଣଙ୍କୁ ସେନାପତି, ଶଲ୍ୟଙ୍କୁ ସାରଥି ପଣେ ବରଣ

ପୁନରପି ପଚାରନ୍ତି ବୈବସ୍ୱତ ମନୁ
ମହାଭାରତ କହିବ ମୋତେ ତତ୍ତ୍ୱ ଜ୍ଞାନୁ ।
ପଞ୍ଚଦଶ ଦିବସର ଅନ୍ତରେଣ କଥା
ସଂକ୍ଷେପି କହିବ ମୁନି ତହିଁର ବାରତା ।
କର୍ଣ୍ଣ ପଣ କରେ ମାନଗୋବିନ୍ଦ ଅଗ୍ରତେ
କହିବା ସେ ପୂର୍ବକଥା ହେବ ଯେଉଁ ମତେ ।
କହନ୍ତି ଅଗସ୍ତି ଶୁଣ ମନୁ ନରଶ୍ରେଷ୍ଠ
ସଞ୍ଜୟଠାରୁ ଏ ସବୁ ଶୁଣି ଧୃତରାଷ୍ଟ୍ର ।
କର୍ମଙ୍କୁ ଆଦରି ତୁନି ହୋଇଣ ରହିଲା
ଦୁର୍ଯ୍ୟୋଧନ ଅର୍ଘ୍ୟ ଘେନି କର୍ଣ୍ଣପାଶେ ଗଲା ।
ବହୁତ ସମ୍ପଦ ନାନା ଅଳଙ୍କାର ନେଇ
ଅର୍ଘ୍ୟଥାଳୀ ଘେନି ତାଙ୍କ ପାଶେ ଉଭାହୋଇ ।
ବୋଇଲା ହେ ମିତ୍ରଗଣ ଶୁଣ ମୋର ଗିର
ବୃଥାରେ ଅନେକ ସୈନ୍ୟ ପଡ଼ିଲେ ମୋହର ।
ଇଚ୍ଛାମୃତ୍ୟୁ ଅଟେ ଯେଉଁ ଭୀଷ୍ମ ମହାବାହୁ
ପାଣ୍ଡବ କୂଟରେ ଶରଶଯ୍ୟା କଲେ ସେହୁ ।
ଜିଣି ନ ପାରିଲେ ମୋତେ ଯହୁଁ ରଣ କରି
କୌଶଳେ ସମ୍ପଦ ମୋର ନେଉଛନ୍ତି ହରି ।
ତ୍ରେତାରୁ ଦ୍ୱାପର ଯୁଗ ସେହୁ କରେ ଶେଷ
ଏମନ୍ତ ହେ ଦ୍ରୋଣବୀର ସେ ହେଲେ ବିନାଶ ।
ଭରଦ୍ୱାଜଙ୍କ ନନ୍ଦନ ଅଟନ୍ତି ଚିରଜୀବୀ
ହସ୍ତେ ଶସ୍ତ୍ର ଥିଲେ ଜିଣିପାରେ ଦିବି ଭୂବି ।
ଏମନ୍ତ ବୀର ମୋହର କର୍ମ ଅବଳକୁ
ଶତ୍ରୁକୂଟେ ଚାଲିଗଲେ ଶମନ ଆଳକୁ ।
ଆଉ କି ଯଶ ପାଇବି ସଂଗ୍ରାମ ସାଜିଣ
କୂଟକୌଶଳେ ଜିଣନ୍ତି ଅଧର୍ମ କରିଣ ।

ମହା ମହା ବୀର ସବେ ରଣସ୍ଥଳେ ପଡ଼ି
ନିରାଶ କରିଣ ମୋତେ ଏବେ ଗଲେ ଛାଡ଼ି ।
ଶକୁନି ସଚିବ ଶୁଣି ବୋଇଲା ବଚନ
ଯୁଧିଷ୍ଠିର ବିଜେ ଭୀଷ୍ମ ଯୁଦ୍ଧ ଆଦ୍ୟ ଦିନ ।
ଯାନ ବାହନାଦି ତେଜି ଗମନ ପାଦରେ
କମଳର ମାଳ ଥିଲା କେବଳ ହସ୍ତରେ ।
ତା ଦେଖି ବିଚାର କଲୁ ନ ହେବ ସମର
ଶରଣ ମାଗି ଆସିବେ ଏବେ ଯୁଧିଷ୍ଠିର ।
ସଜହୋଇ ତହିଁ ସୈନ୍ୟ ରହିଥିଲେ ଯେତେ
ଶରଣ ପଶିବେ ବୋଲି ନିରସ୍ତ୍ର ସମସ୍ତେ ।
ତହୁଁ ଯୁଧିଷ୍ଠିର ଆସି ଭୀଷ୍ମଙ୍କର ପାଶ
ପ୍ରଣାମ କରିଲେ ଯାଇ ତାଙ୍କ ପାଦଦେଶ ।
ଭୀଷ୍ମ ଆଶୀର୍ବାଦ କଲେ ଆମ୍ଭ ଆୟୁ ନିଅ
ଶତ୍ରୁ ମାରି ନିଶ୍ଚିନ୍ତରେ ରାଜ୍ୟେ ରାଜାହୁଅ ।
ତାହା ଶୁଣି ଯୁଧିଷ୍ଠିର ବୋଲନ୍ତି ବଚନ
ତୁମ୍ଭଙ୍କୁ ତ ନ ଜିଣିଲେ କାହିଁ ରାଜ୍ୟ ଧନ ।
ଶାନ୍ତନୁଙ୍କ ବୀର୍ଯ୍ୟେ ଗଙ୍ଗା ଗର୍ଭରୁ ସମ୍ଭୁତ
ପୁଣି ମୃତ୍ୟୁ ତାହାଙ୍କର ଅଟଇ ଆୟତ୍ତ ।
ଏମନ୍ତ ଯାହାଙ୍କ ଶକ୍ତି ଅଟେ ଅପ୍ରମେୟ
ତାହାଙ୍କୁ ସମରେ କିଏ କରିପାରେ ଜୟ ।
ଭୀଷ୍ମ ବୋଇଲେକ ଦଶଦିନ ପରିଯନ୍ତେ
ଯୁଦ୍ଧ କରିବୁ ଉତ୍ପ୍ରୋଧ ନ କରିଣ ତୋତେ ।
ନବଦିନ ଅନ୍ତେ ତୁହି ଏମନ୍ତ କରିବୁ
ଶିଖଣ୍ଡୀକୁ ଆଣି ପାର୍ଥ ରଥରେ ରଖିବୁ ।
ତାକୁ ଦେଖି ଅସ୍ତ୍ର ଆମ୍ଭେ କରିବା ବର୍ଜନ
ତୋହର ଅଭୀଷ୍ଟ ତହୁଁ କରିବୁ ସାଧନ ।
ତାହା ଶୁଣି ଯୁଧିଷ୍ଠିର ଦୃଢ଼ କଲେ ବୁକୁ
ତଦପରେ ବାହାରିଲେ ଦ୍ରୋଣ ନିକଟକୁ ।
ଯାଇ ତାଙ୍କ ପାଦତଳେ କରନ୍ତେ ଜୁହାର
କଲ୍ୟାଣ ବାଞ୍ଛିଲେ ବିଦ୍ୟାଲାଭ ହେଉ ତୋର ।
ପୁରୁ ତୋହର ଅଭୀଷ୍ଟ ଆମ୍ଭ ଆୟୁ ଘେନ
ପଞ୍ଚ କଟକରେ ସୁଖେ ହୁଅ ତୁ ରାଜନ ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ଗୁରୁଦେବ
ତୁମ୍ଭଙ୍କୁ ଜିଣିଲେ ସିନା ଏ କଥା ଫଳିବ ।
ରଣ କରୁଥିବ ଯେବେ ହାତେ ଅସ୍ତ୍ର ଧରି
ତ୍ରିଜଗତେ କେ ଜିଣିବ ନାହିଁ ନା ଏପରି ।
ଅକାରଣରେ ଏମନ୍ତ କଲ୍ୟାଣ ବାଞ୍ଛିଲ
ତୁମ୍ଭଙ୍କୁ ତ ନ ଜଣିଲେ କାହିଁ ମୋର ଭଲ
ତାହା ଶୁଣି ଦ୍ରୋଣ ଗୁରୁ କରିଲେ ଉକତ
ଯଦ୍ୟପି ଶୁଣିବି ମୁହିଁ ଅଶ୍ୱତ୍ଥାମା ହତ ।
ତେବେ ସେହିକ୍ଷଣି ଅସ୍ତ୍ର ତେଜିବି କରରୁ
ସେହି ସମୟରେ ଯେବେ ମୋତେ ମାରିପାରୁ ।
ତା ନୋହିଲେ ପୁଣି ଅସ୍ତ୍ର ଧଇଲେ କରରେ
ଆମ୍ଭଙ୍କୁ ଜିଣନ୍ତା ନାହିଁ ଏ ତିନିପୁରରେ ।
ସେହି କଥା ସବୁ ମନେ ଦୃଢ଼େ ଥିଲେ ରଖି
କୂଟକପଟେ ସେ କାଳେ ତାହା ଦେଲେ ଯୋଖି ।
ରାତ୍ରରେ ତ ଗୋଳଯୁଦ୍ଧ ହୋଇଲା ପ୍ରବଳ
ଶର ଆତଯାତେ ନର ଦିଶିଲା ଉଜ୍ଜ୍ୱଳ ।
ଭୀମସେନ ଅଶ୍ୱତ୍ଥାମା ରଥ ଦନ୍ତେ ଫିଙ୍ଗି
ଯମୁନା ଜିଣି ପଡ଼ିଲା ରଥ ଗଲା ଭାଙ୍ଗି ।
ପୁଣି ଭୀମସେନ ମାରେ ଅଶ୍ୱତ୍ଥାମା କରୀ
ଶବ୍ଦ ହେଲା ଅଶ୍ୱତ୍ଥାମା ରଣେ ଗଲା ମରି ।
ନର କି କୁଞ୍ଜର ବୋଲି ନ ଜାଣିଲେ କିଏ
ଅଶ୍ୱତ୍ଥାମା ହତ ବୋଲି ବୋଇଲେ ସଭିଏଁ ।
ଏ ବାକ୍ୟ ଶୁଣି ନିରାଶ ହେଲେ ରଣମଧ୍ୟେ
ଯୁଧିଷ୍ଠିରଙ୍କ ଛାମୁକୁ ଗଲେ ଦ୍ରୋଣ କ୍ରୋଧେ ।
ଦ୍ରୋଣ ପଚାରନ୍ତି ଯୁଧିଷ୍ଠିର ମହାରାଜ
ଅଶ୍ୱତ୍ଥାମା ହତ ହେଲା ମନୁଷ୍ୟ କି ଗଜ ।
ନର ଅଶ୍ୱତ୍ଥାମା ହତ ଯହୁଁ ସେ କହିଲେ
ପୁତ୍ରର ଶୋକରେ ଗୁରୁ ଅସ୍ତ୍ର ଛାଡ଼ିଦେଲେ ।
ପଛଭାଗେ ଧୃଷ୍ଟଦ୍ୟୁମ୍ନ ଛିଡ଼ା ହୋଇଥିଲା
ପିତା ଶତ୍ରୁ ବୋଲି ତାଙ୍କ ମସ୍ତକ ହାଣିଲା ।
ଶକୁନି ବୋଇଲେ ଶୁଣ ହେ କୁରୁରାଜନ
ମୃତ୍ୟୁଭେଦ କହି ଦ୍ରୋଣ ହରାଇଲେ ପ୍ରାଣ ।
କର୍ଣ୍ଣକୁ କହନ୍ତେ ଧର୍ମ ସେ ନାସ୍ତି କରିଲେ
ଅର୍ଜୁନଙ୍କୁ ମାରିବାକୁ ଦୃଢ଼ପଣ କଲେ ।
ମାନଗୋବିନ୍ଦ ବୋଇଲା ମୋର ମନ୍ଦକର୍ମ
କର୍ଣ୍ଣକୁ ଯା ସେନାପତି ନ କଲି ପ୍ରଥମ ।
ହରାଇ ଶିଖିଲି ବୁଦ୍ଧି ତାଙ୍କୁ ଆଶା କରି
ତେଣୁ ହରାଇ ବସିଲି କାର୍ଯ୍ୟକୁ ମୋହରି ।
ଏହା କହି ବେଗେ ଉଠି କର୍ଣ୍ଣେ କୋଳ କରି
ବୋଇଲା ହେ ମିତ୍ର ରଖ ଏ ମାନ ମୋହରି ।
କର୍ଣ୍ଣ ବୋଇଲା ନିଶ୍ଚିନ୍ତେ ଥାଅ ନରରାଜ
ପାଣ୍ଡବେ ମାରିବି ଭୋଗ କର ଅଇଶ୍ୱର୍ଯ୍ୟ ।
ପୁଣି ହିଁ ମାନଗୋବିନ୍ଦ ହୋଇଲା ବଚନ
ବିଚାର ନ କରି ମିତ୍ର କଲି ଏହି କର୍ମ ।
ଅକାରଣେ ଦ୍ରୋଣଙ୍କୁ ମୁଁ ସେନାପତି କଲି
ତୁମ୍ଭଙ୍କୁ ନ କରି ବୁଦ୍ଧି ହଜାଇ ବସିଲି ।
କର୍ଣ୍ଣ ବୋଇଲା ମଇତ୍ର କଥା ଏକ କର
ଶଲ୍ୟକୁଂ ସାରଥି କରି ନିଅ ରଥେ ମୋର ।

ଶୁଣି ସାନନ୍ଦ ହୋଇଲା ରାଜା ଦୁର୍ଯ୍ୟୋଧନ
କର୍ଣ୍ଣକୁ ସଙ୍ଗରେ ଘେନି କରିଲା ଗମନ ।
ଅନେକ ରତ୍ନାଲଙ୍କାର ସଙ୍ଗତରେ ନେଇ
ବିଜୟ ମାନଗୋବିନ୍ଦ ଶଲ୍ୟପାଶେ ଯାଇ ।
ବୋଇଲା ମାମୁଁ କଥାଏ କହିବି ତୁମ୍ଭଙ୍କୁ
ନାସ୍ତି ନ କରି ପାଳନ କରିବ ତାହାକୁ ।
ତାହା ଶୁଣି ଶଲ୍ୟ ରାୟେ ଦେଲେକ ଉତ୍ତର
ଆମ୍ଭେ କ୍ଷୁଦ୍ରରାଜା ତୁମ୍ଭେ ପୃଥିବୀ ଠାକୁର ।
ଆମ୍ଭେମାନେ ଚକ୍ଷୁହୀନ ଅକ୍ଷର ସମାନ
ତୁମ୍ଭେ ଦିବ୍ୟଚକ୍ଷୁ ପ୍ରାପ୍ତ କେ ତୁମ୍ଭଙ୍କ ସମ ।
ଆମ୍ଭେମାନେ ମୂର୍ଖ ସଙ୍ଗେ ଅଟୁ ସମସରି
ତୁମ୍ଭେ ତ ପଣ୍ଡିତ ଶ୍ରେଷ୍ଠ ଯେଣୁ ଦଣ୍ଡଧାରୀ ।
ଆମ୍ଭେ ସମସ୍ତେ ବଧିର ଅଟୁ ଜଡ଼ା କାଲ
ତୁମ୍ଭର ବଚନେ ରାଜା ଅଟେ ବଡ଼ ଶଲ ।
ଆମ୍ଭର ବଚନ ସବୁ ପ୍ରଳାପ ସମାନ
ତୁମ୍ଭର ବଚନ ରାଜା ଦୃଢ଼ ତତ୍ତ୍ୱଜ୍ଞାନ ।
ଆମ୍ଭର ବଚନ ରାଜା ପାଣିରେଖା ପରି
ତୁମ୍ଭ ବଚନ ପଥର ଗାର ସମପରି ।
ଆମ୍ଭେମାନେ ଅଟୁ ଦେବ ନାନାରୂପ ବ୍ୟାଧି
ତୁମ୍ଭେ ହିଁ ଅଟ କେବଳ ପରମ ଔଷଧି ।
ଯେବଣ କଥା କହିବ ଆହେ ନୃପମଣି
ସେ କଥା ଆନ କରିବ ଅଛି କେ ଧରିଣୀ ।
ମାନଗୋବିନ୍ଦ କହିଲେ ଶୁଣ ହେ ମାତୁଳ
ସାରଥି ହୋଇଣ ତୁମ୍ଭେ କର୍ମେ ରଥ ଚାଳ ।
ଶୁଣି ଶଲ୍ୟରାୟ ତହୁଁ କଲେକ ଉତ୍ତର
ମୃତ ପୁତ୍ରର ସାରଥି ଦେବ କି ପ୍ରକାର ।
ମାନଗୋବିନ୍ଦ କହନ୍ତି ମାମୁଁ ତେବେ ଶୁଣ
ସହସ୍ର ବରଷ ବଡ଼ ସୂର୍ଯ୍ୟହୁଁ ଅରୁଣ ।
ଭାଗ୍ୟବଳେ ଅଟନ୍ତି ସେ ପଣ୍ତୁଙ୍କ ସାରଥି
ବେନିଲକ୍ଷ ବର୍ଷ ବଡ଼ମା ତହୁଁ ଅଟନ୍ତି ।
ସତ୍ୟଯୁଗରେ ଜନମ ଅଟନ୍ତି କେତନ
ସାରଥି ହୋଇ ବାହିଲେ ଅଭିମନ୍ୟୁ ଯାନ ।
ଆଉ ଦେଖ ଚନ୍ଦ୍ର ରଥ ବାହେ ନିଶାକର
ଚନ୍ଦ୍ରଠାରୁ ପାଞ୍ଚଗୁଣ ବୟସ ତାହାର ।
ଇନ୍ଦ୍ରଙ୍କ ରଥ ସର୍ବଦା କହନ୍ତି ମାତଳି
ଇନ୍ଦ୍ରଙ୍କଠାରୁ ସେ ବଡ଼ ଲକ୍ଷେ ବର୍ଷାବଳି ।
ହେ ମାତୁଳ ଆଉ କେତେ କହିବି ଏମାନ
ବଡ଼ ହୋଇ ସାନ ରଥ କରନ୍ତି ଚାଳନ ।
ସାରଥି ପଣକୁ କିମ୍ପା ତୁଚ୍ଛା ଜ୍ଞାନ କର
ଦେଖ ଅର୍ଜ୍ଜୁନ ରଥକୁ ବାହାନ୍ତି ଶ୍ରୀଧର ।
ତାଙ୍କଠାରୁ ପୃଥିବୀରେ କେ ବଡ଼ ଅଟନ୍ତି
ଅଶ୍ୱ ଦଉଡ଼ିକି ଧରି ନିଜେ ସେ ବାହାନ୍ତି ।
ବିନୟେ ବୋଇଲା ମାମୁଁ ନୁହସି ବିମୁଖ
କର୍ଣ୍ଣର ସାରଥି ହୋଇ ମୋର ବଂଶ ରଖ ।
ଶଲ୍ୟ ବୋଇଲେ ଯଦ୍ୟପି ହେବି ମୁଁ ସାରଥି
ସମର୍ଥ ହେବ କି ଏହି ଅର୍ଜ୍ଜୁନର କତି ।
କର୍ଣ୍ଣ ବୋଇଲା ମାମୁଁ ହେ ତୁମ୍ଭେ କି ଜାଣ
ମୁଁ କିପରି ବୀର ନିଶ୍ଚେ ମାରିବି ଅର୍ଜ୍ଜୁନ ।
କେବଳ ରଥ ବାହିବ ଆନ ନ ବହଇ
ଯେତେବେଳେ ନନ୍ଦିଘୋଷେ ଥିବେ ଭାବଗ୍ରାହୀ ।
ହନୂ ବସିଥିବେ କପିକେତନ ଧ୍ୱଜରେ
ଅଶ୍ୱ ଚାରି ଯୋଗୁ ଥିବେ ସୁନ୍ଦର ରୂପରେ ।
ପାର୍ଥ ଧରିଥିବ ଲକ୍ଷବଳର ଗାଣ୍ଡିବ
ବେନି କନ୍ଧରେ ଅକ୍ଷୟ ତୂଣ ଭିଡ଼ିଥିବ ।
ଏମନ୍ତବେଳେ ମୋ ରଥ କଲେ ତା ଆଗରେ
କିପରି କରିବି ତାକୁ ଦେଖିବି ନେତ୍ରରେ ।
ୟା କଲେ ହେ ମାମୁଁ ଦେବି ରତନ ଭଣ୍ଡାର
ସହସ୍ରେକ ରଥ ଦେବି ଗମନେ ପ୍ରଖର ।
ସହସ୍ରେକ ହସ୍ତୀ ଦେବି ଐରାବତ ଜିଣି
ଦେବି ପଦ୍ମିନୀ ଜାତିୟା ସହସ୍ରେ ରମଣୀ ।
ସହସ୍ରେକ ଗାଭୀ ଦେବୀ ବତ୍ସ ସହିତରେ
ମିତ୍ରପଣେ ବାହାରଥ ହରଷ ମନରେ ।
କର୍ଣ୍ଣର ଗରବ ଦେଖି ଶଲ୍ୟ ହାସ୍ୟ କରି
ବୋଇଲେ ଯେ ପୋଡୁ ପୋଡୁ ଗାରିମା ତୋହରି ।
ହେ କର୍ଣ୍ଣ ଅଜ୍ଞାନ ପ୍ରାୟ ଭଣ୍ଡି କହୁ ମୋତେ
ଯାହାର ଯେମନ୍ତ ଶକ୍ତି ଜାଣନ୍ତି ଜଗତେ ।
ହସ୍ତୀ କରୁଥାଏ ଟାଣ ବହୁତ ପ୍ରକାରେ
ଯେ ପର୍ଯ୍ୟନ୍ତ ସିଂହରୂପ ନ ଦେଖେ ନେତ୍ରରେ ।
ସିଂହକୁ ଦେଖିଲେ ଆଉ ବାଟ ନ ମିଳଇ
ତୁହି ମତ୍ତହସ୍ତୀ ସିଂହ କିରୀଟି ଅଟଇ ।
ଯେହ୍ନେ ମହା ଅନ୍ଧକାର ନିଶିରେ ଘୋଟଇ
ମିହିର ଦେଖିଲେ ଆଉ ରହି ନ ପାରଇ ।
ତୁହି ଘୋଟୁଅଛୁ ନିଶା ଅନ୍ଧାର ସମାନ
ତେବେ ଯେ ମଧ୍ୟାହ୍ନସୂର୍ଯ୍ୟ ପରାୟ ଅର୍ଜ୍ଜୁନ ।
ଆହେ କର୍ଣ୍ଣ ମୂଷାପ୍ରାୟ ମଣଇ ମୁଁ ତୋତେ
ମାର୍ଜ୍ଜାର ଦେଖିଲେ ଯେହ୍ନେ ପଶଇ ସେ ଗାତେ ।
ତୋହର ପ୍ରତିଜ୍ଞା ଦେଖେ ମୂଷା ପରକାରେ
ଅର୍ଜ୍ଜୁନକୁ ଦେଖି ନିଶ୍ଚେ ପଶିବୁ ବିଳରେ ।
ନିରର୍ଥକ ଭୂମିରେ ଯେ ଗର୍ଜ୍ଜେ କାଳସର୍ପ
ଖଗେଶ୍ୱରକୁ ଦେଖିଲେ ଭାଜଇ ତା ଦର୍ପ ।

ତୋହର ଗର୍ଜନ କାଳସର୍ପର ପ୍ରକାର
ତୋରେ ସେ ଗରୁଡ଼ ବାବୁ ପାଅ ଧନୁର୍ଦ୍ଧର ।
ଯେତେବେଳେ ନନ୍ଦିଘୋଷ ନେତ୍ରରେ ଦେଖିବୁ
ନିଶ୍ଚୟ କହୁଛି ମୋତେ ଛାଡ଼ି ପଳାଇବୁ ।
ତାହା ଶୁଣି କର୍ଣ୍ଣବୀର ବୋଇଲା ବଚନ
କିମ୍ପାଇ ହୋ ମାମୁଁ ମୋତେ କରୁଛ ଲାଞ୍ଛନ ।
ଏବେ ମୋର କ୍ଷତ୍ରିପଣ ଦେଖିବ ସାକ୍ଷାତେ
କିମ୍ପାଇ କରୁଛ ମୋତେ ନିନ୍ଦା ଏଇମତେ ।
ଶଲ୍ୟ ବୋଇଲେ ଜାଣିଛି ମୁଁ ତୋହର ଟାଣ
ଯହୁଁ ନ ଜାଣେ ତା ଆଗେ କରିବୁ ବଖାଣ ।
ମାରିବାକୁ ଯାଉଥିଲ ପାଣ୍ଡବା ଅସୁର
ସଙ୍ଗତରେ ଯାଇଥିଲେ ଶତ ସହୋଦର ।
ଗିଳିବା ପାଇଁ ତାହାଙ୍କୁ ଧରନ୍ତେ ଦଇତ
ରାଜାଙ୍କୁ ଛାଡ଼ି ପଳାଇ ଅଇଲୁ ତୁହିତ ।
ଅର୍ଜ୍ଜୁନ ନାରାଚ ଘାତେ ହେଲା ବେନିଫାଳ
ତେବେ ଉଦ୍ଧାର ପାଇଲେ କୌରବ ସକଳ ।
ତହୁଁ ପାଣ୍ଡବାସୁରକୁ ମାଇଲେ ଅର୍ଜ୍ଜୁନ
ପଳାଇ ଅଇଲେ ତହୁଁ ନିଜ ନିକେତନ ।
ପୁଣି ଯାଉଥିଲେ ଭାନୁମତୀ ସ୍ୱୟମ୍ବରେ
ନବ ସହସ୍ର ରାଜାଏ ଥିଲେ ସେ ସ୍ଥାନରେ ।
ବିରୁପାକ୍ଷ ରାଜା କରି ସମସ୍ତଙ୍କୁ ଜୟ
ଭାନୁମତୀ ଘେନିଗଲା ହୋଇଣ ନିର୍ଦ୍ଦୟ ।
ତୁମ୍ଭେ ଚାହୁଁଥିଲ ତହିଁ ହୋଇ ଜଳ ଜଳ
ତୁମ୍ଭଯୋଗେ ସେ କାଳର ହେଲା କେଉଁ ଫଳ ।
ଏକା ଧନଞ୍ଜୟ ମାରି ତାହାର ସୈନ୍ୟକୁ
ଭାନୁମତୀ ଆଣିଦେଲେ ଏ କୁରୁ ରାଜାଙ୍କୁ ।
ଆଉ ଯେତେବେଳେ ଘୋଷଯାତ୍ରା ଦେଖିବାକୁ
ଦେଖାଇବାକୁ ସମ୍ପଦ ପାଣ୍ଡବମାନଙ୍କୁ ।
ତାହା ଦେଖି ଚିତ୍ରସେନ ଗନ୍ଧର୍ବ ରାଜନ
ନ ସହି ତୁମ୍ଭ ରାଜାଙ୍କୁ କରିଲା ବନ୍ଧନ ।
କୋଟିଏ ସୈନ୍ୟକୁ ତୁମ୍ଭେ ନେଇଥିଲ ସାଥେ
କେହି ରୋଧି ନ ପାରିଲେ ତାହାକୁ କିଞ୍ଚିତେ
ଶୂନ୍ୟ ପଥରେ ରାଜାଙ୍କୁ ଘେନିଗଲା ଚଳି
ତୁହି କହୁଅଛୁ ମୁହିଁ ଅଟେ ମହାବଳି ।
ସେ କାଳେ ରାଜାଙ୍କୁ ତୁହି ରଖି ନ ପାରିଲୁ
ଭୀରୁ ସ୍ୱଭାବ ପଣେ ତୁ ବଣରେ ଲୁଚିଲୁ ।
ଯୁଧିଷ୍ଠିର ଅର୍ଜ୍ଜୁନକୁ ଅନୁରୋଧ କରି
ଶରେ ପଥ ରୋଧି ନୃପେ ଆଣିଲେ ହକାରି ।
ଆଉ ଏକ କଥା ଶୁଣ ଆଦିତ୍ୟର ସୁତ
ତୋହର ବଳବୀର୍ଯ୍ୟର ମହିମା ଯେମନ୍ତ ।
ମକର ସ୍ନାହାନେ ଗଲ ଗଉତମୀ କୂଳେ
ନୃପତିଙ୍କୁ ବାନ୍ଧିନେଲା କାଳନେମି ତୁଲେ ।
ବନସ୍ତରେ ଅରଜୁନ ଏମନ୍ତ ଦେଖିଲା
ତିନିକୋଟି ସୈନ୍ୟ ମାରି ରାଜାଙ୍କୁ ରଖିଲା ।
ତଦୁରେ କାଳନେମିକି କରିଲେ ସଂହାର
ଏହା ମୁଁ ନିଜେ ଦେଖିଛି ନୟନେ ମୋହର ।
ପୁଣି ପଞ୍ଚାଳ ଦେଶର ଦ୍ରୁପଦ ରାଜନ
ଲକ୍ଷେ ନୃପତିଙ୍କି କରିଥିଲେ ଯେ ବରଣ ।
ମହାଲାଖ ବିନ୍ଧି ପାର୍ଥ ଲଭିଲେ କୁମାରୀ
ସର୍ବେ ଗୋଳ କଲ କନ୍ୟା ବଳେ ନେବା ଧରି ।
ଲକ୍ଷେ ନୃପତିଙ୍କୁ ଜିଣି ସୈନ୍ୟ କରି କ୍ଷୟ
କନ୍ୟା ଘେନି ଚଳିଗଲେ ବୀର ଧନଞ୍ଜୟ ।
ହେ କର୍ଣ୍ଣ ବିରାଟ ରାଜ୍ୟେ ଗୋଧନ ହରଣେ
ଯାହା କରିଥିଲେ ପାର୍ଥ ନାହିଁକି ତୋ ମନେ ।
ଅଠର କ୍ଷଉଣୀ ସୈନ୍ୟ ସଙ୍ଗେ ନେଇଥିଲ
ଏକେ ଏକେ ତୁମ୍ଭେମାନେ କେତେ ନ ଯୁଝିଲ ।
ଅର୍ଜ୍ଜୁନ ତୁମ୍ଭଙ୍କୁ ଜିଣି ରଖନ୍ତେ ଗୋଧନ
ଯାକୁ ପଠାଇ ଅଇଲ ନିଜ ନିକେତନ ।
ବହୁ ଯୋଗ୍ୟତା ତାହାଙ୍କର ଅଛି ଠାବେ ଠାବେ
କିପରି ପାର୍ଥ ଜିଣିବୁ ବୋଲୁଅଛୁ ଏବେ ।
ଏବେ କି ବଦଳି ଯାଇ ଧନ୍ୟ କର୍ଣ୍ଣ ହେଲୁ
ସେ ହେତୁ ଏମନ୍ତ ତୁହି ପ୍ରତିଜ୍ଞା କରିଲୁ ।
ଏପରି ପ୍ରତିଜ୍ଞା ଆନ ଆଗରେ କରିବୁ
ତୁହି ଯେଡ଼େ ବୀର ତାହା ମୁହିଁ ଜାଣେ ସବୁ ।
ତାହା ଶୁଣି କର୍ଣ୍ଣବୀର କହିଲା ବଚନ
ବହୁତ କହିଲ ମାମୁଁ ନ ବିଚାରି ମନ ।
ତୋର ସମାନ ସାରଥି ମୋହର ନ ଥିଲା
ତେଣୁ କରି କାହିଁ ଅବା ଅଯଶ ହୋଇଥିଲା ।
ଯେତେବେଳେ ଧନୁକୁ ମୁଁ କରେ ଆକର୍ଷଣ
ଶଙ୍କିତ ଚିତ୍ତ ହୁଅନ୍ତି ସ୍ୱୟଂ ନାରାୟଣ ।
ମାରିବି ପାଣ୍ଡବ ବଳ ତୁମ୍ଭ ସାହାଯ୍ୟରେ
ସଖା ହୋଇ ରଥ ଚାଳି ଦେଉଥିବ ଖରେ ।
ଏହା ଶୁଣି ଦୁର୍ଯ୍ୟୋଧନ ହୋଇଣ ବ୍ୟଥିତ
ବୋଇଲେ ମାମୁଁ ଧରୁଛି ତୁମ୍ଭ ବେନି ହାତ ।
ଗତ କଥା ସବୁ ଏବେ ପରିତ୍ୟାଗ କର
କର୍ଣ୍ଣର ସାରଥି ହୋଇ ରଖ ମୋର ଗିର ।
ରାଜାର ବଚନ ଶୁଣି ଶଲ୍ୟ ମହାମତି
ବୋଇଲେ ହେବି ମୁଁ କର୍ଣ୍ଣ ରଥରେ ସାରଥି ।
ଜୟ ନୀଳାଚଳ ନାଥ ଅଗତି ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ।

ତୁମ୍ଭ ମହିମା ବର୍ଣ୍ଣନେ ଅଛି କା ଶକତି
ଶାରଳା ଦାସକୁ ଦିଅ ମାଗଇ ମୁକତି ।

—୦—

## କର୍ଣ୍ଣଙ୍କର ପ୍ରଥମଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନର ସତାଣୋଇ ଭାଇଙ୍କର ପତନ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ମୁନି ଶୁଣ ମୋ କହିବା ଗିର ।
ବହୁତ କଷ୍ଟରେ ଶଲ୍ୟ ସାରଥି ହୋଇଲେ
କର୍ଣ୍ଣ ରଣକ୍ଷେତ୍ରେ ପଶି କେମନ୍ତ କରିଲେ ।
ସେହିସବୁ କଥା ମୋତେ କରନ୍ତୁ ପ୍ରକାଶ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
କର୍ଣ୍ଣରଥ ସଜାଇଲେ ଶଲ୍ୟ ବୀରମଣି
ଯହିଁ ଯା ଶୋଭା ଦିଶିବ ତା କଲେ ମଣ୍ଡଣି ।
କେଉଁ ସ୍ଥାନରେ ଚାମର ନେଇ ଟଙ୍ଗାଇଲେ
କାହିଁ ମଣିଝରା ମୁକ୍ତା ଯତନେ ଖଞ୍ଜିଲେ ।
ଆଲଟ ଚାମର ପଙ୍ଖା କାହିଁ ଦୋହଲାଇ
କଳସ ଖଞ୍ଜନ୍ତେ ରଥ ଶାଖା ଚହଟାଇ ।
ଶାର୍ଦ୍ଦୁଳଚର୍ମ ଛାଉଣୀ ତହିଁ ସର୍ପ ଚିହ୍ନ
ଉଡ଼ଇ ପାଟ ବିରାଳ ଦିଶେ ଶୋଭାବନ ।
ମନୁରାଜା ପଚାରିଲେ-ଅଗସ୍ତି ମୁନିଙ୍କି
କର୍ଣ୍ଣରଥେ ସର୍ପ ଚିହ୍ନ ରହିଲା କାହିଁକି ।
ଯାତ୍ରାକାଳେ ଯା ଦେଖିଲେ ଅଯାତ୍ରା ହୁଅଇ
ଯାହାକୁ ଛୁଇଁଲେ ପାପ ଆସିଣ ଘୋଟଇ ।
ଯାତ୍ରା ସମୟେ ଭେଟିବ ଯେବେ କାଳସର୍ପ
ଦେଖିଲେ ଅଶୁଭ ପୁଣ ସ୍ପର୍ଶେ ମହାପାପ ।
ଯାର ନାମ ରାତ୍ରକାଳେ ମୁଖେ ନ ଧରନ୍ତି
ପୁଣି ସେହି କାମୋଡ଼ିଲେ ପ୍ରାଣୀ ନ ବର୍ତ୍ତନ୍ତି ।
ଯାର ଗୃହେ ତାର ମଳ ପଡ଼ଇ ଆସିଣ
ପିତୃଏ ଯାଆନ୍ତି ଜଳ ନ କରି ଗ୍ରହଣ ।
ଏମନ୍ତ ଯେବଣ ଜୀବ ଅମଙ୍ଗଳକାରୀ
କର୍ଣ୍ଣ ରଥଧ୍ୱଜେ ତାହା ରହିଲା କିପରି ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
କାଳସର୍ପ ରଖି କର୍ଣ୍ଣ ହୋଇଲେ ଅଜ୍ଞାନ ।
ଲୁହୁ ବୁହୁ ବ୍ୟାଧିଗ୍ରସ୍ତ ହୁଅନ୍ତେ ବହନି
ଖାଣ୍ଡବ ବନ ଦହନ କରଇ ଫାଲଗୁନି ।
ସେ ବନରେ ଯେତେ ଜୀବ କରିଥିଲେ ବାସ
ବନ ସହ ଅଗ୍ନି ତାଙ୍କୁ କରିଦେଲେ ଗ୍ରାସ ।
ବିରାଳଚନ୍ଦ୍ର ନାମରେ ଥିଲା ଆଶୀବିଷ
ଯାର ପୁତ୍ର ମହାକାୟ ତା ପୁତ୍ର ପାରାସ ।
ପାରାସ ସୁତ ହୋଇଲା ସର୍ପ ବିରାୟୁଧ
ତାହାର ନନ୍ଦନ ନାମ ହେଲା ପରାୟୁଧ ।
ପରାୟୁଧର ନନ୍ଦନ କୁଳେବର ଜାନୁ
ହତଚନ୍ଦ୍ର ବୋଲି କରି ଅଟେ ତାର ସୁନୁ ।
ହତଚନ୍ଦ୍ରର ନନ୍ଦନ ହେଲା ଭାନୁନାଗ
ଏହାର ନନ୍ଦନ ହେଲା ବଳାହ ଉରଗ ।
ବଳାହ କୁମର ହେଲା ସର୍ପ ଚନ୍ଦ୍ରକାନ୍ତି
ଚନ୍ଦ୍ରକାନ୍ତି ବୀର୍ଯ୍ୟୁ ହେଲା କାଳିଆ ଉତ୍ପତ୍ତି ।
କାଳିଆ ନନ୍ଦନ ହେଲା ନାମ ମହାବଳି
ଏହାର କୁମର ହେଲା ନାଗ ଆର୍ଦ୍ରାବଳି ।
ଆର୍ଦ୍ରାବଳିର ନନ୍ଦନ କାଳଖଗ ଅହି
ଏହାର ସୁତ ତକ୍ଷକ ହେଲା ଜଳଶାୟୀ ।
ଜଳଶାୟୀର ନନ୍ଦନ ସର୍ପ ମହାରାଜ
ତାହାର ନନ୍ଦନ ନାମ ଅଟଇ ବିଲୋଜ ।
ବିଲୋଜ ନନ୍ଦନ ହେଲା ଉର୍ଦ୍ଧ୍ୱକେତୁ ସର୍ପ
ଏହାର ପୁତ୍ର ଶୋଷକ ନାମେ କାଳସର୍ପ ।
ଖାଣ୍ଡବ ବନରେ ଏହି ସର୍ପମାନେ ଥିଲେ
ବନ ଦହନ ସମୟେ ସର୍ବେ ପୋଡ଼ି ମଲେ ।
ଏହାର କୁଟୁମ୍ବ ସବୁ ତହିଁ ଯାନ୍ତେ ପୋଡ଼ି
ଏ ସର୍ପ ପ୍ରାଣ ରଖିଲା କୂପଜଳେ ବୁଡ଼ି ।
ମନେ ମହାକ୍ରୋଧ କରି ଅର୍ଜ୍ଜୁନ ଉପରେ
ରହିଥାଏ ସଦାକାଳେ ଛିଦ୍ର ଖୋଜିବାରେ ।
ପାଞ୍ଚପାଣ୍ଡବ ଯେ କାଳେ ଗଲେ ବନବାସ
ଅଜ୍ଞାତ ବରଷ ଆସି ହୁଅନ୍ତେ ପ୍ରବେଶ ।
ସର୍ବେ ବିଚାରିଲେ ଯିବା ବିରାଟ ନଗରେ
ଅସ୍ତ୍ରାଦି ରଖିଲେ ଶମୀବୃକ୍ଷର କ୍ରୋଟରେ ।
ସେହିକାଳେ ଏହି ସର୍ପ ବେଳକାଳ ପାଇ
ଲୁଚିଣ ରହିଲା ତହୁଁ କ୍ରୋଟରରେ ଯାଇଁ ।
ଭାବିଲା ଅସ୍ତ୍ର ନେବାକୁ ଆସିଲେ ଅର୍ଜ୍ଜୁନ
ତାହାକୁ ଏହି ସ୍ଥାନରେ କରିବ ଦଂଶନ ।
ତାର କିଛିଦିନ ପରେ କୌରବ କେଶରୀ
ବିରାଟ ଦେଶେ ଚଳିଲେ ଗୋରୁ ଚୋରି କରି ।
ସେଠାରେ ହରଣ କଲେ ଯେକାଳେ ଗୋଧନ
ଉତ୍ତର କୁମର ଘେନି ଅଇଲେ ଅର୍ଜ୍ଜୁନ ।
ଦେଖିଲେ କୌରବ ସୈନ୍ୟ କରୁଛନ୍ତି ଗୋଳ
ଅସ୍ତ୍ର ଆଣିବାକୁ ଗଲେ ଶମୀବୃକ୍ଷ ତଳ ।
ଉତ୍ତରକୁ ଚାହିଁ ପାର୍ଥ ଦେଲେ ଅନୁମତି
ବୃକ୍ଷେ ଚଢ଼ି ଅସ୍ତ୍ର ମୋର ଆଣ ଶୀଘ୍ର ଗତି ।
ଶୁଣି ଉତ୍ତର ଚଢ଼ିଲେ ବୃକ୍ଷର ଉପରେ
ଅସ୍ତ୍ର କାଢ଼ନ୍ତେ ସେ ସର୍ପ ଦଂଶିଲା ତାହାରେ ।

ଦେଖିଲା ଅର୍ଜ୍ଜୁନ ନୁହେଁ ଉତ୍ତର କୁମର
ଭୟ ପାଇ ପଳାଇଲା ତହୁଁ ଅହିବର ।
ଗାରେଡ଼ି ମନ୍ତ୍ର ବଳରେ ବୀରବର ପାର୍ଥ
ଉତ୍ତର କୁମରେ ଝାଡ଼ି କରିଲେ ଜୀବିତ ।
ପୁଣି ପଳାଇ ପଶିଲା ବାରିଧି ଭିତର
ଅଭେଦକ ମଣି ଘେନି ହୋଇଲା ବାହାର ।
କର୍ଣ୍ଣଙ୍କ ଛାମୁରେ ଯାଇ ମଣି ଭେଟି ଦେଇ
ଶରଣ ପଶିଲା ତାଙ୍କ ପାଦରେ ସେ ଯାଇଁ ।
ବୋଇଲା ଏ ମଣି ଯେହୁ ରଖେ ହୃଦୟରେ
ଶର କଦାଚ ନ ଭେଦେ ତାହାର ଶରୀରେ ।
ଆବର ମୃତ୍ୟୁ ତାହାର ନୁହଇ ନିଶ୍ଚୟ
ଏହା ଶୁଣି ବୋଇଲେକ କର୍ଣ୍ଣ ନରରାୟ ।
ଏହା ଅନୁରୂପେ ତୋତେ କି ଦେବି ପଦାର୍ଥ
ଯାହା ତୁ ମାଗିବୁ ସର୍ପ ତାହା ଦେବି ସତ୍ୟ ।
ଶୋଷକ ବୋଇଲା ତୁମ୍ଭ ରଥଧ୍ୱଜେ ଥିବି
ବାରେକ ପେଶିବ ନନ୍ଦିଘୋଷକୁ ଗିଳିବି ।
ତାହା ଶୁଣି କର୍ଣ୍ଣର ଯେ ମନକୁ ଅଇଲା
ସେହିଦିନ ରଥଧ୍ୱଜେ ତାହାକୁ ରଖିଲା ।
ତେଣୁ କାଳସର୍ପ ଚିହ୍ନ ତା ରଥେ ବିରାଜି
ଫଣାକୁ ବିସ୍ତାରି ଫୁଙ୍ଫୁକାର କରି ଗର୍ଜି ।
ବିଷଲହରୀକି ଜିଣେ ତା ନିଃଶ୍ୱାସ ତେଜ
ନାରାଚ ପଡ଼ିଲେ ତହିଁ ହୁଅଇ ଦହିର୍ଯ୍ୟ ।
ଯାହା ପୁଚ୍ଛାକଲ ଆହେ ମନୁ ମହାରଥା
ସେ ସବୁ କହିଲି ଏବେ ଶୁଣ ଯୁଦ୍ଧକଥା ।
ବାହାରିଲେ ରଥ ସାଜି କର୍ଣ୍ଣ ମହାବୀର
ଚାରିଅଶ୍ୱ ଯୋଗ ହୋନ୍ତେ ଦିଶିଲା ସୁନ୍ଦର ।
ବୀରବାଦ୍ୟ ମାନ ବାଜେ ଅତ୍ୟନ୍ତ ସୁସ୍ୱରେ
ନିଶାଣ ରାଜପତାକା ଉଡ଼େ ଫରେ ଫରେ ।
ଦିବ୍ୟବେଶ ସୂର୍ଯ୍ୟସୁତ ହୋଇ ସୁସଜ୍ଜିତ
ଦିଶିଲା ତ୍ରିପୁର ଯୁଦ୍ଧେ ଯେହ୍ନେ ଉମାକାନ୍ତ ।
କୁରାଳଚକ୍ର ପରାୟେ ଦିଶେ ବେନି ତୋଳା
ଯା ଦେଖି ସନ୍ତୁଷ୍ଟ ହୋଇ ଧୃତରାଷ୍ଟ୍ର ବଳା ।
ବୋଇଲା ହେ ମିତ୍ର ମୋର ଫେଡ଼ିବ ଆରତ
ଏହା କହି ସ୍ନେହଭରେ କଲା କୋଳାଗ୍ରତ ।
କର୍ଣ୍ଣ ବୋଇଲା ହେ ମାମୁଁ ମୋ ବଚନ ଶୁଣ
ନିଶ୍ଚୟ ମାରିବି ଆଜି ପାଣ୍ଡବ ଅର୍ଜ୍ଜୁନ ।
ଅନେକ ପ୍ରତିଜ୍ଞା କରି କହେ ଦୁଃଶା ବୀର
ନିଶ୍ଚୟ ମାରିବି ମୁହିଁ ଆଜ ବୃକୋଦର ।
ପ୍ରତିଜ୍ଞା କରି କହନ୍ତେ କର୍ଣ୍ଣ ଧନୁର୍ଦ୍ଧର
ମୋ ଭାଗେ ରହିଲେ ଦୁଇ ମାଦ୍ରିର କୁମର ।
ଯେ ଯାର ସାରଥି ରଥ କରିଲେ ମଣ୍ଡଣି
ଅଶ୍ୱ ପଦାତିକ ସୈନ୍ୟ କେ କହିବ ପୁଣି ।
ଏମନ୍ତକାଳେ ନାରଦ ମୁନି ବ୍ରହ୍ମବେତ୍ତା
ପାଣ୍ଡବଙ୍କ ଆଗେ ଯାଇ କହିଲେ ବାରତା ।
ଦ୍ରୋଣଙ୍କ ଅଭାବେ ସେନାପତି ହେଲେ କର୍ଣ୍ଣ
ଅନେକ ପ୍ରଶଂସା ତାକୁ କରଇ ରାଜନ ।
ଶଲ୍ୟ ଯେ ସାରଥି ହେବେ କର୍ଣ୍ଣ ବୀର ରଥେ
ଶୁଣି ସ୍ତମ୍ଭୀଭୂତ ହେଲେ ଦେବ ଜଗନ୍ନାଥେ ।
ଦେଖି ଅର୍ଜ୍ଜୁନ ବୋଇଲେ ଆହେ ଦୟାମୟ
ଏ କି ବିପରୀତ କଥା ହେଉଛି ବିସ୍ମୟ ।
ଗୋବିନ୍ଦ ବୋଇଲେ କର୍ଣ୍ଣ ଅଟେ ମହାମଲ୍ଲ
ତାହାର ସାରଥି ପୁଣି ହୋଇଛନ୍ତି ଶଲ୍ୟ ।
ଯେହୁ ଧନୁକୁ ଧଇଲେ ମୋର ହୁଏ ଭୟ
ଏମନ୍ତ ଯେ କର୍ଣ୍ଣ ଶଲ୍ୟ ତାହାର ସହାୟ ।
ଏହାଙ୍କର ସମାନ ତୁ ହେବୁ କି ଅର୍ଜ୍ଜୁନ
ଅର୍ଜ୍ଜୁନ ବୋଇଲେ କିସ କହ ଭଗବାନ ।
ଆବର ବୋଇଲେ ପ୍ରଭୋ ସହସ୍ରେ ହେଉ କର୍ଣ୍ଣ
ଦୁଇସହସ୍ର ଶଲ୍ୟ ହେଲେ ନ ହେବେ ସମାନ ।
ଅନୁଗ୍ରହ କରି ନାଥ ଥାଅ ମୋର ରଥେ
ମାରିବି ମୁଁ କର୍ଣ୍ଣ ଶଲ୍ୟ ଶକୁନି ସହିତେ ।
ଭୀମସେନକୁ କହିଲେ ଯାଇ ଗୁପ୍ତଚର
ତୁମ୍ଭ ସଙ୍ଗେ ଦୁଃଶା ଆଜି କରିବ ସମର ।
ତାହା ଶୁଣି ଭୀମସେନ ହୋଇ ତୋଷମନ
ବୋଇଲେ ଯାଜ୍ଞସେନୀର ଥିଲେ ପୂର୍ବପୁଣ୍ୟ ।
ତେବେ ଆଜ ତାର ମୁହିଁ ମୁକୁଳିତ କେଶ
ଦୁଃଶାସନ ବାହୁରକ୍ତେ ବାନ୍ଧିବି ଅବଶ୍ୟ ।
ଏହାକହି ଦ୍ରୌପଦୀଙ୍କ ମୁଖକୁ ଅନାଇଁ
ବୋଇଲେ ଥିବୁ ତୁ ଆଜ ମୋର ବାଟ ଚାହିଁ ।
ସହଦେବକୁ ତୋ ପାଶେ ପଠାଇବି ଯେବେ
ତାହା ସଙ୍ଗରେ ସତ୍ୱର ଚଳିଯିବୁ ତେବେ ।
ସାଜ ସାଜ ବୋଲି ଭୀମ ଦେଲା ବୀର ଡାକ
ଗଦା ବୁଲାନ୍ତେ କୁରୁଏ ଲଭିଲେ ଚମକ ।
ଭୀମସେନର ପ୍ରତିଜ୍ଞା ଦେଖିଣ ପାଞ୍ଚାଳୀ
କ୍ରୋଧଭରେ କହଇ ଯେ ମନେ ମନେ ଭାଳି ।
ସକଳେ ବଞ୍ଚିବେ ପିତା ମଲେ ରଣ କରି
କେଉଁ ପାତକ ପୂର୍ବରେ ଥିଲି ମୁଁ ଆଚରି ।
ତାର ପ୍ରତିଫଳ ଆସି ଫଳେ ଏତେ କାଳେ
ଏହା କହିଣ କାନ୍ଦିଲେ ଅତ୍ୟନ୍ତ ବିକଳେ ।
ସ୍ତିରୀକୁଳେ ଜାତ ହୋଇ ହେଲି ଅଲକ୍ଷଣୀ
ଉଭୟ କୁଳକୁ ନାଶ କରାଉଛି ଆଣି ।

ପାଞ୍ଚାଳ ରାଜନ ମୋର ପିତା ଗୁଣବାନ
ଅକାରଣେ ରଣେ ପଡ଼ି ହୋଇଲେ ନିଧନ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନମନ ମୁଖକୁ ଅନାଇଁ
ପୁଣି କାନ୍ଦିଲେ ଦ୍ରୌପଦୀ ବ୍ୟାକୁଳିତ ହୋଇ ।
ଦ୍ରୁପଦ ପରାୟ ପିତା ମରାଇ ବସିଲ
ପୁଣି ପାଣ୍ଡବଙ୍କୁ ଚାହିଁ ଏଠାରେ ରହିଲ ।
ଶିଖଣ୍ଡୀ ବୋଇଲେ ଆଉ ବିଳାପ ନ କର
ପିତା ଶତ୍ରୁ ଦ୍ରୋଣଙ୍କୁ ତ କଲୁଣି ସଂହାର ।
ଏହା ସିନା କ୍ଷତ୍ରିଙ୍କର ଉଚିତ ଅଟଇ
ଅକାରଣରେ ଝିଙ୍ଗାସ କର କାହିଁପାଇଁ ।
ଆଗୋ ଯାଜ୍ଞସେନୀ ଶୁଣ ମୋର ଏହି ବାଣୀ
କୌରବଙ୍କ ହଟହଟା ଦେଖିବ ଏକ୍ଷଣି ।
ଏମନ୍ତ କହିଣ ସର୍ବେ ହୋଇଲେ ବାହାର
ଦ୍ରୁପଦ ଦୁଲଣୀ ବିଜେ କଲେ ଅନ୍ତଃପୁର ।
ନନ୍ଦିଘୋଷ ଚାଳିଦ୍ୟନ୍ତେ ସତ୍ୱରେ କେଶବ
ଶ୍ୱେତହସ୍ତୀ ପୃଷ୍ଠେ ବିଜେ ଯୁଧିଷ୍ଠିର ଦେବ ।
ସୂର୍ଯ୍ୟ ଉଦେ ହେଲେ ଯେହ୍ନେ ଦିଶେ ଉଦେଗିରି
ନନ୍ଦିଘୋଷ ଶଲ୍ୟ ପାଶେ ଚଳେ ଜ୍ୟୋତି କରି ।
ପାର୍ଥଙ୍କର ରଥ ଦିଶେ ପଶ୍ଚିମ ଦିଗରେ
ଦେଖଇ କର୍ଣ୍ଣ ପୁଚ୍ଛାକଲା ଶଲ୍ୟଙ୍କୁ ସଧୀରେ ।
କହ ମାମୁଁ ଏକ ଆତ୍ମା ଶ୍ରୀକୃଷ୍ଣ ଅର୍ଜୁନ
ମୋ ବିପତ୍ତିକାଳେ କିସ କରିବ ଯତନ ।
ଶଲ୍ୟ ବୋଇଲେ ଯଦ୍ୟପି ପଡ଼ିବୁ ସମରେ
ତେବେ ରଥ ବାହିନେବି ରାଜାଙ୍କ ଛାମୁରେ ।
ଏଣେ ପୁଚ୍ଛାକଲେ ପାର୍ଥ ଶୁଣ ଦୟାମୟ
କର୍ଣ୍ଣ ମହାରଥି ଏକ ସମରେ ଦୁର୍ଜୟ ।
ତାହାଙ୍କର ସଖା ଅଟେ ଶଲ୍ୟ ମହାଭାଗ
ଏମନ୍ତ ସ୍ଥଳେ ମୁଁ ରଣେ ହେଲେ ଅପାରଗ ।
ଆପଣ ମୋ ପକ୍ଷେ ପ୍ରଭୁ କି କଥା କରିବ
ସେହି କଥା ବିସ୍ତାରିଣ କହ ବାସୁଦେବ ।
ଗୋବିନ୍ଦ ବୋଇଲେ ରଣେ ତୁ ହେଲୁ ଅଶକ
ଚକ୍ରରେ ଛେଦିବି ଶଲ୍ୟ କର୍ଣ୍ଣର ମସ୍ତକ ।
କୃଷ୍ଣଙ୍କ ମୁଖରୁ ଶୁଣି ଏମନ୍ତ ବଚନ
ଧନୁଶସ୍ତ୍ର ଥୋଇ ପାଦେ ପଡ଼ିଲେ ଅର୍ଜୁନ ।
ତଙ୍କୁ ଉଠାଇଲେ କୃଷ୍ଣ ଆଲିଙ୍ଗନ କରି
ବୋଇଲେ ତୁ ପଞ୍ଚଆତ୍ମା ଅଟୁ ଯେ ମୋହରି ।
ମୁହିଁ ଯେବେ ରାମ ତୁଲେ ଅନୁଜ ଲକ୍ଷ୍ମଣ
ମୁହିଁ ବିଷ୍ଣୁ ହେଲେ ତୁହି ନର ନାରାୟଣ ।
ମୁହିଁ ନରସିଂହ ତୁହି ହିରଣ୍ୟର ସୁତ
ସବୁକାଳେ ଅଟୁ ତୁହି ମୋର ପଞ୍ଚଭୂତ ।

ବଳଭଦ୍ର ଦେବେ ମୋର ନିଜ ଜ୍ୟେଷ୍ଠ ଭାଇ
ତାଙ୍କ କଥା ନ ମାନଇ କେବଳ ତୋ ପାଇଁ ।
ଶଲ୍ୟ କର୍ଣ୍ଣ କିବା ଛାର ତାଙ୍କୁ କରୁ ଭୟ
ଶିବ ବ୍ରହ୍ମା ବାଦ ହେଲେ ଯିବେ ଯମାଳୟ ।
ଶ୍ରୀକୃଷ୍ଣ ମୁଖୁଁ ଏମନ୍ତ ପ୍ରତିଜ୍ଞାକୁ ଶୁଣି
ଦେବଦତ୍ତ ଶଙ୍ଖ ନାଦ କଲେ ବୀରମଣି ।
ଏହିକାଳେ କର୍ଣ୍ଣ ରଥ ହେଲା ଉପସ୍ଥିତ
ପ୍ରଥମେ ବାୟବ ଶର ପ୍ରହାରିଲେ ପାର୍ଥ ।
ଆକର୍ଷି ନାରାଚ ରଥୁ ବିନ୍ଧେ ସବ୍ୟସାଚୀ
କର୍ଣ୍ଣର ରଥ ଯେ ଗଲା ଶହେଭେଡ଼ା ଘୁଞ୍ଚି ।
ଶଲ୍ୟ ସାରଥୀ ଟେକିଲା ଆଣି ତହିଁ ରଥ
ଅର୍ଜୁନଙ୍କୁ ଦେଖି ବୋଲେ ରାଧେୟ ତ୍ୱରିତ ।
ଦ୍ରୋଣପ୍ରାୟ ମୋତେ ବୁଝିଲୁକି ଆରେ ପାର୍ଥ
କୂଟେ ନାଶ କଲୁ ସିନ୍ଧୁ ରାଜା ଜୟଦ୍ରଥ ।
କୂଟ କରାଇ ଭୀଷ୍ମଙ୍କୁ କଲୁ ଶରଶଯ୍ୟା
ନପୁଂସକ ଦେଖିଣ ସେ କଲେ ଶରତେଜ୍ୟା ।
କାଳବଶେ ପଡ଼ିଲୁଣି ଆଜି ମୋର ପାଶ
ଆଉ ତୁ ନ ରଖ ମନେ ତୋ ଜୀବନ ଆଶ ।
ତାହା ଶୁଣି ଧନଞ୍ଜୟ କରିଲେ ଉତ୍ତର
ମୁଖେ କହିଲେ କି ହେବ ବଡ଼ପଣ ତୋର ।
ଧନୁ ଧରି ମୋର ସଙ୍ଗେ କର ଆସି ରଣ
ତେବେ ତ ଜାଣିବା ସିନା ତୋ ସମର୍ଥପଣ ।
ଏହା କହି ସୂର୍ଯ୍ୟାବଳୀ କରନ୍ତେ ପ୍ରହାର
ଶଏଭେଡ଼ା କର୍ଣ୍ଣରଥ ଘୁଞ୍ଚେ ପୁନର୍ବାର ।
ତା ଦେଖି ବୋଇଲା କର୍ଣ୍ଣ ଶଲ୍ୟ ହେଲ ବାଇ
ରଣେ ରଥ ଘୁଞ୍ଚିଯାଏ ନ ଧର କିମ୍ପାଇଁ ।
ଶଲ୍ୟ ବୋଇଲେ ଯଦ୍ୟପି ରଥ ନ ଘୁଞ୍ଚନ୍ତା
ତେବେ ଶରେ ରଥସ୍ତମ୍ଭ ଛିଡ଼ି ଯାଇଥାନ୍ତା ।
ପୁଣି ଶଲ୍ୟ ରଥ କଲେ ନନ୍ଦିଘୋଷ ଆଗ
ଧନୁ ଟଙ୍କାର କରିଲେ କର୍ଣ୍ଣ ହୋଇ ଆଗ ।
ଶତେକ ନାରାଚ କର୍ଣ୍ଣ କରିଲେ କ୍ଷେପଣ
ପଞ୍ଚବିଂଶ ଶରେ ପାର୍ଥ କଲେ ନିବାରଣ ।
ଚାରିଶତ ଶର ପୁଣି କର୍ଣ୍ଣ ପ୍ରହାରିଲେ
ଶଏ ନାରାଚେ ଅର୍ଜୁନ କାଟି ପକାଇଲେ ।
ପୁଣି ଶଏକାଣ୍ଡ କର୍ଣ୍ଣ ମାଇଲେ ପାର୍ଥକୁ
ଏକଶର ପ୍ରହାରିଲେ କପିକେତନକୁ ।
ଚାରି ଅଶ୍ୱକୁ ବିନ୍ଧଇ ଛଅ ଛଅ ଶର
ଏହିପରି ବିନ୍ଧନ୍ତେଣ ତାଙ୍କୁ କର୍ଣ୍ଣବୀର ।
ପାର୍ଥ ପ୍ରହାରିଲେ ପୁଣି ଏକବିଂଶ କାଣ୍ଡ
କର୍ଣ୍ଣଙ୍କର ସବୁ ବାଣ କଲେ ଖଣ୍ଡ ଖଣ୍ଡ ।

ବେନି ବୀରଙ୍କ ସମର ଅତି ବଳିୟାର
ଶରେ ଶର ବାଜି ଅଗ୍ନି ହୁଅଇ ବାହାର ।
ଦକ୍ଷିଣ ଦିଗରୁ ଭୀମ ହୋଇଲେ ପ୍ରବେଶ
ସେ ସ୍ଥାନରେ ରହିଥିଲେ କଳିଙ୍ଗ ନରେଶ ।
ନବଲକ୍ଷ ହାତୀ ସାତକ୍ଷୌଣୀ ବଳ ନେଇ
ଭୀମଙ୍କ ଆସିବା ପଥେ ଉଗାଳିଲେ ଯାଇ ।
ସହଦେବ କହିଦେଲେ ଏ କଳିଙ୍ଗସେନ
ଭେଟିଲେ ଏହାକୁ ଆସି ଷୋଳ ଦିବସେଣ ।
କଳିଙ୍ଗସେନକୁ ଦେଖି ଭୀମ ପରଚଣ୍ଡ
କାଳ କୃତାନ୍ତ ପରାୟେ ବଢ଼ାଇଲେ ପିଣ୍ଡ ।
ପ୍ରଚଣ୍ଡ ପବନକୁ ଯେ କଲେ ସୁମରଣ
ବୋଇଲେ ହେ ପିତା ଆଜି ୟାସଙ୍ଗେ ମୋ ରଣ ।
ପ୍ରଥମ ଉଦଯୋଗରେ ମୁଁ ପ୍ରତିଜ୍ଞା କଲି
ନବଲକ୍ଷ କୁଞ୍ଜରଙ୍କୁ ଉଡ଼ାଇବି ବୋଲି ।
ଏବେ ମୋ ଗଦାରେ ଆସି କରନ୍ତୁ ବିଶ୍ରାମ
ମାତଙ୍ଗଙ୍କୁ ଉଡ଼ାଇବି ପତଙ୍ଗ ସମାନ ।
ପିତାଙ୍କୁ ସ୍ମରଣ କରି ବୀର ବୃକୋଦର
କଳିଙ୍ଗସେନର ତୁଲେ କରିବି ସମର ।
ବାଉନ ବାଉନ ଭାର ବେନି ଗଦା ଧରି
ବୁଲାଇଲେ ଅତି ବେଗେ ଚକ୍ରାକାର କରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ହେଲା ଉଲକାପାତ
ଭୟେ ଦୁଇଲକ୍ଷ ସୈନ୍ୟ ହେଲେ ଇତସ୍ତତଃ ।
ଅଯୋଗ ପ୍ରଭଞ୍ଜନର କିମ୍ବା ଏଡ଼େ ମୂର୍ତ୍ତି
କିମ୍ଭୁତ କାରଣେ ହୁଏ କେହି ନ ଜାଣନ୍ତି ।
ନବଲକ୍ଷ ମତ୍ତହସ୍ତୀ କଳିଙ୍ଗସେନର
ଉଡ଼ିଲେ ଗଗନେ ବକପକ୍ଷୀ ପରକାର ।
ସମସ୍ତେ ଉଡ଼ିଲେ ଯାଇ ଗଗନ ମାର୍ଗରେ
ସିନ୍ଧୁଜଳେ ଢେଉ ଉଠେ ସେ ବାୟୁ ଘାତରେ ।
ଦୁର୍ଯ୍ୟୋଧନ ସର୍ବସୈନ୍ୟ ଘେନି ପଳାଇଲେ
ହସ୍ତିନା ନଗରେ ଯାଇ ଲୁଚିଣ ରହିଲେ ।
ସୈନ୍ୟସହ ନନ୍ଦିଘୋଷ ଘେନି ନାରାୟଣ
ପଳାଇ ଇନ୍ଦ୍ରପ୍ରସ୍ଥରେ ରହିଲେ ଯାଇଣ ।
ଆଶ୍ଚର୍ଯ୍ୟ ହୋଇ ପୁଚ୍ଛିଲେ ବିଲଙ୍କ ରାଜନ
ଆହେ ମୁନି ଅସମ୍ଭବ ଭାଷିଲେ ବଚନ ।
ଭାରତ ଆଖ୍ୟାନ ଯେବେ ନିନ୍ଦା ମୁଁ କରିବି
ତେବେ ତ ଗଳିତ କୁଷ୍ଠ ବ୍ୟାଧିରେ ମରିବି ।
ନିନ୍ଦା ନ କଲେ ହେ ମନେ ବିଶ୍ୱାସ ନୁହଇ
ଭୀମସେନ କେଡ଼େ ଗଦା ତହିଁ ଥିଲେ ବହି ।
ସେ ଗଦାର ଆତଯାତ ହୋଇଥିଲା କେତେ
ଶୁଣି ଏକଥା ସନ୍ଦେହ ଲାଗିଲା ତ ମୋତେ ।

କହନ୍ତି ଅଗସ୍ତି ମୁନି ଶୁଣ ନୃପବର
ଭୀମସେନଙ୍କ ମହିମା ଦେବେ ଅଗୋଚର ।
କହନ୍ତି ଅଗସ୍ତି ପିତାମହ ବାଳଖିଲ୍ୟା
ଭୀମସେନ ଅଟନ୍ତି ଯେ ପବନର ବଳା ।
ବୃକୋଦର ସେ ସ୍ଥାନରେ ବିଶ୍ୱରୂପ ହେଲେ
ଆଠଶ ଅଠାଶିହାତ ଉଚ୍ଚରେ ବଢ଼ିଲେ ।
ଗଦାର ଗୁରୁତା ଏବେ କହୁଅଛି ଶୁଣ
ଶତେକ ତୋଳାରେ ମାଢ଼େ ବୋଲିଣ ପ୍ରମାଣ ।
ଶଏମାଢ଼େ ପ୍ରଳୟକୁ ବୋଲିଣ ହୁଅଇ
ସହସ୍ରେକ ପ୍ରଳୟକୁ ସ୍ରୋଣେକ ବୋଲାଇ ।
ଶଏସ୍ରୋଣେ ଦ୍ୱାପରର ଭାର ବୋଲି ଗଣି
ଏ ଭାର ବହନେ ଶକ୍ୟ ଯେଉଁ ବୀରମଣି ।
ଏମନ୍ତେ ଶଏଭାରରେ ବୀରକୁ ଅଙ୍ଗାଏ
ଦୁଇ ଅଙ୍ଗାରେ ଯେ ଗଜ ଭାରକୁ ବୋଲାଏ ।
ଏ ଭାରେ ବାଉନ ଭାର ବହନ୍ତି ପାବନି
ଏହି ତୁଳର ସମାନ ଅଟେ ଗଦା ବେନି ।
ଏ ଗଦା ଆଘାତ କେଭେ ନ ସହେ ଭୂଧର
ସୁରବସ୍ତ ଗିରି ଭୀମ କରିଥିଲେ ଚୂର ।
ସୁରବସ୍ତ ଗିରି ଅଟେ ସହସ୍ର ଯୋଜନ
ଏ ଗଦାରେ ପିଟି ଭୀମ କରିଦେଲେ ଚୂର୍ଣ୍ଣ ।
ଏ ବିଧିରେ ବେନି ଗଦା ବୁଲାଅନ୍ତେ ଭୀମ
ସାତଶ ପବନ ତହୁଁ ହେଲା ଉତପନ୍ନ ।
ଏହି ଗଦା ଭୀମ ବୁଲାଇଲା ଯେତେବେଳେ
ଡରିଲେ ଯେ କୁରୁବଳ ଆଦି ଦିଗପାଳେ ।
ବୃକୋଦର ମୂରତିକି ଧରି ବୀର ଭୀମ
ହୁଅନ୍ତା ସେ ଶତସିଂହଠାରୁ ବଳବାନ ।
ବହନ୍ତା ଯେବେ ତା ତୁଲେ ବାୟୁ ଅଣଚାଶ
ସ୍ଥାବର ଜଙ୍ଗମ ଆଦି ସର୍ବେ ହୁଅନ୍ତେ ନାଶ ।
ଆକାଶେ ଘୋଟିଲା ପୁଣ ଭୀମସେନ କାୟ
କଳିଙ୍ଗ ହସ୍ତୀ ଦିଶିଲେ ଛାଗଳର ପ୍ରାୟ ।
ଭୀମ ଆଉଥରେ ଯେବେ ବୁଲାନ୍ତେ ସେ ଗଦା
ଗିରି ସମୁଦ୍ରରେ ପଡ଼ି ବନ ହୁଅନ୍ତା ପଦା ।
କଳିଙ୍ଗସେନକୁ ଭୀମ କରିଣ ନିଧନ
ଦଉଡ଼ିଲେ ମାରିବାକୁ କଉରବ ସୈନ୍ୟ ।
ସମଦଣ୍ଡ ସାଜି ପୁଣି ଆସନ୍ତେ କୌରବେ
କିଳିକିଳା ନାଦ କରି ଧାଇଁଲେ ପାଣ୍ଡବେ ।
ଭୀମ ଆଗରେ ପଡ଼ନ୍ତେ କଉରବ ଥାଟ
ସୈନ୍ୟଙ୍କୁ ମନ୍ଥନ କଲେ ପବନର ଚାଟ ।
ରଥ ଗଜ ଅଶ୍ୱ ସୈନ୍ୟ ଯା ପଡ଼େ ଆଗରେ
ଶେଷ ନ ରଖନ୍ତି କିଛି ଗଦା ପ୍ରହାରରେ ।

ସୈନ୍ୟଙ୍କ ଅବସ୍ଥା ଦେଖି ଶକୁନି ଧାଇଁଲେ
ସତାଣୋଇ ଭାଇ ତାଙ୍କ ସଙ୍ଗରେ ଅଇଲେ ।
ଶକୁନି ବୋଇଲେ ତୁମ୍ଭେ ଶୁଣ ସର୍ବବୀରେ
ସୈନ୍ୟ ସଂହାର ହୁଅନ୍ତି ଭୀମର ଗଦାରେ ।
ତୁମ୍ଭେମାନେ ବୋଲାଉଛ ମହା ମହା ବୀର
ଭୀମସେନ ଉପରକୁ ଦଉଡ଼ ସତ୍ୱର ।
ମନ୍ତ୍ରୀଙ୍କ ବଚନ ଶୁଣି ସେହି ବୀରଗଣ
ରଥେ ଗଜେ ଅଶ୍ୱେ ସର୍ବେ କଲେ ଆରୋହଣ ।
କୁନ୍ତ ଭାଲ ଖଣ୍ଡା ଧରି ହୋଇଲେ ବାହାର
ଏକ ମୁଖେ ବୋଇଲେକ ସର୍ବେ ମାର ମାର ।
କମ୍ପିଲା ମେଦିନୀ କୁରୁବୀରଙ୍କ ନାଦରେ
ଭୀମ ତରାଟି ଚାହିଁଲେ ବେନି ନୟନରେ ।
ପୁଣି ବିଚାରନ୍ତି ମନେ ଅରି ନିସୂଦନ
ସର୍ବେ ବାଦୀ ହୋଇ ଆଜି କଲେ ଆଗମନ ।
ଆଜି କି ଦ୍ରୌପଦୀଙ୍କର ମୁକୁଳିତ କେଶ
ବନ୍ଧନ ହେଲା ପରାୟେ ହେଉଅଛି ଦୃଶ୍ୟ ।
ଏହା ଭାବି ଦଉଡ଼ିଲେ ଘେନି ଗଦାବର
ଉଭା ହୋଇଲେ ଯାଇଣ ତାହାଙ୍କ ଆଗର ।
ଦୁରାନ୍ତକ ଦୁରାସନ ଦୁର୍ବଳ ଦୁମନ
ଦୁରାଦମ ଦୁରାଚଳ ଦୁଜଟ ଦୁଷ୍କର୍ଣ୍ଣ ।
ଦୁରାନନ୍ଦ ଦୁରାସଦ ଦୁରନ୍ତ ଦୁର୍ଗମ
ଦୁର୍ବିନ୍ଦ ଦୁର୍ଜୟ ଦୁଷ୍ଟ ଦୁରେଖ ଦୁର୍ଦମ ।
ଦୁଶୀଳ ଦୁର୍ବୀର ଦୁର୍ଗ ଦୁର୍ମୁଖ ଦୁର୍ମଦ
ଦୁଷ୍କଣ୍ଟକ ଦୁଷ୍ପ୍ରଧର୍ଷ ଦୁର୍ଦ୍ଦଗ ଦୁର୍ଗଦ ।
ଦୁରଦୁଷ୍ଟ ଦୁର୍ମର୍ଷଣ ଦୁର୍ଭିକ୍ଷ ଦୁର୍ମତି
ଦୁରତ୍ୟୟ ଦୁନିରୀକ୍ଷ ଦୁର୍ବୟ ଦୁର୍ଗତି ।
ଦୁରାରନ୍ଧ ଦୁର୍ବାହାର ଦୁଷ୍କର୍ମା ଦୁର୍ବହ
ଦୁରୀକୀର୍ତ୍ତି ଦୁର୍ବହଣ ଦୁର୍ମନା ଦୁରୁହ ।
ଦୁର୍ଭେଦ୍ୟ ଦୁସ୍ୱପ୍ନ ଦୁଷ୍ଟ ଦୁର୍ଲ୍ଲଭ ଦୁର୍ଗତ
ଦୁର୍ମୋହ ଦୁରିତକ୍ରମ ଦୁଃଶାନ୍ତ ଦୁର୍ଦାନ୍ତ ।
ଦୁର୍ବାକ୍ୟ ଦୁର୍ନାମ ଦୁଃଖାତୀତ ଯେ ଦୁର୍ଦ୍ଧର
ଦୁର୍ଭୟ ଦୁରାଭସନ୍ଧ ଦୁର୍ଣ୍ଣୟ ଦୁସ୍ତର ।
ଦୁର୍ଗୟନ ଦୁସ୍କନ୍ଧର ଦୁଷ୍କର ଦୁରମ
ଦୁର୍ବରିତ ଦୁରପେକ୍ଷ ଦୁଷ୍ତ୍ରୟ ଦୁଃସମ ।
ଦୁଃସହ ଦୁର୍ଜନ ଦୁରଧର୍ଷ ଦୁରାତ୍ମାନ
ଦୁର୍ଲ୍ଲୋଚନ ଦୁର୍ବେଦନ ଦୁର୍ଭାଗ୍ୟ ଦୁଷ୍କାମ ।
ଦୁରାମଲ ଦୁଗମଜ ଦୁରାକ ଦୁର୍ବାଳ
ଦୁରାପାଦ ଯେ ଆବର ଦୁରାତି ଦୁର୍ନାଳ ।
ଦୁର୍ଭାନି ଦୁକ୍ଷର ଦୁର୍ଗ ଦୃମାଳି ଦୁନୀଳ
ଦୁରୋଳେକ ଦୁରାଙ୍କର ଦୁଗନୀ ଦୁହଳି ।
ଦୁର୍ବେହ ଦୁଦ୍ଧିମୋଦ୍ଧନ ଦୁଃକ୍ଷମ ଦୁଷ୍ପୁତ୍ର
ଦୁର୍ନାମକୁ ମିଶାଇଣ ସତାଣୋଇ ଭ୍ରାତ ।
ରେରେକାର କରି ଘୋର ରଡ଼ିମାନ ଦେଇ
ଯେଝା ଅସ୍ତ୍ର ଶସ୍ତ୍ର ଧରି ଅଇଲେକ ଧାଇଁ ।
ମାର ମାର କରି ଭୀମ ଚାରିଆଡ଼େ ବେଢ଼ି
ଯେଝା ଅସ୍ତ୍ର ଶସ୍ତ୍ର ଘେନି ମାଇଲେ ସଜାଡ଼ି ।
ଦେଖି ଭୀମସେନ କୋପେ ଗଦା ବୁଲାଇଲେ
ସେ ଗଦାଘାତେ ଦୁର୍ଚୟ ଦୁରାପଦ ମଲେ ।
ଦୁଇ ସୋଦର ପଡ଼ନ୍ତେ ବାକୀ ସର୍ବେ ଉଠି
ଗଦା ପ୍ରହାର କରିଲେ କରି ଏକମୁଠି ।
ସମସ୍ତଙ୍କ ଗଦା ପଡ଼ି ଭୀମସେନ ଅଙ୍ଗେ
ଭାଜିଗଲା ଗୁଣ୍ଡାହୋଇ ଭୀମ ରଣ ରଙ୍ଗେ ।
ଅସ୍ତ୍ର ଭାଙ୍ଗିଯାନ୍ତେ ସର୍ବେ ହୋଇ ଭୟଗ୍ରସ୍ତ
ପଳାଇଲେ ରଣସ୍ଥଳୁ ଦଉଡ଼ି ଏକତ୍ର ।
ଦୁର୍ଯ୍ୟୋଧନର ସୋଦରେ ପଳାଇଲେ ଭାଜି
ଏକା ବୃକୋଦର ପଛେ ଧାଏଁ ଗଳ ଗାଜି ।
ଗଦା ଧରି ପଛଆଡୁ କରନ୍ତେ ପ୍ରହାର
ଭୂମିରେ ଲୋଟିରେ ରକ୍ତ କରିଣ ଉଦ୍‌ଗାର ।
ରଥ ଗଜ ଅଶ୍ୱ ଆଦି ଯା ପଡ଼େ ଆଗରେ
ଚୂର୍ଣ୍ଣ କରିଦ୍ୟନ୍ତି ଭୀମ ଗଦା ପ୍ରହାରରେ ।
ଲେଉଟି ନ ଚାହିଁ ସର୍ବେ ଯାଅନ୍ତି ପଳାଇ
ବରଡ଼ାପତର ପ୍ରାୟ ଶରୀର କମ୍ପାଇ ।
କେହି ଦନ୍ତେ କୁଟା ଧରି ପଡ଼ନ୍ତି ପାଦରେ
କେହି ବା ଶରଣ ବୋଲି କହନ୍ତି ମୁଖରେ ।
ନିଉପ୍ରୋଧ ନିରପେକ୍ଷ ଯେଣୁ ଭୀମସେନ
ଯେ ଶରଣ କହେ ଆଗେ ଯାଏ ତା ଜୀବନ ।
ଗର୍ଜନ କରିଣ ଭୀମ ପଛାଡୁ ପିଟନ୍ତି
ବାରେ ରମ୍ଭାବନ ପ୍ରାୟ ସଇନ୍ୟ ଲୋଟନ୍ତି ।
ଯେ ଜୀବନ ଆଶା ଛାଡ଼ି କରଇ ସମର
ଏକା ଗଦାକେ ଦେଖଇ ଯାଇ ଯମପୁର ।
କେହି ପରିଘ ମାଇଲେ ଭୀମଙ୍କ ଉପରେ
ଅଙ୍ଗେ ବାଜି ଚୂର୍ଣ୍ଣହୋଇ ପଡ଼ଇ ଭୂମିରେ ।
ଅସ୍ତ୍ର ଆସିବାର ଦେଖି ଭୀମ ମହାବଳ
ଠିଆ ହୋଇଥାନ୍ତି ଦୃଢ଼େ ପାତି ବକ୍ଷସ୍ଥଳ ।
ପରିଘ ଭୂଷଣ୍ଡ କୁନ୍ତ ଯେ ଯେତେ ମାରଇ
ଭୀମ ବକ୍ଷସ୍ଥଳେ ପଡ଼ି ତା ଚୂର୍ଣ୍ଣ ହୁଅଇ ।
ଅସ୍ତ୍ର ବ୍ୟର୍ଥ ହେବା ଦେଖି ଭୟେ ଯୋଦ୍ଧାମାନେ
ବିକଳେ ପଳାଇ ଯାନ୍ତି ନ ରହି ସେ ସ୍ଥାନେ ।
ସାରଥି ଧରି ପିଟନ୍ତି ସାରଥି ଉପର
ରଥକୁ ରଥରେ ପିଟି କରିଦ୍ୟନ୍ତି ଚୂର ।

କୁଞ୍ଜରକୁ ଧରି ବାମ ଦକ୍ଷିଣେ ବୁଲାଇ
ପିଟନ୍ତି ହସ୍ତୀ ଉପରେ କୋପାବିଷ୍ଟ ହୋଇ ।
ଦୁଇ ଦୁଇ ଅଶ୍ୱଙ୍କୁ ସେ ଧରିଣ ଫିଙ୍ଗଇ
ପଡ଼ିଣ ସେ ବହୁଦୂରେ ଯାନ୍ତି ଗୁଣ୍ଡାହୋଇ ।
କେ ନିସତ ହୋଇ ରହେ ଚାହାନ୍ତି ଲେଉଟି
ଶରେ ଶର ପରିତାଳ ଅଗ୍ନି ଶିଖା ଉଠି ।
ଦୁରାପଦ ସେ ସମର କହି ତ ନ ପାରି
ଲେଖନେ କେ ପାରିବ ଯେ ତାହା ଅନ୍ତ କରି ।
ସଂକ୍ଷେପେ କହିବି ତାର ଠିକ୍ ଠିକ୍ କଥା
ବିସ୍ତାର କରିବାକୁ କେ ଅଛି ସାମରଥା ।
କରନ୍ତି ତର୍ଜନ ଗରଜନ ରଣଷଣ୍ଡା
ପିଟନ୍ତି ବୀରେ ଯେ ହୋଇଯାନ୍ତି ମସୀପୁଣ୍ଡା ।
ତିନିକୋଟି ଅଶ୍ୱ ସାତ ଅକ୍ଷୌହିଣୀ ବଳ
ଏକା ଭୀମସେନ ମାରିଦେଲେ ଯମଆଳ ।
ମାରନ୍ତେ ଶେଷ ହୋଇଣ ଗଲେ ସର୍ବ ବୀର
ରଣ ରଙ୍ଗେ ନିବାରିଲେ ଏକା ବୃକୋଦର ।
ରଣ କରୁ କରୁ ଦିବା ହେଲା ଅବସାନ
ମନ୍ଦ ମନ୍ଦରେ ବହିଲା ଦକ୍ଷିଣା ପବନ ।
ଦଳ ଦଳ ହୋଇ ପକ୍ଷୀ କରିଣ କାକଳି
ନିଜ ଆବାସକୁ ସର୍ବେ ଯାଉଛନ୍ତି ଚଳି ।
ଗୋରୁପଲ ଗେନି ଗୃହେ ଚଳିଲେ ଗୋପାଳେ
ଧରଣୀ ମଣ୍ଡିତ ହେଲା କାଳିଆ ଦୁକୂଳେ ।
ବୀରମାନେ ଅସ୍ତ୍ର ସବୁ କରିଲେ ସଂଯତ
ଦୁର୍ଯ୍ୟୋଧନ ସତାଶୋଇ ଭାଇ ହେଲେ ହତ ।
ସମସ୍ତଙ୍କୁ ମାରି ଭୀମ କରିଲେ ଏକାଠି
ତା ଉପରେ ତା ଉପରେ ଲଦି ଗୋଟି ଗୋଟି ।
ଅୟୁତେକ ରଥ ପାଞ୍ଚ ଅୟୁତେ ଯେ ହସ୍ତୀ
ତିନିକୋଟି ଅଶ୍ୱ ସାତକ୍ଷଉଣୀ ପଦାତି ।
କର୍ଣ୍ଣ ସେନାପତି ହେବା ପ୍ରଥମ ଦିନରେ
ଏତେକ କୌରବ ସୈନ୍ୟ ଗଲେ ଯମପୁରେ ।
ଆଦିତ୍ୟ ଦେବତା ମେରୁ ଉହାଡେଣ ରହେ
ଦୁଃଶାସନ ଘେନି ପଳାଇଲେ କୁରୁରାୟେ ।
ଦଣ୍ଡଭଗ୍ନ ଦେଖି ଭୀମ ପଛରେ ଗୋଡ଼ାନ୍ତି
ଏତେ ସୈନ୍ୟ ମାରି ମଧ୍ୟ ତୃପତ ନୁହନ୍ତି ।
ଶ୍ରୀକୃଷ୍ଣ ବୋଇଲେ ରହ ରହ ଭୀମସେନ
ଆଜି ସମରେ ମଲା କି ବୀର ଦୁଃଶାସନ ।
ଡାକ ଶୁଣି ଭୀମସେନ ଲେଉଟି ଅଇଲା
ଦୁର୍ଯ୍ୟୋଧନ ନିରାପଦେ ତହୁଁ ପଳାଇଲା ।
ଭୀମ ବୋଇଲେ ମରିଲେ କେତେ ଭାଇ ଆଜି
କହି ନ ପାରିବି ମୁହିଁ ସେ କଥାକୁ ହେଜି ।
କଳିଙ୍ଗ ସେନାକୁ ମାରି ମତି ହେଲା ଭୋଳ
କାଦମ୍ବରିପାନେ ଯେହ୍ନେ ହୁଅନ୍ତି ବାତୁଳ ।
କାହାକୁ ମାରଇ କିଏ ମଲା କି ନ ମଲା
ଦୁଃଶା ଅଛି କି ମରିଛି ଜଣା ନ ପଡ଼ିଲା ।
ସମୟ ତ ଆଉ ନାହିଁ ହେଲାଣି ଅତୀତ
ଚାଲ ଶବ ଖୋଜି ଏବେ ବୁଝିବା ତା ତତ୍ତ୍ୱ ।
ଶୁଣି ବାସୁଦେବ ତହୁଁ କରିଲେ ବିଜୟ
ସତାଶୋଇ ଭାଇ ଗଣି କରିଲେ ନିଶ୍ଚୟ ।
ଶ୍ରୀକୃଷ୍ଣ ବୋଇଲେ ଦୁଃଶା ମରିନାହିଁ ଆଜ
ଶୁଣି ଭୀମ ବୋଇଲେ ହେ ଶୁଣ ଦେବରାଜ ।
କେମନ୍ତେ ଦ୍ରୌପଦୀ ମୁଖ ଆଜ ମୁଁ ଚାହିଁବି
ତାହାର ଝିଙ୍ଗାସବାଣୀ ସହି ନ ପାରିବି ।
ଦୁଃଶା ମୃତ୍ୟୁ ଶୁଣିବାକୁ ଥିବ ବାଟ ଚାହିଁ
ତାହାର ଆଗରେ ପ୍ରଭୁ କି କହିବି ଯାଇଁ ।
ଆଜ ଏ ରଣଭୂମିରେ ରହିବି ନିଶ୍ଚୟ
ଚାରିଭାଇ ଘେନି ବିଜେ କର ଦୟାମୟ ।
ତାହା ଶୁଣି ବାସୁଦେବ କଲେକ ଉତ୍ତର
ଅବିହିତ ପ୍ରତିଜ୍ଞାକୁ କଲୁ ବୃକୋଦର ।
ଆଜ ଯେବେ ପଡ଼ିଥାନ୍ତା ବୀର ଦୁଃଶାସନ
ଦ୍ରୌପଦୀର ମନୋବାଞ୍ଛା ହୁଅନ୍ତା ସମ୍ପୂର୍ଣ୍ଣ ।
ତୁମ୍ଭର ପ୍ରତି କଥାରେ ଅଧେ ଥାଏ ମିଛ
କିବା କଥା ପାଇଁ ତୁମ୍ଭେ ଭାବିତ ହେଉଛ ।
ତୁମ୍ଭେ ଇଚ୍ଛାକଲେ ମେରୁ କରିପାର ଚୂର
ତୁମ୍ଭ ନଖଘାତେ ମହୀ ହୋଇବ ବିଦାର ।
ଦୁଃଶାସନ ମରିବାଟା କେଉଁ ଛାର କଥା
କାଲି ମାରିବ ତାହାକୁ ଚିନ୍ତା କର ବୃଥା ।
ଏମନ୍ତେ ଭୀମସେନକୁ ବହୁତ ବୁଝାଇ
ବାହାରିଲେ ହରି ସଙ୍ଗେ ଭୀମସେନ ନେଇ ।
ପାଣ୍ଡବେ ସମସ୍ତ ସୈନ୍ୟ ଘେନି ସଙ୍ଗତରେ
ଜୟ ପତାକା ଉଡ଼ାଇ ବାହାରିଲେ ଖରେ ।
ବୀର ତୁର ଶଙ୍ଖ ଆଦି ଆଗରେ ବାଜଇ
ବାରୁଣା ନଗରେ ସର୍ବେ ପ୍ରବେଶିଲେ ଯାଇ ।
ଅର୍ଘ୍ୟ ଘେନି ଯାଜ୍ଞସେନୀ ଚାହିଁଥିଲେ ପଥ
ନନ୍ଦିଘୋଷୁ ଉତରନ୍ତେ ପ୍ରଭୁ ଯଦୁନାଥ ।
ଶତ୍ରୁ ଜୟ ପତାକା ସେ ରଥର ଉପରେ
ବାଜେ ବୀରତୁର ଶଙ୍ଖ ଅତି ପ୍ରତାପରେ ।
ପ୍ରଥମେ ତାହାଙ୍କୁ ଅର୍ଘ୍ୟ କରିଣ ପ୍ରଦାନ
ପୁଛିଲେ ଏତେ ବିଳମ୍ବ ଆଜି କି କାରଣ ।
କାହାକୁ ସମରେ ଆଜ କରିଲ ନିହତ
ସେହି କଥା କହି କର ମୋ ମନ ତୃପତ ।

ଶ୍ରୀକୃଷ୍ଣ ବୋଇଲେ ଅର୍ଘ୍ୟ ମୋତେ ଗୋ ନ ଦେଇ
ତୁମ୍ଭଙ୍କୁ କାରଣ କଲେ ଭୀମ ଦିଅ ନେଇ ।
ଦୁର୍ଯ୍ୟୋଧନ ସତାଣୋଇ ଭାଇଙ୍କି ସମରେ
ଆଜି ମାରି ପେଶିଛନ୍ତି ଶମନ ନଗରେ ।
ଆବର କଳିଙ୍ଗସେନ ନୃପତି ସହିତେ
ନବଲକ୍ଷ ହସ୍ତୀ ସାତକ୍ଷୌଣୀ ବଳ ଏତେ ।
ସମସ୍ତଙ୍କୁ ଗଦାଘାତେ ଦେଲେ ଯେ ଉଡ଼ାଇ
ବାକୀ ଦୁର୍ଯ୍ୟୋଧନ ଦୁଃଶା ରହିଛନ୍ତି ଜୀଇଁ ।
ରଜନୀ ହୁଅନ୍ତେ ଦୁହେଁ ପଳାଇଲେ ଲୁଚି
ତେଣୁ କରି ଦୁହିଁଙ୍କର ଜୀବନ ରହିଛି ।
ଆଜି ରଣେ ପଡ଼ିଥିଲେ ବୀର ଦୁଃଶାସନ
ପଖାଳି ଥାଆନ୍ତେ ତୁମ୍ଭ କେଶ ଭୀମସେନ ।
ତାହାହେଲେ ସରିଥାନ୍ତା ଆଜି ତୁମ୍ଭ ଦୁଃଖ
ଶୁଣି ଯାଜ୍ଞସେନୀ ହୋଇ ବହୁତ ବିମୁଖ ।
ବୋଇଲେ ହେ ଦୟାମୟ କେତେ ବାଳ ସୁତ
ସମର ମଧ୍ୟେ ଅଦ୍ୟାପି ଅଛନ୍ତି ଜୀବିତ ।
ମୋର ଭାଗ୍ୟ ଦୋଷେ ସିନା ଅଭିମନ୍ୟୁ ପୁଅ
ଘଟୋତ୍କଚ ଘଟକାଦି ରଣେ ହେଲେ କ୍ଷୟ ।
ମୋର ପିତାଙ୍କର ହେଲା ମସ୍ତକ ଛେଦନ
ଏମାନଙ୍କୁ ମରାଇଣ ଯାଙ୍କ ବୀରପଣ ।
ଏ ପାଞ୍ଚଭାଇ ମୁଖକୁ ଟିକେ ଲାଜ ନାହିଁ
ବଡ଼ ବଳୀ ବୋଲି ମନେ ଥାନ୍ତି ଗର୍ବ ବହି ।
ଭୀଷ୍ମ ଶରଶଯ୍ୟା କଲେ ଭୂରିଶ୍ରବା ହତ
ଜୟଦ୍ରଥକୁ ମାଇଲେ ଭଉଣୀର ନାଥ ।
ଦ୍ରୋଣ ଗୁରୁଙ୍କୁ ମାରିଣ କଲେ ଗୁରୁଦ୍ରୋହ
ସତାଣୋଇ ଭାଇ ଯେହୁ ଅଟନ୍ତି ନିରୀହ ।
ନିର୍ଦ୍ଦୋଷୀ ମାରିବା ପାଇଁ ହୋଇତ ଉସତ
ଦୋଷୀମାନେ ଅଦ୍ୟାବଧି ଅଛନ୍ତି ଜୀବିତ ।
ଦେଖ ଶକୁନି ଅଟଇ କେଡ଼େ ଦୁରାଚାର
ପଶା ଖେଳାଇ ଜିଣିଲା ରାଜ୍ୟ ଏହାଙ୍କର ।
ପରିଶେଷେ ବସାଇଲା କୁରୁସଭା ତଳେ
ଏ ସକଳଭୃତ୍ୟ ପ୍ରାୟେ ହୋଇଲେ ସେ କାଳେ ।
ସିଂହାସନେ ଦୁର୍ଯ୍ୟୋଧନ ବସି ଆଜ୍ଞା ଦେଲା
ମୋର ବାଳ ଧରି ଦୁଃଶା ଘରୁ ଘେନିଗଲା ।
ଯେତେକ କଟୁ ବଚନ କହିଛି ପାମର
ପରେ ବିବସନ କଲା ସେ ମୂରୁଖ ଛାର ।
ଏମନ୍ତ ଯେ ଦୋଷୀମାନେ ଜୀବିତ ସମାଧି
ନିର୍ଦ୍ଦୋଷୀ ଯେତେକ ତାଙ୍କୁ ଅଛନ୍ତି ଏ ବଧି ।
ଶୃଗାଳମାନଙ୍କୁ ମାରି ଦେଖାଇଲେ ଟାଣ
ସମର୍ଥ ଲୋକଙ୍କୁ ଡରି ଭଙ୍ଗ ଦେଲେ ରଣ ।

ସିଂହ ବୋଲି ଏହାଙ୍କୁ ମୁଁ ଥିଲି ଯେ ବିଚାରି
ଜାଣିଲି ଶୃଗାଳଠାରୁ ହୀନ ପଶୁପରି ।
ନ ଜାଣି ରାଢ଼େଣୀ ମୁହିଁ କିମ୍ପା କଲି ପଣ
ଏବେ ହୀନ ନାରୀ ସଙ୍ଗେ ସରି ହେଲି ଜାଣ ।
ମୋତେ କହିଥିଲେ ଦମ୍ଭେ ଏହି ଭୀମସେନ
ଦୁଃଶା ଭୁଜ ରକ୍ତେ କେଶ କରିବି ବନ୍ଧନ ।
ସତ ପ୍ରାୟ ମଣି ମୁହିଁ କରିଥିଲି ଆଶ
କେଶ ନ ବାନ୍ଧିଲି ତେଣୁ ପନ୍ଦର ବରଷ ।
କୃଷ୍ଣ ବୋଲି କ୍ଷତ୍ରିକୁଳେ ଏହା କି ହୋଇଛି
ସ୍ୱାମୀ ଥାଉଁ ଥାଉଁ ଭାର୍ଯ୍ୟା ଲଜ୍ଜାରେ ମରୁଛି ।
ଶୁଣି ଭୀମସେନ ତାଙ୍କୁ ଦେଲେକ ଉତ୍ତର
ଆଉ ଝିଙ୍ଗାସ ନ କର ଆଗୋ ରାମାବର ।
କାଲି ନିଶ୍ଚୟ ତୁ କେଶ କରିବୁ ବନ୍ଧନ
ଏଥିରେ କିଛି ହିଁ ଆଉ ନ ବିଚାର ଆନ ।
ଦୁଃଶାସନ ବେନିଭୁଜ କାଲି ଉପାଡ଼ିବି
ଏହା ନ କଲେ ଅନଳ ଜାଳି ମୁଁ ମରିବି ।
ଆଜି ନିଶ୍ଚେ ସଖୀ ତୋର ପୂରିଥାନ୍ତା ଆଶ
ସେ ଦୁଃଶାକୁ ଖୋଜୁ ଖୋଜୁ ଦିନ ହେଲା ଶେଷ ।
ଏକଥା ଶୁଣି କହିଲେ ଦ୍ରୁପଦ କୁମାରୀ
ତିନିବାର ସତ୍ୟ କଲେ ଅଗ୍ନି ଛୁଇଁକରି ।
ତିନିବାର ସତ୍ୟ କଲେ ବୀର ବୃକୋଦର
କାଲି ନିଶ୍ଚୟ ଗୋ ଦୁଃଶା କରିବି ସଂହାର ।
ପୁଣି ଭୀମକୁ ବୋଲନ୍ତି ଦ୍ରୁପଦ ଦୁଲାଳୀ
ଦୁଃଶା ନ ମଲେ ମରିବି କାଲି ଅଗ୍ନି ଜାଳି ।
ଏହି ପରକାରେ ହୋଇ କଥୋପକଥନ
ସକଳେ ପ୍ରବେଶ ହେଲେ ନିଜ ନିକେତନ ।
ନାନାଦି ଉତ୍ସବ କଲେ କଇନ୍ତା ନଗରେ
ନିଶି ଯାପନ କରିଲେ ଅତି ଆନନ୍ଦରେ ।
ନମସ୍ତେ ଶ୍ରୀଜଗନ୍ନାଥ ଜଗତ କାରଣ
ନମସ୍ତେ ଶ୍ରୀ ବାସୁଦେବ କମଳ ଲୋଚନ ।
ସଂସାର ମୋହ ମାୟାରେ ପଡ଼ି ନିରନ୍ତର
ସର୍ବଦା ବୁଡ଼ି ମରୁଛି ଶାନ୍ତି ନାହିଁ ମୋର ।
ବେଳ ଥାଉ ଥାଉ ମୋତେ ସୁଦୟା କରିଣ
ମୋହର ଅଇରି ସୁର ଚକ୍ରରେ ଛେଦିଣ ।
ସୁପଥକୁ ନେଇ ତୁମ୍ଭ ଦାସ ଦାସ କର
ଶାରଳା ଦାସ ମାଗଇ ଏହା ନିରନ୍ତର ।

—୦—

## ଦୁର୍ଯ୍ୟୋଧନର ସତାଣୋଇ ଭ୍ରାତୃ ବଧରେ ସତାଣୋଇ ବଧୂ, ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ଶୋକ

ଅଗସ୍ତିଙ୍କି ପଚାରିଲେ ବିଲଙ୍କ ରାଜନ
ଆହେ ମୁନି ଘେନାକର ମୋର ନିବେଦନ ।
ଦୁର୍ଯ୍ୟୋଧନ ଦଣ୍ଡଭଗ୍ନ ହୋଇ ପଳାଇଲେ
ଧୃତରାଷ୍ଟ୍ର ପୁତ୍ରଶୋକେ କି କି କଥା କଲେ ।
ସେହି କଥା କହି ମୋର ମନ କର ତୋଷ
ଶୁଣି ଅଗସ୍ତି କହନ୍ତି ଶୁଣ ହେ ନରେଶ ।
ଦୁର୍ଯ୍ୟୋଧନ ସୈନ୍ୟ ସବୁ କାଳମୁଖେ ଦେଇ
ରାତ୍ରିକାଳେ ହସ୍ତିନାରେ ପ୍ରବେଶିଲା ଯାଇ ।
ବଧୂମାନେ ପରସ୍ପରେ ପାଇ ସମାଚାର
ଅନ୍ତଃପୁରରୁ ସକଳେ ହୋଇଲେ ବାହାର ।
ଆପଣା ଆପଣା ସ୍ୱାମୀ ଗୁଣକୁ ବାହୁନି
କାନ୍ଦିଲେ ଅତି ଉଚ୍ଚରେ କମ୍ପାଇ ମେଦିନୀ ।
ହସ୍ତର ସୁବର୍ଣ୍ଣ ଚୂଡ଼ୀ ମସ୍ତକରେ କୋଡ଼ି
ଧୂସରିତ ହୋଇ ସର୍ବେ ହେଲେ ଗଡ଼ାଗଡ଼ି ।
କେହି ନାରୀ ପତିଶୋକେ ହୋଇଣ ବିହ୍ୱଳ
ସ୍ୱାମୀକି ଡାକଇ ନାଥ ଆସି ଧରି ତୋଳ ।
ଏ ଦାସୀର ସବୁକଥା ମନରୁ ପାଶୋରି
କାହିଁ ଚାଲିଗଲ ଏବେ ଆସ ବେଗ କରି ।
ପୁଣି କେ ପତିବିହୀନା ହୋଇ ସଂଜ୍ଞାହୀନ
ସ୍ୱାମୀ ବୋଲି ଅନ୍ୟ ନାରୀ କରେ ଆଲିଙ୍ଗନ ।
ଏହିପରି ସର୍ବବାଳୀ କରି କୋଳାହଳ
ରାଜା ସମୀପେ ଚଳିଲେ ହୋଇ ଏକ ଠୁଳ ।
ବୋଇଲେ ମୂଳ କାରଣ ସିନା ଚକ୍ରବର୍ତ୍ତୀ
ବିଧବା କରି ରଖିଲେ ଅକ୍ଷୟ କୀରତି ।
ଭାଇମାନଙ୍କୁ ମରାଇ କେମନ୍ତେ ଅଛନ୍ତି
ନିର୍ଲ୍ଲଜ ବଦନ ଘେନି କାହାକୁ ଦେଖାନ୍ତି ।
କୃଷ୍ଣ ବିଜେ କରିଥିଲେ ମଧ୍ୟସ୍ଥ ପଣରେ
ଜଣ ଜଣକୁ କହିଲେ ସେବକ ପ୍ରକାରେ ।
ପାଞ୍ଚଖଣ୍ଡ ପଡ଼ା ଦିଅ ବୋଲିଣ ମାଗିଲେ
ଗଉଡ଼ ହାଉଡ଼ କହି ତାକୁ ତଡ଼ିଦେଲେ ।
ପ୍ରତିଜ୍ଞା କରି କହିଲେ ସମର କରିବି
ବିନା ଯୁଦ୍ଧରେ ମୃତ୍ତିକା ଟିକିଏ ନ ଦେବି ।
ପୁଣି ତାହାଙ୍କୁ ଅନେକ ଦେଇ ଅପମାନ
ଜୀବନ ନେବାର ପାଇଁ କରିଲେ ଯତନ ।
ମାୟାଧର ପୁରୁଷ ସେ କଲେ କୂଟମତି
ତେଣୁ ଲକ୍ଷ୍ମୀ ଘେନିଗଲେ ସରିଲା ସମ୍ପତ୍ତି ।
ଶକୁନି ବଂଶ ମାଇଲେ ରଖି ବନ୍ଦିଘରେ
ସେହି ଆମ୍ଭର ବଂଶକୁ ମାରେ କୌଶଳରେ ।
ଧିକ ସେ ପାଣ୍ଡବଗଣ ଟିକେ ନାହିଁ ଜ୍ଞାନ
ନିର୍ଦ୍ଦୋଷୀ ମାରନ୍ତି ରଖି କଳଙ୍କ ଜୀବନ ।
ଆମ୍ଭ ସମସ୍ତଙ୍କୁ ବୃଥା କରାଇଲ ରାଣ୍ଡ
କେଉଁ ସୁଖ ଲାଭ କଲ ଧରି ତୁମ୍ଭ ପିଣ୍ଡ ।
ଧିକ ତୁମ୍ଭର ଶରୀର ମାଉଁସ ମିଳାଉ
ମୂର୍ଦ୍ଧା ଫାଟିଯାଉ ଆଉ ଦେହ ଗୃଧ୍ର ଖାଉ ।
ଆମ୍ଭ ଦଶା ଭୋଗ କରୁ ଭାନୁମତୀ ରାଣୀ
ଏହା କହି ମୁଣ୍ଡକୋଟି କାନ୍ଦନ୍ତି ତରୁଣୀ ।
ଏ ସକଳ କଥା ଶୁଣି ରାଣୀ ଭାନୁମତୀ
ମାନଗୋବିନ୍ଦ ପାଶକୁ ଚଳିଲେ ତଡ଼ତି ।
ବୋଇଲେ ହେ ପ୍ରାଣନାଥ କୁରୁକୁଳ ସାଇଁ
ସମରେ ପଡ଼ିଲେ ଆଜ ସତାଣୋଇ ଭାଇ ।
ତାହାଙ୍କ ସଙ୍ଗରେ ମଲେ ବହୁତ ଯୋଦ୍ଧାଏ
ରହିଲେ ଶକୁନି କର୍ଣ୍ଣ ଦୁଃଶାସନ ରାଏ ।
ଏ ତିନିଙ୍କୁ ଘେନି ରଣ କରିବ କିପରି
ଯାହା ଉଚିତ ହୁଅଇ କର ତା ବିଚାରି ।
ଏକାଳେ ସଞ୍ଜୟ ବୋଲେ ଶୁଣ କୁରୁରାଣ
ମାଇଲା ତୋ ସତାଣୋଇ ପୁତ୍ର ଭୀମସେନ ।
ସଞ୍ଜୟ ମୁଖରୁ ରାଜା ଏ ବଚନ ଶୁଣି
ପଡ଼ିଲା ସେ ବଜ୍ରାଘାତେ ପ୍ରାୟ ନୃପମଣି ।
ଅତ୍ୟନ୍ତ ବିକଳ ହୋଇ କାନ୍ଦେ ଧୃତରାଷ୍ଟ୍ର
ବୃଦ୍ଧକାଳେ ବିହି ମୋତେ ଦେଲୁ ପୁତ୍ର କଷ୍ଟ ।
ଆରେ ଆରେ ବାବୁ ମୋର ଅନ୍ଧର ଲଉଡ଼ି
ଭୀମ ହାତେ ମରିବାକୁ ତୁମ୍ଭେ ଥିଲ ବଢ଼ି ।
ବଜ୍ରାଘାତ ପ୍ରାୟେ ମୋହେ ପଡ଼ିଲା ଗାନ୍ଧାରୀ
କାନ୍ଦିଲେ ପୁତ୍ରମାନଙ୍କ ନାମକୁ ଉଚ୍ଚାରି ।
ବିଦୂରଙ୍କୁ ଚାହିଁ କାନ୍ଦି ରାଜା ଧୃତରାଷ୍ଟ୍ର
ବୋଇଲେ ତୋ ବୋଲ ଏଡ଼ି ଲଭିଲି ଏ କଷ୍ଟ ।
ତୋ କହିବା କଥା ଯେବେ ଆଗୁଁ କରିଥାନ୍ତି
ତେବେ କି ଏ ବୃଦ୍ଧକାଳେ ଏ ଦଶା ଲଭନ୍ତି ।
ଏହା କହି ଦୁର୍ଯ୍ୟୋଧନେ ଆଣିଲେ ଡକାଇ
ବୋଇଲେ ଦୁଃଶାକୁ ଘେନି ଯାଅ ତୁ ପଳାଇ ।
ଏକ୍ଷଣି ଏଠାରେ ନାହିଁ ଶତ୍ରୁ ଚିହ୍ନବର୍ଣ୍ଣ
ଉପଯୁକ୍ତ ବେଳା ଅଟେ ପଳାଅ ନନ୍ଦନ ।
ମୋର ବୋଲ କରି ବାବୁ ପଳା ତୁ ବହନ
ବଂଶରକ୍ଷା ହେବ ତୋର ରହିବ ଜୀବନ ।
ବିଦୂର ବୋଇଲେ ତୁମ୍ଭେ ଶୁଣ ନରନାଥ
ଏତେବେଳକୁ ଏ କଥା କରିଲ ବ୍ୟକତ ।

ଆଗେ ଯେବେ ଦେଇଥାନ୍ତ ପାଞ୍ଚଖଣ୍ଡ ପଡ଼ା
ତେବେ ଲଭନ୍ତ କି ପୁତ୍ରକଷ୍ଟର ଏ ପୀଡ଼ା ।
ଏତେବେଳେ ପାଞ୍ଚଖଣ୍ଡି ପଡ଼ା ଯେବେ ଦେବ
ତେବେ ତୁମ୍ଭର ନିଶ୍ଚୟ ବଂଶରକ୍ଷା ହେବ ।
ତାହା ଶୁଣି ଧୃତରାଷ୍ଟ୍ର କରିଲେ ଉତ୍ତର
ୟା ଛଡ଼ା ଆନ ଉପାୟ ନାହିଁରେ ବିଦୂର ।
କୃଷ୍ଣଙ୍କୁ କହି ସମର ସ୍ଥକିତ କରାଅ
ନାହିଁ ତ ବୁଡ଼ିଲା ବଂଶ ବେଗ କରି ଯାଅ ।
ଏହା ଶୁଣି କହିଲେ ବିଦୂର ଧୀରମତି
ଏବେ ଆଜ୍ଞା ଦିଅ ଯିବି ଆହେ ଚକ୍ରବର୍ତ୍ତୀ ।
ପୁଣି ପ୍ରୀତି କରାଇବି ପାଣ୍ଡବ ସଙ୍ଗରେ
ଦୟା ରଖିଥାନ୍ତି ସଦା ଶ୍ରୀକୃଷ୍ଣ ମୋଠାରେ ।
ପାଣ୍ଡବେ ମୋର କଥାରୁ ନୋହିବେ ବାହାର
ଦ୍ରୌପଦୀ ପ୍ରତିଜ୍ଞା ପରେ କରିବା ବିଚାର ।
ଶୁଣି ଶକୁନି କହଇ ମନେ ରଖି କୂଟ
ଆଗହୁଁ ନ କରି ଏବେ ହୁଅ ଛଟପଟ ।
ପ୍ରଥମରୁ ସର୍ବେ ଥିଲ ହୋଇଣ ନୀରବ
ବିଚାରିଲେ ଅକ୍ଳେଶରେ ମରିବେ ପାଣ୍ଡବ ।
ଏବେ ଯହୁଁ ଆସି ହେଲା ବିପରୀତ ଫଳ
ତହିଁ ମିତ୍ରତା ପାଇଁକି ହେଉନ୍ତ ବ୍ୟାକୁଳ ।
ସବୁ ତ ଗଲାଣି ବୁଡ଼ି ଆଉ ଅଛି କିସ
ଏବେ ମିତ୍ରପଣ କରି ଲଭିବ କି ଯଶ ।
ଏମନ୍ତ ଶୁଣି ବୋଇଲା ରାଜା ଦୁର୍ଯ୍ୟୋଧନ
ଏତେବେଳେ ମିତ୍ରପଣେ ନାହିଁ ପ୍ରୟୋଜନ ।
ମାନ ଅଗ୍ନିରେ ସର୍ବଦା ପୋଡ଼ଇ ମୋ ଚିତ୍ତ
ବଂଶ ବୁଡ଼ାଇ ବଞ୍ଚିବା ନୁହଇ ଉଚିତ ।
ଏ ସକଳ କଥା ମୋତେ ଆନ ନ ରୁଚଇ
ଜୀବନ ରଖିବି କିମ୍ପା ମହାପାପୀ ହୋଇ ।
ଶ୍ରୀକୃଷ୍ଣ ଛାମୁରେ ପଣ କରିଛି ଏମନ୍ତେ
ସମର କରିବି ପ୍ରାଣ ଥିବା ପରିଯନ୍ତେ ।
ପୁଣି ବୋଲେ ମୋ ପ୍ରାଣକୁ ହେଉ ଶତଧିକ
ସମସ୍ତ ମରାଇ କିସ କରିବି ମୁଁ ଏକ ।
ଏମନ୍ତ କହି କ୍ରୋଧରେ କମ୍ପଇ ଶରୀର
ବୋଇଲେ ମୁଁ ନ ଶୁଣିବି ବଚନ କାହାର ।
ଆବର କରିବି ରଣ ନ ହୋଇବ ଆନ
ମୋ ଭାଲପଟରେ ଯାହା ଥିବଟି ଲେଖନ ।
ଯେଉଁମାନଙ୍କର ସତ୍ୟ ବଚନ ଅଟଇ
ସେମାନେ ଆସନ୍ତୁ ମୋର ସଙ୍ଗେ ସଜହୋଇ ।
ତା ନୋହିଲେ ଯେ ଯୁଆଡ଼େ ଯାଅ ମୋତେ ଛାଡ଼ି
ମୋର ରାଜ୍ୟ ହତ ହେଉ ଶତ୍ରୁହାତେ ପଡ଼ି ।

ଏହା କହୁଁ କହୁଁ ହୋଇ ଅତି କୋପାନଳ
ଦୀର୍ଘ୍ୟ ରଡ଼ିଏ ଛାଡ଼ିଲେ ସାଜ ସୈନ୍ୟବଳ ।
ସୈନ୍ୟ ସାଜ ସୈନ୍ୟ ସାଜ ଡାକ ବାଜିଲାକ
ଇନ୍ଦ୍ରପ୍ରସ୍ଥ ପରିଯନ୍ତେ ଶୁଭିଲା ସେ ଡାକ ।
ଦୁର୍ଯ୍ୟୋଧନ ପାଶେ ଆସି କହେ ଦୁଃଶାସନ
ମୋହର ଭାଗେ ରହିଲା ଆଜି ଭୀମସେନ ।
ସତାଣୋଇ ଭାଇକୁ ଯେ କରିଣ ସଂହାର
ବଢ଼ିଯାଇଛି ବହୁତ ଗାରିମା ତାହାର ।
ଆଜି ତାର ରକ୍ତରେ ମୁଁ କରିବି ତର୍ପଣ
ତେବେ ସୋଦରଙ୍କୁ ମୁହିଁ କରିବି କାରଣ ।
ତାହା ଶୁଣି ଦୁର୍ଯ୍ୟୋଧନ କହନ୍ତି ତିଆରି
ଭୀମ ପାଶକୁ ନ ଯିବୁ ବାବୁ ରଣ କରି ।
ଯେ କାଳେ ତୁ ଦ୍ରୌପଦୀକୁ କଲୁ ବିବସନ
ସେ କାଳୁ ଦ୍ରୌପଦୀ କେଶ ନ କଲା ବନ୍ଧନ ।
ପ୍ରତିଜ୍ଞା କରିଛି ଭୀମ ତୋ ବାହୁ ରକତେ
ଦ୍ରୌପଦୀ କେଶ ବନ୍ଧନ କରିବ ଯୁକତେ ।
ତେଣୁ କହୁଛିରେ ବାବୁ ନ କର ଗାରିମା
ଭୀମା ରଣ କରୁଥିବ ନ ମାରିବୁ ସୀମା ।
ତୋର ପାଇଁ ରହିଅଛି ମୋର ବଡ଼ପଣ
ତୋ ବିହୀନେ ସରିଯିବ ମୋର ସବୁ ଟାଣ ।
ତୁହି କେବଳ ଅଟୁରେ ମୋ ସଖା ସୋଦର
ତୋତେ ପ୍ରମାଦ ପଡ଼ିଲେ ସବୁ ଯିବ ମୋର ।
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ପୁଣି ମାଦ୍ରୀସୁତେ
ସମର କରିବୁ ଯାଇ ଏହାଙ୍କ ସହିତେ ।
ଏହିପରି ଦୁର୍ଯ୍ୟୋଧନ କହନ୍ତି ତିଆରି
ଏହିକାଳେ ଶେଷ ହେଲା ଆସି ବିଭାବରୀ ।
ଜଗନ୍ନାଥ ପଦ୍ମପାଦେ ଦେଇ ଦୃଢ଼ମନ
ଶାରଳା ଦାସ କରିଲା ପଦ୍ୟରେ ଲିଖନ ।

—o—

## କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ଗର୍ଭମଧ୍ୟେ ଅର୍ଜ୍ଜୁନଙ୍କର ବ୍ରହ୍ମାଣ୍ଡ ଦର୍ଶନ

କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଏଥୁଅନ୍ତେ ଯାହା ହେଲା ସମର ବିଧାନ ।
ରଜନୀ ହୁଅନ୍ତେ ଶେଷ ଉଦୟ ଭାସ୍କର
ଅସ୍ତ୍ର ଘେନି ବାହାରିଲେ କଉରବ ବୀର ।
ସଜ ହୁଅ ସଜ ହୁଅ ପଡ଼ିଲା ଚହଲ
ସଜ ହେଲେ ରଥ ଗଜ ଚତୁରଙ୍ଗବଳ ।

ସାତଖର୍ବ ଗଜ ତିନି ଅର୍ବୁଦେକ ରଥ
ଏଗାର କ୍ଷଉଣୀ ଅଶ୍ୱ ଆରୋହୀ ସହିତ ।
ବୀର ତୁର କାହାଳୀ ଯେ ନାଗରା ବଜାଇ
ଚିରାଳ ପତାକାମାନ ଆକାଶେ ଉଡ଼ଇ ।
ଲକ୍ଷେକ ନବଯୁବତୀ ଘେନି ଅର୍ଘ୍ୟଥାଳି
ଦୁର୍ଯ୍ୟୋଧନେ ବନ୍ଦାଇଲେ ଦେଇ ହୁଳହୁଳି ।
ଦ୍ୱିଜମାନେ ମିଳି ତହିଁ କଲେ ବେଦଧ୍ୱନି
କଲ୍ୟାଣ ବାଞ୍ଛା କରନ୍ତି ସର୍ବ ସିଦ୍ଧମୁନି ।
ଦିବ୍ୟବେଶ ସାଜି ବିଜେ ସୂର୍ଯ୍ୟଙ୍କ କୁମର
ମତ୍ତହସ୍ତୀ ଠାଣି ଜିଣି ଦିଶନ୍ତି ସୁନ୍ଦର ।
ଶଲ୍ୟଙ୍କୁ ବୋଇଲେ ମୋର ରଥ ଚାଳିଦିଅ
ଯହିଁ ନନ୍ଦିଘୋଷ ତାହା ଆଗରେ ରଖାଅ ।
ପ୍ରଥମେ କୃଷ୍ଣ ଅର୍ଜ୍ଜୁନ ସମରେ ମାରିବି
ପରେ ଦୁଇ ମାଦ୍ରୀସୁତ ଭୀମକୁ ଦେଖିବି ।
ତୃତୀୟରେ ଯୁଧିଷ୍ଠିର ଶିଖଣ୍ଡୀ ସହିତ
ମାରିଲେ ଭାରୋଇମଲ୍ଲ ହୋଇବି ମୁହିଁ ତ ।
ଶଲ୍ୟ ବୋଇଲେ ବାଳକ ତୋର ଏ ସ୍ୱଭାବ
ମରିବା ପର୍ଯ୍ୟନ୍ତ ତୁହି ନ ଛାଡ଼ିବୁ ଗର୍ବ ।
କାଳସର୍ପ ସମ ଅଟେ ବୀର ଅରଜୁନ
ତାହାର ଆଗରେ ତୁହି ମଣ୍ଡୁକ ସମାନ ।
ଯେତେବେଳେ ତୁ ଦେଖିବୁ ପାର୍ଥ ନାରାୟଣ
ପଳାଇବୁ ସିଂହ ଭୟେ ହସ୍ତୀର ସମାନ ।
ଶୁଣି କର୍ଣ୍ଣ ବୋଇଲେ ହେ ଶୁଣ ଶଲ୍ୟବୀର
ଦେଖିବ କ୍ଷତ୍ରିୟପଣ କେମନ୍ତ ମୋହର ।
ପାଣ୍ଡବଙ୍କ ସୈନ୍ୟ ଆଜି ନ ରଖିବି ଏକ
ରଥରେ ବସି ସକଳ କଥା ମୋର ଦେଖ ।
କେବଳ ସଖା ହୋଇଣ ରଥ ଚାଳିଦେବ
ପାଣ୍ଡବଙ୍କୁ କେଉଁରୂପେ ରଖିବେ ମାଧବ ।
ତାହା ଶୁଣି ଶଲ୍ୟବୀର ନ ଦେଇ ଉତ୍ତର
ବିଚାରିଲେ କର୍ଣ୍ଣ ବୃଥା କରଇ ଚାତର ।
ସାରଥି ମାତ୍ରକ ତାର କି ବଳ ଅଛଇ
ତେଣୁ ବାହାରିଲେ ରଥ ମଣ୍ଡିବାର ପାଇଁ ।
କର୍ଣ୍ଣ ରଥ ମଣ୍ଡାଇଲେ କରିଣ ଯତନ
ଦାଉ ଦାଉ ଦିଶେ ଲାଗି ସୂର୍ଯ୍ୟଙ୍କ କିରଣ ।
ଦ୍ୱିଜମାନେ ମିଳି ବେଦ କରିଲେ ପଠନ
ଶୁଭ ଅନୁକୂଳେ କର୍ଣ୍ଣ ଚଳିଲେ ବହନ ।
ପ୍ରାତଃକାଳେ ରଣକ୍ଷେତ୍ରେ ହୋଇଲେ ପ୍ରବେଶ
ସୈନ୍ୟ ଘେନି ବାହାରିଲେ କୌରବ ନରେଶ ।
ପୂର୍ବେ ଦିଗରେ ବିକାଶ ହୋଇଲେ ତପନ
ନନ୍ଦିଘୋଷେ ବିଜେ କଲେ ବୀର ଅରଜୁନ ।
ସାରଥି ହୋଇ ଶ୍ରୀକୃଷ୍ଣ କଲେ ଶଙ୍ଖଧ୍ୱନି
ସେହିଦିନ ଶୁଦ୍ଧସ୍ନାନ କଲେ ଯାଜ୍ଞସେନୀ ।
ଅଗ୍ନି ଭିତରେ ପଶିଣ ଶରୀର ପଖାଳି
ବାହାର ହୋଇଲେ କରେ ଧରି ଅର୍ଘ୍ୟଥାଳି ।
ଶ୍ରୀ ବସୁଦେବଙ୍କ ଆଗେ ଅର୍ଘ୍ୟଦେଲେ ନେଇ
ଆଗ୍ରହ ସହିତ ତାହା ନେଇ ଯଦୁସାଇଁ ।
ବୋଇଲେ ଭୀମକୁ ଦିଅ ଆନେ କିସ କାର୍ଯ୍ୟ
ଦୁଃଶାସନକୁ ନିଶ୍ଚୟ ମାରିବ ସେ ଆଜ ।
ତୁମ୍ଭର ପ୍ରତିଜ୍ଞା ଯାହା କରିବେ ପାଳନ
ମାନ ଉଦ୍ଧାରିବେ ନିଶ୍ଚେ ବୀର ଭୀମସେନ ।
ତାହା ଶୁଣି ଯାଜ୍ଞସେନୀ କରିଲେ ଉତ୍ତର
ଆହେ ଇଚ୍ଛାମୟ ହରି ଯେ ଇଚ୍ଛା ତୁମ୍ଭର ।
ଏ ଭବସାଗରେ ପ୍ରଭୁ ରଖାଅ କୀରତି
ମୁଁ ତୁମ୍ଭର ଦାସୀ ଅଟେ ଆହେ ରମାପତି ।
ଅସୀମ ବୀରତ୍ୱପଣ ଅଟଇ ତୁମ୍ଭର
ତୁମ୍ଭେ ଏ ଦୁଃଖସାଗରୁ ମୋତେ ପାରିକର ।
ଭୀମ ବୋଇଲେ ଦୁଃଶାର ଉପାଡ଼ିବି ଭୁଜ
ତା ନୋହିଲେ ବିଷ ଖାଇ ମରିବି ମୁଁ ଆଜ ।
ଆନ କଥାରେ ମୋହର ପ୍ରୟୋଜନ ନାହିଁ
କିପରି ମରିବି ଦୁଃଶା ଏହା ହିଁ ଭାବଇ ।
ଦ୍ରୌପଦୀ ବୋଇଲେ ଆଜ ଦୁଃଶା ଯେ ନ ମଲେ
ନିଶ୍ଚୟ ମରିବି ମୁହିଁ ଜାଣ ଏହା ଭଲେ ।
ଏହି ଶରୀରେ ମୋହର ପ୍ରୟୋଜନ କିସ
ବହୁଦିନ ତୁମ୍ଭଙ୍କୁ ମୁଁ କଲି ଯେଣୁ ଆଶ ।
ଯାଅ ଯାଅ ତୁମ୍ଭଙ୍କୁ ଯେ ଧର୍ମ ହେଉ ସାହା
ଯେହ୍ନେ ଦୁଃଶାର ଉପାଡ଼ ଆଜି ଦୁଇ ବାହା ।
ଭୀମ ବୋଲେ ସପ୍ତଦଶ ଦିନ ହେଲା ରଣ
ଆଜି ଅବଶ୍ୟ ଦୁଃଶାର ଘେନିବି ପରାଣ ।
ଯେତେବେଳେ ସହଦେବ ଆସିବ ଝପଟି
ବସିଲା ସ୍ଥାନରୁ ତୁମ୍ଭେ ବେଗେ ଯିବ ଉଠି ।
ତୁମ୍ଭର ବଚନ ସଖୀ ଆଜି ଫଳୁ ମୋତେ
ଏହାକହି ଅର୍ଘ୍ୟ ଘେନି ବସିଲେ ସେ ରଥେ ।
କୁମ୍ଭ କୃଷ୍ଣ ଦ୍ୱିତୀୟା ଯେ ଅଟେ ଚନ୍ଦ୍ରବାର
ଉତ୍ତରାଫାଲ୍‌ଗୁନୀ ଋକ୍ଷ ଭୋଗ ସେ ଦିନର ।
ବିଷ୍ଟି ନାମରେ କରଣ ଅତି ଗଣ୍ଡ ଯୋଗ
କୁମ୍ଭ ସଙ୍କରାନ୍ତିରୁ ଯେ ଏକଦିନ ଭୋଗ ।
ଉଦୟଗିରିକି ବଳି ଉଦେ ମାରତଣ୍ଡ
ତଇତିଳ ଯୋଗ କୁମ୍ଭଲଗ୍ନ ଚାରିଦଣ୍ଡ ।
ଏ ଚାରିଦଣ୍ଡ ମଧ୍ୟରେ ପ୍ରବେଶ କିରୀଟୀ
ଛଦଣ୍ଡକାଳ ବେଳାରେ କର୍ଣ୍ଣ ତାଙ୍କୁ ଭେଟି ।

କର୍ଣ୍ଣ ପାର୍ଥ ରଥ ଯହୁଁ ହେଲା ଭେଟାଭେଟି
କର୍ଣ୍ଣକୁ ଦେଖି କ୍ରୋଧରେ ଜଳିଲେ କିରୀଟୀ ।
ସତାଣୋଇ ବଳ ଧନୁ କର୍ଣ୍ଣଙ୍କର କରେ
ସହସ୍ର ନାରାଚ ଯୋଖି ବିନ୍ଧିଲେ ସେ ଖରେ ।
ତାହା ଦେଖି ଅରଜୁନ କରି କୋପ ଦୃଷ୍ଟି
ବାବଲ ଶରରେ ସବୁ ପକାଇଲେ କାଟି ।
ଅସ୍ତ୍ର ବ୍ୟର୍ଥ ହେବା ଦେଖି ଆଦିତ୍ୟ ନନ୍ଦନ
ବୋଇଲେ ଆରେ ଅର୍ଜୁନ ଶୁଣ ମୋ ବଚନ ।
ବାଳକ ଗୁଡ଼ାଏ ମାରି ହୋଇକରି ଦୋଷୀ
ବିଚାରିଛୁ ସମରରେ ମୁଁ ବଡ଼ ସାହସୀ ।
ପାର୍ଥ ବୋଇଲେ ତୁମ୍ଭେ ତ ବଡ଼ ପୁଣ୍ୟବନ୍ତ
ଅଧର୍ମେ ଶକଟାବ୍ୟୁହ କରିଲ ଯେମନ୍ତ ।
ଚଉଦ ବର୍ଷର ମୋର ଅଭିମନ୍ୟୁ ପୁତ୍ର
ତୁମ୍ଭେ ପରା କରାଇଲ ତାହାକୁ ନିହତ ।
ଧୃତରାଷ୍ଟ୍ର ବିଦୁର ଯେ ପଣ୍ଡୁ ତିନିଭାଇ
ଏକ ପିଅରହୁଁ ଆନ ଏହାଙ୍କର ନାହିଁ ।
ଭିନ୍ନାଭିନ୍ନ ନୁହନ୍ତି ସେ ଏକ ଆତ୍ମା ପରି
ତୁମ୍ଭ କୂଟ କପଟରେ ହେଲେ ଏତେ ସରି ।
ଦୁଇକୁଳେ ଲଗାଇଲେ ତୁମ୍ଭେ ସିନା ବାଦ
ତୁମ୍ଭର ପାଇଁ ଘଟିଲା ଆସି ଏ ପ୍ରମାଦ ।
ହେ କର୍ଣ୍ଣ ଉଭୟ କୁଳ ତୁମ୍ଭେ ବୁଡ଼ାଇଲ
ଏବେ ତ କୁରୁକୁଳକୁ ସମୂଳେ ମାଇଲ ।
ତାହା ଶୁଣି କହୁଅଛି କର୍ଣ୍ଣ ମହାବୀର
ଏବେ ଶୁଣରେ ଅର୍ଜୁନ ମୋ କହିବା ଗିର ।
ଆଜି ମୋହର ସମର ଦେଖିବୁ ସାକ୍ଷାତେ
ପଣ୍ଡୁ କୁଳକୁ କେମନ୍ତେ ରଖିବେ ଅଚ୍ୟୁତେ ।
ପଚାରୁ ପଚାରୁ ସେହି ମହାବଳୀ କର୍ଣ୍ଣ
ସୂର୍ଯ୍ୟସମ ଶତେ ଶର ବିନ୍ଧିଲା ବହନ ।
ଆକାଶ କମ୍ପିଲା ସେହି ନାରାଚ ଆସନ୍ତେ
ଉପରେ ଶୁଭଇ ଯେହ୍ନେ ପଡ଼ଇ ନିର୍ଘାତେ ।
ବରୁଣ ନାରାଚ ଧରି ବିନ୍ଧିଲାକ ପାର୍ଥ
କର୍ଣ୍ଣର ସେ ଶତଶର ହୋଇଲାକ ବ୍ୟର୍ଥ ।
ପୁଣି ପାର୍ଥ କୋପେ ଅସ୍ତ୍ର କରନ୍ତେ ଆଘାତ
ଶଏଭେଡ଼ା ଘୁଞ୍ଚିଗଲା କର୍ଣ୍ଣଙ୍କର ରଥ ।
ସାଧୁ ସାଧୁ ଶୁଭିଲାକ ଆକାଶରୁ ବାଣୀ
ଦେବସଭାରେ ପ୍ରଶଂସା କଲେ ବଜ୍ରପାଣି ।
ପଲକ ମାତ୍ରକେ ଶଲ୍ୟ ରଥକୁ ଆଣନ୍ତି
ଧନ୍ୟ ଧଡ଼୍ୟ ମାମୁଁ ବୋଲି କର୍ଣ୍ଣ ପ୍ରଶଂସନ୍ତି ।
ପୁଣି ବଜ୍ରାବଳି ଶର ମାଇଲେ କିରୀଟୀ
କର୍ଣ୍ଣରଥ ଶଏଭଡ଼ା ପୁଣି ଗଲା ହଟି ।

ଶଏ ନାରାଚ ମାରନ୍ତେ କୋପେ ସୂର୍ଯ୍ୟସୁତ
ଦଶବାଣରେ କିରୀଟୀ ତାହା କଲେ ହତ ।
ମେଘାଶର ପ୍ରହାରିଲେ ବୀର ଧନଞ୍ଜୟ
ପବନାଶରେ କାଟିଲେ ଆଦିତ୍ୟ ତନୟ ।
ପନ୍ନଗାଶରକୁ କର୍ଣ୍ଣ ବିନ୍ଧିଲେ ପାଲଟି
ଗରୁଡ଼ାଶରେ ତାହାକୁ ଛେଦିଲେ କିରୀଟୀ ।
କୋପେ ପାର୍ଥ ଶଏ ଶର ପୁଣି ପ୍ରହାରିଲେ
ଏକ ନାରାଚରେ କର୍ଣ୍ଣ କାଟି ପକାଇଲେ ।
ସହସ୍ରେ ନାରାଚ କର୍ଣ୍ଣ ବିନ୍ଧିଲେକ ପୁଣି
ପଞ୍ଚବିଂଶ ବାଣେ ପାର୍ଥ ପକାଇଲେ ହାଣି ।
ପୁଣି ଶଏଶର ପାର୍ଥ କରନ୍ତେ ଆଘାତ
ହେଳେ ଛେଦି ପକାଇଲେ ସୂର୍ଯ୍ୟଙ୍କର ସୁତ
ପୁଣି ଶକତି ମାଇଲେ କର୍ଣ୍ଣ ମହାମତି
ବାବଲ ଶରେ କାଟିଲେ ପଣ୍ଡୁଙ୍କ ସନ୍ତତି ।
ବାୟବ୍ୟ ଶର ମାଇଲେ ବୀରବର ପାର୍ଥ
ଶଏଭେଡ଼ା ଘୁଞ୍ଚିଗଲା କର୍ଣ୍ଣଙ୍କର ରଥ ।
ଚାହୁଁ ଚାହୁଁ ଶଲ୍ୟ ରଥ ଆଣିଲେ ଉଠାଇ
ପୁଣି ନନ୍ଦିଘୋଷ ଆଗେ ରଖିଲେକ ନେଇ ।
ଏହି ରୂପରେ ସମର କରନ୍ତେ କିରୀଟୀ
ବାର ବାର କର୍ଣ୍ଣ ରଥ ଯାଉଥାଏ ହଟି ।
ତାହା ଦେଖି କୋପ କରି ସୂର୍ଯ୍ୟଙ୍କ ନନ୍ଦନ
ବଜ୍ରାବଳୀ ମହାଶର କରେ ଆବାହନ ।
ସାୟକେ ବସାଇ ତାକୁ ଯହୁଁ ଦେଲେ ଛାଡ଼ି
ପବନ ଗତିରେ ଶର ଆସିଲାକ ମାଡ଼ି ।
ନିବାରି ପାରିଲେ ନାହିଁ ତାକୁ ବୀର ପାର୍ଥ
ସାତଭେଡ଼ା ଘୁଞ୍ଚିଲାକ ନନ୍ଦିଘୋଷ ରଥ ।
ଧନ୍ୟ ଧନ୍ୟ ବୋଲି ଶୁଭେ ଆକାଶରୁ ବାଣୀ
ଧନ୍ୟ ଧନ୍ୟ ବୋଲି ଡାକ ଦେଲେ ଚକ୍ରପାଣି ।
ପୁଣି ପାଞ୍ଚଜନ୍ୟ ଧରି ବାଇଲେ ପ୍ରବଳ
ଶଙ୍ଖ କହେ ଧନ୍ୟ କର୍ଣ୍ଣ ଧନ୍ୟ ତୁମ୍ଭ ବଳ ।
ଶ୍ରୀକୃଷ୍ଣ ମୁଖରୁ ଶୁଣି ପ୍ରଶଂସା ବଚନ
ଧନୁଶର ତଳେ ଥୋଇ ଉଭା ଅରଜୁନ ।
ଅସ୍ତ୍ର ପ୍ରୟୋଗ ନ ଦେଖି ଦେବ ଜଗନ୍ନାଥ
କର୍ଣ୍ଣ ଦର୍ପ ଦେଖି ସ୍ଥିର ହୋଇଲୁ କି ପାର୍ଥ ।
ତୋର ଏ ନ୍ୟୂନତା ଦେଖି ଏକ୍ଷଣି ରାଧେୟ
ପାଣ୍ଡବଙ୍କ ସୈନ୍ୟବଳ କରିଦେବ କ୍ଷୟ ।
ଅର୍ଜୁନ ବୋଇଲେ ଦେବ ଶୁଣ ମୋ କଥାକୁ
ସାତଥର ଘୁଞ୍ଚାଇଲି କର୍ଣ୍ଣର ରଥକୁ ।
ପ୍ରତ୍ୟେକ ଥରରେ ଘୁଞ୍ଚେ ଶଏ ଭେଡ଼ାଯାଏ
ମୋତେ ପ୍ରଶଂସା ନୋହିଲା ସେଥିକି ଟିକିଏ ।

ସାତଭେଢ଼ା ମାତ୍ର ଥରେ ଘୁଞ୍ଚିଲା ମୋ ରଥ
ଏଥିକି ଏଡ଼େ ପ୍ରଶଂସା କଲ ଜଗନ୍ନାଥ ।
ତାହାର ପ୍ରଶଂସା ଶୁଣି ମୁଁ ଦୁଃଖିତ ହୋଇ
ରହିଲଇଁ ସିନା ଧନୁଶର ତଳେ ଥୋଇ ।
କର୍ଣ୍ଣର ପ୍ରଶଂସା ଶୁଣି କର୍ଣ୍ଣରେ ମୋହର
ପ୍ରାଣ ନ ଯାଇ ରହିଛି ଯାହା ଚକ୍ରଧର ।
ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ରମେଶ
ଦେବତାଙ୍କୁ କୋପ କରୁ ନ ଜାଣି ବିଶେଷ ।
ମୋତେ ବୃଥା ଦୋଷ ଦେଇ ମନେ କରୁ ତାପ
ମୋତେ ଅଗୋଚର ଅଟେ କର୍ଣ୍ଣ ବୀର ଦର୍ପ ।
ନ ଜାଣିବା ପଣେ ସିନା ବୋଲୁ ଧନଞ୍ଜୟ
କର୍ଣ୍ଣର ରଥ କେବଳ ତୁଳାଗଦା ପ୍ରାୟ ।
ମହା ମନ୍ଦିରକୁ ଜିଣେ ନନ୍ଦିଘୋଷ ଭାର
ଚଉଦ ସହସ୍ର ବଳେ ବସେ ହନୁବୀର ।
ଦେଖ ନନ୍ଦିଘୋଷ ପୀଢ଼ କେମନ୍ତ ବୃହତ
ଚାରିମେଘ ରହିଛନ୍ତି ଯହିଁରେ ଏକତ୍ର ।
ରଥର ଦକ୍ଷିଣ କୋଣେ ପୁଣି ଦେଖ ଯାଇଁ
ଈଶ୍ୱର କୁବେର ଘେନି ରହିଛନ୍ତି ଯହିଁ ।
ନୈର୍ଋତ କୋଣକୁ ପୁଣି ଦେଖଇ ଅର୍ଜ୍ଜୁନ
ସ୍ତମ୍ଭ ଭିତରେ ଅଛନ୍ତି ଦେବତା ପବନ ।
ପଶ୍ଚିମ କୋଣକୁ ଦୃଷ୍ଟି କରରେ ବିଜୟ
ରଥସ୍ତମ୍ଭେ କରିଛନ୍ତି ବରୁଣ ବିଜୟ ।
ସତ୍ୟ ତ୍ରେତୟା ଦ୍ୱାପର ଯୁଗମାନେ ମିଳି
ହୋଇଛନ୍ତି ନନ୍ଦିଘୋଷ ରଥରେ ଯୁଆଳି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମାଦି କୋଣ
ହୋଇଛନ୍ତି ଅଶ୍ୱଯୋଚା ଦଉଡ଼ି ତୁ ଜାଣ ।
ଶଙ୍ଖପଦ୍ମ ମହାପଦ୍ମ କର୍କୋଟ ତକ୍ଷକ
ବାନ୍ଧିଣ ଦଉଡ଼ି ଏହୁ ହୋଇଛନ୍ତି ଦେଖ ।
ପ୍ରଳୟ ତାରଣକାରୀ ଏହି ଚାରିଘୋଡ଼ା
ଏ ରଥକୁ ଘୁଞ୍ଚାଇଲା କର୍ଣ୍ଣ ସାତବେଢ଼ା ।
ଏଥକୁ କର୍ଣ୍ଣ କିମ୍ପାଇ ଧନ୍ୟ ନ ହୋଇବ
ବୋଇଲେ ଶତ୍ରୁକୁ ଧନ୍ୟ କଲ ହେ ମାଧବ ।
ପୁଣି ହିଁ ବୋଲୁଛ ଦେହେ ପ୍ରାଣ କିବା ଅଛି
ପାର୍ଥ ତୋ ମନେ ବିଶେଷ ଭ୍ରମ ଯେ ହୋଇଛି ।
ଦେଖ ଦେଖ କହି କୃଷ୍ଣ ବିସ୍ତାରିଲେ ପାଟି
ସପ୍ତବ୍ରହ୍ମାଣ୍ଡ ରହିଛି ଦେଖିଲେ କିରୀଟୀ ।
କାହିଁ ନଦୀ କାହିଁ ଗିରି କାହିଁ ବନ ଘୋର
ଏ ସକଳ ଦେଖି ପାର୍ଥ ହୋଇଲା କାତର ।
ହିମାଦ୍ରିର ସପ୍ତଶୃଙ୍ଗ ମେରୁ ଯେ ମନ୍ଦର
ଦେଖି ପାର୍ଥ ବିଚାରନ୍ତି ରଥ କେଡ଼େ ଭାର ।
ପୁଣି ଦେଖିଲେ ଅର୍ଜ୍ଜୁନ ସପ୍ତଦ୍ୱୀପ ମହୀ
ସାତ ସମୁଦ୍ର ଘେରିଛି ସାତଥର ହୋଇ ।
କାହିଁ ରାମାୟଣ ଯୁଦ୍ଧ ହୁଏ ଭୟଙ୍କର
ରାମଙ୍କ ସଙ୍ଗେ ରାବଣ କରୁଛି ସମର ।
କାହିଁ ଦୁର୍ଗା ସହିତରେ ମହିଷ କୌଣପ
ସମର କରଇ ସୈନ୍ୟ ଘେନିଣ ଅମାପ ।
କାହିଁ ଭାରତ ସମର ଅର୍ଜ୍ଜୁନ ଦେଖନ୍ତି
କେତେକେତେ ମହାରଥୀ ମରି ପଡ଼ିଛନ୍ତି ।
କାହିଁ ଦଶ ଅବତାର ମୂର୍ତ୍ତି ନାରାୟଣ
କୃଷ୍ଣଙ୍କ ଗର୍ଭେ ରହିଛି ସକଳ ପୁରିଣ ।
ଏ ସକଳ ଦେଖି ପାର୍ଥ ରଥରୁ ଓହ୍ଲାଇ
ଶ୍ରୀକୃଷ୍ଣଙ୍କ ପାଦତଳେ ପଡ଼ିଲେକ ଯାଇ ।
ଉଠି ବୋଇଲେ ହେ ନାଥ ତୁମ୍ଭେ ମାୟାଧର
ମୁଁ କାହୁଁ ଜାଣିବି ବୀର ମାନବ ମାତର ।
ଏବେ ମୁଁ ଜାଣିଲି ତୁମ୍ଭ ଦୟା ମୋହଠାରେ
ସଦା ଥାଏ କହି ଧନୁ ଧଇଲେ ହସ୍ତରେ ।
ଜୟ କଳାକାର ମୁଖ ଶରଣ ପଞ୍ଜର
ଜୟ ହେ ନୀଳାଦ୍ରି ସିଂହ ଦୁଃଖୀ ଦୁଃଖ ହର ।
ଆହେ ପ୍ରଭୁ ଦୟାମୟ ଶଙ୍ଖ ଚକ୍ର ହସ୍ତ
ତୁରିତେ ଛେଦନ କର ମୋହର ଦୁରିତ ।
ଏ ଭବ ସାଗରେ ପଡ଼ି ନିଶ୍ଚେଁ ଗଲି ବୁଡ଼ି
ତୁମ୍ଭ ନାମ ନ ଭଜିଲି ଦିନେ ହେଲେ ହୁଡ଼ି ।
ସର୍ବଦା ପାପ ପଥରେ ଦିନ ଗଲା ମୋର
କେମନ୍ତ ତରିବି ଆଉ ଏ ଭବସାଗର ।
ତୁମ୍ଭରି ନାମ କେବଳ ସେ ପଥକୁ ଭେଳା
ମୋର ବାଧା ବିଘ୍ନ ଯାହାଛେଦ ଚକାଡୋଳା ।
ତୁମ୍ଭ ନାମ ଜପିବାକୁ ଅହର୍ନିଶି ବସି
ଶାରଳା ଦାସ ସର୍ବଦା ହୁଏ ଅଭିଳାଷୀ ।

—o—

## କର୍ଣ୍ଣ ଯୁଧିଷ୍ଠିରଙ୍କ ଯୁଦ୍ଧ, କର୍ଣ୍ଣଦ୍ୱାରା ଯୁଧିଷ୍ଠିରଙ୍କ ଅପମାନ ଓ କର୍ଣ୍ଣର ଜନ୍ମ ବୃତ୍ତାନ୍ତ

ଏଥିଉତ୍ତାରୁ ପୁଛନ୍ତି ବିଲଙ୍କ ରାଜନ
ହେ ଅଗସ୍ତି ମୁନି ଶୁଣ ମୋର ନିବେଦନ ।
ପାର୍ଥ ଧନୁଶର ଥୋଇ ଅଭିମାନୀ ହେଲେ
ଶ୍ରୀକୃଷ୍ଣ ବହୁତ ରୂପେ ବୁଝାଇ କହିଲେ ।
ପୁଣି କର୍ଣ୍ଣ କାହା ସଙ୍ଗେ କରିଲେ ସମର
ସେହି କଥା ଶୁଣିବାକୁ ଇଚ୍ଛା ହୁଏ ମୋର ।

କହନ୍ତି ଅଗସ୍ତି ମୁନିଶୁଣ ହେ ରାଜନ
ସମରସ୍ଥଳେ ପାର୍ଥକୁ ନ ଦେଖିଣ କର୍ଣ୍ଣ ।
ଯୁଧିଷ୍ଠିର ସମ୍ମୁଖରେ ରଥ ନେଇ କଲା
ବାଛି ବାଛି ଲୁହାଶର ତାହାକୁ ମାଇଲା ।
ସେହି ପାଞ୍ଚଗୋଟି ଶର ଅତି ତୀକ୍ଷ୍ଣମୁନା
ବାଜନ୍ତେ ଭେଦିଲା ଯାଇ ଯୁଧିଷ୍ଠିଙ୍କ ସ୍ନେହା ।
ତହୁଁ ଧର୍ମସୁତ ହୋଇ ଅତିଶୟ କ୍ରୁଦ୍ଧ
କର୍ଣ୍ଣର ସଙ୍ଗେ ଆରମ୍ଭ କରିଲେକ ଯୁଦ୍ଧ ।
ପାଞ୍ଚଶର ମାଇଲେ ସେ ଧନୁରେ ବସାଇ
ପୁଣି ନଅଶର ଘେନି ମାଇଲେ ତୁହାଇ ।
ଏମନ୍ତେ କର୍ଣ୍ଣ ନାରାଚ ହୋଇଲା ଛେଦନ
ତହୁଁ ଯୁଧିଷ୍ଠିର ଡାକି ବୋଇଲେ ବଚନ ।
ଆରେ କର୍ଣ୍ଣ ମୋ ହାତରେ ପଡ଼ିଅଛୁ ଆଜ
ତୋର ପାଞ୍ଜି ପୋଛିଲାଣି ନିର୍ଣ୍ଣେ ଯମରାଜ ।
ଏହା କହି ବିଂଶଶର ପୁଣି ପ୍ରହାରିଲେ
ଦଶ ନାରାଚରେ କର୍ଣ୍ଣ କାଟି ପକାଇଲେ ।
ପୁଣି ଶଏଶର ଧର୍ମ କରିଲେ ପେଷଣ
ଏକ ଶର ମାରି କର୍ଣ୍ଣ କରେ ନିବାରଣ ।
ଦୁଇଶ ନାରାଚ ତହୁଁ ମାଇଲେ ଯୁଧିଷ୍ଠି
ବଜ୍ରବାଣ ମାରି କର୍ଣ୍ଣ ତା କରିଲେ ନଷ୍ଟି ।
ବାବଲ ପଞ୍ଚବାଣ ଯେ ବିନ୍ଧିଲେ ରାଧେୟ
ଆସନ୍ତେ ଛେଦିଲେ ତାହା ଯୁଧିଷ୍ଠିର ରାୟ ।
ପୁଣି ଯୁଧିଷ୍ଠି ବିନ୍ଧିଲେ ଟାଣ ଶର ଧରି
ଦେଖି ତା ବିନ୍ଧିଲା କର୍ଣ୍ଣ ଶର ଶତେ ଚାରି ।
କୋପେଣ ବିନ୍ଧିଲା ସେହୁ ଅଙ୍ଗଦେଶ ଈଶ
ଯୁଧିଷ୍ଠିଙ୍କ ରଥ ଅଶ୍ୱ ସବୁ ହେଲା ଧ୍ୱଂସ ।
ଧର୍ମର ନନ୍ଦନ ତହୁଁ ହେଲେ ପାଦଗତି
ଧନୁ ଧରି ଯୁଦ୍ଧେ ପୁଣ ନାରାଚ ବିନ୍ଧନ୍ତି ।
ମନରେ କୋପ ବହିଣ ଆଦିତ୍ୟର ସୁନୁ
ପୁଣି ଛେଦି ପକାଇଲେ ଯୁଧିଷ୍ଠିର ଧନୁ ।
ଶୂନ୍ୟ ହସ୍ତ ହେଲେ ଯହୁଁ ଧର୍ମ ମହାଭାଗ
ପାଦଗତିରେ ଧାଇଁଲେ ଧରିଣ ଖଡ଼ଗ ।
ହାବୁଡ଼ା ଶରକୁ କର୍ଣ୍ଣ ପ୍ରହାରିଲେ ଟାଣି
ଯୁଧିଷ୍ଠିରଙ୍କ ଖଡ଼ଗ ପକାଇଲେ ହାଣି ।
ପୁଣି ତୀକ୍ଷ୍ଣ ଶର କର୍ଣ୍ଣ କରନ୍ତେ ପ୍ରହାର
ଅଜ୍ଞାନ ହୋଇ ପଡ଼ିଲେ ଧର୍ମ ଯୁଧିଷ୍ଠିର ।
ତହୁଁ କର୍ଣ୍ଣ ନିଜ ରଥୁ ଅଇଲେ ଓହ୍ଲାଇ
ଯୁଧିଷ୍ଠିରଙ୍କର କେଶ ଧଇଲେ ନିଠାଇ ।
ବାମକରେ ଯୁଧିଷ୍ଠିଙ୍କ କେଶ ଧରିଛନ୍ତି
ଦକ୍ଷିଣରେ ଖଣ୍ଡା ଧରି ଉଞ୍ଚାଇ କହନ୍ତି ।

ଆରେରେ ଯୁଧିଷ୍ଠି ମୋର ଛାମୁରେ ପଡ଼ିଲୁ
ଜ୍ୟେଷ୍ଠ ହୋଇ ତୁହି ପରା ଦୟା ନ ବହିଲୁ ।
ଆଜି ତୋହର ମୁଣ୍ଡକୁ ପକାଇଲେ କାଟି
ତେବେ କୋଇନ୍ତାର ହେବି ବଡ଼ ପୁତ୍ରଗୋଟି ।
ଦୁର୍ଯ୍ୟୋଧନ ରାଜାଙ୍କର ହୋଇଲୁ ବିରୋଧୀ
ବଂଶ ବୁଡ଼ାଇ ସାରିଲୁ ସକଳ ସମୃଦ୍ଧି ।
ଏ ରଣଭୂମିରେ ତୋର ସମସ୍ତେ ଅଛନ୍ତି
ରଖିବ କେ ମୋ ଆଗରୁ ଅଛି କା ଶକତି ।
କୃଷ୍ଣ ଅର୍ଜୁନ ସହିତେ ସମସ୍ତେ ଅଛନ୍ତି
ଡାକ ଡାକ ମୋ ଆଗରୁ କେ ରଖିପାରନ୍ତି ।
ଚକ୍ରକୂଟ ବୁଦ୍ଧିରେ ତୁ ନ ପଡ଼ିଲୁ ଜାଣି
ଟିକି ଟିକି କରି ତୋତେ ପକାଇବି ହାଣି ।
ଏବେ କହୁଅଛି ତୋତେ ଶୁଣ ଯୁଧିଷ୍ଠିର
ତୋର ଇଷ୍ଟ ଦେବତାଙ୍କୁ ସୁମରଣା କର ।
ପିତା ମାତା ଭାଇବନ୍ଧୁ କର ତୁ ସ୍ମରଣ
ମୋହର ହାତରେ ଆଜି ନିର୍ଣ୍ଣେ ତୋ ମରଣ ।
ଦ୍ୱିତୀୟରେ ଜନ୍ମହୋଇ ଜ୍ୟେଷ୍ଠ ବୋଲାଇଲୁ
ହେଳା ଯୁଦ୍ଧ କରନ୍ତେ ତୁ ଗାଲୁ କରୁଥିଲୁ ।
ଏହା କହି ରଙ୍ଗବର୍ଣ୍ଣ ଚକ୍ଷୁ ଦେଖାଇଲା
ଶୁଣି ପୁଣି ଯୁଧିଷ୍ଠିର ଚୁଟିକୁ ଝିଙ୍କିଲା ।
ଅତ୍ୟନ୍ତ ଅବଶ ହୋଇ ଧର୍ମଙ୍କ କୁମର
ବିକଳେ ଡାକିଲେ କୁନ୍ତୀମାତା ରକ୍ଷା କର ।
ଧର୍ମଦେବତାଙ୍କ ଅଂଶେ ମୋତେ ଜନ୍ମାଇଛୁ
ବିପଦ କାଳରେ ଆସି ସପକ୍ଷ ନୋହୁଛୁ ।
ତୁହି ଥାଉଁ ଥାଉଁ ମାତା ହୋଇଲି ନିରେଖ
ସଙ୍କଟ କାଳରେ ଆସି ରଖିବୁ ତୁ ରଖ ।
ଏମନ୍ତ କହି କର୍ଣ୍ଣକୁ ବୋଇଲେ ସେ ବାଣୀ
ରେ କର୍ଣ୍ଣ କଟୁ ନ କହି ପକା ମୋତେ ହାଣି ।
ମୋର ଆଉ ଅନ୍ୟ ଇଷ୍ଟ ନାହିଁ ବୋଲି ଜାଣ
କେବଳ କୋଇନ୍ତା ମାତା ରଖିବେ ଶରଣ ।
ଏମନ୍ତ ବଚନ ଶୁଣି ସୂର୍ଯ୍ୟଙ୍କର ବଳି
ସ୍ତମ୍ଭୀଭୂତ ହେଲେ ଆଉ ନ ସ୍ଫୁରିଲା କିଛି ।
କର୍ଣ୍ଣ ସେନାପତି ଯେଣୁ କୁନ୍ତୀଙ୍କ ନନ୍ଦନ
ଭାଗ୍ୟ ଭଲ ସୁମରିଲେ ରହିଲା ଜୀବନ ।
ଆଗହୁଁ ଜନନୀ ମୋତେ ମାଗିଥିଲେ ବର
ପାର୍ଥ ଛଡ଼ା ଅନ୍ୟ ପୁତ୍ର ନ ମାରିବୁ ମୋର ।
ତାହାଙ୍କ ବଚନ ଯେବେ ଅନ୍ୟଥା କରିବି
ମରିବା କାଳରେ ନିଶ୍ଚେ ନରକେ ପଡ଼ିବି ।
କେତେକାଳ ଅବା ମୋର ରହିବ ଜୀବନ
ସେଥିକି ତାଙ୍କ ବଚନ କରିବି ମୁଁ ଆନ ।

ଏବେ ମୁଁ କହୁଛି ତୋତେ ଶୀଘ୍ର ହୋଇ ପଳା
ଯେମନ୍ତେ ନ ଜାଣୁ ଏହା ଧୃତରାଷ୍ଟ୍ର ବଳା ।
ଯଦ୍ୟପି ଜାଣିବ ସେହି ଏ ସକଳ କଥା
ଆମ୍ଭଙ୍କୁ ମନରେ ସେହି କରିବ ଅହନ୍ତା ।
ଏତେ ବୋଲି କରି ଛାଡ଼ିଦେଲା ତାର କେଶ
ପଳାନ୍ତି ଯୁଧିଷ୍ଠି ଅସମ୍ଭାଳ କେଶ ବାସ ।
ଆଉ ନ ରହିଲେ ସେହି ସମରେ ଭୂମିରେ
ପଳାଇଲେ ଇନ୍ଦ୍ରପ୍ରସ୍ଥେ ବିଷମ ଲଜ୍ଜାରେ ।
ଦେଖି ଶଲ୍ୟ ପଚାରିଲେ ଆହେ କର୍ଣ୍ଣବୀର
ଏ କି ଅସମ୍ଭବ କଥା ଦେଖିଲି ତୁମ୍ଭର ।
ବହୁତ ପ୍ରତିଜ୍ଞା କରି କହିଲ ବଖାଣି
ତେଣୁ ସେନାପତି କଲେ କୁରୁ ନୃପମଣି ।
ଆଜିଠାରୁ ସରିଥାନ୍ତା ପାଣ୍ଡବ ସମ୍ପଦ
ଯୁଧିଷ୍ଠିର ମାରିଦେଲେ ଯାଆନ୍ତା ଆପଦ ।
ପାଣ୍ଡବଙ୍କୁ ଏତେ ସ୍ନେହ ଯଦ୍ୟପି ତୁମ୍ଭର
ଆଉ କାହାସଙ୍ଗେ ତେବେ କରିବ ସମର ।
କର୍ଣ୍ଣ ବୋଇଲେ ହେ ଶଲ୍ୟ ଜାଣ ପୂର୍ବକଥା
କୋଇନ୍ତା ଅଟନ୍ତି ମୋର ଗର୍ଭଧାରୀ ମାତା ।
ଅବିବାହୀ କାଳେ କୁନ୍ତୀ ଥିଲେ ପିତା ଘର
ମନ୍ତ୍ର ସତ ବୁଝିବାକୁ ଡାକିଲେ ମିହିର ।
ତାହାଙ୍କ ବୀର୍ଯ୍ୟରୁ ମୁହିଁ ହୁଅନ୍ତେ ଉତ୍ପତ୍ତି
ଗୃହକୁ'ନ ନେଲେ ମାତା ମନେ ପାଇ ଭୀତି ।
ଏକ ମଞ୍ଜୁଷାରେ ମୋତେ ଯତନେ ପୂରାଇ
ନଦୀ ଜଳେ ମେଲିଦେଲେ ମୁହିଁ ଭାସିଲଇଁ ।
କୁନ୍ତୀ ମୋତେ ଭସାଇଲେ ମନୋହର ବନେ
ଭାସି ଭାସି ଲାଗିଲି ମୁଁ ହସ୍ତିନା ଭୁବନେ ।
ରାଧା ଭର୍ତ୍ତା ଆଇଥିଲେ ନଦୀକୁ ଗାଧୋଇ
ମୋତେ ଜଳରୁ ଆଣିଲେ ମଞ୍ଜୁଷା ଫିଟାଇ ।
କୁନ୍ତଭୋଜ ରାଜା ପୁଣି ଘେନି ସେ କୁମାରୀ
ସୋମବଂଶ ପଣ୍ଡୁ ସଙ୍ଗେ ଦେଲେ ବିଭାକରି ।
କୁନ୍ତୀଙ୍କ ଦ୍ୱିତୀୟ ପୁତ୍ର ହୁଅନ୍ତେ ଜନମ
ଯୁଧିଷ୍ଠିର ବୋଲି କରି ଦେଲେ ତାର ନାମ ।
ତେଣୁ ବିନାଶିବା ପାଇଁ କରନ୍ତେ ମୁଁ ପଣ
ମୋହର ପ୍ରତିଜ୍ଞା କୁନ୍ତୀ ପରୋକ୍ଷେ ଶୁଣିଣ ।
ମୋର ନିକଟକୁ ତହିଁ କରିଲେ ବିଜୟ
ବୋଇଲେ ପାଣ୍ଡବ ପାଶେ ଆସରେ ତନୟ ।
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ହୋଇବୁ ରାଜ୍ୟରେ
ଭାଇମାନଙ୍କୁ ପାଳନ କରିବୁ ସୁଖରେ ।
ଏ ବଚନ ଶୁଣି ମୁହିଁ କରିଲି ଉତ୍ତର
ମୁହିଁ ଅଟଇ ତୁମ୍ଭର ପ୍ରଥମ କୁମର ।
ଦ୍ୱିତୀୟକୁ ଜ୍ୟେଷ୍ଠ ନାମ କରିଛ ଅର୍ପଣ
ଯୁଧିଷ୍ଠିରକୁ ମାରିବି ଯେବେ କରି ରଣ ।
ତେବେ ମୁଁ ତୁମ୍ଭର ଜ୍ୟେଷ୍ଠ କୁମର ହୋଇବି
ରାଜ୍ୟେ ଚକ୍ରବର୍ତ୍ତୀ ହୋଇ ସୁଖରେ ରହିବି ।
ଏପରି ନିଷ୍ଠୁର କଥା କହିଲି ମୁଁ ଯହୁଁ
ଗୁରୁଦକ୍ଷିଣା ମାଗିଲେ କୁନ୍ତୀ ମୋତେ ତହୁଁ ।
ସତ୍ୟ କରି ମୁଁ କହିଲି ତାହାଙ୍କ ଛାମୁରେ
ମାଗ ଆଗୋ ମାତା ଯାହା କରିଛ ମନରେ ।
କୁନ୍ତୀ ବୋଇଲେ ତୁ ମୋତେ ଏ ଦକ୍ଷିଣା ଦିଅ
ପାର୍ଥ ବିନା ନ ମାରିବୁ ଆନ ଚାରି ପୁଅ ।
ଅର୍ଜ୍ଜୁନ ତୋତେ ବା ମାରୁ ତୁ ବା ତାକୁ ମାର
ଆନ ଚାରିଙ୍କର ଦୋଷ କ୍ଷମା ଦାନ କର ।
ସତ୍ୟମେଣ୍ଟି ମାଇଲେ ତୁ ବଳେ ବା କୌଶଳେ
ମାତା ହରଣର ପାପ ହେବ ସବୁକାଳେ ।
ଏମନ୍ତ କହିଣ କର୍ଣ୍ଣ ବୋଇଲେ ଶଲ୍ୟଙ୍କୁ
ଶିରୋଧାର୍ଯ୍ୟ କରିଛି ମୁଁ କୋଇନ୍ତା କଥାକୁ ।
କୁନ୍ତୀ ମାତାଙ୍କ ବଚନ ଲଘିଂବି କେମନ୍ତେ
ଯୁଧିଷ୍ଠି ଛାଡ଼ିବି ସତ୍ୟରକ୍ଷାର ନିମନ୍ତେ ।
ଶଲ୍ୟ ବୋଇଲା କୌଣସି ଉପାୟାଦି କରି
ପାଣ୍ଡବେ ଜୟ କରିଲେ କୁରୁଗଲେ ହାରି ।
ଏମନ୍ତ ବିଚାର ଯେବେ ଥିଲା ତୋ ମନରେ
କିମ୍ପା କୌରବ ନାଶିଲୁ ବିଶ୍ୱାସଘାତରେ ।
କର୍ଣ୍ଣ ବୋଇଲେ ହେ ଶଲ୍ୟ ରଥ ଦିଅ ଚାଳି
ନିଶ୍ଚୟ ମାରିବି ଆଜ ପାର୍ଥ ବନମାଳୀ ।
ଭୀମକୁ ମାରିବ ଦୁଃଶା ଭାଙ୍ଗି ମୁଣ୍ଡ ହାଡ଼
ଯୁଧିଷ୍ଠିର ସହଦେବ କଥାକୁ ତ ଛାଡ଼ ।
ଏଣେ ନନ୍ଦିଘୋଷ ଚଢ଼ି ବୀର ଅରଜୁନ
ଖୋଜି ନ ପାଇଲେ କାହିଁ ଯୁଧିଷ୍ଠି ଦର୍ଶନ ।
ତହୁଁ ମନ୍ତ୍ରୀକି ଡକାଇ ପୁଚ୍ଛିଲେ କାରଣ
ସହଦେବ ଜଣାଇଲେ ସର୍ବ ବିବରଣ ।
ଧର୍ମଙ୍କର କେଶ ଧରି କର୍ଣ୍ଣ ଘେନିଗଲା
ଖଡ଼୍ଗ ଘେନି ହାଣିବାକୁ ଉଦ୍ୟମ କରିଲା ।
କୁନ୍ତୀ ରଖ କୁନ୍ତୀ ରଖ ଧର୍ମ ଦ୍ୟନ୍ତେ ଡାକ
ତହୁଁ କର୍ଣ୍ଣ ଛାଡ଼ିଦେଲା କହି ଧିକ ଧିକ ।
ଲାଜେ ପଳାଇଲେ ରଣସ୍ଥାନରେ ନ ରହି
ଇନ୍ଦ୍ରପ୍ରସ୍ଥେ ଶୋଇଛନ୍ତି କବାଟକୁ ଦେଇ ।
ଶୁଣି ପାର୍ଥ ବୋଇଲେ ହେ ଶୁଣ ଜଗନ୍ନାଥ
କର୍ଣ୍ଣଠାରୁ ଅପମାନ ପାଇ ମୋର ଭ୍ରାତ ।
ନ ପୁଣ ହହାଇଦ୍ୟନ୍ତି ଆପଣା ଜୀବନ
ବହନରେ ରଥ ବାହା ଯିବା ଭଗବାନ ।

ବହନ କରି ରଥ ବାହା ଦୟାନିଧି
ଯୁଧିଷ୍ଠିର ଠାକୁରଙ୍କୁ ଆସିବା ପ୍ରବୋଧି ।
ଜଗନ୍ନାଥ ବୋଇଲେକ ଯେବେ ଯିବ ପାର୍ଥ
ପାଣ୍ଡବ ବଳକୁ କର୍ଣ୍ଣ କରିବଟି ହତ ।
ଅର୍ଜୁନ ବୋଇଲେ ଆମ୍ଭେ ଫେରିବାର ଯାଏ
ଭୀମ ନକୁଳ ଶିଖଣ୍ଡୀ ଜଗନ୍ତୁ ସଭିଏଁ ।
ଶୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ହେ ଶିଖଣ୍ଡୀ
ଆମ୍ଭ ଆସିବାର ଯାଏ ଥାଅ ରଣ ମଣ୍ଡି ।
ଯୁଧିଷ୍ଠି ଦେବ ଯେ ଯୁଦ୍ଧୁଁ ଗଲେ ଅପମାନେ
ତାହାଙ୍କୁ ପ୍ରବୋଧି ଆମ୍ଭେ ଆସିବୁ ବହନେ ।
ଆଜ୍ଞା ଦେଇ ଚଳିଗଲେ ଦେବ ହୃଷୀକେଶ
ହୋଇଲେ ଯାଇଣ ଇନ୍ଦ୍ରପ୍ରସ୍ଥେ ପରବେଶ ।

—0—

## ଯୁଧିଷ୍ଠି ଅର୍ଜ୍ଜୁନଙ୍କୁ ଲାଞ୍ଛନା କରିବା ଓ ଅର୍ଜ୍ଜୁନଙ୍କ କୋପ

ପଚାରିଲେ ବୈବସ୍ୱତ ମନୁ ନରପତି
ଶୁଣ ହେ ଅଗସ୍ତି ମୁନି ମୋହର ଭାରତୀ ।
ଯୁଧିଷ୍ଠି ଇନ୍ଦ୍ରପ୍ରସ୍ଥକୁ ଗଲେ ଯେ ପଳାଇ
କୃଷ୍ଣ ଅରଜୁନ ଗଲେ ସଙ୍ଖୋଳିବା ପାଇଁ ।
ତାଙ୍କୁ ଦେଖି କି କହିଲେ ଯୁଧିଷ୍ଠିର ରାୟ
ସେହି କଥା କହମୋତେ ମୁନି ମହାଶୟ ।
କହିଲେ ଅଗସ୍ତି ମୁନି ଶୁଣ ହେ ରାଜନ
ରଥରୁ ଓହ୍ଲାଇ ଗଲେ କୃଷ୍ଣ ଅରଜୁନ ।
ପୁରେ ପ୍ରବେଶି ଦେଖିଲେ ଧର୍ମ ନରପତି
ଦୁଆର କିଳି ଭିତରେ ଲୁଚି ରହିଛନ୍ତି ।
ବିନୟୀ ହୋଇ ଡାକିଲେ ଶ୍ରୀମଧୁସୂଦନ
ଉତ୍ତର ନ ଦ୍ୟନ୍ତି କୋପେ ଧର୍ମଙ୍କ ନନ୍ଦନ ।
ଅତ୍ୟନ୍ତ କଟାଳ ଯହୁଁ କଲେ ବନମାଳୀ
ବାହାର ହୋଇଲେ ଧର୍ମ ଘେନି ଅର୍ଘ୍ୟଥାଳୀ ।
ବୋଇଲେ ଆସ ଅର୍ଜ୍ଜୁନ ତୋତେ ଦେବି ଅର୍ଘ୍ୟ
କର୍ଣ୍ଣକୁ ମାରିଣ ଯେବେ ମିଳିଲୁ ମୋ ଆଗ ।
ପାର୍ଥ ବୋଲେ ଦେବ ତୁମ୍ଭ ଅପମାନ ଜାଣି
ଆସିଛି ଦେଖିବି ସଙ୍ଗେ ଘେନି ଚକ୍ରପାଣି ।
ଶୁଣି ଯୁଧିଷ୍ଠି ବୋଇଲେ ଧିକରେ ଅର୍ଜ୍ଜୁନ
କେତେ ଯେ ଦୁଃଖ ନ ଦେଲା ମୋତେ ଛାର କର୍ଣ୍ଣ ।
ସେ ସକଳ କଥା ମୁହିଁ କହିବଇଁ କେତେ
ବାଳ ଧରି ଓଟାରିଲା ସୈନ୍ୟଙ୍କ ସାକ୍ଷାତେ ।
ଆଖି ରଙ୍ଗବର୍ଣ୍ଣ କରି ଉଞ୍ଚାଇ କୃପାଣ
ଯେତେ କୂଟ କହିଛି ତା ଭୁଲିବକି ପ୍ରାଣ ।

ଯେଉଁକାଳେ ଖଣ୍ଡା ଆସି ବସାଇଲା ଗଳେ
କୁନ୍ତୀ ମାତା ରଖ ବୋଲି ଡାକିଲି ସେ କାଳେ ।
ତେବେ ସେ ଛାଡ଼ିଲା କେଶ ଦୁଃସହ କଟାଳେ
ପଳାଇ ଅଇଲି ମୁହିଁ ପ୍ରାଣର ବିକଳେ ।
ତୋହର ପରାୟେ ଭାଇ ଥାଉଁ ଥାଉଁ ମୋର
ଏତେ କଷ୍ଟ ହେଲା ଧିକ ବୀରପଣ ତୋର ।
ଧିକ ଧିକ ଶତଧିକ ଏ ତୋର ପ୍ରାଣକୁ
କାହିଁ ପାଇଁ ଦଶନାମ ଧରିଛୁ ବୃଥାକୁ ।
ଧିକ ତୋର ଦେବଦତ୍ତ ଶଙ୍ଖକୁରେ ପାର୍ଥ
ଧିକ ତୋ ଗାଣ୍ଡିବ ଧନୁ ଧରିବାର ବ୍ୟର୍ଥ ।
ଧିକ ତୋର ପାଶୁପତ ସେ ଅକ୍ଷୟ ତୂଣ
ଧିକ ତୋର ଆଡ଼ମ୍ବର ଧିକ ବଡ଼ପଣ ।
ମିଛେ ଅପାର ପ୍ରତିଜ୍ଞା କରିଣ ତୁ କହୁ
କିରୀଟୀ ଆଦି ତୋହର ନାମ ଧିକ ହେଉ ।
ଧିକ ତୋର ନନ୍ଦିଘୋଷ ସେ କପିକେତନ
ଧିକ ଧିକ ତୋର ସଖା ଦେବକୀ ନନ୍ଦନ ।
ଆରେ କୃଷ୍ଣ ତୁହି ପରା ଠାକୁର ବୋଲାଉ
ତୋହର ଶରୀର ମାଂସ ଶିବା ଗୃଧ୍ର ଖାଉ ।
ଶ୍ରୀକୃଷ୍ଣର ଅପମାନେ ପାର୍ଥ ପାଇ ତାପ
ଶିର ଝୁଣି ଉଠିଲେ ସେ କରି ଅତି କୋପ ।
ପାଶୁପତ ଅସ୍ତ୍ର ପୁଣି ଅକ୍ଷୟ ତୂଣୀର
ବେଗେ କାଢ଼ି ପକାଇଲେ ଦେହରୁ ତାଙ୍କର ।
ଖଡ଼ଗ ଧରିଣ କୋପେ ହୋଇ ପରଚଣ୍ଡ
ବୋଇଲେ କାଟିବି ଆଜି ଯୁଧିଷ୍ଠିର ମୁଣ୍ଡ ।
ଖଡ଼ଗ ବୁଲାଇ ଯହୁଁ କାଟିବାକୁ ଗଲେ
ଆସନରୁ ଉଠି କୃଷ୍ଣ ତାହାଙ୍କୁ ଧଇଲେ ।
ଶ୍ରୀକରେ ହସ୍ତ ଧରିଣ ଦେବ ଚକ୍ରଧାରୀ
ଅର୍ଜ୍ଜୁନକୁ ବାସୁଦେବ ନେଲେ କୋଳ କରି ।
କାହାଠାରେ ଏତେ କ୍ରୋଧ କରୁଛୁ ଅର୍ଜ୍ଜୁନ
ଜ୍ୟେଷ୍ଠ ଭ୍ରାତା ଅଟନ୍ତି ସେ ପିତାଙ୍କ ସମାନ ।
କିରୀଟୀ କହିଲେ ଶୁଣ ଆହେ ଦୟାମୟ
ଶିବଗୌରୀ ଯେଉଁକାଳେ ହୋଇଣ ସଦୟ ।
ପାଶୁପତ ଅସ୍ତ୍ର ପୁଣି ଏ ଅକ୍ଷୟ ଦ୍ରୋଣ
ଯେତେବେଳେ ଦେଲେ ମୁହିଁ କଲି ଏହି ପଣ ।
ଏ ଅସ୍ତ୍ରକୁ ନିନ୍ଦା କରି କହିବ ଯେ ପ୍ରାଣୀ
ତାହାର ମୁଣ୍ଡକୁ ନିଶ୍ଚେ ପକାଇବି ହାଣି ।
ଅଥବା ତାହାକୁ ଯେବେ ନ ପାରିବି ମାରି
ଅଗ୍ନି ଜାଳି ମରିବି ମୁଁ ଅଛି ସତ୍ୟ କରି ।
ଶ୍ରୀକୃଷ୍ଣଙ୍କ ପାଦତଳେ ଅର୍ଜ୍ଜୁନ ପ୍ରଣମି
ନିଶ୍ଚେ ଯୁଧିଷ୍ଠିଙ୍କୁ ବଧ କରିବଇଁ ସ୍ୱାମୀ ।

ଯଦ୍ୟପି ଯୁଧିଷ୍ଠିରଙ୍କୁ କରିବଇଁ ରକ୍ଷା
ଅଗ୍ନି ଜାଳି ମରିବି ଏ ମୋହର କକ୍ଷା ।
ଏ ଦୁଇ କଥାରୁ ଯେବେ କଥାଏ ନୋହିବ
ପାଶୁପତ ଅକ୍ଷଦ୍ରୋଣ କୈଳାସ ଚଳିବ ।
ହରି ବୋଇଲେ ଲୋଡୁଛୁ ଯୁଧିଷ୍ଠିଙ୍କୁ ମାରି
ତୋ ନିଜ ବଳରେ ତାଙ୍କୁ ପାରୁ କିସ କରି ।
ଅର୍ଜୁନ ବୋଇଲେ ତହୁଁ ଶୁଣ ରମାଈଶ
ତ୍ରୈଲୋକ୍ୟ ମଧ୍ୟରେ ମୁହିଁ ନ କରିଛି କିସ ।
ଅଙ୍ଗାର ପନ୍ନଗକୁ ମୁଁ ସମରେ ଜିଣିଲି
ପାଣ୍ଡବାସୁରକୁ ମାରି କୁରୁଙ୍କୁ ରଖିଲି ।
ଶରତେ ବାନ୍ଧିଲି ସେତୁ ସାଗର ମଧ୍ୟରେ
ହନୁକୁ ମୁଁ ଜିଣିଥିଲି ସେହି ବିବାଦରେ ।
କାଳୀୟ ନାଗର ଚୂର୍ଣ୍ଣ କରିଅଛି ଦର୍ପ
ପାଦେ ମରଦିଲି ତହିଁ ଯେତେ ଥିଲେ ସର୍ପ ।
ନିର୍ବାତ କବଚକୁ ପ୍ରାଣେ କଲି ନାଶ
ମୋତେ ହାରିଗଲେ ରଣ କରି ଅମରେଶ ।
ସ୍କନ୍ଦବନେ ଅକ୍ଲେଶରେ ପ୍ରମାଦ ଜିଣିଲି
ବଳରାମଙ୍କୁ ଜିଣିଣ ସୁଭଦ୍ରା ଆଣିଲି ।
ଚାଳିଶ ସହସ୍ର ରାଜା ଜିଣିଲି ମୁଁ ହେଲେ
ବୀର ବୋଲି ନ ଗଣଇ କାହାକୁ ଭୂତଳେ ।
ରାଜସୂୟ ଯଜ୍ଞକାଳେ କେମନ୍ତେ ହୋଇଛି
ଧନୁହୁଳେ ନବଦ୍ୱୀପା ପୃଥିବୀ ଧରିଛି ।
ତହିଁରେ ବାସୁକୀ ଦର୍ପ୍ପ ହୋଇଛି ଗଞ୍ଜନ
ସେ କଥା କିଛି ନ ଜାଣିଛ ଆହେ ଭଗବାନ ।
କିରାତ ରୂପେ ହରଙ୍କୁ ଜିଣିଲି ମୁଁ ହେଲେ
ଗୋସିଂହକୁ ବଧ କରି ତୁମ୍ଭ ଯଜ୍ଞକାଳେ ।
ପଞ୍ଚାଳ ଦେଶର କଥା ଜାଣ ଶିରୀପତି
ଦ୍ରୌପଦୀ ଆଣିଲି ଜିଣି ଲକ୍ଷେକ ନୃପତି ।
ସୁବାହୁ ଅସୁର ରଣେ କରିଲି ବିନାଶ
ତାହା କି ନ ଜାଣ ତୁମ୍ଭେ ଆହେ ରମାଈଶ ।
ଆହୁରି କଥାଏ ଶୁଣ କହୁଛି ତୁମ୍ଭଙ୍କୁ
କୌରବେ ଚଳିଲେ ଯେବେ ବିରାଟ ଦେଶକୁ ।
ତାହାଙ୍କୁ ସେଠାରେ ମୁହିଁ ଯେମନ୍ତ କରିଛି
ସେହି କଥା ତୁମ୍ଭଙ୍କୁ କି ବିଦିତ ନୋହିଛି ।
ଏ ସକଳ କଥା ଶୁଣି ଦେବ ରମାଈଶ
ପାର୍ଥକୁ ବୋଇଲେ ତହୁଁ କରି ପରିହାସ ।
ଯେ ଜନ କହେ ଆପଣା ପ୍ରଶଂସା ବଚନ
ମରଣ ସଙ୍ଗରେ ସେହୁ ହୁଅଇ ସମାନ ।
ଅର୍ଜୁନ ବୋଇଲେ ସ୍ୱାମୀ ଏକ କଥା ଶୁଣ
ଏକ୍ଷଣି କୈଳାସ ଯିବ ପାଶୁପତ ବାଣ ।
ସେ ଅକ୍ଷୟତୂଣୀ ମଧ୍ୟ ତା ସଙ୍ଗରେ ଯିବ
ଆଉ ତ ତାହାକୁ କେହି ରଖି ନ ପାରିବ ।
ଏଥିରେ କିଞ୍ଚିତ ମାତ୍ର ସନ୍ଦେହ ନ କର
ଯେମନ୍ତେ ରହିବ ତାର ପ୍ରତିକାର କର ।
ଅର୍ଜୁନ ମୁଖରୁ ଶୁଣି ଦେବ ଦୟାମୟ
ସଦାଶିବଙ୍କ ନିକଟେ ଲଗାଇଲେ ଲୟ ।
ଜୟ ଜୟ ବ୍ୟୋମକେଶ ତ୍ରିପୁର ଅନ୍ତକ
ଜୟ ଜୟ ସଦାଶିବ ସଂସାର ପାଳକ ।
ଦେବଙ୍କୁ ରଖିଲ ମାରି ତ୍ରିପୁରା ଅରାତି
ଚିରକାଳ ରଖିଅଛ ଅକ୍ଷୟ କୀରତି ।
ଜୟ ମାତ ଶାକମ୍ଭରୀ ଗିରିରାଜ ଝିଅ
ଅର୍ଜୁନକୁ ଦୟାକରି ସାହାପକ୍ଷ ହୁଅ ।
ଯୁଧିଷ୍ଠିର ଧିକ୍କାରିଲେ ହୋଇ କୋପମନ
ତେଣୁ ଅର୍ଜୁନ ଛାଡ଼ିଲେ ଶର ଆଉ ତୂଣ ।
ଏବେ ମୁଁ ମାଗୁଛି ମାଗୋ ହୋଇଣ ବିନୟୀ
ଅର୍ଜୁନ ପାଶରେ ଥାଉ ଶର ତୂଣ ଦୁଇ ।
ଏହି ପରକାରେ ସ୍ତୁତି କରନ୍ତେ ଶ୍ରୀହରି
କୈଳାସେ ଥାଇ ଜାଣିଲେ ଈଶ୍ୱର ଈଶ୍ୱରୀ ।
ସନ୍ତୋଷରେ ହର ଗୌରୀ କରିଲେ ଆଦେଶ
ଆରେ ଶରତୂଣ ବେନି ଥାଅ ପାର୍ଥ ପାଶ ।
ଶରତୂଣ ସେ ସ୍ଥାନରୁ ଚାଲି ଯାଉଥିଲେ
ପୁଣି ପାର୍ଥ ତୂଣୀରରେ ଆସି ସମ୍ଭାଇଲେ ।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ହେ କିରୀଟୀ
ସାବଧାନ ହୋଇକରି ମୋର କଥାଗୋଟି ।
ତୁମ୍ଭେ ଯେ ବୋଲଇ ନିଆଁ ଜାଳି ମୁଁ ମରିବି
ଯେଉଁ ପ୍ରଶଂସା ହୋଇଲା କହତ ହେ ଭାବି ।
ଶ୍ରୀକୃଷ୍ଣ ବଚନେ ଶାନ୍ତି ହେଲେ ଫାଲଗୁନି
ରଥେ ବିଜେ କଲେ ତହୁଁ ଦିବ୍ୟଶସ୍ତ୍ର ଘେନି ।
ଯୁଧିଷ୍ଠିର ମନମଧ୍ୟେ ଲଭିଣ ସନ୍ତୋଷ
ରଣଭୂଇଁରେ ତିନିହେଁ ହୋଇଲେ ପ୍ରବେଶ ।

—o—

## ଭୀମ ଦୁଃଶାସନର ଯୁଦ୍ଧ ଓ ପ୍ରଥମ ଯୁଦ୍ଧରେ ଭୀମର ପରାଜୟ

ପଚାରନ୍ତି ବୈବସ୍ୱତ ମନୁ ମହାମତି
ହେ ଅଗସ୍ତି ମୁନି ଶୁଣ ମୋହର ଭାରତୀ ।
ଯୁଧିଷ୍ଠିଙ୍କୁ ବୋଧିବାକୁ ଗଲେ କୃଷ୍ଣାର୍ଜୁନ
ଏଣେ କେଉଁ କୃତ୍ୟ କଲେ କଉରବ ସୈନ୍ୟ ।
ସେ କଥା କହି ସନ୍ତୁଷ୍ଟ କର ମୋ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।

କୃଷ୍ଣାର୍ଜୁନଙ୍କୁ ନ ଦେଖି କଉରବ ବୀରେ
ପଡ଼ିଲେ ପାଣ୍ଡବ ସୈନ୍ୟମାନଙ୍କ ଉପରେ ।
ଶିଖଣ୍ଡୀକୁ ଦୁଃଶାସନ ସୋମଦତ୍ତ ଭୀମ
ଏହିପରି ପରସ୍ପରେ କରିଲେ ସଂଗ୍ରାମ ।
ସୋମଦତ୍ତ ଭୀମ ଅଙ୍ଗେ କଲେ ଶରାଘାତ
ତାହା ଦେଖି ଭୀମସେନ ହୋଇ କୋପାନ୍ୱିତ ।
ଗଦା ବୁଲାଇ ରଥରେ କରନ୍ତେ ପ୍ରହାର
ଅଶ୍ୱ ସାରଥି ସହିତ ରଥ ହେଲା ଚୂର ।
ଅତିବେଗେ ସୋମଦତ୍ତ ରଥରୁ ଡେଇଁଲେ
ଏକ ମତ୍ତକରୀ ପୃଷ୍ଠେ ଆରୋହଣ କଲେ ।
ପାଞ୍ଚସହସ୍ର ବଳର ଧନୁ କରେ ଧରି
ଭୀମଙ୍କ ଉପରେ ଶର ବିନ୍ଧିଲେ ଓଟାରି ।
ସେ ସକଳ ଶର ଭୀମ ଶରୀରରେ ପଡ଼ି
ଅଙ୍ଗେ ନ ଭେଦି ଭୂମିରେ ପଡ଼ଇ ଉପୁଡ଼ି ।
ଆରେ ସୋମଦତ୍ତ ରହ ରହ ଭୀମ କହି
ଗଜ ବକ୍ଷସ୍ଥଳେ ଗଦା ପ୍ରହାରିଲେ ନେଇ ।
ସେ ଗଦାଘାତେ କୁଞ୍ଜର ଭାଙ୍ଗିଲା ପୟର
ସୋମଦତ୍ତ ପଳାଇଲେ ହୋଇଣ ଅସ୍ଥିର ।
ଗାନ୍ଧାରୀର ନନ୍ଦନ ଯେ ଦୁଃଶାସନ ବୀର
ପିଟନ୍ତେଣ ରଥ ଗଜ ହୋଇଯାନ୍ତି ଚୂର ।
ରଥର ଉପରେ ନେଇ କଚାଡ଼ଇ ରଥ
ଗଜର ଉପରେ ନେଇ ଗଜ ସେହିମତ ।
ପଦାତି ସୈନ୍ୟମାନଙ୍କୁ ମାରନ୍ତି ଗୋଡ଼ାଇ
ପୁଣି ଅଶ୍ୱମାନଙ୍କର ଫରିଆ ଛେଦଇ ।
କାହାକୁ ଗୋଇଠା କାରେ କହୁଣୀ ଖୁନ୍ଦାଏ
ମାରନ୍ତେ ତାହାର ପ୍ରାଣ ଶୂନ୍ୟେ ଉଡ଼ିଯାଏ ।
କଦଳୀ ବନକୁ ଯେହ୍ନେ କରଇ ପବନ
ପାଣ୍ଡବ ବଳକୁ ତେହ୍ନେ କରେ ଦୁଃଶାସନ ।
ପଳାଇ ଯାଆନ୍ତି ସୈନ୍ୟ ହୋଇ ଛିନ୍ନଛତ୍ର
ଗୋଡ଼ାଇ ତାଙ୍କୁ ମାରଇ ଧୃତରାଷ୍ଟ୍ର ପୁତ୍ର ।
ସୈନ୍ୟହତ ଦେଖିକରି ଦ୍ରୁପଦ କୁମର
ରଥ ଚଢ଼ି ଓଗାଳିଲେ ହୋଇ ଆଗଭର ।
ତାକୁ ଦେଖି ଦୁଃଶାସନ ପ୍ରହାରିଲେ କାଣ୍ଡ
ଅବହେଳେ ଶିଖଣ୍ଡୀ ତା କଲେ ଖଣ୍ଡ ଖଣ୍ଡ ।
ଶଏ ନାରାଚ ଶିଖଣ୍ଡୀ ବିନ୍ଧିଲେ ପାଲଟି
ପଞ୍ଚାଶତ ଶରେ ଦୁଃଶା ପକାଇଲା କାଟି ।
ଶିଖଣ୍ଡୀ ଦୁଃଶାସନର ଅସଂଖ୍ୟ ସମର
ଭାଇଙ୍କର ଅଭାବରେ ଯୁଝେ ମହାବୀର ।
ଚଉଷଠି ଭାର ଗଦା ଘେନି ବେନି କରେ
ବୋଇଲାରେ ଭୀଷ୍ମ ଶତ୍ରୁ ପଡ଼ିଛୁ ଛାମୁରେ ।

ଏତେ ବୋଲି ଗଦା ବୀର ବୁଲାଇ ପ୍ରତ୍ୟକ୍ଷେ
ରେରେକାର ଶବ୍ଦ କରି ଗର୍ଜେ ମହାକୋପେ ।
ବୁଲାଇଲା ଗଦାବର ଉଲ୍‌କାପାତ ଜାଣି
ଶିଖଣ୍ଡୀ ରଥରେ ତାହା ପ୍ରହାରିଲା ଆଣି ।
ବାଜନ୍ତେଣ ଦୁଃଶାସନର ଯେ ଗଦାଘାତ
ଚୂର୍ଣ୍ଣିଭୂତ ହୋଇଗଲା ଶିଖଣ୍ଡୀର ରଥ ।
ଭାଇଙ୍କର କୋପମନେ ଉପ୍ରୋଧ ତା ନାହିଁ
ରାହୁର ତେଜ ପ୍ରାୟେକ ବିକଶିଲା ଦେହୀ ।
ବ୍ରହ୍ମ କ୍ଷତ୍ରୀ ସେହୁ ଅବା ପଡ଼ଇ ଆଗରେ
ଗୋଡ଼ାଇ ମାରଇ ତାକୁ ନିର୍ଦ୍ଦୟ ଭାବରେ ।
ଯାନ ଅଭାବେ ଶିଖଣ୍ଡୀ ପାଦଗତି କରି
ଦୁଃଶାସନକୁ ମାଇଲେ ଭୂଷଣ୍ଡକୁ ଧରି ।
ଦୁଃଶାସନ ଧାଇଁଯାଇ ଧରି ତାଙ୍କ ହସ୍ତ
ଭୂଷଣ୍ଡି ଛଡ଼ାଇ ନେଲା ପିଟିଲା ତୁରିତ ।
ଶିଖଣ୍ଡୀ ସେ ଆଘାତରେ ହୁଅନ୍ତେ ଅଚେତନ
ଏହାର ମୁଣ୍ଡ କାଟିଲା ସେହି ଦୁଃଶାସନ ।
ନିଃଶଙ୍କେ ରଣ କରଇ ଦୁଃଶାସନ ବୀର
ତାର ମୂର୍ତ୍ତି ଦେଖି ସୈନ୍ୟ ପଳାଇଲେ ଦୂର ।
ନକୁଳ କହିଲେ ଯାଇ ଭୀମସେନ ପାଶ
ଶିଖଣ୍ଡୀକୁ ଦୁଃଶାସନ କରିଲା ବିନାଶ ।
ଶୁଣିଣ ଭୀମ କହିଲେ କାହିଁ ସେ ପାମର
ଖୋଜି ଖୋଜି ପାଉନାହିଁ ଭେଟ ଯେ ତାହାର ।
ଏହାକହି ଦଉଡ଼ିଲେ ଭୀମ କୋପ ହୋଇ
ଆଗେ ନକୁଳ ଧାମନ୍ତି ପଥକୁ ଦେଖାଇ ।
ନେଇ ଦୁଃଶାସନ ଆଗେ କରାଇଲେ ଭେଟ
ଭୀମକୁ ଦେଖି ହରଷ ଧୃତରାଷ୍ଟ୍ର ଚାଟ ।
ଚନ୍ଦ୍ରକୁ ଦେଖି ଯେସନେ ରାହୁ କୋପ କଲେ
ଭୀମକୁ ଦେଖି ଦୁଃଶା ହୁଏ ସେ ପ୍ରକାରେ ।
ଗିରିବର ପରକାରେ ଦିଶଇ ଶରୀର
ଆରେରେ ପାଣ୍ଡବା ବୋଲି ଡାକେ ଦୁଃଶା ବୀର
ବୋଲଇ ଭାଇଙ୍କୁ ମୋର ମାଇଲୁରେ ରଣେ
କନିଷ୍ଠ ବଧ କଲୁରେ କେବଣ କାରଣେ ।
ଏତେବେଳେ ପଡ଼ିଲୁରେ ଆସି ମୋ ସମ୍ମୁଖ
ତୁହି ମଲେ ଛାଡ଼ିବରେ ଭାଇଙ୍କର ଶୋକ ।
ତୋତେ ମାରି ଦେବଇଁ ଯେ ଆଜି ବିଶାବଳି
କେହ୍ନେ ରଖିବ ଗଉଡ଼ ସେହି ବନମାଳୀ ।
ଅଧର୍ମେ ନାଶ କଲୁ ମୋ ନିର୍ଦ୍ଦୋଷୀ ଭାଇଙ୍କୁ
ଆଜି ପଠାଇବି ତୋତେ ତାହାଙ୍କ ପାଶକୁ ।
ପୁଣ ପୁଣ ପ୍ରତିଜ୍ଞା ଯେ କରେ ଦୁଃଶାସନ
ଶୁଣିଣ ବୋଲଇ ତହୁଁ ପବନ ନନ୍ଦନ ।

ଭୀମସେନ ବୋଇଲାରେ ଶୁଣ ଦୁଃଶାସନ
ଧର୍ମପଥେ ସଦା ତୁମ୍ଭେ କରରେ ଗମନ ।
ଭୋଜନ ଦେବାକୁ ପରା ଦେଇଥିଲ ମୋତେ
ମିଷ୍ଟାନ୍ନ ସଙ୍ଗରେ ବିଷ ଦେଲରେ କେମନ୍ତେ ।
ବିଷଘାତେ ଅଚେତନ ହୋଇଲି ମୁଁ ଯହୁଁ
ହାତଗୋଡ଼ ବାନ୍ଧି ଜଳେ ଫିଙ୍ଗିଦେଲେ ତହୁଁ ।
ଘର ଏକ ଭିଆଇଲ ବାରୁଣାବନ୍ତରେ
ଜଉ ଘୃତ ଛଣପଟ ଝୁଣା ମିଶ୍ରିତରେ ।
ପୁରଞ୍ଜନ ପଣ୍ଡାକୁ ସେ ଗୁପତେ ପଠାଇ
ନିଆଁ ଲଗାଇଲ ପୁଣି ସେହି ଘରେ ଯାଇ ।
ଚଉଦ ବରଷ ମାତ୍ର ଅଭିମନ୍ୟୁ ସୁତ
ସକଳେ ମିଶି ତାହାକୁ କରିଲ ନିହତ ।
କପଟ ପଶା ଖେଳାଇ ନେଲ ରାଜ୍ୟଧନ
କହିଲେ ନ ସରେ ଭାଇ ତୁମ୍ଭର ଯେ ଧର୍ମ ।
ଦ୍ରୌପଦୀର କେଶ ତୁହି ଧରିନେଲୁ ବଳେ
ପୁଣି ବିବସନ କଲୁ ତାକୁ ସଭାତଳେ ।
ସେହିଦିନୁ କେଶ ସେହି ନ କଲା ବନ୍ଧନ
ତୋତେ ଲୋଡ଼ି ନ ପାଉଛି ଆରେ ଦୁଃଶାସନ ।
ଏତେ କାଳେ ତୋର ମୋର ଭେଟ ହୋଇଅଛି
ଯାଜ୍ଞସେନୀ ଆଜ କେଶ ବାନ୍ଧିବ କହୁଛି ।
ଭୀମଙ୍କ ପ୍ରତିଜ୍ଞା ସେହି ନ ପାରିଲା ସହି
ଆଗେ ଦୁଃଶା ପ୍ରହାରିଲା ଲୌହଶର ନେଇ ।
ପ୍ରତି ଶର କ ି ଭୀମ କଲେ ତା ଛେଦନ
ତାହା ଦେଖି କୋପମନ ହୋଇ ଦୁଃଶାସନ ।
ଶରେ ଶର ପରିତାଳ ଉଠିଲା ଅନଳ
ସେ ନିଆଁରେ ରଣସ୍ଥଳ ଦିଶଇ ଉଜ୍ଜ୍ୱଳ ।
ହାବୋଡ଼ା ଶର ମାଇଲା ଧୃତରାଷ୍ଟ୍ର ସୁତ
ସେ ଶରେ ଭୀମଙ୍କ ରଥ ହେଲା ଚୂର୍ଣ୍ଣିଭୂତ ।
ତହୁଁ ଭୀମସେନ କରି ପାଦରେ ସଞ୍ଚାର
ଦୁଃଶାସନ ରଥେ ଗଦା କଲେକ ପ୍ରହାର ।
ଗଦାଘାତେ ଦୁଃଶାସନ ରଥ ହେଲା କ୍ଷୟ
ଅଶ୍ୱ ସାରଥି ସକଳେ ଗଲେ ଯମାଳୟ ।
କୋପେଣ ଡାକ ଦିଅଇ କୁରୁବଳ ଷଣ୍ଢ
ଚନ୍ଦ୍ରକିରଣକୁ ଜିଣି ଦିଶେ ଫଳାଖଣ୍ଡ ।
ଦୁଃଶାସନ ରଣ ଦେଖି ଭୀମ ହୋଇ ରାଗ
ଘୋର ଗର୍ଜନ କରିଣ ଧରିଲେ ଖଡ଼ଗ ।
ବିକ୍ରମ ସିଂହକୁ ଜିଣି ଦୁଇ ମହାବଳ
କ୍ରୋଧେ ପିଟାପିଟି ହେଲେ ଠିଆହୋଇ ତଳ ।
ଅଧରେ ବଦନ ଚାପି ରେରେକାର କରି
ଦୁହେଁ ଧରାଧରି ହୋଇ ହେଲେ ମରାମରି ।

ଦୁହେଁ ଦୁହିଁଙ୍କର ଖଣ୍ଡା ବୁଲାନ୍ତି ଆମଞ୍ଚି
ଦୁଇ ରଣଷଣ୍ଢ ଯାନ୍ତି ଯୁଣେ ପଥ ଘୁଞ୍ଚି ।
ପୁଣି ଦୁଇଜଣ ଆସି ମୁଣ୍ଡେ ମୁଣ୍ଡ ଲଢ଼ି
ଧରାଧରି ହୋଇକରି ହୋନ୍ତି ଗଡ଼ାଗଡ଼ି ।
ଏହିପରି ଦୁହେଁଯାକ ଘୋର ରଣେ ମଜ୍ଜି
ଦୁହିଁଙ୍କର ଧରିଥିବା ଖଣ୍ଡା ଗଲା ଭାଜି ।
ଦୁହିଁଙ୍କର ରଣଘାତେ ମେଦିନୀ କମ୍ପିଲା
ଉଲକାପାତ ହେଲାପରି ଚୌଦିଗ ଦିଶିଲା ।
ଏହିକାଳେ ଧନଞ୍ଜୟ ହେଲେ ଉପସ୍ଥିତ
ସୋମଦତ୍ତ ଉଗାଳିଲେ ତାହାଙ୍କୁ ତ୍ୱରିତ ।
ସୋମ ମଣ୍ଡଳରେ ସେହି ଅଟେ ଅଧିପତି
ଆରୋହିଛି ସୁଦନ୍ତା ନାମେଣ ମତ୍ତହସ୍ତୀ ।
ଚାଳିଶ ସହସ୍ରପଳ ଲୌହଧନୁ ଧରି
ଅର୍ଜ୍ଜୁନକୁ ଶରାଘାତ କରେ ଆଗ କରି ।
ତଦଅନ୍ତେ ପଞ୍ଚଦଶ ନାରାଚ ବିନ୍ଧିଲେ
ବାବଲ ଶରେ ଅର୍ଜ୍ଜୁନ କାଟି ପକାଇଲେ ।
ସୂଚିମୁନା ଶର ଦୃଢ଼େ ମାଇଲେ ଅର୍ଜ୍ଜୁନ
ହସ୍ତୀ ମୁଣ୍ଡେ ଗଳିଯାନ୍ତେ ଛାଡ଼ିଲା ଜୀବନ ।
ଅର୍ଜ୍ଜୁନ ହାତରେ ମରି ସୁଦନ୍ତା କୁଞ୍ଜର
ମୁକ୍ତିଲାଭ କରିଗଲା ଅମର ନଗର ।
ସୋମଦତ୍ତ ଆନ ହସ୍ତୀ ଆରୋହଣ କରି
ନାରାଚ ପ୍ରୟୋଗ କଲେ ଜଳଧାରା ପରି ।
ଗୋବିନ୍ଦ ବୋଇଲେ କିସ ବୁଝିଲ ଅର୍ଜ୍ଜୁନ
ମାରୁଅଛି ଶର ରାଗେ ଦର୍ପେ ହୋଇ ପୂର୍ଣ୍ଣ ।
ଧନ୍ୟ ଧନ୍ୟ କୁରୁବଳ କେମନ୍ତେ କ୍ଷମତା
ସତ୍ୟ ତ୍ରେତାରେ ନ ଥିବ ଏମନ୍ତ ଶକତା ।
ଶ୍ରୀକୃଷ୍ଣ ପ୍ରଶଂସା ଶୁଣି ପାର୍ଥ ହୋଇ ରାଗ
ଅର୍ଦ୍ଧଚନ୍ଦ୍ର ଶର ବେଗେ କରିଲେ ପ୍ରୟୋଗ ।
ସେ ଶର ପଡ଼ିଲା ସୋମଦତ୍ତ କଟିମୂଳେ
ଦୁଇଖଣ୍ଡ ହୋଇ ଛିଣ୍ଡିଗଲା ତତ୍‌କାଳେ ।
ତଥାପି ତାହାର ପ୍ରାଣ ନୋହିଲା ବାହାର
ନୟନ ତରାଟି ଦାନ୍ତେ ଚାପିଲା ଅଧର ।
ଆପଣା ଧନୁରେ ଗୁଣ ବସାଇଲା ବାଣ
ତା ପ୍ରୟୋଗ କରୁ କରୁ ଛାଡ଼ିଗଲା ପ୍ରାଣ ।
ଦେଖି ପାର୍ଥକୁ ବୋଇଲେ ଦେବ ଦାମୋଦର
ଦେଖ ଦେଖ ସୋମଦତ୍ତ କରେ କି ପ୍ରକାର ।
ତ୍ରୈଲୋକ୍ୟ ମଧ୍ୟରେ ନାହିଁ ଯୋଦ୍ଧା ଏହିପରି
ବେଗେ ଏହା ପ୍ରାଣ ଘେନ ବିଳମ୍ବ ନ କରି ।
ପାର୍ଥ ବୋଇଲେ ମାହୁନ୍ତ ଗଜ ପ୍ରାଣେ ହତ
ରାଗେ ଛିଡ଼ା ହୋଇଛନ୍ତି ଯେସନେ ଜୀବିତ ।

ସୋମଦତ୍ତ ମଧ୍ୟେ ନିଜ କାଣ୍ଡେ ଶର ଯୋଖି
ଗତ ପ୍ରାଣ ହୋଇଅଛି ତରାଟିଣ ଆଖି ।
ବହୁତ ପ୍ରଶଂସା କଲେ ଶୁଣି ଜଗନ୍ନାଥ
ସାଧୁ ସାଧୁ ବୋଲନ୍ତି ଯେ ବୀରବର ପାର୍ଥ ।
ପାର୍ଥ ବୋଇଲେ ଆଉ କି ପ୍ରହାରିବି ଶର
ଶ୍ରୀକୃଷ୍ଣ ବୋଇଲେ ନାହିଁ ଥାଉ ଏ ପ୍ରକାର ।
ତହୁଁ ନନ୍ଦିଘୋଷ ରଥ ନେଲେ ଭଗବାନ
କର୍ଣ୍ଣଙ୍କ ରଥ ଆଗରେ କରିଲେ ସ୍ଥାପନ ।
ଅର୍ଜୁନ ବୋଇଲେ ଶୁଣ ହେ ଯାଦବଈଶ
ନନ୍ଦିଘୋଷକୁ ସମ୍ଭାଳ କରିଣ ବିଶେଷ ।
କର୍ଣ୍ଣର ମୋହର ପୁଣି ହେବ ଭେଟାଭେଟି
ବଡ଼ଭାଇ ଅଭିମାନ ଆଜି ଯିବ ତୁଟି ।
ଶ୍ରୀକୃଷ୍ଣ ବୋଇଲେ କର୍ଣ୍ଣ ସମର ଉପେକ୍ଷ
ଭୀମ ଦୁଃଶାସନଙ୍କର ରଣ ରଥେ ଦେଖ ।
ଦୁଇବୀର ଗଦା ଧରି କରନ୍ତି ସମର
ଗଦାଘାତେ ପରିତାଳେ କମ୍ପେ ତିନିପୁର ।
ଉଠନ୍ତି ପଡ଼ନ୍ତି ପୁଣି ଗଡ଼ନ୍ତି ମହୀରେ
ପୃଥିବୀ କମ୍ପେ ଦୁହିଁଙ୍କ ଗଦା ଆଘାତରେ ।
ହିମାଳୟ ଗିରି ତୁଲ୍ୟ ଦୁହିଁଙ୍କ ଶରୀର
ଗଦାଘାତେ ଦୁଃଶାସନ ଗଦା ହେଲା ଚୂର ।
ଶୂନ୍ୟହସ୍ତ ହେଲା ଯହୁଁ ଧୃତରାଷ୍ଟ୍ର ସୁତ
ଘୁଞ୍ଚିଯାଇ ଛିଡ଼ା ହେଲା ରଣ କରି ତ୍ୟକ୍ତ ।
ଆସ ଆରେ ଦୁଃଶାସନ ଡାକନ୍ତି ପାବନି
ପଳାଇ ପାରିବୁ କିରେ ଜୀବନକୁ ଘେନି ।
ତାହା ଶୁଣି ଦୁଃଶାସନ କରିଲା ଉତ୍ତର
ଶୂନ୍ୟହସ୍ତ ହେଲି ଗଦା ଚୂର୍ଣ୍ଣ ହେଲା ମୋର ।
ଭୀମ ବୋଇଲେ ଛାଡ଼ିଲି ମୋର ଗଦା ତେବେ
ଆସ ସମରକରିବା ଶୂନ୍ୟହସ୍ତେ ଏବେ
ଦୁଃଶାସନ ଶୂନ୍ୟହସ୍ତେ ଆସିଲା ଲେଉଟି ।
ପୁଣି ବିଧା ଚାପୋଡ଼ାରେ ହେଲେ ପିଟାପିଟି
ଛାତିକୁ ଛାତି ଲଗାଇ ଘୁଞ୍ଚିଯାନ୍ତି ପୁଣି
ହାତ ଧରାଧରି ହୋଇ ହୋନ୍ତି ଟଣାଟଣି ।
ଭୁଜକୁ ଭୁଜରେ ଛନ୍ଦି ମୁଣ୍ଡେ ମୁଣ୍ଡ ପିଟି
ପୁଣି କେହି ପଡ଼ିଯାଇ ତଳେ ଯାଏ ଲୋଟି ।
ସତ୍ୟଯୁଗରେ ଯେମନ୍ତେ କେତୁ ବା ମଙ୍ଗଳ
ସମର କରନ୍ତେ ମହୀ ହେଲା ଟଳମଳ ।
ସେହିପରି ଦୁଃଶାସନ ଭୀମଙ୍କର ରଣ
ଆକାଶେ ଥାଇ ଦେଖନ୍ତି ଦେବଲୋକଗଣ ।
ଭିଡ଼ାଭିଡ଼ି ପଡ଼ାପିଡ଼ି ହୋଇ ବେନି ବୀର
ଲୋମକୂପରୁ ରକତ ବହେ ଝରଝର ।

କେହି କାହା ଜାନୁତଳେ ଚାପିଦିଏ ମୁଣ୍ଡ
କେ ନଖେ ବିଦାରି ତାକୁ କରେ ଖଣ୍ଡ ଖଣ୍ଡ ।
ରକ୍ତ ମାଂସରେ ଜଡ଼ିତ ଦୁହିଁଙ୍କର କାୟ
ଦୁହେଁ ଦିଶନ୍ତି ଯାମଳା ତରୁବର ପ୍ରାୟ ।
ମୃତପିଣ୍ଡ ରକ୍ତମାଂସ ହୋଇଲା କାଦୁଅ
ସହି ନ ପାରି କମ୍ପିଲା ଧରା ଅତିଶୟ ।
ଭୁଜେ ଭୁଜ ପ୍ରହାରିଣ କରନ୍ତି ଗର୍ଜନ
ରଟମଟ ଚୋବାଅଁନ୍ତି ଆପଣା ବଦନ ।
ବିକଟ ମୁଖ ଅଧରେ ବଦନକୁ ଚାପି
ମନ୍ଦରଗିରି ପ୍ରାୟେକ ଦୁହେଁ ବୀରରୂପୀ ।
ତଳେ ପଡ଼ିଥିଲା ଯେଉଁ ହାଡ଼ ମେଦ ମାଂସ
କର୍ଦ୍ଦମ ହୋଇଣ ସେହୁ ଛିଟିକେ ଆକାଶ ।
ବାରଯୋଜନ ଓସାର ଅଟେ ରଣଭୂଇଁ
ଗଡ଼ି ଗଡ଼ି ଯଥାସ୍ଥାନେ ଚଳନ୍ତି ସେ ଦୁଇ ।
ଉଭୟ ଦଳର ସୈନ୍ୟ ଗଲେ ଅପସରି
ଦେଖଣାହାରୀ ବୋଇଲେ ଠିଆହୋଇ କରି ।
ତ୍ରେତାରେ ବାଲୀ ସୁଗ୍ରୀବ ଯଥା କଲେ ରଣ
ଭୀମ ଦୁଃଶାସନ ଯୁଦ୍ଧ ସେହିପରି ଜାଣ ।
ନାରଦ ଅଇଲେ ଘେନି କଳିର ଧୋକଡ଼ି
ଲାଗୁ ଲାଗୁ କହି ମୁନି ତହିଁ ଦେଲେ ଝାଡ଼ି ।
ଲାଗିଲା ଦୁହିଁଙ୍କ ରଣ ହୋଇ ଅତିଶୟ
ନାଚନ୍ତି ଆନନ୍ଦ ହୋଇ ସେ କଳହପ୍ରିୟ ।
ଭୀମ ଦୁଃଶାସନ ଦୁହେଁ କରନ୍ତି ସମର
ରଥ ଗଜ ଅଶ୍ୱ ସର୍ବ ହେଉଛନ୍ତି ଚୂର ।
କରନ୍ତି ଘୋର ସମର ତହିଁ ବେନି ବୀର
କମ୍ପିଲା ସ୍ୱର୍ଗ ମରତ ପାତାଳ ଯେ ପୁର ।
ପଡ଼ି ଉଠିକରି ଏକ ଅନ୍ୟକୁ ଭିଡ଼ନ୍ତି
ଭୂମି ଆକର୍ଷି ମରନ୍ତି କରି ପାଦ ଗତି ।
ବାହାସ୍ଫୋଟ ମାରି ବୀରେ ଉଠନ୍ତି ବହନ
କାଳଚକ୍ର ପ୍ରାୟେ ସେହୁ ବୁଲାନ୍ତି ନୟନ ।
ଅବଶ ହେଲେ ଆୟାସ ନ ଲଭନ୍ତି ବେନି
ଦୁହିଁଙ୍କର ପଦାଘାତ ନ ସହେ ମେଦିନୀ ।
ଭୀମସେନକୁ ଗଡ଼ାଇ ଧୃତରାଷ୍ଟ୍ର ସୁତ
ଛାତି ଉପରେ ମାଡ଼ିଣ ବସିଲା ତ୍ୱରିତ ।
ହିମବନ୍ତକୁ ମନ୍ଦର ଚାପିଲାର ପରି
ଭୀମକୁ ଚାପିଣ ଦୁଃଶା ଦିଶେ ସେହିପରି ।
କଟିପରେ ପାଦ ଦେଇ ହାତେ ଚିପେ ଗଳା
ନାସିକାରେ ମୁଥ ମାରେ ଧୃତରାଷ୍ଟ୍ର ବଳା ।
ଅତି କୋପଭର ହୋଇ ଡାକେ ଭୀମ ଭୀମା
ବାଳକ ଭାଇଙ୍କୁ ମାରି ଏଡ଼େ ତୋ ଗାରିମା ।

ସେ ପାପର ପ୍ରତିଫଳ ଦେବି ମୁଁ ଏଥର
ଏବେ ତୁନିହୋଇ କିମ୍ପା ରହିଛୁ ପାମର ।
ଦ୍ରୌପଦୀକୁ ଡାକ ରକ୍ତେ ଧୋଇବ ତା କେଶ
ବାଳ ବାନ୍ଧିନାହିଁ ପରା ପନ୍ଦର ବରଷ ।
ଏହା କହି ପୁଣି ପୁଣି ପ୍ରହାର କରଇ
ଗର୍ଜ୍ଜନରେ ରଣଭୂଇଁ କମ୍ପାଇ ଦିଅଇ ।
ଆରେ ପାଣ୍ଡବା ତୁ ପରା ବୋଲାଉଛୁ ବୀର
ଏବେ କିମ୍ପାଇ ରହିଛୁ ନ ଦେଉ ଉତ୍ତର ।
ରେ ରେ ପାଣ୍ଡବା ତୁହି ତ ସବୁ ବୁଡ଼ାଇଲୁ
ମୋହର ହାତରେ ପଡ଼ି ନିଶ୍ଚୟ ମରିଲୁ ।
ରେ ପାଣ୍ଡବା ମରିବୁ ତୁ ଆୟୁ ଥାଉଁ ଥାଉଁ
କେ ପାରିଲେ ଆସି ତୋତେ ରକ୍ଷାକରି ନେଉ ।
ରେ ରେ ପାଣ୍ଡବା ପୂରିଲା ତୋହର ଆୟୁଷ
ରେ ରେ ପାଣ୍ଡବା କାଟିବି ତୋ ଦେହର ମାଂସ ।
ଅରେ ଭୀମ ସୁମର ତୁ ତୋ ଇଷ୍ଟ ଯେ ଅଟେ
ପିତା ମାତାକୁ ସୁମର ମରଣ ନିକଟେ ।
ରେ ରେ ପାଣ୍ଡବା ବୋଲାଉ ପରା ବଡ଼ ବୀର
ତୁଳା ପରାୟେ ପିଞ୍ଜିବି ତୋହର ଶରୀର ।
ରେରେ ପାଣ୍ଡବା ତୁହି ତ ବଡ଼ ଗର୍ବ କଲୁ
କାହିଁ ଗଲା ସେ ଗାରିମା ମୋ ହାତରେ ମରୁ ।
ଆରେ ପାଣ୍ଡବା ବୋଲାଉ ନାମ ବୃକୋଦର
ଆଉ କି ମୋ ହାତୁ ତୁହି ହୋଇବୁ ଉଦ୍ଧାର ।
ଆରେ ପାଣ୍ଡବା ବୋଲାଉ ଦ୍ୱିତୀୟ ଶମନ
ଶମନ ପେଶିଛି ମୋତେ ନେବି ତୋ ଜୀବନ ।
ଆରେ ଭୀମ କାହିଁଗଲା ତୋ ଅକ୍ଷୟ ଗଦା
ଆରେ ପାଣ୍ଡବା କିମ୍ପାଇ ମାରୁନାହୁଁ କୁଦା ।
ପାଣ୍ଡବା ପାଣ୍ଡବା କହି ଉଠିଣ ଗରଜି
ବୋଇଲା କିମ୍ପା ଶୋଇଛୁ ଏହି ରଣମଝି ।
ଯମ ନଗରେ ତୋ କଥା ଆଜି ପଡ଼ିଲାଣି
ଚିତ୍ରଗୁପତ ତୋହର ପାଞ୍ଜି ପୋଛିଲାଣି ।
ଯମ ପେଶିଅଛି ମୋତେ କରି ତୋ ଶମନ
ଯମପୁର ଦେଖିବୁ ତୁ ଆଜି ଭୀମସେନ ।
ବେଳକୁ ବେଳ ପ୍ରତିଜ୍ଞା କରନ୍ତେ ବହୁତ
ଶୁଣି ଶକୁନି ମନରେ ହୋଇଲା ଦୁଃଖିତ ।
ଶଲ୍ୟରାଜା କର୍ଣ୍ଣବୀର ଶ୍ରୀମାନଗୋବିନ୍ଦ
ଦୁଃଶାସନ କୋପ ଦେଖି ହୁଅନ୍ତି ଆନନ୍ଦ ।
ଶକୁନି ବୋଇଲା ଧନ୍ୟ ଧନ୍ୟ ଦୁଃଶାସନ
ନିଶ୍ଚୟରେ ନାଶଗଲା ଆଜି ଭୀମସେନ ।
ଧର୍ମ ଯୁଧିଷ୍ଠିର ଦେଖି ହୋଇଲେ ମୂର୍ଚ୍ଛିତ
ବୋଇଲେ ଆଜି ବୁଡ଼ିଲା ମୋହର ବୋଇତ ।

କେତେ କେତେ ବଳବନ୍ତ ଅସୁର ମାଇଲୁ
କିଞ୍ଚିତ ଯୁଦ୍ଧରେ ପଡ଼ି ଏବେ ପ୍ରାଣ ଦେଲୁ ।
ଅନାଥ ବାନ୍ଧବ ମୋର କେଣେ ଛାଡ଼ିଗଲୁ
ଆପଦ ସମୁଦ୍ରେ ଏବେ ଭେଳା ବୁଡ଼ାଇଲୁ ।
ବାବୁରେ ତୋ କାମ ଶୁଣି ତ୍ରାସ କରେ ଯମ
କେତେ ବଳିଷ୍ଠମାନଙ୍କ ହରିଛୁ ଜୀବନ ।
କୁମ୍ଭକ ଦୈତ୍ୟକୁ ମାରି ରଖିଲୁ କୈଳାସ
ବଧିଲୁ ସ୍ୱହସ୍ତେ ତୁହି ତାରାକ୍ଷି ରାକ୍ଷସ ।
ଦେବଲୋକଙ୍କୁ ଦୁର୍ଲ୍ଲଭ ତୋର ବୀରପଣ
ମୋ ମନ୍ଦ କପାଳକୁ ତୁ ହାରିଲୁ ପରାଣ ।
ଏହିରୂପେ ଶୋକ କଲେ ଧର୍ମ ଯୁଧିଷ୍ଠିର
ଅତି ବିକଳେ କାନ୍ଦିଲେ ପାର୍ଥ ଧନୁର୍ଦ୍ଧର ।
ଅଗାଧ ସମୁଦ୍ରେ ଭେଳା ବୁଡ଼ାଇଲୁ ଭାଇ
ତୁମ୍ଭ ବିହୀନେ ବଞ୍ଚିବା ଭଲ ନ ଦିଶଇ ।
ନକୁଳ କଲେକ ଶୋକ ଏହି ପରକାରେ
ପାଣ୍ଡବେ ଭାବିଲେ ଭାଇ ତୁମ୍ଭ ଅଭାବରେ ।
ଅନାଥର ବନ୍ଧୁ ଭାଇ ଦର୍ପୀ ଦର୍ପହାରୀ
ଥିବେ ଦୁଷ୍ଟଜନଙ୍କର ଗର୍ବ ଖର୍ବକାରୀ ।
ସୁଭଦ୍ରା ହରଣ କାଳେ ଯେବେ ଯାଇଥିଲ
କୋଟି କୋଟି ଯାଦବଙ୍କୁ ପରାଜୟ କଲ ।
କିନ୍ନରୀ କୁମ୍ଭୀରୀ ବକ ହିଡ଼ିମ୍ବକ ମାରି
ହେ ଭାଇ ନିଜ ମହିମା କରିଥିଲ ଜାରି ।
ଏପରି ଭାବି ଭାଇଙ୍କ ଶୋକେ ଜଗନ୍ନାଥ
ସମ୍ଭାଳି ନ ପାରି କଲେ ଛଳ ଛଳ ନେତ୍ର ।
ବୋଇଲେ ହେ ଭୀମସେନ କାହିଁ ଚାଲିଗଲ
ମଝି ସମୁଦ୍ରକୁ ନେଇ ନାବ ବୁଡ଼ାଇଲ ।
ଆହେ ରଣରଙ୍କା ଶତ୍ରୁ ଦେଖି କରେ ଶଙ୍କା
କେଣେ ଚାଲିଗଲ ପ୍ରିୟଜନେ କରି ଏକା ।
ଏହିପରି ଗାଢ଼ ଶୋକ କରନ୍ତେ ମାଧବ
ନାକେ ହାତଦେଇ ହସିଦେଲେ ସହଦେବ ।
ତାହା ଦେଖି ପଚାରିଲେ ଦେବ ନାରାୟଣ
କିମ୍ପାଇ ହସିଲ କହ ଏହା ବିବରଣ ।
ଆମ୍ଭେମାନେ ଶୋକ କରୁ ଯାହାର ନିମନ୍ତେ
ତୁମ୍ଭେ ନାକେ ହାତଦେଇ ହସିଲ କେମନ୍ତେ ।
ପାଣ୍ଡବ କୁଳ ରକ୍ଷକ ଏକା ବୃକୋଦର
ତାଙ୍କ ପାଇଁ ଶଙ୍କା କରେ ଶତ୍ରୁ ନିରନ୍ତର ।
ଜରାସନ୍ଧ ଅଷ୍ଟାଦଶ ଥର ଦେଲା ଧାଡ଼ି
ଭୀମ ତାହାକୁ ମାଇଲେ ତାହା ସଙ୍ଗେ ଲଢ଼ି ।
ନରପତିଗଣ ମୂଷା ଭୀମ କାଳନାଗ
ଶୂରବନ୍ତପଣେ କିଏ ଅଛି ତାଙ୍କ ଆଗ ।

ଠିଆ ହୋଇଥିବେ ଯେବେ ଅସ୍ତ୍ର ଧରି ହାତେ
କେଉଁ ବୀର ରଣ କରି ଯିବ ତାଙ୍କ ସାଥେ ।
କୁମ୍ଭୀରୀ ଦୈତ୍ୟକୁ ଜଳେ କରିଲେ ସଂହାର
ଯାର ମୂର୍ତ୍ତି ଦେଖି ତ୍ରାସ ଲଭନ୍ତି ଅମର ।
ଗୁପତରେ ସ୍ତିରୀରୂପେ କିଚକର ପ୍ରାଣ
ଯେହୁ ହରିଥିଲେ ଆଜି ଲଭିଲେ ମରଣ ।
ପାଣ୍ଡବ ବଳର ସବୁ ବୁଡ଼ିଲା ଗାରିମା
ନ ମାଡୁଥିଲେ ଶତ୍ରୁଏ ଯାହାବଳ ସୀମା ।
ଏମନ୍ତ ହେ ରଣଷଣ୍ଢ ଚଳିଲେ ଉପେକ୍ଷି
କହ ସହଦେବ ତୁମ୍ଭେ ହସିଲ କାହିଁକି ।
ତାହା ଶୁଣି ସହଦେବ ହ୍ୱନ୍ତେ ନିରୂତ୍ତର
ଦୁଃଖିତ ହୋଇ କହିଲେ ଧର୍ମ ଯୁଧିଷ୍ଠିର ।
ମାଦ୍ରୀଦେବୀ ଯେଉଁକାଳେ ପ୍ରାଣେ ହେଲେ ହତ
କୋଇନ୍ତା ମାତା ପାଳିଲେ ଏ ଥିଲେ ବାଳୁତ ।
ହେ ହରି ସର୍ବଦା ସ୍ନେହ ଯାଙ୍କଠାରେ ମୋର
ଏହାଙ୍କର ଅଭିଳାଷ ପୁରାଏ ସତ୍ୱର ।
କୁମ୍ଭୀରୀ ଦୈତ୍ୟକୁ ମାତା ଦେଇଥିଲେ ନେଇ
ଭୀମକୁ ଦେଇ ଏହାଙ୍କୁ ରକ୍ଷା କଲି ମୁହିଁ ।
ଅରଣ୍ୟରେ ଚାରିଭାଇ ମଲେ ଜଳେ ପଡ଼ି
ଏହାଙ୍କୁ ଆଣିଲି ଭୀମ ଅର୍ଜୁନକୁ ଛାଡ଼ି ।
ପୁଣି ମାତା ଦେଉଥିଲେ ବକାସୁର ମୁଖେ
ଯାକୁ ରଖି ପଠାଇଲି ଭୀମ ଇଚ୍ଛାସୁଖେ ।
ଏତେ କାଳରେ ଜାଣିଲି ଏହାଙ୍କର ଗୁଣ
ମୋଠାରେ କଲେ ବୈମାତୃ ଭାବ ଆଚରଣ ।
ଏ ମୋହର ତିନିଭାଇ ତୁଲ୍ୟ ଜାଣିଥିଲି
କପଟେ ପୂରିଛି ଯାଙ୍କ ହୃଦୟ ବୁଝିଲି ।
ଗୁଣବନ୍ତ ଭାଇ ମୋର ହୋଇଲା ନିଧନ
ଆଉ କି ରଖିବି ମୋର ଏ ଛାର ଜୀବନ ।
ମୁଁ ମଲେ କି ଧନଞ୍ଜୟ ରହିବ ଜୀବିତେ
ଏ ରହିବେ ଦୁର୍ଯ୍ୟୋଧନ ବଶରେ ନିଶ୍ଚିନ୍ତେ ।
ଏମନ୍ତ ନିଷ୍ଠୁର ବାଣୀ ସହଦେବ ଶୁଣି
କରଯୋଡ଼ି ଜଣାଇଲେ ଶୁଣ ଚିନ୍ତାମଣି ।
ଦୁଃଶାସନ ଦର୍ପ ହରି କିସ ବା କରିବ
ଭୀମଙ୍କର ଲୋମ ମାତ୍ର ଟାଳି ନ ପାରିବ ।
ଶତେକ ଯୋଜନ ଶତଶୃଙ୍ଗ ପରବତ
ଭୀମ ପଡ଼ନ୍ତେ ବସିଲା ସେ ଗିରି ତ୍ୱରିତ ।
ସେହି ପର୍ବତ ଉପରେ ଶଏ ଶୃଙ୍ଗ ଅଛି
ଗୋଟିକ ସାତ ଯୋଜନ ପ୍ରତି ଯେ ହୋଇଛି ।
ପାଦ ହଲାଇ କାନ୍ଦନ୍ତେ ତହିଁ ଭୀମ ଭାଇ
ଅଙ୍ଗୁଳି ଲାଗି ଶୃଙ୍ଗେକ ଭାଜିଗଲା ତହିଁ ।
ଶୃଙ୍ଗ ଭାଙ୍ଗନ୍ତେ ସେ ଗିରି ମହାକ୍ରୁଦ୍ଧ ହେଲା
ଭୀମକୁ ଚାହିଁ ଏପରି ବଚନ କହିଲା ।
ବାଳକ ହୋଇ ଭାଙ୍ଗିଲୁ ଯେଣୁ ଶୃଙ୍ଗ ମୋର
ଦେଉଛି ଶାପ ପ୍ରଥମ ଯୁଦ୍ଧେ ତୁହି ହାର ।
ଗିରିର ଏପରି ଶାପ ଶୁଣି ଆମ୍ଭ ମାତ
କ୍ରୋଧ ହୋଇଣ ବୋଇଲେ ଶୁଣରେ ପର୍ବତ ।
ଦୁଇ ଘଡ଼ିର ଅଟଇ ମୋହର କୁମର
ଏହାକୁ ତୁ ଶାପ ଦେଲୁ କେମନ୍ତ ପ୍ରକାର ।
ତୋତେ ମୁହିଁ ଶାପ ଦେଲି ଶୁଣରେ ଅଚଳ
ତୋ ଦେହକୁ ଖଣ୍ଡ ଖଣ୍ଡ କାଟିବେ ସକଳ ।
ଗିରି ବୋଇଲା ମୋ ଶାପ ନୋହିବ ଯେ ଆନ
ପ୍ରଥମ ଯୁଦ୍ଧେ ହାରିବ ତୋର ଏ ନନ୍ଦନ ।
ତଦପରେ ମୋତେ ଏହୁ ସ୍ମରଣ କରିଲେ
ଶତସିଂହ ପରାକ୍ରମ ହେବ ଜାଣ ଭଲେ ।
ଦିନକର ଇନ୍ଦ୍ର ଚନ୍ଦ୍ର ଯା ସଙ୍ଗେ ସମର
କଲେ ଦ୍ୱିତୀୟେ ଜିଣିବ ଏ ତୋର କୁମର ।
ଶତଶୃଙ୍ଗ ଗିରିବର ଶାପର ଫଳରେ
ଭୀମ ପଡ଼ିଛନ୍ତି ତଳେ ପ୍ରଥମ ଯୁଦ୍ଧରେ ।
ସଂଗ୍ରାମ ଭୋଳରେ ଶତଶୃଙ୍ଗଙ୍କୁ ସ୍ମରଣ
ଏକାବେଳେ ଭୁଲିଛନ୍ତି ଆହେ ନାରାୟଣ ।
ତୁମ୍ଭେ ଶତଶୃଙ୍ଗ ନାମ ଶଙ୍ଖେ ବାଦ୍ୟ କର
ଭୀମ କର୍ଣ୍ଣକୁ ଶୁଭିବ ଯେବଣ ପ୍ରକାର ।
ତୁମ୍ଭେ ପ୍ରଭୁ ଅନ୍ତର୍ଯ୍ୟାମୀ ଜଗତ ପାଳକ
ଏ ବଡ଼ ବିଚିତ୍ର ଜାଣୁ ଜାଣୁ କର ଶୋକ ।
ଏହା କହି ସହଦେବ ହୋଇଲେ ନୀରବ
ଶୁଣି ସାନନ୍ଦ ହୋଇଲେ ଯୁଧିଷ୍ଠିର ଦେବ ।
ଏବେ କଉରବ ବଳ ଦେଖିଣ ଏମନ୍ତ
ଦୁର୍ଯ୍ୟୋଧନ ମନେ ମନେ ହୁଅଇ ଉସତ ।
କଉରବ ସେନାପତି ଶକୁନି ବିଚାରେ
ଶତ୍ରୁଜିତ ପତାକା ସେ ବାନ୍ଧିଲେ ରଥରେ ।

—୦—

## ଦୁଃଶାସନ ବଧ ଓ ଦ୍ରୌପଦୀଙ୍କର ବେଣୀ ବନ୍ଧନ

ପୁଣି ପୁଚ୍ଛନ୍ତି ବିଲଙ୍କଦେଶ ନୃପମଣି
ଶୁଣ ହେ ଅଗସ୍ତି ମୁନି ମୁନିଙ୍କ ଅଗ୍ରଣୀ ।
ତୁମ୍ଭର ମୁଖରୁ ଶୁଣି ଭାରତ ଆଖ୍ୟାନ
ପାପ କଳ୍ମଷ ଦେହରୁ କଲି ପ୍ରକ୍ଷାଳନ ।
ତଳେ ପଡ଼ିଥିଲେ ଭୀମ ହୋଇ ରଣ ଭୋଳ
ମାଡ଼ି ବସିଥିଲା ଦୁଃଶା ତାଙ୍କ ବକ୍ଷସ୍ଥଳ ।

ତଦପରେ କେଉଁକଥା କରିଲେ ପାଣ୍ଡବେ
ସେହିକଥା ଶୁଣିବାକୁ ମୋର ଇଚ୍ଛା ଏବେ ।
କହନ୍ତି ଅଗସ୍ତି ମୁନି ଶୁଣ ନୃପବର
ପାଞ୍ଚଜନ୍ୟ ଶଙ୍ଖ ଧରି ଯାଦବ ଈଶ୍ୱର ।
ଶତଶୃଙ୍ଗ ଶତଶୃଙ୍ଗ ବୋଇଲେ ଦୃଢ଼ରେ
ଭୀମ ପଡ଼ିଥିଲେ ତଳେ ଶୁଣିଲେ କର୍ଣ୍ଣରେ ।
ଶତଶୃଙ୍ଗକୁ ସ୍ମରଣ କଲା ତହୁଁ ଭୀମ
ଶଏ ଏକ ସିଂହର ତା ହେଲା ତହୁଁ ଭୀମ ।
ଏକୋତ୍ତର ଶତସିଂହ ବଳକୁ ପ୍ରକାଶି
ଓଲଟାଇ ବୃକୋଦର ରୂପେ ମାଡ଼ି ବସି ।
ନୟନ ଛଟକେ ମାଡ଼ି ବସିଲା ଦୁଃଶାକୁ
ଗୋଚର ନୋହିଲା ତାହା ଉଭୟ ଥାଟକୁ ।
ମନ୍ଦରକୁ ହିମବନ୍ତ ମାଡ଼ି କି ବସିଲା
କାଳପାଶର କୃତାନ୍ତ ଯେହ୍ନେ ଆକର୍ଷିଲା ।
ସେହିପରି ବିକଶଇ ବୃକୋଦର କାୟ
ଆବର ଗର୍ଜେ ବିକ୍ରମ ସିଂହର ଯେ ପ୍ରାୟ ।
ଗର୍ଜନ ଘାତେ କମ୍ପଇ ସେ ରଣମଣ୍ଡଳ
ତ୍ରିଲୋକକୁ ଅଗୋଚର ଭୀମଙ୍କର ବଳ ।
ଟହ ଟହ ହସି ଦନ୍ତେ ଚାପିଣ ଅଧର
କମ୍ପାଇଲେ ରେରେକାର ଶବ୍ଦେ ତିନିପୁର ।
ବାମହସ୍ତେ ବୃକୋଦର ଚିପୁଛନ୍ତି ତୋଟି
ଦକ୍ଷିଣ ହସ୍ତେ ମାରନ୍ତି ପୁଣି ବଜ୍ର ମୁଷ୍ଟି ।
ଏକ ପାଦେ କଟି ଅନ୍ୟପାଦେ ବକ୍ଷସ୍ଥଳ
ଚାପି ଧରିଛନ୍ତି ବୀର ହୋଇ କ୍ରୋଧାନଳ ।
ତର୍ଜନ ଗର୍ଜନ କରି ପ୍ରହାରନ୍ତି ମୁଥ
ଦୁଃଶାସନ ନାଏବାଟେ ବହଇ ଶୋଣିତ ।
ବିକ୍ରମ ସିଂହ ପରାୟ ଭୀମ ମହାବଳ
ମାଡ଼ି ବସିବାରୁ ଦୁଃଶା ହୋଇଲା ଅବଳ ।
ପୁଣି ବୋଇଲେ ପାପୀ କୌରବ ତୁ ଶୁଣ
ଆଜି ମୋ ହାତରେ ତୋର ନିଶ୍ଚୟ ମରଣ ।
ଆରେ ପାମର କୌରବ କୁଳର ପାଂଶୁଳ
ଆତ୍ମ ଅଭିମାନର ଯେ ଦେବି ଏହି ଫଳ ।
ଆରେ ଦୁଃଶାସନ ନିଶ୍ଚେ ହେଲୁ ତୁ ନିରେଖ
କେ ରଖିପାରିଲେ ରଖୁ ଆସି ମୋର ପାଖ ।
ତୁହି ତ ମରିଲୁ ଆଜି ସମରେ ନିଶ୍ଚୟ
ଆଜହୁଁ ସହାୟହୀନ ହେଲା କୁରୁରାୟ ।
ଆକାଶେ ଥାଇ ଦେଖନ୍ତି ଅମରେ ଯେତେକ
ଭୀମ ଡାକନ୍ତି ଏହାକୁ କେ ରଖିବ ରଖ ।
ହେ ଅମରନାଥ ତୁମ୍ଭେ ଅଟ ବଜ୍ରଧର
ପାରିଲେ ଏହାକୁ ବେଗେ ଆସି ରକ୍ଷାକର ।
ଆହେ ପ୍ରେତପତି ତୁମ୍ଭେ ପ୍ରାଣୀଙ୍କ ନିୟତି
ପାରିଲେ ଏହାକୁ ରଖ ଆସି ଶୀଘ୍ର ଗତି ।
ଆହେ ଚନ୍ଦ୍ର ଆହେ ସୂର୍ଯ୍ୟ ଆହେ ବ୍ରହ୍ମାବହ୍ନି
କେ ପାରିଲେ ରଣ କରି ୟାକୁ ଯାଅ ଘେନି ।
ଏହା କହି କାଳଚକ୍ର ପ୍ରାୟ ବେନି ଡୋଳା
ନିରନ୍ତର ବୁଲାଇଲେ ପବନର ବଳା ।
ତାହା ଦେଖି ତିନିଲୋକ ହୋଇଲେ ଶଙ୍କିତ
ବାୟୁ ଭୟେ ନ ଚଳିଲା ଶୁଭିଲା ନିର୍ଘାତ ।
ତହୁଁ ବୋଇଲେରେ ଦୁଃଶା ଶୁଣ ମୋ ବଚନ
ତୋତେ ରଖିବାକୁ କେହି ନୋହିଲେ ଭାଜନ ।
ଏହା କହି ପାତାଳକୁ ପୁଣି ଦେଲେ ଚାହିଁ
ବୋଇଲେ ହେ ଶଙ୍ଖ ପଦ୍ମ କର୍କୋଟକ ଅହି ।
ଆବର ଶୁଣ ହେ ତୁମ୍ଭେ ଅନନ୍ତ ବାସୁକୀ
ଦୁଃଶାସନର ଜୀବନ ରଖି ପାରିବକି ।
ଆହେ ଦିଗପାଳେ ଦିଗ କରିଅଛ ରକ୍ଷା
ଦୁଃଶାସନେ ରଖି କର ମୋ ଶକ୍ତି ପରୀକ୍ଷା ।
ଭୀମ ଡାକନ୍ତେ ଭୁଜଙ୍ଗ ରାଜକୁ କ୍ରୋଧରେ
ବାସୁକୀ କମ୍ପିଲେ ନାଗଲୋକ ସହିତରେ ।
ପୁଣି ଯେ ଦିଗେ କୌରବ ସୈନ୍ୟ ରହିଛନ୍ତି
ଭୀମସେନ ସେ ଦିଗକୁ ଅନାଇଁ କହନ୍ତି ।
ଆରେ ଶଲ୍ୟ ରେ ଶକୁନି ଆରେ କୁରୁରାଣ
ରଖିଲେ ଦୁଃଶାସନର ରଖ ଆସି ପ୍ରାଣ ।
ପିଲାକାଳୁ ଆଜଯାଏ ହୋଇଥିଲା ସଖା
ମାରୁଛି ଦୁଃଶାସନକୁ କରୁନାହଁ ରକ୍ଷା ।
ଜାଣିଲି ସମ୍ପଦ ବେଳେ ସବୁ ମୋର ମୋର
ବିପଦ କାଳରେ କେହି ନୁହନ୍ତି କାହାର ।
ଆରେ କର୍ଣ୍ଣ ମହାମଲ୍ଲ ତୁହି ତ ବୋଲାଉ
ଦୁର୍ଯ୍ୟୋଧନ ରାଜାଠାରୁ ଠକିଠାକି ଖାଉ ।
ଭୀଷ୍ମ ଦ୍ରୋଣ ମଲେ ଏବେ ତୋତେ ସେନାପତି
କରି ତୋ ବାହୁକୁ ଆଶ୍ରା କରୁଛି ନୃପତି ।
ତୁ ପାରିଲେ ମୋ ହାତରୁ ଦୁଃଶାସନ ପ୍ରାଣ
ରଖି ପାରିବୁ ତ ରଖ ଆସି ଏହିକ୍ଷଣ ।
ଅସମୟ କାଳକୁ ତୁ ନୋହିଲୁ କାରଣ
ଧିକରେ ତୁହି ଧିକରେ ଧିକ ବୀରପଣ ।
ଏହାକହି ମହାକୋପେ ଚାହାନ୍ତି ଚରାଟି
କଉରବ ସୈନ୍ୟ ସବୁ ପଳାଇଲେ ହଟି ।
ତହୁଁ ବୋଇଲେ ପାବନୀ ଦୁଃଶାସନେ ଚାହିଁ
ନୋହିଲେ ଭାଜନ ତୋତେ ରଖିବାକୁ କେହି ।
ତହୁଁ ନିଜ ଥାଟ ପ୍ରତି ପକାଇଲେ ଦୃଷ୍ଟି
ରଖିପାରିବ ତ ରଖ ଆସି ହେ ଯୁଧିଷ୍ଠି ।

ତୁମ୍ଭ ଗୁଣବନ୍ତ ଭାଇ ଅକାଳେ ମରୁଛି
କେତେକେତେ ଉପକାର ସେ କି ନ କରିଛି ।
ଆହେ ଧୃଷ୍ଟଦ୍ୟୁମ୍ନ ତୁମେ ଅଟ ମହାବୀର
ପାରିଲେ ଦୁଃଶାସନଙ୍କୁ ଆସି ରକ୍ଷା କର ।
ହେ କପିକେତନ ତୁମ୍ଭ ବଳିଷ୍ଠଙ୍କ ଗୁରୁ
ପାର ଯେବେ ଦୁଃଶାସନ ରଖ ମୋ ହସ୍ତରୁ ।
ଆରେ ଅର୍ଜ୍ଜୁନ ତୋ ନାମ ଅଟେ ସବ୍ୟସାଚୀ
ଦୁଇହାତେ ଅସ୍ତ୍ର ଚାଳୁ ଶତ୍ରୁ ଯାଏ ଘୁଞ୍ଚି ।
ଲକ୍ଷ ବଳର ଗାଣ୍ଡିବ ହସ୍ତେ ଅଛୁ ଧରି
ପାରୁ ଯେବେ ଦୁଃଶାସନ ନିଅ ତୁ ଉଦ୍ଧାରି ।
ଆହେ ଶ୍ରୀକୃଷ୍ଣ ତୁମ୍ଭେ ତ ଚତୁର୍ଦ୍ଧା ମୂରତି
ସୁଦର୍ଶନ ଚକ୍ର ଅଟେ ତୁମ୍ଭ ଆଜ୍ଞାବର୍ତ୍ତୀ ।
ପୁଣି ହିଁ ସଂସାର ତୁମ୍ଭେ କରୁଛ ପାଳନ
ଜଗତ ଜୀବମାନଙ୍କ ମଙ୍ଗଳ ବିଧାନ ।
ପାର ଯେବେ ଆସ ପ୍ରଭୁ ମୋର ସାକ୍ଷାତକୁ
ଉଦ୍ଧାରିଣ ନିଅ ଏହି କୌରବ କ୍ଲୀବକୁ ।
ଆସ କୃଷ୍ଣ ଆସ କୃଷ୍ଣ ବିଳମ୍ବ ନ କରି
ଏହିକ୍ଷଣି ଦୁଃଶାସନ ଯିବ ପ୍ରେତପୁରୀ ।
ଶୁଣ ଦୁଃଶାସନ ନିଶ୍ଚେ ଲଭିବୁ ମରଣ
ରଖି ନ ପାରିଲେ କୃଷ୍ଣ ଯେ କାଳେ ତୋ ପ୍ରାଣ ।
ପୁନଃ ପୁନଃ ଶ୍ରୀକୃଷ୍ଣଙ୍କୁ ଡାକେନ୍ତ ପାବନୀ
ସହି ନ ପାରି ଉଠିଲେ ବୀର ଫାଲଗୁନି ।
କ୍ରୋଧେ କମ୍ପମାନ ହେଲା ସର୍ବ ଅସମ୍ଭବ
ପାଶୁପତ୍ରାଦି କାଢ଼ିଲେ ଧରିଣ ଗାଣ୍ଡିବ ।
ବିନ୍ଧିବା ନିମନ୍ତେ ଯହୁଁ ଉଦ୍ୟମ କରିଲେ
ଦେଖି ଭଗବାନ ତାଙ୍କୁ ଧରି ପକାଇଲେ ।
ତହୁଁ ଅର୍ଜ୍ଜୁନ ବୋଇଲେ ଶୁଣ ଚକ୍ରପାଣି
ଭୀମ ମୁଣ୍ଡ ନିଶ୍ଚୟ ମୁଁ ପକାଇବି ହାଣି ।
ଅନ୍ୟାୟ ପ୍ରତିଜ୍ଞା ମାନ କଲା ଭୀମସେନ
ଦେବତାମାନଙ୍କୁ ନିନ୍ଦି କଲା ହେୟଜ୍ଞାନ ।
ଯୁଧିଷ୍ଠିରଙ୍କି ନିନ୍ଦା କଲା କଟୁ କଥା କହି
ମୋର କଥା ଛାଡ଼ ମନେ କିଛି ଧରେ ନାହିଁ ।
ସର୍ବ କହିଲି ସହିବି ଯେତେ ନିନ୍ଦା ବାଣୀ
ତୁମ୍ଭ ନିନ୍ଦା ନ ସହିବି କେଭେ ଚକ୍ରପାଣି ।
ତୁମ୍ଭ ଉଦରେ ଦେଖିଲି ମହୀ ନବଖଣ୍ଡ
ସପ୍ତଦ୍ୱୀପ ଆଦି କରି ଚଉଦ ବ୍ରହ୍ମାଣ୍ଡ ।
ତୁମ୍ଭ ସମାନ ହେ ପ୍ରଭୁ କେ ଅଛି ସଂସାରେ
ତୁମ୍ଭଙ୍କୁ ସେ ନିନ୍ଦା କଲା କିଞ୍ଚିତ କଥାରେ ।
ଛାଡ଼ ପ୍ରଭୁ ଭୀମ ମୁଣ୍ଡ ପକାଇବି ହାଣି
ଦୁଃଶାସନଙ୍କୁ ଛଡ଼ାଇ ଆଣିବି ଏକ୍ଷଣି ।

ସହିଲି ସର୍ବ ପ୍ରତିଜ୍ଞା ମୁହିଁ ବାସୁଦେବ
ଦେହ ଧରି ତୋ ଅବଜ୍ଞା କେ ସହି ପାରିବ ।
ତାହା ଶୁଣି ଜଗନ୍ନାଥ ଭୁଜେ କରି କୋଳ
ଛଡ଼ାଇ ନେଲେ ପାର୍ଥଙ୍କ ଅସ୍ତ୍ରାଦି ସକଳ ।
ବୋଇଲେ କାହାକୁ କୋପ କରୁ ହେ ଅର୍ଜ୍ଜୁନ
ଯାହାର ନାମେ କମ୍ପଇ ଏ ତିନି ଭୁବନ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ଆଦି ସକଳ ଅମର
ଯାର ପାଟି ଶୁଣିକରି ଭୟେ ଥରହର ।
ପାତାଳପୁରରେ ଥିଲେ ଅଷ୍ଟକୁଳା ଅହି
ଭୀମଙ୍କ ନାଦରେ କେହି ନ ପାରିଲେ ରହି ।
ତୁମ୍ଭେ କାହିଁକି କରୁଛ ପ୍ରତିଜ୍ଞା ଏପରି
ତୁମ୍ଭେ ବଳେ ଭୀମଙ୍କର ପାର କିସ କରି ।
ଦୁଃସହ ପ୍ରତିଜ୍ଞା ଭୀମ କରେ ସ୍ୱୀକାରଣେ
ବିଶ୍ୱରୂପ ପ୍ରକାଶିଛି ଶତ୍ରୁର ମାରଣେ ।
ମତ୍ତଗର୍ବେ କହଇ ସେ ତୋର ନାହିଁ ହେତୁ
ସୁସମ୍ପଦ ବୁଡ଼ାଇ ତୁ ଆଶ୍ରା କରୁ ମୃତ୍ୟୁ ।
ଅନେକ ଝିଙ୍ଗାସ ଦେଇ ମାରିବେ ବଇରୀ
ପେଟ ଛାଡ଼ି ପିଠି ଆଶ୍ରା କର ନ ବିଚାରି ।
ତୁମ୍ଭ ଆମ୍ଭ ଆଦି କରି ଯେତେ ଛନ୍ତି ସୈନ୍ୟ
ଏତେବେଳେ ଭୀମସଙ୍ଗେ ନୋହିବୁ ସମାନ ।
ତ୍ରିଲୋକରେ କେହି ତାକୁ ନାହାନ୍ତି ଜିଣନ୍ତା
ବୃକୋଦର ମୂର୍ତ୍ତି ଧରି ବଡ଼ ବଳବନ୍ତା ।
ଏହାକହି ଦେଖ ଦେଖ ବୋଲି ଭଗବାନ
କୋଳକୁ ଆଉଜାଇଣ ଆଣିଲେ ଅର୍ଜ୍ଜୁନ ।
ଭୀମଙ୍କ ନୃସିଂହ ମୂର୍ତ୍ତି ନେଇ ଦେଖାଇଲେ
ସେ ମୂରତି ଦେଖି ପାର୍ଥ ବଡ଼ ଭୟ କଲେ
ବିକଟାଳ ମୁଖ ପୁଣି ଭୀଷଣ ଶରୀର
ଆକାଶକୁ ଲାଗିଅଛି ଭୀମଙ୍କର ଶିର ।
ଦେଖି ନୟନ ବୁଜିଲେ ପାର୍ଥ ବୀରମଣି
ଭୟ ପାଇ ନନ୍ଦିଘୋଷେ ଉଠିଲେ ସେକ୍ଷଣି ।
ରଥେ ଥାଇ ଦେବଦତ୍ତ ଶଙ୍ଖ କଲେ ନାଦ
ସେ ଶବଦେ ରଣଭୂଇଁ ହୋଇଲା ସ୍ତବଦ ।
ଭୀମ ବୋଇଲାରେ ଦୁଃଶା ହେଲୁ ନିଃସହାୟ
ଆସି ରଖନ୍ତୁ ତୋହର ବାଲ୍ୟସଖାଚୟ ।
ଆରେ ପାମର କୌରବ ବୋଲାଉ ତୁ ବଳୀ
ତୋର ମାଂସ କାଟି ଆଜି ଦେବି ବିଷାବଳି
ରେ ରେ କୌରବ ସୁମର ମାତାପିତା ତୋର
ତୋ ଇଷ୍ଟଦେବତା ନାମ ସୁମର ପାମର ।
ରେ ରେ ଦୁଃଶାସନ ଡାକ ତୋ ଅନ୍ଧବାପକୁ
ତୋତେ ରକ୍ଷା କରୁ ଏବେ ଆସି ତୋ ପାଶକୁ ।

ଆରେ ରେ କୌରବା ଯମ ପୋଛିଲା ତୋ ପାଞ୍ଜି
ଆଜି ଯମେ ଭେଟ ହେବୁ ସ୍ୱକର୍ମକୁ ଭୁଞ୍ଜି ।
ଯମଦୂତ ପଣେ ଏବେ ପେଶିଛନ୍ତି ମୋତେ
ସଂଯମନୀ ପୁର ନେଇ ଦେଖାଇବି ତୋତେ ।
ଏହା କହି ପ୍ରହାରିଲେ ଏକ ବଜ୍ରମୁଠ
ଶବଦ ଶୁଭିଲା ଯେହ୍ନେ ପଡ଼ିଲା ନିର୍ଘାତ ।
ସହଦେବକୁ ଅନାଇ ଭୀମ ମହାମତି
ବୋଇଲେ ଦ୍ରୌପଦୀ ଆଣ ଯାଇ ଶୀଘ୍ର ଗତି ।
ଭୀମଙ୍କ ଆଦେଶ ପାଇ ମନ୍ତ୍ରୀ ଚୂଡ଼ାମଣି
ପୁଷ୍ପକ ରଥେ ଚଳିଲେ ଯଥା ଯାଜ୍ଞସେନୀ ।

ପନ୍ଦର ବରଷ ପୁଣି ପଞ୍ଚସ୍ତରୀ ଦିନେ
ଭୀମ ପ୍ରତିଜ୍ଞା ପୂରଣ ହେଲା ସୁବଦନେ ।
ଶୁଣି ଦ୍ରୁପଦକୁମାରୀ ହୋଇ ଆନନ୍ଦିତ
ପୁଷ୍ପକ ରଥରେ ଚଢ଼ି ଚଳିଲେ ତୁରିତ ।
ପଥେ ଯାଇ ପଚାରିଲେ ଯୁଦ୍ଧ ବିବରଣ
ଏକ ଏକ କରି ମନ୍ତ୍ରୀ କରିଲେ ବଖାଣ ।
ଆଗେ ଦୁଃଶାସନ ମାଡ଼ି ବସିଲା ଭୀମକୁ
କଉରବେ ଉପହାସ କଲେକ ଆମ୍ଭଙ୍କୁ ।
ଦୁଃସହ ପ୍ରତିଜ୍ଞା କଲା ଦୁଃଶା ସେହିକାଳେ
ପୁଣି ଭୀମ ଲେଉଟାଇ ପକାଇଲେ ତଳେ ।



ଏତେ ଚାତକ ପରାୟେ ଦ୍ରୁପଦ କୁମାରୀ
ବସିଛନ୍ତି ଭୀମଙ୍କର ପଥ ଅନୁସରି ।
ଅର୍ଘ୍ୟ ଥାଳି ଘେନି କରେ ଧରି ରହିଛନ୍ତି
ଏହି କାଳେ ସହଦେବ ପ୍ରବେଶ ହୁଅନ୍ତି ।
ମନ୍ତ୍ରୀବର ପ୍ରବେଶିଲେ ଯହୁଁ ହୋଇ ଏକା
ଦ୍ରୌପଦୀ କରିଲେ ମନେ ବହୁତ ଆଶଙ୍କା ।
ତାଙ୍କୁ ଚାହିଁ ସହଦେବ ହୋନ୍ତେ ହସ ହସ
ସତୀଙ୍କ ମନରୁ ତହୁଁ ଛାଡ଼ିଲା ସନ୍ଦେଶ ।
ସହଦେବ ବୋଇଲେ ଗୋ ସତୀ ଆସ ଆସ
ଆଜି ବନ୍ଧନ କରିବ ମୁକୁଳିତ କେଶ ।

ତ୍ରୈଲୋକ୍ୟ ମଧ୍ୟରେ ତାଙ୍କ ଦୁଃସହ ପ୍ରତିଜ୍ଞା
ତୁମ୍ଭଙ୍କୁ ନେବାପାଇଁ କି ଦେଲେ ମୋତେ ଆଜ୍ଞା ।
ରଥରେ ଥାଇ ଦ୍ରୌପଦୀ ହୋଇଲେ ପ୍ରଣତି
ମୋ ସ୍ୱାମୀ ଏ ଅବତାର ଆଜି ଧରିଛନ୍ତି ।
ତୁମ୍ଭର ଆପଦ ନାଥ ପଡୁ ମୋର ମାଥ
ଏତେଦିନ ପୂର୍ଣ୍ଣ କଲ ମୋର ମନୋରଥ ।
ଏମନ୍ତେ ଯୁଦ୍ଧସ୍ଥଳରେ ହୋଇଲେ ପ୍ରବେଶ
ଭୀମଙ୍କ ମୂରତି ଦେଖି ଦେବୀ କଲେ ତ୍ରାସ ।
ରଥରେ ଯାଇଣ ଦ୍ରଉପଦୀ ପରଣାମି
ଏ ଅବତାର ହୋଇଲ ମୋହପାଇଁ ସ୍ୱାମୀ ।

ତୁମ୍ଭ ପାଦରଜ୍ଜ ପଡୁ ମୋହର ଯେ ମାଥ
ଏହା କହୁଁ କହୁଁ ପାଶେ ମିଳିଲେ ତ୍ୱରିତ ।
ରଥରୁ ଉତୁରି ଦେବୀ ହୋଇଲେ ହତାଶ
ସ୍ୱାମୀ ପାଶକୁ ଯିବାକୁ ନୋହିଲା ସାହସ ।
ତିନିତାଳ ଉଚ୍ଚ ଅଟେ ଦୁଃଶାସନ ଦେହ
ଚାରିତାଳ ପ୍ରମାଣ ପବନର ପୁଅ ।
ମନ୍ଦରକୁ ହିମଗିରି ଚାପିଲାର ପରି
ସାତତାଳୁ ଉଚ୍ଚେ ଭୀମ ଦିଶନ୍ତି ସେପରି ।
ତାହା ଦେଖି ଯାଜ୍ଞସେନୀ କରନ୍ତି ବିଚାର
ପ୍ରକୃତରେ ନୁହନ୍ତି କି ଏହି ବୃକୋଦର ।
ଚନ୍ଦ୍ରମାକୁ ରାହୁ କିବା କରେ ଟଣାଟଣି
ଭୟେ ଏ ବିଚାର କଲେ ଦ୍ରୁପଦ ଦୁଲଣୀ ।
ବୃକୋଦରଙ୍କ ପାଶକୁ ଯହୁଁ ସେ ନ ଗଲେ
ସହଦେବଙ୍କୁ ଅନାଇଁ ଭୀମ ଆଜ୍ଞା ଦେଲେ ।
ଦ୍ରୌପଦୀକି ଘେନିଆସ ମୋ ପାଶେ ସତ୍ୱର
ଜଣାଯାଏ ନ ଆସନ୍ତି ହୋଇ ଭୟାତୁର ।
ତାହା ଶୁଣି ସହଦେବ ହାତ ଧରିନେଲେ
ବୃକୋଦର ସମୀପରେ ଉଭା କରାଇଲେ ।
ଦ୍ରୌପଦୀଙ୍କୁ ଚାହିଁ ଭୀମ ବୋଲନ୍ତି ବଚନ
ଭଲ କରି ଦେଖ ମୋର ଭାଇର ବଦନ ।
ଗୁଣବନ୍ତ ପୁରୁଷ ଏ ବଡ଼ ହିତକାରୀ
ଏହାଙ୍କର ଗୁଣ ଶୁଝି ନ ହେବ ସୁନ୍ଦରୀ ।
କୂଟ ପଶାକାଳରେ ଗୋ ଏହି ଦୁଃଶାସନ
ମନ ଲଗାଇ ଏହାଙ୍କୁ ଭଲ କରି ଚିହ୍ନ ।
କେତେ ଉପକାର ଏ ଗୋ କରିଛି ତୁମ୍ଭର
ଏତେ କାଳରେ ପଡ଼ିଛି ହାତରେ ମୋହର ।
ଏହାକହି ଦୁଃଶା ପ୍ରତି ବୋଇଲେ ବଚନ
ଶୁଣରେ କୌରବ ଦୁଷ୍ଟ ପାପିଷ୍ଠ ଦୁର୍ଜ୍ଜନ ।
ଚିହ୍ନି ନାହୁଁ କି ପଞ୍ଚାଳଦେଶ ନୃପବର
ବ୍ରାହ୍ମଣ ଜାତି ସେହୁଟି ଶ୍ରେଷ୍ଠ କୁଳଧର ।
କୋଟି କୋଟି ଋଷି ଘେନି ଯଜ୍ଞ ଆରମ୍ଭିଲେ
ସେ ଯଜ୍ଞ ଅନଳ ଭେଦି ଏ ଜାତ ହୋଇଲେ ।
ଅଯୋନି ସମ୍ଭବା ଯେଣୁ ଅନଳରୁ ଜାତ
ତେଣୁ ଯାଜ୍ଞସେନୀ ନାମ ଦେଲେ ତାଙ୍କ ତାତ ।
ତୁ ଛାର ପାପିଷ୍ଠ ହୋଇ ତାଙ୍କୁ କେଶ ଧରି
ସଭାସ୍ଥଳକୁ ଆଣିଲୁ ଅତି ଗର୍ବ କରି ।
ପୁଣି ସେ ସଭାରେ ତାଙ୍କୁ କଲୁ ବିବସନ
ମୁଖେ ନ କହିଛୁ କେତେ କୁତ୍ସିତ ବଚନ ।
ପନ୍ଦର ବରଷ ପୁଣି ଛଅମାସ ଅନ୍ତେ
ଏତେ କାଳରେ ପଡ଼ିଲା ସତୀଶାପ ତୋତେ ।
ଆଜି ଆରେ ଦୁଃଶାସନ ଉପାଡ଼ି ସେ ହାତ
ପାଞ୍ଚାଳି ମସ୍ତକେ ଦେବି ନେଇ ତୋ ରକତ ।
ପୁଣି ନଖରେ ବିଦାରି ତୋର ବକ୍ଷସ୍ଥଳ
ରକ୍ତସ୍ନାନ କରାଇବି ଦେଖିବେ ସକଳ ।
ଦ୍ରୌପଦୀ ବୋଇଲେ ତୁମ୍ଭେ ଶୁଣ ପ୍ରାଣସଖା
ଅନ୍ତଃପୁର ଗୁପ୍ତସ୍ଥଳେ ଲୁଚିଲି ମୁଁ ଏକା ।
ଏ ପାପିଷ୍ଠ ଖୋଜି ଖୋଜି ହୋଇଲା ପ୍ରବେଶ
ଘୋଷାରି ଆଣିଲା ମୋତେ ଧରି ମୋର କେଶ ।
ଦନ୍ତରେ ତିରଣ ଧରି ହୋଇଲି ବିନୟ
ତେବେ ନ ଛାଡ଼ିଲା ମୋତେ ପାପୀ ଦୁରାଶୟ ।
ବିକଳେ ବୋଇଲି ମୋତେ ଛାଡ଼ ବୀରମଣି
ପୁଂସ ନ ଛୁଅନ୍ତି ନାରୀ ହେଲେ ସଧର୍ମିଣୀ ।
ନିର୍ଦ୍ଦୟ ପୁରୁଷ ଏହି ଚାଣ୍ଡାଳରୁ ଛାର
ଅନ୍ତଃପୁରେ ପଶି କେଶ ଧଇଲା ମୋହର ।
ଅନ୍ତରୀକ୍ଷେ ଆଣିଲା ସେ ଧରି ମୋତେ ବଳେ
ଆସନ୍ତେ ଚରଣ ମୋର ନ ଲାଗିଲା ତଳେ ।
ଏସନ ବଚନ ଦ୍ରଉପଦୀ ମୁଖୁ ଶୁଣି
ଗର୍ଜିଣ ଉଠିଲା ଭୀମ ମତ୍ତସିଂହ ଜାଣି ।
ଓଷ୍ଠେ ଦାନ୍ତ ଚାପି କୋପେ ପବନ ଆତ୍ମଜ
ଆକର୍ଷି ଧଇଲା ଦୁଃଶାସନ ଦକ୍ଷ ଭୁଜ ।
ପୁଣି ପଞ୍ଜରା ଉପରେ ପ୍ରହାରିଲା ଗୋଡ଼
ଦକ୍ଷିଣ ଭୁଜ ଛିଡ଼ିଲା ହୋଇ ମଡ଼ ମଡ଼ ।
କିବା ମହା ଦ୍ରୁମଫଳୁ କରନ୍ତେ ଛେଦନ
ଶବଦ କରି ଭୂମିରେ ପଡ଼ଇ ଯେସନ ।
ଅଥବା ପର୍ବତ ଶିଖ ଖଣ୍ଡ ଶୈଳେ ଝଡ଼ି
ପର୍ବତୁ ଖସିବା କାଳେ ଯେହ୍ନେ ଶୁଭେ ରଡ଼ି ।
ସେ ପରକାରେ ଶୁଭିଲା ଭୁଜର ଶବଦ
ସେ ଶବଦ ଶୁଣି ସର୍ବେ ହୋଇଲେ ସ୍ତବଦ ।
ସେ ଭୁଜ ଶୋଣିତ ନେଇ ଦ୍ରୌପଦୀ ଶିରରେ
ଢାଳିଲେ ପବନ ପୁଅ ଆନନ୍ଦ ମନରେ ।
ପୁଣି ସେ ଭୁଜକୁ ଧରି ବୁଲାଇ ବୁଲାଇ
ଆକାଶକୁ ଫିଙ୍ଗିଦେଲେ କଉତୁକୀ ହୋଇ ।
ସେ ସମୟେ ଉଡୁଥିଲା ଶୂନ୍ୟେ ଶ୍ୟେନ ପକ୍ଷୀ
ତାକୁ ଝାମ୍ପି ଘେନିଗଲା ହୋଇ ଅତି ସୁଖୀ ।
ଯେଉଁକାଳେ ଶ୍ୟେନପକ୍ଷୀ ଭୁଜ ନେଲା ଧରି
ଆକାଶୁ ରକ୍ତ ପଡ଼ିଲା ବାରିଧାରା ପରି ।
ଯେତେବେଳେ କୃଷ୍ଣାମୁଣ୍ଡେ ରକତ ପଡ଼ିଲା
କେଶ ଭିଜି ନାସାବାଟେ ତାହା ବହିଗଲା ।
ସେହି ଶୋଣିତକୁ ଦେବୀ କରିଲେ ଲେହନ
ବାମଭୁଜ ଉପାଡ଼ିଲେ ପୁଣି ଭୀମସେନ ।

ବୋଇଲେ ଏହି ଭୁଜରେ ତୁହି ପରା ଭାଇ
ସଭାତଳେ ବସାଇଲୁ ଯୁଧିଷ୍ଠିଙ୍କି ନେଇ ।
ଏହାକହି ଦେବୀଶିରେ ଶୋଣିତ ଢାଳିଲେ
ଆନନ୍ଦିତା ହୋଇ ଦେବୀ ତାହା ପାନ କଲେ ।
ସେ ଭୁଜ ଫିଙ୍ଗିଲେ ପୁଣି ଆକାଶ ମାର୍ଗରେ
ଶ୍ୟେନପକ୍ଷୀ ଉଡ଼ୁଥିଲା ଘେନିଗଲା ଖରେ ।
ତଥାପି ଭୀମଙ୍କ କୋପ ନ ହୋଇଲା ଶାନ୍ତ
ଦୁଃଶା ବକ୍ଷସ୍ଥଳ ଚିରି ପିଇଲେ ଶୋଣିତ ।
ପ୍ରତିଜ୍ଞା ପୂରଣ କରି ପାଣ୍ଡବ ବଲ୍ଲଭା
ବହୁତର ଆନନ୍ଦକୁ ହୃଦୟରେ ଲଭି ।
ଯମୁନା ନଦୀକି ଯାଇ ପଖାଳିଲେ କେଶ
ସ୍ନାହାନ ସାରି ପିନ୍ଧିଲେ ସେ ସୂକ୍ଷ୍ମ ବାସ ।
ଅମର ଗଣିକାମାନେ ଦେଲେ ହୁଳହୁଳି
ଅଷ୍ଟସଖୀ ବନ୍ଦାଇଲେ ଘେନି ଅର୍ଘ୍ୟଥାଳି ।
ଏହିରୂପେ ନିତ୍ୟକର୍ମ ସବୁ କରି ଶେଷ
ଭାରା ନିବାରିଣୀ ଗୃହେ ହୋଇଲେ ପ୍ରବେଶ ।
ଏହିଠାରେ ଶେଷ ହେଲା ଦୁଃଶାସନ ବଧ
ଦୋଷ ନ ଧରିବ ମୋର ଆହେ ବିଜ୍ଞବୃନ୍ଦ ।
ଜୟ ହେ କମଳାପତି ଅଗତି ତାରଣ
ଶୋକ ତାପ ଧ୍ୱଂସକାରୀ ମାନ ଉଦ୍ଧାରଣ ।
ହେ ପଙ୍କଜ ମୁଖ ମୋରେ ହୁଅ ସୁପ୍ରସନ୍ନ
ଛେଦନ ହେଉ ମୋହର କର୍ମର ବନ୍ଧନ ।
ତୁମ୍ଭ ନାମ ଭଜିବାକୁ ନାହିଁ ଅବସର
ସଦା ବିଷୟ ଚିନ୍ତାରେ ଦିନ ଗଲା ମୋର ।
ସେଥିକି ବିଚାରେ ମୁହିଁ ସଂସାର ବାରିଧି
କେମନ୍ତେତରିବି ଆଉ ନ ଦିଶଇ ବୁଦ୍ଧି ।
ହୃଦ ସିଂହାସନ ମୋର ଶୂନ୍ୟେ ଅଛି ପଡ଼ି
ଆସ ପ୍ରଭୁ ଦୟାମୟ ବସ ଚକାମାଡ଼ି ।
ତେବେ ତ ହେ ଜଗଦୀଶ ନ ରହିବ ଭୟ
କିଛି କରି ନ ପାରିବ ସୂର୍ଯ୍ୟଙ୍କ ତନୟ ।
ଯାହା ଇଚ୍ଛା ହୁଏ ହରି ତାହା ଶୀଘ୍ର କର
ଶାରଳା ଦାସର ଭିକ୍ଷା ଏତିକି ମାତର ।

—୦—

## ଦ୍ରୌପଦୀଙ୍କ ପୂର୍ବଜନ୍ମର ବିବରଣ, ନକୁଳଙ୍କର ଅପମାନ ଓ ଦ୍ରୌପଦୀଙ୍କଠାରୁ ଭୀମଙ୍କର ବର ଲାଭ

କହିଲେକ ବୈବସ୍ୱତ ମନୁ ମହାତମା
ହେ ଅଗସ୍ତି ମୁନି ତୁମ୍ଭ ଅପାର ମହିମା ।
ଯେଣୁ ବହୁ ଶାସ୍ତ୍ରେ ତୁମ୍ଭେ ହୋଇଛ ବିଦିତ
ତେଣୁ ଜଗତରେ ତୁମ୍ଭ ନାମ ଅଟେ ଖ୍ୟାତ ।
ଆହେ ସର୍ବଜ୍ଞ ପଣ୍ଡିତ ଘେନ ନିବେଦନ
ମୋହର ସଂଶୟ ଏକ କରିବ ଛେଦନ ।
ନିଜେ ଏକସ୍ଥାନେ ମୋତେ ଆପଣ କହିଛ
ଲକ୍ଷ୍ମୀରୂପା ଯାଜ୍ଞସେନୀ ଏଥି ନାହିଁ ମିଛ ।
ସେ ପୁଣି ଶୋଣିତ ପାନ କରିଲେ କିପରି
ଏଥିରେ ସନ୍ଦେହ ଜାତ ହୋଇଲା ମୋହରି ।
ସେ କଥା ବିଚାରି କହ ମୁନି ମହାଶୟ
ଦ୍ରୌପଦୀଙ୍କ କଥା ଶୁଣି ପାପ ହେଉ କ୍ଷୟ ।
କହିଲେ ଅଗସ୍ତି ମୁନି ଶୁଣ ମହୀପତି
ଦ୍ରୌପଦୀ ବିବାଦେ ଏହି କଥା ବ୍ୟାସଯତି ।
ଦ୍ରୁପଦ ନରପତିଙ୍କ ଆଗେ କହିଥିଲେ
ଆମ୍ଭେ ତୁମ୍ଭଙ୍କୁ କହିଛୁ ତାହାକି ଭୁଲିଲେ ।
ଯେବେ ପଚାରିଲ ତେବେ ଶୁଣ ଆଉ ଥରେ
ମହାପ୍ରଳୟ ହୋଇଲା ଯେବଣ କାଳରେ ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ସୁତଳ ବିତଳ
ଅଣାକାର ଲୋକ ଯାଏ ସବୁ ହେଲା ଜଳ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
କେହି ନ ରହିଲେ ତୁଚ୍ଛା ଜଳ ଗଲା ପୂରି ।
ବିରାଳଚନ୍ଦ୍ର ନାମରେ ଥିଲା ଏକ ଅହି
ତା କ୍ରୋଡ଼ରେ ନିଦା ବିଷ୍ଣୁ ଶୋଇଲେକ ଯାଇ ।
ପଦ୍ମାଳୟା ସେ ବିଷ୍ଣୁଙ୍କ ପାଦ ମଞ୍ଚାଳିଲେ
ଧବଳାଙ୍ଗୀ ବୀଣା ବାଇ ସୁସ୍ୱରେ ଗାଇଲେ ।
ସାତଲକ୍ଷ ଅଠାଇଶ ହଜାର ବରଷ
ଏତିକିରେ ସତ୍ୟଯୁଗ ହୋଇଲାକ ଶେଷ ।
ବାରଲକ୍ଷ ଛୟାଣୋଇ ସସ୍ର ତ୍ରେତାଯୁଗ
ଦ୍ୱାପରର କଥା ଶୁଣ କରି ମନଯୋଗ ।
ଆଠଲକ୍ଷ ଚଉଷଠି ହଜାର ଦ୍ୱାପର
କଳି ଚାରିଲକ୍ଷ ବତ୍ରିଶସସ୍ର ବତ୍ସର ।
ଏହି ଚାରିଯୁଗରେ ସେ ହୁଅଇ ଗଣ୍ଡାଏ
ଏକସ୍ତରି ଗଣ୍ଡାରେ ଯେ ଏକମନୁ ହୁଏ ।
ଏପରି ଚୌଦ ମନୁରେ କଳ୍ପେକ ଯେ ଜାଣ
ଚଉଦ କଳ୍ପରେ ହୁଏ ଆଢ଼କ ପ୍ରମାଣ ।
ଅଷ୍ଟାଦଶ ଆଢ଼କରେ ହୁଏ ଏକ ଚନ୍ଦ୍ର
ଷୋଳଚନ୍ଦ୍ରେ ନାଶ ହୁନ୍ତି ଦେବତାଦି ଇନ୍ଦ୍ର ।
ଏ ବିଧିରେ ଶତଇନ୍ଦ୍ର ଯେବେ ହେବ କ୍ଷୟେ
ବ୍ରହ୍ମାଙ୍କୁ ଦିବସ ସୃଷ୍ଟି ଆତଯାତ ହୁଏ ।
ଏମନ୍ତ ଦିବସ ଅଷ୍ଟୋତ୍ତର ଶଏ ହେଲେ
ନାଶ ଯାଏ ବ୍ରହ୍ମା ଶୁଣ ମନୁ ମହୀପାଳେ ।
ନବ ସୃଷ୍ଟିର ଭିଆଣ କରିଥିଲେ ବ୍ରହ୍ମା
ବ୍ରହ୍ମା ମରନ୍ତେ ଜଳର ବଢ଼ିଲାକ ସୀମା ।

ଏହିପରି କେତେ ଯୁଗ ତହିଁ ଗଲା ବହି
ଦିନେ ବିଷ୍ଣୁ ନିଦ୍ରା ଭାଙ୍ଗିଯାନ୍ତେ ଦେଲେ ଚାହିଁ ।
ଅମୃତ ବୃଷ୍ଟିରେ ପ୍ରଭୁ କଲେ ନିରୀକ୍ଷଣ
ତହୁଁ ପଞ୍ଚଦଶ ବ୍ରହ୍ମା ହୋଇଲେ ଜନମ ।
ଏମାନଙ୍କୁ ମଧ୍ୟୁ କାର ମସ୍ତକ ପଚିଶ
କାହାର ଅଟଇ ବିଂଶ କାହାର ପଚାଶ ।
କାର ଷାଠିଏ ସତୁରି ଅଶୀ ନବେ ଶତ
ଏପରି ପନ୍ଦର ବ୍ରହ୍ମା ହୋଇଲେ ଯେ ଜାତ ।
ବାଣୀଙ୍କୁ ଦେଖି ସେମାନେ ପାପ ନୟନରେ
ଚାହାନ୍ତେ ଜନ୍ମିଲା କ୍ରୋଧ ଧାତାଙ୍କ ହୃଦରେ ।
ସେ ହେତୁରୁ ହେଲା ତାଙ୍କ ଚକ୍ଷୁ ରଙ୍ଗବର୍ଣ୍ଣ
ତହିଁରୁ ଏକ କୁମାରୀ ହୋଇଲେ ଜନମ ।
ସେ କନ୍ୟା ସରସ୍ୱତୀଙ୍କୁ ମାଗନ୍ତେ ଆହାର
କିଏ ତୁ ବୋଲିଣ ବାଣୀ ପୁଚ୍ଛିଲେକ ଗିର ।
କି ହେତୁ କେତୁକା ହେଲା ତୋହର ଯେ ମନ
ତାକୁ ସରସ୍ୱତୀ ଚାହିଁ ବୋଇଲେ ଏସନ ।
ଏହି ଯେ ଦିଶୁଅଛନ୍ତି ପଞ୍ଚଦଶ ନର
ତୁ ଯାଇ ଏହାଙ୍କୁ ବେଗେ କର ଗୋ ଆହାର ।
ସରସ୍ୱତୀଙ୍କର ଆଜ୍ଞା ପାଇଣ କେତୁକା
ଯାଆନ୍ତେ ବ୍ରହ୍ମାଏ ଦେଖି ହୋଇଲେ ତାଟକା ।
ପୃଥିବୀ ଯାକରେ ପୂର୍ଣ୍ଣ ହୋଇଥିଲା ପାଣି
ବ୍ରହ୍ମା ଆଉ କେତୁକାକୁ ହେଲା ଆଣୁଆଣି ।
ହଜାର ବରଷେ ଏକ ବ୍ରହ୍ମାଙ୍କୁ ମାଇଲା
ତାଂହାଙ୍କୁ ଭକ୍ଷଣ କରି ଅନ୍ୟପାଶେ ଗଲା ।
ଏପରି ଚୌଦ ହଜାର ସମ୍ବତ୍ସର ସେହି
ଚଉଦ ବ୍ରହ୍ମା ରୁଧିର ପିଇଲା ସେ ଯାଇ ।
ଶୂଦ୍ରେକ ନାମକ ବ୍ରହ୍ମା ବାକୀ ରହିଥିଲା
କେତୁକା ଯାଆନ୍ତେ ସେହି ପଳାଇଣ ଗଲା ।
ବିଷ୍ଣୁଙ୍କ ପାଶରେ ଯାଇ ହେଲା ଉପସ୍ଥିତ
ବୋଇଲାକ ରକ୍ଷାକର ଆହେ ଜଗନ୍ନାଥ ।
ଜୀବନ ବିକଳେ ବ୍ରହ୍ମା ଡାକିଲାକ ଯହୁଁ
ହରିଙ୍କର ଯୋଗନିଦ୍ରା ଭାଜିଗଲା ତହୁଁ ।
ନୟନ ଫେଡ଼ି ଦେଖିଲେ ବ୍ରହ୍ମା ଡାକୁଅଛି
ତା ପାଶେ କେତୁକା ଖଣ୍ଡା ଧରିଣ ରହିଛି ।
ଦେଖି ରହ ରହ ବୋଲି ବୋଇଲେ ମାଧବ
କେଉଁ ଦୋଷେ ଦୋଷୀ ଯାଙ୍କୁ କିମ୍ପାଇ ମାରିବ ।
କେତୁକା କହିଲା ଆଜ୍ଞା ଦେଇଛନ୍ତି ବାଣୀ
ରକତ ପାନ କରିବି ଏ ବ୍ରହ୍ମାଙ୍କୁ ହାଣି ।
ବିଷ୍ଣୁ ବୋଇଲେ ଆବର ବ୍ରହ୍ମା କାହିଁ ଗଲେ
ବାଣୀ ବୋଇଲେ କେତୁକା ହାତେ ସର୍ବେ ମଲେ ।
ବ୍ରହ୍ମା ଏ ପାପନେତ୍ରରେ ମୋତେ ଚାହିଁବାରୁ
ଏ କେତୁକା ଜନ୍ମ ହେଲା ମୋ କ୍ରୋଧନେତ୍ରରୁ ।
ବିଷ୍ଣୁ ବୋଇଲେ ଏ ବ୍ରହ୍ମା ଶରଣ ପଶିଲା
ଏ ହେତୁ ଏହାକୁ ଆଉ ନ ମାର ବୋଇଲା ।
ଦ୍ୱାପରଯୁଗେ ଭକ୍ଷିବୁ ଏହାର ରୁଧିର
ବାଣୀ କହିଲେ କାରଣ କହ ହେ ଏହାର ।
ବିଷ୍ଣୁ ବୋଇଲେକ ଏବେ ହେବ ସତ୍ୟଯୁଗ
ତପ୍ରେ ତ୍ରେତୟାଯୁଗ ପୁଣି ହେବ ଭୋଗ ।
ତ୍ରେତୟା ଅନ୍ତେ ଦ୍ୱାପର ଯୁଗ ଯହୁଁ ହେବ
ଏହି ବ୍ରହ୍ମା ଦୁଃଶାସନ ହୋଇଣ ଜନ୍ମିବ ।
ଏ କେତୁକା ହୋଇବ ଯେ ଦ୍ରୁପଦ କୁମାରୀ
ଯଜ୍ଞକୁଣ୍ଡୁ ଜାତ ହେବ ଅନଳ ବିଦାରି ।
କାଳେ ଏହି ଦୁଃଶାସନ ଦ୍ରୌପଦୀ କେଶକୁ
ଧରି ଘୋଷାରିଣ ନେବ କୁରୁଙ୍କ ସଭାକୁ ।
ଦ୍ରୌପଦୀଙ୍କର ବଲ୍ଲଭ ହୋଇବ ଯେ ଭୀମ
ଭୀମ ଦୁଃଶାସନର ଯେ ହୋଇବ ସଂଗ୍ରାମ ।
ଦୁଃଶା ଭୀମହସ୍ତେ ଯିବ ସଂଯମନୀ ପୁର
ସେହିକାଳେ କେତୁକା ଗୋ ଏ ଦୁଃଶାସନର ।
ରକତ ପାନ କରିଣ ହୋଇବୁ ତୃପତି
ଆମ୍ଭ ବୋଲେ ଯାଙ୍କୁ ଛାଡ଼ିଦିଅ ତୁ ଏ ଘାନ୍ତି ।
ଏହା ଶୁଣି ସେ କେତୁକା ତହୁଁ ଚଳିଗଲା
ଶୂଦ୍ରେକ ବ୍ରହ୍ମାର ଆଉ ଜୀବନ ନ ନେଲା ।
ସେହି ବ୍ରହ୍ମା ଏବେ ହେଲା ଧୃତରାଷ୍ଟ୍ର ସୁତ
ପୁଣି ଦୁଃଶାସନ ନାମ ହୋଇଲା ପ୍ରାପତ ।
ଏ ବ୍ରହ୍ମା ଶୋଣିତ ପାନ କରିବାର ପାଇଁ
ପାଣ୍ଡବଙ୍କର ଘରଣୀ ହୋଇଲେକ ସେହି ।
ଏବେ ସନ୍ଦେହ ଛେଦନ ହେଲା କି ରାଜନ
ଦ୍ରୌପଦୀଙ୍କ ପୂର୍ବକଥା କଲି ମୁହିଁ ଗାନ ।
ଏଥୁଅନ୍ତେ କହୁଅଛି ଶୁଣ ଅନ୍ୟ କଥା
ଦୁଃଶାସନ ବଧ ଅନ୍ତେ ହେଲା ଯେ ବାରତା ।
ଶଲ୍ୟ ବୋଇଲେ ଶୁଣ ହେ ଆଦିତ୍ୟ ତନୟ
ତୁମ୍ଭ ପ୍ରତିଜ୍ଞାର ଦେଲ କିସ ପରିଚୟ ।
ଯେଉଁକାଳୁ ଭୀଷ୍ମ ଦ୍ରୋଣ ହେଲେଣି ନିହତ
ସେ କାଳୁ ରଣ କରିବା ନ ଥିଲା ଉଚିତ ।
ମୋହର କଥାକୁ ଆଗେ ଅବହେଳା କରି
ସେନାପତି ହେଲ ତୁମ୍ଭେ ମନେ ଗର୍ବ କରି ।
ତୁମ୍ଭ ସେନାପତି ହେବା ପ୍ରଥମ ଦିନରେ
ରାଜା ସତାଶୋଇ ଭାଇ ଗଲେ ଯମଘରେ ।
ପୁଣି ଦ୍ୱିତୀୟ ଦିନରେ ମଲେ ଦୁଃଶାସନ
ରାଜା ଅରକ୍ଷ ହୋଇଲେ କି ବିଚାର ମନ ।

ଏବେ ଆଉ ଜୟ କଥା ପରିତ୍ୟାଗ କରି
ଟାଳ ହେ କରିବ ସନ୍ଧି ରାଜାକୁ ପଚାରି ।
କର୍ଣ୍ଣ ବୋଇଲେ ମାମୁଁ ହେ ଜାଣ ନାହିଁ ନୀତି
ପାଣ୍ଡବ ସଙ୍ଗେ ରାଜାଙ୍କ କାହୁଁ ହେବ ପ୍ରୀତି ।
କରିବ ସମର ନିଶ୍ଚେ ମାରିବି ଅର୍ଜ୍ଜୁନ
ନିସତ ନ ହୁଅ ମାମୁଁ ଦୃଢ଼ କର ମନ ।
ଏହି ପରକାରେ କହି କର୍ଣ୍ଣ ସେନାପତି
ରଥ ଚାଳିବା ନିମନ୍ତେ ଦେଲେ ଅନୁମତି ।
ପୁଣି ଶଲ୍ୟ ବୀର ରଥ ତୁରଙ୍ଗ ଚାଳିଲେ
ନନ୍ଦିଘୋଷ ରଥ ଆଗେ କର୍ଣ୍ଣ ରଥ କଲେ ।
କର୍ଣ୍ଣଙ୍କ ରଥ ସମ୍ମୁଖେ ଦେଖି ଧନଞ୍ଜୟ
ସମର କରିଲେ କ୍ରୋଧେ ହୋଇ ଅତିଶୟ ।
ବେଳୁବେଳ ରଣ ହେଲା ଦୁଃସହ ପ୍ରକାରେ
ଛାୟାପତି ବୁଡ଼ିଗଲେ ବାରୁଣୀ କୁଣ୍ଡରେ ।
ମହାଘୋର ରଣ ହେଲା ଅନ୍ଧକାର ରାତି
ବଢ଼ିଲାକ ରଣରଙ୍ଗ ନୋହିଲାକ ଶାନ୍ତି ।
ଶକୁନି ଧୃଷ୍ଟଦ୍ୟୁମ୍ନ କଲେ ରଣଗୋଳ
ବୃଷସେନ ରାଜା ସଙ୍ଗେ ଯୁଝିଲେ ନକୁଳ ।
କୁନ୍ତ ଧରିଣ ନକୁଳ ମାରନ୍ତେ ଛାତିରେ
ବୃଷସେନ ବକ୍ଷ ଫୁଟି ପିଠିକି ବାହାରେ ।
ବୃଷସେନ ରାଜା ଯହୁଁ ହୋଇଲେ ନିହତ
ସୈନ୍ୟମାନେ ପଳାଇଲେ ହୋଇ ଇତସ୍ତତଃ ।
ସହସ୍ର ଯୋଦ୍ଧା ମାରଲେ ନକୁଳ କୁନ୍ତରେ
କର୍ଣ୍ଣ ପ୍ରବେଶ ହୋଇଲେ ଏମନ୍ତ ବେଳରେ ।
ପ୍ରବେଶ ମାତ୍ରେ ବାଦଲ ଶର କଲେ ଘାତ
ନକୁଳଙ୍କ ଅଶ୍ୱ ରଥ ହେଲା ଚୂର୍ଣ୍ଣିଭୂତ ।
ବିରଥୀ ହୋଇ ନକୁଳ କରି ପାଦଗତି
କୁନ୍ତ ପ୍ରହାର କରିଲେ କର୍ଣ୍ଣଙ୍କର ପ୍ରତି ।
ତାହା ଦେଖି କର୍ଣ୍ଣ ବୀର ଡେଇଁଲେ ରଥରୁ
କୁନ୍ତକୁ ଛଡ଼ାଇନେଲେ ନକୁଳହସ୍ତରୁ ।
ତାକୁ ଦୁଇଖଣ୍ଡ କରି ଭାଙ୍ଗି ପକାଇଲେ
ଖଣ୍ଡା ଧରି ନକୁଳଙ୍କୁ ଚୁଟିକି ଧଇଲେ ।
ଶୂନ୍ୟହସ୍ତ ହୋଇଥିଲେ ଯେ କାଳେ ନକୁଳ
କର୍ଣ୍ଣଙ୍କ ଛାମୁରେ ଆଉ କି କରିବେ ବଳ ।
ଚୁଟି ଧରି ଚକ୍ରାକାରେ ବୁଲାଇ ବୁଲାଇ
ପୁଣି ଖଡ଼ଗ ନକୁଳ କାନ୍ଧରେ ବସାଇ ।
ବୋଇଲେ ଆରେ ପାଣ୍ଡବା ପକାଇବି ହାଣି
ତୋ ଇଷ୍ଟଦେବତା ଛନ୍ତି ମୃତ୍ୟୁକାଳ ଜାଣି ।
ନକୁଳ ବୋଇଲେ ଧନ୍ୟ ଇଷ୍ଟ ନାହିଁ ଜାଣ
କୋଇନ୍ତା ମାତା ରଖିବେ ପାଦରେ ଶରଣ ।

କୋଇନ୍ତାଙ୍କ ନାମ ଶୁଣି କର୍ଣ୍ଣ ମହାଭାଗ
ପୂର୍ବକଥା ମନେ ଗୁଣି କଲେ ପରିତ୍ୟାଗ ।
ବୋଇଲେ ଶୁଣରେ ତୁହି ନକୁଳ ମୋ ଗିର
ପ୍ରାଣଦାନ ଦେଲି ପଳା ତେଜିଣ ସମର ।
ତୋ ସମାନ ଯେହୁ କର ତା ସଙ୍ଗରେ ରଣ
ଆଉ ମୋ ହାତେ ପଡ଼ିଲେ ନେବି ତୋ ପରାଣ ।
ଏମନ୍ତ ବହୁତ ଗାଳିଦେଇ ଦେଲେ ଛାଡ଼ି
ନକୁଳ ଲଜ୍ଜିତ ହୋଇ ଗଲେ ଯେ ବାହୁଡ଼ି ।
ଯେଉଁଠାରେ ରହିଥିଲେ କୃଷ୍ଣ ଅରଜୁନ
ତାଙ୍କ ପାଶରେ ରହିଲେ ହୋଇଣ ବିମନ ।
ଅର୍ଜ୍ଜୁନ ସମସ୍ତ ଶୁଣି କହିଲେ ବୁଝାଇ
ପ୍ରଥମରେ ଭୀମଙ୍କୁ ସେ ଅଛି ଲଜ୍ଜା ଦେଇ ।
ଦ୍ୱିତୀୟେ ଯୁଧିଷ୍ଠିରଙ୍କୁ ଦେଲା ଅପମାନ
ଏବେ ତୁହି ଲଜ୍ଜାପାଇ ହେଉଛୁ ବିମନ ।
ହାରିବା ଜିଣିବା ଅଟେ କ୍ଷତ୍ରିଙ୍କର ରୀତି
ଏଥିକି ଭାବନା କିମ୍ପା ମନ କର ଶାନ୍ତି ।
ତୋର ସଙ୍ଗେ ଆମ୍ଭେମାନେ ନୋହୁକି ଲଜ୍ଜିତ
ଆଚ୍ଛା କର୍ଣ୍ଣକୁ ଦେଖିବା ସେ ବୀର କେମନ୍ତ ।
ଏମନ୍ତ କହି ଅର୍ଜ୍ଜୁନ ନକୁଳେ ବୋଧିଲେ
ସେ ରାତ୍ରେ ବହୁତ ସୈନ୍ୟ ପାର୍ଥ ନାଶ କଲେ ।
ସମର କରନ୍ତେ ହେଲା ବହୁତ ରଜନୀ
କାକର ଶୀତରେ ବ୍ୟସ୍ତ ସକଳ ସଇନି ।
ହସ୍ତେ ଅସ୍ତ୍ରମାନ ଆଉ ନ ପାରିଲେ ଧରି
ଯୁଦ୍ଧେ ଅଶକତ ଅଙ୍ଗ ହୋଇଲା ସବୁରି ।
ସୈନ୍ୟଙ୍କ ଅବସ୍ଥା ଦେଖି ଦେବ ଜଗନ୍ନାଥ
ପାର୍ଥଙ୍କୁ ବୋଇଲେ ରଣ କରାଅ ସ୍ଥଗିତ ।
ଅସ୍ତ୍ର ଛାଡ଼ି ପାର୍ଥ କଲେ ଜୟଶଙ୍ଖ ନାଦ
ଉଭୟ ସୈନ୍ୟ ରହିଲେ ଶୁଣି ସେ ଶବଦ ।
ତହୁଁ କୃଷ୍ଣ ପାଣ୍ଡବାଦି ସୈନ୍ୟସହ ଗଲେ
ବାରୁଣାବନ୍ତ କଟକେ ପ୍ରବେଶ ହୋଇଲେ ।
ଯେ ଯାହାର ନିତ୍ୟକର୍ମ ସାରିଣ ତତ୍‌କ୍ଷଣ ତଡ଼ତି
ଶୟନ ମନ୍ଦିରକୁ ଯେ ସମସ୍ତେ ଚଳନ୍ତି ।
ଏ ବେଳେ କୃଷ୍ଣା ଦାସୀକୁ କରିଲେ ଆଦେଶ
ଏହିକ୍ଷଣି କହି ଯାଅ ଭୀମଙ୍କର ପାଶ ।
ତାହାଙ୍କୁ ହକାରି ଆଣ ଶୀଘ୍ର ମୋର କତି
ଆଜ୍ଞା ପାଇ ମୃଦୁସୁଲୀ ଗଲା ଶୀଘ୍ର ଗତି ।
ଭୀମସେନଙ୍କୁ ବୋଇଲା ଦ୍ରୌପଦୀ ହକରା
ବିଳମ୍ବ ନ କରି ତୁମ୍ଭେ ଆସ ହୋଇ ତ୍ୱରା ।
ଶୁଣି ବୃକୋଦର ମନେ ହୋଇଲେ ଆନନ୍ଦ
ଭୀମସେନଙ୍କୁ ଏକାନ୍ତେ ବୋଇଲେ ଗୋବିନ୍ଦ ।

ସକଳ ପ୍ରକାରେ ନେବ ଦ୍ରୌପଦୀଙ୍କ ମନ
ତହୁଁ ସେ ସନ୍ତୁଷ୍ଟ ହୋଇ ହୋଇଲେ ପ୍ରସନ୍ନ ।
ବର ମାଗ ବୋଲିଣ ସେ କହିବେ ଯେ କାଳେ
ପଲ୍ୟଙ୍କକୁ ତ୍ୟାଗ କରି ଉଭାହେବ ତଳେ ।
ଶୁଣିଣ କହନ୍ତି ଭୀମ ଯୋଡ଼ି ବେନିକର
ଏପରି କିମ୍ପା କହିଲ ଆହେ ଚକ୍ରଧର ।
ସେତ ମୋହର ଭାରିଯା ପୁଣ ପ୍ରିୟବତୀ
ତାହା ସଙ୍ଗେ ଅଛି ମୋର ଅଭେଦ ପୀରତି ।
କେବଣ ଗୁପତ କଥା କହିବ ବା ମୋତେ
ଏଥିକି କର ଯୋଡ଼ିବି କହ କି ନିମନ୍ତେ ।
ସ୍ତ୍ରୀ ମାତ୍ରକ ଯେବେ ମୋର ବୋଲ ନ କରିବ
ତାହାର ମୋହର ଆଉଁ ପୀରତି ନୋହିବ ।
ଶୁଣି କରି ଜଗନ୍ନାଥ ଦେଲେ ଏହି ବୁଦ୍ଧି
ତାଙ୍କ ରାଗ ନ ଜନ୍ମାଇ ବୋଲିବ ଯେ ବୋଧି ।
ଅବୋଧ ସ୍ତିରୀ ମାତ୍ରକ ନ ଜାଣ ହେ ଭୀମ
କଦାଚିତ ତାହାଠାରେ ନ କରିବ ତମ ।
ଅତି ପ୍ରୀତିବଳେ ଯେବେ ଯାଚିବେ ସେ ବର
ଆମ୍ଭର କଥାକୁ ମନେ ରଖ ବୃକୋଦର ।
ବୋଲିବ ପାଣ୍ଡବେ କୃଷ୍ଣ ତୁମ୍ଭର ଦାଢ଼ରେ
ନ ପଡ଼ିବେ ଏହି ବର ଦିଅ ସନ୍ତୁଷ୍ଟରେ ।
ଏହା ଶୁଣି ଭୀମଙ୍କର ନ ସ୍ଫୁରିଲା ବାଣୀ
କିଛି ନକହି କୃଷ୍ଣଙ୍କୁ ଗଲେ ସେହିକ୍ଷଣି ।
ଭୀମକୁ ଦେଖିଣ କୃଷ୍ଣା ହୋଇ ହସ ହସ
ବୋଇଲେ ହେ ପ୍ରାଣନାଥ ମୋ ପାଶକୁ କିସ ।
ଏହା କହି ବାହୁଯୁଗେ କରି ଆଲିଙ୍ଗନ
ଚନ୍ଦ୍ରାଶାଳାପୁରେ ଦୁହେଁ କରିଲେ ଗମନ ।
ନାନା ହାସ ପରିହାସେ ମନମୁଗ୍ଧ କରି
ସନ୍ତୁଷ୍ଟ ଚିତ୍ତ ହୋଇଲେ ଦ୍ରୁପଦ କୁମାରୀ ।
ବୋଇଲେକ ବର ମାଗ ଆହେ ପ୍ରାଣନାଥ
ଯାହା ମାଗିବ ତା ଦେବି ମୋର ସତ୍ୟ ସତ୍ୟ ।
ତାହା ଶୁଣି ଭୀମସେନ ପଲ୍ୟଙ୍କ ତେଜିଲେ
ତଳେ ଉଭାହୋଇ କଟୁ ବଚନ କହିଲେ ।
ଆଗୋ ଦେବୀ ତୋ ଇଚ୍ଛାରେ ଯେବେ ବର ଦେବୁ
କୃଷ୍ଣସହ ଆମ୍ଭେ ତୋର ଦାଢ଼େ ନ ପଡ଼ିବୁ ।
ଭୀମଙ୍କ ପ୍ରାର୍ଥନା ଶୁଣି ନାରୀ ଶିରୋମଣି
ବୋଇଲେ ଏ ବୁଦ୍ଧି ଶିକ୍ଷା ଦେଲେ ଚକ୍ରପାଣି ।
ଆହେ ପ୍ରାଣନାଥ ଆଜ ଯଥାର୍ଥ କହିବି
ତୁମ୍ଭ ଆଦି କରି କୃଷ୍ଣ ବଂଶକୁ ମାରିବି ।
ଏକା ଧର୍ମ ଯୁଧିଷ୍ଠିର ନାହାନ୍ତି ମୋ ଦାଢ଼େ
ସ୍ୱଶରୀରେ ସ୍ୱର୍ଗ ଯିବେ ଜାଣ ଏହା ଦୃଢ଼େ ।
ତୁମ୍ଭେମାନେ ମୋହର ଯେ ପ୍ରାଣସମ ଅଟ
ତୁମ୍ଭଙ୍କୁ ସଙ୍ଗରେ ଘେନି ଯିବି ମୁଁ ବୈକୁଣ୍ଠ ।
ତାହା ଶୁଣି ଭୀମସେନ ହୋଇଲା ଶଙ୍କିତ
ହୃଦୟରେ ଚିନ୍ତାକଲେ ଦେବ ଜଗନ୍ନାଥ ।
ଭୀମସେନ ବିଚାରିଲେ କିଛି ତ ନୋହିଲା
ଜଗନ୍ନାଥଙ୍କ ବଚନ ଅନ୍ୟଥା ହୋଇଲା ।
ପୁଣି ହିଁ ଭୀମ କହନ୍ତି ଶୁଣ ଗୋ ସୁନ୍ଦରୀ
ମୁଁ ତୋହର ସ୍ୱାମୀ ତୁହି ମୋର ମନୋହାରୀ ।
କିବା କଥା ତୋତେ ଏତେ ପ୍ରକାର କହିଲି
କହିଛୁ ତ ଯା ମାଗିବ ତାହା ଦେବି ବୋଲି ।
ମୋତେ ଗୋ ସୁନ୍ଦରୀ ଛାଡ଼ ଯୁଧିଷ୍ଠିଙ୍କ ସଙ୍ଗେ
ଶ୍ରୀକୃଷ୍ଣଙ୍କୁ ଛାଡ଼ିଦିଅ କଉତୁକ ରଙ୍ଗେ ।
ନ କଲେ ମୋ ମନଦୁଃଖ ହେବ ଗୋ ସୁମୁହାଁ
ତୋହର ଦୁଇଚରଣ ଭୁଜ ମୁଁ ଧରଇ ।
ଏହା ଶୁଣି ଦ୍ରଉପଦୀ ହେଲେ ସଙ୍କୁଚିତା
ବୋଇଲେ ହେ ପ୍ରାଣନାଥ ଶୁଣ ପୂର୍ବକଥା ।
ମନ୍ୱନ୍ତରେ କହିଛନ୍ତି ଯାହା ଚକ୍ରପାଣି
ଏବେ ସେ ସକଳ କଥା ପାଶୋରିଦେଲେଣି ।
ମୋତେ ବୋଇଲେ ଛାଡ଼ିଣ ଦେବାକୁ ତାହାକୁ
ସେ ଗଲେ ମୁଁ ନ ପାରିବି ଯାଇ ଯେ ସ୍ୱର୍ଗକୁ ।
ଶୁଣି ଭୀମଙ୍କର ହେଲା ମନରେ ବିଷାଦ
ରାତିଯାକ ତାଙ୍କୁ ଆଉ ନୋହିଲାକ ନିଦ ।
ପ୍ରଭାତ ହୁଅନ୍ତେ ଭୀମ ନିତ୍ୟକର୍ମ ସାରି
ସଂଗ୍ରାମକୁ ବାହାରିଲେ କରେ ଶସ୍ତ୍ର ଧରି ।
ଭୀମକୁ ଡାକି ପୁଛିଲେ ଦେବ ଜଗନ୍ନାଥ
କାଲି ଯାହା କହିଥିଲୁ ସେ ହେଲା କେମନ୍ତ ।
ପୁଣି ଭୀମ ନତଶିରେ ତାହାଙ୍କୁ କହିଲେ
ଯେତେରୂପେ କହିଲେ ସେ କଥା ନ ଘେନିଲେ ।
ବୋଇଲା ଏକା ଯୁଧିଷ୍ଠି ଦେବଙ୍କୁ ଛାଡ଼ିବି
ତୁମ୍ଭଙ୍କୁ ଛାଡ଼ିଲେ ଏଥୁ ମୁଁ କେମନ୍ତେ ଯିବି ।
ଆହେ ପ୍ରଭୁ ତୁମ୍ଭପାଇଁ କହିଲି ବହୁତ
ତେବେ ସେ ବୋଧ ନୋହିଲେ କରଯା ଉଚିତ ।
ଭୀମଙ୍କ ମୁଖରୁ ଶୁଣି ଜଗତର ବନ୍ଧୁ
କପାଳୁ କଣ୍ଟି ଆସିଲା ସ୍ୱେଦ ବିନ୍ଦୁ ବିନ୍ଦୁ ।
ବିଶେଷ ଦୁଃଖିତ ହୋଇ କହିଲେକ ଯାହା
ପୂର୍ବେ ଯାହା ଅର୍ଜିଅଛି ଭୁଞ୍ଜିବି ନା ତାହା ।
ଦୁଃସହ ଦ୍ୱନ୍ଦେ ପଡ଼ିଲି ମୁହିଁ ଅକାରଣ
ଏହା କହି ସନ୍ତାପିତ ହୋଇଲେ ଆପଣ ।
ଆହେ ମନୁରାଜା ଶୁଣ ତେଣେ ଦୁର୍ଯ୍ୟୋଧନ
କପାଳରେ କର ମାରି କରଇ ରୋଦନ ।

ଆରେରେ ଦଇବ ତୋର ଏହା ଥିଲା ମନେ
ନିରକ୍ଷ କରିଲୁ ମୋତେ ଭାଇଙ୍କ ବିହୀନେ ।
ଆରେ ଦୁଃଶାସନ ମୁହିଁ ତୋହର ପ୍ରସାଦେ
ନିଷ୍କଣ୍ଟକେ ରାଜ୍ୟ କରିଅଛି ଅପ୍ରମାଦେ ।
ବିପୁଳ ଭୋଗ ଭୁଞ୍ଜିଲି ତୋହପାଇଁ ମୁହିଁ
ଏବେ ତୋ ବିହୀନେ ମୋତେ ବୁଦ୍ଧି ଦିଶୁନାହିଁ ।
ତୋର ସମାନ ମୋହର ଆଉ କେ ହୋଇବ
ତୋର ବିନା ମୋର ପ୍ରାଣ କିପରି ରହିବ ।
ଜାଣିଲି ପାଣ୍ଡବମାନେ ଅତି ବଳିୟାର
ଭୀମ ମାଇଲା ସକଳ ଭାଇଙ୍କି ମୋହର ।
ଏହା ସଙ୍ଗେ ଲଢ଼ିବାକୁ ବାର ବାର ତୋତେ
ମନା କରିଥିଲି ଭାଇ ଗଲୁ କି ନିମନ୍ତେ ।
ମୋର କର୍ମ ଅବଳକୁ ହୋଇଲା ଏପରି
ଭୀଷ୍ମ ଦ୍ରୋଣ ପ୍ରାୟ ରଥୀ ଗଲେ ଯମପୁରୀ ।
ତୋହର ବାହୁକୁ ଥିଲା ମୋର ବଡ଼ ଆଶ
ତୋ ବିନା ଅନ୍ଧାର ଦିଶେ ମୋତେ ଦଶଦିଶ ।
ତୁହି ତ ଯୁଦ୍ଧ କରିଣ ପରାଣ ତେଜିଲୁ
ବିପଦ ସମୁଦ୍ରେ ମୋତେ ବୁଡ଼ାଇଣ ଗଲୁ ।
ମୋହର ଦକ୍ଷିଣ ବାହୁ ତୁହି ଥିଲୁ ଭାଇ
ତୋ ବାହୁ ଯା ଛିଡ଼ାଇଲା ସେ କଥା ନୁହଇ ।
ମୋହର ବାହୁ ଛିଡ଼ିଲା କରିବି ମୁଁ କିସ
ତୋ ଯୋଗେ ଅନ୍ଧାର ଦିଶେ ଉଡ଼ଇ ସାହସ ।
ହେ ମିତ୍ର କିସ କରିବି ଏଥୁ ଯାଇ କରି
ଆଉ ମୋର କେହି ନାହିଁ ସବୁ ଗଲେ ମରି ।
ଏହାକହି ସର୍ବ ସୈନ୍ୟ ରଖି ରଣଭୂଇଁ
ହସ୍ତିନାକୁ ଏକା ଗଲେ କୁରୁକୁଳ ସାଇଁ ।
ଜୟ ଜୟ ଜଗବନ୍ଧୁ ହେ ଯଦୁନନ୍ଦନ
ବ୍ରଜ କାମିନୀଙ୍କ ଅଟ ହୃଦୟ ଚନ୍ଦନ ।
ବଡ଼ ଦେଉଳ ବିହାରୀ ବଡ଼ ଚିତା ଚୂଳ
କି ଶୋଭା ପାଉଛି ଚକାନୟନ ଯୁଗଳ ।
ବଳିୟାର ଭୁଜ ଦେଖି ଭୁଲିଯାଏ ମନ
ଧନ୍ୟ ଧନ୍ୟ ଯେ ମୂରତି ମଦନ ମୋହନ ।
କେଡ଼େ ଶୋଭାବନ ଦିଶେ ସେ ରଙ୍ଗ ଅଧର
ପୂରି ରହିଛି ସେଥିରେ ହାସ୍ୟ ମନୋହର ।
ନାସାରେ ଗଜମୁକୁତା ଦିଶେ ଶୋଭାବନ
କଟି ପାଟଝୁମ୍ପା ଦେଖି ଲାଖିରହେ ମନ ।
ଦେଖ କୁନ୍ଦନର ଶୋଭା ମନ ନିଏ କିଣି
ଏମନ୍ତ ରୂପରେ ସଦା କରେ ମୁଁ ଭାଳେଣି ।
ଆହେ ଚକାଡୋଳା ମୋତେ ତ କର ନିରାଶ
ସଂସାର ଜାଲରେ ପଡ଼ି ହେଲିଣି ହତାଶ ।
ବାହୁ ଟେକିଦେଇ ଭୁଜେ ରଖ ଏ ଭୃତ୍ୟକୁ
ଶାରଳାଦାସ ନ ଜାଣେ ଅନ୍ୟ ଯେ କାହାକୁ ।

—o—

## ଶେନ୍ୟପକ୍ଷୀର ପୂର୍ବଜନ୍ମ ବିବରଣ ଓ ଭୀମ ଦୁଃଶାସନର ପୂର୍ବ ବିବରଣ

ପଚାରନ୍ତି ବୈବସ୍ୱତ ମନୁ ମହାମତି
ଶୁଣ ହେ ଅଗସ୍ତି ମୁନି ମୋହର ଭାରତୀ ।
ଉପାଡ଼ିଲା ଦୁଃଶାସନ ଭୁଜ ଭୀମସେନ
କହିଲ ଯେ ସେହି ଭୁଜ ଗିରିର ସମାନ ।
ବୁଲାଇଣ ଭୀମସେନ ଫିଙ୍ଗିଦେଲେ ରାଗେ
ଶ୍ୟେନପକ୍ଷୀ ଝାମ୍ପ ଦେଲା ଆହାର ସଂଯୋଗେ ।
ସେ ଶ୍ୟେନ ପକ୍ଷୀ ପୂରୁବେ କିଏ ଥିଲା କହ
ଏଥିର ଚରିତ ମୋତେ ଲାଗୁଛି ସନ୍ଦେହ ।
କହନ୍ତି ଅଗସ୍ତି ଶୁଣ ରାଜା ସ୍ଥିର ମନେ
ଶ୍ୱେନପକ୍ଷୀ ବୁଲେ ନିତ୍ୟ ସମର ଗଗନେ ।
ଦୁଃଶାର ଦକ୍ଷିଣ ଭୁଜ ଧଇଲା ଥଣ୍ଟରେ
ବାମଭୁଜକୁ ଫିଙ୍ଗନ୍ତେ ଝମ୍ପିଲା ପାଦରେ ।
ପାଦେ ଥଣ୍ଟେ ଧରି ଭୁଜ ହୋଇ ତୋଷମନ
ଉଡ଼ି ଉଡ଼ି ଚାଲିଗଲା ଚୌରାଶୀ ଯୋଜନ ।
ଲୋକାଲୋକ ନାମେ ଅଛି ଏକଇ ଭୂଧର
ତାହାର ଶିଖେ ବସିଲା ଯାଇଁ ପକ୍ଷୀବର ।
ସେ ଭୂଧର ପକ୍ଷୀବର ନ ପାରନ୍ତେ ସହି
ସାତକ୍ରୋଶ ଛଡ଼ାଥିଲା ବିନ୍ଧ୍ୟଗିରି ରହି ।
ଦୁଇ ପର୍ବତରେ ଦୁଇପାଦ ଦେଇ ବସି
ସେ ବେନିଭୁଜ ଖାଇଲା ମନେ ହୋଇ ଖୁସି ।
ବିଚାର ରାଜନ ପକ୍ଷୀ ସାମାନ୍ୟ ନୁହଇ
ତିନିଯୋଜନ ତାହାର ପଞ୍ଜରା ଅଟଇ ।
ପଞ୍ଚାଶ ଯୋଜନ ଅଟେ ଡେଣାର ପ୍ରମାଣ
ପଞ୍ଚାଶ କ୍ରୋଶ ଓସାର ଶିର ତାର ଜାଣ ।
ରୁପନ୍ନସେନ ନାମରେ କାଶ୍ମୀର ନରେଶ
ପାରିଧି କରିବା ପାଇଁ କରି ଅଭିଳାଷ ।
ସାତକ୍ଷୌଣୀ ସୈନ୍ୟ ସାତ ସହସ୍ରେକ ଗଜ
ଘେନିଣ ବାହାର ହେଲେ ରାଜା ହୋଇ ସଜ ।
ସେ ଗଜମାନେ ପକ୍ଷୀର ପାଦେ ଗଲେ ଗଳି
ଜାଣି ନ ପାରିଲା ତାହା ପକ୍ଷୀ ମହାବଳୀ ।
ଶ୍ୟେନ ପକ୍ଷୀର ଅଟଇ ଏମନ୍ତ ଶରୀର
ଏବେ କହୁଅଛୁ ଶୁଣ ଜନମ ତାହାର ।
ଏହି ଶ୍ୟେନବଂଶ ଥିଲେ ବୁଧ ନରପତି
ତାଙ୍କ ପୁତ୍ର ପୁରରବା ହେଲେ ଉତପତ୍ତି ।

ପୁରରବାଙ୍କ ନନ୍ଦନ ନୃପଦେବା ହେଲେ
ନୃପଦେବାଙ୍କ ଔରସେ ନହୁଷ ଜନ୍ମିଲେ ।
ସତ୍ୟଯୁଗରେ ନହୁଷ ହେଲେ ସୁରେଶ୍ୱର
ମତିଭ୍ରମ ହୋଇ ଗର୍ବ ବହିଲେ ଅପାର ।
ଋଷିମାନଙ୍କୁ ହାନ୍ଦୋଳା ବୁହାଇଲେ ନେଇ
ଏହି ପରକାରେ କିଛିଦିନ ଗଲା ବହି ।
ଏକଦିନେ ଅଷ୍ଟାବକ୍ର ଋଷିଙ୍କି ସେ ଧରି
ହାନ୍ଦୋଳାକୁ ବୁହାଇଲେ କିଛି ନ ବିଚାରି ।
ତହୁଁ ଅଷ୍ଟାବକ୍ର ଋଷି ଲଭି ମହାକଷ୍ଟ
ଶାପ ଦେଲେ ସର୍ପ ତୁହି ହୁଅରେ ପାପିଷ୍ଠ ।
ଅନ୍ୟଥା ନୋହିଲା ସେହି ଋଷିଙ୍କର ବାଣୀ
ସର୍ପରୂପକୁ ଧଇଲେ ରାଜା ସେହିକ୍ଷଣି ।
ସର୍ପରୂପ ଧରି ରାଜା ବନକୁ ଚଳିଲା
କେତେକାଳ ପରିଯନ୍ତେ ବନରେ ବୁଲିଲା ।
ସର୍ପମାନଙ୍କର ଅଟେ ଯେମନ୍ତ ସ୍ୱଭାବ
ମଣ୍ଡୁକ ଆଦି କରି ସେ ଭକ୍ଷେ ନାନାଜୀବ ।
ସର୍ପ ଖାଇବା ନିମନ୍ତେ ଗରୁଡ଼ ଅଇଲେ
ଯେ ସର୍ପ ପାଇଲେ ତାକୁ ଭକ୍ଷଣ କରିଲେ ।
ନହୁଷ ମଣ୍ଡୁକ ନାମେ ସର୍ପ ହୋଇଥିଲେ
ଗରୁଡ଼ ଦେଖଇ ଲୁଚିଲା ସେହୁ ବନମାଳେ ।
ଗରୁଡ଼ ଭୟେ ସେ ଗଲେ ପଣ୍ଡ ନାମେ ଗିରି
ସେହି ସର୍ପକୁ ଗରୁଡ଼ ନ ପାଇଲା ଲୋଡ଼ି ।
ଗରୁଡ଼ର ଭୟେ ସେହୁ ପଶିଲା ବିବରେ
ସହସ୍ର ବରଷଯାଏ ନ ଆସେ ବାହାରେ ।
ଏକ ଦିନକର କଥା ଶୁଣ ନରପାଳ
ସ୍ତବ୍‌ଧ ଅସୁର ଭୟ ହେବାରୁ ପ୍ରବଳ ।
ବକ୍ରଦଂଷ୍ଟ୍ର ବାଳଖିଲ୍ୟ ଅନୁଷ୍ଟାପ ମୁନି
ସେ ଗୁହାମଧ୍ୟେ ଲୁଚିଲେ ଦୁହେଁ ହୋଇ ତୁନି ।
ସହସ୍ର ବର୍ଷରୁ ସର୍ପ ଥିଲା ଅନାହାର
ଦୁଇ ଋଷି ପୁତ୍ର ପାଇ କଲାକ ଆହାର ।
ଅଷ୍ଟାବକ୍ର ଋଷି ଗଲେ ପୁଅ ଖୋଜିବାକୁ
ପୁଅକୁ ନ ପାଇ ପୁଣି ଫେରିଲେ ଘରକୁ ।
ଧ୍ୟାନେ ଜାଣିଲେ ନହୁଷ ସର୍ପ କଲା ଗ୍ରାସ
ତହୁଁ ମହାମୁନି ହେଲେ କୋପରେ ଅବଶ ।
ଅଷ୍ଟାବକ୍ର ବୋଲେ ମୋର ବଂଶ କଲୁ ନାଶ
ରାଜା ହୋଇ ସର୍ପ ହେଲୁ ଧିକ ତୋର ଯଶ ।
ଦୋଷ ଅନୁରୂପ ହୋଇ କ୍ରୂର ପଶୁ ଜାତି
ହଜାଇ ବସିଲୁ ସର୍ବ ପୂର୍ବଯଶ ଖ୍ୟାତି ।
ତୋହର ଦୁହିତା ଅଟେ ସେ ହି ନାମେ ନାରୀ
ତୋର ମାଂସ ଭକ୍ଷୁ ଶ୍ୟେନପକ୍ଷୀ ରୂପ ଧରି ।
ଅଷ୍ଟାବକ୍ରଙ୍କ ଶାପରେ ନହୁଷ କୁମାରୀ
ଦୁଇ ଯୁଗଯାଏ ଥିଲା ପକ୍ଷୀରୂପ ଧରି ।
ପୁଣି ଅଷ୍ଟାବକ୍ରଙ୍କରହୋଇଲା ବାହନ
ଋଷି ଯେଉଁଆଡ଼େ ଯାନ୍ତି କରେ ସେ ଗମନ ।
ସତ୍ୟ ତ୍ରେତାଯୁଗ ତହୁଁ ହୋଇଲାକ ଶେଷ
ଦ୍ୱାପର ଯୁଗ ଆସିଣ ହୋଇଲା ପ୍ରବେଶ ।
ଋଷିଙ୍କ ବାହନରୂପେ ସର୍ବଦା ସେ ଥାଏ
ଏତେ କାଳକେ ତା ପ୍ରତି ଋଷି ଦୟା ହୁଏ ।
ବୋଇଲେ ସୁନ୍ଦରୀ ଆରେ ନ କହୁ ତୁ ମୋତେ
ଏକମନ ହୋଇ ଶୁଣ କହଇ ମୁଁ ତୋତେ ।
ଉଡୁଥାଅ ତହିଁ ଯାଇ ଆକାଶର ମଧ୍ୟେ
ଦୁଃଶାସନ ଭୁଜ ଉପାଡ଼ିବ ଭୀମ ଯୁଦ୍ଧେ ।
ଫିଙ୍ଗିଣ ଦେବ ସେ ଭୁଜ ଆକାଶର ମାର୍ଗେ
ତୁ ତାହା ଧରିବୁ ଅନ୍ତରୀକ୍ଷେ ଥାଇ ବେଗେ ।
ତୋହର ବଂଶ ସେ ଦୁଃଶା ତାର ମାଂସ ଭକ୍ଷ
ମୋ ଦେଲା ଶାପରୁ ତୁହି ହୋଇଯାଅ ମୋକ୍ଷ ।
ଏହାକହି ମୁନିବର ତାକୁ ଦେଲେ ଛାଡ଼ି
ସେଦିନୁ ଦଶଦିଶେ ସେ ବୁଲେ ଉଡ଼ି ଉଡ଼ି ।
ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ନହୁଷ ଦୁହିତା ଶ୍ୟେନ ହେଲା ସେହିଦିନୁ ।
ଏବେ କି ସନ୍ଦେହ ଛେଦ ହୋଇଲା ତୁମ୍ଭରି
ଯାହା ପଚାରିଲ ରାଜା କହିଲୁ ବିସ୍ତାରି ।
ଆହୁରି କଥାଏ ରାଜା ମନଦେଇ ଶୁଣ
ଭୀମ ଦୁଃଶାସନ କଥା ଅପୂର୍ବ ଆଖ୍ୟାନ ।
ବାସବସୁଙ୍କର ଅଟେ ଦୁହିତା ହରିଣୀ
ତାହାକୁ କେତୁ ଚୋରାଇ ଅଇଲାକ ଘେନି ।
ତାଠାରୁ ବଳେ ମଙ୍ଗଳ ତାକୁ ଘେନିଗଲା
ତାହାପାଇଁ ଦୁହିଁଙ୍କର ସମର ହୋଇଲା ।
ସତ୍ୟଯୁଗ ଗତ ହେଲା କରନ୍ତେ ସମର
ଦେଖିଣ ତାଟକା ହେଲେ ସକଳ ଅମର ।
କଠୋର ସମର ଦେଖି ବିଜେ କଲେ ଧାତା
ବୋଇଲେ ଯୁଦ୍ଧ ଏଥେକ ନାହାନ୍ତି ଦେଖନ୍ତା ।
ଇନ୍ଦ୍ରେ ବୋଇଲେ ସମ୍ଭାଳ ତୁମ୍ଭେ ମଙ୍ଗଳକୁ
ସୂର୍ଯ୍ୟଙ୍କୁ ବୋଇଲେ ତୁମ୍ଭେ ରଖ ହେ କେତୁକୁ ।
ଏହା କହି ବ୍ରହ୍ମା ତହୁଁ ହୋଇଲେ ଅନ୍ତର
ଏ ଉତ୍ତାରୁ ଯାହା ହେଲା ଶୁଣ ନରେଶ୍ୱର ।
ସତ୍ୟ ଅନ୍ତେ ତ୍ରେତା ଯହୁଁ ହୋଇଲା ଆଗମ
ଇନ୍ଦ୍ର ଆଦିତ୍ୟ ପଶିଲେ ଗୌତମ ସଦନ ।
ଅହଲ୍ୟା ତ ଶୋଇଥିଲା ମୃତ ଶବ ହୋଇ
ତା ପରାଣ ମୁନି ସଙ୍ଗେ ଯାଇଥିଲେ ନେଇ ।

ଅହଲ୍ୟାର ଗର୍ଭେ ଇନ୍ଦ୍ର ପଶି ହେଲେ ଆତ୍ମା
ଶୃଙ୍ଗାର କଲେକ ତାକୁ ସୂର୍ଯ୍ୟ ମହାତମା ।
ଆରଦିନ ସୂର୍ଯ୍ୟଦେବ ପଶିଲେ ତା ଗର୍ଭେ
ଶୃଙ୍ଗାର କଲେ ତାହାକୁ ସୁରରାଜ ତେବେ ।
ଏହି ଦୁଇ ଦେବଙ୍କର ଅମୋଘ ବୀର୍ଯ୍ୟରେ
ସମୟେ ଜାତ ହୋଇଲେ ଦୁଇଟି କୁମରେ ।
ଗଉତମ କୋଳେ ଧରି ସେହି ବେନିବଳା
ନାମ ଦେଲେ ସୋମତିଳା ଆଉ ଯମତିଳା ।
ସ୍ନାନେ ଗଲେ ଦୁଇପୁତ୍ର କନ୍ୟା ମୁନି ଘେନି
ଗୋଡ଼ ତାତନ୍ତେ ଧଇଲେ କୋଳେ ପୁତ୍ରବେନି ।
ଅଞ୍ଜନାକୁ ଋଷି ଯହୁଁ ନ କଲେକ କୋଳ
ପୋଡ଼ିଲା କହି ହୋଇଣ ଅତ୍ୟନ୍ତ ବ୍ୟାକୁଳ ।
ବୋଇଲେ ଜାରଜପୁତ୍ରେ ବାପା କଲେ କୋଳ
ମୁଁ ତୁମ୍ଭ ଔରସେ ଜାତ ହୁଏ କଲବଲ ।
ଏହା ଶୁଣି ଗଉତମ ସେଠାରୁ ଫେରିଲେ
ପୁଣି ସମୁଦ୍ର କୂଳରେ ଯାଇଁ ଉଭାହେଲେ ।
ବୋଇଲେ ନ ହୋଇଥିଲେ ଆତ୍ମବୀର୍ଯ୍ୟେ ଜାତ
ମର୍କଟ ହୋଇ ଅଇଲେ ସେହି ବେନିଭାଇ ।
ଏହା କହିଣ ଦୁହିଁଙ୍କୁ ଦେଲେ ସେ ପକାଇ
ମର୍କଟ ହୋଇଣ ଆସ ମୋହର ଅଗ୍ରତ ।
ମୁନି ନିଜ ଆଶ୍ରମକୁ ନ ଗଲେ ଲାଜରେ
ଦୁହିଁଙ୍କୁ ଛାଡ଼ିଲେ ନେଇ କିଷ୍କିନ୍ଧ୍ୟା ବନରେ ।
ସେହି ବନର ନୃପତି ଅଟଇ ଖଡ଼୍‌ଗଦ
ସେ ବେନିପୁତ୍ର ପାଳିଲା ହୋଇଣ ସାନନ୍ଦ ।
ଅଗସ୍ତି କହିଲେ ମନୁ ନୃପଙ୍କ ଆଗର
ବାଳି ସୁଗ୍ରୀ ନାମ ହେଲା ସେହି ଦୁହିଁଙ୍କର ।
ସତ୍ୟଯୁଗେ ହୋଇଥିଲେ କେତୁ ଯେ ମଙ୍ଗଳ
ତ୍ରେତାରେ ବାଳି ସୁଗ୍ରୀବ ହେଲେ ମହାବଳ
ପୁଣି ଦ୍ୱାପରେ ହୋଇଲେ ଭୀମ ଦୁଃଶାସନ ।
ଯୁଗେ ଯୁଗେ ଯାଙ୍କ ଜାଣ ଶତ୍ରୁତା ରାଜନ ।
ଆହେ ନାରାୟଣ ତୁମ୍ଭେ କି କରି ନ ପାର
ସଂସାରେ ଲଗାଉଅଛ ଲୀଳା ଖେଳଘର ।
ଆରତେ ଯେହୁ ଡାକଇ ଶୁଣ କର୍ଣ୍ଣ ଡେରି
ତେଣୁ ଆରତନାଶନ ବୋଲାଅ ହେ ହରି ।
ନାନା ଅବତାର ଯୁଗେ ଯୁଗେ ହେଉଅଛ
ଦୁଷ୍ଟଙ୍କୁ ବିନାଶି ସନ୍ଥଜନଙ୍କୁ ପାଳୁଛ ।
ଏପରି ପ୍ରଭୁଙ୍କୁ ଛାଡ଼ି ଅନ୍ୟ ଯେହୁ ଭଜେ
ସକଳ ବିଅର୍ଥ ତାର ସେହୁ ଦୁଃଖେ ମଜେ ।
ଏଥିପାଇଁ ଜଣାଏ ହେ କମଳାବିଳାସ
ଶାରଳା ଦାସଙ୍କୁ ରଖ କରି ଦାସ ଦାସ ।

—୦—

## କର୍ଣ୍ଣଙ୍କର ଶୋଷକ ସର୍ପ ପ୍ରୟୋଗ

କହନ୍ତି ବିଲଙ୍କ ରାଜା ହେ ମୁନି ପଣ୍ଡିତ
ତୁମ୍ଭ ପ୍ରସାଦରେ ମୁହିଁ ହେଉଛି କୃତାର୍ଥ ।
ପ୍ରତିଦିନ ଶୁଣାଉଛ ଭାରତ ଆଖ୍ୟାନ
ତାହା ଶୁଣି ଆନନ୍ଦିତ ହୁଏ ମୋର ମନ ।
ସୁଧାରସରୁ ଅଧିକ ଲାଗଇ ମଧୁର
ତୁମ୍ଭ ଗୁଣ ଶୁଝିବାକୁ ଶକ୍ତି କାହିଁ ମୋର ।
ଆଉ ଏକ ଗୋଟି କଥା ଘେନାକର ମୁନି
ରଣଭୂଇଁରେ ତ ଥିଲେ କୌରବ ସଇନି ।
ଦୁଃଶାସନ ବଧ ଅନ୍ତେ କୌରବ ନରେଶ
କେଉଁ କଥା କଲେ ପୁଣି କରନ୍ତୁ ପ୍ରକାଶ ।
କହନ୍ତି ଅଗସ୍ତି ମୁନି ଶୁଣ ନରନାଥ
ବିଭାବରୀ ଅବସାନେ ହୁଅନ୍ତେ ପ୍ରଭାତ ।
ଯେ ଯାହାର ନିତ୍ୟକର୍ମମାନ ଶେଷ କରି
ଦଉଡ଼ିଲେ ଦୁଇବଳ ଅସ୍ତ୍ର ଶସ୍ତ୍ର ଧରି ।
ରଣକ୍ଷେତ୍ରେ କୁରୁସୈନ୍ୟ ପଡ଼ି ରହିଥିଲେ
ରାଜା ଆସିବା ଦେଖିଣ ସର୍ବେ ବାହାରିଲେ ।
କପିରଥ ଶଲ୍ୟଙ୍କର ଧୀରେ ଧୀରେ ବାହି
ନନ୍ଦିଘୋଷ ରଥ ଆଗେ ଉଭା କଲେ ନେଇ ।
କର୍ଣ୍ଣବୀର ଅର୍ଜ୍ଜୁନକୁ ସମ୍ମୁଖରେ ଦେଖି
ଶର ପ୍ରୟୋଗ କରିଲେ ନିଜ ଚାପେ ଯୋଖି ।
ତାହା ଦେଖି ଧନଞ୍ଜୟ କରି ପ୍ରତିଶର
କର୍ଣ୍ଣଙ୍କ ପ୍ରୟୋଗ ଅସ୍ତ୍ର କରିଲେ ସଂହାର ।
ପୁଣି ହିଁ ଅୟୁତେ ଶର ମାରନ୍ତେ ରାଧେୟ
ମେଘାଶରରେ ଛେଦନ କଲେ ଧନଞ୍ଜୟ ।
ପର୍ବତାଶର ମାରନ୍ତେ କର୍ଣ୍ଣ ମହାବଳୀ
ବଜ୍ରଶରେ ଧନଞ୍ଜୟ କରିଦେଲେ ଧୂଳି ।
ଏହିକାଳେ ଆର୍ଦ୍ରାବଳି ନନ୍ଦନ ଶୋଷକ
ବୋଲେ ମୋରେ ପେଶ ତୁମ୍ଭେ ହେ ବୀର ନାୟକ ।
ନନ୍ଦିଘୋଷ ସହିତରେ କୃଷ୍ଣ ଧନଞ୍ଜୟ
ଏକାବେଳକେ ଗିଳିବି ଦେଖିବ ନିଶ୍ଚୟ ।
ଶୋଷକ ସର୍ପର କଥା ଶୁଣି କର୍ଣ୍ଣ ବୀର
ବୋଇଲେ ଏକଥା ନୁହେଁ କ୍ଷତ୍ରିଙ୍କ ବିଚାର ।
ଏଥିରେ ମୋତେ ବହୁତ ହୋଇବ ଦୂଷଣ
ଏ କଥା କିମ୍ପାଇ କହୁ ମୋତେ ଅକାରଣ ।
ଆପଣାର ଅସ୍ତ୍ର ଥାଉଁ ପେଶେ ଯେ ଅନ୍ୟକୁ
ଅନ୍ତିମେ ନରକଗତି ହୁଅଇ ତାହାକୁ ।
ଏହି ପ୍ରକାରେ ଶାସ୍ତ୍ରରେ ଅଛଇ ପ୍ରମାଣ
ତୋତେ ପ୍ରୟୋଗ କରିଲେ ନୋହିବ କାରଣ ।

ସର୍ପ ବୋଲେ ନାହିଁ କର କିମ୍ପା ବୀରମଣି
ତୁମ୍ଭ ଉପଦ୍ରବ ସବୁ ନାଶିବି ଏକ୍ଷଣି ।
ଶଲ୍ୟ ବୋଇଲେ କିମ୍ପାଇ ହେଉଛ ବିମୁଖ
ଗିଳିବ ବୋଲି କହୁଛି ଥରେ ପେଶି ଦେଖ ।
ଶଲ୍ୟ ଅନୁରୋଧକ୍ରମେ କର୍ଣ୍ଣ ମହାଭାଗ
ଆପଣା ଚାପେ ସର୍ପକୁ କରିଲେ ସଂଯୋଗ ।
ବୋଇଲେ ହେ ସର୍ପ ତୁହି ଶୀଘ୍ର ହୋଇ ଚଳ
ନନ୍ଦିଘୋଷ ରଥ ସହ କୃଷ୍ଣାର୍ଜୁନେ ଗିଳ ।
ଏହା କହି ସେ ସର୍ପକୁ ଯହୁଁ ଦେଲେ ଛାଡ଼ି
ତହୁଁ ସେ ଚଳିଲା କୋପେ ଅର୍ଦ୍ଧାକାଶ ମାଡ଼ି ।
ଫାଳେ ପାଟି ଆକାଶରେ ଫାଳେ ରଖି ତଳେ
ଏମନ୍ତ ତୁଣ୍ଡ ବିସ୍ତାରି ସେହି ସର୍ପ ଚଳେ ।
ପାଣ୍ଡବେ ଶର ମାଇଲେ ନିଜ ଚାପେ ଯୋଡ଼ି
ସବୁ ଶର ପୋଡ଼ିଯାଏ ସର୍ପ ଗର୍ଭେ ପଡ଼ି ।
ପାଣ୍ଡବଙ୍କ ଅଶୀକୋଟି ଯୋଦ୍ଧା ଏକମୁଖେ
ଶର ମାରନ୍ତେ ସେ ସର୍ପ ଗର୍ଭମ୍‌ଧ୍ୟେ ରଖେ ।
ପର୍ବତାଶର ମାଇଲେ ଅର୍ଜୁନ କ୍ରୋଧରେ
ଧନୁ ଛାଡ଼ନ୍ତେ ତିନିଟା ହେଲା ସେ ପଥରେ ।
ସେ ତିନି ପର୍ବତ ସର୍ପ ଗର୍ଭରେ ପଶିଲା
କିଞ୍ଚିତ ମାତ୍ରକେ ସବୁ ଭସ୍ମ ହୋଇଗଲା ।
ପୁଣି ପାଞ୍ଚଲକ୍ଷ ଶର ବିନ୍ଧିଲେ ଅର୍ଜୁନ
ସର୍ପ ଗର୍ଭମଧ୍ୟେ ପଡ଼ି ହେଲା ଅନ୍ତର୍ଦ୍ଧାନ ।
ବିଷର ଅନଳ ଜ୍ୱାଳା ଯାହା ଅଛି ମାଡ଼ି
ନାରାଚ ଦଗ୍ଧ ହୁଅନ୍ତି ସର୍ପ ଗର୍ଭେ ପଡ଼ି ।
ପୁଣି ଅଗ୍ନିମୁନା ଶର ପ୍ରହାରିଲେ ପାର୍ଥ
ସହସ୍ର ଶିଖାରେ ସେହି ହେଲା ଆଲୋକିତ ।
ସେ ଶର ସର୍ପ ମୁଖରେ ପଡ଼ିବାର କ୍ଷଣି
ଲିଭିଗଲା ଯେଉଁରୂପ ଢାଳିଦେଲେ ପାଣି ।
ଶ୍ରୀକୃଷ୍ଣ ସହଦେବଙ୍କୁ ପଚାରିଲେ କହ
ଏ ଅସ୍ତ୍ର ପାଇଲା କାହୁଁ ସୂର୍ଯ୍ୟଙ୍କର ପୁଅ ।
ମନ୍ତ୍ରୀ ବୋଇଲେ ଶ୍ରବଣ କର ଭଗବାନ
ଯେ କାଳେ ଖାଣ୍ଡବ ବନ ଦହିଲେ ଅର୍ଜୁନ ।
ଶୋଷକ ସର୍ପର ବଂଶ ଥିଲେ ଘର କରି
ଅଗ୍ନି ଜଳନ୍ତେ ସକଳ ତହିଁ ଗଲେ ମରି ।
ଏ ସର୍ପ କୌଶଳ କରି ତହୁଁ ପଳାଇଲା
ସେହିଦିନୁ ଅର୍ଜୁନକୁ ମାରିବି ପାଞ୍ଚିଲା ।
ପୁଣି ଆମ୍ଭେମାନେ ଯେବେ ଗଲୁ ନିଜ ବାସ
ଅଜ୍ଞାତ ବରଷେ ଆସି ହୁଅନ୍ତେ ପ୍ରବେଶ ।
ଶମୀ ବୃକ୍ଷର କ୍ରୋଟରେ ଶସ୍ତ୍ରାଦି ରଖିଲୁ
ଗୁପତ ବେଶେ ବିରାଟ ଦେଶରେ ରହିଲୁ ।
କିପରି ତା ଜାଣି ସର୍ପ ସେ ଶମୀ କ୍ରୋଟରେ
ଲୁଚି ରହିଲା ଏମନ୍ତ ବିଚାରି ମନରେ ।
ଯେ କାଳେ ଏ ଅସ୍ତ୍ର ପାର୍ଥ ନେବାକୁ ଆସିବ
ସେ କାଳେ ଏ ସର୍ପ ତାକୁ ଦଂଶନ କରିବ ।
ଗୋ ହରଣ କରିବାକୁ ଗଲେ କୁରୁବଳ
ବିରାଟ ରାଜ୍ୟରେ ସର୍ବେ ହୋଇଲେକ ଠୁଳ ।
ଉତ୍ତର ଚଳିଲେ ବୃକ୍ଷେ ଅସ୍ତ୍ର ଆଣିବାକୁ
କ୍ରୋଟରେ ପୁରାନ୍ତେ ହାତ ଦଂଶିଲା ତାହାକୁ ।
ଚିହ୍ନିଲା ଏ ସର୍ପ ଯହୁଁ ନୁହନ୍ତି ଅର୍ଜୁନ
ଭୟେ ସେ ସ୍ଥାନରୁ ବେଗେ କଲା ପଳାୟନ ।
ଦଂଶନମାତ୍ରେ ଉତ୍ତର ପରାଣ ତେଜିଲେ
ଗାରେଡ଼ି ମନ୍ତ୍ର ବଳରେ ପାର୍ଥ ଜୀଆଇଲେ ।
ସେ ସର୍ପ ସେଠାରୁ ଯାଇ ପଶିଲେ ସାଗର
ଅଭେଦକ ମଣି ଘେନି ହୋଇଲେ ବାହାର ।
କୁରୁସୈନ୍ୟ ଥିବାଠାକୁ କଲା ସେ ଗମନ ।
ସେ ମଣି କର୍ଣ୍ଣକୁ ଦେଇ ପଶିଲା ଶରଣ
ସହଦେବ ମନ୍ତ୍ରୀ ବୋଲେ ଶୁଣିବା ଶ୍ରୀବତ୍ସ ।
ବହୁକାଳୁ ଆମ୍ଭଙ୍କୁ ଏ ପ୍ରମାଦ ଚିନ୍ତୁଛି ।
କୃଷ୍ଣ ବୋଇଲେ ବିରାଳଚନ୍ଦ୍ର ବଂଶୀ ସେହି
ଶାସ୍ତ୍ରର ଆଘାତେ ସେହୁ କେଭେ ଧ୍ୱଂସିନୋହି ।
ଏମନ୍ତ ଭାଳନ୍ତେ ସହଦେବ ହୃଷୀକେଶ
ଗ୍ରାସିଲା ବେଗେ ଆସିଣ ରଥ ନନ୍ଦିଘୋଷ ।
ପାଣ୍ଡବଙ୍କ ବଳ ସର୍ବ ପଳାଇଲେ ଭାଜି
ମହାବିଶ୍ୱରୂପେ ସର୍ପ ଥାଏ ଗଳ ଗାଜି ।
ରଥାଶ୍ୱ ଗଜ ପଡ଼ଇ ଯାହା ତାର ମୁଖ
ସ୍ୱର୍ଗ ମର୍ତ୍ତ୍ୟେ ପାଟି କରି ସବୁ କଲେ ଭକ୍ଷ ।
ଅର୍ଜୁନର ଶରକୁ ଯେ ନାହିଁ ତାର ଭୀତି
କୃଷ୍ଣ ଭୟ କଲେ ଦେଖି କାଳସର୍ପ ମୂର୍ତ୍ତି ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ହନୁବୀର
ଏ ସଙ୍କଟୁ ନନ୍ଦିଘୋଷ ରଥ ରକ୍ଷା କର ।
ପାଣ୍ଡବେ ସର୍ବଦା ମୋର ପ୍ରିୟ ଅନୁଗତ
ତୁମ୍ଭଯୋଗୁ ଏ ଆପଦୁ ହୋଇବେ ମୁକତ ।
କୃଷ୍ଣଙ୍କ ଆଦେଶେ ହନୁ ବିଶ୍ୱରୂପ ଧରି
ତଳକୁ ଚାପନ୍ତେ ରଥ ପଶେ ବସୁନ୍ଧରୀ ।
ନନ୍ଦିଘୋଷ ପାତାଳରେ ରହିଲା ଗୋପନେ
ସର୍ପ ପ୍ରବେଶ ହୋଇଲା ରଥଥିବା ସ୍ଥାନେ ।
ଭୟଙ୍କର ରୂପ ଧରି ସର୍ପ ମହାବଳୀ
କେବଳ ପତାକା ଗିଳି ତହୁଁ ଗଲା ଚଳି ।
କର୍ଣ୍ଣଙ୍କ ଛାମୁରେ ସର୍ପ ପରବେଶ ହୋଇ
ବୋଇଲା ରଥକୁ ଗିଳି ଆସିଅଛି ମୁହିଁ ।

କର୍ଣ୍ଣ ଦେଖିଲାକ ଯହୁଁ ନନ୍ଦିଘୋଷ ରଥ
ପ୍ରଶଂସା କରିଲେ ତହୁଁ ସର୍ପକୁ ବହୁତ ।
ଅଦ୍‌ଭୁତେ ଆସି ମୋତେ ସାହାପକ୍ଷ ହେଲୁ
ଏବେ ତୁ ସର୍ପକୁଳର ମହତ ରଖିଲୁ ।
ଏକାଙ୍ଗ କ୍ଷତ୍ରିୟ ହେଲେ.କୌରବ ଈଶ୍ୱର
ଧନ୍ୟ ଧନ୍ୟ ସର୍ବଶ୍ରେଷ୍ଠ ମହିମା ତୋହର ।
ସାଧୁ ସାଧୁ ପ୍ରଶଂସିଲେ କଉରବ ସୈନ୍ୟ
ଧନ୍ୟ କର୍ଣ୍ଣ ତୁମ୍ଭେ ତୁମ୍ଭ ପିତାମାତା ଧନ୍ୟ ।
ନନ୍ଦିଘୋଷ ରଥେ ଥିବେ କୃଷ୍ଣ ବୀର ପାର୍ଥ
ଚାରିଗୋଟା ଅଶ୍ୱ ପୁଣି ଥିଲା ହନୁମନ୍ତ ।
ଏହାଙ୍କୁ ଗିଳି ଅଇଲା କର୍ଣ୍ଣଙ୍କର ଶର
ଏବେ ନିଃଶଙ୍କ ହୋଇଲେ କୌରବ ଈଶ୍ୱର ।
ଆଗହୁଁ ଏ ଶର ଯେବେ କର୍ଣ୍ଣ ପେଶିଥାନ୍ତେ
ତେବେ ଏତେ ଯୋଦ୍ଧା କିମ୍ପା ସମରେ ମରନ୍ତେ ।
କୁରୁସୈନ୍ୟ ଏହା କହି ଆନନ୍ଦିତ ହୋଇ
ଜୟ ପତାକା ବାନ୍ଧିଲେ ସର୍ବେ ରଥେ ନେଇ ।
ଶକୁନି ବୋଇଲା ଶୁଣ ରାଜା ଦୁର୍ଯ୍ୟୋଧନ
କାହା ଦର୍ପେ ନାଶ ଯିବ କୃଷ୍ଣ ଅରଜୁନ ।
ଏମନ୍ତ କଥା କି ତୁମ୍ଭେ ବିଶ୍ୱାସ କରୁଛ
କର୍ଣ୍ଣର ଯେତେକ କଥା ସବୁ ଅଟେ ମିଛ ।
କୃଷ୍ଣେ ନିଶ୍ଚେ କରିଛନ୍ତି କୌଣସି ଉପାୟ
ହେ ରାଜା ଜାଣିବ ଏହା ପଶ୍ଚାତେ ନିଶ୍ଚୟ ।
ଏସନ ବିଚାର କରୁ ସଇନି ସମସ୍ତ
ଐଶାନ୍ୟ ଦିଗେ ଦିଶିଲା ନନ୍ଦିଘୋଷ ରଥ ।
ସୂର୍ଯ୍ୟଙ୍କ କିରଣ ପଡ଼ି ଯଥା ଉଦେଗିରି
ଦାଉ ଦାଉ ହୋଇ ଦିଶେ ରତନ ଯେପରି ।
ସେହିପରି ଜ୍ୟୋତି କରି ନନ୍ଦିଘୋଷ ରଥ
ପୂର୍ବଦିଗେ ବାହାରିଲେ ଘେନି କୃଷ୍ଣ ପାର୍ଥ ।
ନନ୍ଦିଘୋଷ ଚାଲନ୍ତେ ଯେ ଦେଇ ଘୋର ରଡ଼ି
ଭୟେ କୁରୁସୈନ୍ୟ ଗଲେ ରଣଭୂଇଁ ଛାଡ଼ି ।
ବିସ୍ମୟ ହୋଇଲେ ଦେଖି ରାଜା ଦୁର୍ଯ୍ୟୋଧନ
ଲାଜରେ ରହିଲେ କର୍ଣ୍ଣ ମରଣ ସମାନ ।
କର୍ଣ୍ଣ ବୋଲେ ଗୁରୁତର ଅଧର୍ମ ମୁଁ କଲି
କ୍ଷତ୍ରିୟ ହୋଇଣ ମୁହିଁ ଧର୍ମକୁ ଲଙ୍ଘିଲି ।
ଏଥିପାଇଁ ପ୍ରଥମରେ କରୁଥିଲି ମନା
ଶଲ୍ୟଙ୍କ କଥାକୁ ରଖି ପାଇଲି ଲାଞ୍ଛନା ।
ଏମନ୍ତ ବିଚାରି ସର୍ପ ପ୍ରତି ଦୃଷ୍ଟି ଦେଇ
ବୋଇଲେ ଦେଖରେ ସର୍ପ ପଛେ କେ ଆସଇ ।
ସାକ୍ଷାତେ ଏ ନନ୍ଦିଘୋଷ ରଥ ଆସେ ଚଳି
କହ ସର୍ପ କାହାକୁ ତୁ ଆସିଅଛୁ ଗିଳି ।

କର୍ଣ୍ଣଙ୍କ ବଚନ ଶୁଣି ସର୍ପ କଲା ବାନ୍ତି
ଉଦରୁ କପିକେତନ ପଡ଼ିଲା ତ କ୍ଷିତି ।
କର୍ଣ୍ଣ ବୋଇଲେ ପତାକା ଗିଳି କରୁ ଆସ୍ଫ
ରଥ ଗିଳିଥିଲେ ନିଶ୍ଚେ ଫାଟନ୍ତା ତୋ ପେଟ ।
ଶୋଷକ ବୋଇଲା କର୍ଣ୍ଣ ଆଉଥରେ ପେଶ
ଏଥର ଗିଳି ଆସିବି ନିଶ୍ଚେ ନନ୍ଦିଘୋଷ ।
ରଥ ଲୁଚାଇଲେ ନେଇ ପାତାଳ ଭୁବନ
ଏଥର ତ୍ରିପୁର ଘୋଟି କରିବି ଗମନ ।
ଯେବଣ ଭୁବନେ ନେଇ ଲୁଚାଇବେ ରଥ
ସତ୍ୟ କରୁଛି ଗିଳିବି ନିଶ୍ଚୟ ତାହାନ୍ତ ।
କର୍ଣ୍ଣ ବୋଇଲେ କ୍ଷତ୍ରିୟ ହୋଇଲେ ନିସତ
ଦୂଷିତ କର୍ମ କରିଲେ ଧର୍ମ ନୁହେଁ ପ୍ରାପ୍ତ ।
ଦ୍ୱିତୀୟରଥ ପେଶିଲେ ଧର୍ମ ହେବ ହାନି
କିମ୍ପା ତୁ କଟାଳ କରୁ ସର୍ପ ହୁଅ ତୁନି ।
ଦେଖ ତ ଅର୍ଜୁନ ଆସି କରୁଛି ସମର
ସୈନ୍ୟଙ୍କୁ ସଂହାର କରିନିଏ ଯମଘର ।
ଏତେବେଳେ ପାଣ୍ଡବେ ଯେ ଜିଣିଯିବେ ରଣେ
କିମ୍ପା ତୁ କଟାଳ କରୁ ମୋତେ ଅକାରଣେ ।
ଶୋଷକ ବୋଇଲା ଶୁଣ ହେ ସୂର୍ଯ୍ୟ ଆତ୍ମଜ
ମୋର ବଂଶ ଉଦ୍ଧାରିବା ଅଟେ ତୁମ୍ଭ କାର୍ଯ୍ୟ ।
ପୁଣି ରାଜାଙ୍କର ନାଶ ହୋଇବ ଅରାତି
ନିଷ୍କଣ୍ଟକେ ରହିବେ ସେ ହୋଇ ଚକ୍ରବର୍ତ୍ତୀ ।
ଏ ଥରକ ପେଶ ମୋତେ ନିଶ୍ଚୟ ଗିଳିବି
କୌରବଙ୍କ ମନସ୍କାମ ଆଜି ପୁରାଇବି ।
ଶୁଣି କର୍ଣ୍ଣ ଅତିଶୟ ମନେ ହୋଇ କୋପ
ବୋଇଲେ ମୋ ପାଶୁ ବେଗେ ପଳାପଳା ସର୍ପ ।
ଦୈବେ ଯାତ୍ରାକାଳେ ତୋର ଦେଖିଲେ ଆନନ
ଅଯାତ୍ରା ହୁଅଇ ଶାସ୍ତ୍ରେ ହୋଇଛି ଲିଖନ ।
ଦେହେ ପଡ଼ିଲେ ବର୍ଷକ ଧର୍ମ ହୁଏ ହାନି
କେବେହେଲେ ପିତୃଲୋକ ନ ପାଆନ୍ତି ପାଣି ।
କାମୁଡ଼ିଲେ ନିଶ୍ଚୟରେ ହୁଅଇ ମରଣ
ସର୍ପମାନଙ୍କର ଅଛି ଏତେ ମନ୍ଦଗୁଣ ।
ପଳାଇ ନ ଯାଇ ଆଉ ରହିଛୁ ମୋ ପାଶ
ତୋତେ ଲାଜ ନ ମାଡ଼ଇ ପୁଣି ବୋଲୁ ପେଶ ।
ମରଣ ଭୟରେ ଆସି ପଶିଲୁ ଶରଣ
ମୋ ରଥରେ ରଖି ତୋତେ ପାଇଛି କଷଣ ।
ନାନାଦୋଷ ନ ଧରି ମୁଁ ରଖିଥିଲି ତୋତେ
ଏତେକାଳେ ଦେଲୁ ତାର ପ୍ରତିଫଳ ମୋତେ ।
ବଂଶ ବୁଡ଼ାଇ ବଞ୍ଚିବା କଲୁ ମନେ ସାଧ
ତୋ ଛାରକୁ ପେଶି ହେଲା ମୋର ଶିରଚ୍ଛେଦ ।

ଥରେ ପାପୀ ସର୍ପ କିମ୍ପା ଚାହୁଁ ଫେରି ଫେରି
ପ୍ରାଣ ଯାଉରେ ତୋହର ମୁର୍ଦ୍ଧା ଫାଟିକରି ।
ପଳାରେ ନିର୍ଲ୍ଲଜ କ୍ରୁର ପଳା ମୋ ରଥରୁ
ବହୁ କାର୍ଯ୍ୟ ନାଶ କଲି ତୋହର ହେତୁରୁ ।
ଶୁଣି ଶୋଷକ ବୋଇଲା କର୍ଣ୍ଣ ଶୁଣ ଗିର
ଅକାରଣେ ଭାଙ୍ଗିଲୁ ତୁ ଦର୍ପକୁ ମୋହର ।
ପୁଣି ବୃଥା ଝିଙ୍ଗାସିଲୁ ମିଛେ ଦେଇ ଦୋଷ
ତୋ ରଥ ଚକକୁ ଆଜ ଭୂମି କରୁ ଗ୍ରାସ ।
ଦୁଇଦଣ୍ଡ ମାତ୍ର ଚକ ଭୂମିରେ ପଶିବ
ତହିଁରୁ ଉଠିଲେ ତୋତେ କେହି ନ ଜିଣିବ ।
ଶାପଦେଇ କାଳସର୍ପ କର୍ଣ୍ଣ ରଥ ଛାଡ଼ି
ପଳାଇଲେ ମହାକ୍ରୋଧେ ଆକାଶରେ ଉଡ଼ି ।
କର୍ଣ୍ଣ ତେରି ଶୁଣ ଆହେ ମନୁ ନୃପବର
ବ୍ୟାଘ୍ର ସର୍ପ ଖଡ଼୍‌ଗଧାରୀ ଆବର କୁମ୍ଭୀର ।
ମର୍କଟ ଭଲ୍ଲୁକ ସିଂହ ଏ ସକଳ ପ୍ରାଣୀ
କାହାରି ନୁହନ୍ତି କାଳେ ଦୃଢ଼େ ଥିବ ଜାଣି ।
ଯେଉଁଜନ ଏମାନଙ୍କୁ ଦିଅଇ ଆଶ୍ରୟ
କାଳେ ନାଶକୁ ଭଜଇ ସେ ପ୍ରାଣୀ ନିଶ୍ଚୟ ।
ଶରଣ ରଖିଲେ କର୍ଣ୍ଣ ଅସମୟ କାଳେ
ତାକୁ ଶାପ ଦେଲା ଉପକାରର ବଦଳେ ।
ଆହେ ଜ୍ଞାନୀ ବୃଦ୍ଧମାନେ କରିବ ବିଚାର
ଉପକାର କରିବାରୁ ହେଲା ଅପକାର ।

—o—

## କର୍ଣ୍ଣବଧ

କରଯୋଡ଼ି ଜଣାଇଲେ ବିଳଙ୍କ ଈଶ୍ୱର
ହେ ଅଗସ୍ତି ମୁନି ମୋର କଥା ଘେନା କର ।
କୃଷ୍ଣଙ୍କ କୌଶଳେ ସର୍ପ ଗଲା ଲାଜ ପାଇ
ଶୂନ୍ୟପଥେ ଉଡ଼ିଗଲା କର୍ଣ୍ଣେ ଶାପ ଦେଇ ।
ତତ୍ପରେ କେବଣ କଥା କରିଲେ କୌରବେ
ସେହିକଥା ଶୁଣିବାକୁ ମୋର ଇଚ୍ଛା ଏବେ ।
ବାହାନ୍ତି ଯେ ନନ୍ଦିଘୋଷ ରଥ ଦେବ ହରି
କର୍ଣ୍ଣର ଛାମୁରେ ନେଇ ରଥ ଯେ ଉଭାରି ।
ନନ୍ଦିଘୋଷ ରଥ ଦେଖି କମ୍ପମାନ କର୍ଣ୍ଣ
ଶତ ଶତ ଶର ବିନ୍ଧେ ରାଧାର ନନ୍ଦନ ।
ଲୁହାର ନାରାଚ ଶଙ୍ଖଚିଲ ପକ୍ଷୀ ଛନ୍ଦି
ସହସ୍ରେନାରାଚ କର୍ଣ୍ଣ ପୁରାଇଣ ବିନ୍ଧି ।
ପୁଣି ନାରାଚ ବିନ୍ଧିଲା କର୍ଣ୍ଣ ସସ୍ର ତିନି
ଅର୍ଜ୍ଜୁନ ଛେଦିଲା ତାହା କୁବେରାସ୍ତ୍ର ଘେନି ।
ପୁଣି ଚାରିଶତ ବାଣ କର୍ଣ୍ଣ ପ୍ରହାରିଲେ
ଏକଶରେ ଧନଞ୍ଜୟ ସବୁ କାଟିଦେଲେ ।
କୁହୁକ ଶରକୁ ପୁଣି ମାଇଲେ ରାଧେୟ
ଦିଗ ବିଦିଗ ହୋଇଲା ଅନ୍ଧକାରମୟ ।
ଦଶଦିଗ ଅନ୍ଧକାର ନ ଦିଶଇ କିଛି
ମାଇଲେକ ସୂର୍ଯ୍ୟାବର୍ତ୍ତ ଶର ସବ୍ୟସାଚୀ ।
ସୂର୍ଯ୍ୟଙ୍କର ତେଜକୁ ସେ ଯେଣୁ ପ୍ରକାଶିଲା
ଫିଟିଲା କୁହୁକ ଦଶଦିଗ ଯେ ଦିଶିଲା ।
ପୁଣି ଅୟୁତେକ ଶର କର୍ଣ୍ଣ ମହାବୀର
କପିକେତନ ଉପରେ କଲେକ ପ୍ରହାର ।
ଚାରିସହସ୍ର ମାଇଲେ ଚାରୋଟି ସ୍ତମ୍ଭକୁ
ସହସ୍ରେ ମାଇଲେ ପୁଣି ରଥ ଉପରକୁ ।
ପାର୍ଥକୁ ପେଶିଲେ ଚାହିଁ ଅୟୁତେକ ଶର
ତା ଦେଖି ଆଶ୍ଚର୍ଯ୍ୟ ହେଲେ ଯାଦବ ଈଶ୍ୱର ।
ଅୟୁତେ ଶର ପ୍ରହାରି ବୀର ଧନଞ୍ଜୟ
କର୍ଣ୍ଣଙ୍କ ସକଳ ଅସ୍ତ୍ର କରିଦେଲେ କ୍ଷୟ ।
ପୁଣି କପିକେତନକୁ କର୍ଣ୍ଣ ଧନୁର୍ଦ୍ଧର
ଦଶସହସ୍ର ନାରାଚ କରିଲେ ପ୍ରହାର ।
ସହସ୍ର ଶର ବିନ୍ଧିଲେ ସେ ଚାରି ଅଶ୍ୱଙ୍କୁ
ପଞ୍ଚତ୍ରିଂଶ ଶରେ ପାର୍ଥ ଛେଦିଲେ ସବୁଙ୍କୁ ।
ପର୍ବତାଶର ମାଇଲେ ସୂର୍ଯ୍ୟଙ୍କ ନନ୍ଦନ
ବଜ୍ରଶର ମାରି ପାର୍ଥ କରିଦେଲେ ଚୂର୍ଣ୍ଣ ।
ପଞ୍ଚାଶତ ଶର ପୁଣି ପେଶିଲେ ରାଧେୟ
ଗର୍ଜନ ନାଦେ ଘୋଟିଲା ବିଦ୍ୟୁତ ପରାୟ ।
ବଜ୍ରାବଳୀ ଶର ମାରି ପାର୍ଥ ମହାବଳୀ
କର୍ଣ୍ଣଙ୍କ ସକଳ ଶର କରିଦେଲେ ଧୂଳି ।
ପୁଣି କର୍ଣ୍ଣ ମହାବୀର ଧରି ଅଗ୍ନିଶର
ପ୍ରହାରନ୍ତେ କମ୍ପମାନ ହେଲା ତିନିପୁର ।
ଉଭୟ ଦଳର ସୈନ୍ୟ ପଳାଇଲେ ଘୁଞ୍ଚି
ପବନା ଶର ମାଇଲେ ଅର୍ଜ୍ଜୁନ ଆମଞ୍ଚି ।

ପବନ ଘାତେ ଅନଳ ହୋଇଲା ପ୍ରବଳ
ପଡ଼ିଲା କୌରବଥାଟ ପଡ଼ିଲା ସକଳ ।
ନିଜ ଶର ନିଜ ସୈନ୍ୟ କରଇ ଦହନ
ବାଧ୍ୟହୋଇ ମେଘ ଶର ପ୍ରହାରିଲେ କର୍ଣ୍ଣ ।
ଯହୁଁ ଜଳ ବୃଷ୍ଟି ହେଲା ପ୍ରବଳ ରୂପରେ
ତହୁଁ ଅଗ୍ନି ଲିଭିଗଲା ଆପଣା ଥାଟରେ ।
ବେଳକୁବେଳ ପ୍ରବଳ କର୍ଣ୍ଣ ମହାବୀର
ଶର ପ୍ରୟୋଗ କରନ୍ତି ନାହିଁ ଅବସର ।
ଶରମାନଙ୍କ ତେଜରେ ଆଖିଯାଏ ବୁଜି
ଗଗନରେ ଦିଶେ ଯେହ୍ନେ ବିଦ୍ୟୁତରାଜି ରାଜି ।
କର୍ଣ୍ଣଙ୍କ ସମର କଥା ଅତି ଅକଥନ
ସୈନ୍ୟ ଲୋଟନ୍ତି ଯେସନେ ବାତେ ରମ୍ଭାବନ ।
କି ଅବା ଆଷାଢ଼ମାସ ହେଲା ଉପସ୍ଥିତ
ତାଳବନେ ପକ୍ୱତାଳ ପଡ଼ଇ ଯେମନ୍ତ ।
ସେହିପରି କର୍ଣ୍ଣଙ୍କର ସୁତୀକ୍ଷ୍ଣ ଶରରେ
ସୈନ୍ୟଙ୍କର ମୁଣ୍ଡ ଛିଣ୍ଡି ପଡ଼ଇ ତଳରେ ।
ଏହି ଅସମ୍ଭବ ଯୁଦ୍ଧ ନ ସରେ କହିଲେ
ଭୂଚରେ ଖେଚରେ ଥାଇ କବନ୍ଧ ନାଚିଲେ ।
କର୍ଣ୍ଣାର୍ଜ୍ଜୁନ ନିରପେକ୍ଷ ସମର କରନ୍ତି
ସମକକ୍ଷ ଭାବ ଘେନି ଅସ୍ତ୍ରାଦି ଚାଳନ୍ତି ।
ସୈନିକ ପୁରୁଷମାନେ ଜୀବଆଶା ଛାଡ଼ି
ରଣ କ୍ଷେତ୍ରେ ଦୁଇବଳ ପଡୁଛନ୍ତି ମାଡ଼ି ।
ରଥୀ ପଦାତି ସକଳ ହେଲେ ଏକ ମେଳ
ଏ ରୂପେ କୌରବ ସୈନ୍ୟ ଲଗାଇଲେ ଗୋଳ ।
ଏମନ୍ତ ଅବସ୍ଥା ଦେଖି ଦ୍ରୁପଦ କୁମର
ନବଲକ୍ଷ ସୈନ୍ୟ ଘେନି ହେଲା ଅଗ୍ରସର ।
ଅର୍ବୁଦେକ ସୈନ୍ୟ ଘେନି ମାନଚକ୍ରବର୍ତ୍ତୀ
ସମର କରିବା ପାଇଁ ଚଳିଲେ ତଡ଼ତି ।
ଦୁର୍ଯ୍ୟୋଧନ ଉଗ୍ରମୂର୍ତ୍ତି ଦେଖିଣ ନକୁଳ
ତିନିଲକ୍ଷ ଗଜ ଯୋଦ୍ଧା ଘେନାଇ ଚଞ୍ଚଳ ।
ଠିଆହେଲେ ଦୁର୍ଯ୍ୟୋଧନ ସମ୍ମୁଖରେ ଆସି
ସମସ୍ତଙ୍କ ହାଦେ ଅଛି ଯାଠି ନବନିଶି ।
ମନ୍ତ୍ରୀ ଚୂଡ଼ାମଣି ପୁଣି ହୋଇଲେ ବାହାର
ସଙ୍ଗେ ନେଲେ ପାଞ୍ଚଲକ୍ଷ ରଥ କରୀବର ।
ଆହୁରି ଯେ ତିନିଲକ୍ଷ ସୈନ୍ୟ ସହିତରେ
ପ୍ରବେଶ ହୋଇଲେ କୁରୁସୈନ୍ୟର ଭିତରେ ।
କୁନ୍ତ ଖଡ଼ଗ ଶାବେଳି ପରିଘ ଯେ ଯାଠି
ଦଣ୍ଡଘେନି ଶକୁନିର ସମ୍ମୁଖରେ ଭେଟି ।
ଶ୍ୱେତହସ୍ତୀ ପୃଷ୍ଟେ ବିଜେ ରାଜା ଯୁଧିଷ୍ଠିର
କୋପ ହୋଇ ଶ୍ରୀଭୁଜରେ ଧରି ଧନୁଶର ।
ବାହାର ହେଲେ କୌରବ ସଙ୍ଗେ କରି ରଣ
ଏକ କାଳରେ ଶକୁନି ତାହାଙ୍କୁ ଭେଟିଣ ।
ବୋଇଲା ଯେ ରହ ରହ ଆରେ ଯୁଧିଷ୍ଠିର
ଦୁର୍ଯ୍ୟୋଧନ ମାରି ପରା ହେବୁ ନୃପବର ।
ଆରେ ମୋ ହାତରୁ ଯେବେ ରହିବୁ ତୁ ବର୍ତ୍ତି
ତେବେ ସିନା ପଛେ ହେବୁ ରାଜଚକ୍ରବର୍ତ୍ତୀ ।
ଏହା କହି ଘୋର ନାଦେ କଲା ଆସ୍ଫାଳନ
ରଥେ ଥାଇ ଏ ସକଳ ଦେଖି ଭଗବାନ ।
ସହଦେବଙ୍କୁ ବୋଇଲେ ପାଶକୁ ଡକାଇ
ଦେଖ ଶକୁନି ଧର୍ମଙ୍କୁ କଟାକ୍ଷ କରଇ ।
ଶୁଣି ସହଦେବ ତହୁଁ ଗଲେକ ଦଉଡ଼ି
ମତ୍ତବ୍ୟାଘ୍ର ଛାଗପଲ ଯେହ୍ନେ ନିଏ ତଡ଼ି ।
ସେହିରୂପେ କୁରୁସୈନ୍ୟ କରିଣ ମନ୍ଥନ
ପ୍ରବେଶ ହୋଇଲେ ଯଥା ଧର୍ମଙ୍କ ନନ୍ଦନ ।
ଯୁଧିଷ୍ଠିଙ୍କୁ ପଛ କରି ମନ୍ତ୍ରୀ ଚୂଡ଼ାମଣି
ଶକୁନି ସମ୍ମୁଖେ ରଥ ରଖାଇଲେ ଆଣି ।
ବଳୟ ମଣିମୁକୁଟେ ଭୂଷିତ ହୋଇଣ
କେହି ରଥେ କେହି ଗଜେ କରି ଆରୋହଣ ।
ଏକ ମୁଖରେ ସକଳେ କଲେକ ସମର
ଶର ଆତଯାତ ମହୀ ଦିଶେ ଅନ୍ଧକାର ।
ରଥାଶ୍ୱ ଗଜ ପଦାତି ସର୍ବେ ମଦମତ୍ତା
ମଡ଼ାମଡ଼ି ହୋଇ ପଡୁଛନ୍ତି ଗଜଦନ୍ତା ।
ଦେବତାଙ୍କୁ ଅଗୋଚର କର୍ଣ୍ଣପର୍ବ ରଣ
ପଲକ ମାତ୍ରେ ପେଶନ୍ତି ଲକ୍ଷ ଲକ୍ଷ ବାଣ ।
ଏହି ରୂପରେ ସମର ହୁଅନ୍ତେ ପ୍ରବଳ
କର୍ଣ୍ଣଙ୍କ ରଥ ହୋଇଲା ଅତି ଅସମ୍ଭାଳ ।
ଶୋଷକ ସର୍ପ ଯେ ରୂପେ ଦେଇଥିଲା ଶାପ
କର୍ଣ୍ଣଙ୍କୁ ଫଳିଲା ଆସି ସେହି ଅନୁରୂପ ।

କର୍ଣ୍ଣଙ୍କ ସମରବେଳେ ରଥ ଦ୍ରୁତେ ଚଳେ
ସହି ନ ପାରିଣ ଚକ ପଶିଲା ଭୂତଳେ ।
ନନ୍ଦିଘୋଷ ରଥ ମଧ୍ୟ ହେଲା ଭୂମିଗତ
ଅଚଳ ହୋଇଣ ରଥ ନ ଚଳେ କିଞ୍ଚିତ ।
ମେରୁ ପର୍ବତରୁ ଭାରି ନନ୍ଦିଘୋଷ ରଥ
କିଞ୍ଚିତରେ ଟେକିଦେଲେ ତାହା ଜଗନ୍ନାଥ ।
କର୍ଣ୍ଣ ବୋଇଲେ ରେ ବାବୁ ଶୁଣ ବୀରପାର୍ଥ
କିଞ୍ଚିତ ସମର ରଖ ତୋଳେ ମୋର ରଥ ।
ଶରଣ ରକ୍ଷଣ ବୋଲେ ଉଡ଼ଇ ତୋ ବାନା
ବିରଥୀ ହୋଇଛି ମୋତେ ପ୍ରମାଦ ଦିଅନା ।
ଶୁଣ ସମର ନିୟମ ଯେ ବିଧି ବିଧାନ
ନୀତିଶାସ୍ତ୍ରମାନଙ୍କରେ ହୋଇଛି ଲିଖନ ।
କେଶକୁ ମୁକୁଳା କରି ଯେହୁ ଠିଆ ହେବ
ଅସ୍ତ୍ରାଘାତ ତା ଉପରେ କେଭେ ନ କରିବ ।
ଅସ୍ତ୍ରହୀନ ହୋଇ ଯେବେ ଥିବ ଶୂନ୍ୟହସ୍ତ
ତାହାକୁ ଦେଖିଲାକ୍ଷଣି କରିବ ତ୍ୟକତ ।
ବାଳ ମୁକୁଳ ଆବର ବସ୍ତ୍ର ଅସମ୍ଭାଳ
ଅସ୍ତ୍ର ଶସ୍ତ୍ର ଛାଡ଼ି ହାତ ଯୋଇଲେ କପାଳ ।
ଦାନ୍ତ କୁଟୀ କୁଠାରକୁ ଯେ ବାନ୍ଧିବ ଗଳେ
ଯାନ ବାହନାଦି ଛାଡ଼ି ଉଭା ହେବ ତଳେ ।
ଶରଣ ବୋଲି କହିବ ଯେ ଜନ ମୁଖରେ
ରଣ କରୁ କରୁ ପିଠି ଯେ ଦେବ ସମରେ ।
ଯେବଣ କ୍ଷତ୍ରୀ ହୋଇବ ସମରେ ନିସତ
ତାକୁ ପରିତ୍ୟାଗ କରି ଚଳିବ ତ୍ୱରିତ ।
ଏମନ୍ତ ବ୍ୟକ୍ତିମାନଙ୍କୁ ଯେହୁ ନାଶ କରେ
ଜୀବିତେ ଅଯଶ ମଲେ ପଡ଼ଇ ନର୍କରେ ।
ତୁ ଗୁଣବନ୍ତ ପଣ୍ଡିତ ଆହେ ଅରଜୁନ
ସାକ୍ଷୀ ହୋଇ ରହିଛନ୍ତି ହନୁ ଭଗବାନ ।
ଏଠାରେ କିଞ୍ଚିତ ପାପ ହୁଏ ଗୁରୁତର
ଅଳପ ପୁଣ୍ୟ କରିଲେ ହୁଅଇ ଅପାର ।
ଦୁଇଦଣ୍ଡ ମାତ୍ର ରହ ସମର ନ କରି
କରିବି ସମର ରଥ ଉଠିଲେ ମୋହରି ।
କର୍ଣ୍ଣଙ୍କ ମୁଖୁ ଏପରି ବିନୟକୁ ଶୁଣି
ସ୍ଥକିତ ହୋଇ ରହିଲେ ପାର୍ଥ ବୀରମଣି ।

ଅର୍ଜୁନ ଅବସ୍ଥା ଦେଖି ଦେବ ଜଗନ୍ନାଥ
ବୋଇଲେ ସ୍ଥକିତ କିମ୍ପା ହେଲ ଆହେ ପାର୍ଥ ।
ଚଞ୍ଚଳ ଗତିରେ ଶର କର ହେ କ୍ଷେପଣ
କର୍ଣ୍ଣର ଶିରକମଳ କାଟ ଏହିକ୍ଷଣ ।
ଅର୍ଜୁନ ବୋଇଲେ ପ୍ରଭୁ ହୋଇଛି ବିରଥୀ
ଧର୍ମର କଥା ବିନୟେ ବହୁତ କହନ୍ତି ।
ଏ ଅଧର୍ମ କଥା ମୁହିଁ କିମ୍ପାଇଁ କରିବି
ଦୁଇଦଣ୍ଡ ପରେ ରଥେ ଉଠିଲେ ମାରିବି ।
ଏଡ଼େ ବଡ଼ ଯୋଦ୍ଧାକୁ ମୁଁ ଆହେ ଦୟାମୟ
ବିନା ସମରେ କେମନ୍ତେ କରିବଇଁ କ୍ଷୟ ।
ବିରଥୀ ଯୋଦ୍ଧାକୁ ମୁହିଁ ନ ମାରଇ ବାଣ
ଏହା କି ନ ଜାଣ ତୁମ୍ଭେ ଆହେ ନାରାୟଣ ।
ଶୁଣି ସୂର୍ଯ୍ୟଙ୍କ ତନୟ ବୋଇଲେ ହେ ହରି
ବିରଥୀ ସଙ୍ଗେ ଯୁଝିବ ଅଧର୍ମ ଆଚରି ।
ତୁମ୍ଭଠାରେ ଏ ସକଳ ହେବ କି ସଙ୍ଗତ
ତାହା ଶୁଣି ବୋଲୁଛନ୍ତି ଜଗତର ନାଥ ।
ସଦା ଧର୍ମପଥେ ତୁମ୍ଭେ କର ବିଚରଣ
ଅଧର୍ମ କେମନ୍ତେ ତାହା ଭ୍ରମରେ ନ ଜାଣ ।
ଯେବେ ବନେ ଯାଇଥିଲେ ଏହି ପାଞ୍ଚଭାଇ
ମୃଗୟା ବିନୋଦେ ବନେ ବୁଲୁଥିଲେ ଏହି ।
ସିନ୍ଧୁରାଜା ଜୟଦ୍ରଥେ ଦେଲ ପଠାଇଣ
ଦ୍ରୌପଦୀଙ୍କୁ ନେଉଥିଲା କରି ଚୋରପଣ ।
ପୁଣି ଭିଆଇଲ ତୁମ୍ଭେ କପଟରେ ପଶା
ରାଜ୍ୟ ଧନ ଜିଣି ନେଲେ ଏ ହେଲେ ନିଆଶା ।
ଏ ପାଞ୍ଚଭାଇଙ୍କୁ ସଭାତଳେ ବସାଇଲେ
କେତେ ବା କହିକି ଯେତେ ମନ୍ଦ ଗାଳି ଦେଲେ ।
କୃଷ୍ଣା କେଶ ଧରି ଦୁଃଶା ଆଣିଲା ସଭାକୁ
ବିବସ୍ତ୍ର କଲ ଦେଖିବା ପାଇଁ ତା ଜାନୁକୁ ।
ଏ ସକଳ ଧର୍ମ କଥା ତୁମ୍ଭର ଅଟଇ
ଏତେବେଳେ କହୁଅଛୁ ଲାଜ ନ ମାଡ଼ଇ ।
ଭୀମକୁ ମିଷ୍ଟାନ୍ନ ସଙ୍ଗେ ଖୁଆଇଲ ବିଷ
ବିଷ ଘାରି ଯେଉଁକାଳେ ହେଲେ ସେ ଅବଶ ।
ତାହା ଗୋଡ଼ ବାନ୍ଧି ପୁଣି ଫିଙ୍ଗିଲ ଜଳରେ
ଜଳଜନ୍ତୁ ଖାଉ ବୋଲି ବିଚାରି ମନରେ ।

ପୋତୁ ଏ ତୁମ୍ଭର ଧର୍ମ କେମନ୍ତ ଅଟଇ
ଆହୁରି କହୁଛି ଧର୍ମ ଶୁଣ ମନଦେଇ ।
ସବୁକାଳେ ତୁମ୍ଭେମାନେ ଚଳ ଧର୍ମ ବାଟେ
ଘର କଲ ଝୁଣା ଘୃତ ଜଉ ଛଣପଟେ ।
ଅତି ଗଉରବ କରି ପାଣ୍ଡବଙ୍କୁ ନେଲେ
ସେହି କପଟ ଗୃହରେ ତାଙ୍କୁ ରଖାଇଲେ ।
ଗୁପତରେ ପୁରଞ୍ଜନ ପଣ୍ଡାଙ୍କୁ ପଠାଇ
ଅର୍ଦ୍ଧରାତ୍ରେ ନିଆଁ ଦେଲ ସେ ଘରେ ଲଗାଇ ।
ବିକଳେ ପଞ୍ଚପାଣ୍ଡବେ ପଶିଲେ ବିଳରେ
ସେଠାରୁ ଉଦ୍ଧାର ହେଲେ କୌଣସି ପ୍ରକାରେ ।
ଏହା ନୁହେଁ କି ତୁମ୍ଭର ପରମାର୍ଥ ଧର୍ମ
ଆହୁରି କହୁଛି ଶୁଣ କରିଛ ଯେ କର୍ମ ।
ଚଉଦ ବରଷ ମାତ୍ର ସୁଭଦ୍ରା ତନୟ
ନ ଜାଣି ବ୍ୟୂହେ ପଶିଲା ହୋଇ ଅସହାୟ ।
ଧର୍ମ ଯୁଦ୍ଧରେ ତାହାକୁ ମାରି ନ ପାରିଲ
ବେଢ଼ି ମାରିବା ବୋଲିଣ ସର୍ବେ ବିଚାରିଲ ।
ଏକ ଶିଶୁକୁ ବେଢ଼ିଲ ଅର୍ବୁଦ ଧାନୁଷ୍କୀ
ସମସ୍ତେ ମିଶି ମାଇଲ ଏ ଧର୍ମ ନୁହେଁ କି ।
ଅଭିମନ୍ୟୁ କଥା କୃଷ୍ଣ କରନ୍ତେ ପ୍ରକାଶ
ଅର୍ଜ୍ଜୁନଙ୍କ ମନେ କ୍ରୋଧ ଜନ୍ମିଲା ବିଶେଷ ।
ପୁଣି ହିଁ ବୋଇଲେ କୃଷ୍ଣ ଶୁଣ ଧନଞ୍ଜୟ
ବିଳମ୍ବ ନ କରି ଶତ୍ରୁ ବେଗେ କର କ୍ଷୟ ।
ଦୁଇଦଣ୍ଡ ମଧ୍ୟେ ଯେବେ ତା ରଥ ଉଠିବ
ତେବେ ତାହାକୁ ସମରେ କେହି ନ ପାରିବ ।
ଏମନ୍ତ ବଚନ ଶୁଣି ବୀର ଅରଜୁନ
ବୋଇଲେ ହେ କର୍ଣ୍ଣ ଧର ତୁମ୍ଭ ଶରାସନ ।
ପୁତ୍ରଶୋକେ ମୋର ମନ ହୁଅଇ ଅସ୍ଥିର
ବିନା ଯୁଦ୍ଧରେ ତୁମ୍ଭଙ୍କୁ କିରବି ସଂହାର ।
ଏହା କହି ଗାଣ୍ଡିବରେ ବସାଇଲେ ବାଣ
କର୍ଣ୍ଣର ବୁଦ୍ଧି ନ ସ୍ଫୁରେ ଏମନ୍ତ ଦେଖିଣ ।
ଶଲ୍ୟରାଜ ବୋଇଲେ ହେ ଶୁଣ ସୂର୍ଯ୍ୟସୁତ
ନିସତ ହେଲେ କି ଆଉ ଛାଡ଼ିଦେବ ପାର୍ଥ ।
ଶଲ୍ୟଙ୍କ ବଚନ ଶୁଣି କର୍ଣ୍ଣ ଧନୁର୍ଦ୍ଧର
ଆପଣା କୋଦଣ୍ଡ ଧରି କରିଲେ ଟଙ୍କାର ।

ନନ୍ଦିଘୋଷେ ରହିଛନ୍ତି ବୀର ଅରଜୁନ
ସେ ରଥ ସହସ୍ର ତାଳ ଉଚ୍ଚର ସମାନ ।
କର୍ଣ୍ଣ ପାଦ ଗତି କରି ଅଛଇ ଭୂମିରେ
କେଉଁପରି ସମ ହେବ ଅର୍ଜ୍ଜୁନ ସଙ୍ଗରେ ।
ଯେତେ ଯେତେ ଅସ୍ତ୍ର କର୍ଣ୍ଣ କରଇ ପ୍ରହାର
କିଞ୍ଚିତ ମାତ୍ରେ ଅର୍ଜ୍ଜୁନ କରନ୍ତି ସଂହାର ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ସବ୍ୟସାଚି
ଶୋଷକ ସର୍ପ କର୍ଣ୍ଣକୁ ଶାପ ଦେଇଅଛି ।
ଦୁଇଦଣ୍ଡ ରଥଚକ ପଶିବ ଭୂତଳେ
ଏଥିମଧ୍ୟେ ତାକୁ ଯେବେ ତୋଳିପାରେ ବଳେ ।
ତେବେ ଜିଣିବାକୁ କେହି ନୋହିବେ ସମର୍ଥ
ଏବେ ଏକଦଣ୍ଡ ଆସି ହେଲାଣି ଅତୀତ ।
ଆଉ ଏକଦଣ୍ଡ ପରେ ଆକାଶେ ଉଠିବ
ପୁଣି ସେ ରଥରେ ବସି ସମର କରିବ ।
ସେତେବେଳେ କେଉଁ ବୀର ନୋହିବ ସମାନ
କିପରି ତାହାକୁ ତୁମ୍ଭେ କରିବ ନିଧନ ।
ଏମନ୍ତ ଶୁଣି ବିକଳ ହୋଇଲେ କିରୀଟୀ
ଚାପେ ବସାଇଲେ ଅର୍ଦ୍ଧଚନ୍ଦ୍ର ବାଣଗୋଟି ।
ସେ ଶରଘାତେ କର୍ଣ୍ଣର ଛିଡ଼ିଯାନ୍ତେ ମୁଣ୍ଡ
ଧରଣୀ ପରେ ପଡ଼ିଲା ଗିରିସମ ପିଣ୍ଡ ।
ପୁଣି ମୁଣ୍ଡେକ କନ୍ଧରୁ ହେଲା ଉପପତ୍ତି
ତକ୍ଷଣେ ଉଠି ଧରିଲା କରେ ବଜ୍ରଶକ୍ତି ।
ପୁଣି ଅର୍ଜ୍ଜୁନ ବିନ୍ଧିଲେ ପାଶୁପତ ଶର
ଯେଉଁ ଶରେ ଦହିଥିଲେ ତ୍ରିପୁରକୁ ହର ।
ସେ ଶର କାଣ୍ଡେ ବସାଇ ଟାଣିଦ୍ୟନ୍ତେ ଛାଡ଼ି
ପୁଣି କର୍ଣ୍ଣମୁଣ୍ଡ କାଟି ତଳେ ପଡ଼େ ଛିଡ଼ି ।
ପୁଣି କର୍ଣ୍ଣର କନ୍ଧରୁ ମୁଣ୍ଡେକ ଉଭବ
ପାର୍ଥ କହେ ଦେଖ ପ୍ରଭୁ ଏ ବଡ଼ ଦୁର୍ଲ୍ଲଭ ।
ସହଦେବଙ୍କୁ ଡକାଇ ପୁଚ୍ଛିଲେ ରମେଶ
ପୁଣି ମୁଣ୍ଡ ଉପୁଜଇ କେବଣ ଭବିଷ୍ୟ ।
କରଯୋଡ଼ି ଜଣାଇଲେ ମନ୍ତ୍ରୀ ଚୂଡ଼ାମଣି
ସୂର୍ଯ୍ୟଙ୍କ ନନ୍ଦନ ଯେଣୁ କର୍ଣ୍ଣ ବୀରମଣି ।
ଅଭେଦ କବଚ ଆଉ ଅମୃତ କୁଣ୍ଡଳ
ପୁଣି ଅଭେଦ ଚଉଁରୀ ଦେଲେ ଅଂଶୁମାଳ ।

ତାହା ଜାଣି ଆଖଣ୍ଡଳ ଦ୍ୱିଜବେଶ ଧରି
ଉଦ୍‌ଯୋଗ ପର୍ବେ ମାଗିଣ ଆଣିଦେଲେ ହରି ।
ଏ ସକଳ କଥା ଯହୁଁ ଜାଣିଲେ ଆଦିତ୍ୟ
ପୁତ୍ରର ନିମନ୍ତେ ତହୁଁ ହୋଇଲେ ଭାବିତ ।
ପୁଣ ପୁଅକୁ ଅମରେ ବସାଇବା ପାଇଁ
ମର୍କତଲିଙ୍ଗ ହୃଦୟେ ରୋପିଦେଲେ ନେଇ ।
ଏ କଥାରେ ସ୍ୱର୍ଗବାସୀ କରିଲେ ସମ୍ମତ
ତେଣୁ କୌଣସି ଶରରେ ସେହି ନୁହେଁ ହତ ।
ଯେବେ ସେ ମର୍କତଲିଙ୍ଗ ଯାଇପାରେ ଯୋଡ଼ି
ତେବେ କର୍ଣ୍ଣଶିର ଯିବ ଏକାବେଳେ ଛିଡ଼ି ।
ଶୁଣି ଶ୍ରୀକୃଷ୍ଣ ପୁଚ୍ଛିଲେ କେମନ୍ତ ଏ ହେବ
ମନ୍ତ୍ରୀ ପ୍ରକାଶ କରିଲେ ଶୁଣ ତେବେ ଦେବ ।
ପାଶୁପତ ନୀଳଚକ୍ର ବାବଲ ଏ ତିନି
ଏକାବେଳକେ ବିନ୍ଧନ୍ତୁ ବୀର ଫାଲଗୁନି ।
ପାଶୁପତ ଯେ ନାଭିକି ବାବଲ ବକ୍ଷକୁ
ନୀଳଚକ୍ରକୁ ପେଶନ୍ତୁ ତାହାର କନ୍ଧକୁ ।
ଏ ତିନିଶର ପଡ଼ିଲେ ତା ତିନି ସ୍ଥାନରେ
ତିନିଗଡ଼ ହୋଇ କର୍ଣ୍ଣ ପଡ଼ିବ ମହୀରେ ।
ଶୁଣି ଆନନ୍ଦ ହୋଇଲେ ବୀର ଧନଞ୍ଜୟ
ନୀଳଚକ୍ରଙ୍କ ଉପରେ ଲଗାଇଲେ ଲୟ ।
ତହୁଁ ପାତାଳୁ ଅଇଲେ ସେ ବାଣ ବହନ
ସେ ତିନିଙ୍କି ଗାଣ୍ଡିବରେ ବସାଇ ଅର୍ଜ୍ଜୁନ ।
ଆକର୍ଣ୍ଣ ଓଟାରି ଗୁଣ ଦିଅନ୍ତେ ଯେ ଛାଡ଼ି
ଚଳିଲେ ସେ ତିନିବାଣ ଦେଇ ଘୋର ରଡ଼ି ।
ପାଶୁପତ ପଶିଲା ଯେ କର୍ଣ୍ଣର ନାଭିରେ
ବାବଲ ଶର ପଡ଼ିଲା ଯାଇଁଣ ଛାତିରେ ।
କୋଟି ସୂର୍ଯ୍ୟ ତେଜ ଧରି ନୀଳଚକ୍ର ଗଲା
କର୍ଣ୍ଣ ଗଳାବକ୍ଷ ନାଭି କାଟି ପକାଇଲା ।
ତିନିଖଣ୍ଡ ହୋଇବାରୁ ଛାଡ଼ିଲା ପରାଣ
ଆତ୍ମା ଚଳିଲା ଆକାଶେ ଜ୍ୟୋତି ପ୍ରକାଶିଣ ।
ତାହୁଁ ତାହୁଁ ଛାୟାପତି ଅଙ୍ଗେ ହେଲା ଲୀନ
ଏଥୁଅନ୍ତେ ଯାହା ହେଲା ଶୁଣ ହେ ରାଜନ ।
ଭୀଷ୍ମଦେବ ଦଶଦିନ କରିଲେ ସମର
ଦ୍ରୋଣ ପାଞ୍ଚଦିନେ ଗଲେ ଶମନ ନଗର ।

ଅଢ଼ାଇଦିନ ସମର କରି ସୂର୍ଯ୍ୟସୁତ
ଧନଞ୍ଜୟଙ୍କ ହାତରେ ହୋଇଲେ ନିହତ ।
କୁମ୍ଭମାସ ଶନିବାର ଯମଘଣ୍ଟ ଯୋଗେ
କର୍ଣ୍ଣଶିର ଛେଦ ହେଲା ଦୁର୍ଯ୍ୟୋଧନ ଆଗେ ।
ଦିବା ଦୁଇ ପ୍ରହରରେ କର୍ଣ୍ଣ ହୋଇନ୍ତି ନାଶ
ସେହିକ୍ଷଣି ଅନ୍ଧକାର ହେଲା ଦଶଦିଶ ।
ଆକାଶରେ ସୂର୍ଯ୍ୟଦେବ କଲେକ ରୋଦନ
ଆହା ପୁତ୍ର କେଣେ ଗଲୁ ମୋ ଜୀବ ଜୀବନ ।
ଆରେ ବୀରବର ବାବୁ ଧାର୍ମିକ ସୁମତି
ଚାଲିଲେ ତୋ ଭାର ସହି ନ ପାରଇ କ୍ଷିତି ।
ଆଣ୍ଟେ ଗଲୁ ଯେବେ ତୁହି ଆରେ ବାପଧନ
ପୃଥିବୀ ନ ସହି ରକ୍ତ କରଇ ବମନ ।
ଦୀରେ ଚାଲିବାର ପାଇଁ ତୋତେରେ କୁମର
କ୍ଷିତି ନିତି ଲାଞ୍ଚିଦିଏ ସୁନା ଶଏଭାର ।
ସେ ସକଳ ସୁନାକୁ ତୁ କରିଦେଉ ଦାନ
ଦାନେଶ୍ୱର ମାନେଶ୍ୱର ଅଟୁରେ ନନ୍ଦନ ।
ଭାରତେ ଭାରୋଇମଲ୍ଲ ତୋର ନାମ ପୁଅ
କବଚ କୁଣ୍ଡଳ ଦେଇ ତୁଟାଇଲୁ ଦେହ ।
ଶୋଚନା ନ କରି ସବୁ ଦାନ ଦେଇ ବାପ
ଶେଷକୁ କେବଳ ଆଶା କଲୁ କାଳସର୍ପ ।
ସେହି ପୁଣି କାଳେ ତୋତେ ହୋଇଲା ବଇରୀ
ତାହାରି ଶାପରେ ସିନା ହେଲୁ ଏତେ ସରି ।
ଏହି ରୂପରେ ରୋଦନ କରନ୍ତି ତପନ
ପ୍ରବେଶ ହୋଇଲେ ଆସି ରାଜା ଦୁର୍ଯ୍ୟୋଧନ ।
କର୍ଣ୍ଣ ମୃତପିଣ୍ଡକୁ ସେ ଆଲିଙ୍ଗନ କରି
ବୋଇଲେ ହେ ମିତ୍ର କେଣେ ଗଲ ଛାଡ଼ି କରି ।
ଆହେ ବୀରବର କ୍ଷତ୍ରୀ ମିତ୍ର ଚୂଡ଼ାମଣି
ତୁମ୍ଭ ସମ ଦାନୀ ଆଉ ନ ଥିବେ ଧରଣୀ ।
କର୍ଣ୍ଣ ଦାନୀ ବୋଲି ପଡ଼େ ତିନିପୁରେ ହୁରି
ତାହା ଶୁଣି କୃଷ୍ଣ ଗଲେ ଦ୍ୱିଜରୂପ ଧରି ।
ତାହାଙ୍କ ସନ୍ତୋଷ ପାଇଁ ମାରି ନିଜ ସୁତ
ଖଣ୍ଡ ଖଣ୍ଡ କଲ ଅସ୍ଥି ମାଂସକୁ ବିଭକ୍ତ ।
ପୁଣି ହିଁ ସେ ମାଂସ ନେଇ କରିଲ ବ୍ୟଞ୍ଜନ
ଦେଖି ସନ୍ତୁଷ୍ଟ ହୋଇଲେ ପ୍ରଭୁ ଭଗବାନ ।

ଆବର ତୁମ୍ଭ ପୁଅକୁ ଦେଲେ ସେ ବଞ୍ଚାଇ
ଦାନେଶ୍ୱର ନାମ ଦେଇଗଲେ ଗୋପ୍ୟହୋଇ ।
ହେ ମିତ୍ର ପ୍ରତିଜ୍ଞା କରି କହିଥିଲ ମୋତେ
ପାଣ୍ଡବ ମାରି ନିଃଶତ୍ରୁ କରିବ ଯୁକତେ ।
ତେଣୁ ତୁମ୍ଭର ବାହାକୁ ଆଶ୍ରା କରିଥିଲି
ଏବେ ରଣ ସିନ୍ଧୁରେ ମୁଁ ନିଶ୍ଚେ ବୁଡ଼ିମଲି ।
ସକଳ ଭରସା ମୋର ସରିଲା ଏଥର
ହେ ମିତ୍ର କେମନ୍ତେ ଆଉ ଏଥୁ ହେବି ପାର ।
ପୃଥିବୀ ସହି ନ ପାରେ ତୁମ୍ଭ ବେଗ ଗତି
ସେଥିପାଇଁ ଶଏ ଭାର ସୁନା ଦିଏ ନିତି ।
ହେ ମିତ୍ର କାହାକୁ ଆଉ କହିବି ବେଦନା
କ୍ଷଣକରେ ବୁଡ଼ିଗଲା ମୋର ରାଜ୍ୟ ସିନା ।
ଶରଣ ବତ୍ସଳ ତୁମ୍ଭେ ଆହେ ମିତ୍ରବର
ମହାଦାନୀ ବୋଲି ଖ୍ୟାତ ଅଟ ଚରାଚର ।
ଜଗତେ ସୁନ୍ଦର ତୋରି କର୍ଣ୍ଣ ନାମ ଗୋଟି
ଭାରତେ ଭାରୋଇମଲ୍ଲ କକ୍ଷା ଜଗଜ୍ଜେଠି ।
କବଚ କୁଣ୍ଡଳ ଦାନ ଦେଇ ମଘବାନେ
ମହାନିଦ୍ରାରେ ଶୋଇଲ ଏବେ ରଣସ୍ଥାନେ ।
ତ୍ରୈଲୋକ୍ୟ ଜିଣିବା ପାଇଁ କାହାର କ୍ଷମତା
ଅନ୍ୟାୟ ସମରେ ମଲ ମୋ କପାଳ କଥା ।
ଭୀଷ୍ମ ଦ୍ରୋଣ ମଲେ ଟିକେ ନୋହିଲା ମୋ ଖେଦ
ଜାଣଇ ମିତ୍ର ପ୍ରାକର୍ମ ତାରିବେ ଆପଦ ।
ହେ ମିତ୍ର କେତେ ଗାଇବି ତୁମ୍ଭର ଯେ ଗୁଣ
ରାତ୍ରଦିନ ହେଲା ଏବେ ମୋର ଅଶରଣ ।
ଭାନୁମତୀ ସ୍ୱୟମ୍ବର କାଳେ କି ନ କଲ
ତିନି ଊଣା ଲକ୍ଷେ ରାଜା ସମରେ ଜିଣିଲ ।
ଭାନୁମତୀ କନ୍ୟା ମୋତେ କରି ସମର୍ପଣ
ପୁଣି ଜୀବିତ କରିଲ ମୃତ ରାଜାଗଣ ।
ଦେବତା ବ୍ରାହ୍ମଣେ ଭକ୍ତି ଥାଏ ସଦାକାଳେ
ନିଧନ ହୋଇଲ ମିତ୍ର ମୋ ମନ୍ଦ କପାଳେ ।
ଆହେ ମିତ୍ର ଉଠ ଉଠ କଥା ଘେନାକର
ରଣଯଜ୍ଞ ଦେଇ ମୋତେ ଥରେ ପାରିକର ।
ଏବେ ଦଶଦିଗ ଦିଶେ ଅନ୍ଧାର କେବଳ
ତୁମ୍ଭେ ବିହୁନେ ବୁଡ଼ିଲା ଧୃତରାଷ୍ଟ୍ର କୁଳ ।

ହେ ମିତ୍ର ଟିକେ ନ ସହ ମୋର ଅପମାନ
ଏବେ ଥରେ ଶୁଣୁ ନାହିଁ କରଇ ରୋଦନ ।
ଉଠ ଉଠ ମିତ୍ରବର ଆଉ ଯେ ନ ଶୁଅ
ଶଲ୍ୟ ସାଜିଲେଣି ରଥ ରଣ କରି ଯାଅ ।
ଏହାକହି ମୃତପିଣ୍ଡ ଲଗାଇ ଛାତିରେ
ଅତ୍ୟନ୍ତ ବିକଳ ହୋଇ ପଡ଼ିଲେ ମହୀରେ ।
ପରଦୁଃଖ ଦେଖି ମିତ୍ର ନ ପାର ଯେ ସହି
ମୁଁ ଘୋର ଦୁଃଖେ ପଡ଼ିଚି ରହିଛ ନ ଚାହିଁ ।
ପୂର୍ଣ୍ଣମୀ ଚନ୍ଦ୍ରକୁ ଜିଣି ଦିଶେ ତୋ ବଦନ
କିପରି ମଇତ୍ର ତୁହି ହୋଇଲୁ ନିଧନ ।
ତିନି ଭୁବନ ଜିଣନ୍ତା କେ ନ ଥିଲେ ରଣେ
ଦଇବ ବଳେ ସେ ମିତ୍ର ମୋର ଗଲ କେଣେ ।
ଆହେ ମିତ୍ର କହିଥିଲ ମୋତେ ସତ୍ୟ କରି
ନିଷ୍କଳଙ୍କ କରିଦେବି ପାଣ୍ଡବଙ୍କୁ ମାରି ।
ସେ ସତ୍ୟବାଣୀ କେବଣ ସ୍ଥାନରେ ରହିଲା
ସେ କଥା ମୋତେ ସ୍ୱପନ ପ୍ରାୟେ ଜଣାଗଲା ।
ଆଜିଠାରୁ ଜାଣିଲି ମୁଁ ବିପଦେ ପଡ଼ିଲି
ସେ କାଳେ ତୁମ୍ଭର ବାହୁ ଆଶ୍ରାକୁ ଛାଡ଼ିଲି ।
କଟକରେ ରାଜା ହେବେ ଏବେ ଯୁଧିଷ୍ଠିର
ଆଜିଠାରୁ ସର୍ବ ଦୁଃଖ ଯିବ ଯେ ତାଙ୍କର ।
ହେ ମିତ୍ର ବିପଦ ବନ୍ଧୁ ଅନ୍ଧର ଲଉଡ଼ି
ରଣ ସମୁଦ୍ରେ ଭସାଇ ଗଲ ମୋତେ ଛାଡ଼ି ।
ନିରାଣ କରିବ ବୋଲି ଯେବେ ଜାଣିଥାନ୍ତି
ପାଣ୍ଡବଙ୍କ ସଙ୍ଗେ କିମ୍ପା ବିବାଦ ଲଗାନ୍ତି ।
ଏହିପରି ଶୋକ କରି ଛାଡ଼ି ମୃତପିଣ୍ଡ
ଭୂମିରେ ପଡ଼ିଲେ ଯାଇ କୋଡ଼ିହୋଇ ମୁଣ୍ଡ ।
ଏମନ୍ତ ଯେ ଅର୍ଦ୍ଧରାତ୍ର ହୋଇଲା ଯାପନ
ଶଲ୍ୟଙ୍କୁ ବୋଇଲେ ମାମୁଁ ଶୁଣ ମୋ ବଚନ ।
ମୋର ପ୍ରାଣସଖା ଥିଲେ ତୁମ୍ଭରି ରଥରେ
ତୁମ୍ଭପରି ବୀର ଥାଉ ମଲେ କି ପ୍ରକାରେ ।
ତୁମ୍ଭେ ଦେଖୁ ଦେଖୁ ମୋର ବୁଡ଼ିଲା ସଂସାର
କିଛି କରି ନ ପାରିଲ ତାର ପ୍ରତିକାର ।
ଶଲ୍ୟ ବୋଇଲେ ଶୁଣିମା ହେଉ କୁରୁରାୟ
ନିୟତି ଚକ୍ରକୁ କାର ଅଛଇ ଉପାୟ ।

ମୋହର କଥାକୁ ତୁମ୍ଭେ ଦୃଢ଼ କରି ଜାଣ
ଯହିଁ କୃଷ୍ଣ ତହିଁ ଜୟ ଏଥେ ନାହିଁ ଆନ ।
ଏଣେ ପାଣ୍ଡବ ସଇନି ହୋନ୍ତେ ହୃଷ୍ଟଚିତ୍ତ
ଉତ୍ସବ କଲେକ ଥାଟେ ଧର୍ମଙ୍କର ସୁତ ।
ଏହିଠାରେ କର୍ଣ୍ଣପର୍ବ ହୋଇଲାକ ଶେଷ
ସାଧୁଜନମାନେ ମୋର ନ ଘେନିବ ଦୋଷ ।
ଜୟ ନୀଳାଚଳ ନାଥ ଅଗତି ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ।
ଆହେ କଳାକର ମୁଖ ପାଣ୍ଡବ ରକ୍ଷକ
ସେ ମୁଖ ଦର୍ଶନେ ପାପ ନ ରହଇ ପାଖ ।
ବଡ଼ ଦେଉଳେ ବସିଛ ହୋଇ ବଜ୍ର ସେହ୍ନା
ପତିତପାବନ ବୋଲି ଉଡ଼ାଇଛ ବାନା ।
ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ
ଅଜାମିଳଠାରୁ ମୁଁ କି ଅଟଇ ଅଧମ ।
ତାହାକୁ ତାରିଲ ପ୍ରଭୁ କଟାକ୍ଷ ମାତରେ
ସେହିପରି ଦୃଷ୍ଟିପଡୁ ମୋ ଉପରେ ଥରେ ।
ବାଟ ଖରଚକୁ ମୋର କିଛି ନାହିଁ ଧନ
ତୁମ୍ଭେ ହିଁ ସମ୍ବଳ ମୋର ରଙ୍କର ରତନ ।
ଇଚ୍ଛାମୟ ହରି ତୁମ୍ଭ ମହିମା ଅସୀମ
ଦୁବଗଛ କରିପାର ଭୟଙ୍କର ଦ୍ରୁମ ।
ତୁମ୍ଭର କୃପାରେ ପଙ୍ଗୁ ଲଙ୍ଘିପାରେ ଗିରି
ତୁମ୍ଭର ବଳେ କପିଏ ଗଲେ ସିନ୍ଧୁତରି ।
ତୁମ୍ଭ ମହିମା ବର୍ଣ୍ଣନେ ଅଛି କା ଶକତି
ଶାରଳା ଦାସ କହଇ ହେ ପ୍ରଭୁ ମୁକତି ।
ଜଗତ ଜନନୀ ମାତା ଶାରଳା ଚରଣେ
ଶରଣ ପଶି ଶାରଳା ଦାସ ମୁନି ଭଣେ ।

—o—

## ଇତି ଶ୍ରୀ ମହାଭାରତ କର୍ଣ୍ଣପର୍ବ
## ସମାପ୍ତ

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚତ




# ଶଲ୍ୟପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଦୂରଭାଷ : ୦୬୭୧-୨୬୦୮୨୯୬

# ମହାଭାରତ - ଶଲ୍ୟପର୍ବର

# ସୂଚୀପତ୍ର

**ବିଷୟ** **ପୃଷ୍ଠାଙ୍କ**



**— ଶଲ୍ୟପର୍ବର ସୂଚୀପତ୍ର ସମାପ୍ତ —**

ଶୂଦ୍ରମୁନି ୰ ଶାରଳା ଦାସଙ୍କ ବିରଚିତ

# ମହାଭାରତ

## ଶଲ୍ୟପର୍ବ



ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।

ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃଷ୍ଣଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।

ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯତ୍କର୍ଣ୍ଣଧାରୋହରି ।

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃପ୍ରମୁଚ୍ୟତେ ।

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ।

---

## ବନ୍ଦନା

ଜୟ ତୁ ଭାରତମଲ୍ଲ ଶ୍ରୀ ପୁରୁଷୋତ୍ତମ
ଜୟ ତୁ ଜଗଜ୍ଜୀବନ ଜୟ ତୁ ଶ୍ରୀରାମ ।
ଜୟ ତୁ କଂସନାଶନ ଜୟ ତୁ ମୁରାରି
ଜୟ ତୁ ରାଧାବଲ୍ଲଭ ନିକୁଞ୍ଜବିହାରୀ ।
ଜୟ ତୁ ଯଶୋଦାଦେବୀ ନୟନ ପିତୁଳା
ଜୟ ତୁ ଗୋପୀ ହୃଦୟ ପ୍ରେମମୟମାଳା ।
ଜୟ ତୁ ବାସୁଦେବ ହେ ବସୁଦେବ ସୁତ
ଜୟ ତୁ ଦେବକୀଦେବୀ ଗର୍ଭରୁ ସମ୍ଭୂତ ।
ଅରୂପାନନ୍ଦ ସ୍ୱାମୀ ତୋ ମହିମା ଅପାର
ମୁଁ ହୀନ ଶାରଳାଦାସ ଶରଣ ତୋହର ।
ଜୟ ଜୟ ଶାରଳା ଗୋ ଝଙ୍କଡ଼ ବାସିନୀ
ଅହର୍ନିଶି କରଇ ତୋର ଚରଣେ ଦଇନୀ ।
ଜୟ ସର୍ବମଙ୍ଗଳା ଗୋ ଜୟ ଭଗବତୀ
ଘେନ ଶାରଳା ଦାସର ବିନୟ ଭକତି ।
ଜୟ ତୁ ଦୁର୍ଗାଦେବୀ ଗୋ ଦେବତାଙ୍କ ପାଇଁ
ମହିଷାସୁର ମାଇଲୁ ସିଂହପୃଷ୍ଠେ ରହି ।
ଧୂମ୍ରଲୋଚନକୁ ଭସ୍ମ କଲୁ କୋପାନଳେ
ଚଣ୍ଡମୁଣ୍ଡକ ବଧିଲୁ ମାଗୋ କୁତୂହଳେ ।
ରକତବୀର୍ଯ୍ୟ ରକତ ଶୋଷିଲୁ ଗୋ ମାତ
ପୃଥ୍ୱୀରୁ ଅସୁରକୁଳ କଲୁ ଗୋ ନିପାତ ।
ଶୁମ୍ଭ ନିଶୁମ୍ଭ ବିନାଶି ଉଶ୍ୱାସିଲୁ ମହୀ
ଅଜ୍ଞାନ ପାମର ସିଦ୍ଧେଶ୍ୱର ଦାସ ମୁହିଁ ।
ପଢ଼ି ନାହିଁ ଶାସ୍ତ୍ର ମୁହିଁ ଜନ୍ମରୁ ମୂରୁଖ
ବିଷୟ ରସରେ ମଜ୍ଜି ପାଇଲି ମୁଁ ଦୁଃଖ ।
ଶ୍ରୀ ଶାରଳା ଦେବୀଙ୍କର କୃପା ହେଲା ମୋତେ
ମହାଭାରତ ଲେଖିଲି ସଜ୍ଜନ ହିତେ ।
ଶିବ ନ ପାଇଲେ ଏହି ଗ୍ରନ୍ଥର ଯେ ଅନ୍ତ
ମୁହିଁ କି ଭାଜନ ଲେଖିବାକୁ ଆଦ୍ୟପ୍ରାନ୍ତ ।
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ
ଶୁଦ୍ଧ ଅଶୁଦ୍ଧ କି ମୋର ଜ୍ଞାନ ଅଛି କାହିଁ ।
ଶ୍ରୀ ଶାରଳା ଦେବୀଙ୍କର ମୁଖରୁ ନିର୍ଗତ
ଅମୃତ ରସକୁ ପାନ କର ସାଧୁସନ୍ଥ ।
ଶ୍ରୀଚଣ୍ଡୀ ଶାରଳା ଦାସ ନାମ ଦେଲେ ମୋତେ
ଏଣୁ ମୋର ଦୋଷ ନ ଧରିବ ହେ ପଣ୍ଡିତେ ।
କର୍ଣ୍ଣପର୍ବ ଉତ୍ତାରୁ ଯେ ଶଲ୍ୟପର୍ବ କଥା
ଲେଖିବା ପାଇଁ ମନରେ କରନ୍ତେ ମୁଁ ଚିନ୍ତା ।
ଶ୍ରୀ ଶାରଳା ଦେବୀ ପାଦେ ଲଗାଇଲି ଲୟେ
ପ୍ରସନ୍ନ ହୋଇ ରହିଲେ ମୋହର ହୃଦୟେ ।
କହିଦେଲେ ଯାହା ମୁହିଁ ଦେଖିଲି ପତ୍ରରେ
ଭବବନ୍ଧୁ ମୋକ୍ଷ ହେବ ପଢ଼ି ପୁଣି ନରେ ।
ଶ୍ରୋତା ବକତା ଆବର ପଚାରିବା ଜନ
ଏ ତିନିଜଣ ଗମନ୍ତି ବିଷ୍ଣୁର ଭବନ ।
ଜୟ ଜୟ ସଦାଶିବ କଇଳାସବାସୀ
ପାର୍ବତୀ ଭାରିଯା ଅଟେ ଧାମ ତୋର କାଶୀ ।
ତପେ ଦେଉ ବର ତୁହି କୋପେ ଦେଇ ବର
ଯୋଗେଶ୍ୱର ପୁରୁଷ ତୋ ମହିମା ଅପାର ।
ମୋରଠାରେ କୃପା କର ଆହେ କୃତ୍ତିବାସ
ଶାରଳା ଦାସ ମୁଁ ତୋର ପାଦତଳ ଦାସ ।

—o—

## ଶଲ୍ୟଙ୍କର ସେନାପତିତ୍ୱ ଓ ଯୁଦ୍ଧସଜ୍ଜା

ଏଥୁଅନ୍ତରେ ବିଲଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଦିବ୍ୟପୂଜା ।
ଧୂପ ଦୀପ ନଇବେଦ୍ୟ ଗନ୍ଧପୁଷ୍ପ ଦେଇ
ନବରତ୍ନମାଳା ଗଳେ ଲମ୍ବାଇଲେ ନେଇ ।
ବୋଲେ ଭୋ ମୁନି ପଣ୍ଡିତ ଦେବବ୍ରହ୍ମବେତ୍ତା
କହ ଶ୍ରୀ ମହାଭାରତ ସୁଧାରସ କଥା ।
ପବିତ୍ର ହୋଇବି ମୁହିଁ ତବ ମୁଖୁ ଶୁଣି
ଅଢ଼ାଇ ଦିନରେ ମଲା କର୍ଣ୍ଣ ବୀରମଣି ।
କି ବିଚାର କଲା ତହୁଁ କଉରବ ପତି
ବିସ୍ତାର କରି ମୋ ଆଗେ କୁହନ୍ତୁ ଯେ ଯତି ।
ଅଗସ୍ତି ବୋଇଲେ ଶୁଣ ମନୁ ମହାରଥା
କର୍ଣ୍ଣପର୍ବ ଉତ୍ତାରୁ ସେ ଶଲ୍ୟପର୍ବ କଥା ।
ଏକମନେ ଏକଲୟେ କଲେ ତୁ ଶ୍ରବଣ
ପାପ ଦହନ ହୋଇବ ମିଳିବ ସୁପୁଣ୍ୟ ।
କର୍ଣ୍ଣ ସେନାପତି ଯହୁଁ ପଡ଼ିଲା ସମରେ
ମାନଗୋବିନ୍ଦ ବିଚାର କରଇ ମନରେ ।
ମଦ୍ରଦେଶ ରାଜା ବୀରସେନର ନନ୍ଦନ
ଶଲ୍ୟ ସମ ବୀର ନାହିଁ ଏ ମଧ୍ୟଭୁବନ ।
ସେ ଯେବେ ମନ କରିବ କ୍ଷଣକ ଭିତରେ
ପାଣ୍ଡବବଳ ମାରିବ କୃଷ୍ଣ ସହିତରେ ।
ତାହାଙ୍କୁ ଯାଇ କହିବି ବିନୟରେ ମୁହିଁ
ସେ କରି ପାରିବେ ଅବା ବିପଦରୁ ତ୍ରାହି ।
ଏମନ୍ତ ବିଚାର କରି ରାଜା ଦୁର୍ଯ୍ୟୋଧନ
ସ୍ୱହସ୍ତରେ ଘେନି ଅର୍ଘ୍ୟ କୁସୁମ ଚନ୍ଦନ ।
ଶଲ୍ୟଙ୍କ ଛାମୁରେ ରାଜା ମିଳିଲାକ ଯାଇ
ସୁବର୍ଣ୍ଣ ଅର୍ଘ୍ୟଥାଳୀକୁ ତଳେ ଥୋଇଦେଇ ।
ବିନୟେ ବୋଇଲା ମୁହିଁ ହୋଇଲି ଅରକ୍ଷା
ତୋର ବ୍ୟତିରେକେ ମାମୁଁ କେହି ନାହିଁ ଶାଖା ।
କର୍ଣ୍ଣର ବାହୁକୁ ଆଶ୍ରା କରିଥିଲି ମୁହିଁ
ଦଇବ ତା ଭାଙ୍ଗିଦେଲା ତୋର ଦୋଷ ନାହିଁ ।
ମୋହର ମନ୍ଦ କର୍ମକୁ ମଲେ ସବୁ ବୀରେ
ଏତେବେଳେ ଭାସୁଛି ମୁଁ ବିପଦ ସାଗରେ ।
କରିବୁ ନିଶ୍ଚେ ତୁ ମାମୁଁ କୃପାନାବେ ପାରି
ଜାଣଇ ତୋ ବୀରପଣ ମୁହିଁ ଭଲ କରି ।
ରାଜାର ବଚନେ ବୋଲେ ଶଲ୍ୟ ମହାରଥୀ
ଆଜି ମୁଁ ମୁକୁଟ ବାନ୍ଧି ହେବି ସେନାପତି ।
ଏମନ୍ତ ଶୁଣି ଆନନ୍ଦ ହୋଇ କୁରୁନାଥେ
ସ୍ୱହସ୍ତେ ଶାଢ଼ୀ ବାନ୍ଧିଲା ଶଲ୍ୟଙ୍କର ମାଥେ ।

ରତନ କୁସୁମ ମାଳା ଗଳାରେ ଲମ୍ବାଇ
ଶଲ୍ୟ ମହାରଥୀଙ୍କର ଶିରେ ଅର୍ଘ୍ୟଦେଇ ।
ଗନ୍ଧପୁଷ୍ପେ ପୂଜା କରି ଆଗେ ହେଲା ଉଭା
ଶଲ୍ୟଙ୍କ ତେଜ ନିନ୍ଦଇ ଦିନକର ପ୍ରଭା ।
ବୋଇଲେ ଯେ ଦୁର୍ଯ୍ୟୋଧନ ମୁଖକୁ ଅନାଇ
ମୋହର ପ୍ରତିଜ୍ଞା ତୁହୋ ଶୁଣ କୁରୁସାଇଁ ।
ଯୁଧିଷ୍ଠିରଙ୍କୁ ବାନ୍ଧି ଆଣିଦେବି ତୋତେ ଆଜ
ରଖି ନ ପାରିବେ ମୋତେ ପାର୍ଥ ଦେବରାଜ ।
ପ୍ରତିଜ୍ଞା ଶୁଣି ଆନନ୍ଦ ହୋଇ ରାଜା ଗଲା
ଶଲ୍ୟ ମହାରଥି ନିଜ ସୈନ୍ୟ ସଜ କଲା ।
ଏସନକ ବାରତା ଯେ ପାଇଲେ ପାଣ୍ଡବେ
ସମରେ ସଜ ହୋଇଲେ ପାର୍ଥ ବସୁଦେବେ ।
ଯୁଧିଷ୍ଠି ଦେବ କହନ୍ତି ଗୋବିନ୍ଦଙ୍କୁ ଚାହିଁ
ଶଲ୍ୟଙ୍କ ସମାନ ବୀର ପୃଥିବୀରେ ନାହିଁ ।
ପ୍ରତିଜ୍ଞା କଲେଣି ଶିରେ ବାନ୍ଧିଣ ମୁକୁଟ
ଅବଶ୍ୟ ଯୁଦ୍ଧେ ପଡ଼ିବ ଆମ୍ଭଙ୍କୁ ସଙ୍କଟ ।
ଗୋବିନ୍ଦ ବୋଇଲେ ଚିତ୍ତେ ନ କର ଯେ ଭୟ
ମରିବେ ସମରେ ଆଜ ଶଲ୍ୟ ମହାରାୟ ।
ପୁଣି ଭୀମ ସହଦେବ ନକୁଳ ଯୁଧିଷ୍ଠି
ଧୃଷ୍ଟଦ୍ୟୁମନ ସହିତେ ସୈନ୍ୟ ଯେ ନିଉଠି ।
ସଙ୍ଗତରେ ଯେଝା ସୈନ୍ୟ ଘେନି ପାଞ୍ଚବୀରେ
ସଂଗ୍ରାମ ଭୂମିରେ ଯାଇ ପ୍ରବେଶ ହୋଇଲେ ।
ରଣସ୍ଥଳେ ଦେଖିଲେ ଯେ ଶକୁନି ମୂରତି.
ସଙ୍ଗେ ଘେନି ବାହାରିଛି ନବଲକ୍ଷ ରଥୀ ।
ଶଲ୍ୟବୀର ଛାମୁରେ ଯେ ନନ୍ଦିଘୋଷ ରଥ
ଶକୁନି ତୁଲେ ଭେଟିଲେ ମାଦ୍ରୀଦେବୀ ସୁତ ।
ସହଦେବ ବୋଲେ ମାମୁଁ ସାଧୁ ତୋର ବୁଦ୍ଧି
ତୋର କାର୍ଯ୍ୟ ସଙ୍ଗ ହେଲା ଆମ୍ଭ କାର୍ଯ୍ୟସିଦ୍ଧି ।
ଏବେ ନିଜ ରାଜ୍ୟକୁ ତୁ ଯାଅ ଅପସରି
ସୁଖ ଭୁଞ୍ଜି ହୁଅ ନିଜ ରାଜ୍ୟେ ଅଧିକାରୀ ।
ତୋ ମୁକୁଟ ବନ୍ଧା ଦେଖି ଲଭିଲି ବିଷାଦ
ଜାଣିଲଇ ମାମୁଁ ତୋତେ ପଡ଼ିବ ପ୍ରମାଦ ।
ଶକୁନି ବୋଇଲା ବାବୁ ଶୁଣ ସହଦେବ
ଆଦ୍ୟରୁ ଯେ ତୋତେ ମୁହିଁ କହୁଅଛି ସର୍ବ ।
ମୋ ପିତା ଗାନ୍ଧାରସେନ କଲା କେଉଁ ଦୋଷ
ପଥର ଘରେ ଭରି ତା ବଂଶ କଲା ନାଶ ।
ଶଏ ଶତାଣୋଇ ଜଣ ପଶିଲୁ ସେ ଘରେ
ଅନ୍ନ ବିହୁନେ ସମସ୍ତେ ଗଲେ ଯମପୁରେ ।
ଚତୁର ବୁଦ୍ଧି ପଣରେ ପ୍ରାଣ ମୁଁ ପାଇଲି
ତେଣୁ ଏହାର ବଂଶକୁ କୂଟେ ମରାଇଲି ।

ମୁହିଁ ଭିଆଇଲି ପଶା କପଟେ ଯେ କୂଟେ
ମୁଁ ଯେ ଭିଆଇଲି ଘର ଘୃତ ଛଣପଟେ ।
ମୁହିଁ ଯେ ଭୀମକୁ ଖୁଆଇଲି ବିଷଲଡୁ
ମୋ ବୁଦ୍ଧି ବଳେ ସଂସାରେ କୁରୁବଳ ସଢୁ ।
ଏକା ମୁଁ ସମରେ ମରାଇଲି ଅଭିମନ୍ୟୁ
ପିତା ବଚନେ ନିର୍ଦ୍ଦୟ ହେଲି ଚିହ୍ନୁ ଚିହ୍ନୁ ।
ବାବୁ ଏ ସକଳ କାର୍ଯ୍ୟ କରିଅଛି ମୁହିଁ
ଯେତେକ ସୈନ୍ୟ ପଡ଼ିଲେ କୁରୁକ୍ଷେତ୍ର ଭୂଇଁ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଯେ ରାକ୍ଷସ
ଅଷ୍ଟାଦଶ ଅକ୍ଷୌହିଣୀ ହେଲେ ଆୟୁ ଶେଷ ।
ବାବୁ ଏତେ ଯୋଦ୍ଧା ପଡ଼ିଲେକ ମୋର ହେତୁ
ଅପସରି ଗଲେ କାହୁଁ ପାର ହେବି ଏଥୁ ।
ନାନାଦି ପାତକ ବାବୁ ବଂଶେ ହୋଇଥିଲେ
ରଣଯୋଗେ ତାର କିବା ଅନ୍ନଦାନ ଦେଲେ ।
ସର୍ବସ୍ୱ ଚେତି ପ୍ରୟାଗେ ଦେଲେ କିବା ଝାସ
ତେବେ ଏ ପାତକମାନ ହୁଅଇ ବିନାଶ ।
ବଂଶର ପାତକ ଯେବେ ହୁଅଇ ବିରୋଧୀ
ଏକମନେ ଯାଇ ତେବେ ବ୍ରହ୍ମଜ୍ଞାନ ସାଧୀ ।
ଅଥବା ସମରେ ଯେବେ ଦେଇପାର ଝାସ
ତେବେ ପାର ଯାଇ ସିନା ସେ ପାତକ ଦୋଷ ।
ସବୁ ଦୋଷଠାରୁ ବଡ଼ ଅଟେ ହତ୍ୟାକାରୀ
ଆଉ ରାଜ୍ୟ କରି ଲଭିବ କି ସୁଖଶିରୀ ।
ଅଷ୍ଟାଦଶ ଦିନ ମଧ୍ୟେ ମୋର ରଣଭାଗ
ମାରଇ କୌରବ କରିବଇଁ ରଣଯୋଗ ।
ଶଙ୍ଖ ଚକ୍ର କରେ ଧରିଛନ୍ତି ଦେବରାଜ
ଏ ନନ୍ଦିଘୋଷ ରଥ ଯେ ଆଉ କପିଧ୍ୱଜ ।
ସମରେ ପଡ଼ିବି ମୁହିଁ ଏମାନଙ୍କୁ ଦେଖି
ବୈକୁଣ୍ଠେ ବସିବି ତେବେ ପାତକ ଉପେକ୍ଷି ।
ଯେଉଁ କୁରୁବଳ ନାଶ ଯାଉଛନ୍ତି ରଣେ
ସେମାନଙ୍କୁ ବହି ନେଉଛନ୍ତି ଦେବଗଣେ ।
ସହଦେବ ଶୁଣିଣ ଯେ ଆନନ୍ଦ ହୋଇଲା
ତୁ ତ ଭୂତ ଭବିଷ୍ୟତ ଜ୍ଞାତା ହେ ବୋଇଲା ।
ଜୟ ତୁ ଜୟ ଗୋବିନ୍ଦ ଶ୍ରୀପୁରୁଷୋତ୍ତମ
ଜୟ ଜଗତ ଜୀବନ ଜୟ ତୁ ଶ୍ରୀରାମ ।
ତୋର ଦର୍ଶନେ ପାପୀଏ ମହାପାପ ଖଣ୍ଡି
ଭାରା ନିବାରଣ ରଣେ ଅଛୁ ରଥ ମଣ୍ଡି ।
ସ୍ୱାମୀ ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ
ଏ ପଞ୍ଚମହାଭୂତର ନିହାନ୍ତ ପୁରୁଷ ।
ଯୋଗେଶ୍ୱର ନାଥ ତୁହି ସଦାନନ୍ଦ ଯୋଗୀ
ସର୍ବଜନ ନାଥ ତୁହି ସର୍ବଜନ ଭୋଗୀ ।

ଅରୁଣ ଅନନ୍ତ ତୁହି ସର୍ବଜନ ପିତା
ସୁଖ ଦୁଃଖ ପାପପୁଣ୍ୟ ଆଦିର କରତା ।
ଜମ୍ବୁଦ୍ୱୀପ ଭ୍ରତଖଣ୍ଡ ଉତ୍କଳ ମଧ୍ୟରେ
ନୀଳଗିରି ବାରାନିଧି ଉତ୍ତର ତୀରରେ ।
କୋଟିତୀର୍ଥ ଘେନି ବିଜେ କଳ୍ପବୃକ୍ଷ ଛାୟା
କଳି କଳୁଷ ଧ୍ୱଂସନେ ନୀଳୋତ୍ପଳ କାୟା ।
ଶ୍ୱେତ ପୀତ ମର୍କତ କୁଙ୍କୁମ ଚାରି ରୂପ
ସଂସାର ଆଖ୍ୟା ନିମନ୍ତେ ବଉଦ୍ଧ ସ୍ୱରୂପ ।
ସାଧୁଜନମାନଙ୍କର ଅଟୁ ଗଳାମାଳା
ପଦ୍ମାବତୀ ପଦ୍ମାସନ ବନ୍ଦେ ଚକାଡୋଳା ।
ଦୁଷ୍ଟ ନିବାରଣ ନାଥ ସଞ୍ଚର ସଙ୍ଗାଳି
ତବ ପାଦପଦ୍ମେ ଧ୍ୟାନ କରଇ କପାଳୀ ।
ଶ୍ରୀ ମହାଭାରତ ସୁଧା ସିନ୍ଧୁରୁ ଉଗୁଳି
ତବ ପାଦ ପରସାଦେ କିଞ୍ଚିତେ ଲେଖିଲି ।
ଏହି ଅନୁଗ୍ରହ ମୋତେ କର କୃପାମୟ
ଏଣିକି ଯେ କଥା ଦୃଶ୍ୟ ହୋଇବ ହୃଦୟ ।
ପରମେଶ୍ୱରୀ ମାତା ଶ୍ରୀ ଶାରଳାଦେବୀ
ଜନ୍ମେ ଜନ୍ମେ ଶରଣ ମୁଁ ତୋର ପାଦସେବି ।
କୃପାଜଳ ଦାୟିନୀ ଗୋ ଦେବୀ ସରସ୍ୱତୀ
ବ୍ରହ୍ମାର ନନ୍ଦିନୀ ମାତା ଅଟୁ ଭଗବତୀ ।
ଜମ୍ବୁଦ୍ୱୀପ ଭ୍ରତଖଣ୍ଡ ଉତ୍କଳ ଦେଶରେ
କନିକାବତୀ ପାଟଣା ଚନ୍ଦ୍ରାଭାଗା ତୀରେ ।
ବିଜୟ ପରମାନନ୍ଦ ପ୍ରସନ୍ନେ ହିଙ୍ଗୁଳା
ଇହ ପର ଗତି ଦାତ୍ରୀ ଶ୍ରୀ ସର୍ବମଙ୍ଗଳା ।
ଅଭୟା ଅନାଦି ଦେବୀ ଭୃତ୍ୟର ନିମନ୍ତେ
ବିଜେ କରିଛନ୍ତି ଦିବାରାତ୍ର ଅନୁବ୍ରତେ ।
ପ୍ରସନ୍ନେ କାମନା ସିଦ୍ଧ କରୁଛନ୍ତି ମାତ
ଅପାର ମହିମା ଯାର ନାହିଁ ଆଦି ଅନ୍ତ ।
ଗ୍ରାମ ଦେବତା ରୂପରେ ଗ୍ରାମେ ଗ୍ରାମେ ଥାଇ
ରକ୍ଷା କରୁ ମାତ ଠାବେ ଠାବେ ପୂଜା ପାଇ ।
ଚଣ୍ଡୀ ଚାମଣ୍ଡା ରୂପରେ ଭ୍ରମୁ ତୁ ଜଗତେ
ମୁଁ ତୋର ଚରଣ ତଳେ ଭୃତ୍ୟ ଅନୁବ୍ରତେ ।
ତୋହର କୃପାରୁ ସିନା କଦଳୀ ଭେଳାରେ
ଅପାର ସମୁଦ୍ରପାରି ହେବାକୁ ବିଚାରେ ।
ଏ ମହାଭାରତ ଗ୍ରନ୍ଥ ଲେଖିବାକୁ ମୁହିଁ
ସମର୍ଥ ହୁଅନ୍ତି କାହୁଁ ପାଠ ପଢ଼ିନାହିଁ ।
ଏବେ ମୋତେ ତ ଅନ୍ଧାର ଦିଶେ କି ଲେଖିବି
କୃପାକରି କହିଦିଅ ଗୋ ଶାରଳା ଦେବୀ ।
ଜନ୍ମେ ଜନ୍ମେ ଦାସ ମୁହିଁ ତୋହର ଚରଣେ
ତୋ ବିନା ମୋହର ପ୍ରଭୁ ନାହିଁ ଆନ ଜଣେ ।

ଶାରଳା ଦେବୀର ପାଦ ଜନ୍ମେ ଜନ୍ମେ ସେବି
କହଇ ଶାରଳା ଦାସ ଶୂଦ୍ରମୁନି କବି ।

—୦—

## ଶଲ୍ୟ ସହିତ ଅର୍ଜ୍ଜୁନର ଯୁଦ୍ଧ

ଅଷ୍ଟାଦଶ ଦିବସରେ ଏହି ଯୁଦ୍ଧ କଥା
ଶ୍ରୀ ମହାଭାରତ ଶଲ୍ୟପର୍ବର ବାରତା ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଶଲ୍ୟଙ୍କୁ ପ୍ରଶଂସି କହେ ମାନଚକ୍ରବର୍ତ୍ତୀ ।
ବୀରବେଶ ମଣ୍ଡି ଶିରେ ମୁକୁଟକୁ ବାନ୍ଧି
ବେନିହସ୍ତ ଧରି ରାଜା କ୍ରୋଧେ କହେ କାନ୍ଦି ।
ଭୋ ଶଲ୍ୟରାୟେ ବୁଡ଼ିଲା ଏବେ ମୋର ରାଜ୍ୟ
ବିଦୂର ବୋଲ ନ କରି ପିତା ପାଏ ଲାଜ ।
ଶତେ ପୁତ୍ର ଜାତ କାଳେ ଧୃତରାଷ୍ଟ୍ରଙ୍କର
ମୋତେ ଦେଖି ପିତାଙ୍କୁ ଯେ ବୋଇଲା ବିଦୂର ।
କର୍କଶ ମଧୁପିଙ୍ଗଳ ଏ ତୋ ଜ୍ୟେଷ୍ଠ ପୁତ୍ର
ଏ ରହିଲା ଦେଶେ ନିଶ୍ଚେ ହୋଇବ ବିପ୍ରୀତ ।
ଅନେକ ଦୁର୍ଗୁଣ ଯାର କହିଲେ ନ ସରେ
ବଂଶ ତୋ ବୁଡ଼ିବ ପୁରେ ଏ ପୁତ୍ର ରହିଲେ ।
ଏକ ପୁତ୍ର ମାରି ଊନଶତ ପୁତ୍ର ରଖ
ସୁଖରେ ରହ ନୋହିଲେ ପାଇବୁ ଯେ ଦୁଃଖ ।
ବିଦୂର ବଚନ ଯେବେ ପିତା କରିଥାନ୍ତା
ଏଡ଼େ ସୁଖ ପାଇ କିମ୍ପା ଏ ଶାସ୍ତି ସହନ୍ତା ।
ବିଦୂର ବଚନକୁ ନ କରି ଧୃତରାଷ୍ଟ୍ର
କାଳେ ତାହା ଫଳିଲା ପାଇବାକୁ ଏ କଷ୍ଟ ।
ମାମୁଁ ଧୃତରାଷ୍ଟ୍ର ବଂଶ ନାଶ ଗଲା ହାଦେ
ଭସ୍ମ ଅଙ୍କୁରିବ ଅବା ତୋହର ପ୍ରସାଦେ ।
ଶଲ୍ୟେ ବୋଇଲେ ପ୍ରତିଜ୍ଞା କରି ତ ନ ପାରି
ଯେତେ ପ୍ରାକର୍ମ ଅଛି ତୋ ପାଇଁ ଯୁଦ୍ଧ କରି ।
ଚଳିଲେ ତକ୍ଷଣେ ଦଣ୍ଡ ସାଜି ଗୁରୁ ଶଲ୍ୟେ
ସମଦଣ୍ଡ ଚଳାଇଲେ ମନ୍ତ୍ରୀବର ତୁଳେ ।
ପଶ୍ଚିମେ କୌରବେ ପୂର୍ବେ ପାଣ୍ଡବଙ୍କ ବଳ
ନନ୍ଦିଘୋଷ ବାହାନ୍ତି ଯେ ଦେବକୀର ବାଳ ।
ଶଲ୍ୟ ରଥ ଅଗ୍ରତରେ ଭେଟେ ନନ୍ଦିଘୋଷ
ଦେଖି ରାୟେ ଗୁରୁ ଶଲ୍ୟ କଲେ ମହାରୋଷ ।
ନନ୍ଦିଘୋଷେ ଥାଇ କରି ଅର୍ଜ୍ଜୁନ ପ୍ରଣମି
କଠୋର ବେଳ ପଡ଼ିଲା ଆସି ଦେବସ୍ୱାମୀ ।
ତୁମ୍ଭେ ମାଦ୍ରୀ ଦେବୀଙ୍କର ଜ୍ୟେଷ୍ଠଭ୍ରାତ ଅଟ
ମୁଁ ତୁମ୍ଭ ଭଣଜା ତୁମ୍ଭେ ମୋ ମାତୁଳ ଶ୍ରେଷ୍ଠ ।
ଦୟା ନ କଲ ନକୁଳ ସହଦେବ ପ୍ରତି
ପୁତ୍ରଙ୍କର ହିତେ କାହିଁ ତୋର ଏ ଅପ୍ରୀତି ।
ଦେଖୁ ଦେଖୁ ସ୍ୱାମୀ ଏବେ ଭୀଷ୍ମ ନାଶଗଲେ
ଦ୍ରୋଣ ଗୁରୁ ରଣେ ମଲେ କର୍ଣ୍ଣ ହିଁ ପଡ଼ିଲେ ।
ଏବେ କି ମାତୁଳ ଯଶ ଅଛଇ ତୁମ୍ଭରି
ମଦ୍ରଦେଶ ତୁ ହେ ମାମୁଁ ଯାଅ ଅପସରି ।
ଉଭୟ କୁଳର ମାମୁଁ ଅଟ ତୁମ୍ଭେ ସୁଧୀ
ଅକାରଣେ କାହିଁପାଇଁ ହୋଇବ ବିରୋଧୀ ।
ଶଲ୍ୟ ବୋଲେ ବାବୁ ତୋର ଶୁଭ ବାଞ୍ଛୁଅଛି
ଆମ୍ଭର ଆୟୁଷ ଘେନି ବର୍ତ୍ତ ସବ୍ୟସାଚୀ ।
କାଳକ ବଞ୍ଚିଲୁ ଆମ୍ଭେ ଧୃତରାଷ୍ଟ୍ର ତୁଳେ
ଅନେକ ଭୋଗ ଭୁଞ୍ଜିଲୁ ସମ୍ପଦର କାଳେ ।
ଏତେବେଳେ ଛାଡ଼ିଗଲେ ହୋଇବ ଅଧର୍ମ
କ୍ଷତ୍ରିୟ କୁଳର ହାଦେ ନୁହଇ ଏ କର୍ମ ।
କରିବି ମାନଗୋବିନ୍ଦ ପାଇଁ ମୁହିଁ ଯୁଦ୍ଧ
ଆଜ ସଂଗ୍ରାମେ ତୁମ୍ଭଙ୍କୁ କରିବଇଁ ବଧ ।
ତୋହର ଆଗରେ ପାର୍ଥ କହିଲଇଁ ସତ୍ୟ
ଧର୍ମ ସହିବ କି ହାଦେ ହୋଇଲେ ନିସତ ।
ଶଲ୍ୟ ବଚନେ ଅର୍ଜ୍ଜୁନ କୋପ ଯେ ବିଶେଷ
ଧନୁ ଆମଞ୍ଚନ କରି କଲା ଗୁଣଘୋଷ ।
ପୁଣ ପୁଣ ବିନୟରେ ବୋଲେ ଫାଲଗୁନି
ମାତାର ସୋଦର ହୋଇ ନ ଘେନ ଦଇନି ।
ଆମ୍ଭଙ୍କୁ ଜିଣିଲେ ତୋତେ ନାହିଁ ହାଦେ ଦୋଷ
ଆମ୍ଭେ ତୋତେ ନାଶ କଲେ କୁଳକୁ ଅଯଶ ।
ଶଲ୍ୟ ବୋଲେ ଦେବକିବା ବ୍ରାହ୍ମଣ ହୋଇଲେ
ଶିର ଛେଦ କରିବ ତା ସମରେ ପଶିଲେ ।
ଏହାଶୁଣି ଧନୁ ଧରେ ବୀର ସବ୍ୟସାଚୀ
ଦେଖି ଶଲ୍ୟ ରାଜା ଧନୁ କରେଣ ଆମଞ୍ଚି ।
ତିନିଶତ ପଞ୍ଚବାଣ ପୂରାଇଣ ଶଲ୍ୟ
ସମରେ ବିନ୍ଧିଲା ପାର୍ଥେ ସେ ଭାରୋଇମଲ୍ଲ ।
ପୂରାଇଣ କଉଶିକ ଶର ଅରଜୁନ
ଶଲ୍ୟଙ୍କ ନାରାଚ ସବୁ ଛେଦିଲା ବହନ ।
ପୁଣି ଶତେବାଣ ପୂରାଇଣ ଶଲ୍ୟରଥୀ
ଅର୍ଜ୍ଜୁନର ଉପରକୁ ବିନ୍ଧିଲାକ ଧାଡି ।
ଦେଖିଣ କୋପାନଳ ସେ ବାସବର ନାନ
ଏକାଦଶ ବାଣ ପୁଣି ବିନ୍ଧିଲା ଅର୍ଜ୍ଜୁନ ।
ଶଲ୍ୟଙ୍କର ନାରାଚକୁ ପକାଇଲେ ଛେଦି
ପୁନରପି ପଞ୍ଚବିଂଶ ବାଣ ଶଲ୍ୟ ବିନ୍ଧି ।
ପାଞ୍ଚବାଣ ଘେନି ବିନ୍ଧିଲାକ ସବ୍ୟସାଚୀ
ଶଲ୍ୟର ନାରାଚ ବେଗେ ପକାଇଲା ପୋଛି ।

ବିନ୍ଧିଭେକ ପଞ୍ଚାଶତ ବାଣ ଶଲ୍ୟ ରଥୀ
ଶତେବାଣ ଛେଦିଲା ବିଚିତ୍ରବୀର୍ଯ୍ୟ ନାତି ।
ପର୍ବତାଶର ବିନ୍ଧିଲେ ମାଦ୍ରୀଦେବୀ ଭ୍ରାତ
ବଜ୍ରଶରେ ଛେଦିଣ ତା ବୀରବର ପାର୍ଥ ।
ଅଗ୍ନିଶର କୋପଭରେ ତହୁଁ ଶଲ୍ୟ ପେଶି
ମେଘ ଶର ମାରି ପାର୍ଥ ଜଳ ଯେ ବରଷି ।
କୁହୁଡ଼ି ଶର ବିନ୍ଧିଲେ ଶଲ୍ୟ ମହାରଥୀ
ବିନ୍ଧିଲେ ସୂର୍ଯ୍ୟବର୍ତ୍ତନ ଶର ପାର୍ଥ ଧାତି ।
କୁହୁଡ଼ି ତୁଟିଗଲା ଯେ ସୂର୍ଯ୍ୟତେଜ ଲାଗି
ଶତେକ ଶର ବିନ୍ଧିଲେ ଶଲ୍ୟ ମହାଭାଗୀ ।
ଦେଖିଣ ତାହା ଅର୍ଜ୍ଜୁନ ମହାକୋପ କଲେ
ବାବଲ ଶର ପେଶିଣ ସକଳ କାଟିଲେ ।
ଅର୍ଦ୍ଧଚନ୍ଦ୍ର ବାଣ ପେଶିଲେକ ଧନଞ୍ଜୟ
ତୀକ୍ଷ୍ଣ ମୁନା ବାଣେ ଛେଦିଦେଲେ ଶଲ୍ୟରାୟ ।
ବଜ୍ରାବଳୀ ବାଣ ତହୁଁ କୋପେ ଶଲ୍ୟ ପେଶି
ନୀଳବାଣ ଘେନି ତାହା ଅର୍ଜ୍ଜୁନ ବିନାଶି ।
ଦେଖି କରି ଶଲ୍ୟରାୟେ ଗୁରୁ କୋପ କଲେ
ଅୟୁତେ ନାରାଚ ପୁଣି ପାର୍ଥଙ୍କୁ ବିନ୍ଧିଲେ ।
ଆସନ୍ତେ ନାରାଚମାନ ଘୋର ନାଦ କରି
ପବନାଶରେ ତାହାକୁ ଅର୍ଜ୍ଜୁନ ନିବାରି ।
କୋପେ ଶଲ୍ୟ ବିନ୍ଧିଲେକ ଦଶଲକ୍ଷ ଶର
ପାଶୁପତ ବିନ୍ଧି ଛେଦିଲାକ ପାର୍ଥବୀର ।
ଭାରତେ ଭାରୋଇମଲ୍ଲ ଶଲ୍ୟ ସେନାପତି
କେହି ସାନ ନୁହନ୍ତି ସେ ଦୁହେଁ ମହାକ୍ଷତ୍ରୀ ।
ହସ୍ତ ବ୍ୟଗ୍ର କରିଣ ସେ ବିନ୍ଧେ ଶଲ୍ୟ ରାଗେ
ଗଳଇ ତ୍ରିପଣ୍ଡ ଝାଳ ଶରୀରରୁ ବେଗେ ।
ବେଳୁବେଳ ଦୁହିଁଙ୍କର ହେଲା ଘୋର ରଣ
ଶ୍ରୀଚଣ୍ଡୀ ଶାରଳା ଦାସ ଚଣ୍ଡୀର ଶରଣ ।

—୦—

## ଶକୁନି ଓ ସହଦେବର ଯୁଦ୍ଧ ଓ ଶକୁନିର ମୃତ୍ୟୁ

ବଦୟନ୍ତି ଅଗସ୍ତି ଯେ ଶୁଣ ହେ ନୃପତି
ଏଥୁ ଅନନ୍ତରେ ଯୁଦ୍ଧ କଥାର ଯେ ଭାତି ।
ଶକୁନି ମନ୍ତ୍ରୀ ଯେ ଆସୁଥିଲା ଘେନି ଥାଟ
ସହଦେବ ମନ୍ତ୍ରୀ ସଙ୍ଗେ ହୋଇଲା ତା ଭେଟ ।
ଶକୁନି ସହଦେବର ବଢ଼ିଲା ସଂଗ୍ରାମ
କୋପେ ସମର କରନ୍ତି ନାହିଁ ନା ବିଶ୍ରାମ ।
ଶକୁନି କରେ ପଞ୍ଚାଶସସ୍ର ବଳ ଧନୁ
କି ଅବା ସେ ଆର୍ଦ୍ରାବଳୀ ଉଇଁଲା ଗଗନୁ ।
ତେସନ ସଦୃଶ ଧନୁ ଦିଶଇ ଶ୍ରୀକରେ
ପଞ୍ଚଷଠି ଶର ବିନ୍ଧେ ସହଦେବ ପରେ ।
ସହଦେବ ବୋଲେ ମାମୁଁ ପ୍ରଖର ତୋ ବୁଦ୍ଧି
ପାଣ୍ଡବଙ୍କୁ ଦେଲୁ ମାନଗୋବିନ୍ଦ ସମୃଦ୍ଧି ।
ପର ଉପକାର କରି ଆପେ ପ୍ରାଣ ନାଶୁ
ସୁଜ୍ଞାନୀ ହୋଇ ସମରେ କିମ୍ପାଇ ତୁ ପଶୁ ।
ଶକୁନି ବୋଇଲେ ଶୁଣ ଆରେ ସହଦେବ
ଭାବୁଛୁ କି ମୋ ଆଗରୁ ଆଜ ବଳିଯିବ ।
ସେ ବେଳେ ଶକୁନି ଛାଡ଼ି ପାଣ୍ଡବେ ଉପ୍ରୋଧ
ଧନୁରେ ନାରାଚ ଦେଇ ଆରମ୍ଭିଲା ଯୁଦ୍ଧ ।
ନାରାଚ ବିନ୍ଧଇ ପୁଣି ସେ ଯେ ସତଷଠି
ଏକା ନାରାଚରେ ସହଦେବ ଗଲା କାଟି ।
ଶତେ ପାଞ୍ଚଶତ ପୁଣି ଘେନି କରି ଶର
ବିନ୍ଧଇ ଶକୁନି ସହଦେବର ଉପର ।
ମାଦ୍ରୀର ନନ୍ଦନ ବେଳେ ବେଳେ ତା ନିଗ୍ରହି
ଶକୁନି ତୁଲେ ସମର କରଇ ସେ ରହି ।
ଲାଘବ ଶର ଘେନିଣ ତହିଁ ବେନି ରଥି
କୁତୂହଳ ଯୁଦ୍ଧ କରୁଛନ୍ତି ଦୁହେଁ ମନ୍ତ୍ରୀ ।
ଗତ ଆଗତ ଜାଣନ୍ତି ଦୁହେଁ ମହାଜ୍ଞାତା
ଅନୁକ୍ଷଣେ ବିନ୍ଧନ୍ତି ଯେ ସମର ଶକତା ।
ସେ ଯେଣେ ନିଉନ ପୁଣି ହୁଅନ୍ତି ନାରାଜ
ତାହାକୁ ବିନ୍ଧନ୍ତି ଯାହା ସମରେ ଗ୍ରାହିର୍ଯ୍ୟ ।
ଅନେକ ନାରାଚମାନ ଅନୁକ୍ଷଣେ ବିନ୍ଧି
ଆକର୍ଷି ପବନୁ ବେଗେ ବେନିବୀରେ ଛେଦି ।
ରଥୀକି ଯେ ରଥୀ ପୁଣି ହସ୍ତୀକି ଯେ ହସ୍ତୀ
ଅଶ୍ୱକୁ ଅଶ୍ୱ ପଦାତି ସଙ୍ଗରେ ପଦାତି ।
ଏକୁ ଆରେକ କାହାକୁ ନୁହନ୍ତି ଯେ ଊଣା
ଶରେ ଶରେ ପରିତାଳ ନ ଯାଇ ଗଣନା ।
ଶକୁନି କାରୁଣା ଶର ଘେନି ବେଗେ ପେଶି
ନୀରଧାର ପରି ଶର ଉପରୁ ବରଷି ।
ବଜ୍ରଗିରି ଶର ତହୁଁ ପେଶି ମନ୍ତ୍ରୀବର
ନାରଖାର କରିଦେଲା ଶକୁନିର ଶର ।
ଶକୁନି ଚାରିସହସ୍ର ବାଣ ପୁଣ ବିନ୍ଧି
ଏକା ପ୍ରହାରକେ ସହଦେବ ତାହା ଛେଦି ।
ପୁଣି କାଳସର୍ପ ବାଣ ପେଶିଲା ଶକୁନି
ଗରୁଡ଼ାସ୍ତ୍ରେ ନିବାରିଲେ ସହଦେବ ମନ୍ତ୍ରୀ ।
ପର୍ବତାଶରେକ ବିନ୍ଧିଲା ଯେ କୁରୁ ମନ୍ତ୍ରୀ
ବଜ୍ରମୁନା ଶରେ ସହଦେବ ନିବାରନ୍ତି ।
କାମ୍ୟକ ବାଣ ବିନ୍ଧିଲା ପୁଣି ସହଦେବ
ଅନ୍ତରୀକ୍ଷେ ରଥ ଅଶ୍ୱ ଛେଦିଲା ତା ସର୍ବ ।

ସମରେ ବିରଥି ଯହୁଁ ହୋଇଲା ଶକୁନି
ମତ୍ତଗଜ ଆରୋହିଲା ଅସିପତ୍ର ଘେନି ।
ସହଦେବ ପେଶିଲେ ଯେ ତୀକ୍ଷ୍ଣମୁନା ଶର
ପଡ଼ିଲା ନାରାଚ ଗଜରାଜର ଉପର ।
କୁମ୍ଭସ୍ଥଳେ ପଡ଼ି ପଛକତି ଗଲା ଚଳି
ଘାଏଣ ସେ ହସ୍ତୀ ପଡ଼ିଗଲାକ ଯେ ଢଳି ।
ସେ ଗଜ ଛାଡ଼ିଣ ତହୁଁ ବେଗେ ମହୀବର
ପୁଣି ଆରୋହିଲା ମତ୍ତଗଜର ଉପର ।
କରେ ଧନୁ ଧରି ପୁଣି ଆରମ୍ଭିଲା ଯୁଦ୍ଧ
କରନ୍ତି ସଂଗ୍ରାମ ବେନି ଆଠଦଣ୍ଡ ମଧ୍ୟ ।
ଏକକୁ ଆରେକ ପୁଣି ଶର ବରଷନ୍ତି
କରନ୍ତି ଯେ କୁତୂହଳ ରଣ ବେନି ମନ୍ତ୍ରୀ ।
ଗତାଗତ ଜାଣନ୍ତି ସେ ଯୁଦ୍ଧେ ମହାଜ୍ଞାତା
କରନ୍ତି ସଂଗ୍ରାମ ଦୁହେଁ ଦୁହିଁକି ଶକତା ।
କେ ବିନ୍ଧଇ ଶତ କେହୁ ବିନ୍ଧେ ବେନିଶତ
କେ ବିନ୍ଧଇ ଲକ୍ଷ କେହୁ ବିନ୍ଧଇ ଅୟୁତ ।
ଅନେକ ଶର ଶକୁନି ଘେନି ବେଗେ ବିନ୍ଧି
ଦେଖି ସହଦେବ ତାହା ବାୟୁବେଗେ ଛେଦି ।
ଏକକୁ ଆରେକ କେହି ନୁହନ୍ତି ଯେ ଊଣା
ଶରେ ଶର ତାଳ ପଡ଼େ ନ ଯାଇ ଗଣନା ।
ବରୁଣାଶର ଶକୁନି ତହୁଁ ବେଗେ ପେଶି
ନିରାପକ୍ଷ ଶରେ ତାହା ସହଦେବ ନାଶି ।
ଖଣ୍ଡଗିରି ବାଣ ବିନ୍ଧିଲାକ ମନ୍ତ୍ରୀବର
ବଜ୍ରଶରେ ସହଦେବ ଛେଦିଲା ତା ଖର ।
ମାଦ୍ରୀସୁତଠାରେ ଆଉ ଉପରୋଧ ନାହିଁ
ଶକୁନିର ତୁଲେ ଟାଣ ସମର କରଇ ।
ରମ୍ୟେକ ଶର ପୁଣି ଯେ ବିନ୍ଧିଲା ଶକୁନି
ଚକ୍ରପରି ଘେନି ତାହା ସହଦେବ ହାଣି ।
କାମ୍ୟକ ଶର ପେଶିଲା ମାଦ୍ରୀର ନନ୍ଦନ
ଗାନ୍ଧାରସେନ ନନ୍ଦନ କଲା ତା ଛେଦନ ।
ସମରେ ବିଅର୍ଥ ଯହୁଁ ହୋଇଲା ଶକୁନି
ମତ୍ତଗଜେ ଆରୋହିଲା ଅସିପତ୍ର ଘେନି ।
ସହଦେବ ବିନ୍ଧିଲା ଯେ ତୀକ୍ଷ୍ଣମୁନା ଶର
ପନିଳା ନାରାଚ ମତ୍ତଗଜର ଉପର ।
କୁମ୍ଭସ୍ଥଳେ ପଡ଼ି ହୃଦୟକୁ ଗଲା ଚଳି
ଘାଏ ମତ୍ତଗଜ ପଡ଼ିଲାକ ତହୁଁ ଢଳି ।
ପ୍ରାଣ ଛାଡ଼ି ଯହୁଁ ତଳେ ପଡ଼ିଲାକ ହସ୍ତୀ
ଫଳା ଖଣ୍ଡା ଘେନି ମନ୍ତ୍ରୀ କଲା ପାଦଗତି ।
ବେନିଭୁଜ ଟେକି କ୍ରୋଧେ ଧାଏଁ ବୀରମଣି
ପଞ୍ଚତ୍ରିଂଶ ଯୋଦ୍ଧା ବେଗେ ପକାଇଲା ହାଣି ।
ପୁଣି ହିଁ ଶକୁନି ଆରୋହିଲା ହୟବରେ
କୁନ୍ତେକ ଘେନିଣ ଧାଇଁଗଲା ଅତି ଖରେ ।
ବୁଲାଇ କୁନ୍ତକୁ ପବନହୁଁ ବେଗେ ଉଠି
ସହଦେବର ସାରଥି ପରେ ନେଇ ପିଟି ।
କୁନ୍ତ ପଡ଼ନ୍ତେଣ ତାହା ଦେଖି ସହଦେବ
ବଜ୍ର ମୁଦ୍‌ଗର ଘେନିଣ ଦେଇ ପରାଭବ ।
ଅଶ୍ୱର ଶିର କାଟନ୍ତେ ଛିଡ଼ିଲା ସେ ବେଗେ
ଗର୍ଜିଣ ପଡ଼ିଲା ହୟବର ଭୂମିଭାଗେ ।
ଅଶ୍ୱ ପଡ଼ନ୍ତେ ଶକୁନି ହେଲା ଯାନଶୂନ୍ୟ
ମୁଣ୍ଡ ଟେକି ଚାହେଁ ସହଦେବର ବଦନ ।
ଅର୍ଦ୍ଧଚନ୍ଦ୍ର ବାଣ ପେଶିଦେଲା ସହଦେବ
ଶକୁନିର ଶିର ଛିଡ଼ି ପଡ଼ିଲାକ ଯବ ।
ସମରେ ପଡ଼ିଲା ଯହୁଁ ମନ୍ତ୍ରୀ ସେ ଶକୁନି
ସହଦେବର ନାମରେ ଉଠେ ସାଧୁଧ୍ୱନି ।
ଧୃତରାଷ୍ଟ୍ରର ଅଗ୍ରତେ କହିଲେ ସଞ୍ଜୟ
ରଣେ ଶକୁନି ପଡ଼ିଲା ଆହେ କୁରୁରାୟ ।
ଶୁଣିକରି ସାନନ୍ଦ ଯେ ହେଲା ଧୃତରାଷ୍ଟ୍ର
ଏତେବେଳେ ପାଶୋରିଲି ପୁତ୍ରଙ୍କର କଷ୍ଟ ।
ପ୍ରଥମୁ ଶକୁନି ପଡ଼ିଥାନ୍ତାଟିକି ରଣେ
ଉଭୟକୁଳ ମୋ ବୁଡ଼ାଇଲା ଏକା ଜାଣେ ।
ଯେଦିନ ସେ ମନ୍ତ୍ରୀପଦେ ଆସ୍ଥାନେ ବସିଲା
ଏକାତ୍ମା କୁରୁ ପାଣ୍ଡବେ ଭିନ୍ନ କରାଇଲା ।
କେତେକେତେ ଯୋଦ୍ଧା ପୁଣି ପଡ଼ିଲେ ସଂଗ୍ରାମେ
କେବଳ ଦୁଷ୍ଟ ଶକୁନି ରହିଥାଏ କ୍ଷେମେ ।
ଝଙ୍କଡ଼ପୁର ବାସିନୀ ଦେବୀ ଗୋ ଶାରଳା
ପ୍ରସନ୍ନ ହୁଅଗୋ ମାତ ଅଭୟ ହିଙ୍ଗୁଳା ।
ଜନ୍ମେ ଜନ୍ମେ ମୁହିଁ ତୋର ପାଦତଳ ସେବି
ଶ୍ରୀଚଣ୍ଡୀ ଶାରଳା ଦାସ ନାମେ ହେବି କବି ।
ଏଥର ଏତିକି ପଦ କହିଦିଅ ମୋତେ
ଶରଣ ପଶିଲି ମାତ ତୋର ପାଦଗତେ ।

—o—

## ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କର ଯୁଦ୍ଧ ଓ ଶଲ୍ୟ ବଧ

ଶକୁନି ବଧ ଶୁଣିଣ ସେ ମାନଗୋବିନ୍ଦ
ହା ଦେବ ବୋଲି କପାଳେ ମାରେ ହସ୍ତଦ୍ୱନ୍ଦ୍ୱ ।
ନିଷ୍କଣ୍ଟକ ରାଜ୍ୟ ମୁହିଁ କଲି ଅପ୍ରମାଦେ
ଅର୍ଜିଲି ବିପୁଳ ଲକ୍ଷ୍ମୀ ତୋହର ପ୍ରମାଦେ ।
କହିଲେ ନ ସରେ ମାମୁଁ ତୋର ମନ୍ତ୍ରୀପଣ
ଏଡ଼େ ବୁଦ୍ଧିମନ୍ତ ହୋଇ ଲଭିଲୁ ମରଣ ।

ଅନେକ ଶୋଚନା କରେ ତହୁଁ ଧୃତରାଷ୍ଟ୍ରି
ପାଣ୍ଡବବଳ ଯେ ରଣେ ଆସୁଛନ୍ତି ଘୋଟି ।
ଆଉ ଜୀଇଥାଇ ମାମୁଁ କିସ ମୁଁ କରିବି
ଏ ମୋହର ସତ୍ୟବ୍ରତ ରଣେ ଝାସ ଦେବି ।
ଶ୍ୱେତହସ୍ତୀ ଚଢ଼ି ରାୟେ ଧର୍ମ ଯେ ଯୁଧିଷ୍ଠି
ଲକ୍ଷେ ଯୋଦ୍ଧା ତୁଲେ ରଣେ ଆସୁଛନ୍ତି ଘୋଟି ।
ମୃତପିଣ୍ଡ ତଳେ ପକାଇଣ ଗୁରୁରାଜ
ଧାଡିକାରେ ଆରୋହିଲା ଯାଇ ମତ୍ତଗଜ ।
କରେ ଧରି ଧନୁ ଆଦ୍ରାବଳୀ ତେଜ ଜାଣି
ଯୁଧିଷ୍ଠି ଛାମୁରେ ଗଜ ଲଗାଇଲା ଆଣି ।
ମାନଗୋବିନ୍ଦ ବୋଇଲା ଶୁଣ ଯୁଧିଷ୍ଠିର
ଶେଷକାଳେ ପଡ଼ିଲୁ ତୁ ମୋହର ଛାମୁର ।
କୋପେ ଧନୁରେ ଶରକୁ ଯୋଚି କୁରୁସାଇଁ
ଯୁଧିଷ୍ଠିର ଉପରକୁ ବିନ୍ଧିଲା ନିଠାଇ ।
ଶ୍ରୀଭୁଜରେ ଧନୁ ଏକ ଧରିଣ ଯୁଧିଷ୍ଠି
ମାନଗୋବିନ୍ଦ ଉପରେ କଲେ ଶରବୃଷ୍ଟି ।
ପୁରାଇଣ ପଞ୍ଚବିଂଶ ତୀକ୍ଷ୍ମମୁନା ବାଣ
ପୁଣ ପୁଣ ଆକର୍ଷିଣ ବିନ୍ଧେ କୁରୁରାଣ ।
ତିନିଶ ନାରାଚ ବିନ୍ଧିଦେଲେ ଧର୍ମସୁତେ
ଛେଦିଲେ ନାରାଚ ଦୁର୍ଯ୍ୟୋଧନର ଅଗ୍ରତେ ।
ପୁନରପି ପଞ୍ଚବିଂଶ ପୁରାଇଣ ବାଣ
ଆକର୍ଷି ବିନ୍ଧିଲା ମହାକୋପେ କୁରୁରାଣ ।
ମନ ପବନହୁଁ କରଇ ସେ ଶର ବୃଷ୍ଟି
ତ୍ରମ୍ୟକ ଶର ଯେ ବିନ୍ଧିଲାକ ଧାର୍ତ୍ତରାଷ୍ଟ୍ରି ।
ନାରାଚ ପଡ଼ିଲା ଯାଇ ଗଜକୁମ୍ଭସ୍ଥଳେ
ଛଇ ଛାଡ଼ରେ ବାହାର ହେଲା ବକ୍ଷସ୍ଥଳେ ।
ଘୋର ଗର୍ଜନ କରିଣ ପଡ଼େ ଶ୍ୱେତହସ୍ତୀ
ଯୁଧିଷ୍ଠିର ଦେବ ରଣେ କଲେ ପାଦଗତି ।
ପାଦଗାମୀ ହୋଇଣ ସେ ବିନ୍ଧିଲେ ନାରାଚ
ଶସ୍ତ୍ରଙ୍କର ତେଜ ବାଣ ଜିଣି ରବି ତେଜ ।
ମାନଗୋବିନ୍ଦର ଧନୁ ଛିଡ଼ିଲା ସେ ଶରେ
ଧନୁରେ ପୁଣି ନାରାଚ ଯୋଖି ଖରତରେ ।
ଗଜକୁ ଲକ୍ଷ୍ୟ କରିଣ ବିନ୍ଧି ମହୀପାଳେ
ନାରାଚ ପଡ଼ିଲା ମତ୍ତଗଜ ବକ୍ଷସ୍ଥଳେ ।
ବେନିଖଣ୍ଡ ହୋଇ ଛିଡ଼ିପଡ଼େ ମତ୍ତହସ୍ତୀ
ଗଜପୃଷ୍ଠୁ ଡେଇଁପଡ଼ି କରି ପାଦଗତି ।
ସତୁରି ସତୁରି ଭାର ଗଦା ଘେନି ହସ୍ତେ
ରାହୁର ତେଜ ଜିଣିଣ ଧାଏଁ କୁରୁନାଥେ ।
ଗୋବିନ୍ଦ ବୋଇଲେ ଆହୋ ଶୁଣ ଫାଲଗୁନି
ମାନଗୋବିନ୍ଦ ଧାଇଁଲେ କରେ ଗଦା ଘେନି ।

ହସି ବୋଇଲେ ବିରଥୀ ହେବାରୁ ଯୁଧିଷ୍ଠି
ତାଙ୍କୁ କଟାକ୍ଷ କରୁଛି ରାଜା ଧାର୍ତ୍ତରାଷ୍ଟ୍ରି ।
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣ ଯଦୁନାହା
ମାନଗୋବିନ୍ଦ ଛାମୁକୁ ରଥ ମୋର ବାହା ।
ନନ୍ଦିଘୋଷ ରଥଗୋଟି ବାହିଲେ ଶ୍ରୀରଙ୍ଗ
ଧାଡିକାରେ କଲେ ମାନଗୋବିନ୍ଦର ଆଗ ।
ନନ୍ଦିଘୋଷ ପଛରେ ଯେ ରହିଲେ ଯୁଧିଷ୍ଠି
ଚିରାଳଚକ୍ର ହସ୍ତୀର ପରେ ଯାଇଁ ଉଠି ।
ଅଜଗବ ସମ ଧନୁ ଧରିଣ ଶ୍ରୀକରେ
ପଶିଲେ କୁରୁ ନରେନ୍ଦ୍ର ଥାଟର ଭିତରେ ।
ବେଢ଼ିଲେ ତାଙ୍କ ସଇନ୍ୟ ଅନେକ ଯେ ରସି
ଅନୁକ୍ଷଣେ ଧାରା ପ୍ରାୟ ବାଣ ଯେ ବରଷି ।
ବଢ଼ି କାଳନଦୀ ପ୍ରାୟେ ଦିଶନ୍ତି ସେ ରାୟେ
କଉରବ ସଇନି ଯେ ବାଳବୃକ୍ଷ ପ୍ରାୟେ ।
ସମର ସମ୍ଭବ ଦେବଗଣେ ଅଗୋଚର
କକଡ଼ା ବୃଷ୍ଟି ପରାୟେ ବୃଷ୍ଟି ଶରଧାର ।
ଏକ ନାରାଚେ ଅନେକ ସୈନ୍ୟ ଗଲେ ମରି
ସଇନ୍ୟ ମାରନ୍ତି ଯୁଧିଷ୍ଠିର ଦଣ୍ଡଧାରୀ ।
ରଥ ଗଜ ଅଶ୍ୱ ପଦାତିକ ଆଦି କରି
ଛିଡ଼ନ୍ତି ସେ ଶରାଘାତେ ଜଣେ ନ ଉବୁରି ।
ଅତି ପବନ ଘାତରେ ଯେହ୍ନେ ବୃକ୍ଷଲୋଟି
ତେସନେ ଅନେକ ସୈନ୍ୟ ମାଇଲେ ଯୁଧିଷ୍ଠି ।
ଭାଜିଲେ ସଇନ୍ୟ କେହି ନ ରହିଲେ ଆଗେ
ଯେସନେ ଛାଗଳପଲ ଦେଖେ ମତ୍ତବ୍ୟାଘ୍ରେ ।
ସଇନ୍ୟ ଖେଦି ନିଅନ୍ତି ନାହାନ୍ତି କେ ତୁଲେ
ଛାମୁରେ ଭେଟିଲେ ଯାଇ ରାୟେଗୁରୁ ଶଲ୍ୟେ ।
ଯେସନେକ ମତ୍ତଗଜ ଆବୋରି କେଶରୀ
ଯୁଧିଷ୍ଠିଙ୍କୁ ଆବୋରିଲେ ଶଲ୍ୟ ସେହିପରି ।
ବୀରସେନର ନନ୍ଦନ ଶଲ୍ୟ ରଣେ ଜିତା
ଏ ମହୀମଣ୍ଡଳେ କାହିଁ ଧନୁ କେ ଧରନ୍ତା ।
ନାହିଁ ନାହିଁ କ୍ଷତ୍ରିସମ ଏ ତିନି ଭୁବନେ
ଧନୁ ଧଇଲେ ଶଙ୍କର ଯେ ପାକଶାସନେ ।
ଆକାଶ ଘୋଟି ପାରଇ ଯାର ଶରବୃଷ୍ଟି
ତାହାର ଛାମୁରେ ଯାଇ ବିଜୟେ ଯୁଧିଷ୍ଠି ।
ଗଜ ଦେଖି ଯେହ୍ନେ ହୁଏ କେଶରୀର ରୋଷ
ଶଲ୍ୟ ଭେଟିଲା ତେସନ ଯୁଧିଷ୍ଠିଙ୍କ ପାଶ ।
କରେ ଧନୁ ଧରି ରହିଅଛନ୍ତି ଯୁଧିଷ୍ଠି
ଶଲ୍ୟ ଅନୁକ୍ଷଣେ କରନ୍ତି ଯେ ଶର ବୃଷ୍ଟି ।
ନ ଘୁଞ୍ଚନ୍ତି ସମରେ ଯେ ଧର୍ମଙ୍କ ନନ୍ଦନ
ଧନୁରେ ଶର କରନ୍ତି ଆଧାନ ସନ୍ଧାନ ।

ବେନିଜନେ ମରନ୍ତି ଯେ ବାଣ ଜ୍ୱାଳାବଳୀ
ଆକାଶରେ ଅଦୃଶ୍ୟ ଯେ ହେଲେ ଅଂଶୁମାଳି ।
ବୀରବର ଶାର୍ଦ୍ଦୁଳ ସେ ମହାରଥୀ ଶଲ୍ୟ
ରଣରଙ୍ଗେ କମ୍ପାଇଲେ ବ୍ରହ୍ମାଣ୍ଡ ମଣ୍ଡଳ ।
ସମର କରନ୍ତେ ତହିଁ ମାନବ ଅସଂଖ୍ୟ
ଆକାଶେ ଥାଇ ଦେଖନ୍ତି ସର୍ବ ବୃନ୍ଦାଅର୍କ ।
କୋପେଣ ପେଶିଲେ ଶଲ୍ୟବାଣ ତୀକ୍ଷ୍ଣମୁନା
ଭେଦିଗଲା ସେହି ଶର ଯୁଧିଷ୍ଠିଙ୍କ ସ୍ନେହା ।
ସେହ୍ନା ଫୁଟି ହସ୍ତୀ କୁମ୍ଭସ୍ଥମଳ ଗଲା ଗଳି
ଗିରି ପ୍ରସବଣ ସମ ରୁଧିର ନିକିଳି ।
ସେ ଘାଏଣ ମତ୍ତଗଜ ପଡ଼େ ମୁହଁ ମାଡ଼ି
କି ଅବା ମନ୍ଦରଗିରି ପଡ଼ିଲା ଉପୁଡ଼ି ।
ପାଦଗତି ହୋଇଲେ ଯେ ଧର୍ମଙ୍କ ନନ୍ଦନ
ବଜ୍ରଶର ମାଇଲେ ଯେ ହୋଇ କୋପମନ ।
ଯେଉଁପରି ବର୍ଷାକାଳେ ପଡ଼ଇ ନିର୍ଘାତ
ସେହିପରି ପଡ଼ି ଶଲ୍ୟ ରଥ ଭୂମିଗତ ।
ଶଲ୍ୟଙ୍କର ସେହ୍ନା ଫୁଟି ଗଲା ଗଳି
ଝର ଝର ହୋଇ ରକ୍ତ ପଡ଼ିଲା ନିକିଳି ।
ଘାଏ କୁପିତ ହୋଇଲେ ସେ ଭାରତମଲ୍ଲ
ଫୁଲିଯାଇ ପଶିଲେ ସେ ଗିରିବର ତୁଲ୍ୟ ।
ତିନି ନାରାଚ ବିନ୍ଧିଲେ ଅଗ୍ନିବାଣ ଜାଣି
ଯୁଧିଷ୍ଠିଙ୍କ ଧନୁ ଦ୍ରୋଣ ପକାଇଲେ ହାଣି ।
ଶୂନ୍ୟହସ୍ତ ହୋଇଲେ ସେ ଧର୍ମଙ୍କର ବଳା
ଶ୍ରୀକରେ ଧଇଲେ ଅତିବେଗେ ଖଡ୍‌ଗଫଳା ।
କୁମ୍ଭାର ଚକ ପରାୟ ବୁଲାଇ କୃପାଣ
ଶଲ୍ୟଙ୍କର ଉପରକୁ ମାଇଲେ ତତ୍‌କ୍ଷଣ ।
ତ୍ରିଅମ୍ବକ ଶର ଘେନି ଶଲ୍ୟ ମହାରଥୀ
ଯୁଧିଷ୍ଠିଙ୍କ ଖଡ୍‌ଗଫଳା ଛେଦିଲେ ତଡ଼ତି ।
ଶୂନ୍ୟହସ୍ତ ହୋଇଲେ ଯେ ଧର୍ମଦେବ ବଳା
ଧାମଇଁ କ୍ଷତ୍ରିୟକୁଳ ଷଣ୍ଢ ଅନର୍ଗଳା ।
ଯେସନେକି ମତ୍ତଗଜ ଧାମଇଁ ମୁକୁଳା
ଯୁଧିଷ୍ଠିଙ୍କି ଘୋଟିଲା ସେ ବୀରସେନ ବଳା ।
ରାହୁ ଯେସନେ ଘୋଟଇ ଦେଖି ଶଶଧର
ଅତି କୋପେ ଧାମଇଁ ତା ତେଜ ଅନିର୍ବାର ।
ଅନଳ ପରି ବିରାଜେ ତାଙ୍କ ବେନି ଡୋଳା
ବାମକରେ ଧଇଲେକ ଯୁଧିଷ୍ଠିର ଗଳା ।
ଡାହାଣ ହାତେ ଚାପୋଡ଼ କଲେକ ପ୍ରହାର
ଘାଏ ଅସାକ୍ଷମ ହେଲେ ଦେବ ଯୁଧିଷ୍ଠିର ।
ଧଇଲେକ ପୁଣି ଶଲ୍ୟ ଯୁଧିଷ୍ଠିର କେଶ
ଛାଡ଼ ଛାଡ଼ ବୋଇଲେକ ଧର୍ମଙ୍କର ଶିଷ୍ୟ ।

କିମ୍ପାଇ ଏତେ କଟାଳ କରୁଛ ମାତୁଳ
ମୁଁ ତୁମ୍ଭ ଭଣଜା ମୋତେ ନ କର ବ୍ୟାକୁଳ ।
ଅତି କୋପେ ଶଲ୍ୟ କରି ବହୁତ ତର୍ଜନ
କେଶ ଛାଡ଼ି ଦାଢ଼ି ମୁଛ ଧଇଲେ ବହନ ।
ଶ୍ରୀଖଣ୍ଡ କସ୍ତୁରୀ ରେଖ ସମ ଯେଉଁ ଦାଢ଼ି
ସେ କି ସହିବ ଶଲ୍ୟଙ୍କ ହସ୍ତ ଭିଡ଼ାଭିଡ଼ି ।
ବାମକରେ ଧରି ଶଲ୍ୟ ରାଗେଣ ଝିଙ୍କନ୍ତି
କାଳାନଳ ପ୍ରାୟ ଶଲ୍ୟ ସେ କାଳେ ଦିଶନ୍ତି ।
ରୋମେରୋମେ ଯେ ବାହାର ହୋଏ ରକ୍ତଫୁଟି
ଆତ୍ମାବୈକୁଲ୍ୟ ହୋଇଲେ ଦେବ ଯେ ଯୁଧିଷ୍ଠି ।
କାଳ ଅନଳ ବ୍ୟାପିତ ହେଲା ତାଙ୍କ ଗାତ୍ର
ମଦନ ଦହନକାଳେ ଯେହ୍ନେ ରୁଦ୍ରନେତ୍ର ।
ବିହନ୍ତା ପୁରୁଷମାନେ ଥାଇଣ ଆକାଶେ
ନୟନ ବୁଲାଇ ସର୍ବେ ଚାହିଁଲେକ ରୋଷେ ।
ଆଦିତ୍ୟ ଦେବତା ତହୁଁ ହୋଇ କୋପମନ
ଶଲ୍ୟଙ୍କୁ ଚାହିଁଲେ କ୍ରୋଧେ ବୁଲାଇ ନୟନ ।
ନନ୍ଦିଘୋଷ ରଥେ ଥାଇ ଦେଖନ୍ତି ଗୋବିନ୍ଦ
ଅର୍ଜ୍ଜୁନଙ୍କୁ ବୋଲନ୍ତି ଏ ଶଲ୍ୟ ବଡ଼ ମନ୍ଦ ।
ଦେଖ ଦେଖ ଧର୍ମଙ୍କୁ ଯେ କରୁଛି କଟାଳ
ନିଶ୍ଚୟ ଏବେ ଏହାର ପୂରିଲାଣି କାଳ ।
ଅର୍ଜ୍ଜୁନଙ୍କ ଆତ୍ମା ହେଲା ଅତି ବଇକୁଲ୍ୟ
ଦୁର୍ଯ୍ୟୋଧନ ଚାହିଁ ବୋଲେ ଧନ୍ୟ ମାମୁଁ ଶଲ୍ୟ ।
ତୁମ୍ଭଯୋଗୁ ସଂଗ୍ରାମରେ ଯଶ ଅଛି ମୋତେ
ବହୁତ ପ୍ରଶଂସା କଲା ନୃପତି ଏମନ୍ତେ ।
ଯୁଧିଷ୍ଠି ବୋଇଲେ ମାମୁଁ ଜଳିଲା ଜଳିଲା
ଜଳୁ ଜଳୁ ବୋଲି କହୁ ଶଲ୍ୟ ଜଳିଗଲା ।
ଯୁଧିଷ୍ଠିଙ୍କ ଦାଢ଼ି ଛାଡ଼ି ଶଲ୍ୟ ମହାରାଜ
ନିମିଷକ ମଧ୍ୟେ ତହିଁ ହୋଇଲେ ଦହିର୍ଯ୍ୟ ।
ଆତ୍ମା ବୈକୁଲ୍ୟ ନ ଧରି ସେ କ୍ରୋଧ ଅନଳ
ଜଳୁଅଛି ଯେସନକ ରୁଦ୍ର କାଳାନଳ ।
ଶଲ୍ୟଙ୍କୁ ଦଗଧେ କରନ୍ତେ କାଳାନଳ ବୃଷ୍ଟି
ପଳାନ୍ତି କୁରୁଥାଟେ ନ ଚାହାନ୍ତି ଲେଉଟି ।
ସଞ୍ଜୟ ବୋଇଲେ ପୁଣ ରାଜା ଧୃତରାଷ୍ଟ୍ର
ବୃଦ୍ଧକାଳେ ଆସି ତୋତେ ହେଲା ପୁତ୍ର କଷ୍ଟ ।
ଫାଲଗୁନ କୃଷ୍ଣପକ୍ଷ ସପତମୀ ଦିନ
ଭୀଷ୍ମ ମହାରଥୀ କଲେ ଶରରେ ଶୟନ ।
ନବମୀରେ ଜୁଆଇଁ ସେ ଜୟଦ୍ରଥ ମଲା
ଦଶମୀରେ ଭଗଦତ୍ତ ବୀର ସେ ପଡ଼ିଲା ।
ଦ୍ୱାଦଶୀ ମଧ୍ୟରେ ଗଲେ ଦ୍ରୋଣଗୁରୁ କ୍ଷୟ
ଅଠାଣୋଇ ପୁତ୍ର ତୋର ଗଲେ ଯମାଳୟ ।

ତ୍ରୟୋଦଶୀ ମଧ୍ୟାହ୍ନରେ ମଲା ଦୁଃଶାସନ
ସନ୍ଧ୍ୟା ସମୟରେ ମଲା ସେନାପତି କର୍ଣ୍ଣ ।
ଯା ନାମ ଶୁଣିଲେ ଭୟ କରନ୍ତି ପାଣ୍ଡବେ
ଯା ବଳରେ ତେଜୋବନ୍ତ ସର୍ବ କଉରବେ ।
ମୁଖ ଚକ୍ଷୁ କର୍ଣ୍ଣହୀନ ହୋଇଲେ ଯେସନ
ଅଶୋଭା ଦିଶନ୍ତି ଜନେ କୌରବ ତେସନ ।
ଅମାବାସ୍ୟା ଦିନ ମଲେ ଉଲୁକ ଶକୁନି
ଏ ତିନି ପଡ଼ିଲେ ଶଲ୍ୟ ସାରଥିକି ଘେନି ।
କର୍ଣ୍ଣ ଉତ୍ତାରେ ଶକୁନି ଉଲୁକ ପଡ଼ିଲା
ଯୁଧିଷ୍ଠିଙ୍କ କୋପାନଳେ ଶଲ୍ୟ ଦଗ୍ଧ ହେଲା
ସମସ୍ତେ ପଡ଼ିଲେ ମାନଗୋବିନ୍ଦ ତ ଏକା
ସଖା ସୋଦର ନ ଦେଖି ହୋଇଲା ନାଟକା ।
ଧୃତରାଷ୍ଟ୍ର ବୋଇଲେ ହୋ ବିଦୂର ସଞ୍ଜୟେ
ଅନ୍ଧାରବେଳେ ଘୁଞ୍ଚାଇ ଆଣ ତାଙ୍କୁ ଦୁହେଁ ।
ସଞ୍ଜୟ ବୋଇଲେ ନାହିଁ ପଶିବାକୁ ବାଟ
ଚଉକତି ଘୋଟିଲେଣି ପାଣ୍ଡବଙ୍କ ଥାଟ ।
ଧୃତରାଷ୍ଟ୍ର ବୋଇଲେ ମୁଁ ହୋଇଲି ଆଶ୍ଚର୍ଯ୍ୟ
ତ୍ରୈଲୋକ୍ୟ ଜିଣି ପାଇଲୁ ଶଲ୍ୟ ମହାରାଜ ।
ସେ ବୀର ଧନୁ ଧଇଲେ ତ୍ରାସ କରେ ସ୍କନ୍ଦ
କରେ ଶସ୍ତ୍ର ଥିଲେ ଭୟ କରନ୍ତି ଗୋବିନ୍ଦ ।
ଗଦାଯୁଦ୍ଧେ ପ୍ରଶଂସଇ ଯାହାକୁ ବାସବ
ଯାହାକୁ ଦେଖି ଡରନ୍ତି ଦେବ ବଳଦେବ ।
ଅଜାତଶତ୍ରୁ ଯେ ଦେବ ଯୁଧିଷ୍ଠିର ରାୟ
ତାର କୋପାନଳେ ଦଗ୍ଧ ଶଲ୍ୟ ମହାକାୟ ।
କେମନ୍ତେ ହୋଇଲା ଏହା ଲାଗେ ଆଚମ୍ବିତ
ହେ ମନ୍ତ୍ରୀ ତୁମ୍ଭଙ୍କୁ ଦୃଶ୍ୟ ଭୂତ ଭବିଷ୍ୟତ ।
ସଞ୍ଜୟ ବୋଇଲେ ଶୁଣ ଅମ୍ବିକାର ସୁତ
ଶଲ୍ୟଙ୍କର ଶିକ୍ଷାଗୁରୁ ଭାର୍ଗବ ପଣ୍ଡିତ ।
ଭୀଷ୍ମ ଆଉ ଭୁରିଶ୍ରବା ସୋମଦତ୍ତ ଶଲ୍ୟ
ଶର ସନ୍ଧାନେ ଏମାନେ ଜାଣ ମହାମଲ୍ଲ ।
ମାନଧାତାଙ୍କର ତିନି ଅୟୁତ ଅଙ୍କରେ
ଅନୁଭବ ବୋଲି ଜାଣ ଏକ ସମ୍ବତ୍ସରେ ।
ଏମାନେ ବିଦ୍ୟା ଶିଖିଲେ ଇନ୍ଦ୍ରପ୍ରସ୍ଥେ ରହି
ଚୈତ୍ରକୃଷ୍ଣ ପ୍ରତିପଦା ଦିନ ରୁଣ୍ଡ ହୋଇ ।
ସଉରିବାର ନକ୍ଷତ୍ର ପୂର୍ବାଫାଲଗୁନୀ
ଭାର୍ଗବ ଗଲେ ତ ତାଙ୍କୁ ସଙ୍ଗତରେ ଘେନି ।
ଗୁରୁ ଶିଷ୍ୟ ହେଲେ ତହୁଁ ଯମୁନାକୁ ପାରି
ସୁରନଦୀର ଦକ୍ଷିଣ ତୀରେ ବିଜେ କରି ।
ଉତ୍ତର ତୀରରେ ନୀଳଗିରିର କନ୍ଦର
ତିନିକୋଶ ଉଚ୍ଚ ପାଞ୍ଚଯୋଜନ ବିସ୍ତାର ।
ଭାର୍ଗବ ବୋଇଲେ ପିମ୍ପି ମାର ଜଣେ ଜଣେ
ପର୍ବତ ଫୁଟି ନିକିଳିଯାଉ ଆରକୋଣେ ।
ପ୍ରଥମେ ଭୀଷ୍ମ ମାଇଲେ ଚାପି ପିମ୍ପିଗୋଟି
ପର୍ବତ ଭିତରେ ବେନି ଯୋଜନ ଯେ ଫୁଟି ।
ଦ୍ୱିତୀୟରେ ଭୁରିଶ୍ରବା ପିମ୍ପିଏ ମାଇଲା
ବେନି ଯୋଜନ ଫୁଟିଣ କ୍ରୋଟରେ ରହିଲା ।
ତୃତୀୟ ପିମ୍ପି ମାଇଲେ ପୁଣି ସୋମଦତ୍ତ
ପର୍ବତ ଭିତରେ ପଶିଗଲା କୋଶ ସାତ ।
ଅଙ୍ଗୁଷ୍ଠି ଚାପି ମାଇଲେ ଶଲ୍ୟ ପିମ୍ପି ଗୋଟି
ପର୍ବତ ଭିତରେ ବେନି ଯୋଜନ ଯେ ଫୁଟି ।
ସୁରନଦୀ ଜିଣି ତିନିକୋଶ ଗଲା ବଳି
ତିନିଯୋଜନ ଆୟତ ପର୍ବତ ନିକିଳି ।
ପର୍ବତ ଉତ୍ତର ତୀର ଋଷିକୁଲ୍ୟା ନଦୀ
ଭୈରବକୋଣ ବିଦାରି ଅଗ୍ନିକୋଣେ ଭେଦି ।
ଅନଷ୍ଟକ ମହାଋଷି ସେ ନଦୀର ତୀରେ
ନବସସ୍ର ବର୍ଷ ତହିଁ ବସି ତପ କରେ ।
ତାହାଙ୍କ ଉପରେ ଯାଇ ସେ ପିମ୍ପି ପଡ଼ିଲା
ଡାହାଣ ପଞ୍ଜରେ ପଡ଼ି ବାମେ ନିକିଳିଲା ।
ଛଇଛାଡ଼େ ପିମ୍ପି ଗଲା ଶରୀରରେ ଫୁଟି
ଅସାଷ୍ଟମେ ତପୋନିଷ୍ଠ ମହୀପରେ ଲୋଟି ।
ଗର୍ଜ୍ଜନ ଶବଦ ଏକ ଶୁଭିଲା ଅଦ୍ଭୁତେ
ଧାଇଁଗଲେ ସେଠାବକୁ ଭାର୍ଗବ ସହିତେ ।
ଋଷିଙ୍କୁ ଯେ ପ୍ରଣିପାତ କଲେ ଯାଇଁ ଶଲ୍ୟ
ଅନଷ୍ଟକ ବୋଇଲେ ମୋ ଶରୀରେ ନିକିଳି ।
ଯେ ମୋତେ ଏହା କଲା ତା ଦେହ ଯାଉ ଜଳି
ବେଳୁବେଳ ଋଷିଙ୍କର କୋପ ଗୁରୁତର
ବିନୟ ବଚନେ ଶାନ୍ତ କଲେ ଶଲ୍ୟବୀର ।
ଆଦ୍ୟପ୍ରାନ୍ତ କରି ସବୁ କହିଲେ ଭାର୍ଗବ
ଋଷି ବୋଇଲେ ମୋ ବାକ୍ୟ ଆନ ନ ହୋଇବ ।
ଥୋକାଏକ ଦିନ ତୋର ଏ ଶରୀର ରହୁ
ଭାରତଯୁଦ୍ଧେ ଯୁଧିଷ୍ଠି କୋପାନଳେ ଦହୁ ।
ସଞ୍ଜୟ ବୋଇଲେ ଶୁଣ ଆହେ ଧୃତରାଷ୍ଟ୍ର
ଅନଷ୍ଟକ ଋଷି ଶାପେ ଶଲ୍ୟ ହେଲେ ନଷ୍ଟ ।
ଶୁଣି ସ୍ତବଧ ହୋଇଲେ ଅନ୍ଧ ନୃପବର
ମହାଭାରତ ଏ ଶଲ୍ୟପର୍ବ ସୁଧାସାର ।
ମୁଁ ମୂଢ଼ କି ସାମରଥ ଲେଖିବାକୁ ତାହା
ପ୍ରସନ୍ନେ ଶାରଳା ରାତ୍ରେ କହିଦ୍ୟନ୍ତି ଯାହା ।
ଦିବସେ ଲେଖଇ ମୋର ନ ଧରିବୁ ଦୋଷ
ଜନ୍ମେ ଜନ୍ମେ ଶ୍ରୀ ଶାରଳା ଦେବୀର ମୁଁ ଦାସ ।

—o—

## କୃପାଚାର୍ଯ୍ୟ ଯୁଦ୍ଧ

ଏଥୁଅନ୍ତେ ବୈବସ୍ୱତ ମନୁ ମହାରାଜା
ଭକତିରେ ଅଗସ୍ତିଙ୍କ ପାଦେ କଲେ ପୂଜା ।
ବସନ ଭୂଷଣ ଗନ୍ଧ ପୁଷ୍ପ ରତ୍ନ ଦେଇ
ମୁନିଙ୍କ ଚରଣ ତଳେ ଗଡ଼ଘାଲି ଶୋଇ ।
ତବ ମୁଖୁଁ ଶୁଣି ଶଲ୍ୟପର୍ବର ବାରତା
କଳୁଷ ତେଜିଲି ଦୂର ହେଲା ସର୍ବବ୍ୟଥା ।
ଶଲ୍ୟ ମଲେ କି ବିଚାର କଲା ଦୁର୍ଯ୍ୟୋଧନ
ଅନୁଗ୍ରହ କରି କହ ଆହେ ତପୋଧନ ।
ବୈବସ୍ୱତ ମନୁଙ୍କୁ ଯେ ବୋଲଇ ଅଗସ୍ତି
ଶଲ୍ୟବଧ କାଳେ ହୋଇଥିଲା ନିଶାରାତି ।
ଶଲ୍ୟ ରଣେ ପଡ଼ିବାର ଦେଖି କୃପାଚାର୍ଯ୍ୟ
ସୈନ୍ୟ ହକାରି ବୋଇଲେ ଆହେ କୁରୁରାଜ ।
ଲୋତକରେ ଢଳ ଢଳ ତୋ ବେନି ନୟନ
ଶୋକ କିମ୍ପାଇ କରୁଛ ବଳବପୁ କ୍ଷୀଣ ।
ନୃପତି ବୋଇଲେ ମୋର ବୁଡ଼ିଲା ସମ୍ପଦ
ଜାଣିଲଇଁ ମୋର କର୍ମ ଅଟେ ବଡ଼ ମନ୍ଦ ।
ଶଲ୍ୟର ବାହୁକୁ ଆଶ୍ରା କରିଥିଲି ମୁହିଁ
ତାହା ତୁଲ୍ୟ ବୀର ଜଣେ ପୃଥିବୀରେ ନାହିଁ ।
ଏମନ୍ତ କହି ବହୁତ ଶୋକ କଲା ରାଜା
କେଣେ ଛାଡ଼ିଗଲୁ ମାମୁଁ ମୋତେ କରି ତେଜ୍ୟା ।
କୃପ ବୋଇଲେ ତୁ ଶୋକ ନ କର ନୃପତି
ରହି ଯୁଦ୍ଧ ଦେଖ ମୋତେ କର ସେନାପତି ।
ଦୁର୍ଯ୍ୟୋଧନ ବୋଲେ ନାହିଁ ମୋହର ଭରସା
ସବୁ ବୁଡ଼ାଇଲି ଆଉ ସମ୍ପଦେ କି ଆଶା ।
ସଖା ସହୋଦର ସମସ୍ତଙ୍କୁ ମରାଇଲି
ମହାପ୍ରାଣୀ ବଧ ପାପ କେତେ ଆଚରିଲି ।
ରାଜା ବାକ୍ୟ ଶୁଣି କୃପ ବସି ସ୍ୱର୍ଣ୍ଣରଥେ
ବୋଲନ୍ତି ସେ ସର୍ବେ ସେନାପତି କର ମୋତେ ।
ରାଜା ବୋଲେ ତୁମ୍ଭେ ବିଚକ୍ଷଣ ବିପ୍ରବର
ନିଜ ଇଚ୍ଛା ହେଲେ ତୁମ୍ଭେ ଆଚର ସମର ।
ମୁହିଁ ଅର୍ଘ୍ୟଦେଲି ଯେତେ ଲୋକଙ୍କର ଶିରେ
ଜଣେ କେହି ନ ବର୍ତ୍ତିଲେ ପଡ଼ିଲେ ସମରେ ।
ଏକା ଅଛ ତୁମ୍ଭେ ରଣଯାଗ ସମାପନେ
ଆବର କାହାକୁ ଆଶ୍ରା ନାହିଁ ମୋର ମନେ ।
ନୁହଁନ୍ତି କି ପାଣ୍ଡବେ ଯେ ତୁମ୍ଭର ବଇରି
ତୁମ୍ଭ ଭିଣୋଇ ଦ୍ରୋଣକୁ ନାହାନ୍ତି କି ମାରି ।
ତାଙ୍କ ସହ ତୁମ୍ଭ ରଣ ଅଟଇ ଯୁକତେ
ପାଣ୍ଡବ ମଲେ କାରଣ ହେବ ପୁଣି ମୋତେ ।
ରଣେ ବାହାରିଲେ କୃପବୀର ଚୂଡ଼ାମଣି
ରାଜାର ଏମନ୍ତ ସବିନୟ ବାକ୍ୟ ଶୁଣି ।
ଶଙ୍ଖ ତୂରୀ ଭେରୀ ଆଦି ବୀରବାଜା ବାଜେ
ଶେଷ ସୈନ୍ୟ ଘେନି କୃପ ସମରକୁ ବିଜେ ।
ଶିରରେ କର ଦେଇଣ ବୋଲଇ କିରୀଟୀ
ପରମଗୁରୁ ମାତୁଳ ତୁମ୍ଭେ ଆମ୍ଭରଟି ।
ସମରକାଳ ତ ଶେଷ ହୋଇଲାଣି ଆସି
ଆଉ କି ରଣେ ଉପ୍ରୋଧ ଅଛି ବିପ୍ରଶିଷି ।
ଦ୍ରୋଣ ନାଶହେଲେ ଗଲେ ଅଶ୍ୱଥାମା ଘୁଞ୍ଚି
ତୁମ୍ଭର ପ୍ରସାଦେ କିସ ପ୍ରୟୋଜନ ଅଛି ।
ଦ୍ରୋଣ ଯେବେ ମଲେ କିଏ ତୁମ୍ଭଙ୍କୁ ଉପ୍ରୋଧ
କୃପ ତପେ ବସ ଯାଇ ନ କରିଣ ଯୁଦ୍ଧ ।
ଅର୍ଜ୍ଜୁନ ବାକ୍ୟେ କହନ୍ତି କୋପେ କୃପାଚାର୍ଯ୍ୟ
କ୍ଷତ୍ରୀହୋଇ କହିବାକୁ ନ ପାଇଲ ଲାଜ ।
ହାରିବା ଜିଣିବା ଦୁଇ କ୍ଷତ୍ରୀଙ୍କର ବୃତ୍ତ
କିମ୍ପାଇ ବଡ଼ାଇ କରି କହ କୁନ୍ତୀସୁତ ।
ସମ୍ଭାଳ କିନା ଅର୍ଜ୍ଜୁନ ବାନ୍ଧୁଅଛି ବାଣ
କହୁଁ କହୁଁ ରୋଷ ହେଲେ ସେ କୃପ ବ୍ରାହ୍ମଣ ।
ଶ୍ରୀଭୁଜେ ଶୋଭା ଷାଠିଏ ସସ୍ତ୍ରବଳ ଧନୁ
ବିନ୍ଧିଲେ ନାରାଚ ରାଗେ ବୃହଧ୍ୱଜ ସୁନୁ ।
ଧନୁରେ ସେ ପୁରାଇଣ ପଞ୍ଚବିଂଶ ଶର
କୋପେ କୃଷ୍ଣଙ୍କ ଉପରେ କଲେକ ପ୍ରହାର ।
ପୁଣି ଶତେକ ନାରାଚ ପୁରାଇ ଧନୁରେ
ଉତ୍ସର୍ଗେ ବିନ୍ଧିଲେ କପିକେତନ ଉପରେ ।
ପୁଣି ଚାପେ ଚାରିଶତ ପୁରାଇ ନାରାଚ
ରଥର ଚାରି ଖମ୍ବକୁ ବିନ୍ଧି କୃପାଚାର୍ଯ୍ୟ ।
ଶତେକ ବାଣ ଯେ ସେହି ପୁରାଇଣ ପୁଣି
ଚାରି ଅଶ୍ୱକୁ ବିନ୍ଧିଲେ ପୁଣି କୋପେ ଟାଣି ।
ବିନ୍ଧିଲେ ସେ ଅପର୍ଯ୍ୟାପ୍ତ ବାଣ କୃପ ଟାଣି
ସମ୍ଭାଳ ପାର୍ଥ ବଦନ୍ତି ଦେଖି ଚକ୍ରପାଣି ।
ଦେଖ ଅପର୍ଯ୍ୟାପ୍ତ ଶର ସନ୍ଧିଲାଣି କୃପ
ସେ ଶରକୁ ସହିବାକୁ ତୋହର କି ଦର୍ପ ।
ଅର୍ଜ୍ଜୁନ ବୋଇଲେ ଥାଅ ଅଶ୍ୱକୁ ସମ୍ଭାଳି
ତୋ ପ୍ରସାଦେ କିଞ୍ଚିତ ମୁଁ ମଣେ ବନମାଳୀ ।
ଦେଖ ଦେଖ ନାରାୟଣ ବୋଲିଣ କିରୀଟୀ
ନାରାଚ ବିନ୍ଧିଲା ଚାରିଶତ ଚଉଷଠି ।
କୃପଙ୍କର ଶରମାନ ପକାଇଲା ଛେଦି
ପୁଣ କୃପାଚାର୍ଯ୍ୟ ତିନିଶତ ବାଣ ବିନ୍ଧି ।
ପଚିଶ ନାରାଚ ବିନ୍ଧେ ଅର୍ଜ୍ଜୁନ ଉପରେ
ସମସ୍ତ ନାରାଚ ପାର୍ଥ ଛେଦିଲା ତା ଦୂରେ ।

ପୁଣି ନବଶତ ବାଣ ପୁରାଇଣ କୃପେ
ଯେସନେ ଗର୍ଜନ୍ତି ଫେରୁ ଟେକି କାଳସର୍ପେ ।
ନାରାଚ ଆସନ୍ତେଣ ତା ଦେଖଇ ଅର୍ଜ୍ଜୁନ
ତିନିଶ ନାରାଚେ କଲେ ସମସ୍ତ ଛେଦନ ।
ସହସ୍ରେ ନାରାଚ କୃପ ବିନ୍ଧିଲେକ ଟାଣି
ପଞ୍ଚସ୍ତରୀ ନାରାଚରେ ଅର୍ଜ୍ଜୁନ ତା ହାଣି ।
ଏମନ୍ତେ ଲାଘବଯୁଦ୍ଧ ହେଲା ଅପ୍ରମିତ
ରଣ ନ ଛାଡ଼ନ୍ତି ଦେଢ଼ ପ୍ରହର ଯେ ରାତ୍ର ।
ଦୁହିଁଙ୍କର ଶର ବାଜି ହୁଏ ପରିତାଳ
ବାହାରି ଅନେକ ବ୍ୟୋମ କରଇ ଉଜ୍ଜ୍ୱଳ ।
ତିମିର ବିଦାରଣ ଯେ ହେଲା ଶରଘାଏ
ସକଳ ଭୂମି ଦିଶୁଛି ସୂର୍ଯ୍ୟ ଉଦେ ପ୍ରାୟେ ।
କୋପେ କୃପଆଚାର୍ଯ୍ୟ ଯେ ପରିଘେକ ଘେନି
ଅର୍ଜ୍ଜୁନର ଉପରକୁ ବିନ୍ଧିଲେକ ଟାଣି ।
ତୀକ୍ଷ୍ଣ ନାରାଚେ ଛେଦିଲେ ତାହା ଫାଲଗୁନି
କୋପେ ଅଗ୍ନି ପ୍ରାୟ କୃପାଚାର୍ଯ୍ୟ ନେତ୍ର ବେନି ।
ପୁଣି କାଳସର୍ପ ବାଣ ପୁରାଇଲେ କୃପେ
ଶତଯୋଜନ ପର୍ଯ୍ୟନ୍ତ ସର୍ପତେଜ ବ୍ୟାପେ ।
ଗରୁଡ଼ ଶସ୍ତ୍ର ଅର୍ଜ୍ଜୁନ ବିନ୍ଧିଲେକ ଟାଣି
ସମସ୍ତ ସର୍ପମାନଙ୍କୁ ପକାଇଲେ ହାଣି ।
ଅଗ୍ନିଶର ବିନ୍ଧିଲେକ ପୁଣି କୃପାଚାର୍ଯ୍ୟ
ଅଗ୍ନିମୟ କରନ୍ତେ ତା ଦେଖିଣ କୁନ୍ତୀଜ ।
ମେଘାଶର ମାରି ତହିଁ କଲେ ଜଳବୃଷ୍ଟି
ଅଗ୍ନିଶର ଲଭିଗଲା ହସିଲେ କିରୀଟୀ ।
ଶତେକ ନାରାଚ ପୁଣି ବିନ୍ଧିଲେ କିରୀଟୀ
ପଚାଶ ନାରାଚ ତାହା କୃପ ଦେଲେ କାଟି ।
ପର୍ବତାଶର ପେଶିଲେ ପୁଣି ଦ୍ୱିତୀଗୁରୁ
ବଜ୍ରଶରେ ଅର୍ଜ୍ଜୁନ ତା ନିପାତିଲେ ଦୂରୁ ।
କୃପଙ୍କ ସମର ଦେବେ ଅଟେ ଅଗୋଚର
ତହିଁକି ସମର୍ଥ ଏକା ପାର୍ଥ ଧନୁର୍ଦ୍ଧର ।
ସମର କରନ୍ତେ ପୁଚ୍ଛାକଲେ ବସୁଦେବ
ଏ ଲାଘବ ଯୁଦ୍ଧେ ରାତ୍ର ପ୍ରଭାତ ହୋଇବ ।
ସମର ଆଦ୍ୟେ ସଂକଳ୍ପ କଲୁ ଧନଞ୍ଜୟ
କରିବୁ ସେ ଅଷ୍ଟାଦଶ ଦିନେ ସବୁ କ୍ଷୟ ।
ତୋହର କହିବା କଥା ହୋଇବ କି ଆନ
କୃପ ବଧ ହେଲେ ଶେଷ ହେବ କୁରୁସୈନ୍ୟ ।
କୃଷ୍ଣଙ୍କ ବଚନ ଶୁଣି ବୋଲେ ଫାଲଗୁନି
ସ୍ୱାମୀ ବ୍ରହ୍ମହତ୍ୟାକୁ ମୁଁ ଡରୁଅଛି ପୁଣି ।
ଗୋବିନ୍ଦ ବୋଇଲେ ଯେଣୁ ପଶିଲେ ବିବାଦେ
ଦ୍ରୋଣ ପରା ଗୁରୁ ଶିରଚ୍ଛେଦ ହେଲେ ଯୁଦ୍ଧେ ।

କୃପ ଆଚାର୍ଯ୍ୟେ ଅଟନ୍ତି ତାହାଙ୍କର ଅନୁ
ଏହାଙ୍କୁ ଉପ୍ରୋଧ ଯେବେ ଧନୁ କିମ୍ବା ଘେନୁ ।
ଏହାଙ୍କୁ ବ୍ରାହ୍ମଣ ବୋଲି ଯେବେ ତୁହି ଜାଣୁ
କିପରି ରଣେ ପଶିଲୁ ଘେନି ଶର ଧନୁ ।
କୃଷ୍ଣ ବଚନେ ବିଚିତ୍ରବୀର୍ଯ୍ୟର ଯେ ନାତି
ବୋଇଲେ କୋଟି ପାତକ ଖଣ୍ଡ ତୁ ଶ୍ରୀପତି ।
ଗୋବିନ୍ଦ ବୋଇଲେ ଏବେ ବିନ୍ଧ କିନା ବାଣ
ସଂଗ୍ରାମେ ପଶିଲେ ତପୀ କି ଅବା ବ୍ରାହ୍ମଣ ।
ବ୍ରାହ୍ମଣ ହୋଇ ତପରେ ଯାର ଥିବ ଇଚ୍ଛା
ସେ କିମ୍ପାଇଁ ସଂଗ୍ରାମକୁ କରିବ ଯେ ବାଞ୍ଛା ।
ନାହିଁ ଆଉ ଧନୁର୍ଦ୍ଧର କୁରୁବଳ ମଧ୍ୟେ
କୃପେ ନ ଜିଣିଲେ ତୁମ୍ଭେ ହାରିବ ଯେ ଯୁଦ୍ଧେ ।
କୃଷ୍ଣର ବଚନେ ପଣ୍ଡୁ ରାଜାର ସନ୍ତତି
ବିନ୍ଧିଲେ ନାରାଚ ମନୁ ଛାଡ଼ିଗଲା ଭ୍ରାନ୍ତି ।
ସହସ୍ରେକ ନାରାଚ ଯେ ବିନ୍ଧିଲେକ ଟାଣି
ପ୍ରତିଶରେ କୃପ ତାହା ପକାଇଲେ ହାଣି ।
ପନ୍ନଗା ଶରେକ ପୁଣି ବିନ୍ଧିଲେ କିରୀଟୀ
ଗରୁଡ଼ ଶରେ ତା କୃପ ପକାଇଲେ କାଟି ।
ପର୍ବତ ଶରେକ ପୁଣି ବିନ୍ଧିଲେ ଅର୍ଜ୍ଜୁନ
ବଜ୍ରବାଣେ କୃପାଚାର୍ଯ୍ୟ କଲେ ତା ଛେଦନ ।
ଅର୍ଜ୍ଜୁନ ଯେତେକ ବାଣ କୋପରେ ବିନ୍ଧନ୍ତି
ପ୍ରତିଶରେ କୃପାଚାର୍ଯ୍ୟ ତା ଛେଦି ପକାନ୍ତି ।
ଜିଣି ନ ପାରିଲେ ପାର୍ଥ କୃପାଙ୍କୁ କାହିଁରେ
ବିଚାରିଲେ ମାରିବି ମୁଁ ଆଦି ଦେବଶରେ ।
ନୀଳବାଣ ଭୁଜବାଣ ତେଣେ ଥିଲା ବେନି
କର୍ଣ୍ଣ ତହୁଁ ଆଣିଥିଲେ ଭୋଜନ ନନ୍ଦିନୀ ।
କାହାକୁ ଅର୍ଜ୍ଜୁନ ବିନ୍ଧି ନ ଥିଲେ ସେ ଶର
କଳା ଧଳା ଅଟନ୍ତି ସେ ହରିହରଙ୍କର ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଯାଅ ବେନି ବାଣ
କୃପା ଆଚାର୍ଯ୍ୟଙ୍କ ଶିରଚ୍ଛେଦ ଏହିକ୍ଷଣ ।
କୋଟିଏ ସୂର୍ଯ୍ୟର ତେଜ ସେହି ବାଣ ବେନି
ବିନ୍ଧନ୍ତେ ରଶ୍ମି ଲାଗିଲା ଭୁବନ ଯେ ତିନି ।
ଯେସନକ ବଜ୍ରଶର ଆସଇ ଆକାଶୁଁ
ତ୍ରୈଲୋକ୍ୟ ତ୍ରାସିଲା ହରିହର ଅସ୍ତ୍ର ଆସୁଁ ।
ଗର୍ଜିଣ କୋପେ ଅଇଲେ ସେ ଦୁଇ ନାରାଚେ
ଯେସନେ ପ୍ରଳୟକାଳେ ସାଗର ଗରଜେ ।
କୃପଙ୍କ ଛାମୁରେ ଆସି ହୋଇଲେ ପ୍ରବେଶ
ବିପ୍ରର ଲକ୍ଷଣ ଦେଖି ପାଇଲେ ସେ ତ୍ରାସ ।
ମନେ ବିଚାରିଲେ ଏ ତ ଅଟନ୍ତି ବ୍ରାହ୍ମଣ
କି କରିବା ଆମ୍ଭଙ୍କୁ ତ ପେଶିଛି ଅର୍ଜ୍ଜୁନ ।

ଏମନ୍ତ ବିଚାରି ପୁଣି ହେଲେ ମହାତେଜ
କୃପଙ୍କ ହୟ ସାରଥି ହୋଇଲେ ଦହିର୍ଯ୍ୟ ।
ନୀଳବାଣ ବାସୁଦେବ କନିଷ୍ଠ ଅଙ୍ଗୁଷ୍ଠି
ଭୁଜବାଣ ରୁଦ୍ରଙ୍କର ବୃଦ୍ଧାଙ୍ଗୁଷ୍ଠି ଗୋଟି ।
ଦୁଇ ନାରାଚ ଦେଖିଣ କୃପା ଆଚାର୍ଯ୍ୟଙ୍କୁ
ବିଚାରିଲେ କେଉଁରୂପେ ନାଶିବୁ ଦ୍ୱିଜକୁ ।
ଦ୍ୱାଦଶଚିତା ବିରାଜେ ଏ ଦ୍ୱିଜର କାୟେ
ହସ୍ତେ କୁଶବଟୁ ଦିଶେ ତମ୍ବାବର୍ଣ୍ଣ ପ୍ରାୟେ ।
ବେଦରେ ନିପୁଣ ଏ ଯେ ମନ୍ତ୍ରରେ ନିପୁଣ
ଏଡ଼େ ଧାର୍ମିକ ହୋଇ ତୁ କଲୁ କିମ୍ପା ରଣ ।
ନିର୍ଦ୍ଦୟ ଅଟଇ ବଡ଼ ବାସବର ସୁତ
ସମରେ ଆମ୍ଭଙ୍କୁ ପେଶିବାର ଅନୁଚିତ ।
ପ୍ରଥମରୁ ପେଶିଥାନ୍ତା ଯେବେ କି ଅର୍ଜୁନ
କ୍ଷଣକେ ଛେଦି ପକାନ୍ତୁ କଉରବ ସୈନ୍ୟ ।
ଆହେ କୃପବ୍ରହ୍ମା ତୁମ୍ଭେ ଅଟ ବଡ଼ କ୍ଷତ୍ରି
ଜିଣିବାକୁ ସଂସାରେ କେ ତୁମ୍ଭଙ୍କୁ ନାହାନ୍ତି ।
ଆମ୍ଭର ଯୁଦ୍ଧକୁ ତୁହି ଅଟୁ ଯେ ସକ୍ଷମ
ବିଶେଷେ ବ୍ରାହ୍ମଣ ତୋତେ ମାଇଲେ ଅଧର୍ମ ।
ଆମ୍ଭ ତୁଲ୍ୟ ନାରାଚେକ ପେଶ କିନା ବାବୁ
ପାର୍ଥ ପଛେ କୋପ କରୁ ବାହୁଡ଼ିଣ ଯିବୁ ।
ଅର୍ଜୁନ ବୋଲିଛି ବେଗେ କୃପଙ୍କୁ ଯେ ହାଣ
ଦେଖୁ ଦେଖୁ କେମନ୍ତେ ଯେ ହାଣିବୁ ବ୍ରାହ୍ମଣ ।
କୃପାଚାର୍ଯ୍ୟ ବୋଇଲେକ ତୁମ୍ଭେ ହରିହର
ତୁମ୍ଭର ସଦୃଶ ନାହିଁ ପାଳଟା ଯେ ଶର ।
ମାରିବା ରଖିବା ସିନା ତୁମ୍ଭର ଏ ଧର୍ମ
ତୁମ୍ଭର ତୁଲେ ମୋହର କି ଅଛି ସଂଗ୍ରାମ ।
ନୀଳ ବୋଲେ ଅପାଳଟ ଶର ଅଟୁ ଆମ୍ଭେ
ଅବଶ୍ୟ ଯହିଁକି ଯାଉ କାର୍ଯ୍ୟ କରୁ ଦମ୍ଭେ ।
କିଞ୍ଚିତ ଲୋକ ଯଦ୍ୟପି ପେଶିବ ଆମ୍ଭଙ୍କୁ
ଅବଶ୍ୟ ଛେଦିବୁ ହେଲେ ବ୍ରହ୍ମାଦି ଦେବଙ୍କୁ ।
ଏ ମହାଯୁଦ୍ଧେ ଏ ଘାନ୍ତି କାହାକୁ ନ ପେଶି
ତୋହର ବଳେ ପଶିଲୁ ଆମ୍ଭେ ରଣେ ଆସି ।
ଏତେ ବୋଲି ବେନିଶର ପଡ଼ିଲେ ଉପରେ
ବେନିଖଣ୍ଡ ହୋଇଲେ ସେ କୃପ ଦ୍ୱିଜବରେ ।
ଅର୍ଜୁନ ଦେଖନ୍ତେ ମୁଣ୍ଡ ପକାଇଲେ ହାଣି
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କଲେ ଚକ୍ରପାଣି ।
କୃପଙ୍କର ତୁଲେ ଥିଲେ ତିନିଲକ୍ଷ ରଥୀ
ନୀଳବାଣ ଭୁଜବାଣ ଛେଦିଲେ ସବୁନ୍ତି ।
ଗଜଯୋଦ୍ଧା ନବଲକ୍ଷ ପାଞ୍ଚଲକ୍ଷ ହୟ
ଏକାନ୍ତ ସହ ଛେଦିଲେ ତିନିସସ୍ର ରାୟ ।
ଦଇବେ ଘୋର ଅନ୍ଧାର ରାତ୍ର ନିଶାକାଳ
ଉଭୟ ଥାଟରେ ହେଲା ମହାଗୋଳମାଳ ।
ବିଚାରନ୍ତି ନୀଳବାଣ ଭୁଜବାଣ ବେନି
କୃପ ମରିବା ଦେଖିଲେ କୃଷ୍ଣ ଫାଲ୍‌ଗୁନି ।
ଅର୍ଜୁନ ବଚନେ ଆମ୍ଭେ ମାଇଲୁ ଯେ କୃପ
ଏବେ ଯେ ଜୀଅଇଁ ଦେବା ଛାଡ଼ ମନୁ ପାପ ।
ତୋଳିଣ ମୁଣ୍ଡ ଧଇଲେ ବାଣେ ବାମଭୁଜେ
କନ୍ଧେ ବସାନ୍ତେ ଜୀଇଁଲେ ସେ କୃପଆଚାର୍ଯ୍ୟେ ।
ମୂର୍ତ୍ତିମନ୍ତ ହୋଇଛନ୍ତି ସେ ବେନି ନାରାଚ
ତାହାଙ୍କ ଆଜ୍ଞା ଅବଜ୍ଞା ହେବ କି କଦାଚ ।
ନୀଳବାଣ ବୋଲେ ପିଠିଆଡ଼େ କରି ମୁଖ
ଆବର ବେଳ ଜାଣିବ ସମରର ଦୁଃଖ ।
କୃପଙ୍କ ମୁଖକୁ କଲେ ସେ ପିଠି କତିକି
ମୃତ ସଞ୍ଜୀବନୀ କହି ଉଠ ବୋଲି ଡାକି ।
ଚେତନା ପାଇ ଉଠିଲେ ସେ କୃପାଆଚାର୍ଯ୍ୟେ
ବାଣେ ବୋଇଲେ ପଳାଇ ଯାଇ ଦ୍ୱିଜରାଜେ ।
ରଣେ ନ ଦେଖା ପ୍ରପଞ୍ଚ ତୋର ରୂପ ଗୋଟି
ପଳା ତୁ ହୋ କୃପ ପିଠିଆଡ଼େ କରି ଦୃଷ୍ଟି ।
ପାଣ୍ଡବମାନେ ନ ପାନ୍ତି ଯହିଁ ତୋର ଲେଶ
ଅଗମ୍ୟ ବନେ ନିର୍ଭୟ ହୋଇ ଯାଇ ପଶ ।
ଦୈବେ ଚାହିଁ ନ ପାରନ୍ତି ଆଗକୁ ଲେଉଟି
ପଛଆଡ଼କୁ ସେ କରିଅଛନ୍ତି ତ ଦୃଷ୍ଟି ।
ପଳାନ୍ତି ଆଚାର୍ଯ୍ୟ କେଶ ବାସ ଅସମ୍ଭାଳେ
ଅରଣ୍ୟେ ରହିଲେ ଯାଇ ପୁଷ୍ୟାନଦୀ କୂଳେ ।
ପ୍ରାଣର ବିକଳେ କୃପ ବନସ୍ତେ ପଶିଲେ
କୃପଙ୍କ ଏ ଦଶା ଦେଖି ଗୋବିନ୍ଦ ହସିଲେ ।
ନୀଳବାଣ ଭୁଜବାଣ ଗଲେ ଅନ୍ତରୀକ୍ଷେ
ଯେ ଯାହା ଭୁବନେ ଯାଇ ରହିଲେ ପ୍ରତ୍ୟକ୍ଷେ ।
ଜୟ ହରିହର ତୁମ୍ଭେ ଆଦି ବିଶ୍ୱରୂପୀ
ଅନନ୍ତରୂପେ ଅନନ୍ତ ଲୋକ ଅଛ ବ୍ୟାପୀ ।
ଭୀଷ୍ମପର୍ବ ଦ୍ରୋଣପର୍ବ କର୍ଣ୍ଣପର୍ବ ଯୁଦ୍ଧ
ଶଲ୍ୟ କୃପ ଦୁହେଁଯାକ ହୋଇଲେକ ବଧ ।
ଏଣୁ ତୁମ୍ଭର ଅନନ୍ତ ନାମେ ଯେ ବିକାଶ
ଆଦି ନ ଥିବାରୁ ଦୁହେଁ ଅନାଦି ପୁରୁଷ ।
ନୀଳ ଧବଳ ଉତ୍ପଳ ପ୍ରାୟ ତୁମ୍ଭ ବର୍ଣ୍ଣ
ହିଙ୍ଗୁଳ ସ୍ଫଟିକ ପ୍ରାୟ ଓଷ୍ଠହିଁ ସୁବର୍ଣ୍ଣ ।
ଆସନ ଯାର ବହୁଳ ଖଗବର ପିଠି
ପିନାକୀ ଶାରଙ୍ଗ ଧନୁ ଚକ୍ର ଶୂଳ ମୁଷ୍ଟି ।
କୌମୋଦକୀ ଗଦା ପଦ୍ମ ଖଟ୍ୱାଙ୍ଗ ପରଶୁ
ଶିରରେ ଶୋହେ ମୟୂର ଚନ୍ଦ୍ରିକା ଶୀତାଂଶୁ ।

ଶ୍ରୀଭୁଜେ କମ୍ବୁ ଡମ୍ବରୁ ଶବଦ ଯେ ବାଜେ
ଅମୂଲ୍ୟ ରତ୍ନ ଅନନ୍ତ ସର୍ପ ଅଙ୍ଗେ ସାଜେ ।
ଗନ୍ଧ ଚନ୍ଦନ କସ୍ତୁରୀ ବିଭୂତି ଲେପନ
ରମା ଉମା ବାମା ବେନି ବାମାଙ୍ଗ ଭୂଷଣ ।
କଉତୁକରେ ତାଣ୍ଡବ ନୃତ୍ୟ ରସକଳା
ନରକରୁ ଉଦ୍ଧାରଣ କର କଳା ଧଳା ।
ପାପ କରଷଣ ହେତୁ ନାମ ଯାର କୃଷ୍ଣ
କାଳକୂଟ ଭକ୍ଷିଣ ଯା ନାମ ନୀଳକଣ୍ଠ ।
ଶୟଳଜନ ତାରଣ ସୁଧାରସ ଭୋଗୀ
ଧ୍ୟାନ ଧାରଣା ପୁରୁଷ ଯେ ପରମ ଯୋଗୀ ।
ଭକତ ଜନଙ୍କର ଯେ ଶରଣ ବତ୍ସଳ
ବେନି ଆତ୍ମା ଏକ ଅର୍ଦ୍ଧେ କୃଷ୍ଣ ଯେ ଶୁକଳ ।
ଚମ୍ପା ବକୁଳ ଦୟଣା ପୁଷ୍ପ ଗଳାମାଳି
ସର୍ବଜନ ଉଦ୍ଧାରଣ ରାମ ବନମାଳୀ ।
ସ୍ୱାମୀ ଏ ଭବସାଗର ଅନିତ୍ୟ ସଂସାର
ବୁଡ଼ିଲି ଭୋ ଦେବ ମୋତେ ଉଦ୍ଧରିଣ ଧର ।
ଅଗାଧ ସମୁଦ୍ର ସ୍ୱାମୀ ନାହିଁ ଥଳକୂଳ
ଏକା ନଉକା ଆରେକ ହୁଅ କେରୁଆଳ ।
ଭାସନ୍ତେ ସାଗରେ ତୁମ୍ଭ କୃପାରୁ ନଉକା
ଏଥୁ ପାରି କରିବାକୁ ହରିହର ଏକା ।
ସ୍ୱାମୀ କିଞ୍ଚିତ ଆଜ୍ଞାରେ ଅପାର ସୁଲଭ
ଅକାରଣକୁ କାରଣ କର ଦେବ ଦେବ ।
ସଦା ଆସନ ଯାହାର ଧୀରଜନ ହୃଦେ
ଯମଦଣ୍ଡ ବଞ୍ଚାଇବି ତବ ପରସାଦେ ।
ଉମା ଚରଣ କମଳା ତୁଳସୀ ରମଣ
ଶୂଦ୍ରମୁନି ଏ ଦୁହିଁଙ୍କ ଚରଣେ ଶରଣ ।
ସଞ୍ଜୟ କହିଲେ ଧୃତରାଷ୍ଟ୍ରଙ୍କ ଆଗରେ
କୃପା ଆଚାର୍ଯ୍ୟ ପଡ଼ିଲେ ଆଜର ସମରେ ।
ଧୃତରାଷ୍ଟ୍ର ବୋଇଲେ ସେ ଅଟନ୍ତି ଅମର
କିପରି ସେ ରଣେ ତ୍ୟାଗ କଲେ କଳେବର ।
କେବେ ହେଁ ସେ ବିନାଶଟି ନୁହେଁ ତ୍ରିଭୁବନେ
ତାହାଙ୍କୁ କେ ନାଶ କଲା ସମର ପ୍ରାଙ୍ଗଣେ ।
ସଞ୍ଜୟ ବୋଇଲେ ଦେବ ଅର୍ଜୁନର ଦ୍ରୋଣେ
ଥିଲେ ହରିହର ନୀଳ ଭୁଜ ବେନି ବାଣେ ।
ତାଙ୍କୁ ରଣେ ପେଶିଲା ସେ ଦ୍ୱିତୀ ନାରାୟଣ
ସେ ନାରାଚ ସକାଶରୁ ଗଲା କୃପ ପ୍ରାଣ ।
କୃପଙ୍କୁ ମାରି ନୋହିଲା ତାଙ୍କ ମନ ଶାନ୍ତି
ଯୋଦ୍ଧାଙ୍କ ପରେ ପଡ଼ିଲେ ହୋଇ କୋପମୂର୍ତ୍ତି ।
ତିନିଲକ୍ଷ ରଥ ରଥୀ ଦଶଲକ୍ଷ ହସ୍ତୀ
ନବଲକ୍ଷ ଅଶ୍ୱ ତିନି ସହସ୍ର ପଦାତି ।
ଏମାନଙ୍କୁ ଛେଦିଲେ ସେ ବେନିଖଣ୍ଡ କରି
ସମର ଶେଷ କରିଲେ ସମସ୍ତଙ୍କୁ ମାରି ।
ଧୃତରାଷ୍ଟ୍ର ବୋଇଲେକ ଶୁଣ ହୋ ସଞ୍ଜୟେ
କେମନ୍ତେ ଶସ୍ତ୍ର ହେଲେ ସେ ହରିହର ଦୁହେଁ ।
ସଞ୍ଜୟ ବୋଇଲେ ଶୁଣ ହୋଇ ସାବଧାନ
ତୋ ରାଜ୍ୟକାଳେ ଏ କଥା ନୁହେଁ ବହୁ ଦିନ ।
ତୋର ରାଜ୍ୟ ପାଞ୍ଚଶତ ପଞ୍ଚସ୍ତରୀ ଅଙ୍କେ
କନ୍ଦୁ ଗୟନ ବୋଲିଣ ଏକ ଅବଦକେ ।
ସେହି ସମ୍ବତ୍ସରେ ଶୁକ୍ଳପକ୍ଷ ଗୁରୁବାରେ
ରୋହିଣୀ ନକ୍ଷତ୍ର ବୃଷ ଭୋଗ ସେ ଦିନରେ ।
ବାଳବ ନାମେ କରଣ ଅତି ଗଣ୍ଡ ଯୋଗ
ବୃଷ ସଙ୍କରାନ୍ତିରେ ଯେ ନ ଦିନ ଭୋଗ ।
ସେ ଦିନରେ କର୍ଣ୍ଣ ଗଲା ବେଣ୍ଟର ବିନୋଦେ
ହର ଉଦ୍ୟାନେ ଭେଟିଲେ ରୁଦ୍ରହିଁ ଗୋବିନ୍ଦେ ।
ରୁଦ୍ର ବୋଇଲେକ ଶୁଣ ରାଧାସୁତ କର୍ଣ୍ଣ
ଆମ୍ଭେ ହରିହର ଦୁହେଁ ପେଶିଛୁ ଏ ବନ ।
ଆମ୍ଭଙ୍କୁ ବିରୋଧ କଲା ଶ୍ରବଣ ଦଇତ
ତୁ ତାହାକୁ ବଧ କର ଆହୋ ରାଧାସୁତ ।
କପିବୋଲେ ମୁଁ କିରାତ ରୂପ ଅଛି ଧରି
ଧାମଣା ଧନୁ ଫରିକ ନାରାଚ ମୋହରି ।
ଅସୁର ବଜ୍ର ଶରୀର ଶୁଣୁଛି ଶ୍ରବଣେ
ମୁଁ ତାକୁ ବଧ କରିବି କହ କେଉଁ ବାଣେ ।
ହରିହର ଯେ କନିଷ୍ଠ ଅଙ୍ଗୁଳିର ନଖ
କାଟି ତାହାକୁ ନାରାଚ କଲେ ଅତି ତୀକ୍ଷ୍ଣ ।
ହରିହର ବୋଇଲେ ଏ ଆମ୍ଭର ଅଙ୍ଗୁଷ୍ଠି
ଏହା ଘେନିଣ ଅସୁର ଶିର ପକା କାଟି ।
ଏହାର ନାମ ଯେ ନୀଳବାଣ ଭୁଜବାଣ
କର୍ଣ୍ଣକୁ ସନ୍ତୋଷେ ଦେଲେ ରୁଦ୍ର ନାରାୟଣ ।
ସେ ଶର ଘେନିଣ କର୍ଣ୍ଣ ସମର ଯେ କଲା
ଶ୍ରବଣା ଅସୁରକୁ ଯେ ସଂଗ୍ରାମେ ମାଇଲା ।
ତୋଷେ ହରିହର ତାକୁ ଯାଚିଦେଲେ ବର
ନୀଳବାଣ ଭୁଜବାଣ ହୋଇଲା ତୋହର ।
ଏ ଦୁଇ ନାରାଚ ଗୁପ୍ତକରି ଥୋଇଥିବୁ
ତୋର ଯେ ଅସାଧ୍ୟ ତାକୁ ତୁ ଏଥେ ସାଧିବୁ ।
ଯଦ୍ୟପି ସେ ହୋଇଥିବେ ବ୍ରହ୍ମା ଇନ୍ଦ୍ର ସୂର୍ଯ୍ୟ
ଆମ୍ଭେ ହରିହର ନିଶ୍ଚେ କରିବୁ ଦହିର୍ଯ୍ୟ ।
ସେ ଶର ଘେନି ଅଇଲା ଗୃହେ ରାଧାସୁନୁ
ନାରାଚ ରଖିଲା ନେଇ ଚିରି ବେନି ଜାନୁ ।
ସଞ୍ଜୟ କହିଲେ ଶୁଣ ହେ କୁରୁ ନୃପତି
ନୀଳବାଣ ଭୁଜବାଣ ଏ ରୂପେ ଅଟନ୍ତି ।

ଯୁଦ୍ଧ ଉଦଯୋଗ କାଳେ ବସି ଦେବୀ କୁନ୍ତୀ
ସହଦେବଠାରୁ ଜାଣି ଏ କଥା ସବୁନ୍ତି ।
କର୍ଣ୍ଣକୁ ଗୁରୁଦକ୍ଷିଣା ମାଗିଲେ ଏ ଶର
ଜାନୁ ଚରିଦେଲା ଦୁଇବାଣ କର୍ଣ୍ଣ ବୀର ।
ନେଇ ତାହା କୁନ୍ତୀ ଦେଲେ ଅର୍ଜ୍ଜୁନର ହସ୍ତେ
ଯତ୍ନେ ଥୋଇଲା ଅର୍ଜ୍ଜୁନ ନନ୍ଦିଘୋଷ ରଥେ ।
ଅନବରତେ ଥାଇ ସେ ରଥର ଭିତର
ତାର ତେଜେ ରାତ୍ର ହୁଏ ଦିବସ ଆକାର ।
ଅନ୍ୟ ଅସ୍ତ୍ରେ କ୍ଷୟ ଯହୁଁ ନୋହିଲା ଆଚାର୍ଯ୍ୟ
କୋପେ ଅର୍ଜ୍ଜୁନ ପେଶିଲେ ଏ ବେନି ନାରାଚ ।
ଅପାଳଟକ ଅଟନ୍ତି ସେହୁ ବେନି ବାଣ
ଅର୍ଜ୍ଜୁନ ଆଜ୍ଞାରେ ନେଲେ କୃପଙ୍କର ପ୍ରାଣ ।
ବ୍ରହ୍ମହତ୍ୟା ଦୋଷ ବୁଝି ଦୁହେଁ କଲେ ବୁଦ୍ଧି
ଜୀଆଁଇଲେ ପଢ଼ି ସଞ୍ଜିବନୀ ମଉଷଧି ।
ସଞ୍ଜୟ ବୋଇଲେ ଶୁଣ ରାଜା କୁରୁପତି
ସମର ଶେଷ ହୋଇବ ଜାଣ ଆଜି ରାତି ।
ତୁଳସୀର ବଲ୍ଲଭ ଶ୍ରୀହରି ପାଦେ ଆଶ
ନିରନ୍ତରେ ଶୂଦ୍ରମୁନି ଯେ ଶାରଳା ଦାସ ।

—o—

## ଗୋଳଯୁଦ୍ଧ

ବଦନ୍ତି ଅଗସ୍ତି ଶୁଣି ବିଲଙ୍କ ରାଜନ
ଶେଷ ସଂଗ୍ରାମର କଥା ହୋଇ ସାବଧାନ ।
କୃପ ପଡ଼ିଲା ଉତ୍ତାରେ ରଣ ମହାଗୋଳ
ପର ଆପଣା ବାରଣ ନୁହେଁ ବେନିବଳ ।
ଯୁଧିଷ୍ଠି ଦୁର୍ଦ୍ଧକ୍ଷ ଧୃଷ୍ଟଦ୍ୟୁମ୍ନ ଭୀମସେନ
ସହଦେବ ନକୁଳ ହେ ସାତ୍ୟକି ଅର୍ଜ୍ଜୁନ ।
ଏତେ ଯୋଦ୍ଧା ଅଛନ୍ତି ସେ ପାଣ୍ଡବଙ୍କ କତି
ପାଞ୍ଚ ଅୟୁତ ଯେ ରଥୀ ବେନିଲକ୍ଷ ହସ୍ତୀ ।
ଲକ୍ଷେକ ତୁରଗ ତିନି କ୍ଷଉଣୀ ପଦାତି
ସଙ୍ଗେ ସଖା ନାହିଁ ରାଜା ଏକା କୁରୁପତି ।
ଲକ୍ଷ୍ମଣ କୁମର ତୁଲେ ରାଜା ଧାର୍ତ୍ତରାଷ୍ଟ୍ରି
ସୁହସ୍ତୀ ହସ୍ତୀ ଆରୋହିରଣେ ଦେଲା ଦୃଷ୍ଟି ।
ଏକାନ୍ତେ ରାଇ ଲକ୍ଷ୍ମଣ କୁମରକୁ ରାଜା
ବୋଇଲା ତୁ ମନୋହର ବନକୁ ପଳା ଯା ।
ପିତା ଚରଣେ ଲକ୍ଷ୍ମଣ କୁମର ପ୍ରଣମି
ସବୁ ମରାଇ ନିସତ ହେଉ ଏବେ ସ୍ୱାମୀ ।
ମଧ୍ୟସ୍ଥପଣେ ଅଇଲେ ଦେବ ନରହରି
ଜଣ ଜଣକେ କହିଲେ କେତେ ପୁରଃ ସରି ।
ବହୁତ ଜଣ କହିଲେ ମେଣ୍ଟି ଏକା ଜଣ
କେତେକାଳ ପରିଯନ୍ତେ ଜୀଇଁବ ଆପଣ ।

ଆପେ ଯାହା ଅଜି ତାକୁ କର୍ମ ସିନା ବୋଲି
ଆଜ ନିସତ ହୋଇଲେ ମରିବ ନା କାଲି ।
ମାନଗୋବିନ୍ଦ ବୋଇଲା ବାବୁ ତା ନ ଭାଷ
ଏକା ତୁହି ଥିଲେ ଅଛି ମୋହର ଯେ ବଂଶ ।
ବହୁତ ବୁଝାଇ ମାନଗୋବିନ୍ଦ ବୋଇଲା
ତହୁଁ ଯିବାପାଇଁ ପୁତ୍ର ସନମତ କଲା ।
ପୁଣି ରାଜା ବୋଲେ ମୁଁ ଗାନ୍ଧାରସେନ ବଂଶ
ବିନାଶି ଥିବାରୁ ମନେ ରଖି ସେହି ରୋଷ ।
ଏକା ଜଣେ ଶକୁନି ସେ ବଂଶରୁ ଉବୁରି
ମାଇଲା ମୋ ବଂଶ ଦେଖ କେତେ କୂଟ କରି ।
ବର୍ତ୍ତିଥିଲେ ତୁହି ଏକା କରି ପିତୃକାର୍ଯ୍ୟ
ଲୋକେ ଯଶ ରଖିବାକୁ ଲଭିବୁ ଐଶ୍ୱର୍ଯ୍ୟ ।
ପିତାର ବଚନ ମାନି ସେହି ବାଳଶିଷି
ବାହନ ତେଜି ପଳାଏ ଗୋଳଯୁଦ୍ଧେ ପଶି ।
ସମ୍ପୂର୍ଣ୍ଣ ତିନିପ୍ରହର ହୋଇଅଛି ରାତି
ପଳାଇ ଯାଏ ଲକ୍ଷ୍ମଣ ଉତ୍ତର ମୂରତି ।
ନିସତ ହୋଇଯାନ୍ତେ ସେ ସମର ଉପେକ୍ଷି
କେଣେ କେହୁ ଯେ ପଳାନ୍ତି ତଦନ୍ତ ନ ଦେଖି ।
ଧୃଷ୍ଟଦ୍ୟୁମନ ସାତ୍ୟକି ଏହି ବେନି ରଥୀ
କଉରବ ସଇନିକି ଆସୁଛନ୍ତି ମଛି ।
ଅପର୍ଯ୍ୟାପ୍ତ ଯୋଦ୍ଧା ରଣେ ପଡ଼ନ୍ତି ଯେ ମରି
ସେନାପତି ବିହୁନେ କେ ଯୁଦ୍ଧ ନ ଆବୋରି ।
ପଳାନ୍ତି କୁରୁ ସଇନି ନ ହୁଅନ୍ତି ଆଗ
ପାଣ୍ଡବ ସଇନି ତହୁଁ ହେଲେ ଉତ୍ତବ୍ୟାଘ୍ର ।
ଉତ୍ତର ଆଡ଼େ ସାତ୍ୟକି ପୁଣି ଧୃଷ୍ଟଦ୍ୟୁମ୍ନ
ପଶ୍ଚିମରେ ଦୁର୍ଦ୍ଧକ୍ଷ ଯେ ବୀର ଭୀମସେନ ।
ନନ୍ଦିଘୋଷ ରଥ ଆସେ ପୂର୍ବଭାଗେ ଘୋଟି
ବେଢ଼ିଲେ କୁରୁବଳକୁକରି ଶର ବୃଷ୍ଟି ।
ଲକ୍ଷ୍ମଣ କୁମର ତହୁଁ ଯାଇ ନ ପାରିଲା
ଦୃଷ୍ଟଦ୍ୟୁମ୍ନଙ୍କ ହାବୁଡ଼େ ଯାଇଁ ସେ ପଡ଼ିଲା ।
ତିନିପ୍ରହର ହୋଇଛି ଅନ୍ଧାର ରଜନୀ
ଭୟେ ଉପେକ୍ଷିଲେ ଯାନ ବାହନ ସଇନି ।
ଦୃଷ୍ଟଦ୍ୟୁମ୍ନ ବେଢ଼ି ମାରି ଆସନ୍ତେଣ ବଳ
ଏକ ରଥିକେ ପଦାତି ସର୍ବ ହେଲେ ଗୋଳ ।
ଲକ୍ଷ୍ମଣ କୁମର ସେହି ସୈନ୍ୟ ମଧ୍ୟେ ଥିଲା
ପିଟନ୍ତେ ଗଦା ତାହାରି ଶିରରେ ପଡ଼ିଲା ।
ଘାଏ ଘୁମାଏ ପଡ଼ିଲା ଭାନୁମତୀ ବଳା
ତାର ତୁଲେ ହସ୍ତୀ ତିନିସସ୍ର ଅନର୍ଗଳା ।
ଭୀମସେନର ପ୍ରତିଜ୍ଞା କହି ତ କେ ପାରି
ବେନି ହସ୍ତରେ ଦରାଣ୍ଡି ଧରି ସେ କଚାଡ଼ି ।

ମହାମତ୍ତ ହସ୍ତୀ ଧରି ବୁଲାଇଣ କରେ
ଆକ୍ରୋଶି ପ୍ରହାରି ରଥ ଯୋଦ୍ଧାଙ୍କ ଉପରେ ।
ଯେସନେକ ତରୁବର ବାତାଘାତେ ଲୋଟି
ରକତମାଂସେ କର୍ଦ୍ଦମ ହେଲା ପୃଥ୍ୱୀ ପିଠି ।
ନକୁଳ ସହଦେବ ଯେ ଅଛନ୍ତି ଦକ୍ଷିଣେ
କରେ କୁନ୍ତ ଖଡ୍‌ଗ ଧରି ମାରନ୍ତି ସେ ରଣେ ।
ନକୁଳ ପ୍ରହାର କରି ମହାକୋପେ କୁନ୍ତେ
ଚକ୍ର ପରାୟେ ଧରଇ ମାତଙ୍ଗ ମାହୁନ୍ତେ ।
ଅସିପତ୍ର ଘେନିଣ ସେ ମନ୍ତ୍ରୀ ଚୂଡ଼ାମଣି
ଅବିଚାର କରି ବହୁ ଲୋକଙ୍କୁ ସେ ହାଣି ।
ଅର୍ଜ୍ଜୁନ ବିନ୍ଧିଲା କୋପେ ତିନିଲକ୍ଷ ବାଣ
ଶତ ଶତ ଛେଦି ହୁଏ ଏକ ପ୍ରହାରେଣ ।
ଗଜେକ ଆରୋହୀ ଧର୍ମରାଜ ଯେ ଯୁଧିଷ୍ଠି
ଖଡ଼ଗେ ସଂହାର କଲେ ଯୋଦ୍ଧା ବେନିକୋଟି ।
ହେଉଅଛି ଅସି ଗଦା କୁନ୍ତେ ଗୋଳ ରଣ
ପର ଆପଣା ବୋଲି ଯେ ନ ଯାଇ ବାରଣ ।
ମତ୍ତହସ୍ତୀ ଚଢ଼ିଣ ସେ ମାନଚକ୍ରବର୍ତ୍ତୀ
କୁନ୍ତେ ପ୍ରହାରି ମାରିଲା ଅୟୁତେକ ହସ୍ତୀ ।
ଦୂରେ ଦେଖିଲା ପାଣ୍ଡବକୁଳ ବୀର ଭୀମ
ରେ ମାନଗୋବିନ୍ଦ ତୋର ଦେଖିବା ପ୍ରାକର୍ମ ।
ଗଦାବର ବୁଲାଇଣ ବୃକୋଦର ଉଠି
ରାଜାର ହସ୍ତୀ ଉପରେ ନେଇ କୋପେ ପିଟି ।
ଗଜ ମତ୍ତନାଗ ତଳେ ପଡ଼ିଲାକ ଢଳି
ତାର ତଳେ ଦୁର୍ଯ୍ୟୋଧନ ପଶିଲାକ ଭଳି ।
ଘଣ୍ଟାବନ୍ଧା ହୋଇଥିଲା ହସ୍ତୀର କନ୍ଧରେ
ଦୁର୍ଯ୍ୟୋଧନ ପଶିଲା ଯେ ତହିଁର ଭିତରେ ।
ସେ ଘଣ୍ଟ ଉପରେ ହସ୍ତୀ ପଡ଼ିଲା ଘୁମାଇ
ଅସଂଖ୍ୟ ପଦାତି ମଲେ ହସ୍ତୀ ଚାପ ପାଇ ।
ତହିଁ ଉପରେ ବହିଲା ରକତର ନଦୀ
ଯେସନେ କଦଳୀବନ ଜଣେ ଜଣେ ଛେଦି ।
ଉତ୍ତରେ ତେହ୍ନେ ସାତ୍ୟକି ଧୃଷ୍ଟଦ୍ୟୁମ୍ନ ବେନି
ପଶ୍ଚିମ ଆଡ଼େ ଦୁର୍ଦ୍ଧକ୍ଷ ଭୀମ ଦୁହେଁ ହାଣି ।
ପୂର୍ବଆଡ଼ରୁ ସମରେ ଘେନି କୃଷ୍ଣ ପାର୍ଥ
ଦକ୍ଷିଣେ ସହଦେବ ଯେ ନକୁଳ ଦ୍ୱି ଭ୍ରାତ ।
ଯେସନେ ମଣ୍ଡଳାକାର ବେଢ଼ଇ କୁଣ୍ଡଳୀ
ତେସନେ ବେଢ଼ି ମାଇଲେ ଯେହୁ ଆଗେ ମିଳି ।
ରାତ୍ରି ଶେଷ ହୋଇଲାଣି ଆଜ୍ଞା ଯେ ପ୍ରହରେ
ସମସ୍ତେ ଶେଷ ହୋଇଲେ ଏ ଶେଷ ସମରେ ।
ପର ଆପଣା ବାରଣ ନାହିଁ ଗୋଳଯୁଦ୍ଧ
ସମରେ ନାଚନ୍ତି ଲକ୍ଷ ଲକ୍ଷ ଯେ କବନ୍ଧ ।
ରକ୍ତନଦୀ ପ୍ରତି ପଞ୍ଚବିଂଶ ଯୁଣ ଦୀର୍ଘ
ସାତତାଳ ଗଭୀର ଯେ ନ' ତାଳ ଉତ୍ସର୍ଗ ।
ରଥମାନେ ଭାସିଯାନ୍ତି କି ଜାଣି ବୋଇତ
ଅଶ୍ୱ ଗଜମାନେ ତହିଁ ନାବ ଭେଳାବତ ।
ଏ ବିଧି ପାଣ୍ଡବ କଲେ ସମସ୍ତଙ୍କୁ ନାଶ
କୁରୁ ସଇନିର ଆଉ କିଛି ନାହିଁ ଲେଶ ।
ଦୁର୍ଯ୍ୟୋଧନର ଏଗାର କ୍ଷୌଣୀ ଥିଲେ ଥାଟ
ଅଶୀଲକ୍ଷ ଯୋଦ୍ଧା ଏକ ଅର୍ବୁଦ ସମ୍ରାଟ ।
ବିଶାଶତେ ପଦ୍ମଗଜ ହୟ ତହିଁ ମଲେ
ସହସ୍ରେ ସାଗର ଛତ୍ର ଧ୍ୱଜ ଯେ ଭାସିଲେ ।
ସତାଣୋଇ ସସ୍ର ପୁଣି ବଳ ଯେ ପଦାତି
ଅଠର ଦିନେ ପାଣ୍ଡବେ ଏତେକ ନିପାତି ।
ପାଣ୍ଡବଙ୍କ କଟି ସାତ ଅକ୍ଷୌହିଣୀ ବଳ
ଦୁଇକ୍ଷଉଣୀ ରହିଲେ ପଡ଼ିଲେ ସକଳ ।
ଅଶୀଲକ୍ଷ ଯୋଦ୍ଧାଥିଲେ ପାଣ୍ଡବଙ୍କ କଟି
ସତୁରି ଲକ୍ଷ ପଡ଼ିଲେ ଦଶଲକ୍ଷ ବର୍ତ୍ତି ।
ପାଞ୍ଚକୋଟି ଅଶ୍ୱାରୋହୀ ଆଉ ଯୋଦ୍ଧାଗଣ
ତିନି ସହସ୍ର ରହିଲେ ମଲେ ସବୁ ସୈନ୍ୟ ।
ଗଜାରୋହୀ ଯୋଦ୍ଧା ପଞ୍ଚଅର୍ବୁଦ ଯେ ଥିଲେ
ସମସ୍ତେ ପଡ଼ିଲେ ପାଞ୍ଚଲକ୍ଷ ଯେ ରହିଲେ ।
ଏକ ଊଣା ଚାରିସସ୍ର ରାଜାଥିଲେ କଟି
ସମସ୍ତେ ପଡ଼ିଲେ ଏକା ଧୃଷ୍ଟଦ୍ୟୁମ୍ନ ବର୍ତ୍ତି ।
ଶରଣ ପଶିଲା ବଳ ଘେନି ଯେ ଦୁର୍ଦ୍ଧକ୍ଷ
ସମସ୍ତେ ପଡ଼ିଲେ ରକ୍ଷା ପାଇଲା ସେ ଏକ ।
ଯହୁଁ ନିଶବଦ ହୋଇଗଲା ରଣଭୂଇଁ
ଲୋଡ଼ିଲେକ ଚଉକଟି ଜଣେ ଜୀଇଁନାହିଁ ।
ଚଳନ୍ତି ପାଣ୍ଡବେ କରି ଜୟ ଶଙ୍ଖ ଧ୍ୱନି
ମହାଗୋଳ ଶବଦ ଯେ ହେଲା ପୁର ତିନି ।
ତ୍ରୟୋଦଶ ଘଡ଼ି ଏବେ ହୋଇଲାଣି ନିଶି
ଜୟ ଜୟ ଶବ୍ଦ କରି ପଣ୍ଡୁବଳ ଆସି ।
ରଣ ଜୟ କରି ଇନ୍ଦ୍ରପ୍ରସ୍ଥରେ ପଶନ୍ତି
ଏଥି ଉତ୍ତାରେ ଯେ କଥା ଶୁଣ ହେ ନୃପତି ।
ଏ ମହାଭାରତ ଶଲ୍ୟପର୍ବର ଯେ ବାଣୀ
କୃତାର୍ଥ ହୋଇବେ ଜନେ ଏହା ପଢ଼ି ଶୁଣି ।
ଶ୍ରୀହରିର ଖେଳ ଏହୁ ଅମୀୟ ବଚନ
ମୁକତି ଲଭିବେ ପଢ଼ି ଶୁଣି ପାପୀଜନ ।
ଝଙ୍କଡ଼ବାସିନୀ ଦେବୀ ଶାରଳାର ପାଦେ
ଶାରଳା ଦାସର ଚିତ୍ତ ରହୁ ଅପ୍ରମାଦେ ।

—0—

## ଯୋଗିନୀଗଣଙ୍କର ପ୍ରବେଶ ଓ ଦୁର୍ଯ୍ୟୋଧନର ରକ୍ତନଦୀ ପାର

ଏଥୁ ଉତ୍ତାରେ ବିଲଙ୍କ ଦେଶର ନୃପତି
ଅଗସ୍ତି ମୁନି ଚରଣେ କରିଣ ପ୍ରଣତି ।
ବୋଲେ ତହୁଁ କି କି କଥା ହେଲା କହ ମୁନି
ତ୍ରୟୋଦଶୀ ଘଡ଼ି ହୋଇ ଅଛଇ ରଜନୀ ।
ଅଗସ୍ତି କହନ୍ତି ରାଜା ଶୁଣ ସାବଧାନେ
ରଣ ଜୟ କରି ଗଲେ ପାଣ୍ଡବେ ସଦନେ ।
ଏସନ ସମୟେ ବିଜେ ସକଳ ଯୋଗିନୀ
ତେତିଶକୋଟି ଯେ ନବକୋଟି କାତ୍ୟାୟିନୀ ।
ଭଇରବୀ ଏକାଦଶ କୋଟି ଯେ ରୁଦ୍ରାଣୀ
ଅର୍ବୁଦେକ କୌମାରୀ ଯେ ଲକ୍ଷେକ ବ୍ରାହ୍ମଣୀ ।
ପାଞ୍ଚଲକ୍ଷ ଦେବୀ ତିନିଲକ୍ଷ ଯେ ଇନ୍ଦ୍ରାଣୀ
ଚଉଦଲକ୍ଷ ଅଇଲେ ଦେବ ନାରାୟଣୀ ।
ବେନିଲକ୍ଷ ଡାକିନୀ ଯେ କୋଟି ନାରସିଂହୀ
ବୃନ୍ଦେକ ପିଶାଚୀ ପୁଣି ଖର୍ବେକ ବାରାହୀ ।
ବେନିଲକ୍ଷ ଦେବୀମୂର୍ତ୍ତି ଅଇଲେ ଚାମଣ୍ଡା
ମୃତପିଣ୍ଡ ଆବୋରିଲେ କରେ ଧରି ଖଣ୍ଡା ।
ନବକୋଟି ଚଣ୍ଡୀ ନବକୋଟୀ ଯେ କଙ୍କାଳୀ
ପଦ୍ମେକ ଅଇଲେ ଘୋରରାବୀ ଯେ ବେତାଳୀ ।
ଅନନ୍ତା ବିଜୟା ଜୟା ତାରିଣୀ ତ୍ରିପୁରା
ଯକ୍ଷିଣୀ ଭକ୍ଷିଣୀ ମୂର୍ତ୍ତି ଘୋରା ଉଗ୍ରତାରା ।
ଚର୍ଚ୍ଚିକା କରାଳୀ ମୂର୍ତ୍ତି ଶାକିନୀ ଶଙ୍ଖିନୀ
ଏମନ୍ତେ ମାଡ଼ି ଅଇଲେ ଅନ୍ଧାର ରଜନୀ ।
ମର୍ଦ୍ଦଳ ଘୁମୁରା ବିଜିଘୋଷ ଯେ ଦାଉଣ୍ଡୀ
ଆଡ଼ଭଙ୍ଗିରେ ଖେମଟା ନାଚି ନାଟଖଣ୍ଡି ।
ସଂଗ୍ରାମ ଭୂମି ମଧ୍ୟରେ ସର୍ବଦେବୀ ମିଳି
ଛିଣ୍ଡାନ୍ତି ମେଦମେଦା ଯେ ଦେଇ ହୁଳହୁଳି ।
ସମସ୍ତେ ଦେବୀ ବାରୁଣାବନ୍ତେ ହେଲେ ରୁଣ୍ଡ
ଦଶନ ଚାପନ୍ତେ ଶବ୍ଦେ କମ୍ପଇ ବ୍ରହ୍ମାଣ୍ଡ ।
ଯହୁଁ ନିଶବଦ ହେଲା କୁରୁକ୍ଷେତ୍ର ଭୂମି
ରକ୍ତନଦୀରୁ ବାହାରି ଆସେ କୁରୁସ୍ୱାମୀ ।
ଉଭା ହେଲା ସେ ରକତ ନଦୀ ପୂର୍ବଆଡ଼େ
ରଣଭୂମିକୁ ଅନାଇ ସାହା ତାର ଉଡ଼େ ।
ଦେବୀଙ୍କର କୋଳାହଳ ଶବଦକୁ ଶୁଣି
ଭୟେ କାତରେ ଚାହିଁଇ କୁରୁକୁଳମଣି ।
କେହି ଦେବୀ କରତାଳି ଦେଇଣ ନାଚଇ
କେଉଁ ଦେବୀ ଟହ ଟହ ହୋଇଣ ହସଇ ।
କେଉଁ ଦେବୀ ଜିଭ ଲହ ଲହ କରି ଧାଏଁ
କେଉଁ ଦେବୀ ଡିବି ଡିବି ଡମ୍ବରୁ ବଜାଏ ।
କେହି ଭୁଉଁଭୁଉଁ କରି ଶଙ୍ଖବାଦ୍ୟ କରେ
ଅଟ୍ଟହାସ୍ୟରେ କେ ମଡ଼ା କରେ ଧରେ
ଦମଦମ କରି କେହି ଦାଉଣ୍ଡି ବଜାଇ
କଳକଳ ନାଦରେ କେ ମଡ଼ା ସାଉଁଟଇ ।
ଘର ଘର ଧ୍ୱନି କରି ଧାମଇଁ କେ ରଙ୍ଗେ
ରୁଧିର ଲେପଇ ନେଇ ଆନନ୍ଦେ କେ ଅଙ୍ଗେ ।
ରହ ରହ ଆସ ଆସ ଚାଲ ଚାଲ ବାଣୀ
ଶୁଭୁଅଛି ନିରନ୍ତରେ ସିନ୍ଧୁଘୋଷ ଜିଣି ।
ହାଡ଼ମାଳ ଗଳାରେ କେ ଲମ୍ବାଇ ହରଷେ
ମୁଣ୍ଡମାନ ମାଳା କରି ଗୁନ୍ଥଇ କେ ତୋଷେ ।
କଟକଟ କରି ଦନ୍ତେ ରେକଟେ କେ ହାଡ଼
ରଟ ରଟ ଶବଦରେ ପୂର୍ଣ୍ଣ ଚାରିଆଡ଼ ।
କାହାର କେଶ ମୁକୁଳା ଲୁଖୁରା କାହାର
ପିଙ୍ଗଳ ବରନ ଦିଶେ ଉଡ଼େ ଫରଫର ।
କେହି ଚାରିଭୁଜା କେହି ଆଠଭୁଜା ଦୁଇ
କେଉଁ ଦେବୀର ନୟନ ମୁଣ୍ଡେ ବିରାଜଇ ।
ଦେଖିବାକୁ ଭୟଙ୍କର ଦିଶଇ କା ଦେହ
ଦେବୀଙ୍କର କୁତୂହଳ ଦେଖି କୁରୁରାୟ ।
ମହାଭୟେ ପଳାଇବା ପାଇଁ କରେ ମନ
ରକତ ନଦୀକୁ ଚାହିଁ ହଜିଲା ତା ଜ୍ଞାନ ।
କପାଳରେ ମାରି ହସ୍ତ ଚଉକତି ଚାହିଁ
ବୋଲେ ଏହା ଲିହିଥିଲୁ ମୋ କପାଳେ ବିହି ।
ଏଡ଼େକ ସମ୍ପଦ ଗଲା କର୍ମର ଅବଳେ
ଖୋଜିଲେ ପାଇବି ଆଉ କାହିଁ ଏତେବେଳେ ।
ସନ୍ତାପ କରଇ ତୀରେ ଥାଇ କୁରୁରାୟ
ଦେଖିଲା ଭାସି ଆସଇ ଦୁଃଶାସନ କାୟ ।
କୋଳ କରି ଧଇଲା ତା ମାନଚକ୍ରବର୍ତ୍ତୀ
ବାବୁ ଦୁଃଶା ପୃଥ୍ୱୀରେ ତୁ ଥିଲୁ ଏକ କ୍ଷତ୍ରୀ ।
ବୁଦ୍ଧିବନ୍ତ ଶୂରବନ୍ତ ବିବେକୀ ଧାର୍ମିକ
କ୍ଷତ୍ରିୟ ମଣ୍ଡଳେ ତୋର ମହିମା ଯେତେକ ।
ଦ୍ରୌପଦୀର କେଶ ଧରି ଆଣିଲୁ ତୁ ବଳେ
ବିବସନା କଲୁ କୁରୁ ମହାସଭାତଳେ ।
ମଣି ହରିଲୁ ନିଷଦ ପୁରକୁ ତୁ ଭାଜି
କେଶୀ ଦାନବର ସୈନ୍ୟ ବଳଦର୍ପ ଗଞ୍ଜି ।
ବାବୁ ଶତ୍ରୁ ମର୍ଦ୍ଦିବାକୁ ଜାଣୁ କେତେ ବୁଦ୍ଧି
ପରରାଷ୍ଟ୍ର ମଣ୍ଡଳରେ ମହିମା ତୋ ସିଦ୍ଧି ।
ବାବୁ ତୁ କ୍ଷଣେ ନ ସହୁ ମୋର ଅଭିମାନ
ରଣ ମନ୍ଥନ କରି ତୋ ନାମ ଦୁଃଶାସନ ।
ତିନି ଭୁବନରେ ତୋର ବିକାଶଇ ତେଜ
କାମିନୀ ମନମୋହନ ତୁହି ମନସିଜ ।

ବାବୁ ଏତେ ପ୍ରଜ୍ଞା ପୁଣ ଥୋଇଲୁ ତୁ କାହିଁ
ରକ୍ତରେ ଭାସି ଯାଉଛୁ କାଠପରା ହୋଇ ।
ଆରେ ବାବୁ ଜୀବନରେ ମୋର କିସ କାର୍ଯ୍ୟ
ତୁମ୍ଭଙ୍କୁ ମରାଇ ବସିଅଛି ମୁଁ ନିର୍ଲ୍ଲଜ ।
ଆକାଶ ଘୋଟୁଛି ଏକି ସମୁଦ୍ର ଲହରୀ
ଏ ରୁଧିର ନଦୀ ହେବି କେମନ୍ତେ ମୁଁ ପାରି ।
ଏମନ୍ତେ ଶୋକ କରିଣ ତାକୁ ଭେଳା କଲା
ଦୁଃଶାସନର ଉପରେ ଶୋଇଣ ପଡ଼ିଲା ।
ସେଠାବରେ ବୁଡ଼ିଲା ସେ ଶବକୁ ଘେନିଣ
ତିନିତାଳ ଗଭୀରକୁ ଗଲା ତତକ୍ଷଣ ।
ଛାଡ଼ି ତାକୁ ଉଠି ପୁଣି ଆକୁଳରେ ଚାହିଁ
ଭାସି ଆସୁଛନ୍ତି ଦେଖ ସତାଣୋଇ ଭାଇ ।
ସମସ୍ତଙ୍କୁ ବେଳେ ବେଳେ ଧରି କୋଳ କରି
ରକତ ନଦୀରେ ମେଲିଦିଏ ଗୁଣ ସ୍ମରି ।
ବାବୁ ତୁମ୍ଭେ ବୀରବର ପ୍ରଜ୍ଞାବନ୍ତ ସଦା
ଯମଦର୍ପ ଭାଜେ ତୁମ୍ଭେ ଧରନ୍ତେଣ ଗଦା ।
ବାବୁ ତୁମ୍ଭେ ଗୁଣବନ୍ତ ମୁହିଁ ଅପରାଧୀ
ରକ୍ତନଦୀ ତରିବାକୁ କୁହ ମୋତେ ବୁଦ୍ଧି ।
ତୁମ୍ଭ ଗୁଣ ସ୍ମରିବାକୁ ମୋତେ ନାହିଁ ବେଳ
ଦେଖେ ଭାସି ଆସୁଅଛି କର୍ଣ୍ଣ ମହାବଳ ।
ରକତ ନଦୀରେ ତାର ତେଜ ପରକାଶେ
ବାଳଅର୍କ ପ୍ରାୟ ତାର ଦେହ ଗୋଟି ଦିଶେ ।
କୋଳ କରି ଧଇଲାକ ରାଜା କୁରୁନାଥ
ହା ହା ମଇତ୍ର ମୋହର ପ୍ରାଣ ପଞ୍ଚଭୂତ ।
କୁନ୍ତୀ ଜ୍ୟେଷ୍ଠପୁତ୍ର ତୁମ୍ଭେ ଅଟ ଯେ ଯୁକତେ
ସୋଦର ହୁଡ଼ି ମଇତ୍ର ଆଶ୍ରା କଲୁ ମୋତେ ।
କୁନ୍ତୀଦେବୀ ବଚନ ତୁ ନ କଲୁ ଯେ ପୁଣି
ଗୁପତେ ସଞ୍ଚିଲେ ତୋର ଦେହେ ଦିନମଣି ।
ଅଭେଦ୍ୟ କବଚ ପୁଣି ଅମୃତ କୁଣ୍ଡଳ
ବଜ୍ରଛଉରୀ ଆବର ନିଜ ତେଜ ବଳ ।
ଯାହାର ପାଦଭରା ନ ସହଇ ମେଦିନୀ
ନିତି ପୂଜା କରେ ସ୍ୱର୍ଣ୍ଣ ଶତେ ଭାର ଘେନି ।
ଗାଢ଼େ ପାଦ ପଡ଼ନ୍ତେ ତା ମୁଖୁ ରକ୍ତ ବହେ
ତେଣୁ ପୃଥ୍ୱୀଶତେ ଭାର ରତ୍ନ ଦିଏ ଭୟେ ।
ସେ ଶତେ ଭାର ରତ୍ନ ତୁ ଦାନ ଦେଉ ନିତି
ଦୁଃଖୀଜନଙ୍କୁ ଦେଖିଲେ ବ୍ୟାକୁଳ ତୋ ମତି ।
ଦ୍ୱିଜରୂପେ ମାଗିଲେ ଯେ ତୋତେ ଆଖଣ୍ଡଳ
ଦେଲେ ଅଭେଦ୍ୟ କବଚ ଅମୃତ କୁଣ୍ଡଳ ।
ଗୋବିନ୍ଦ ପ୍ରାର୍ଥନା କଲେ ଦ୍ୱିଜରୂପ ଧରି
ଭୋଜନ ଦେଲୁ ଆପଣା ପୁତ୍ରକୁ ତୁ ସାରି ।
ଅତି ଦାନୀ ହୋଇ ବୁଡ଼ାଇଲୁ ତୁ ସମୃଦ୍ଧି
ମୁହିଁ ବର୍ତ୍ତିବାକୁ କେତେ କାଢୁଥାଉ ବୁଦ୍ଧି ।
ଅନେକ କାଳ ମଇତ୍ର ସମ୍ଭାଳିଲି ତୋତେ
ଏବେ ଅନାଥ କରିଣ ମିତ୍ର ଗଲୁ ମୋତେ ।
ମରଣବେଳେ କି ବୁଦ୍ଧି ବଣା ହେଲା ମିତ
ଏବେ ରକ୍ତନଦୀ ପାରି ହୋଇବି କେମନ୍ତ ।
ଦାନେ ଶୂରମାନେ ଶୂର ବଳେ ବଳବନ୍ତା
ନବଦ୍ୱୀପ ପୃଥିବୀରେ ପଡ଼ଇ ତୋ କଥା ।
ତୋର ଗୁଣ କହିବାକୁ ନାହିଁ ମୋତେ ବେଳ
ଜାଣିଲେ ମୁଁ ନ ବର୍ତ୍ତଇ ପଣ୍ଡୁର ଦୁଲାଳ ।
କୋଳ କରି କର୍ଣ୍ଣପରେ ପଡ଼େ ମୁହଁ ମାଡ଼ି
ରକତ ନଦୀରେ କର୍ଣ୍ଣ ଶବ ଗଲା ବୁଡ଼ି ।
ଛାଡ଼ିଣ ମାନଗୋବିନ୍ଦ ଗଲେ ଯହୁଁ ବେଗେ
ଦ୍ରୋଣଙ୍କ ପିଣ୍ଡ ଉପୁଚି ଭାସିଆସେ ଆଗେ ।
ଦେଖି ହାହାକାର ବୋଲି କାନ୍ଦେ କୁରୁପତି
ତୋହର ବିଦ୍ୟାରେ ଗୁରୁ ଆମ୍ଭେ ଏଡ଼େ କ୍ଷତ୍ରୀ ।
ପରଶୁରାମଙ୍କ ଦୋଷ କଲୁ ପ୍ରତିଗ୍ରହ
ଇନ୍ଦ୍ରଦେବତା ସମରେ କରେ ତୋତେ ଭୟ ।
କରୁଥିଲୁ ବହୁ ସ୍ନେହ ସେ ଅରଜୁନକୁ
କାଳେ ସେହି ପରାଭବ ଦେଲାଟି ତୁମ୍ଭଙ୍କୁ ।
ଭରଦ୍ୱାଜଙ୍କ ନନ୍ଦନ ଉତ୍ତମ ବ୍ରାହ୍ମଣ
ଚାରିବେଦେ ଜିତା ଯଜ୍ଞେ ପାଉତୁ ବରଣ ।
ଆବର ବିଶେଷେ ଅଟୁ ଆମ୍ଭ ବିଦ୍ୟାଗୁରୁ
ବ୍ରହ୍ମା ଶଙ୍କା କରେ ଯାହା ମୁଖୁ ବେଦ ସ୍ଫୁରୁ ।
ଏପରି ବ୍ରାହ୍ମଣ ଗୁରୁ ମାଇଲେ ପାଣ୍ଡବେ
କିପରି ଧର୍ମ ତାହାଙ୍କୁ ସହିଛି ଏ ଭବେ ।
ଚାରି ପାଣ୍ଡବ ମାରଣେ ନଉସସ୍ର ବଳ
ଧନୁ ବହିଥିଲୁ କିମ୍ପା ହୋଇଲା ନିଷ୍ଫଳ ।
ତବ ଗୁଣମାନ କହିବାକୁ ବେଳ ନାହିଁ
ପାଣ୍ଡବେ ଜାଣିଲେ ମୁହିଁ ବରତିବି କାହିଁ ।
ଅପାର ପ୍ରାର୍ଥନା ବାକ୍ୟେ କୋଳେ ଧରି ବୋଲି
ରକତ ନଦୀରେ ରାଜା ଦେଇ ତାକୁ ପେଲି ।
କୋଳ କରି ଦୁର୍ଯ୍ୟୋଧନ ପଡ଼ିଲାକ ମାଡ଼ି
ତିନି ତାଳ ଗଭୀରକୁ ଗୁରୁ ଗଲେ ବୁଡ଼ି ।
ବାହୁଡ଼ି କୁରୁପତି ଯେ ପହଁରି ଆସଇ
ଆଶ୍ଚର୍ଯ୍ୟ ହୁଅଇ ମନେ ରକ୍ତନଦୀ ଚାହିଁ ।
ଶୋକେ ମାନଗୋବିନ୍ଦ ଯେ ଚଳେ ମାନ ଘେନି
ଦେଖଇ ଉପୁଚିଆଇ ଆସଇ ଶକୁନି ।
କୋଳ କରି ଧରି ତାକୁ ମାନଚକ୍ରବର୍ତ୍ତୀ
ଆହା ମାତୁଳ ଭବିଷ୍ୟଜ୍ଞାତା କୁଳମନ୍ତ୍ରୀ ।

ପାଣ୍ଡବ ନାଶନେ କଲୁ ଯେତେଯେତେ ବୁଦ୍ଧି
କାଳେ ହେଁ କିଛି ମାତ୍ର ନୋହିଲାକ ସିଦ୍ଧି ।
ବିଷଲଡୁ ଖୁଆଇଲୁ ଭୋଜନେ ଭୀମକୁ
ବାନ୍ଧି ଜଳେ ପକାଇଲୁ ନାଗେ ଖାଇବାକୁ ।
କେତେ ସ୍ନେହ ମାମୁଁ ତୁହି କରିଥାଉ ମୋତେ
ଏଡ଼େ ଏଡ଼େ ସଙ୍କଟୁ ସେ ତରିଲେ କେମନ୍ତେ ।
ଭିଆଇଲୁ ଜଉଘର ପୁଣି ତୁ କପଟେ
ଜଉସ ଜଳସ ଗୁଆଘୃତ ଛଣପଟେ ।
କପଟରେ ପଠାଇଲୁ ତୁ ପୁରୋଚନକୁ
ପାଣ୍ଡବେ ମରିବେ ବୋଲି ଘର ପୋଡ଼ିବାକୁ ।
କେଉଁ ପୁଣ୍ୟବଳେ ତହୁଁ ଉବୁରି ସେ ଗଲେ
ଏଡ଼େ ଏଡ଼େ ପ୍ରମାଦରୁ ବଞ୍ଚିଣ ରହିଲେ ।
କପଟପଶା ଖେଳିଲୁ ମାମୁଁ ବୁଦ୍ଧି ବଳେ
ବସାଇଲୁ ପାଣ୍ଡବଙ୍କୁ ତୁହି ସଭାତଳେ ।
ବୁଦ୍ଧିବଳେ ରାଜ୍ୟଭାର ସମ୍ପଦ ଘେନିଲୁ
ଦ୍ରୌପଦୀକି ମୋର ସଭାମଧ୍ୟେ ଅଣାଇଲୁ ।
ବିବସନା କରାଇଲୁ ସମସ୍ତ ଦେଖନ୍ତେ
ତୋହର ଗୁଣ ମାମୁଁ ମୁଁ କହିବଇଁ କେତେ ।
ଏବେ ବୁଦ୍ଧି ଏକ ମାମୁଁ ଦିଅ କିନା ମୋତେ
ରୁଧିର ନଦୀକୁ ପାର ହୋଇବି କେମନ୍ତେ ।
ଶକୁନି ଉପରେ ରାଜା ପଡ଼ିଲାକ ମାଡ଼ି
ପଞ୍ଚତାଳ ଗଭୀରରେ ଆପେ ଗଲା ବୁଡ଼ି ।
ଅଗାଧ ରୁଧିରେ କୁରୁରାଜା ବୁଡ଼ିଥିଲା
ବାହାର ହୋଇ ଦୈବକୁ ଦୁଃଖେ ସୁମରିଲା ।
ରୋଦଇ ମାନଗୋବିନ୍ଦ ଦିଗ ଯେ ଅନ୍ଧାର
କେମନ୍ତେ ମୁଁ ଏ ରୁଧିର ନଦୀ ହେବି ପାର ।
ମହାଶୋକ ଅବସ୍ଥାରେ ହୋଇ ମହାଦୁଃଖୀ
ପୁରୁଷେକ ଆସେ ମାନଗୋବିନ୍ଦ ତା ଦେଖି ।
ରଜନୀକାଳେ ଦିଶଇ ଚନ୍ଦ୍ରମାର ପ୍ରାୟ
କୁଣ୍ଡଳ କଙ୍କଣ ନାନା ଅଳଙ୍କାର କାୟ ।
କେବଣ ଏ ମହାତମା ବଡ଼ ବିଚକ୍ଷଣ
ଏହି ଅବା ମୋରେ କରି ପାରଇ କାରଣ ।
କୋଳ କରି ଧଇଲା ହେ ମାନଚକ୍ରବର୍ତ୍ତୀ
ଉପରେ ଥୋଇଲା ବେନି ଗଦା ନେଇ ଧାଡି ।
ସତୁରି ସତୁରି ଭାର ବେନି ଗଦାବର
ସହିଲା ସେ ମୃତପିଣ୍ଡ ଗଦା ମହାବୀର ।
ଆପେ ନରେନ୍ଦ୍ର ପଡ଼ିଲା ତହିଁପରେ ମାଡ଼ି
ସୋହ୍ଲଭେଳା ପ୍ରାୟ ସେହି ରକତେ ନ ବୁଡ଼ି ।
ପିଠିରେ ପଡ଼ିଣ ବାହିନିଏ ବେନିହସ୍ତେ
ଦୁଇଘଡ଼ି ମଧ୍ୟେ ଗଲା ଯୋଜନ ପର୍ଯ୍ୟନ୍ତେ ।

ଆପଣାର ଭୂମି ଅଟେ ଦକ୍ଷିଣର ଭାଗେ
ପାରିହୋଇ ମୃତପିଣ୍ଡୁ ଉତୁରିଲା ବେଗେ ।
ଦ୍ରୋଣ କର୍ଣ୍ଣ ଶକୁନି ସେ ଶଲ୍ୟ ଭୁରିଶ୍ରବା
ତୋହ ପ୍ରାୟ ମୋତେ କେହି ନ କଲେ ରେ ବାବା ।
କେହି ରକତ ନଦୀରୁ ନ କଲେକ ପାରି
କେବଣ ମହାତ୍ମା ମୋର ଏଡ଼େ ଉପକାରୀ ।
ଲେଉଟାଇ ତା ବଦନ ଦେଖେ କୁରୁରାଣ
ନିରୂପି ଚିହ୍ନିଲା ଏ ମୋର କୁମର ଲକ୍ଷ୍ମଣ ।
ଆହା ପୁତ୍ର ବୋଲି ରାୟେ ଲଗାଇ ହୃଦରେ
ଅସାଷ୍ଟମେ ପଡ଼ିଗଲା ନଦୀର କୂଳରେ ।
ବାବୁରେ ପଳାଯା ବୋଲି ବୋଇଲି ମୁଁ ତୋତେ
ଏ ପ୍ରମାଦ ଭୂମିରେ ତୁ ରହିଲୁ କେମନ୍ତେ ।
ଆହାରେ ମୋର ଲକ୍ଷ୍ମଣ କକ୍ଷା ଜଗଜ୍ଜେଠି
ତ୍ରୈଲୋକ୍ୟ ସୁନ୍ଦର ହେତୁ ଏ ତୋ ନାମଗୋଟି ।
ବତିଶ ଲକ୍ଷଣ ଯୁକ୍ତ ଅତ୍ୟନ୍ତ ନିପୁଣ
ସର୍ବଜନ ଚିନ୍ତାମଣି ସର୍ବଗୁଣେ ପୂର୍ଣ୍ଣ ।
ବାବୁ ଅନୁକ୍ଷଣେ ଦିଶୁ ବାଳଅର୍କ ପ୍ରାୟ
କନକ କଙ୍କଣ ପ୍ରାୟ ଦିଶଇ ତୋ କାୟ ।
ଅନ୍ଧର ଲାଉଡ଼ି ମୋତେ ଅନାଥ ତୁ କଲୁ
ଗଭୀର ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ ।
ବାବୁ ଅତ୍ୟନ୍ତ ସୁନ୍ଦର ତୋହର ବଦନ
ସଦାନନ୍ଦ ମାନସ ତୋ ଅମୃତ ବଚନ ।
ବାବୁ ରାଜ୍ୟେ ସାଧୁ ସାଧୁ ବରନ୍ତି ପରଜା
ବାଟିକେ ମାଢ଼େ କରି ତୁ ଭିଆଇଲୁ ସଞ୍ଜା ।
ଦେବ ବିପ୍ର ଭକତିରେ ଅହର୍ନିଶି ଚିନ୍ତା
ଅନାଥ ଜନର ନାମ ବୋଲାଉ ତୁ ଦାତା ।
ଦାନେ ଶୂରବନ୍ତ ପୁତ୍ର ଭଣ୍ଡାର ବଇରୀ
ସମଦଣ୍ଡ ରଖିଲୁରେ ଅତି ଦାନ କରି ।
ବାବୁ ଶତେକ ଭଣ୍ଡାର ଦାନ ଦେଉ ନିତ୍ୟେ
ଶତେକ ବିପ୍ର ମିଳନ୍ତି ରଜନୀ ପ୍ରଭାତେ ।
ଦଇତ୍ୟ ପୁରୁଷ ରାତ୍ର ଦିବା ତୁ ନ ଜାଣୁ
କୃପଣ ଲୋକର ବୋଲ ଶ୍ରବଣେ ନ ଶୁଣୁ ।
ଦୁଷ୍ଟଜନ ନାଶି ସଜ୍ଜନ ରକ୍ଷା ଇଚ୍ଛୁ
ବିକଳ ହେଉଛି ମୁହିଁ ତୁନି ହୋଇଅଛୁ ।
କୌରବେ ସୁନ୍ଦର ତୋର ମୁଖପଦ୍ମ ଗୋଟି
ତୋର ମୃତ୍ୟୁ ଦେଖି ମୋତେ ଅନ୍ଧାର ଯେ ଘୋଟି ।
ସମରେ ନିପୁଣ ତୁହି ଅଟୁ ମହାମଲ୍ଲ
ନିଶ୍ଚିନ୍ତେ ଶୋଇଲୁ ନ ଶୁଣେ ଯେହ୍ନେ କାଲ ।
ଉଠ ଉଠ ମନ୍ଦିରକୁ ଯିବା ବାପ ପୁଏ
ବାଟ ଚାହିଁଥିବେ ତୋର ଭାନୁମତୀ ମାଏ ।

ମାଏ ପୋଏ ମୋତେ କଲ ଅନେକ ଦଇନି
ଶ୍ରୀ ବାସୁଦେବ ନ ଯାନ୍ତୁ ଅପମାନ ଘେନି ।
ପଡ଼ା ପାଞ୍ଚଖଣ୍ଡି ମାଗୁଛନ୍ତି ଶିରୀପତି
ବେନିଖଣ୍ଡ ପଡ଼ା ଦେଇ କରିବା ତୃପତି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ସାକ୍ଷାତେ
ବୋଇଲ ନ ଦେବି ମୁହିଁ ସୂଚୀ ଅଗ୍ର ଯେତେ ।
ତାହାର ଏ ପ୍ରତିଫଳ ଫଳିଲାରେ ବାବୁ
ଏତେ ବଡ଼ ସମ୍ପଦ ମୁଁ ହରାଇଲି ସବୁ ।
ଏବେରେ ପୁତ୍ର କରିବି ମୁଁ ତୋହର ବୋଲ
ଅଧେ ରାଜ୍ୟ ଦେବି ମୁହିଁ ଆସ ମୋର ତୁଲ ।
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନ ଦେଖୁଥିଲି ତୋର
ଏ ଆପଦ ଦେଖି କେହ୍ନେ ଧରିବି ଶରୀର ।
କସ୍ତୁରୀ ଚନ୍ଦନ ତୋର ଅଙ୍ଗେ ବୋଳା ହୁଏ
ରକତେ କର୍ଦ୍ଦମ ହେଲା ଏବେ ତୋର କାୟେ ।
ମଣିଗଣ ମାଣିକ୍ୟରେ ହୃଦ ତୋର ଜଳି
ମୁଣ୍ଡମାଳ ସଙ୍ଗେ ଏବେ ହୋଇଲା ସେ ମେଳି ।
ନବସହସ୍ର ରାଜନ ଖଟନ୍ତି ଆସ୍ଥାନେ
ଏବେ ବେଢ଼ିଛନ୍ତି ତୋତେ ଭୂତପ୍ରେତମାନେ ।
ହୃଦୁ ଭିନ୍ନ ନ କରନ୍ତି ତୋତେ ଧୃତରାଷ୍ଟ୍ର
ତୋର ମୁଖ ଚାହିଁ ପାଶୋରିଲି ପୁତ୍ର କଷ୍ଟ ।
ହୃଦେ ଧରିଅଛି ତୋର ମୃତ ଶବ ଗୋଟି
ଏ ମୋର ଶରୀର କିମ୍ପା ନ ଯାଉଛି ଫାଟି ।
ଦୟାର ସାଗର ଦୁଃଖୀଜନ ଉଦ୍ଧାରଣ
ଅକାରଣ କାରଣ ତୁ ଶରଣ ରକ୍ଷଣ ।
ଧର୍ମକାର୍ଯ୍ୟ ଲାଗିଥାଇ ସଦା ତୋର ଚିତ୍ତେ
ସେ ଧର୍ମଦେବତା ତୋତେ ଛାଡ଼ିଲେ କେମନ୍ତେ ।
ଏକାଳେ କିମ୍ପାଇ ତୋତେ ନ କଲେ ସେ ରକ୍ଷା
ଅନେକ ଦେବ ବ୍ରାହ୍ମଣେ କରୁ ଭକ୍ତି ଭିକ୍ଷା ।
ବାବୁରେ ଯେତେକ ଗୁଣ ଅଛଇ ତୋହର
କହିବାକୁ ବେଳ ଆଜି ନାହିଁ ତ ମୋହର ।
ତୋତେ ଧରି ଶୋକ କରୁ ରଜନୀ ପାହିଲେ
ମୁହିଁ ନାଶଯିବି ନିଶ୍ଚେ ପାଣ୍ଡବେ ଜାଣିଲେ ।
ଗଦା ଘେନି କଲା ବୀର ଭୂମିରେ ପ୍ରହାର
ହାତେକ ଗଭୀର ହେଲା ତାଳେକ ଓସାର ।
ସେ ଗର୍ଭରେ ଲକ୍ଷ୍ମଣକୁ ଶୁଆଇଲା ନେଇ
ଉଚ୍ଚରେ ରୋଦନ କଲା ପୁତ୍ର ମୁଖ ଚାହିଁ ।
କେହୁ ଏହି ମେରୁଗିରି ଚାଳିଲାରେ ବାପ
ହୃଦେ ଆଭରଣ କଲା କେହୁ କାଳସର୍ପ ।
ଏ ସୋମବଂଶରେ ତୁହି ଏକା ପୁତ୍ର ଗୋଟି
ବଂଶ ବୁଡ଼ାଇଲା ମୋର କାଟିଦେଲା ତୋଟି ।

ଜନ୍ମଠାରୁ ଆଜଯାଏ ଚାହିଁ ତୋର ମୁଖ
ବଞ୍ଚିଥିଲୁ ଏବେ ମୁହିଁ ହୋଇଲି ନିରେଖ ।
ନେତ ପାଟ ପତନୀ ଯେ ନାନା ପୁଷ୍ପଗଭା
ରକତେ କର୍ଦ୍ଦମ ଏବେ ହୋଇଲାରେ ବାବା ।
ଅମରାବତୀର ପ୍ରାୟେ ତୋ ଭୁବନ ଗୋଟି
ତାହା ତୁ ଉପେକ୍ଷା କରି ରକ୍ତମାଂସେ ଲୋଟି ।
ମୃଗନାଭି କସ୍ତୁରୀ ମୁଁ ତୋ ଦେହେ ଲେପଇ
ଏବେ ପୋତି ଯାଉଅଛି ମାଟିରେ ମିଶାଇ ।
ଅତି ସୁକୁମାର ତୁରେ କୁମର ଲକ୍ଷ୍ମଣ
ବର୍ଷେ ବାହୁନିଲେ ତୋର ନ ସରିବ ଗୁଣ ।
ବାବୁ ନବସୃଷ୍ଟି ଚିନ୍ତା ଛାଡ଼ି ପ୍ରଜାପତି
କେତେକାଳ ବସି ଯତ୍ନେ ଗଢ଼ିଲା ତୋ ମୂର୍ତ୍ତି ।
ମୋହର ପରାୟ ପିତା ତୋର ଆଉ ନୋହୁ
ତୋହର ପରାୟ ପୁତ୍ର ଜନ୍ମେ ଜନ୍ମେ ହେଉ ।
ଅପାର ଶୋକ କରଇ ରାଜା ଧୃତରାଷ୍ଟ୍ରି
ଲକ୍ଷ୍ମଣ କୁମର ଦେହେ ପକାଇଲା ମାଟି ।
ମୃତପିଣ୍ଡ ଲୋଚାଏ ତା ପରେ ଦେଲା ଫିଙ୍ଗି
ତହୁଁ ମାନଗୋବିନ୍ଦ ଯେ ଚାଲେ ବେଗି ବେଗି ।
ସତୁରି ସତୁରି ଭାର ବେନି ଗଦା ହସ୍ତେ
ବିଜେ ମାନଗୋବିନ୍ଦ ଯେ ଭୀଷ୍ମଙ୍କ ଅଗ୍ରତେ ।
ମାନଗୋବିନ୍ଦକୁ ଦେଖି ପୁଚ୍ଛନ୍ତି ଗାଙ୍ଗେୟ
ଏ କାଳେ ଅଇଲୁ କିମ୍ପା ରାତ୍ରେ କୁରୁରାୟ ।
ଶଲ୍ୟ ଶକୁନି ବାହ୍ଲୀକି କର୍ଣ୍ଣ କୃପାଚାର୍ଯ୍ୟ
ଥାଟ ସୈନ୍ୟ ନାହିଁ କିମ୍ପା ଏକା କଲୁ ବିଜେ ।
ମୂର୍ଚ୍ଛିତ ହୋଇଣ ମାନଗୋବିନ୍ଦ ବୋଇଲେ
ଭୋ ଭୀଷ୍ମ କର୍ଣ୍ଣ ଶକୁନି ସମରେ ପଡ଼ିଲେ ।
ଲକ୍ଷ୍ମଣ କୁମର ଆଦି ସର୍ବ ମରାଇଲି
ପୁତ୍ରବଳେ ମୁଁ ରୁଧିର ନଦୀ ପାର ହେଲି ।
ରଣ ଜୟ କରି ତହୁଁ ଗଲେ ପଣ୍ଡୁସୁତ
ଏକା ଉବୁରି ଅଇଲି ଶୁଣିମା ତଦନ୍ତ ।
ଭୋ ଭୀଷ୍ମଦେବ ମୁଁ ଏବେ ତୁମ୍ଭର ଶରଣ
ମୋତେ ରକ୍ଷା ନ କଲେ ମୁଁ ଲଭିବି ମରଣ ।
ଏବେ ମୋତେ ରକ୍ଷା କର ଶାନ୍ତନୁ ଆତ୍ମଜ
ଭୋଗ କରିବ ଏ ପଞ୍ଚରାଜ୍ୟ ଅଇଶ୍ୱର୍ଯ୍ୟ ।
ଭୀଷ୍ମ ବୋଇଲେରେ ବାବୁ ନିସତ ହୋଇଲୁ
ରଣଅର୍ଥେ ପାଣ୍ଡବଙ୍କୁ ସିନା ନ ଛାଡ଼ିଲୁ ।
ଏବେ ନିସତ ହୋଇଲେ ପାରିବୁ କି ବର୍ତ୍ତି
କ୍ଷଣେ ଆୟୁଷ ଥିବାରୁ ବଞ୍ଚିଲୁ ନୃପତି ।
ଦିନେ ଅଧେ ଅବା ବେଳେ ହୋଇପାରୁ ରକ୍ଷା
କିମ୍ପାଇ ନ ଘେନିଲୁ ତୁ ରଣେ ରଣଦୀକ୍ଷା ।

ଆଉ କେବେ ନ ଫଳିବ ତୋର ମନୋବାଞ୍ଛା
ସଫଳ ହୋଇଲା ଜାଣ ପାଣ୍ଡବଙ୍କ ଇଚ୍ଛା ।
ପଳାଇ ଯାଆନ୍ତୁ ଅବା ଗଗନ ମଣ୍ଡଳ
ଅର୍ଜୁନର ପିତା ତହିଁ ଅଛି ଆଖଣ୍ଡଳ ।
ପଳାଇ ପଶନ୍ତୁ ଅବା ପାତାଳ ଭିତର
ଅନନ୍ତ ନାଗରାଜା ତା ଅର୍ଜୁନ ଶ୍ୱଶୁର ।
ଅର୍ଜୁନ ବନ୍ଧୁ ଅଟନ୍ତି ଅଷ୍ଟକୁଳା ନାଗେ
ପଶିବାକୁ କ୍ଷମ ନୋହୁ ପାତାଳେ ବା ସ୍ୱର୍ଗେ ।
ମର୍ତ୍ତ୍ୟମଣ୍ଡଳର ରାୟେ ମଲେଣି ସମସ୍ତେ
ସବୁରି ଶତ୍ରୁ ତୋତେ ନ ସହନ୍ତି ଜଗତେ ।
ପୁଣି ପବନ ଭୀମର ଅଟଇ ଯେ ପିତା
ତ୍ରୈଲୋକ୍ୟର ମଧ୍ୟେ ନାହିଁ ତୋତେ କେ ରଖନ୍ତା ।
ଅତି ଗୁପତ ସ୍ଥାନେକ ଅଛି ଆରେ ବାବୁ
ତହିଁରେ ପଶିଲେ ଅବା ତୁ ବର୍ତ୍ତି ପାରିବୁ ।
ବ୍ୟାସ ସରୋବରେ ଛନ୍ତି ଦୁର୍ବାସା ମହର୍ଷି
ରହି ପାରିବୁ ବା ତହିଁ ପାରୁ ଯେବେ ପଶି ।
ପଳାଇ ଯାଅ ନିକଟ ହେଲାଣି ପାହାନ୍ତି
ଏକ୍ଷଣି ପାଣ୍ଡବେ ଆସି ଚିହ୍ନିବେ ସବୁନ୍ତି ।
ଏମନ୍ତ କହି ଗାଙ୍ଗେୟ ହୋଇଲେ ମଉନ
ଶ୍ରୀଚଣ୍ଡୀ ଶାରଳା ପାଦେ ରହୁ ମୋର ମନ ।
ଜୟ ଜୟ ଜାହ୍ନବୀ ଗୋ ଜହ୍ନୁର ତନୟା
ପରମା ସାଧବୀ ଦେବୀ କର ମୋତେ ଦୟା ।
ମୁଁ ମୂଢ଼ ଅଜ୍ଞ ଶାରଳା ଦାସ ଶୂଦ୍ରମୁନି
ଉଦ୍ଧାର କର ଗୋ ବାରେ ପତିତପାବନୀ ।

—o—

## ଦୁର୍ଯ୍ୟୋଧନର ହସ୍ତିନାରେ ପ୍ରବେଶ, ବ୍ୟାସସରୋବର ଗମନେ ଭାନୁମତୀ ରାଣୀ ଓ ପିତାମାତାଙ୍କ ସହିତ ପରାମର୍ଶ

ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧାରୀ
ରୁଧିର ନଦୀକୁ ଦୁର୍ଯ୍ୟୋଧନ ହେଲା ପାରି ।
ଭୀଷ୍ମଙ୍କଠାରୁ ଏମନ୍ତ ପାଇ ଉପଦେଶ
ହସ୍ତିନା ନଗରେ ରାଜା ହୋଇଲା ପ୍ରବେଶ ।
ସର୍ବେ ଆଉ ତିନିଘଡ଼ି ମାତ୍ର ଥିଲା ରାତି
ଅର୍ଘ୍ୟ ଘେନି ଉଭା ହୋଇଅଛି ଭାନୁମତୀ ।
ଏମନ୍ତ ବେଶ ଦେଖିଣ ମାନଗୋବିନ୍ଦର
ବିରସେ ସୁନ୍ଦରୀ କପାଳରେ ଦେଲା କର ।
ପତିକୁ ଦେଖି ରମଣୀ ବିଷାଦେ କହଇ
ତୁଲେ ସଖା ସହୋଦର କିମ୍ବା କେହି ନାହିଁ ।
ଊନଶତ ସୋଦର ଯେ ଦୁଃଶାସନ କର୍ଣ୍ଣ
ଶଲ୍ୟ ଶକୁନି ନାହିଁ ତ କୁମର ଲକ୍ଷ୍ମଣ ।
କାଲି ଘେନିଗଲ ଏକାଦଶ ଅକ୍ଷୌହିଣୀ
ସଙ୍ଗେ କାହିଁପାଇଁ ଜଣେ ନାହିଁ ନୃପମଣି ।
ଲକ୍ଷ୍ମଣ କୁମର ସ୍ୱାମୀ ନାହିଁ ତୁମ୍ଭ ତୁଲେ
ପୃଥ୍ୱୀରେ ଚହଳ ପଡ଼େ ଯେହୁ ବିଜେ କଲେ ।
ଦୁର୍ଯ୍ୟୋଧନ ବୋଇଲା ଗୋ ସବୁ ମରାଇଲି
ଏକାକୀ ଏ ଦେହ ଘେନି ପଳାଇ ଅଇଲି ।
ଏଣୁ ସଖା ସହୋଦର ନାହାନ୍ତି ମୋ ତୁଲେ
କର୍ମର ବିପାକେ ମୋର ସମସ୍ତେ ପଡ଼ିଲେ ।
ଶୁଣି ଭାନୁମତୀ ରାଣୀ ହେଲା ମୋହଗତ
ଯେସନେ ଆକାଶୁଁ ଖସି ପଡ଼ଇ ନିଘାତ ।
ବୋଇଲା ନୃପତି ଗୋକ ନ କର ଗୋ ରାଣୀ
ଶୋକ ସମ୍ଭାଳ ଯେମନ୍ତ ପାଣ୍ଡବେ ନ ଜାଣି ।
ଯଦ୍ୟପି ପାଣ୍ଡବେ ମୋର ପାଇବେ ଖବର
ଚଉକତି ବେଢ଼ି ମୋତେ କରିବେ ସଂହାର ।
ଆଜ ଦିବସକ ଯେବେ ପାରିବୁ ଗୋ ରଖି
ପୁଣି ଏକା ରାଜ୍ୟ ଭୋଗ କରିବୁରେ ସଖୀ ।
ଗାନ୍ଧାରୀକୁ ଘେନି ଯହିଁ ଛନ୍ତି ଧୃତରାଷ୍ଟ୍ର
ମାନଗୋବିନ୍ଦ ବିଜୟ ପିତାର ନିକଟ ।
ସଞ୍ଜୟ ବୋଇଲା ଶୁଣ ରାଜା କୁରୁପତି
ଛାମୁରେ ବିଜୟ ତୋର ମାନଚକ୍ରବର୍ତ୍ତୀ ।
ଦରାଣ୍ଡଇ ଧୃତରାଷ୍ଟ୍ର କାହିଁ ଅଛୁ ବାବୁ
ସଖା ସହୋଦର ସୈନ୍ୟ ମରାଇଲୁ ସବୁ ।
ଅନେଶ୍ୱତ ଭାଇ ବାବୁ କାହାକୁ ତୁ ଦେଲୁ
ଏକହୋଇ ତୁହି ତ ଏ କଟକେ ପଶିଲୁ ।
ଦୁର୍ଯ୍ୟୋଧନ ବୋଲେ ଯେଣୁ କଲୁ ମୋତେ ଜାତ
ତେଣୁ ବଳିଭୋଜା ଦେଲି ତବ ସବୁ ସୁତ ।
ଧୃତରାଷ୍ଟ୍ର ବୋଲେ ଭାଇ ଭାଗ ତୁ ନ ଦେଲୁ
କୁଳକ୍ଷୟ ମନ୍ତ୍ରୀର ତୁ ବଚନେ ଚାଲିଲୁ ।
ବିଦୁର ଯେ ପୁରୋହିତ ଭୀଷ୍ମଙ୍କ ସହିତେ
ପ୍ରାର୍ଥନାରେ ଜଣେ ଜଣେ କହିଗଲେ କେତେ ।
ମଧ୍ୟପାତ୍ରପଣେ ପୁଣି ଆସି ଯଦୁସାଇଁ
ପଡ଼ା ଦ୍ୱିଖଣ୍ଡ ମାଗିଲେ ପାଣ୍ଡବଙ୍କ ପାଇଁ ।
ଭୀଷ୍ମ ଦ୍ରୋଣ ଆଦି କରି ବୁଝାଇଲେ ଯେତେ
ବୋଇଲୁ ଯେ ବିନା ଯୁଦ୍ଧେ ନ ଦେବି କିଞ୍ଚିତେ ।
ଚଉଦ ଭୁବନ ନାଥ ଦେବ ଦାମୋଦର
ଯାହାକୁ ଭୟ କରନ୍ତି ଧାତା ପୁରନ୍ଦର ।
ତାହାକୁ ଗଉଡ଼ ବୋଲି ମଣିଲୁରେ ଛାର
ବସାଇ ନ ଦେଲୁ ତାଙ୍କୁ ସଭାର ମଧ୍ୟର ।

ଗୋପପୁରେ ଥାଇ ଏହି ଗୋପାଳଙ୍କ ମେଳେ
ଯାବତ ଅନୀତି କର୍ମ କଲେ କୁତୂହଳେ ।
ଅନେକ ପ୍ରକାରେ ଛିଦ୍ର କହିଲୁ ଝିଙ୍ଗାସି
ବିଚାରିଲେ ଆମ୍ଭେ ଯାକୁ ପାରିବା ବିନାଶି ।
ଯେହୁ ମୀନରୂପେ ଶଙ୍ଖାସୁରକୁ ବଧିଲେ
ଯୁଝିବା ନିମନ୍ତେ ହରି ଏ ରୂପ ଧଇଲେ ।
କଚ୍ଛପରୂପେ ସେ ଧରିଥିଲେ ହେ ମନ୍ଦର
ଜ୍ଞାନ ଦେବାପାଇଁ ଦେଖାଇଲେ ସେ ଶରୀର ।
ବରାହରୂପେ ସେ ଅବନୀକୁ ଧରିଥିଲେ
ଜାଣିବା ପାଇଁ ଅନାଦି ସେ ରୂପ ଧଇଲେ ।
ଡରାଇବା ପାଇଁ ହେଲେ ନରସିଂହ ମୂର୍ତ୍ତି
ମୂର୍ଖ ପାମର ତୁମେରେ ନ କଲ ଯା ଭୀତି ।
ପୁଣି ସେହି ବିକାଶିଲେ ବାମନ ସ୍ୱରୂପ
ଶାନ୍ତ ମୂର୍ତ୍ତି ଦେଖାଇଣ ପୁଣି କଲେ କୋପ ।
ଜ୍ଞାନ ଦେବାପାଇଁ ପର୍ଶୁରାମ ରୂପ ଧରି
ଦୁର୍ଭର ପାମର ତୁମ୍ଭେ ତଥାପି ନ ଡରି ।
ଆରେ ପାତକ ତୁମ୍ଭର ଧ୍ୱଂସିବା ନିମନ୍ତେ
ରାମ ଅବତାର ହରି ଧଇଲେ ତ୍ୱରିତେ ।
ପୁଣି କହ୍ନା ଅବତାର ହେଲେ ପୀତବାସ
ନଟକାର ବୋଲି ତାଙ୍କୁ କଲ ଉପହାସ ।
ଆପେ ତ ଯାହା ଅରଜି ତାକୁ କର୍ମ ବୋଲି
ଶତେପୁତ୍ର ଉପୁଜାଇ ଅପୁତ୍ରିକ ହେଲି ।
ଆଗେ ନାସ୍ତି କଲୁ ଯେବେ ବାକ୍ୟ ନିରାଧାର
ରଣଯଜ୍ଞ ତୁ କିମ୍ପାଇଁ ନ କଲୁ ସେଠାର ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ଦେଖି
ବୈକୁଣ୍ଠ ଯାଆନ୍ତୁ କିମ୍ପା ଅଇଲୁ ଉପେକ୍ଷି ।
ଧୃତରାଷ୍ଟ୍ର ବୋଲେ ସାଧୁ ସାଧୁରେ ବିଦୂର
ପରମ ପଣ୍ଡିତ ତୁହି ସୁଗୁଣ ଆଧାର ।
ତୁ ମହାତ୍ମା ଏହା ମୋତେ ତିଆରି କହିଲୁ
ଦୁର୍ବାସାଙ୍କ ବରେ ଶତେ କୁମର ପାଇଲୁ ।
ବୋଇଲୁ ଜ୍ୟେଷ୍ଠପୁତ୍ରକୁ ମାର ଧୃତରାଷ୍ଟ୍ର
ଏ ପୁତ୍ର ଥିଲେ ପାଇବୁ ପୁତ୍ରନାଶ କଷ୍ଟ ।
ବଡ଼ କର୍କଶ ସ୍ୱଭାବ ଏ ମଧୁପିଙ୍ଗଳ
ଏହାଯୋଗୁ ନାଶଯିବେ କୁରୁ ପଣ୍ଡୁକୁଳ ।
ବିଦୂର ବଚନ ମୁଁ ନ କଲି ଯେତେବେଳେ
ଜାଣୁ ଜାଣୁ ବୁଡ଼ାଇଲୁ ବଂଶକୁ ସମୂଳେ ।
ଶୁଣି ଦୁର୍ଯ୍ୟୋଧନ ବୋଲେ ଯା ହେଲା ହେବାର
ବର୍ତ୍ତମାନ ଯାହା ହେବ ସେ କଥା ବିଚାର ।
କେମନ୍ତେ ମୁଁ ଆଉ ଏକଦିନ ହେଲେ ରକ୍ଷା
ପୁଣି ଚକ୍ରବର୍ତ୍ତୀ ହୋଇ ପୂରାଇବି ବାଞ୍ଛା ।

ଧୃତରାଷ୍ଟ୍ର ଦୁର୍ଯ୍ୟୋଧନ ବଇକୁଲ୍ୟ ଶୁଣି
ବୋଲଇ କାହିଁରେ ଲୁଚି ରହିବୁ ତୁ ପୁଣି ।
ବାବୁ ମନ୍ତ୍ର ଚୂଡ଼ାମଣି ସହଦେବ ଥାନ୍ତେ
ତୁ କାହିଁ ଲୁଚି ରହିବୁ ଏ ତିନି ଜଗତେ ।
କ୍ଷଣକ ଆୟୁଷ ତୋର ସିନା ଆରେ ବାବୁ
ଦଣ୍ଡେ ଘଡ଼ିଏ ଜୀଇଁଣ ଅବସ୍ଥା ପାଇବୁ ।
ଏକା ବର୍ତ୍ତିବାକୁ ଯେବେ କଲୁ ପ୍ରତିଆଶ
ପଳାଇଯା ବେଗେ ବ୍ୟାସ ସରୋବରେ ପଶ ।
ଶରଣବତ୍ସଳ ସେହି ବ୍ୟାସ ସରୋବର
ନାନା ପାତକ ହରଇ ସର୍ବ ହୋଇ ଦୂର ।
ଶରଣ ପଶିଲେ ସେ ନ ଦିଅଇ ଭସାଇ
ବଳାତ୍‌କାରେ ପଶିବାକୁ କ୍ଷମ କେହି ନାହିଁ ।
ମାନଗୋବିନ୍ଦକୁ କହେ ଧୃତରାଷ୍ଟ୍ର ରାଜା
ଦେଖା ନ ଦେଇ କାହାକୁ ପଳାଇ ପଶ ଯା ।
ଅମ୍ବିକାସୁତ କହନ୍ତେ ଏହି ଦୃଢ଼ ବାଣୀ
ପଳାଏ ରାଜା ଦ୍ୱିଦଣ୍ଡ ଅଛଇ ରଜନୀ ।
ଯାଏ ସେ ମାନଗୋବିନ୍ଦ ପବନ ତୁରିତେ
ସତୁରି ସତୁରି ଭାର ଗଦା ବେନି ହସ୍ତେ ।
ଚଇତ୍ୟ ନାମରେ ବନ ପର୍ବତ କୃପାଙ୍ଗ
ଶୁଦ୍ଧ ସ୍ଫଟିକ ପ୍ରବାଳ ଦ୍ୱିତୀ ମୋକ୍ଷ ସ୍ୱର୍ଗ ।
ହସ୍ତିନା ରାଜ୍ୟ ଉତ୍ତର ପଶ୍ଚିମର କୋଣେ
ମାନଗୋବିନ୍ଦ ପ୍ରବେଶ ବିଶାଶତ ଯୁଣେ ।
ଯୁଦ୍ଧସ୍ଫଟିକ ପର୍ବତ ଉପରେ ଦୁର୍ବାସା
ରହିଛନ୍ତି ଶ୍ରୀହରିଙ୍କ କରିଣ ଭରସା ।
ରୁଧିର କାୟେ ପ୍ରଣାମ କରି କୁରୁରାୟେ
କରପତ୍ର ଯୋଡ଼ି ଉଭା ହୋଇଲେ ବିନୟେ ।
ଦେଖି ଦୁର୍ବାସା ବୋଇଲେ ଧୃତରାଷ୍ଟ୍ର କାଳେ
ଶତେପୁତ୍ର ଜାତ ହେଲେ ଆମ୍ଭ ମନ୍ତ୍ରବଳେ ।
ସମସ୍ତଙ୍କୁ ହରାଇଲୁ ନିଜ ଦୋଷ ଫଳେ
ଭ୍ରାତା ପୁତ୍ର ମରାଇଲୁ ତୁହି ଏକାବେଳେ ।
କୃଷ୍ଣର ମୁଖ ଦେଖି ନ ଦେଲୁ ରଣେ ଝାସ
ସମସ୍ତ ମରାଇ କଲୁ ଜୀବନକୁ ଆଶ ।
ମାନଗୋବିନ୍ଦ ବୋଇଲା ତୁମେ ମୋ ଭରସା
ଶରଣ ପଶିଲି ମୋତେ ରଖସି ଦୁର୍ବାସା ।
ଦୁର୍ବାସା ବୋଇଲେ ଯାହା କହିଲୁ ନୃପତି
ବଡ଼ ନିର୍ଦ୍ଦୟ ପାଣ୍ଡବେ ପାରିବୁ କି ବର୍ତ୍ତି ।
ରୁଦ୍ରଗର୍ଭ ବୋଲି ଏକ ଲିଙ୍ଗ ସତ୍ୟଯୁଗେ
ବ୍ୟାସ କୈଳାସୁ ଆଣିଲେ ତାହା ମଧ୍ୟେ ସ୍ୱର୍ଗେ ।
କହିଲେ ନ ସରଇ ସେ ଲିଙ୍ଗର ମହିମା
ପଛଘୁଞ୍ଚା ଦେଇ ତହିଁ ପଶ ମହାତମା ।

ଅତି ମାନେ ବୁଡ଼ାଇଲୁ ଏଡ଼େକ ସମୃଦ୍ଧି
ସବୁ ହରାଇଲୁ ଘେନି ଶକୁନିର ବୁଦ୍ଧି ।
ହଂସୁଲି ତୁଳି ଅଛଇ ଶେଯ ସେ ସୁପାତି
ତା ପରେ ଶୟନ ଯାଇ କର କୁରୁପତି ।
ଜୟ ବ୍ୟାସ ସରୋବର ମହାଦେବ କାଶୀ
ଅଭୟ ବରଦନାଥ ଜୟ ଶୂନ୍ୟବାସୀ ।
ନିର୍ମଳ ନିରାକାର ଯେ ନିରଞ୍ଜନ ଜ୍ୟୋତି
ଶରଣ ରକ୍ଷଣ ନାଥ କାଳାନ୍ତକ ମୂର୍ତ୍ତି ।
ସତ୍ୟଯୁଗେ ପୂଜା କଲେ ଯାକୁ ବ୍ୟାସଯତି
ଯେଣୁ ବ୍ୟାସ ସରୋବର ହେଲେ ପଶୁପତି ।
ସ୍ୱାମୀ ଜନ୍ମେ ଜନ୍ମେ ମୁହିଁ ତବ ପଦ୍ମପାଦେ
ଶରଣ ପଶିଲୁ ଦେବ ରଖ ଅପ୍ରମାଦେ ।
ବିଶାଶତ ଯୋଜନ ଯେ ଉତ୍ସର୍ଗର ଜଳ
ଏତେ ତେଜ ବିକାଶଇ ଯେସନେ ଅନଳ ।
ଶରଣ ପଶିଲେ ସ୍ୱାମୀ ଲୋକଙ୍କୁ ସମ୍ଭାଳି
ସକଳ ଭୟ ଆପଦ ଖଣ୍ଡ ହେ କପାଳି ।
ଅନାଥର ନାଥ ଦୁଃଖୀଜନର ଶରଣ
ଯାବଚନ୍ଦ୍ର ଦିବାକର ବିପଦ ତାରଣ ।
ହରଣ ପାଳନ ଦେବ ଉଦ୍ଧାରଣ ଏକ
ତ୍ରିପୁର ବିଧ୍ୱଂସି ନାଥ ନାମ ତୋ ତ୍ର୍ୟମ୍ବକ ।
ଭୋ ସ୍ୱାମୀ ଅନ୍ଧକ ଦୈତ୍ୟ ସର୍ପ ନିସୂଦନ
ଭୁବନ ଭୂଷଣ ନାଥ ଜୟ ତୁ ଈଶାନ ।
କପାଳ ମୋଚନ ତୀର୍ଥ ଗୁପ୍ତ ବାରଣସୀ
ବ୍ୟାସ ସରୋବର ନାଥ ମହାଲିଙ୍ଗ କାଶୀ ।
ଯମୁନା ସରସ୍ୱତୀ ଯେ ଗଙ୍ଗା ତିନିଧାର
ବହଇ ତ୍ରିବେଣୀ ନଦୀ ମସ୍ତକୁ ତୁମ୍ଭର ।
ସୁରସିଦ୍ଧ ମୁନି ଯାର ଚରଣରେ ବନ୍ଦେ
ମନୁଷ୍ୟ ଜନ୍ମ ଲଭିଲି ପରମ ଆନନ୍ଦେ ।
ସ୍ୱାମୀ ତୋର ବିଳାସିନୀ ଚଉଷଠି କୋଟି
ନିରତେ ତାଣ୍ଡବ ନୃତ୍ୟ ରସେ ଥାନ୍ତି ଖଟି ।
ସ୍ୱାମୀ ନୀଳକଣ୍ଠ ଶିରେ ଧବଳ ତରଙ୍ଗ
ବୃଷଭ ବାହନ ନାଥ ମଉଳି ଶଶାଙ୍କ ।
ଦୁରନ୍ତ ଭୟ ନିବାରି ସର୍ବେ ବୃନ୍ଦାରକେ
ତୋର ପାଦେ ଆରାଧନା କରନ୍ତି ତ୍ରୈଲୋକ୍ୟ ।
ଅନ୍ଧକାରେ ବିରାଜଇ ପୁର ବାରସ୍ୱତୀ
ବାରିଧି ଘେନି ବରୁଣ ଆରାଧଇ ନିତି ।
ଭୂତନାଥ ପୁରୁଷ ତୁ ଅଟୁ ମହାତମୀ
ଯୁଗାନ୍ତ ପ୍ରଳୟ କରୁ ନିମିଷକେ ସ୍ୱାମୀ ।
ଜନ୍ମେ ଜନ୍ମେ ଭାବେ ବ୍ୟାସ ସରୋବର ଲିଙ୍ଗ
ଶାରଳା ଦାସ ମୁଁ ତବ ପାଦପଦ୍ମେ ଭୃଙ୍ଗ ।
ବ୍ୟାସ ସରୋବରେ ଜନେ ପଶ ହେ ଶରଣ
ଖଣ୍ଡିବ ସକଳ ପାପ ହେବ ପରିତ୍ରାଣ ।

—୦—

## ଇତି ଶ୍ରୀ ମହାଭାରତେ ଶଲ୍ୟପର୍ବ

## ସମାପ୍ତ

**ଅକ୍ଷରସଜ୍ଜା : ଟେକ୍ନୋସଫ୍ଟ କମ୍ପ୍ୟୁଟର ସର୍ଭିସ୍, କଟକ, ଫୋନ୍ - ୬୦୮୩୦୨**

ଶୂଦ୍ରମୁନି ଵ ଶାରଳା ଦାଶଙ୍କ ବିରଚିତ




# ଗଦାପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଦୂରଭାଷ : ୦୬୭୧-୨୬୦୮୨୯୬

## ମହାଭାରତ - ଗଦାପର୍ବର

# ସୂଚୀପତ୍ର

**ବିଷୟ** **ପୃଷ୍ଠାଙ୍କ**



## ମହାଭାରତ ଗଦାପର୍ବର ସୂଚୀପତ୍ର

## ସମାପ୍ତ

# ମହାଭାରତ

## ଗଦାପର୍ବ



ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧବୁଦ୍ଧିଂ
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଲାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନିନାମ୍ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।

ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।

ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯକ୍ରର୍ଣ୍ଣୋଧାରୋହରିଃ ।

ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା,
ବିରାଟ ପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍‌ଯୋଗ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃପରଂ ।
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂ ସ୍ୟାତ୍ ଗଦାପର୍ବଂ ତତଃପରଂ,
ଐଷିକଂ ତୁ ତଥା ପ୍ରୋକ୍ତଂ ଗର୍ଭନାଶନମେବ ଚ ।
ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନ ମୁଦକସ୍ୟ ତୁ
ଶାନ୍ତି ପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧକମେବ ଚ ।
ସ୍ୱର୍ଗାରୋହଣକଂ ଚୈବ ହରିବଂଶ ତଥୈବ ଚ
ଇତ୍ୟଷ୍ଟାଦଶପର୍ବାଣାଂ ସଂଖ୍ୟା ଦ୍ୱୈପାୟନେ ରତା ।
ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।
ଭାରତ ଶ୍ରୁତି ମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବ ପାପ ପ୍ରମୁଚ୍ୟତେ ।
ବ୍ୟାସ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।
ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ
ସର୍ବାଣି ତୀର୍ଥାନିବସନ୍ତି ତତ୍ର ଯତ୍ରାଚ୍ୟୁତୋଦାରକଥା ପ୍ରସଙ୍ଗଃ ।

## ଶାରଳା ବନ୍ଦନା

ନମସ୍ତେ ଶାରଳା ମାଗୋ ଝଙ୍କଡ଼ବାସିନୀ
ଅକ୍ଷୟ ବରଦାୟିନୀ ଦୁର୍ଗତି ତାରିଣୀ ।
ତବ ପରସାଦେ ମା'ଗୋ ଶ୍ରୀମହାଭାରତ
ଶଲ୍ୟପର୍ବ ଶେଷଯାଏ କଲି ମୁଁ ବ୍ୟକତ ।
ଏ ଅନ୍ତେ ଯେ ଗଦାପର୍ବ କରିବି ଲିଖନ
କଣ୍ଠତଟେ ବସି ପଦ କହସି ବହନ ।
ଜନ୍ମରୁ ମୂରୁଖ ମୁଁ ଯେ ନ ଜାଣଇ କିଛି
ପ୍ରାରମ୍ଭରୁ ତବ ପାଦ ଆଶ୍ରେ କରିଅଛି ।
ଏଣୁ ମୋଠାରେ ଗୋ ମାତ ହୋଇବ ପ୍ରସନ୍ନ
ଶୂଦ୍ରମୁନି ଶ୍ରୀ ଶାରଳା ଦାସର ଜଣାଣ ।

—o—

## ଦ୍ୱୈପାୟନ ହ୍ରଦେ ଦୁର୍ଯ୍ୟୋଧନର ପ୍ରବେଶ ଓ ଲକ୍ଷ୍ମୀଙ୍କ ସହିତ କଥୋପକଥନ

ଏଥୁଅନନ୍ତରେ ପୁଣ ବିଲଙ୍କାର ରାଜା
ଅଗସ୍ତିଙ୍କ ପାଦତଳେ କଲେ ଦିବ୍ୟପୂଜା ।
ବସନ କୁଣ୍ଡଳମାନ ଧୂପ ନଇବେଦ୍ୟ
ସୁବର୍ଣ୍ଣ ବୃଷ୍ଟି କରିଲା ଅଗସ୍ତିଙ୍କ ପାଦ ।
ଶୁଣିବି ଏ ଗଦାପର୍ବ ତୁମ୍ଭ ପରସାଦେ
ତରିବି ଭବସାଗରୁ ଅତି ଅପ୍ରମାଦେ ।
କିସ ଦେଇ ଦଇନୀ ମୁଁ ହୋଇବି ଶୟଳେ
ସମୁଦ୍ର ଗଣ୍ଡୁଷ କଲ ଖେଳ କୁତୂହଳେ ।
ଶତ ଶତ ଦଣ୍ଡବତ ବିନୟ ଯୁକତେ
ବ୍ୟାସସରେ ଦୁର୍ଯ୍ୟୋଧନ ପଶିଲା କେମନ୍ତେ ।

କହନ୍ତି ଅଗସ୍ତି ମୁନି ପଣ୍ଡିତଙ୍କ ଗୁରୁ
ଶୁଣ ତୁ ମହାତ୍ମା ମୋତେ ଯାହା ପୁଚ୍ଛାକରୁ ।
ମାନଗୋବିନ୍ଦ ଦଇନୀ ଦେଖିଣ ଦୁର୍ବାସା
ବୋଇଲେ ପୁଣି ଜୀବନେ କଲୁ ଯେତେ ଆଶା ।
ପଛଘୁଞ୍ଚା ଦେଇ ସରେ ପଶ ଚକ୍ରବର୍ତ୍ତୀ
ଅତିମାନେ ବୁଡ଼ାଇଲୁ ଏଡ଼େକ ସମ୍ପତ୍ତି ।
ହେମମୟ ସୁପାତିରେ ହଂସୁଲି ଯେ ତୁଳି
ତହିଁ ଉପରେ ପଡ଼ିଛି ପାଟର ମୁଟୁଳି ।
ପଲ୍ୟଙ୍କ ଛାତେ ଚାନ୍ଦୁଆ ହୋଇଛି ମଣ୍ଡିତ
ଝୀନବସନ ମଶାରି ତହିଁରେ ଆବୃତ ।
ଦୁର୍ବାସା ବୋଇଲେ ଗୁପ୍ତେ ରହିବୁ କେମନ୍ତେ
ପାଣ୍ଡବେ ଜାଣିପାରିବେ ସହଦେବ ଥାନ୍ତେ ।
ଲୋଡ଼ି ନ ପାଇଲେ ତୋତେ ଆସିବେ ଏ ସ୍ଥାନ
ମାତ୍ର ଜଳେ ପଶିବାକୁ ନୋହିବେ ଭାଜନ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଚନ୍ଦ୍ର ଆବର ତପନ
ବଳାତ୍କାରେ ଯେ ପଶିବ ହୋଇବ ଦହନ ।
ଭୀମସେନ ସିଂହରଡ଼ି ସହିବୁ ମାତର
ବାହାର ନୋହିବୁ କିବା ନୋହିବୁ କାତର ।
ତିନିରଡ଼ି ସହିବୁ ତୁ ଯେବେ କୁରୁପତି
ଏ ପଞ୍ଚକଟକେ ପୁଣି ହେବୁ ଚକ୍ରବର୍ତ୍ତୀ ।
ଦୁର୍ବାସା ବଚନ ଶୁଣି ବୋଲେ ଦଣ୍ଡଧାରୀ
ତିନିରଡ଼ି ଛାଡ଼ି ଭୀମ ଦେଉ ପାଞ୍ଚରଡ଼ି ।
ଦୁର୍ବାସାଙ୍କୁ ବହୁରୂପେ ପ୍ରତିଜ୍ଞା ଦେଖାଇ
ଶରଣ ବୋଲି ପଶିଲା ପଛଘୁଞ୍ଚା ଦେଇ ।
ଅତ୍ୟନ୍ତ ଦୁର୍ଗମ ସେହୁ ପାତାଳ ଭୁବନ
ଦିବାରାତ୍ର ନାହିଁ ଚନ୍ଦ୍ର ସୂର୍ଯ୍ୟ ଆଗମନ ।
ସସ୍ର ଯୋଜନ ଗଭୀର ବ୍ୟାସ ସରୋବର
ଅନନ୍ତ ନାଗ ଅଛି ସେ ଲିଙ୍ଗର ଉପର ।
ତା ପରେ ଜଳ ବିସ୍ତାର ଅୟୁତେ ଯୋଜନ
ତହିଁ ଅଭ୍ୟନ୍ତରେ ଅଛି ଏକଇ ଭୁବନ ।
ସେ ଭୁବନ ମହିମା ଯେ କେ କହି ପାରିବ
ଅନନ୍ତ କହି ବସିଲେ ଆୟୁ ଶେଷ ହେବ ।
ସେ ସ୍ଥାନରେ ପଡ଼ିଥିଲା ସୁବର୍ଣ୍ଣ ସୁପାତି
ତହିଁ ଉପରେ ବସିଲା ମାନଚକ୍ରବର୍ତ୍ତୀ ।
ଯଥା କ୍ଷୀର ସମୁଦ୍ରରେ ଅନନ୍ତ ଶୟନ
ଶୋଇଲା ଦକ୍ଷିଣେ ଶିର କରି ଦୁର୍ଯ୍ୟୋଧନ ।
ନେତ ଚନ୍ଦ୍ରାତପ ଟଣା ହୋଇଛି ଉପରେ
ପଡ଼ଇ କର୍ପୂର ଧୂଳି ଅନବରତରେ ।
ଅଠର ଦିନ ସମରେ ଅନିଦ୍ରିତ ଥିଲା
ସବୁଦିନ ନିଦ୍ରାଯାକ ନେତ୍ରରେ ଘାରିଲା ।

ବ୍ୟାସ ସରୋବରେ ରାଜା ପାଶୋରିଲା କଷ୍ଟ
ସେ ପନ୍ନଗ ନାରାୟଣ ନିଦ୍ରାରେ ଅଚେଷ୍ଟ ।
ଏହିକାଳେ ମହାଲକ୍ଷ୍ମୀ ପ୍ରବେଶିଲେ ଯାଇ
ଦେଖିଲେ ଅଚେଷ୍ଟା ହୋଇ ରାଜା ଅଛି ଶୋଇ ।
ତହୁଁ ରାଜାଙ୍କ ମସ୍ତକ ଧୀରେ ଧୀରେ ତୋଳି
ଆପଣା ଜାନୁ ଉପରେ ରଖିଲେ ସମ୍ଭାଳି ।
ରାଜାର ଅବସ୍ଥା ଦେଖି ଦେବୀ ଲୋକମାତ
ବିଷାଦିତ ହେଉ ନେତ୍ରେ ହେଲା ଅଶ୍ରୁ ଜାତ ।
ରାଜାଙ୍କ ଉପରେ ଯହୁଁ ପଡ଼ିଲା ସେ ଲୁହ
ଧାଡିକାରେ ଚେଇଁଉଠେ ଧୃତରାଷ୍ଟ୍ର ପୁଅ ।
ନୟନ ମଳି ଦେବୀଙ୍କ ବଦନକୁ ଦେଖି
ବୋଲେ କିମ୍ପା ଶୋକ କଲୁ ଆଗୋ ଚନ୍ଦ୍ରମୁଖୀ ।
ବନ୍ଧୁ ସୋଦର କରାଇ ହେଲି ହତପାଟ
ପ୍ରାଣଭୟେ ଲୁଚିଅଛି ମୋର ଏତେ କଷ୍ଟ ।
କିଏ ତୋର ପିତାମାାତା କେଉଁଠି ବସତି
କିଏ ତୁମ୍ଭର ବଲ୍ଲଭ କହ ଗୋ ଯୁବତୀ ।
ହତଶ୍ରୀ ଲୋକ ମୁଁ ମୋତେ କିସ ପାଇଁ ବନ୍ଧୁ
ତ୍ରୈଲୋକ୍ୟ ମୋହୁଛୁ ମାଗୋ କିସ ପାଇଁ କାନ୍ଦୁ ।
ବଦନ୍ତି ଯେ ମହାଲକ୍ଷ୍ମୀ ଆଦି ନାରାୟଣୀ
ମୁହିଁ ଶ୍ରୀକୃଷ୍ଣ ବଲ୍ଲଭୀ ଶୁଣ କୁରୁମଣି ।
ତୁ ଯେତେହେଲେ ରକତ ନଦେ ଗଲୁ ବୁଡ଼ି
ମୁହିଁ ତୋହର କନ୍ଧରୁ ହାତେ ଗଲି ଛାଡ଼ି ।
ବୁଲିଲି ସ୍ଵର୍ଗ ମର୍ତ୍ତ୍ୟାଦି ନବଖଣ୍ଡ ମହୀ
ତୋପରା ଲକ୍ଷଣବନ୍ତ ନ ଦେଖିଲି କାହିଁ ।
ଜନମକାଳୁ ତୋ କନ୍ଧେ ଥିଲି ପାଦ ଦେଇ
ତୋହର ଅଭାବେ ଏବେ ରହିବି ମୁଁ କାହିଁ ।
ଏଣୁ କରି ମନ ମୋର ବଡ଼ଇ ବ୍ୟାକୁଳ
ବେନି ଲୋଚନରୁ ମୋର ବହେ ଅଶ୍ରୁଜଳ ।
ଦୁର୍ଯ୍ୟୋଧନ ବୋଲେ ମାତ ତୁ ଯେବେ ସଦୟ
ତ୍ରୈଲୋକ୍ୟେ ଅଛି କେ ମୋର କରିବାକୁ ଜୟ ।
ପନ୍ନଗନାରାୟଣ ତୁ ବୋଇଲେ କମଳା
ତୋତେ ଜିଣିବାକୁ କ୍ଷମ ଭବେ କେହୁଥିଲା ।
ତୋତେ କି କ୍ଷମ ହୁଅନ୍ତେ ସହସ୍ରେ ପାଣ୍ଡବ
ଏତେ ଦ୍ୱନ୍ଦ୍ୱ ଭିଆଇଲେ ସିନା ବାସୁଦେବ ।
ରାଜା ବୋଲେ ଯେବେ ତୁ ଗୋ ଦୟାର ବାରିଧି
ମୋତେ ରଖିବାକୁ ମାଗୋ ଅଛି କି ତୋ ବୁଦ୍ଧି ।
ଲକ୍ଷ୍ମୀ ବୋଲେ କୃଷ୍ଣ ସହ ପାଣ୍ଡବେ ଆସିବେ
ତାହାଙ୍କ ବଳେ ଏ ପୁରେ ପଶି ନ ପାରିବେ ।
ଭୀମ ତିନି ସିଂହରଡ଼ି ଯେବେ ତୁ ସହିବୁ
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ପୁଣି ହିଁ ହୋଇବୁ ।

ରାଜା ବୋଲେ ଭୀମରଡ଼ି ସକଳ ସହିବି
କିମ୍ବା ବ୍ୟାସ ସରୋବରୁ ବାହାର ହୋଇବି ।
ଲକ୍ଷ୍ମୀ ବୋଲେ ତିନିରଡ଼ି ପାରିଲେ ସମ୍ଭାଳି
ଏଠାରେ ଭୀମ ମରିବ ନିଶ୍ଚେ ଅଗ୍ନି ଜାଳି ।
ଶୁଣି ସନ୍ତୋଷ ହୋଇଲା ସେ ମାନଗୋବିନ୍ଦ
ଲକ୍ଷ୍ମୀ ତିଆରି ବୋଲନ୍ତି ଯାଅ ବାବୁ ନିଦ ।
ଯେଉଁପରି ପୁରୁଷଙ୍କୁ ଖଟେ ସୁଭାରିଯା
ଦୁର୍ଯ୍ୟୋଧନଙ୍କୁ ସେପରି କଲେ ପରିଚର୍ଯ୍ୟା ।
ନିଜ ଜାନୁରେ ରଖିଲେ ଦୁର୍ଯ୍ୟୋଧନ ଶିର
କପାଳ ଆଉଁସି ସୁଖେ ଢାଳିଲେ ଚାମର ।
ନିଦ୍ରାରେ ସେ ଅସାକ୍ଷମ ମାନଚକ୍ରବର୍ତ୍ତୀ
ମହାସୁଖେ ନିଦ୍ରାଗଲା ଅଚେତନ ମତି ।
ଜୟ ତୁ ଶାରଳା ମାଗୋ ଝଙ୍କଡ଼ ବାସିନୀ
ଶୂଦ୍ରମୁନି ଶାରଳାର ଘେନିବୁ ଦଇନୀ ।

—୦—

## କୁନ୍ତୀଙ୍କର ଧିକ୍କାର ଓ ଭୀମଙ୍କର ପ୍ରତିଜ୍ଞା

ବଦନ୍ତି ଅଗସ୍ତି ମୁନି ଶୁଣ ମହୀପତି
ଏଥୁ ଅନନ୍ତରେ କଥା ହେଲା ଯେଉଁ ରୀତି ।
ରଣ ଜୟ କରିଗଲେ ସକଳ ପାଣ୍ଡବେ
ଇନ୍ଦ୍ରପ୍ରସ୍ଥରେ ପଶିଲେ ବଡ଼ାଇ ସମ୍ଭବେ ।
ବାଟେ ବୀରତୁର ବାଦ୍ୟ ଶତ୍ରୁଜିତ ଧ୍ୱନି
ଅର୍ଘ୍ୟ ଘେନି ଉପସ୍ଥିତ କୁନ୍ତୀ ଯାଜ୍ଞସେନୀ ।
ଗୋବିନ୍ଦ ବୋଇଲେ ଶୁଣ ଭୋଜର କୁମାରୀ
ବିଦୁର ଘରେ ବୋଇଲ କଥା ଯେଉଁପରି ।
ସେଦିନର କଥାଯାକ ଅଛି ନା ମନରେ
ଏକ ଚକ୍ରବର୍ତ୍ତୀ ହେଲେ ଏବେ ଏ ରାଜ୍ୟରେ ।
ଭୀଷ୍ମ ଶରଶଯ୍ୟା କଲେ ଦ୍ରୋଣ ନାଶ ଗଲେ
କର୍ଣ୍ଣ ଶିରଚ୍ଛେଦ ହେଲା ଶଲ୍ୟ ଜଳିଗଲେ ।
ଅଠାଣୋଇ ଭାଇ ପୁଣି ଦୁଃଶାସନ ମୂଳେ
ସମଦଣ୍ଡ ଘେନି ସୈନ୍ୟ ପଡ଼ିଲେ ସକଳେ ।
କୋଇନ୍ତା ବୋଇଲେ ହରି ଏ ବଡ଼ ସୁଲଭ
ତୋର ପ୍ରସାଦେ ଏ ଶିରୀ-ସିନା ବାସୁଦେବ ।
ସମରେ କେ ବଧ କଲା ମାନଗୋବିନ୍ଦଙ୍କୁ
କହ ତାର ଶିରେ ମୁହିଁ ଦେବଇଁ ଅର୍ଘ୍ୟକୁ ।
ଏମନ୍ତ ଶୁଣି ସକଳେ ହେଲେ ଚାହାଁ ଚାହିଁ
ଦୁର୍ଯ୍ୟୋଧନ କେ ମାଇଲା ନ ଜାଣନ୍ତି କେହି
କରପତ୍ରକୁ ଯୋଡ଼ିଣ ବୋଲେ ବୃକୋଦର ।
ଅପର୍ଯ୍ୟାପ୍ତ କଲି ମାତ ମୁହିଁ ତ ସମର ।

ନବ ଅଇବ୍ରତ ରଥୀ ପାଞ୍ଚକୋଟି ହସ୍ତୀ
ସାତକୋଟି ଯୋଦ୍ଧା ଅଶ୍ୱ ଅସଂଖ୍ୟ ପଦାତି ।
ଆଦିତ୍ୟ ଅସ୍ତଗଲା ଗୋ ଏତେକ ମାଇଲି
ମାନଗୋବିନ୍ଦ ବୋଲିଣ ଜାଣି ନ ପାରିଲି ।
କୁନ୍ତୀ ବୋଇଲେ ତୁ ଅଟୁ ଅନିବାର୍ଯ୍ୟ ଯୋଦ୍ଧି
ମୂର୍ଖ ପାଷାଣ୍ଡ ସିନାରେ କିସ ତୋର ବୁଦ୍ଧି ।
ଧାର୍ମିକ ଶୂରବନ୍ତ ତୁ ଧୀମନ୍ତ ପଣ୍ଡିତ
ତୁ ମାଇଲୁ କି ଅର୍ଜୁନ ଗାନ୍ଧାରୀର ସୁତ ।
କହେ କରପତ୍ର ଯୋଡ଼ି ବୀର ସବ୍ୟସାଚୀ
ଆଜର ସମର ମାତ ବହୁତ ହୋଇଛି ।
ଶୁଣ ସାବଧାନେ ମାଗୋ ଭୋଜର ଦୁହିତୀ
ମୁଁ କାଟିଲି ଆଜି ପାଞ୍ଚ ଅଇବ୍ରତ ରଥୀ ।
ଗଜ ଅଶ୍ୱ ଆଦିଙ୍କୁ ମୁଁ ମାଇଲି ପରାର୍ଦ୍ଧେ
ପଞ୍ଚସାଗର ଯୋଦ୍ଧାଙ୍କୁ ମାଇଲଇଁ ଯୁଦ୍ଧେ ।
କେମନ୍ତେ ଚିହ୍ନିବି ମୁହିଁ ଦୁର୍ଯ୍ୟୋଧନ ବୋଲି
ମାନଗୋବିନ୍ଦ ସମ୍ମୁଖେ ମୁହିଁ ନ ଦେଖିଲି ।
ଶୁଣି କୋଇନ୍ତା ଦେବୀର କମ୍ପିଲା କପାଳ
ଦୁର୍ଯ୍ୟୋଧନ ମାରିଛୁ କି କହରେ ନକୁଳ ।
ମାଦ୍ରୀନନ୍ଦନ କହଇ କର ଯୋଡ଼ି କରି
ମୁହିଁ ମାଇଲି ସମରେ ରଥୀ ସସ୍ତ୍ରଚାରି ।
ତିନି ଅୟୁତ ଯୋଦ୍ଧାଙ୍କୁ ମାଇଲି ଗୋ ମାୟେ
ପାଞ୍ଚ ଅୟୁତ ମାଇଲି ପୁଣ ଗଜ ହୟେ ।
ଅସଂଖ୍ୟ ଅସଂଖ୍ୟ ମାଗୋ ପଡ଼ିଲେ ସଇନି
ଦୁର୍ଯ୍ୟୋଧନ ବୋଲି ମୁହିଁ ନ ପାରିଲି ଚିହ୍ନି ।
କୁନ୍ତୀ ବୋଇଲେ ମୋହର ସର୍ବଜ୍ଞ ପଣ୍ଡିତ
ତୁହି ମାରିଅଛୁ କିରେ ସହଦେବ ପୁତ୍ର ।
ସହଦେବ ବୋଇଲେ ଗୋ ଶୁଣ ମାହେଶ୍ୱରୀ
ମୁହିଁ ମାଇଲି ସମରେ ରଥୀ ସସ୍ତ୍ରଚାରି ।
ଲକ୍ଷେକ ମାଇଲି ଆଗେ ଗଜ ଯୋଦ୍ଧାମାନ
ବେନିଲକ୍ଷ ଅଶ୍ୱ ରଥୀ କଲଇଁ ନିଧନ ।
କ୍ଷଉଣୀଏ ମାଇଲି ମୁଁ ପଦାତିକ ରଣେ
ମାନଗୋବିନ୍ଦ ମଲା କି ନ ମଲା ନ ଜାଣେ ।
ବାବୁ ତୁ ଅସଂଖ୍ୟ ରଣ କଲୁରେ ଯୁଧିଷ୍ଠି
ତୁ ମାଇଲୁ କିରେ ବାବୁ ରଣେ ଧାର୍ତ୍ତରାଷ୍ଟ୍ରି ।
ଯୁଧିଷ୍ଠି ବୋଇଲେ ମାଗୋ ସମର କଲଇଁ
ସହସ୍ରେକ ରଥି ରଣେ ବଧ କଲି ମୁହିଁ ।
ପଞ୍ଚସହସ୍ର ଯୋଦ୍ଧାଙ୍କୁ ମାଇଲି ମୁଁ ଧରି
ଅୟୁତେ ଅଶ୍ୱ ଛାମୁରେ ପଡ଼ିଲେ ମୋହରି ।
ଲକ୍ଷେକ ପଦାତି ମାଗୋ ରଣେ କଲି ବଧ
ମୁହିଁ ନ ପାରିଲି ଚିହ୍ନି କେ ମାନଗୋବିନ୍ଦ ।

କୁନ୍ତୀ ବୋଇଲେ ତୋହର ଆଶ୍ରେ ଅଛୁ ବତ୍ତି
ଏହା ତୁ ନ ଜାଣୁ କି ହୋ ଦେବ ଶିରୀପତି ।
ତୋତେ ଅବା କେଉଁ କଥା ଅଟେ ଅଗୋଚର
ପାଣ୍ଡବ ରକ୍ଷକ ବୋଲି ନାମଟି ତୋହର ।
ଦେଖିଛୁ କି ଦୁର୍ଯ୍ୟୋଧନ ରଣେ ହେଲା ହତ
ସେହି କଥା ଜାଣିଥିଲେ କହ ତୁ ତୁରିତ ।
ଶ୍ରୀକୃଷ୍ଣ ବୋଇଲେ ଆଜ ହେଲା ଯେ ସମର
ମାନବଙ୍କ କଥା ଛାଡ଼ ଦେବେ ଅଗୋଚର ।
ଅଶ୍ୱାରୋହୀ ଗଜାରୋହୀ ମରିଲେ ଅଗଣା
କେତେ ରଥୀ ମଲେ ତାହା ନୋହିବ କଳଣା ।
ପଦାତିକ କେତେ ମଲେ କିଏ ସେ ପଚାରେ
ରକ୍ତନଦୀ ବହିଗଲା ଯୋଜନ ବିସ୍ତାରେ ।
ଏକେତ ଅନ୍ଧାର ରାତି ଅଗୋଚର ରଣ
କିଏ ସେ ଚିହ୍ନିବ ମାନଗୋବିନ୍ଦ ବୋଲିଣ ।
ଶୁଣି ଅଧର କମ୍ପାଇ ଭୋଜର ଦୁଲାଳୀ
ଧାଡିକାରେ ପକାଇଣ ଦେଲେ ଅର୍ଘ୍ୟଥାଳୀ ।
ପୁଣି ବୋଇଲେ କୋଇନ୍ତା ଶୁଣ ଆଦିମୂଳ
କେହି ସିଂହ ନୁହନ୍ତି ଏ ସମସ୍ତେ ଶୃଗାଳ ।
ଏହାଙ୍କୁ ଯେ ଜାତ କଲି ଗର୍ଭ ମୋର ପୋଡୁ
ଏ ନିର୍ଲ୍ଲଜ ଆତ୍ମା ମୋର ଶରୀରରୁ ଛାଡୁ ।
ରେ ପାଣ୍ଡବ ଧିକ ହେଉ ତୁମ୍ଭର ଗାରିମା
ତୁ କେବଣ ରୂପେ ତାକୁ ପାଶୋରିଲୁ ଭୀମା ।
ଭୁଞ୍ଜାଇ ବସାଇ ତୋତେ ଦେଲା ବିଷଲଡୁ
ତୁ କେମନ୍ତେ ପାଶୋରିଲୁ ମନ ତୋର ପୋଡୁ ।
ବିଶେଷ ଅସାଷ୍ଟମ ହୋଇ ପଡ଼ିଲୁ ତୁ ଯହୁଁ
ବାନ୍ଧି ଅଗାଧ ସାଗରେ ପକାଇଲା ତହୁଁ ।
ନାଗୁଣୀ ଖାଉ ବୋଲି ରେ ପକାଇଲା ଜଳେ
ତୁ ତହୁଁ ପାରିହୋଇଲୁ ତୋର ପୁଣ୍ୟବଳେ ।
କପଟ ପଶାର କାଳେ ଦେଲା ଯେତେ ଶାସ୍ତି
ଗଳଥା ମାରି ସଭାରେ ବସାଏ ସବୁନ୍ତି ।
ଶତ ଭାଇଙ୍କୁ ମାରିବୁ ପ୍ରତିଜ୍ଞା ତୁ କଲୁ
ଶୃଗାଳ ମାରି ସିଂହକୁ ଦେଖି ପଳାଇଲୁ ।
ନିତାନ୍ତ ବଇରି ଯେହୁ ଛାଡ଼ିଦେଲୁ ରଣେ
ମଧ୍ୟ ବଇରି ମାଇଲୁ ତୁହି ଅକାରଣେ ।
ଧିକ ହେଉ ମୋତେ ଆରେ ଗର୍ଭେ ଠାବ କଲି
ସିଂହପୁତ୍ର ଜାତ କରି ଶୃଗାଳ ପାଇଲି ।
ଧିକ ଧିକ ହେଉ ତୋର ବୀର ଶୁରପଣ
ଧିକ ବୃକୋଦର ନାମ ଧରିବାର ଜାଣ ।
ଧିକ ତୋର କାଳଦଣ୍ଡ ସମ ବେନି ଗଦା
ଧିକ ହେଉ ତୋ ବିକ୍ରମ ରୂପକୁ ସର୍ବଦା ।

ଧିକ ହେଉରେ ଅର୍ଜୁନ ବୀରପଣ ତୋର
ଧିକ ଧିକ ଦଶନାମ ବୃଥା କହିବାର ।
ଧିକ ହେଉ ତୋର ନୃପପଣକୁ ଯୁଧିଷ୍ଠି
ପାଶୋରିଲ ବନେ ଯେତେ ପାଇଲୁ ଅରିଷ୍ଟି ।
ଅମାତ୍ୟ ଫଳ ଯେ କନ୍ଦମୂଳକୁ ଖାଇଲୁ
ଦୁର୍ଯ୍ୟୋଧନ ପାଇଁ କେତେ କଷ୍ଟ ନ ସହିଲୁ ।
କେତେ ଦୁଃଖ ନ ପାଇଲୁ ବିଶ୍ୱାବସୁ ପୁରେ
ସମସ୍ତେରେ ଭିକ୍ଷାପାତ୍ର ଧରିଥାଅ କରେ ।
ସମସ୍ତେରେ ଭିକ୍ଷା ମାଗି ମାଗି ବୁଲୁଥାଅ
ପାଞ୍ଚଜଣ ଚାରିମାଣ ତଣ୍ଡୁଳକୁ ପାଅ ।
ତାକୁ ରାନ୍ଧି ଅଧେ ମୁହିଁ ଦିଅଇ ଭୀମାକୁ
ଅଧିକ ବାଣ୍ଟି ଦିଅଇ ତୁମ ଚାରିହିଁଙ୍କୁ ।
ତହିଁରୁ ଯେ ପେଜତକ ବାକୀ ରହିଥାଏ
ତାହାକୁ ଖାଇ ମୁଁ କଷ୍ଟେ କାଳକାଟି ନିଏ ।
ପୁଣି ଭୀମା ଯେଉଁଦିନ କରଇ କଟାଳ
ପେଜତକ ଦେଇ ରହେ ଉପାସେ କେବଳ ।
ବିଚାରିଲି ଭୀମକୁ ମୁଁ ବକ ମୁଖେ ଦେବି
ୟାକୁ ବକ ଦୈତ୍ୟ ଖାଉ ଚାରିଙ୍କି ପୋଷିବି ।
ସେ ଦୈତ୍ୟ ଯେବେରେ ଭୀମ ଖାଇଥାନ୍ତା ତୋତେ
ଏ ଅବସ୍ଥା କାହିଁପାଇଁ ପାଆନ୍ତି ମୁଁ ଏତେ ।
ତୋତେ ଯେଣୁ ଆଶ୍ରେ କରିଅଛି ଦେବ ହରି
ତୋର ଦର୍ପେ ଏବେ ଦ୍ୱନ୍ଦ୍ୱ କେବଣ ଆମ୍ଭରି ।
ଏ ମୂର୍ଖ ପାମର ସିନା ହେଲେ ମୂଢ଼ମତି
ତୁ କିମ୍ପାଇଁ ଏତେ ହେଳା କଲୁ ଶିରୀପତି ।
ଶଙ୍ଖ ଚକ୍ର ଗଦା ପଦ୍ମ କରେ ଧରିଥାଉ
ଏମନ୍ତ କରିଲୁ ଯେବେ ତାହା ଧିକ ହେଉ ।
ଜଗନ୍ନାଥ ନାଥ ତୋର ଜଗତ କାରଣ
ସେହି ନାମଗୋଟି ଧିକ ହେଉ ନାରାୟଣ ।
କୋଇନ୍ତା ମୁଖରୁ କୃଷ୍ଣ ନିନ୍ଦାବାଣୀ ଶୁଣି
ଭୀମସେନ ଚଳି ହୋଇ ଉଠେ ଶିରଝୁଣି ।
ଅଧରକୁ ପୁଷ୍ଟ କରି କୋପରେ କହଇ
ତୋହର ବଚନ ଶୁଣି ପାଷାଣ ଝଡ଼ଇ ।
କର ଉଞ୍ଚାଇଣ ମାରି ଲୋଡ଼ଇ ସେ ଭୀମ
କୋଳ କରିଣ ଧଇଲେ ପୁରୁଷ ଉତ୍ତମ ।
ବୋଇଲେ ଏହା ଉଚିତ ନୁହଇ ତୋହରି
ଗୁରୁଠାରୁ ମହାଗୁରୁ ଅଟେ ଗର୍ଭଧାରୀ ।
ଭୀମ ବୋଇଲେ ଯେତେ ଗୋ ଝିଙ୍ଗାସିଲ ଆସି
ଏହିକ୍ଷଣି ଲୋଡ଼ିବି ମୁଁ ରଣଭୂଇଁ ପଶି ।
ମୃତପିଣ୍ଡ ଲୋଡ଼ି ଯେବେ ନ ପାଇବି ତହିଁ
ତ୍ରୈଲୋକ୍ୟରେ ଲୁଚିଥିଲେ ମାରିବି ମୁଁ ଯାଇ ।

ଉଦେଠାରୁ ଅସ୍ତ ମଧ୍ୟେ ନ ମାରିଲେ ଆଜ
ଅଗ୍ନି ଜାଳି ସେ ଭୂମିରେ ହୋଇବି ଦହିର୍ଯ୍ୟ ।
ରଖନ୍ତି ଯଦ୍ୟପି ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ହର
ନିଶ୍ଚୟ ମାରିବି ଆଜ କୌରବ ଈଶ୍ୱର ।
ମାନଗୋବିନ୍ଦକୁ ଆଜ ନ କଲେ ସଂହାର
ନ ଚାହିଁବି ଆଉ ଆସି ମୁଖକୁ ତୋହର ।
ଆଜି ଯେବେ ଦୁର୍ଯ୍ୟୋଧନ ରଣେ ନ ମରଇ
ନିରଞ୍ଜନ ଥାଳେ ମୁହିଁ ବିଷକୁ ଭରଇ ।
ଆଜି ଦୁର୍ଯ୍ୟୋଧନ ମୁହିଁ ନ ପାରିଲେ ନାଶି
କୃଷ୍ଣ ଯୁଧିଷ୍ଠିର ପାଦେ ହୋଇବଇଁ ଦୋଷୀ ।
ଏତେକ କହି ବାହାର ହେଲ ପଞ୍ଚବୀରେ
କୃଷ୍ଣ ସାତ୍ୟକି ଦୁର୍ଦ୍ଧକ୍ଷ ଚଳିଲେ ସଙ୍ଗରେ ।
ପଞ୍ଚଲକ୍ଷ ରଥ ପୁଣି ବେନିଲକ୍ଷ ହସ୍ତୀ
ପାଞ୍ଚଲକ୍ଷ ଅଶ୍ୱ ଦୁଇ କ୍ଷଉଣୀ ପଦାତି ।
ପାଣ୍ଡବଙ୍କ ଦଳରେ ଯେ ଏତେକ ସଇନି
ରଣ ଭୂମିରେ ପ୍ରବେଶ ନିକଟ ରଜନୀ ।
ଦୂରେ ରହିଣ ଶୁଣିଲେ କିଳିକିଳା ନାଦ
ପାଣ୍ଡବଙ୍କ ଥାଟେ ଶୁଭିଲା ଜୟର ଶବଦ ।
ରଟମଟ କଟମଟ ଶୁଭେ ଝଣ ଝଣ
ଯେସନେକ ଆକାଶରୁ ପଡ଼େ ଇନ୍ଦ୍ରବାଣ ।
ମେଦ ମାଂସକୁ ଭକ୍ଷନ୍ତେ ଉକୁଟେ ଶୋଣିତ
ଊର୍ଦ୍ଧ୍ୱକୁ ଯାଇ ପଡ଼ଇ ବୃଷ୍ଟି ଜଳବତ ।
ରୁଧିର ମାଂସ ଦେବୀଏ କରନ୍ତି ଆହାର
ଡିବିଡିବି ଡମ୍ବରୁ ଯେ ବାଜେ ଘୋରତର ।
ଲକ୍ଷ ଲକ୍ଷ ଜିହ୍ୱା କରି ତହିଁ ଦେବୀଗଣ
ସମସ୍ତ ରଣଭୂମିରେ ଅଛନ୍ତି ବ୍ୟାପିଣ ।
ମେଦମାଂସ ଦେବୀଗଣ କରନ୍ତି ଭକ୍ଷଣ
ଉଲଗ୍ନ ହୋଇ ନାଚନ୍ତି ପ୍ରଚଣ୍ଡ ହୋଇଣ ।
କିଏ ତୁଣ୍ଡ ବିସ୍ତାରିଣ ପିଅନ୍ତି ଶୋଣିତ
କେହୁ ହାଡ଼ମାଳ ଗଳେ ହୋଇଛି ଭୂଷିତ ।
ବଜାବନ୍ତି ବିଜିଘୋଷ ଘୁମୁରା ଦାଉଣ୍ଡି
ଗାଇ ନାଚନ୍ତି ଖେମଟା ତାଳେ ନାଟଖଣ୍ଡି ।
ଆକାଶେ ଓଷ୍ଠ ପୃଥ୍ୱୀରେ ଲାଗିଅଛି ପାଟି
ଏକ ଗ୍ରାସକେ ଗିଳନ୍ତି ଶବ କୋଟି କୋଟି ।
ନାଚନ୍ତି ଗାବନ୍ତି କେହି ଅତି ରଙ୍ଗ ରସେ
କେ ମୃତପିଣ୍ଡ ଫିଙ୍ଗନ୍ତି ଅତ୍ୟନ୍ତ ହରଷେ ।
ଉପରକୁ ଫିଙ୍ଗିଦେଇ ତଳେ ତୁଣ୍ଡ ପାତି
ଯେ ମୁଖେ ପଡ଼ନ୍ତେ ରଡ଼ମଡ଼ରେ ଚୋବାନ୍ତି ।
ଅନନ୍ତ ବିଜୟା ରୂପ ଅକାଳ ଅଶାନ୍ତି
ହସ୍ତରେ ଖଣ୍ଡା ଖର୍ପର ଅଛଇ ସବୁନ୍ତି ।
ବିକଟ ଭୈରବୀ ମୂର୍ତ୍ତି ଆବର କଙ୍କାଳୀ
ଟହ ଟହ ନାଦ କରି ଦ୍ୟନ୍ତି ହୁଳହୁଳି ।
ଭୂତ ପ୍ରେତ ପିଶାଚ ଯେ କରୁଛନ୍ତି ଖେଳ
ଏ ରୂପେ ରଣଭୂଇଁରେ ହୋଇଛନ୍ତି ମେଳ ।
ଜୟ ତୁ ଶାରଳା ମାଗୋ ପରମ ବୈଷ୍ଣବୀ
ଗଦାପର୍ବ ଲେଖିଲି ମୁଁ ତୋର ପାଦ ସେବି ।
ତୁ ମାତ ସଦୟ ହୋଇ ପୂରା ମନୋବାଞ୍ଛା
କାଳ କବଳରୁ ମୋତେ ବାରେ ମାତ୍ର ବଞ୍ଚା ।
ଅଭୟ ବର ଦାୟିନୀ ଶରଣ ରକ୍ଷଣୀ
ଶରଣ ପଶେ ଶାରଳା ଦାସ ଶୂଦ୍ରମୁନି ।

—୦—

## ପଞ୍ଚପାଣ୍ଡବଙ୍କର ଦୁର୍ଯ୍ୟୋଧନକୁ ଅନୁସନ୍ଧାନ୍

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ପାଣ୍ଡବଙ୍କୁ ଦେଖି ବୀର ପଳାଇ ଯାଆନ୍ତି ।
ଦେବୀଗଣ ତହିଁ ଥିଲେ ହୋଇ ଉଲଗନ
ଶ୍ରୀକୃଷ୍ଣଙ୍କୁ ଦେଖି ସର୍ବେ ହେଲେ ଅନ୍ତର୍ଦ୍ଧାନ ।
ଅନେକ ଦିହୁଡ଼ି ହୁଳା ପାଣ୍ଡବେ ଯେ ଘେନି
ମାନଗୋବିନ୍ଦକୁ ଲୋଡୁଛନ୍ତି ରଣଭୂମି ।
ମୃତ ପିଣ୍ଡମାନଙ୍କୁ ଯେ ଜଣ ଜଣ ହୋଇ
ଖୋଜୁଛନ୍ତି ଏଣେ ତେଣେ ବୁଲି ଲେଉଟାଇ ।
ରାତ୍ର ପ୍ରହରକ ଥାଉଁ ଖୋଜି ମୃତପିଣ୍ଡ
ଦିନକର ନାଥ ଆସି ହେଲେ ପାଞ୍ଚଦଣ୍ଡ ।
ମାନଗୋବିନ୍ଦ ରାଜାଙ୍କୁ ନ ପାଇଲେ ଲୋଡ଼ି
ଭୀଷ୍ମଙ୍କ ଆଗେ ମିଳିଲେ ସର୍ବେ କରଯୋଡ଼ି ।
ପାଣ୍ଡବ ପାଞ୍ଚଭାଇ ଯେ ଚରଣେ ପ୍ରଣମି
ଦୁର୍ଯ୍ୟୋଧନ କେଣେ ଗଲା ଦେଖିଛ କି ସ୍ୱାମୀ ।
ଅନେକ ବିନୟୀ ହୋଇ ପୁଚ୍ଛନ୍ତି ପାଣ୍ଡବେ
କିଛି ନ କହି ରହିଲେ ଭୀଷ୍ମ ମୌନଭାବେ ।
ଗୋବିନ୍ଦ ବୋଇଲେ ଏବେ ଜାଣିଲୁ ତଦନ୍ତ
ଏହାଙ୍କୁ ଜଣାନ୍ତେ ରାଜା ହୋଇଲେ ଗୁପତ ।
ଯୁଧିଷ୍ଠି ବୋଇଲେ ସ୍ୱାମୀ ତୋର ଦୟା ମୋତେ
ଶସ୍ତ୍ର ଛାଡ଼ିଲ ତୁମ୍ଭେ ଯେ ଆମ୍ଭର ନିମନ୍ତେ ।
ଆଜ୍ଞା ଦେଲେ ଶତ୍ରୁ ମାରି ହୁଅ ଚକ୍ରବର୍ତ୍ତୀ
ମହତ ବଚନ ଦେବ ହେଉଛି ଅନୀତି ।
ଯାକୁ ସ୍ଥାପି ତାହାକୁ କି ନାଶ କଦାଚିତେ
ଦୁଃସହ ସଙ୍କଟ ଆସି ପଡ଼ିଲାଣି ମୋତେ ।
ଭୀମ ପ୍ରତିଜ୍ଞା କଲାକ ଅତ୍ୟନ୍ତ ଗରିଷ୍ଠ
ଦୁର୍ଯ୍ୟୋଧନ ନ ମାଇଲେ ଆଜ ହେବ ନଷ୍ଟ ।

ଏତେକ କଷ୍ଟ ପଡ଼ିଲା ଆସିଣ ଆମ୍ଭକୁ
କହ ଦୁର୍ଯ୍ୟୋଧନ ଗଲା କେବଣ ଠାବକୁ ।
ଅନେକ ବିନୟୀ ହେଲେ ପାଣ୍ଡବ ଅଚ୍ୟୁତ
ନ ଦେଲେ ସମସ୍ୟା କିଛି ତାଙ୍କୁ ଗଙ୍ଗାସୁତ ।
ଭୀଷ୍ମଙ୍କ ମଉନ ଦେଖି ଦେବ ହୃଷୀକେଶ
ଜାଣିଲେ ଏ ଦୁର୍ଯ୍ୟୋଧନେ ପୁଣ କଲେ ଆଶ ।
ତହିଁ ଯୁଧିଷ୍ଠିରଙ୍କି ଗୁପ୍ତେ କହନ୍ତି ଅଚ୍ୟୁତ
ମାନଗୋବିନ୍ଦର ଏ ଯେ ଜାଣନ୍ତି ତଦନ୍ତ ।
ସହଦେବଙ୍କ ବଦନ ଚାହିଁ ଚକ୍ରପାଣି
କହନ୍ତି ମାନଗୋବିନ୍ଦ ଗଲା କାହିଁ ପୁଣି ।
ସହଦେବ ବୋଲେ ଶୁଣ ଦେବ ଜଗନ୍ନାଥ
ସର୍ବଶେଷେ ମହାଭୟ ଲଭି କୁରୁନାଥ ।
ଭୀମ ହସ୍ତରେ ସୁହସ୍ତୀ ହସ୍ତୀ ନାଶଗଲା
ତା ଘଣ୍ଟା ମଧ୍ୟରେ ମାନଗୋବିନ୍ଦ ଲୁଚିଲା ।
ତହିଁ ଉପରେ ପଡ଼ିଲା ସେହି ମତ୍ତଗଜ
ତହିଁ ଉପରେ ପଡ଼ିଲା ବାଜି ରଥ ଧ୍ୱଜ ।
ତହିଁ ଉପରେ ପଡ଼ିଲେ ଅନେକ ସଇନି
ତହିଁ ଉପରେ ବହିଲା ରକ୍ତ ତାଳ ତିନି ।
ରଣ ଶେଷେ ସେଠାବକୁ ଯହୁଁ ସର୍ବେ ଗଲେ
ମାନଗୋବିନ୍ଦ ସେ ଘଣ୍ଟା ମଧ୍ୟୁ ବାହାରିଲେ ।
ମୃତ ପିଣ୍ଡମାନେ ଧରି ବହୁତ କାନ୍ଦିଲା
ରକତ ନଦୀକି ପାରି ହୋଇ ନ ପାରିଲା ।
ଲକ୍ଷ୍ମଣ କୁମର ପୁତ୍ର ଉପରେ ପଡ଼ିଲା
ରୁଧିର ନଦୀକୁ ରାଜା ପାରି ହୋଇଗଲା ।
ଗଦାକୁ ଘେନିଣ ତହୁଁ ଗାତେକ ଖୋଳିଲା
ସପତ ତାଳ ଗହୀରେ କୁମରେ ପୋତିଲା ।
ତିନିପ୍ରହର ରାତ୍ରିରେ ହେଲା ଯାଙ୍କ କତି
ଜୀବନଦାନ ମାଗିଲା କରି ବହୁ ସ୍ତୁତି ।
ଏ ବୋଇଲେ ଯେବେ ପୁଣି ପ୍ରାଣେ କଲ ଆଶ
ବ୍ୟାସ ସରୋବରେ ଯାଇ ବେଗେ ରାତ୍ରେ ପଶ ।
ଏହାଙ୍କ ବଚନ ଘେନି ଅତି ବେଗେ ଧାଇଁ
ହସ୍ତିନା ରାଜ୍ୟେ ପ୍ରବେଶ ହୋଇଲେକ ଯାଇଁ ।
ଦେଖି ଅପାର ବୈକୁଲ୍ୟ ହେଲା ଧୃତରାଷ୍ଟ୍ର
ତୋହର ପାଇଁ ବାବୁରେ ପାଇଲି ମୁଁ କଷ୍ଟ ।
ବହୁ କଥାପରେ ପିତା କହିଲା ପୁତ୍ରରେ
ପ୍ରାଣ ଘେନି ପଶ ଶୀଘ୍ର ବ୍ୟାସ ସରୋବରେ ।
ତାହାଙ୍କ ବଚନ ଶୁଣିଯାଏ କୁରୁବୀର
ପ୍ରବେଶ ହୋଇଲା ଯାଇଁ ଦୁର୍ବାସା ଛାମୁର ।
ଅନେକ ବିନୟ ଯାଇ ହେଲା ଦୁର୍ବାସାଙ୍କୁ
ଶରଣ ମାଗିଲା ନିଜ ପ୍ରାଣ ପାଇବାକୁ ।

ଋଷି ଆଜ୍ଞାଦେଲେ ପଶ ବ୍ୟାସ ସରୋବରେ
ତହିଁ ସେ ପଶିଛି ଯାଇ ତାହାର ଭିତରେ ।
ଅନ୍ତରୀକ୍ଷ ପୁରେ ଯାହା ଶିବ ଥିଲେ ସଞ୍ଚି
ସେ ପୁରରେ ଦୁର୍ଯ୍ୟୋଧନ ଯାଇ ଶୋଇଅଛି ।
ଉପରେ ରହିଛି ତହିଁ ଏକ କାଳସର୍ପ
ଅଚେଷ୍ଟାରେ ନିଦ୍ରା ତହିଁ ଯାଇଅଛି ନୃପ ।
କମଳାଙ୍କ ଜାନୁ ଦେଶେ ଦେଇଅଛି ଶିର
ଡାହାଣ କରରେ ଲକ୍ଷ୍ମୀ ତାଳନ୍ତି ଚାମର ।
ମନ୍ତ୍ରୀ ଚୂଡ଼ାମଣି ଯହୁଁ କହିଲା ଏ ବାଣୀ
ଭୀଷ୍ମ ଆଶ୍ଚର୍ଯ୍ୟ ହୋଇଲେ ଏହି କଥା ଶୁଣି ।
ଧାମନ୍ତି ପାଣ୍ଡବମାନେ ପବନହୁଁ ଖରେ
ରେ ରେ ମାନଗୋବିନ୍ଦ ତୁ ଯିବୁ କେଉଁଆଡ଼େ ।
ବେଳ ହୋଇଲାଣି ଆସି ଦେଢ଼ ଯେ ପ୍ରହର
ବିଶାଶତେ ଯୋଜନ ସେ ଗଲେ ଅତି ଖର ।
ପ୍ରବେଶ ହୋଇଲେ ଯାଇଁ ବ୍ୟାସ ସରୋବରେ
ଦେଖିଲେ ଲେଉଟିପାଦ ପଡ଼ିଛି ବାଲିରେ ।
ନକୁଳ ବୋଇଲେ ଦେବ ଏଥି ପଶିଗଲା
ରହି ନ ପାରିଣ ପୁଣି ପଳାଇଣ ଗଲା ।
ଦୁର୍ବାସାଙ୍କ ପାଶେ ଯାଇ ପୁଛନ୍ତି ପ୍ରଣମି
ଦୁର୍ଯ୍ୟୋଧନ କେଣେ ଗଲା ଦେଖିଲ କି ସ୍ୱାମୀ ।
ଦୁର୍ବାସା ମୁନି ଶୁଣିଣ ନ କହିଲେ ବାଣୀ
ବସିଛନ୍ତି ମହାତମା ମୌନବ୍ରତ ଜାଣି ।
ଧାମନ୍ତି ପାଣ୍ଡବ ଆଦି ଖୋଜି ଘୋରବନେ
ଡାକନ୍ତିରେ ଦୁର୍ଯ୍ୟୋଧନ ଅଛୁ କେଉଁସ୍ଥାନେ ।
ବନଗିରି କନ୍ଦରେ ସେ ଲୋଡ଼ି ଚଉକତି
ଦେଖି ନ ପାରିଲେ ରାଜା ମାନଚକ୍ରବର୍ତ୍ତୀ ।
ଶ୍ରୀକୃଷ୍ଣ ପାଣ୍ଡବ ପୁଣି ସରଠାକୁ ଗଲେ
ଏକା ଧୃଷ୍ଟଦ୍ୟୁମ୍ନ ରହି ବନେ ଖୋଜୁଥିଲେ ।
ବିଧୁତ ନାମରେ ତହିଁ ଏକ ଗୋଟି ବ୍ୟାଧ
ଡାଳ ଆବର ଶିଳାରେ କରିଣ ସେ ସଧ ।
ନଳଗୁଡ଼ିକ ଡାହାଣେ ବାମେ ଅଠାକାଠି
ପକ୍ଷୀଙ୍କି ଯେ ନିରେଖଇ କରି ଏକ ଦୃଷ୍ଟି ।
ଧୃଷ୍ଟଦ୍ୟୁମ୍ନ ପଚାରିଲେ ତାର ପାଶେ ଯାଇ
କହ ବେଣ୍ଟକାରେ ତୁହି ଆସିଛୁ କିମ୍ପାଇଁ ।
ବ୍ୟାଧ ବୋଲେ ଭୀମଙ୍କର ମୁଁ ଅଟେ ନିଯୋଗୀ
ଚକୁଆ ଚକୋଇ ମାରି ନିତ୍ୟେ କରେ ଲାଗି ।
କାଲି ଘେନିଗଲା ପକ୍ଷୀ ଆଠଗୋଟି ଧରି
ମଡ଼ଫୁଲ ଘରେ ଦେଲି ଅତି ଯତ୍ନ କରି ।
ଭୀମସେନ ଠାକୁର ଯେ ପ୍ରତିଜ୍ଞା କରିଲେ
ମଣୋହି ନୋହିବ କୁରୁ ରାଜା ନ ମାଇଲେ ।

ତେଣୁ କରି ମଣୋହି ଯେ ନ ହୋଇଲା କାଲି
ସେଥିକି କାଠପେଡ଼ିରେ ପୂରାଇ ରଖିଲି ।
ଯହୁଁ ପ୍ରବେଶ ହୋଇଲା ଆସି ଘୋର ରାତି
ସେ ଚକୁଆ ସୁମରିଲେ ପ୍ରଭୁ ଦାଶରଥି ।
ସ୍ୱାମୀ ଆମ୍ଭେ ଥିଲୁ ଯେବେ ପମ୍ପାସର ତୀର
ତୋହର ସୀତାକୁ ନେଇ ଲଙ୍କାର ଈଶ୍ୱର ।
ଭୋସ୍ୱାମୀ ବ୍ୟାକୁଳ ହୋଇ ପୁଚ୍ଛିଲେ ଆମ୍ଭକୁ
ସୀତାକୁ କେ ହରିନେଲା ଦେଖିଲ କି ତାକୁ ।
ବହୁତ ବେଳ ପର୍ଯ୍ୟନ୍ତ ପୁଚ୍ଛାକଲୁ ତୁହି
ଆମ୍ଭେ ବୋଇଲୁ ତୋ ସୀତା କିଏ ସେ ଜାଣଇଁ ।
ତାହା ଶୁଣି କୋପ କଲ ଆହେ ରାମଚନ୍ଦ୍ର
ପକ୍ଷୀ ହୋଇକରି ତୁମ୍ଭେ ଅଟ ଏଡ଼େ ମନ୍ଦ ।
ଜାଣ କି ନ ଜାଣ କହି ହୋଇଥାନ୍ତ ତୁନି
ବହୁତ ଝିଙ୍ଗାସ କିମ୍ପା କଲ ତୁମ୍ଭେ ବେନି ।
ମୁହିଁ ବୁଲୁଛି ଯେସନେ ହୋଇ ପତ୍ନୀଭ୍ରଷ୍ଟ
ତୁମ୍ଭଙ୍କୁ ହେଉରେ ମୁହିଁ ପାଉଛି ଯେ କଷ୍ଟ ।
ଦିବସରେ ପତି ପତ୍ନୀ ଏକ ଯୋଗ ହେଉ
ରାତ୍ରେ ଏକଯୋଗ ହେଲେ ମୂର୍ଦ୍ଧା ଫାଟିଯାଉ ।
ସ୍ୱାମୀ ତୁମ୍ଭର ଶାପ ତ ନୋହିଲା ଆମ୍ଭରେ
ପତି ପତ୍ନୀ ଏକତ୍ରରେ ରହିଲୁ ପେଡ଼ିରେ ।
ତ୍ରେତୟା ଯୁଗର ଶାପ ପକ୍ଷୀୟ ସୁମରୁ
ଦୁଇଫାଳ ହେଲା ପେଡ଼ି ସେକ୍ଷଣି ତହିଁରୁ ।
ଉଡ଼ି ପଳାଇଲେ ସବୁ ଚକୁଆ ଚକୋଇ
ଆଶ୍ଚର୍ଯ୍ୟ ହୋଇଲି ଦେଖି ଏକପକ୍ଷୀ ନାହିଁ ।
ଭୀମ ଠାକୁର ମାରିବେ ଆଜ ଦୁର୍ଯ୍ୟୋଧନ
ମଣୋହି ବେଳକୁ ପକ୍ଷୀ ହୋଇବ ବ୍ୟଞ୍ଜନ ।
ତେଣୁ କରି ସ୍ୱାମୀ ମୁହିଁ ବୁଲଇ ନିରୋଳେ
ଖୋଜଇ ମୁଁ ନଦୀକୂଳେ ଲୋଡ଼ିଡାଳେ ଡାଳେ ।
ଧୃଷ୍ଟଦ୍ୟୁମନ ବୋଇଲେ ନୁହଁ ତୁ ବିମନ
ଦୁର୍ଯ୍ୟୋଧନେ ଲୋଡୁଛନ୍ତି ବୀର ଭୀମସେନ ।
ମାନଗୋବିନ୍ଦ ପଳାଇଗଲା କେଉଁ କତି
ଦେଖିଲୁ କି ଆରେ ବ୍ୟାଧ କହ ତେଜି ଭୀତି ।
ସେ ବ୍ୟାଧ ବୋଇଲା ମୁହିଁ ଘେନି ଅଠାକାଠି
ପକ୍ଷୀଙ୍କି ଖୋଜଇ ସଦାକରି ଊର୍ଦ୍ଧ୍ୱଦୃଷ୍ଟି ।
ମାନଗୋବିନ୍ଦ କିଏ ସେ ମୁହିଁ ନ ଚିହ୍ନଇ
ଜଣେ ହେ ପଶିଲା ସରେ ପଛଘୁଞ୍ଚା ଦେଇ ।
ବାଳାର୍କ ପ୍ରାୟ ମୁକୁଟ ଶୋଭଇ ତା ମାଥେ
ଗିରିବର ସମାନରେ ବେନି ଗଦା ହାତେ ।
ରୁଧିରେ ତ୍ରିପଣ୍ଡ ଦିଶେ ଦେହ ମହାଶ୍ରମୀ
ବ୍ୟାସସରେ ପଶିଲା ସେ ପଛୋଇଣ ସ୍ୱାମୀ ।
ଶୁଣି ଧୃଷ୍ଟଦ୍ୟୁମ୍ନ ହେଲେ ଅତ୍ୟନ୍ତ ହରଷ
ଜଣାଇଲେ ସର୍ବକଥା ପାଣ୍ଡବଙ୍କ ପାଶ ।
କାଳଚକ୍ର ପ୍ରାୟ ଭୀମ ବୁଲାଇଲା ଆଖି
ରାଗେ ପ୍ରତ୍ୟୁତ୍ତର ଦିଏ ଦୁର୍ବାସା ପକ୍ଷୀଙ୍କି ।
ମାନଗୋବିନ୍ଦ ରାଜାକୁ ବୁଦ୍ଧି ଦେଲୁ ଯତି
ପଛଘୁଞ୍ଚା ଦେଇ ଏଥି ପଶେ କୁରୁପତି ।
ବିନୟରେ ପୁଚ୍ଛାକଲୁ ନ କହୁ ଆମ୍ଭଙ୍କୁ
ରକ୍ଷା କରି ପାରିବୁ ନା ମାନଗୋବିନ୍ଦକୁ ।
ଆରେ ରେ କୌରବା ବୋଲି ଧାଏଁ ବୃକୋଦର
ଉଦ୍ୟତ ହେଲା ପଶିବ ବ୍ୟାସ ସରୋବର ।
କୋଳ କରିଣ ଧଇଲେ ତାକୁ ଚକ୍ରପାଣି
ବୋଇଲେ ଅଜ୍ଞାନୀ ତୁହି ଅଟୁ ମନ୍ଦପ୍ରାଣୀ ।
ବ୍ୟାସ ସରୋବରେ ରହି ଅଛନ୍ତି ଓଡ଼ପା
ଶରଣ ଉଦ୍ଧାରଣ ସେ ତୋର ଦର୍ପ କିମ୍ପା ।
ଶରଣ ପଶିଲେ ନିଶ୍ଚେ ନିଅନ୍ତି ସମ୍ଭାଳି
ବଳାତ୍କାରେ ଯେ ପଶିବ ନିଶ୍ଚେ ଯାଏ ଜଳି ।
ଏହାକହି ରମାନାଥ ହୋଇଲେ ଭାବିତ
ଦୁର୍ଯ୍ୟୋଧନ କେଉଁରୂପେ ହେବ ବିହର୍ଗତ ।
ଆହେ ଦୟାମୟ ହରି ଶରଣ ପଞ୍ଜର
ତବ ପାଦପଦ୍ମେ ମତି ରହୁ ନିରନ୍ତର ।
ନ ବାଧୁ ମୋତେ ଏ କଳିକଲୁଷର ଦାଉ
ନିରନ୍ତରେ ସତ୍ୟପଥେ ମୋର ଦିନ ଯାଉ ।
କ୍ଷଣେ ନ ରଖିବ ମୋତେ କୁସଙ୍ଗୀର ସଙ୍ଗେ
ସାଧୁ ପଦରଜ ସଦା ପଡୁ ମୋର ଅଙ୍ଗେ ।
ହେ ମହାବାହୁ ମୁଁ ସର୍ବ ବିଷୟେ ବଞ୍ଚିତ
ଶାରଳା ଦାସକୁ ଦୟା କରିବ କିଞ୍ଚିତ ।

—୦—

## ଦକ୍ଷଯଜ୍ଞ ଓ ବ୍ୟାସ ସରୋବର ବିବରଣ

କହୁଛନ୍ତି ବୈବସ୍ୱତ ମନୁ ନୃପରାଣ
ହେ ଅଗସ୍ତି ମୁନି ମନେ କରିଲ କାରଣ ।
ତୁମ୍ଭ କୃପାରୁ ଭାରତ ଶୁଣି ପ୍ରତିଦିନ
ଦେହରୁ ପାତକମାନ ହେଉଛି ଖଣ୍ଡନ ।
ବ୍ୟାସ ସରୋବର କଥା ଅତି ଆଚମ୍ୱିତ
ତହିଁ ଯେ ବଳେ ପଶଇ ହୁଏ ଭସ୍ମୀଭୂତ ।
ଏଥିର କାରଣ ମୋତେ କହ ତପୋଧନ
ଶୁଣି ସନ୍ତୋଷ ହୋଇବ ମୋର ପଞ୍ଚମନ ।
କହନ୍ତି ଅଗସ୍ତି ଶୁଣ ସ୍ଥିର କରି ମତି
ସହଦେବଙ୍କୁ ପୁଚ୍ଛନ୍ତି ଯାଦବର ପତି ।

ଆହେ ମନ୍ତ୍ରୀ ଚୂଡ଼ାମଣି ଶୁଣ ସହଦେବ
ବ୍ୟାସସରୋବର କଥା ବଡ଼ଇ ଦୁର୍ଲ୍ଲଭ ।
ଜାଣିଥିଲେ ସେହିକଥା କର ତୁ ପ୍ରକାଶ
ଯେଉଁକଥା ଶୁଣି ମନୁ ଫିଟିବ ସନ୍ଦେଶ ।
ଶ୍ରୀକୃଷ୍ଣ ବଚନ ଶୁଣି ସହଦେବ ଭଣି
ଯାହା ପୁଚ୍ଛାକଲୁ ଶୁଣ ଦେବ ଚକ୍ରପାଣି ।
ସ୍ୱାମୀ ଶୂଦ୍ରକ ନାମରେ ଏକ ସତ୍ୟଯୁଗ
ଦକ୍ଷ ପ୍ରଜାପତି କଲେ ଏକ ବ୍ରହ୍ମଯାଗ ।
ଯଜ୍ଞ ଆହୁତିରେ ତୁଷ୍ଟ ହୋଇଲେ ବିଧାତା
ଉତ୍ପତ୍ତି କଲେ ତହିଁରୁ ଷାଠିଏ ଦୁହିତା ।
ଉମାନାମେ ଯେଉଁକନ୍ୟା ଈଶ୍ୱରଙ୍କୁ ଦେଲା
ହେମା ଦୁହିତା ପରମା ଯୋଗିନୀ ହୋଇଲା ।
ବ୍ରହ୍ମାଙ୍କୁ ପ୍ରଦାନ ପୁଣି କରିଲା ସାବିତ୍ରୀ
ରତ୍ନାକର ରାଜାକୁ ଯେ ଦେଲା ନୀରବତୀ ।
କୁବେରକୁ ସମ୍ପ୍ରଦାନ କଲା ହାରାବତୀ
ବୈଶ୍ୱାନରେ ସ୍ୱାହାସ୍ୱଧା ଦୁଇଟି ଦୁହିତୀ ।
ଆଦିତ୍ୟ ଦେବଙ୍କୁ ସେ ଯେ ଛାୟା ଦାନ କଲା
ବିଶ୍ୱଦେବଙ୍କୁ ପନ୍ନଗ କନ୍ୟା ସମର୍ପିଲା ।
ଅଶ୍ୱିନୀ ଦ୍ୱିଜା କୃତ୍ତିକା ବିଶାଖା ରୋହିଣୀ
ଆର୍ଦ୍ରା ପୁନର୍ବସୁ ପୁଷ୍ୟା ଉତ୍ତରାଫାଲଗୁନୀ ।
ମୃଗଶିରା ହସ୍ତା ଚିତ୍ରା ଆବର ଅଶ୍ଳେଷା
ପୂର୍ବାଫାଲଗୁନୀ ସ୍ୱାତୀମୂଳା ଶତଭିଷା ।
ଅନୁରାଧା ପୂର୍ବାଷାଢ଼ା ଶ୍ରବଣା ଧନିଷ୍ଠା
ଉତ୍ତରାଷାଢ଼ା ରେବତୀ ମଘା ପୁଣି ଜ୍ୟେଷ୍ଠା ।
ଉତ୍ତର ଭାଦ୍ରପଦ ଯେ ପୂର୍ବଭାଦ୍ରପଦ
ସତାଇଶ କନ୍ୟାସହ ବହୁତ ସମ୍ପଦ ।
ଚନ୍ଦ୍ର ଦେବତାଙ୍କୁ ଦକ୍ଷ କରିଲେ ବରଣ
ସେ କନ୍ୟାମାନଙ୍କୁ ତାଙ୍କୁ କଲେ ସମର୍ପଣ ।
ସେହି ସତାଇଶ କନ୍ୟା ନକ୍ଷତ୍ର ରୂପରେ
ରହିଅଛନ୍ତି ଅବଧି ଚନ୍ଦ୍ର ନିକଟରେ ।
ତନୁ ଭାନୁ ମେଧା ଧୃତି ଶ୍ରୁତି ସିଦ୍ଧି ବୁଦ୍ଧି
ସୃତା ମାତା କାନ୍ତି ଦଶକର୍ମେ ଦେଲେ ବୋଧି ।
ତାଳ ଅନଳ ରୂପସୀ ଧନ୍ଦଜା ଗୃହୀଜା
ଶଙ୍ଖତୋଳା ବିରୂପାକ୍ଷୀ ସୁରେଖା ସୁରେଜା ।
ସିଂହିକା ଦିତି ଅଦିତି କଦ୍ରୁ ଯେ ବିନତା
ଏ ତେରକନ୍ୟା କଶ୍ୟପେ ଦେଲେ ଦକ୍ଷଧାତା ।
ହରିତା କନ୍ୟା ବିହନ୍ତା ପୁରୁଷକୁ ଦେଲା
ଏକାର କ୍ୱାଇଁକି କନ୍ୟା ଅଣଷାଠି ହେଲା ।
ହେମା କନ୍ୟା ତ ପରମାଯୋଗ୍ନୀ ହୋଇଥିଲା
ବିବାହ ନୋହି ଶୃଙ୍ଗାର ରସ ନ ଇଚ୍ଛିଲା ।

ଦ୍ୱିତୀୟ ଯାଗକାଳରେ ଦକ୍ଷ ପ୍ରଜାପତି
ଦଶଜୁଆଇଁକି ସେହୁ ଆଣିଲା ନିମନ୍ତି ।
ବ୍ରହ୍ମା ଚନ୍ଦ୍ର ସୂର୍ଯ୍ୟ ଅଗ୍ନି କୁବେର ବରୁଣ
କଶ୍ୟପ ବିହନ୍ତା ବିଶ୍ୱଦେବ ଜନ୍ତୁରାଣ ।
ଏ ଦଶକ୍ୱାଇଁ ବରିଲା ଦକ୍ଷ ପ୍ରଜାପତି
ଯୋଗୀ ବୋଲି ହରଙ୍କୁ ସେ ନ ଆଣେ ନିମନ୍ତି ।
ଯାଗର ବାରତା ଯହୁଁ ପାଇଲେକ ଉମା
ଅନେକ ବେଶ ଭୂଷଣ ହେଲେ ଶିବବାମା ।
ବାରାନିଧିରୁ ଆଣିଲେ ଅଳଙ୍କାରମାନ
ଯଥା ଯୋଗ୍ୟସ୍ଥାନେ ତାହା କଲେ ପରିଧାନ ।
ପରିବାରୀମାନଙ୍କୁ ଯେ ଘେନିଣ ହରଷେ
ବିଜୟ କରିଲେ ଉମା ସଦାଶିବ ପାଶେ ।
ଈଶ୍ୱର ବୋଇଲେ ଆଜ କିମ୍ପା ଉଦବେଗ
ଉମା ବୋଇଲେ ମୋ ପିତା କରୁଛନ୍ତି ଯାଗ ।
ଈଶ୍ୱର ବୋଇଲେ ତୁମ୍ଭେ ବଡ଼ଇ ନିର୍ଲ୍ଲଜା
ଦୂତ ନ ଆସୁଣୁ କିମ୍ପା ତୁମ୍ଭର ଏ ସଜା ।
ଉମା ବୋଇଲେ ତାଙ୍କର ମୁଁ ଜ୍ୟେଷ୍ଠା ଦୁହିତା
ତୁମ୍ଭେ ଜ୍ୟେଷ୍ଠ ଜୁଆଇଁ ଯେ ବିଶେଷେ ଦେବତା ।
ସ୍ୱାମୀ ମୁଁ ଜାଣେ ଏକ୍ଷଣି ଆସିବ ଯେ ଦୂତ
ତୁମ୍ଭେ ସଜହୋଇଥାଅ ଆହେ ପ୍ରାଣନାଥ ।
ଉତ୍ସବ କାଳରେ ଯେବେ ଜୁଆଇଁକି ବରି
କୋଟି ଅଶ୍ୱମେଧ ଯାଗ ସଙ୍ଗେ ସେହୁ ସରି ।
ଈଶ୍ୱର ହସିଲେ ଉମାଦେବୀ ବାକ୍ୟ ଶୁଣି
ପିତାଘର ଯିବାପାଇଁ ଆନନ୍ଦ ଦୁଲଣୀ ।
ଦୁଇଦିନ ତିନିଦିନ ଚାରିଦିନ ଗଲା
ନିତ୍ୟ ସଜ ହେଉଥାନ୍ତି ଦୂତ ନ ଅଇଲା ।
ଉମା ସଜ ଦେଖି ହାସ୍ୟ କଲେ ଦେବରାଜ
ଆପଣେ ଆପଣେ ଦେବୀ ପାଇଲେକ ଲାଜ ।
ଉମା ବୋଇଲେ ଯାଇଣ ଈଶ୍ୱର ଦେବଙ୍କୁ
ମୁହିଁ ଆଜି ଯିବି ସ୍ୱାମୀ ପିତା ନବରକୁ ।
ଈଶ୍ୱର ବୋଇଲେ ଉମା ଅବରଣେ ଗଲେ
ପୂର୍ବସ୍ନେହ ଭାଜିଯାଏ ବିଳମ୍ବେ ରହିଲେ ।
ଅବରଣେ ମଧ୍ୟପ୍ରାନ୍ତ ହୋନ୍ତି ଯେଉଁଜନ
ସପତ ପୁରୁଷେ ତାର ନରକ ପତନ ।
ଅବରଣେ ଅକାରଣେ ଯାନ୍ତି ଯେଉଁ କ୍ୱାଇଁ
କୁପୁରୁଷ ଅଟେ ଜୀବେ ଗଣିତା ନୁହଇ ।
ଅଯୋଗରେ ଯେବେ କେହି ଯିବ ମହାତୀର୍ଥେ
ଧର୍ମ ତାହାକୁ ପ୍ରାପତ ନୁହଇ ଯୁକତେ ।
ବନ୍ଧୁଘର ହେଉ ଅବା ହେଉ ପିତାଘର
ଅବରଣରେ ନ ଯିବ ବଦନ୍ତି ଶ୍ରୀହର ।

ଉମା ବୋଇଲେ ତୁମ୍ଭର ନ ଶୁଣଇ ବାଣୀ
ମୋତେ ବରଣ ନ ହେଉ ଯିବି ଏହିକ୍ଷଣି ।
ଈଶ୍ୱର ବୋଇଲେ ତୁମ୍ଭେ ଅଟ ବଡ଼ ରାଗୀ
ତୁମ୍ଭେ ଯାଉଅଛ ନିଶ୍ଚେ ଯାଗ ଯିବ ଭାଙ୍ଗି ।
ସଙ୍ଗରେ ଘେନିଲେ ଉମା ଲକ୍ଷେ ପରିବାରୀ
ଯାନ ବାହନାଦି ତେଜି ପାଦେ ଗତି କରି ।
ଗୋଡ଼ାଇ ଈଶ୍ୱର ତାଙ୍କୁ କହିଲେ ବୁଝାଇ
ରାଗେ ମହାଦେବୀ ଗଲେ ତାଙ୍କୁ ପେଲିଦେଇ ।
ଈଶ୍ୱର ବୋଇଲେ ନନ୍ଦିକେଶ୍ୱରକୁ ରାଇ
ରତ୍ନ ଅଳଙ୍କାର ଘେନି ପଛେ ଯାଅ ତୁହି ।
କନକର ହାନ୍ଦୋଳରେ ପାଟଛତ୍ରମାନ
ଘେନି ପଛେ ଗୋଡ଼ାଇଲେ ସର୍ବ ପରିଜନ ।
ଅନେକ ସମ୍ଭାର ନନ୍ଦିକେଶ୍ୱର ଯେ ଆସି
ଉମାଙ୍କ ପଛେ ଗୋଡ଼ାଇଛନ୍ତି ଦାସଦାସୀ ।
ଚାଲୁଛନ୍ତି ମାହେଶ୍ୱରୀ ଅତି ବେଗେ ବେଗେ
ପ୍ରବେଶ ହୋଇଲେ ଦେବୀ ପ୍ରଜାପତି ଆଗେ ।
ତେତିଶକୋଟି ଦେବତା ଉମାଦେବୀ ଦେଖି
ଧାତିକାରେ ସମସ୍ତେ ହେଁ ଆସନ ଉପେକ୍ଷି ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ କୁବେର ବରୁଣ
ଦୂରେ ଥାଇ ପ୍ରଣିପାତ ହେଲେ ସୁରଗଣ ।
ଯାଗତିକମାନେ ଭୟେ ଆସନରୁ ଉଠି
ପ୍ରଣିପାତ ହେଲେ ସର୍ବେ ଚରଣରେ ଲୋଟି ।
ଯହୁଁ ମାହେଶ୍ୱରୀ ବିଜେ କଲେ ଯାଗଶାଳେ
ଦେଖି ଦକ୍ଷ ପ୍ରଜାପତି ଉଠିଲେ ବିକଳେ ।
ଉମା ବୋଇଲେକ ତୁମ୍ଭେ ଶୁଣିମା ଭୋ ତାତ
ଏ ତୋହର ଯାଗ ସବୁ କେବଳ ଅନର୍ଥ ।
ଅଠାବନ ଦୁହିତା ତୋ ଏ ଦଶ ଜୁଆଇଁ
ସମସ୍ତଙ୍କୁ ବରିଲୁ ତୁ ଯାଗରେ ବସାଇ ।
ବ୍ରହ୍ମ କୁବେର କଶ୍ୟପ ପୁଣି ଚନ୍ଦ୍ର ସୂର୍ଯ୍ୟ
ଯମାଳୟର ଦେବତା ଦେବ ଯମରାଜ ।
ଅଗ୍ନି ବିଶ୍ୱଦେବତା ଆଉ ବିହନ୍ତା ବରୁଣ
ଏ ଦଶଙ୍କୁଇଁକି ତୁହି କଲୁ ଆମନ୍ତ୍ରଣ ।
ମୋ ସ୍ୱାମୀକୁ ନ ବରିଲୁ ମନେ କି ବିଚାରି
ଏମାନେ ତୋହର ଯଜ୍ଞ ଦେବେ କି ଉଦ୍ଧରି ।
ମୁହିଁ ଅଟଇ ତୋହର ଜ୍ୟେଷ୍ଠ ଯେ ଦୁହିତା
ମୋର ସ୍ୱାମୀ ତୋର ମଧ୍ୟ ଜ୍ୟେଷ୍ଠ ଯେ ଜାମାତା ।
ଯଜ୍ଞେ ଜ୍ୟେଷ୍ଠ ଜୁଆଇଁ କି ନ କରିଣ ପୂଜା
ପୁରୁଷଙ୍କ ଉତ୍ତମ ସେ ଦେବଗଣ ରାଜା ।
ଉମାଙ୍କ ବଚନ ଶୁଣି କହେ ପ୍ରଜାପତି
ମାଗୋ ସ୍ଥିରହୋଇ ଶୁଣ ମୋହର ଭାରତୀ ।

ତୋହର ସ୍ୱାମୀ ଯେ କାଳେ ଅଟେ ମହାଯୋଗୀ
ଉତ୍ସବ ଯାତ୍ରାରେ ସେହୁ ଅଟଇ ଅଲାଗି ।
ଦେଖିଲେ ଅଯାତ୍ରା ହୁଏ ଛୁଇଁଲେ ତ ପାପ
ବରିଲେ ଅଧର୍ମ ହୁଏ ନାଶଯାଏ ତପ ।
ପ୍ରଜାପତି ବାଣୀ ଶୁଣି ବୋଲନ୍ତି ଯେ ଉମା
ମୋତେ ତେବେ ନ ବରିଲୁ କିମ୍ପା ଦକ୍ଷବ୍ରହ୍ମା ।
ଚଳି ହୋଇଣ କହଇ ପ୍ରଜାପତି ବାଣୀ
ଯୋଗୀର ଭାରିଜା ତୁହି ଅଟୁ ଯୋଗିଆଣୀ ।
ଦେଖୁ ଦେଖୁ ବରିବିକି ଅଯାତ୍ରା ଲୋକକୁ
ଅବରଣେ କିମ୍ପା ତୁହି ଅଇଲୁ ଯାଗକୁ ।
ଉମା ବୋଇଲେ ମୋ ସ୍ୱାମୀ ପଡ଼େ ପାପୀ ଯେବେ
ମୋତେ କିମ୍ପା ଦେଲୁ ତୁହି ସନ୍ନ୍ୟାସୀକି ତେବେ ।
ମୋହର ସ୍ୱାମୀକି ଯେବେ ଯଜ୍ଞରେ ନ ବରି
ଦୁହିତା ନୋହିଲେ ତୋର ହୋଇକି ବଇରୀ ।
ଆବର ଜୀବନେ ମୋର କିସ ଅଛି କାର୍ଯ୍ୟ
ଏ ଦେବସଭା ମଧ୍ୟରେ ଦେଲୁ ଏଡ଼େ ଲାଜ ।
କାନ୍ଦନ୍ତି ଯେ ମାହେଶ୍ୱରୀ କଇଁ କଇଁ ହୋଇ
ଆଉ ଏ ଜୀବନେ ମୋର ପ୍ରୟୋଜନ ନାହିଁ ।
କହୁଁ କହୁଁ ଦେବୀ ହେଲେ କୋପେ ପରଚଣ୍ଡ
ରାଗେ ଡେଇଁଣ ପଡ଼ିଲେ ଯାଇ ଯାଗକୁଣ୍ଡ ।
ବୈଶ୍ୱାନର ତେଜ ଜାତ ହୋଇଲା ପିଙ୍ଗଳ
ସହସ୍ର ଯୋଜନ ଶିଖା ତେଜ ଅନର୍ଗଳ ।
ମହାଗ୍ନିରେ ଡେଇଁ ଯହୁଁ ପଡ଼ିଲେକ ଉମା
ଦହନ ହୋଇଲେ ବିଶ୍ୱନାଥଙ୍କର ବାମା ।
ଯେତେ ଥିଲେ ଉମାଙ୍କୁ କେ ଧରି ନ ପାରିଲେ
ଦେଖି ତା ନନ୍ଦିକେଶ୍ୱର ବାହୁଡ଼ି ଯେ ଗଲେ ।
ଉମାଙ୍କୁ ନିମିଷେ ହର ମୂର୍ଚ୍ଛି ନ ପାରନ୍ତି
କି ଦୁର୍ଯ୍ୟୋଗ ହେବ ଆଜି ବସି ଭାଳୁଛନ୍ତି ।
ଏକାଳେ ପ୍ରବେଶ ନନ୍ଦି କୈଳାସ ଭବନେ
ଉମାର ବାରତା ନେଇ ଦେଲେ ତ୍ରିଲୋଚନେ ।
ସ୍ୱାମୀ ଯୋଗିଆଣୀ ବୋଲି ଦକ୍ଷ ଯେ ଝିଙ୍ଗାସୁ
ଯଜ୍ଞକୁଣ୍ଡେ ଡେଉଁପଡ଼ି ଦେବୀ ହେଲେ ପାଂଶୁ ।
ମୋହର ଦେଖନ୍ତେ ଦହ୍ୟ ହେଲେ ଯୋଷାମଣି
ଉମା ଉମା ବୋଲି ବେଗେ ଗଲେ ଶୂଳପାଣି ।
ଗଳଇ ଯେ ଶ୍ରମଝାଳ ଅସମ୍ଭାଳ ଜଟା
ଧାମନ୍ତି ଯେ ପାଦଗତି ହୋଇଣ ଲାଙ୍ଗଟା ।
କାଳାନଳ ରୂପ ଦେଖି ସର୍ବ ଦେବଲୋକେ
ପଳାଇ କ୍ଷୀର ସାଗରେ ଲୁଚିଲେ ସେ ଥୋକେ ।
କୋପେ ଶିବ ଦଉଡ଼ିଲେ ହୋଇ ଗଳଗାଜି
ଦକ୍ଷରାଜା ଯଜ୍ଞଶାଳ ପକାଇଲେ ଭାଜି ।

ପଳାଇ ନ ପାରି ଭୟେ ଦକ୍ଷ ପ୍ରଜାପତି
କୁଶହସ୍ତ ହୋଇଣ ସେ କଲେ ବହୁ ସ୍ତୁତି ।
ପତ୍ନୀର ବିହୁନେ କୋପାନଳ ତ୍ରିଅମ୍ବିକ
କୋପେଣ ଧଇଲେ ଦେବ ପ୍ରଜାପତି ବେକ ।
ପରମ ଯୋଗୀ ପୁରୁଷ କୋପେଣ ପ୍ରଚଣ୍ଡ
କରେ ଧରିଣ ମୋଡ଼ିଲେ ପ୍ରଜାପତି ମୁଣ୍ଡ ।
ରୁଦ୍ରକୋପ ଦେଖି କରି ପ୍ରଜାପତି ପତ୍ନୀ
ଛାମୁକୁ ଅଇଲେ କରେ ଅର୍ଘ୍ୟଥାଳି ଘେନି ।
ପତ୍ନୀର ବିହୁନେ ଦେବ କୋପେ ପରଚଣ୍ଡ
ରାଗେ ଶାଶୁଙ୍କୁ ଈଶ୍ୱର ଦେଖାଇଲେ ଅଣ୍ଡ ।
କୋପେଣ ଗର୍ଜନ୍ତି ଦେବ କାଳସର୍ପ ଜିଣି
ଶାଶୁଙ୍କୁ ବୋଇଲେ ଏହା ବନ୍ଦାଅ ତୁ ଆଣି ।
ଈଶ୍ୱର ବଚନେ ଦକ୍ଷ ପ୍ରଜାପତି ପତ୍ନୀ
ଈଶ୍ୱରଙ୍କ ଅଣ୍ଡପୂଜା କଲେ ଅର୍ଘ୍ୟ ଘେନି ।
ଗୁରୁପତ୍ନୀ ଅର୍ଘ୍ୟଦ୍ୟନ୍ତେ ହର ପାଇ ଲଜ୍ଜା
ପତ୍ନୀର ବିହୁନେ କୋପ କରି ଦେବରାଜା ।
ବୋଇଲେ ତୋ ସ୍ୱାମୀ ବଧି ଶାନ୍ତ ନୋହେ କୋପ
ବିଚାରି ମାହେଶ୍ୱରୀ ଗୋ ମୋତେ ଦେବ ଶାପ ।
ପ୍ରଜାପତି ପତ୍ନୀ ତହୁଁ କୋପରେ ପ୍ରକାଶି
ଯୁଗେ ଯୁଗେ ଈଶ୍ୱର ତୁ ଅଣ୍ଡପୂଜା ପାସି ।
ଶାନ୍ତ ହୋଇଣ ଈଶ୍ୱର ଯାନ୍ତି ଯାଗକୁଣ୍ଡେ
ଅଗ୍ନିରେ ହସ୍ତ ପୂରାଇ ଦରାଣ୍ଡନ୍ତି ବେଗେ ।
ଉମାଙ୍କ ଶରୀର ହୋଇଥିଲା ଯେ ଦହିର୍ଯ୍ୟ
ପାଦର ତଳିପା ଦୁଇ ପାଇ ଦେବରାଜ ।
ଦକ୍ଷଙ୍କର ଅପମୃତ୍ୟୁ ଦେଖି ଦେବଗଣ
ବହୁତ ସ୍ତୁତି କରିଲେ ଦୂରରେ ରହିଣ ।
ଦେବଗଣେ ତହିଁ ତୁଷ୍ଟ ହୋଇ ମହେଶ୍ୱର
ଯଜ୍ଞ ଛାଗ ଏକ ଘେନି କରିଲେ ସଂହାର ।
ସେ ଛାଗ ମସ୍ତକ ଦକ୍ଷ ସ୍କନ୍ଧରେ ଯୋଖିଲେ
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ରେ ପୁଣି ପ୍ରାଣ ଦେଲେ ।
ପ୍ରଜାପତି ମାରି ହର ଅଙ୍ଗେ ହେଲା ଜ୍ୱାଳା
କେବେ ହେଁ ଶୀତଳ ଆଉ ନୋହିଲେ ପିଙ୍ଗଳା ।
ସହଦେବ ବୋଲେ ଦେବ ଶୁଣ ନରନାଥ
ଈଶ୍ୱର ଡେଇଁ ପଡ଼ିଲେ ଏ ଓଡ଼ପା ତୀର୍ଥ ।
ଅଷ୍ଟ ଓଡ଼ପାକୁ ବ୍ରହ୍ମା ସାଜି ସତ୍ୟଯୁଗେ
ପୁଣ୍ୟତୋୟା ନଦୀ ଏଥେ ଥୋଇ ମଧ୍ୟଭାଗେ ।
ଆଦି ବ୍ରହ୍ମାର କପାଳେ ରହୁ ଆଠଖଣ୍ଡେ
ପ୍ରାଗନଦୀ ପଟେ ଓଡ଼ପା ଏହି ଆଠକୁଣ୍ଡେ ।
କୋଟିଏ ତୀର୍ଥକୁ ଘେନି ପୁଷ୍କର ଦେବତା
ଅଷ୍ଟ ଓଡ଼ପା ଭିତରେ ହୋଇଲେ ସଙ୍ଗତା ।

ମଧୁମଳୟ ହୋଇଲା ସତ୍ୟଯୁଗ କାଳେ
ବ୍ୟାସେ ପ୍ରବେଶିଲେ ଯାଇ ବିଷ୍ଣୁ ବକ୍ଷସ୍ଥଳେ ।
ଉଦର ଭିତରେ ପଶି ଦେଖିଲେ ସେ ସର୍ବ
ତେଣୁ କରି ବ୍ୟାସ ଏହା ସବୁ କଲେ ଠାବ ।
ସେଥିପାଇଁ ବ୍ୟାସଦେବ ହେଲେ ସର୍ବଜ୍ଞାନୀ
ବିଷ୍ଣୁ ଗୁଣ ଗାଇବାକୁ କ୍ଷମ ହେଲେ ମୁନି ।
ବିଶ୍ୱମୁଖ ଗଣପତି ସହସ୍ର ବଦନ
ପୃଥିବୀରେ ସୁରପତି ସେମାନେ ଲେଖନ ।
ସେହି ବିଶ୍ୱ ଗଣପତି ହୋଇଲେ କରଣ
ବ୍ୟାସଦେବ କବି ହୋଇ କରନ୍ତି ଅର୍ପଣ ।
ନିଦ୍ରା ଆହାର ତେଜିଣ ନିରଳସ ତନୁ
ଏକ ଲୟରେ ବସିଲେ ଧ୍ୟାନେ ସାତମନୁ ।
ଏମନ୍ତ ଷାଠିଏ ଲକ୍ଷ ସମ୍ପାଦି ପୁରାଣ
ଅଷ୍ଟାଦଶ ଭାବେ ପୁଣି ତା କଲେ ଘଟଣ ।
ଏହା କହିଣ ସନ୍ତୋଷ ମନରେ ନୋହିଲେ
ବିଷ୍ଣୁ ପୁରାଣ ମାର୍କଣ୍ଡ ପୁରାଣ ରଚିଲେ ।
ଶିବପୁରାଣ ନାରଦ ପୁରାଣ ଉଚ୍ଚାରି
ଏ ବିଧିରେ ଅଷ୍ଟାଦଶ ଯୋଗେଶ୍ୱର କରି ।
ସାତମନୁ ବସିଲେ ସେ ସର୍ବ କରି ତେଜ୍ୟା
ଓଡ଼ପା ଭିତରେ ବ୍ୟାସ କଲେ ମହାଶଯ୍ୟା ।
ସାତମନୁ ଆହାରାଦି ମୈଥୁନ ବିହୀନେ
ନିଶ୍ଚିନ୍ତରେ ନିଦ୍ରାଗଲେ ଏ ଓଡ଼ପାସ୍ଥାନେ ।
ନିଶ୍ଚିନ୍ତ ହୋଇ ମହାତ୍ମା ରହିଲେ ସେ ଜଳେ
ଅଳସ ବହୁତ ମୁନି ନିଦ୍ରା ଯୋଗବଳେ ।
ଦକ୍ଷ ମୁଣ୍ଡ ମୋଡ଼ି ହର ଅତି କୋପାନଳେ
ଓଡ଼ପା ଜଳେ ପଶିଲେ ଦେବ ମହାଜଳେ ।
ଶିବ ପଶନ୍ତେ ମନ୍ଥନ ହୋଇଲା ସେ ଜଳ
ତେଜିଲେ ନିଦ୍ରା ଯେ ବାସ ଆଉ ଯୋଗବଳ ।
ଉଠି ଚୌକତି ଚାହାନ୍ତି ସେହି ବେଦବ୍ୟାସ
ସନ୍ନିଧିରେ ପ୍ରବେଶିଲେ ଯାଇ କାଶୀଈଶ ।
ତାଙ୍କୁ ଦେଖି ବ୍ୟାସମୁନି କଲେ ପାଦପୂଜା
ଶରୀର ଶୀତଳ କଲେ ତହିଁ ଦେବରାଜା ।
ଏ ଓଡ଼ପା ତୀର୍ଥେ ହର ଅଣ୍ଡପୂଜା ଦେଲା
ଶାପ ବିହିଥିଲେ ଯାହା ଦକ୍ଷର ଅବଳା ।
ଲିଙ୍ଗ ରୂପରେ ରହିଲେ ତହୁଁ ପଶୁପତି
ମହାଳୟରେ ପୂଜିଲେ ବ୍ୟାସ ମହାଯତି ।
ସହଦେବ ବୋଲେ ଶିବ ପଶିଲେ ପଳାଇ
ଶରୀର ଶୀତଳ ହେଲା ମହାସୁଖ ପାଇ ।
ଅନାଥ ହୋଇ ପଶିବ ଏଥେ ଯେଉଁ ଜନ
ଈଶ୍ୱର ବୋଇଲେ ବ୍ୟାସ ହେଲି ମୁଁ ପ୍ରସନ୍ନ ।

ଶରଣ ମାଗି ପଶିଲେ ପାଇବ ସେ ଠାବ
ବ୍ରହ୍ମା ବିଷ୍ଣୁ ହେଲେ ଏଥେ ବଳେ ନ ପଶିବ ।
ଅଥବା ବଳେ ପଶିବ ଯେହୁ ଏଥେ ଆସି
ଶରୀର ଦହନ ହେବ କହିଲେ ୟା କାଶୀ ।
ଦେହ ଜ୍ୱାଳାରେ ପଶିଲେ ଏଥେ ଆସି ହର
ବ୍ୟାସ ପୂଜିଲେ ଓଡ଼ପା ନାମେ ବିଶ୍ୱେଶ୍ୱର ।
ସତ୍ୟଯୁଗରେ ନାରକା ଭୟେ ଦେବଲୋକେ
ଏଥି ଭିତରେ ପଶିଲେ ଆସି ବୃନ୍ଦାରକେ ।
ସମୁଦ୍ର ଭିତରେ ପଶି ଲୋଡ଼ିଲା ତାରକା
ଏ ଭୁବନ ମଧ୍ୟେ ପଶି ନ ପାରିଲା ଏକା ।
ତାରକା ଭାଇ ନାରକା କଉଣପ ବୋଲି
ଦେବତାଙ୍କୁ ଗୋଡ଼ାଇଣ ପଶେ ଏଥେ ପେଲି ।
ନ ମାନି ପଶନ୍ତେ ସେହି ଏହାର ଭିତର
ଶରୀର ଦହନ ହେଲା ଦୁଷ୍ଟ ରାକ୍ଷସର ।
ରକ୍ଷ ଭକ୍ଷଅଂଶେ ଜାତ ହେତି ଯେ ପ୍ରହେତି
ଇଚ୍ଛେଇନ୍ଦ୍ର ମାରିନେବ ସେ ଅମରାବତୀ ।
ଇନ୍ଦ୍ର ଦେବତାଙ୍କୁ ସେହୁ ମାରିଯାନ୍ତେ ଯଦି
ସ୍ୱର୍ଗେ ରହି ନ ପାରିଲେ ଦେବ ଜମ୍ଭଭେଦୀ ।
ଆକାଶୁ ପଳାଇ ଯାଇ ପଶିଲେ ପାତାଳେ
ତହିଁ ପଶିଣ ଖୋଜିଲେ ସେ ବେନି ଚାଣ୍ଡାଳେ ।
ସମୁଦ୍ରେ ପଶିଲେ ଯାଇ ପୁଣ ସୁରପତି
କ୍ଷଣେ ନ ଛାଡ଼ି ଗୋଡ଼ାନ୍ତି ହେତି ଯେ ପ୍ରହେତି ।
ଚଉଷଠି କୋଟି କାଠି ସେ ଲବଣ ପାଣି
ହେତୁ ପ୍ରହେତିକୁ ହେଲା ସେହୁ ଆଣ୍ଠୁ ଆଣି ।
ଇକ୍ଷୁ ସର୍ପି ଦଧି ଦୁଗ୍ଧ ଆବର ଲବଣ
ସାତ ସମୁଦ୍ରେ ଗୋଡ଼ାନ୍ତି ଦୈତ୍ୟ ବେନି ଜନ ।
ଇନ୍ଦ୍ର ମାରି ଅମରରେ ହେବ ଅଧିକାରୀ
ନବସହସ୍ର ବରଷ ଗଲା ଏହିପରି ।
ହେତି ପ୍ରହେତି ଗୋଡ଼ାଇ ଅଛନ୍ତି ଯେ ବେନି
କ୍ଷଣେ ନ ରହି ଗୋଡ଼ାନ୍ତି ଦିବସ ରଜନୀ ।
ପ୍ରହେତି ବୋଇଲା ତହୁଁ ହେତିକି ହକାରି
ସ୍ୱର୍ଗପୁରେ ଇନ୍ଦ୍ର ହୁଅ ତୁହି ଯାଇକରି ।
ଗୋଡ଼ାଇ ମାରିବି ମୁହିଁ ଇନ୍ଦ୍ରକୁ ସତ୍ୱରେ
ଇନ୍ଦ୍ରପଦେ ହେତି ଯାଇ ବସିଲା ସୁଖରେ ।
ପ୍ରହେତି ଗୋଡ଼ାଇ ଅଛି ଇନ୍ଦ୍ର ଦେବତାଙ୍କୁ
ଇନ୍ଦ୍ର ପଳାଇ ଯାଆନ୍ତି ନାନାଦି ସ୍ଥାନକୁ ।
ସୁତଳ ଭୂତଳ ତଳାତଳ ରସାତଳ
ତହିଁ ତଳେ ଅଛି ପୁଣି କାଦମ୍ବରୀ ଜଳ ।
କୌଣସି ପୁରରେ ଇନ୍ଦ୍ର ନ ପାରିଲେ ପଶି
ବ୍ରହ୍ମା ଚନ୍ଦ୍ର ସୂର୍ଯ୍ୟ ଦେଖି ପଳାଇଲେ ତ୍ରାସି ।

କଷ୍ଟେ ମଷ୍ଟେ ପଳାଇଲେ ଦେବ ସୁନାସୀର
ବ୍ୟାସଙ୍କୁ ଭେଟିଲେ କୃଷ୍ଣାବେଣୀ ନଦୀ ତୀର ।
ଝାଳରେ ତ୍ରିପଣ୍ଡ ଇନ୍ଦ୍ର ହୋଇ ମହାଶ୍ରମୀ
ବ୍ୟାସଙ୍କୁ ବୋଲେ ଲୁଚିବି ଯାଇ କେଉଁ ଭୂମି ।
ବ୍ୟାସ ବୋଇଲେ ତୋହର ନାହିଁ ଆନଠାବ
ବ୍ୟାସ ସରୋବରେ ଯାଇ ପଶ ହୋ ବାସବ ।
ପବନ ବେଗେ ପଳାଇଗଲା ସୁରପତି
କ୍ଷଣେ ହେଁ ନ ଛାଡ଼ଇ ଯେ ଗୋଡ଼ାଏ ପ୍ରହେତି ।
ବ୍ୟାସ ସରେ ଇନ୍ଦ୍ର ପଶେ ବୋଲିଣ ଶରଣ
ପ୍ରହେତି ପେଲି ପଶିଲା ତହିଁରେ ଯାଇଣ
ବ୍ରହ୍ମାବରେ ସେ ଅସୁର ଅଟେ କୋଟୀକଳ୍ପୀ ।
ତକ୍ଷଣେ ଭସ୍ମ ହୋଇଲା ସେହି କାମରୂପୀ ।
ସହଦେବ ବୋଲେ ସ୍ୱାମୀ ପୂର୍ବୁ ଅଛି କଥା
ବ୍ରହ୍ମା ଚନ୍ଦ୍ର ସୂର୍ଯ୍ୟ ବଳେ ନୁହଇ ପଶନ୍ତା ।
ଯମକୁ ଗୋଡ଼ାଇଥିଲା ଦୈତ୍ୟ କୃତକେଶୀ
ଯମ ପଳାଇ ପଶିଲା ଏଥେ ବେଗେ ଆସି ।
ଯମକୁ ଗୋଡ଼ାଇ ଏଥେ ପଶିଲା ଦାନବ
ସେହିକ୍ଷଣି ଭସ୍ମ ହେଲା ବୋଲେ ସହଦେବ ।
କୁମ୍ଭକର୍ଣ୍ଣ ଦୈତ୍ୟ ସୁତ କୃତ ମହୀଭେଦୀ
ଅଳକାପୁର କୁବେର ଆଣିଲା ସେ ଖେଦି ।
ଅସୁର ଭୟରେ ଏଥେ ପଶିଲେ କୁବେର
ତା ସଙ୍ଗେ ଗୋଡ଼ାଇ ମଧ୍ୟ ପଶିଲା ଅସୁର ।
କୁମ୍ଭକର୍ଣ୍ଣର ନନ୍ଦନ ହୋଇଲା ଦହିର୍ଯ୍ୟ
ପୁଣି ସହଦେବ କହେ ଶୁଣ ଦେବରାଜ ।
ବିରାଳ ବଂଶର ରାଜା ଥିଲା ଚନ୍ଦ୍ରନେମୀ
ଅନେକ ଜଞ୍ଜାଳ କଲା ସଦାଶିବ ସ୍ୱାମୀ ।
ତପେ ସନ୍ତୋଷ କରାଇ ପାର୍ବତୀଙ୍କ ସାଇଁ
କୈଳାସ ଉପାଡ଼ି ନେବାପାଇଁ କି ଲୋଡ଼ଇ ।
ଏହି ମତେ ପ୍ରତିଦିନ ଦିଅଇ ସେ ଧାଡ଼ି
ଚାରିସହସ୍ର ବରଷ ଗଲା କ୍ରମେ ପଡ଼ି ।
ଦିନିଦିନ ଧାଡ଼ି କଷ୍ଟ ଦେବ ହର ଦେଖି
ପଳାଇଣ ଗଲେ ତହୁଁ କୈଳାସ ଉପେକ୍ଷି ।
ଭୟରେ ପଶିଲେ ହର ବ୍ୟାସ ସରୋବରେ
ଏ ଦନୁଜ ଗୋଡ଼ାଇଣ ପଶିଲା ତହିଁରେ ।
ମହାପ୍ରତାପୀ ଅଟଇ ସେହି ତ ଦନୁଜ
ବଳାତ୍କାରେ ପଶୁଁ ତହିଁ ହୋଇଲା ଦହିର୍ଯ୍ୟ ।
ଶରଣପଞ୍ଚର ବାନା ଲିଙ୍ଗଙ୍କ ମହାତ୍ମ୍ୟ
ବଳାତ୍କାରେ ପଶିବାକୁ କେହି ନୁହେ କ୍ଷମ ।
ଶ୍ରୀଚଣ୍ଡୀ ଶାରଳା ମାଗୋ ହରଙ୍କ ମହିଷୀ
ଶୂଦ୍ରମୁନି ଶାରଳାର ଦଇନୀ ଘେନସି ।

ତୋହରି ପ୍ରସାଦେ ଗଦାପର୍ବ ମୁଁ ଲେଖଇ
ପଦ ନ ସ୍ଫୁରିଲେ ପଦ କହିଦେବୁ ଥାଇ ।
ଅରକ୍ଷ ଜନର ମାଗୋ ତୁହି ରକ୍ଷାକାରୀ
ମହାସଙ୍କଟ ପଡ଼ିଲେ ନେଉ ତୁ ଉଦ୍ଧାରି ।
ଦାନବକୁଳକୁ ମାରି ରକ୍ଷାକରୁ ମହୀ
ସଦା ତୋ ପାଦେ ଶରଣ ପଶିଲଇଁ ମୁହିଁ ।

—o—

## ଅଶ୍ଳେଷା ଦୈତ୍ୟବଧ, ଭୀମଙ୍କର ସିଂହନାଦ ପ୍ରାପ୍ତି, ସିଂହରଡ଼ି ଓ ଦୁର୍ଯ୍ୟୋଧନର ଲକ୍ଷ୍ମୀଙ୍କୁ ଅବଜ୍ଞା

କହୁଛନ୍ତି ବୈବସ୍ୱତ ମନୁ ନୃପବର
ହେ ଅଗସ୍ତି ତୁମ୍ଭ ପାଦେ କୋଟି ନମସ୍କାର ।
ପ୍ରତିଦିନ ଶୁଣାଉଛ ଭାରତ ଆଖ୍ୟାନ
ସେ କଥା ଶୁଣି ସନ୍ତୋଷ ମୋର ପଞ୍ଚମନ ।
କିସ ଦେଇ ପୂଜା ମୁହିଁ କରିବି ଆପଣେ
ସର୍ବଦା ଶରଣ ମୋର ତୁମ୍ଭ ଶ୍ରୀଚରଣେ ।
ବ୍ୟାସସରେ ପଶିବାକୁ କ୍ଷମ ନାହିଁ କାର
କେଉଁରୂପେ ଦୁର୍ଯ୍ୟୋଧନ ହୋଇବବାହାର ।
ସେ କଥା ଏବେ ମୋ ଆଗେ କରନ୍ତୁ ପ୍ରକାଶ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଗୋବିନ୍ଦ ବୋଇଲେ କ୍ଷମ ନାହିଁ ପଶିବାକୁ
କି ବୁଦ୍ଧି ଅଛଇ ଦୁର୍ଯ୍ୟୋଧନ ଆସିବାକୁ ।
ଅର୍ଜୁନ ବୋଇଲେ ଶୁଣ ଶୁଣ ଦେବରାଜ
ବ୍ୟାସସରେ ମାରିବି ମୁଁ ମନଭେଦୀ ଆଜ ।
ଭାରତ ସମରେ ପେଶିନାହିଁ ମନଭେଦୀ
ବିନ୍ଧିବି ମାନଗୋବିନ୍ଦ ଶିର ଆଶୁ ଛେଦି ।
ଭୀମ ବୋଲେ ସତ୍ୟ କଲି ମାତାଙ୍କ ଅଗ୍ରତେ
ମାନଗୋବିନ୍ଦ ମାରିବି ମୁହିଁ ଗଦାଘାତେ ।
ବାଚାବିଚଳିତ ହୁଏ ଯେବଣ ପୁରୁଷ
ଜୀବ ଥାଉଁ ଥାଉଁ କରେ ନର୍କକୁ ସେ ଆଶ ।
ଗୋବିନ୍ଦ ବୋଇଲେ ତହୁଁ ଶୁଣ ସହଦେବ
ଦୁର୍ଯ୍ୟୋଧନ କେଉଁରୂପେ ବାହାର ହୋଇବ ।
ସହଦେବ ବୋଲେ ଦେବ ବୁଦ୍ଧି ଏକ ଅଛି
ମାନଗୋବିନ୍ଦ ରାଜାକୁ ଲକ୍ଷ୍ମୀ ନ ଛାଡ଼ନ୍ତି ।
ଭୀମ ସ୍ମରଣ କରନ୍ତୁ ଦେବ ସଦାନନ୍ଦ
ପ୍ରସନ୍ନନାଥଙ୍କୁ ସେହୁ ମାଗୁ ସିଂହନାଦ ।
ସିଂହନାଦ ତିନିଥର ଠାକୁରେ କରନ୍ତୁ
ତାହା ଶୁଣି ଦୁର୍ଯ୍ୟୋଧନ ବାହରିବ ଏଥୁ ।
ଗୋବିନ୍ଦ ବୋଇଲେ ତାହା ଥାଏ ରୁଦ୍ରହାତେ
ଈଶ୍ୱର କାହିଁକି ଦେବ ଏହୁ ଅଭକତେ ।
ଗୋବିନ୍ଦଙ୍କୁ ସହଦେବ ପୁଣି କହୁଅଛି
ପୂର୍ବେ ଈଶ୍ୱରଙ୍କୁ ଭୀମ ସାହାଯ୍ୟ କରିଛି ।
ଗୋବିନ୍ଦ ବୋଇଲେ ଏ ତ ବଢ଼ଇ ସନ୍ଦେହ
ଛେଦନ ହେଉ ଯେ ତାହା ବେଗ କରି କହ ।
ମନ୍ତ୍ରୀ ଚୂଡ଼ାମଣି କହେ ଦୃଢ଼ କରି ବାଣୀ
ସାବଧାନେ ଶୁଣିବାକୁ ଦେବ ଚକ୍ରପାଣି ।
ଜମ୍ବୁ ଦଇତ ବୋଲିଣ ଥିଲା ସତ୍ୟଯୁଗେ
ଇନ୍ଦ୍ରଦେବ ବଧ କଲେ ତାହାକୁ ଯେ ସ୍ୱର୍ଗେ ।
ଜମ୍ବୁ ଦଇତକୁ ରଣେ ପକାବନ୍ତେ ଛେଦି
ତହୁଁ ଇନ୍ଦ୍ରଙ୍କର ନାମ ହେଲା ଜମ୍ବୁଭେଦୀ ।
ଜମ୍ବୁ ଦୈତ୍ୟର କୃତ୍ତିକା ନାମରେ କୁମର
କୃତ୍ତିକା ଦୈତ୍ୟର ପୁତ୍ର କାମ୍ୟକ ଅସୁର ।
କାମ୍ୟକର ନନ୍ଦନ ଯେ ଅଟଇ ଗୋରେଖ
ଏହାର ନନ୍ଦନ ନାମ ହୋଇଲା ଅମ୍ବକ ।
ଅମ୍ବକର କାଳକେତୁ ନାମରେ କୁମର
ଜଳଦକେତୁ ସନ୍ତାନ ହୋଇଲା ତାହାର ।
ଜଳତରଙ୍ଗ ନାମରେ ଏହାର ସନ୍ତତି
ଅରଣ୍ଡକ ନାମେ ପୁତ୍ର ଏହାର ଉତ୍ପତ୍ତି ।
ଅରଣ୍ଡକ ସୁତ ନାମ ହେଲା ସୁରାଖ୍ୟାନ
ଯାଠାରୁ ଜାତ ହୋଇଲା ଦୈତ୍ୟ ବୈଲୋଚନ ।
ବୈଲୋଚନ ପୁତ୍ର ନାମ ଶ୍ରବଣା ଦଇତ
ଶ୍ରବଣାଠାରୁ ଅଶ୍ଳେଷା ନାମେ ହେଲା ସୁତ ।
ଶ୍ରବଣା ଅସୁରକୁ ତ କର୍ଣ୍ଣ ନାଶ କଲା
ଅଶ୍ଳେଷା କପିଳାସକୁ ଯାଇ ଧାଡ଼ିଦେଲା ।
ଅଶ୍ଳେଷା ଦୈତ୍ୟକୁ ଦେଖି ସର୍ବେ କଲେ ଭୟେ
ଆକାଶ ତେଜି ପଳାଇ ଗଲେ ଦେବତାଏ ।
ବ୍ୟୋମକେଶ ଛାଡ଼ିଗଲେ କୈଳାସ ପର୍ବତ
ଶିବ ନ ଦେଖି କୈଳାସ ଉପାଡ଼ିଲା ଦୈତ୍ୟ ।
ମଥାରେ ବସାଇ କରି କୈଳାସ ଗିରିକୁ
ଘେନି ଯାଉଅଛି ତାର ନିଜର ଦେଶକୁ ।
ଈଶ୍ୱର ଗୋଡ଼ାଇଛନ୍ତି ତାର ପଛକତି
ଗୋଡ଼ାଇ ପିଟନ୍ତି ଦେବ ଶୂଳ ଯେ ଶକତି ।
ତାହାର ପିଠିରେ ପଡ଼ି ଉପୁଜିଲା ଶୂଳ
ତାହା ଦେଖିଣ ଧାମଇଁ ଶ୍ରବଣାର ବାଳ ।
କୈଳାସ କନ୍ଦର ଧରିଅଛି ବାମହସ୍ତେ
ଟେଳାଧରି ଦଉଡ଼ନ୍ତି ଯେହ୍ନେ ବାଳସୁତେ ।
ଶୁଣ ସ୍ୱାମୀ ନାରାୟଣ ଈଶ୍ୱର ପଳାନ୍ତେ
ପର୍ବତ ଉଞ୍ଚାଇ ଧାଏଁ ଅଶ୍ଳେଷା ଦଇତେ ।

ସେଦିନ ଭୀମ ଠାକୁର ମୃଗୟା ବିନୋଦେ
ଋଷ୍ୟମୂକ ପର୍ବତରେ ବସିଛନ୍ତି ହାଦେ ।
ଈଶ୍ୱର ପଳାଇଲେ ସେ ପର୍ବତରେ ଉଠି
ଦେଖି ଭୀମସେନ ବୋଲେ ରହ ହେ ଧୂର୍ଜଟି ।
ଈଶ୍ୱର ବୋଇଲେ ରଖ ରଖ ବୃକୋଦର
କପିଳାସ ନେଉଅଛି ଅଶ୍ଳେଷା ଅସୁର ।
ଦେବଙ୍କ ବଇରୀ ଏହୁ ଆସୁଛି ଦଉଡ଼ି
କପିଳାସ କନ୍ଦରକୁ ଧରିଛି ଉପାଡ଼ି ।
ଶୂଳ ଶକତି ମାରନ୍ତେ ଗୋଡ଼ାଏ ଲେଉଟି
ପାଞ୍ଚଯୋଜନ ହୋଇଲା ପଳାଉଛି ଫୁଟି ।
ସଦାଶିବଙ୍କୁ ସେଠାରେ ରଖାଇଲେ ଭୀମ
ଅସୁର ସଙ୍ଗରେ ଯାଇ କରିଲେ ସଂଗ୍ରାମ ।
ଦୁଃସହ ସମର ହେଲା ଅଗୋଚର କଥା
କରନ୍ତି ସମର ଦୁହେଁ ଅତି ବଳବନ୍ତା ।
ସାତଦିନ ସାତରାତି ହୋଇଲା ସମର
ଲୁହା ବେନି ଗଦା ଧରି ପିଟଇ ଅସୁର ।
ବାମ ଅଙ୍ଗ ପାତିଲେ ଯେ ଭୀମ ମହାବଳୀ
ଶତେଭାର ବେନି ଗଦା ହୋଇଗଲା ଧୂଳି ।
ଶୂନ୍ୟହସ୍ତ ହୋଇଲା ସେ ଛାଡ଼ି କଇଳାସ
ବୃକୋଦର ରୂପ ଦେଖି ଦୈତ୍ୟ କଲା ତ୍ରାସ ।
ଭୀମସେନ ଗଦା ଧରି ପ୍ରହାରିଲା ତୋଳି
ଅଶ୍ଳେଷା ଅସୁର ଦେହ ହୋଇଗଲା ଧୂଳି ।
ଅସୁର ନିଧନେ ତୋଷ ହୋଇ ସଦାଶିବ
କପିଳାସ କନ୍ଦରକୁ ଥୋଇ ନିଜ ଠାବ ।
କୋଳ କରିଣ ଭୀମକୁ ଧରି ବିଶ୍ୱେଶ୍ୱର
ବୋଇଲେକ ତ୍ରିଅମ୍ବକ ମାଗ ମୋତେ ବର ।
ଭୀମସେନ ବୋଲେ ନାଥ ତୁ ପରମ ଯୋଗୀ
ବର କାହାକୁ କହନ୍ତି ନ ଜାଣଇ ମାଗି ।
ଯେବେ ଇଚ୍ଛା କଲ ବର ଦେବାପାଇଁ ମତେ
ମୋର କାର୍ଯ୍ୟକାଳେ ତାହା ମାଗିବଇଁ ତତେ ।
ସୁମରିଲେ ମୋତେ ଦେବ ଆହେ ବିଶ୍ୱବାସି
ଭୀମଙ୍କ ବଚନ ଶୁଣି ହସିଲେ ଯେ କାଶୀ ।
ଅଲୋକିତ ବର ମୁହିଁ ଦେବି ଏତେବେଳେ
ଆବର କିସ ମାଗିବୁ ତୁହି କେତେବେଳେ ।
ଈଶ୍ୱର ପଦ ମାଗିଲେ ଦେବି ସତ୍ୟ ସତ୍ୟ
ଦେବ ଦେବ ମହାଦେବ ବୋଇଲେ ଏମନ୍ତ ।
ମନ୍ତ୍ରୀ ସହଦେବ ବୋଲେ ଶୁଣ ଜଗନ୍ନାଥ
ପୂର୍ବରୁ ସକଳ କଥା ରହିଛି ଏମନ୍ତ ।
ଈଶ୍ୱରଙ୍କୁ ସିଂହନାଦ ମାଗିଲେ ପାବନୀ
ଉମା ମହେଶ୍ୱର ଦେବେ ପୂର୍ବକଥା ଘେନି ।
ଗୋବିନ୍ଦ ବୋଇଲେ ଯେବେ ଏକା ଅଛି ଭୀମ
ଜାଣୁ ଜାଣୁ ଏବେ କିମ୍ପା ହେଉ ମତିଭ୍ରମ ।
ବହନ ଈଶ୍ୱରଙ୍କୁ ତୁ ସିଂହନାଦ ମାଗ
ରଡ଼ିଘାତେ ଦୁର୍ଯ୍ୟୋଧନ ବାହାରିବ ବେଗ ।
ଧ୍ୟାନରେ ଚିନ୍ତିଲେ ଯହୁଁ ପାଣ୍ଡବ ସୁନ୍ଦର
ଆସନ କମ୍ପିଲା ତହୁଁ ମହେଶ୍ୱରଙ୍କର ।
ଧ୍ୟାନରେଜାଣିପାରିଲେ ଦେବ ପଶୁପତି
ନିକଟେ ଡାକି ବୋଇଲେ ଶୁଣ ଗୋ ପାର୍ବତୀ ।
ଆମ୍ଭଙ୍କୁ ଯେ ସିଂହନାଦ ମାଗିଅଛି ଭୀମା
ଏଥିକି ବିଚାର କିସ କହ ଆଗେ ଉମା ।
ପାର୍ବତୀ ବୋଇଲେ ଭୀମ ଆମ୍ଭ ଉପକାରୀ
କେବଳ ଆମ୍ଭଙ୍କୁ ସେହି ଦେଇଛି ଉଦ୍ଧରି ।
ଅବିଳମ୍ବେ ଦିଅ ନାଥ ନ ବିଚାରି ଆନ
ବର୍ତ୍ତିବୁ ନାହିଁ ପାଣ୍ଡବ କୋପେ ତ୍ରିଲୋଚନ ।
ଘନ ଘନ ଆସନ ଯେ କମ୍ପେ ସଦାନନ୍ଦ
ଚିରକୁଟିରୁ କାଢ଼ିଲେ ଦେବ ସିଂହନାଦ ।
ଈଶ୍ୱର ବୋଇଲେ ତୁହି ବହନରେ ଯିବ
ତିନିଘାନ୍ତି ଶବଦ ତୁ ଭୀମସେନେ ଦେବ ।
ସିଂହନାଦ ଆସନ୍ତେ ଯେ କମ୍ପଇ ପବନ
ଶବଦଘାତେ କମ୍ପଇ ଚଉଦ ଭୁବନ ।
କାଳାନଳ ଜିଣି ଦିଶେ ସିଂହନାଦ ଜ୍ୟୋତି
ଆଦିତ୍ୟହୁଁ ଶତଗୁଣେ ଦିଶେ ରୂପକାନ୍ତି ।
ଅନ୍ତରୀକ୍ଷରେ ଆସିଲା ବ୍ୟାସସର ତୀରେ
ପାଣ୍ଡବସୁନ୍ଦର ଯାଇ ଧରେ ବାମକରେ ।
ନିସତ ହୋଇଲୁ କିମ୍ପା ରେ ମାନଗୋବିନ୍ଦ
କରେ ଧରିଣ ପାଣ୍ଡବ ଚୁମ୍ବେ ସିଂହନାଦ ।
ଆକର୍ଷିଣ ବୃକୋଦର ଗାଢ଼େ କଲା ନାଦ
ମହୀମଣ୍ଡଳ କମ୍ପିଲା ହୋଇଲା ସ୍ତବନ୍ଦ ।
ପଦ୍ମପତ୍ରେ ଢଳ ଢଳ ଯେହ୍ନେ ହୁଏ ପାଣି
ତେସନେ ଟଳମଟଳ ହୋଇଲା ଧରଣୀ ।
ପୃଥିବୀ ଛାଡ଼ି ଶୂନ୍ୟରେ ଉଡ଼ିଲେ ଭୂଧରେ
ମାନଗୋବିନ୍ଦର ନିଦ୍ରା ଭାଜେ ଧାତିକାରେ ।
ପୁଣି ଆଉ ରଡ଼ି ଏକ ଦେଲ ବୀର ଭୀମ
ପାଞ୍ଚଲକ୍ଷ ଯୁଣ ଦୂରେ ଥାଇ କମ୍ପେ ଯମ ।
ପାତାଳେ ଅନନ୍ତ ନାଗ କମ୍ପାଇଲେ ଫେରୁ
ନବଦ୍ୱୀପ ସପ୍ତସିନ୍ଧୁ କମ୍ପିଗଲା ମେରୁ ।
ଆଦିତ୍ୟ ଧ୍ରୁବମଣ୍ଡଳ ଅମର ମଣ୍ଡଳ
ଆକାଶରୁ ଉଛୁଳୁଛି ସପ୍ତସିନ୍ଧୁ ଜଳ ।
ରେରେକାର ଶୁଣିକରି ରାଜା ଧାର୍ତ୍ତରାଷ୍ଟ୍ରି
ବାହାସ୍ଫୋଟ ମାରିଣ ସେ ଗର୍ଜିକରି ଉଠି ।

ପ୍ରଖର ନିଶ୍ୱାସ ବହେ ବୁଲେ ବେନିଡୋଳା
ବେନି କରରେ ଆକର୍ଷି ଧଇଲେ କମଳା ।
ବୋଇଲେ ପ୍ରତିଜ୍ଞା ତୁହି କରିଅଛୁ ବାବୁ
ଭୀମ ସାତରଡ଼ି ଦେଲେ ତାହାକୁ ସହିବୁ ।
ଦୁର୍ଯ୍ୟୋଧନ କମଳାଙ୍କୁ ଭୁଜେ ଦେଇ ପେଲି
ଅଧରକୁ ପୁଷ୍ଟ କରି ବୋଲେ ପଳା ବୋଲି ।
ମହାଲକ୍ଷ୍ମୀ ବୋଇଲେରେ ପଳାଉଛି ମୁହିଁ
ତୋହର ଭର୍ତ୍ସନାକୁ ମୁଁ ବାଟଥିଲି ଚାହିଁ ।
ଆଉ ରଡ଼ିଏ ଯଦ୍ୟପି ସହିବୁ ପାମର
ତେବେ ମହୀମଣ୍ଡଳେ ତୁ ହୋଇବୁ ଅମର ।
ଏତେ କହି ମହାଲକ୍ଷ୍ମୀ କରିଲେ ଗମନ
ବାତେ ରମ୍ଭାପତ୍ର ପ୍ରାୟେ କମ୍ପେ ଦୁର୍ଯ୍ୟୋଧନ ।
ସତୁରି ସତୁରି ଭାର ଗଦା ବେନି କରେ
ଚଳଇ ମାନଗୋବିନ୍ଦ ପବନହୁଁ ଖରେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ପାର୍ବତୀ
କପିଳାସ କନ୍ଦର ନ ରହିବ ଏ ଘାନ୍ତି ।
ପୁଣି ହିଁ ବୋଇଲେ ମୁହିଁ ମନ୍ଦକର୍ମ କଲି
ଡରେ ଭୀମସେନକୁ ଯା ସିଂହନାଦ ଦେଲି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ପୁଣି ରଡ଼ି ଏକ କୋପେ ଦେଲା ସେ ମାରୁତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସୁତଳ ରସାତଳ
ବିତଳ ଅତିତଳ ଯେ ପୁଣି ମହାତଳ ।
ଏତେକ ଭୁବନ ଦଳଦଳ ହୋଇ କମ୍ପି
ଚଉଦ ବ୍ରହ୍ମାଣ୍ଡଯାକ ଶବ୍ଦ ଗଲା ବ୍ୟାପୀ ।
ଜଳଛାଡ଼ି ଜଳଚର ପଡ଼ିଲେ ଶୁଷ୍କରେ
ସ୍ୱର୍ଗ ଛାଡ଼ିଣ ପଳାନ୍ତି ଭୟରେ ଅମରେ ।
ମେରୁ କୁଣ୍ଢାଇ ଧଇଲେ ସର୍ବ ଦେବଲୋକେ
ଅସାକ୍ଷମରେ ପଡ଼ିଲେ କେତେ ବୃନ୍ଦାରକେ ।
ବିହନ୍ତା ପୁରୁଷ ବିଶ୍ୱଦେବାଦି ସକଳେ
ପବନ ବିଘାତେ ରମ୍ଭା ତରୁ ଯେହ୍ନେ ଟଳେ ।
ତେସନକ ପରକାରେ ସକଳେ ପଡ଼ିଲେ
କେହି କାହାରି କଥାକୁ ଜାଣି ନ ପାରିଲେ ।
ଚାରିଖାନି ଚଉରାଶି କୋଟି ଜୀବଜନ୍ତୁ
ସମସ୍ତେ ହେଁ ମୋହଗଲେ କାର ନାହିଁ ହେତୁ ।
ଜୟ ଜୟ ଜଗନ୍ନାଥ ଶରଣ ସୋଦର
ଏ ଦାସ ବିନତି କରେ ବାରେ ଘେନାକର ।
ପଡ଼ିଛି ନାନା ଜଞ୍ଜାଳେ ନାହିଁ ମୋର ଗତି
ତୁମ୍ଭେ କେବଳ ଭରସା ହେ ଅଖିଳ ପତି ।
ତୁମ୍ଭ ଛଡ଼ା କେହି ନାହିଁ ଶରଣ ସୋଦର
ଶାରଳା ଦାସକୁ ବାରେ ଏ ସଙ୍କଟୁ ତାର ।

—୦—

## ଦୁର୍ଯ୍ୟୋଧନ ବ୍ୟାସ ସରୋବରରୁ ବାହାର, ଭୀମଙ୍କୁ ରାଜା ବୋଲି ସମସ୍ତଙ୍କର ମାନ୍ୟ ଓ ତ୍ୱଷ୍ଟା ଋଷିଙ୍କର ବିବରଣ

ଏଥୁଅନ୍ତେ ବିଳଙ୍କ ଦେଶର ନୃପବର
ଅଗସ୍ତି ମୁନିଙ୍କୁ କରି ବହୁତ ଆଦର ।
ଧୂପ ଦୀପ ନଇବେଦ୍ୟେ ତାହାଙ୍କୁ ପୂଜିଣ
ପୁଣ ନାନା ଅଳଙ୍କାରେ କରିଲେ ଭୂଷଣ ।
ବୋଇଲେ ହେ ମୁନିବର ତୁମ୍ଭ ପ୍ରସାଦରେ
ନିତି ଗଙ୍ଗାସ୍ନାନ ଫଳ ପାଉଛି ମୁଁ ଘରେ ।
ତୁମ୍ଭ ମୁଖରୁ ନିଃସୃତ ଭାରତ ଚରିତ
ପ୍ରତିଦିନ ଶୁଣି ମନ ହେଉଛି ତୃପତ ।
ଭୀମସେନ ସିଂହନାଦ କଲେ ତିନି ଘାନ୍ତି
ଚଉଦ ଭୁବନ ପ୍ରାଣୀ ଅଜ୍ଞାନ ହୁଅନ୍ତି ।
ଦୁର୍ଯ୍ୟୋଧନ ବ୍ୟାସସର ମଧ୍ୟରେ ତ ଥିଲା
ଭୀମ ସିଂହନାଦ ଶୁଣି କେମନ୍ତ କରିଲା ।
ସେହିକଥା କହି କର ସନ୍ଦେହ ଛେଦନ
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ ।
ଦୁର୍ଯ୍ୟୋଧନ ମୁଥେ ମାରି କପାଟକୁ ଭାଜି
ଆରେରେ ପାଣ୍ଡବ ବୋଲି ଧାମେ ଗଳ ଗାଜି ।
ଦେବର୍ଷି ପୁରାଣ ଶୁଣୁଥିଲେ ଯେ ଆକାଶେ
ଅସାକ୍ଷମ ହୋଇ ପୋଥି ପକାଇଲେ ବ୍ୟାସେ ।
ବିଷ୍ଣୁ ପୁରାଣ ମାର୍କଣ୍ଡ ପୁରାଣର ପୋଥି
ଶିବ ନାରଦ ପୁରାଣ ଏହି ଚାରିଜାତି ।
ଏ ଚାରି ପୋଥି ପଡ଼ିଲା ଭୀମର କନ୍ଧରେ
କୁମ୍ଭମାସ କୃଷ୍ଣପକ୍ଷ ସପ୍ତମୀ ତିଥିରେ ।
ଭୀମକୁ ସେଦିନ ଥିଲା ସମ୍ପଦ ଯେ ତାର
ଚିତ୍ରା ନକ୍ଷତ୍ର ଅଟଇ ପୁଣ ସେ ଦିନର ।
ବିଷ୍ଟି ନାମରେ କରଣ ବ୍ୟତିପାତ ଯୋଗ
ଧର୍ମବେଳା ଯାଉଅଛି ମଙ୍ଗଳର ଭୋଗ ।
ଦୁର୍ଯ୍ୟୋଧନ ବାହାରିଲା ବ୍ୟାସସରୋବରୁ
ଆସରେ ପାଣ୍ଡବେ ଏବେ କୃଷ୍ଣ ରକ୍ଷା କରୁ ।
ବଦନ୍ତି କେଶବ ଶୁଣ ଆହେ କୁରୁସାଇଁ
ତୁମ୍ଭରି ଅଧର୍ମ ପରି ପାଣ୍ଡବଙ୍କ ପାଇଁ ।
ଅର୍ଜ୍ଜୁନ କୁମର ନାମ ଅଟେ ଅଭିମନ୍ୟୁ
ତାହାକୁ ବେଢ଼ି ମାଇଲ ସର୍ବେ ଜାଣୁ ଜାଣୁ ।
ଆଗେ ନିଜେ ସଜ ହୋଇ ଆସ କୁରୁପତି
ତୋହର ଯାହାକୁ ଇଚ୍ଛା ଡାକ ଶୀଘ୍ର କତି ।
ମାନଗୋବିନ୍ଦ ବୋଇଲା ଆମ୍ଭର ଏ ମତ
ରଥି ରଥି ଗଜେ ଗଜ ସମାନ ସଂଯୁକ୍ତ ।

ରାଜା ରାଜା ମନ୍ତ୍ରୀ ମନ୍ତ୍ରୀ ପଦାତି ପଦାତି
ମୋର ସଙ୍ଗେ ରଣ କରୁ ତୁମ୍ଭର ନୃପତି ।
ଦୁର୍ଯ୍ୟୋଧନ ବୋଇଲା ଏ ସମରର ଧର୍ମ
କୃଷ୍ଣ ବୋଇଲେ ରଖିଛୁଟିକି ଏ ନିୟମ ।
ଦୁଃଶାସନ ମାଇଲା ଯେ ଶିଶୁ ଅଭିମନ୍ୟୁ
କର୍ଣ୍ଣ ମାରେ ଘଟୋତ୍କଚ ଭୀମଙ୍କର ସୁନୁ ।
ଦ୍ରୋଣଗୁରୁ ନାଶ କଲେ ଶ୍ୱେତ କୁମରକୁ
ଶଙ୍ଖକୁ ମାଇଲେ ଦ୍ରୋଣ ଯୁଦ୍ଧ ଅପାତ୍ରକୁ ।
ଚାରିପାଦେ ପୂର୍ଣ୍ଣ ରହିଅଛି ତୁମ୍ଭ ଧର୍ମ
ଆମ୍ଭ ଥାଟ ରାଜା ଅଟେ ବୀରବର ଭୀମ ।
ଦୁର୍ଯ୍ୟୋଧନ ବୋଲେ ହରି ତୁମ୍ଭେ ତ ମଧ୍ୟସ୍ଥ
ଧର୍ମ ଲଙ୍ଘି କିମ୍ପା କହୁଅଛ ପରମାର୍ଥ ।
ଆଦ୍ୟରୁ ବହୁତ ରୂପେ କପଟ ମୁଁ କଲି
ତୋର ଯୋଗୁଁ ମରାଇଣ ଏକାକୀ ରହିଲି ।
ଗାନ୍ଧାରୀ ଶତେକ ପୁତ୍ର କଲେ ଉପଜାତ
କୁନ୍ତୀ ପାଞ୍ଚପୁତ୍ରେ କିମ୍ପା ହୋଇଲେ ଉଦିତ ।
ଆଦ୍ୟରୁ ଧର୍ମକୁ ଆଶ୍ରା କରନ୍ତି ପାଣ୍ଡବେ
ଶେଷକାଳକୁ କେମନ୍ତେ ଧର୍ମକୁ ଲଙ୍ଘିବେ ।
ସତ୍ୟ ଧର୍ମ ସବୁବେଳେ ଆଶ୍ରୟ ତାଙ୍କର
ପୁଣି କୂଟ କରି କିମ୍ପା କହ ଚକ୍ରଧର ।
ତୁମ୍ଭର ଥାଟରେ ଯେବେ ରାଜା ଅଟେ ଭୀମ
ସମସ୍ତେ ତାହାକୁଟିକୁ କରିବେ ପ୍ରଣାମ ।
ଭୀମର ଚରଣେ ତୁମ୍ଭେ ହୁଅ ପରଣାମି
ପଞ୍ଚକଟକରେ ଯେବେ ହେଲା ତୁମ୍ଭ ସ୍ୱାମୀ ।
ଏଥୁଅନ୍ତେ ଶୁଣ ତୁମ୍ଭେ ବୈବସ୍ୱତ ମନୁ
ତହୁଁ ଶ୍ରୀକୃଷ୍ଣ ଆପଣେ ଉଠିଲେ ଆସନୁ ।
ଭୀମସେନର ମଥାରେ ବାନ୍ଧିଲେକ ପାଟ
ଆପଣେ ଶ୍ରୀକରେ ପୁଣି ଦେଲେ ଯେ ମୁକୁଟ ।
ତ୍ରିଶାଖାରେ ଶ୍ୱେତ ଦୁବ ଶୁକ୍ଳ ପୁଷ୍ପମାଳେ
ହରି ଚନ୍ଦନର ଚିତା ଦେଲେ ଭୀମଭାଲେ ।
ଦୁର୍ଯ୍ୟୋଧନ ବାକ୍ୟେ କ୍ରମେ ତହୁଁ ବନମାଳୀ
ଭୀମସେନର ଛାମୁରେ କଲେ ନିଉଛାଳି ।
ପୁଣି ଭୀମ ପାଦଦେଶେ ହେଲେ ପରଣାମି
ବୋଇଲେ ପଞ୍ଚକଟକେ ହେଲୁ ଦେବସ୍ୱାମୀ ।
ଶ୍ରୀକୃଷ୍ଣଙ୍କ ପାଦତଳେ ପଡ଼ିଲେ ଯୁଧିଷ୍ଠି
ଯୁଧିଷ୍ଠି ଚରଣତଳେ ପଡ଼ିଲେ କିରୀଟୀ ।
ନକୁଳ ସହଦେବ ଯେ ପାର୍ଥ ପାଦତଳେ
ଦୃଷ୍ଟଦ୍ୟୁମ୍ନ ଆଦି କରି ନମିଲେ ସକଳେ ।
ଦେଖି ଆଶ୍ଚର୍ଯ୍ୟ ହୋଇଲା ସେ ମାନଗୋବିନ୍ଦ
ମନେ କରଇ ବିଚାର କୃଷ୍ଣ କଲେ ଛନ୍ଦ ।

ଆସ ଆସ ଆରେ ଭୀମା ଡାକେ ଦୁର୍ଯ୍ୟୋଧନ
ଯୁଝିଣ ପଞ୍ଚକଟକେ ହୋଇବୁ ରାଜନ ।
ପଚାରିଲେ ବୈବସ୍ୱତ ମନୁ ନୃପବର
ବଡ଼ ଆଶ୍ଚର୍ଯ୍ୟ କହିଲ ଆହେ ମୁନିବର ।
କୃଷ୍ଣ ପ୍ରଣାମ କରନ୍ତି ଯୁଧିଷ୍ଠି ଦେବଙ୍କୁ
ଯୁଧିଷ୍ଠି ପ୍ରଣାମ କଲେ କିପରି ଭୀମକୁ ।
ଯୁଧିଷ୍ଠି ଧୃଷ୍ଟଦ୍ୟୁମନ ପୁଣି ଦେବରାଜ
ଏହାଙ୍କୁ ପ୍ରଣାମେ ଭୀମ ନୋହିଲା ଦହିର୍ଯ୍ୟ ।
ଏଥିର ଚରିତ ମୋତେ ଆଶ୍ଚର୍ଯ୍ୟ ଲାଗଇ
ଏହା ମୋତେ ସଂକ୍ଷେପିଣ କହ ମୁନିସାଇଁ ।
ବଦନ୍ତି ଅଗସ୍ତି ମୁନି ମହା ତପୋବନ୍ତ
ଶୁଣ ବୈବସ୍ୱତ ମନୁ ଏଥିର ଚରିତ ।
ବୈଶାଖ ମାସ ଶୁକଳ ତୃତୀୟାର ତିଥି
ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।
ମହାସମ୍ଭର୍ବେ ଆସନେ ବିଜୟ ବାସବ
ଅମର ହୋଇଣ ଅଛି ବସନ୍ତ ଉତ୍ସବ ।
ସେହିଦିନ ଇଚ୍ଛାକରି ତ୍ୱଷ୍ଟା ମହାଯତି
ଅଭିଷେକ ଦେଖିବାକୁ ଅମରେ ଯାଆନ୍ତି ।
ଦେବ ସଭାତଳେ ଋଷି ଯାଇ ଠିଆହେଲେ
ଇନ୍ଦ୍ରଦେବ ବସିବାକୁ ତାଙ୍କୁ ନ କହିଲେ ।
ଉଭା ହୋଇଲେ ଆହୁତି ସରିବା ପର୍ଯ୍ୟନ୍ତେ
ଅପମାନେ ଗଲେ ହର ଉଦ୍ୟାନ ବନସ୍ତେ ।
ଭୂତନାମେ ତାହାଙ୍କର ଅଟଇ ସନ୍ତାନ
ସେ ଭୂତଋଷିଙ୍କୁ ତ୍ୱଷ୍ଟା ବୋଇଲେ ବଚନ ।
ତୁ ଏବେ ଈଶ୍ୱର ପାଶେ ଯାଇ ସେବା କର
ଅମରେ ଇନ୍ଦ୍ର ହେବାକୁ ତାଙ୍କୁ ମାଗ ବର ।
ପିତାଙ୍କ ବଚନ ଶୁଣି ଭୂତ ମହାଋଷି
ସତ୍ୱରେ ପ୍ରବେଶ କଲେ କପିଳାସେ ଆସି ।
ରାତ୍ର ପ୍ରହରକେ ଆଉଁ ହୋଇ ଶୌଚବନ୍ତ
କପିଳାସ ଭୁବନକୁ ପହଁରଇ ନିତ୍ୟ ।
ନିତି ଛେରାପହଁରା ଯେ କରୁଥାନ୍ତି ମୁନି
ଚବିଶ ବର୍ଷ ଖଟିଲେ ଦିବସ ରଜନୀ ।
ଛେରାପହଁରା କରନ୍ତି ଚତୁଃସମ ଗୋଳି
ଛିଞ୍ଚିଦେଇ ଗଡ଼ି ଗଡ଼ି ଯାନ୍ତି ବେନି ଓଳି ।
ବୃଷର ଶୁକ୍ଳପକ୍ଷ ଯେ ଚୌଠି ସୌରୀବାର
ଅଶ୍ଳେଷା ନକ୍ଷତ୍ର ଅଟେ ପୁଣି ସେଦିନର ।
ଗଡ଼ିଗଲାଣି ଆସିଣ ରାତ୍ର ବେନି ଘଡ଼ି
ଶିବ ଶିବ ବୋଲି ମୁନି ଯାଉଛନ୍ତି ଗଡ଼ି ।
କାଳିଞ୍ଜନ ନାମେ ସର୍ପ ତହିଁ ଭ୍ରମୁଥିଲା
ଗଡ଼ିଯାନ୍ତେ ଭୂତ ମହାଋଷିଙ୍କି ଦଂଶିଲା ।

ତାହାର ବିଷ ଜ୍ୱାଳାରେ ମଲା ବାଳଶିଷ୍ୟ
ହରପାର୍ବତୀ ତକ୍ଷଣେ ହୋଇଲେ ପ୍ରବେଶ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଧୂର୍ଜଟି
ଚୌବିଂଶ ବରଷ ତପ କଲା ଏ ପୁତ୍ରଟି ।
ଅକାରଣେ ମଲା ଏହି ମହାଦୁଃଖ ପାଇ
ସ୍ୱାମୀ ତୋର ସେବା କଲେ ଏହା କି ହୁଅଇ ।
ମୃତପିଣ୍ଡ ଦେଖି ଶିବ ହୋଇଲେ ଚିନ୍ତିତ
ନାରଦ ଋଷିଙ୍କ ଚାଇ ବୋଇଲେ ଏମନ୍ତ ।
ଏ ମୃତପିଣ୍ଡଟି ନେଇ ବ୍ରହ୍ମାପାଶେ ଦେବ
ତୁମ୍ଭଠାରୁ ଭଲ ସ୍ଥାନେ ବସାଅ କହିବ ।
ତହୁଁ ମୃତପିଣ୍ଡ ଗୋଟି ଘେନିଣ ନାରଦେ
ବ୍ରହ୍ମା ଭୁବନେ ପ୍ରବେଶ ହେଲେ ଅପ୍ରମାଦେ ।
ସେ ମୃତପିଣ୍ଡଟି ନେଇ ପିତାପାଶେ ଦେଲେ
ମହେଶ କହିବା କଥା ସବୁ ଜଣାଇଲେ ।
ତହୁଁ ବେଦପତି ତାକୁ ଜୀବନ୍ୟାସ ସାରି
ବୋଇଲେ ମୋଠାରୁ ଭଲ ଅଟେ ସ୍ୱର୍ଗପୁରୀ ।
ଏ ପୁତ୍ର ଘେନି ନାରଦ ଏହିକ୍ଷଣି ଯାଅ
ସ୍ୱର୍ଗକୁ ନେଇଣ ଇନ୍ଦ୍ରପୁରରେ ବସାଅ ।
ପିତାର ବଚନ ଘେନି ଚଳିଲେ ନାରଦେ
ସେ ଋଷିଙ୍କି ବସାଇଲେ ନେଇ ଇନ୍ଦ୍ରପଦେ ।
ଜମ୍ଭୁଭେଦୀ ସ୍ୱର୍ଗପୁରେ ରାଜା ହୋଇଥିଲା
କଣୟ ଗିରିକି ଯାଇ ଧ୍ୟାନରେ ବସିଲା ।
ନବସହସ୍ର ବରଷ ବସେ ଏକଧ୍ୟାୟେ
ବୈନତେୟ ପୃଷ୍ଠେ ହରି କରିଲେ ବିଜୟେ ।
ଇନ୍ଦ୍ର ଦେବତାଙ୍କୁ ତହୁଁ ଦେଖି ନାରାୟଣ
ତାହାଙ୍କୁ ପୁଚ୍ଛା କରିଲେ ପୂର୍ବର କାରଣ ।
ମଘବା ବୋଇଲେ ମୁହିଁ ହେଲି ହତରାଜ୍ୟ
ଭୂତ ଋଷି ଶିବ ସେବିନେଲା ମୋ ଐଶ୍ୱର୍ଯ୍ୟ ।
ହତରାଜ୍ୟ ହୋଇ କରେ ତୁମ୍ଭଙ୍କୁ ମୁଁ ସେବା
ଅନୁଗ୍ରହ କରି ମୋତେ ନିଜ ରାଜ୍ୟ ଦେବା ।
ନାରାୟଣ ବୋଇଲେ ତୁ ଭୂତ ଋଷି ମାରି
ତୋ ନିଜ ରାଜ୍ୟରେ ତୁହି ବସ ଯାଇ କରି ।
ଇନ୍ଦ୍ର ବୋଲେ ମୋର ହାତେ ନାହିଁ ଧନୁଶର
କି ଘେନି ଋଷି ସଙ୍ଗରେ କରିବି ସମର ।
ଗୋବିନ୍ଦ ବୋଇଲେ ତୁଙ୍ଗଭଦ୍ରା ନଦୀତୀରେ
ଦଧୀଚି ଅନଳ ବଟ ତଳେ ତପ କରେ ।
ତାହାକୁ ବୋଲିବୁ ସେହୁ ନିଜ ପ୍ରାଣ ଛାଡୁ
ଶିର କର ପାଦ ତାର ଭୂମିରେଣ ପଡୁ ।
ତାହାର ଚର୍ମ ହୋଇବ ତୋ ଅଙ୍ଗରେ ସେହ୍ନା
ଦେବ ଶରମାନ ତହିଁ ପଡ଼ି ହେଉ ଚୂନା ।
ବଜ୍ର କରିବୁ ତୁ ନେଇ ତାର ଯେଉଁ ମୁଣ୍ଡ
ପଞ୍ଜରା ହାଡ଼ ସବୁକୁ କରିବୁ କୋଦଣ୍ଡ ।
ତାର ଯେଉଁ ନାଡ଼ି ଗୋଟି ତହିଁ କର ଗୁଣ
ତାହାର ଅଙ୍ଗୁଷ୍ଠି ହେଉ ତୋର ତୀକ୍ଷ୍ଣବାଣ ।
ସେ ନାରାଚମାନଙ୍କୁ ତୁ ଧନୁରେ ପୂରାଇ
ତେବେ ଭୂତ ମହର୍ଷିଙ୍କି ମାରିବୁ ତୁ ଯାଇଁ ।
ନାରାୟଣଙ୍କ ବଚନେ ଗଲା ସୁରପତି
ତୁଙ୍ଗଭଦ୍ରା ନଦୀତୀରେ ଭେଟିଲା ଯେ ଯତି ।
ଇନ୍ଦ୍ରଦେବତା ତାହାଙ୍କୁ ବହୁତ ବିନୋଇ
ନବସସ୍ର ବର୍ଷ ବସେ ଲୟ ଭଗ୍ନ ନାହିଁ ।
ତେକେ ହେଁ କାଳକେ ଲୟ ଭଗନ ହୁଅନ୍ତେ
କହିଲେ କିମ୍ପା ବସିଛ କହ ସୁରନାଥେ ।
ଇନ୍ଦ୍ର ବୋଇଲେ ଶୁଣିବା ହେଉ ତପୋବନ୍ତ
ନାରାୟଣଙ୍କର ଆଜ୍ଞା ହୋଇଛି ଏମନ୍ତ ।
ତୁମ୍ଭେ ପ୍ରସନ୍ନ ହୋଇଣ ମୋତେ ବର ଦେବ
ମୋହର ନିମନ୍ତେ ତୁମ୍ଭେ ଶରୀର ତେଜିବ ।
ତୁମ୍ଭ ଚର୍ମ ଅସ୍ଥିରେ ମୁଁ କବଚ କମାଣ
କରି ଭୂତଋଷି ସଙ୍ଗେ କରିବଇଁ ରଣ ।
ଇନ୍ଦ୍ରର ବଚନ ଶୁଣି ଋଷି ମହାତମା
ଶରୀରରୁ ବିସର୍ଜିଲା ଆପଣାର ଆତ୍ମା ।
ଦେହରୁ ଚର୍ମ ସକଳ ଛେଲି କାଢ଼ି କରି
ସେହ୍ନା କରିଣ ଦେହରେ ଘେନେ ବଜ୍ରଧାରୀ ।
ଋଷିର ମୁଣ୍ଡକୁ ଆଣି କରିଲା କବଚ
ପଞ୍ଜରା ହାଡ଼ କୋଦଣ୍ଡ କଲା ସହସ୍ରାକ୍ଷ ।
ଋଷିର ନାଡ଼ୀକୁ ନେଇ କଲା ଧନୁଗୁଣ
ଦଶଅଙ୍ଗୁଷ୍ଠିମାନଙ୍କୁ କଲା ତୀକ୍ଷ୍ଣବାଣ ।
ବେନି ଗଦା କଲା ନେଇ ବାହା ବେନି ହାଡ଼
ଶକ୍ତି ମୁଦ୍ଗର କଲା ନେଇ ବେନି ଗୋଡ଼ ।
ଏମାନ ଧରିଣ ଚଳିଗଲା ସସ୍ରଯୋନି
ଭୂତଋଷି ସଙ୍ଗେ ରଣ କଲା ଶସ୍ତ୍ରଘେନି ।
ଭୂତଋଷି ଶତଧାରା ଶକତି ମାଇଲା
ଦଧୀଚି ଚର୍ମରେ ପଡ଼ି ଚୂର୍ଣ୍ଣ ହୋଇଗଲା ।
ଇନ୍ଦ୍ରପ୍ରହାର କରିଲେ ଧରିଣ ଶକତି
ମୋହଗତ ହୋଇପଡ଼େ ଐରାବତ ହସ୍ତୀ ।
ପୁଣି ଇନ୍ଦ୍ର ପ୍ରହାରିଲେ ଋଷିର ଅଙ୍ଗୁଷ୍ଠି
ଭୂତ ମହାଋଷିଙ୍କର ଦେହେ ଗଲା ଫୁଟି ।
ଭୂତଋଷି ପଡ଼ିଗଲେ ଅସାଷ୍ଟମ ହୋଇ
ଜାଣିଲେ ଏପଦ ମୋତେ ଆଉ ଭୋଗ ନାହିଁ ।
ବାହୁଡ଼ିଲା ପୁଣି ଇନ୍ଦ୍ର ପାଇବ ଏ ସ୍ଥାନ
ତ୍ୱଷ୍ଟାକୁ ନାରଦ ଏହା କହିଲେ ବଚନ ।

ତୋହର ପୁତ୍ରକୁ ଇନ୍ଦ୍ର ପକାଇଲା ମାରି
ଅମରେଶ ପଦେ ପୁଣି ବସେ ଯାଇ କରି ।
ଆନ ଦୁଇ ପୁତ୍ର ତୋର ପଠାଅ ସତ୍ୱର
ଇନ୍ଦ୍ର ମାରି ଇନ୍ଦ୍ରପଦ କର ଅଧିକାର ।
ତ୍ୱଷ୍ଟାର ବଚନ ଘେନି ବେନିପୁତ୍ର ଗଲେ
ଇନ୍ଦ୍ର ସଙ୍ଗତେ ବହୁତ ସମର କରିଲେ ।
ଅନେକ ମତେ ପ୍ରହାର କଲେ ଦେବଶର
ଋଷିର ଚର୍ମରେ ପଡ଼ି ହୋଇଯାଏ ଚୁର ।
ପର୍ବତ ବାଣ ମାଇଲେ ଋଷିଙ୍କ ନନ୍ଦନ
ଋଷି କବଚରେ ପଡ଼ି ହୋଇଗଲା ଚୂର୍ଣ୍ଣ ।
ଋଷିପାଦେ ହୋଇଥିଲା ଯେ ଶକ୍ତି ନିର୍ମିତ
ତାହାକୁ ମାରନ୍ତେ ମଲେ ତ୍ୱଷ୍ଟା ବେନିସୁତ ।
ତ୍ୱଷ୍ଟା ଋଷି ପାଶେ ପୁଣି ନାରଦ ମିଳିଲେ
ତୋର ବେନିପୁତ୍ର ଇନ୍ଦ୍ର ମାଇଲା ବୋଇଲେ ।
ଶୁଣି କୋପେ ତ୍ୱଷ୍ଟାଋଷି ଧାଇଁଲେ ଆପଣ
ତହୁଁ ନାରଦ ମହର୍ଷି ହେଲେ ଅନ୍ତର୍ଦ୍ଧାନ ।
ଇନ୍ଦ୍ରଙ୍କୁ କହିଲେ ତାର ପୁତ୍ର କଲୁ ନଷ୍ଟ
ତେଣୁ କୋପରେ ଆସଇ ତ୍ୱଷ୍ଟା ତପୋନିଷ୍ଠ ।
ଶଙ୍କର ବ୍ରହ୍ମା ଶଙ୍କିତ ଯାର କୋପାନଳେ
ସ୍ୱର୍ଗ ତେଜି ନ ପଳାଉ କିମ୍ପା ଆଖଣ୍ଡଳେ ।
ତ୍ୱଷ୍ଟାଋଷି ଅଟନ୍ତି ଯେ ତ୍ରୈଲୋକ୍ୟର ଶ୍ରେଷ୍ଠ
ଦହନ କରିବେ ନିଶ୍ଚେ ତୋତେ ତପୋନିଷ୍ଠ ।
ଦେହରୁ କାଢ଼ିଲେ ଇନ୍ଦ୍ର ନିଜେ ପଞ୍ଚଆତ୍ମା
ପାପ ଆତ୍ମାଙ୍କୁ ଘେନିଣ ବସିଛି ମହାତ୍ମା ।
ପୁତ୍ରର ନିଧନେ ତ୍ୱଷ୍ଟାଋଷି ମହାକୋପ
ଯେସନକ ଗରଳକୁ ଛାଡ଼େ କାଳସର୍ପ ।
ଘନ ଘନ ନିଃଶ୍ୱାସ ଯେ ଛାଡ଼େ ଅତି ବେଗେ
ତ୍ୱଷ୍ଟା ବିଜେ କଲେ ଯାଇଁ ଇନ୍ଦ୍ରଦେବ ଆଗେ ।
ଆରେ ଇନ୍ଦ୍ର ତୁ ମାଇଲୁ ମୋର ପୁତ୍ର ତିନି
ଶରୀର ଦହିର୍ଯ୍ୟ ତୋର ହେଉ ଏହିକ୍ଷଣି ।
ତ୍ୱଷ୍ଟାର କୋପେ ଦହନ କଲା ଇନ୍ଦ୍ରକାୟେ
ତେତିଶକୋଟି ଦେବତା ଦେଖନ୍ତି ସଭିଏଁ ।
ତହୁଁ ତ୍ୱଷ୍ଟା ମହାଋଷି ନେଲେ ଇନ୍ଦ୍ରପଦ
ସଂସାର ପାଳନେ ମାତ୍ର ଘଟିଲା ପ୍ରମାଦ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଶରୀରୁ ପଞ୍ଚାତ୍ମା କାଢ଼ିଥିଲା ସୁରପତି ।
ପ୍ରଥମ ଆତ୍ମାକୁ ନେଇ ଧର୍ମରେ ଥୋଇଲେ
ଧର୍ମ ତେଜରୁ ଯୁଧିଷ୍ଠି ଜନମ ହୋଇଲେ ।
ଦ୍ୱିତୀୟ ଆତ୍ମା ଥୋଇଲେ ନେଇଣ ପବନେ
ସେ ଆତ୍ମାକୁ ଘେନି ଜାତ ହେଲେ ଭୀମସେନେ ।
ତୃତୀୟ ଆତ୍ମା ଥୋଇଲେ ଶୂନ୍ୟେ ସସ୍ରଯୋନି
ତହିଁରୁ ଜାତ ହୋଇଲେ ବୀର ଫାଲଗୁନି ।
ବାକୀ ଦ୍ୱିଆତ୍ମା ଅଶ୍ୱିନୀ କୁମାରଙ୍କୁ ଦେଲେ
ନକୁଳ ସହଦେବ ଯେ ତହୁଁ ଜାତ ହେଲେ ।
ଭାରା ନିବାରଣ ପାଇଁ ଏ ଦ୍ୱାପର ଯୁଗେ
ଏକାତ୍ମାରୁ ପାଞ୍ଚରୂପ ହେଲେ ମଧ୍ୟସ୍ୱର୍ଗେ ।
ଏହାଙ୍କୁ ଅନ୍ତର ବୋଲି ନ ଭାବ ନୃପତି
ଏ ପାଞ୍ଚଜଣର ଆତ୍ମା ଅଟେ ଏକ ମୂର୍ତ୍ତି ।
ଯାହା ଅବା ସଂସାରକୁ ଥିଲା ମନେ ଭ୍ରାନ୍ତି
ଭୀମକନ୍ଧେ ଅଛି ବିଷ୍ଣୁ ପୁରାଣର ପୋଥି ।
ଆକାଶେ ଥାଇ ଯେ ବ୍ୟାସ ପୋଥି ପଢୁଥିଲେ
ଭୀମ ରଡ଼ିଘାତେ ହସ୍ତେ ଧରି ନ ପାରିଲେ ।
ଛାଡ଼ିଦେଉ ଭୀମକନ୍ଧେ ପୋଥି ପଡ଼ିଲାକ
ତେଣୁ ପବନ ନନ୍ଦନ ହୋଇଛି ଅଧିକ ।
ତୁଯେ ବୋଲୁ ଭୀମସେନ ରହିଲା କେମନ୍ତେ
ଏକ ଆତ୍ମା ଅଟନ୍ତି ଯେ ପଣ୍ଡୁ ପଞ୍ଚଭ୍ରାତେ ।
ସାଂସାରିକ ମତେ ସିନା ଜ୍ୟେଷ୍ଠ ଯେ କନିଷ୍ଠ
ଆଗେ ଜନ୍ମ ହେବାରୁ ଯେ ଯୁଧିଷ୍ଠିର ଶ୍ରେଷ୍ଠ ।
ବୋଇଲେ ଯା ତା ଶରୀର କେମନ୍ତେ ରହିଲା
ଚିତା ବିଷ୍ଣୁ ପୋଥି ଯୋଗେ କିଛି ନ ହୋଇଲା ।
ଦ୍ରୌପଦୀ ବିବାହକାଳେ ଏହି ବିବରଣ
କହିଥିଲି ମନେ କିମ୍ପା ନ ରଖ ରାଜନ ।
ଶୁଣି ସନ୍ତୋଷ ହୋଇଲେ ବିଲଙ୍କ ନରେଶ
ଭକ୍ତିଭରେ ପୂଜା କଲେ ମୁନିଙ୍କୁ ବିଶେଷ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଜୟ ହେ ଚତୁର୍ଦ୍ଧାମୂର୍ତ୍ତି ଶରଣ ରକ୍ଷଣ ।
ତୁମ୍ଭ ନାମାମୃତ ପାନ କରେ ଯେଉଁ ନର
କୋଟିଜନ୍ମ ପାପଧ୍ୱଂସ ହୁଅଇ ତାହାର ।
ଯମ ଯନ୍ତ୍ରଣା ବୋଲିଣ ନ ଜାଣଇ ଆଉ
ଶାରଳାଦାସ ହୃଦରେ ତୁମ୍ଭ ନାମ ଥାଉ ।



## ଭୀମ ଦୁର୍ଯ୍ୟୋଧନର ରଣ ଓ ଭୀମଙ୍କର କ୍ଷୀରସମୁଦ୍ରେ ପତନ

ଏହା ଶୁଣିଣ ସନ୍ତୋଷ ବିଲଙ୍କର ରାଜା
ଅଗସ୍ତିଙ୍କ ପାଦପଦ୍ମେ କଲା ଦିବ୍ୟପୂଜା ।
ଆସନେ ବସାଇ ପୂଜେ ଦେଇ ଧୂପ ଦୀପ
ଅନେକ ପ୍ରକାରେ ପୂଜା କରିଲା ଯେ ନୃପ ।
ସୁବର୍ଣ୍ଣ ଥାଳିରେ ଲକ୍ଷେ ମାଢ଼ ସ୍ୱର୍ଣ୍ଣ ନେଇ
ମୁନିଙ୍କୁ ସେହି ସକଳ ଅର୍ପଣ କରଇ ।

ପୁଣ ଷାଠିଏ ସହସ୍ର କରି ପ୍ରଣିପାତ
ବୋଲେ ଗଦାଯୁଦ୍ଧ କଥା କହ ହେ ପଣ୍ଡିତ ।
ବଦନ୍ତି ଅଗସ୍ତି ମୁନି ଶୁଣ ମହାରାୟ
ଗର୍ଜଇ ମାନଗୋବିନ୍ଦ କାଳସର୍ପ ପ୍ରାୟ ।
ସତୁରି ସତୁରି ଭାର ଗଦା ଘେନି କର
ଉଠିଣ ଆସଇ ଯେହ୍ନେ ପର୍ବତ ମନ୍ଦର ।
ବାଉନ ବାଉନ ଭାର ଗଦା ଭୀମ କରେ
ବୁଲାଏ ସେ ବନି ଗଦା ପବନହୁଁ ଖରେ ।
ଭୀମ ବୋଲେ ନ ଦେଲୁ ତୁ ତିଳାର୍ଦ୍ଧେକ ଭୂମି
ଏବେ କିମ୍ପାଇ ନିସତ ହେଉ ଦେବସ୍ୱାମୀ ।
ଗଦା ଧରି ଦୁର୍ଯ୍ୟୋଧନ ଠିଆ ହୋଇଥିଲା
ସମ୍ଭାଳ ବୋଲି ଭୀମକୁ ନେଇଣ ପିଟିଲା ।
ଦେଖି ଭୀମ ବାମଅଙ୍ଗ ତାକୁ ଦେଲା ପାତି
ଅଙ୍ଗେ ବାଜି ଗଦାବର ପଡ଼ିଲାକ କ୍ଷିତି ।
ଆରେକ ଗଦାକୁ ଧରି ପିଟେ ବୀର ପୁଣି
ପୁଣି ଭୀମ ବାମଅଙ୍ଗ ଦେଖାଇଲା ଜାଣି ।
ଭୀମସେନ ଅଙ୍ଗେ ବାଜି ସେହି ଗଦାବର
ଉଛୁଳି ପଡ଼ିଲା ପୁଣି ଭୂମିର ଉପର ।
ବାଉନ ବାଉନ ଭାର ଗଦା ଧରି ଭୀମ
ମାନଗୋବିନ୍ଦ ରାଜାକୁ ପିଟେ କରି ତମ ।
ଗଦା ପଡ଼ନ୍ତେ ପାତିଣ ଦେଲା ବକ୍ଷସ୍ଥଳ
ବକ୍ଷସ୍ଥଳେ ଗଦା ବାଜି ପଡ଼ିଲା ଭୂତଳ ।
କିଛି ନିସ୍ତେଜ ହୋଇଲା ରାଜା ଧାର୍ତ୍ତରାଷ୍ଟ୍ରି
ଆରେକ ଗଦା ପିଟନ୍ତେ ପଡ଼ିଲା ଓଲଟି ।
ମାନଗୋବିନ୍ଦ ପ୍ରହାର କରିଲାକ ମୁଥ
ଶବଦ ଶୁଭିଲା ଯେହ୍ନେ ପଡ଼ିଲା ନିର୍ଘାତ ।
ଭୀମ ପ୍ରହାର କରି ତୋଳିଲା ଭୁଜଦଣ୍ଡେ
ଅଗ୍ନି ବାହାର ହୋଇଲା ଦୁର୍ଯ୍ୟୋଧନ ମୁଣ୍ଡେ ।
ହବୋଡ଼ା ହାବୋଡ଼ି ହେଲେ ପୁଣି ପେଲା ପେଲି
ଅଧରେ ଦନ୍ତକୁ ଚାପି ହୁଅନ୍ତି ବୋଲାବୋଲି ।
ରେ ରେ କାର କରି ଦୁହେଁ ବୁଲାବନ୍ତି ଡୋଳା
ମାରନ୍ତି ଯେ ବଜ୍ରମୁଥ କୋପେ ଅନର୍ଗଳା ।
ପୁଣି ମାନଗୋବିନ୍ଦ ଯେ ଭୀମ ପଡ଼େ ତଳେ
ପୁଣି ପୁଣି ହିଁ ପହିଜ କରେ ଅବହେଳେ ।
ଭୁଜେ ଭୁଜେ ଦୁହେଁଯାକ ହୁଅନ୍ତି ଛନ୍ଦାଛନ୍ତି
ହୃଦେ ଭିଡ଼ାଭିଡ଼ି ହୋଇ ପାଦ ପାଦ ଛନ୍ଦି ।
ଭୀମ ହସ୍ତକୁ ଛାଡ଼ଇ କୁରୁ ମହାବଳ
ରେ ରେ ଭୀମା ବୋଲି ମାଡ଼ିବସେ ବକ୍ଷସ୍ଥଳ ।
ମାନଗୋବିନ୍ଦ ପ୍ରତିଜ୍ଞା କଲାକ ଅପାର
ଆରେ ରେ ପାଣ୍ଡବା କାଳ ପୂରିଲା ତୋହର ।

କୋପେ ଲେଉଟାଇ ଦେଲା ବୀର ବୃକୋଦର
ମାନଗୋବିନ୍ଦକୁ ମାଡ଼ି ବସିଲା ସତ୍ୱର ।
କାଳଚକ୍ର ପ୍ରାୟେ ବୁଲେ ଭୀମ ବେନି ଡୋଳ
ଆରେରେ ମାନଗୋବିନ୍ଦ ପୂରିଲା ତୋ କାଳ ।
ପୁଣି ପୁଣି ପହିଜ ଯେ କରେ ଅବହେଳେ
ପୁଣି ହିଁ ମାନଗୋବିନ୍ଦ ଭୀମ ପଡ଼େ ତଳେ ।
ନୟନ ଛଟକେ ଭୀମ ପଡ଼ଇ ଲେଉଟି
କେ ତଳରେ ପଡ଼େ କେହି ଉପରକୁ ଉଠି ।
ବେନି ଜନ ସମରରେ ନୁହନ୍ତି ନିଉନ
କେଶବାସ ଅସମ୍ଭାଳେ ବିକଟ ବଦନ ।
ଡାକନ୍ତି ହାକନ୍ତି ଦୁହେଁ ଦ୍ୟନ୍ତି ଘୋରରଡ଼ି
ରଡ଼ିଘାତେ ମେରୁଗିରି ପଡ଼ିଲାକ ଝଡ଼ି ।
ଧରନ୍ତି ଗର୍ଜନ୍ତି ପୁଣ କରନ୍ତି ପହିଜ
ନିର୍ଧୂମ ଅଗ୍ନି ପରାୟେ ଦୁହିଁଙ୍କର ତେଜ ।
ବାହାନାଦ କରି ଚାପିଦ୍ୟନ୍ତେ କୋପାନଳେ
ରଣଝଣ ହୋଇ ଅଗ୍ନି ଉଳେ ମହାରୋଳେ ।
ଲେଉଟ ପାଉଟ ହୋଇ ପଡ଼ି କ୍ଷଣେ କ୍ଷଣ
ମୁଥଘାତ ଶବ୍ଦ ଶୁଭେ ଯେହ୍ନେ ବଜ୍ରବାଣ ।
ପର୍ବତ ପ୍ରାୟେ ପଡ଼ନ୍ତି ଦୁଇ ମହାବୀର
ତହିଁ ଥିବା ଗିରି ବୃକ୍ଷ ହେଉଛନ୍ତି ଚୂର ।
ରଟରଟ ମଟ ମଟ ଶୁଭେ ବେନି ପାଟି
ଚିପାଚିପିରେ ଶରୀରେ ଚର୍ମ ଯାଏ ଫାଟି ।
ଦୁହେଁଯାକ ପିଟାପିଟି ହୁଅନ୍ତି ମହାଶ୍ରମେ
ଝରିଣ ରୁଧିର ବହେ ତାଙ୍କ ରୋମେ ରୋମେ ।
ମୁଥ ପ୍ରହାରେ ବହଇ ନାସାରୁ ଶୋଣିତ
ଦୁହେଁ ଜଡ଼ିତ ହେବାରୁ ନ ଦିଶଇ ଗାତ୍ର ।
ସତ୍ୟଯୁଗରେ ଯେପରି କେତୁକା ମଙ୍ଗଳ
ସମର କରୁ ପୃଥିବୀ ହେଲା ଟଳମଳ ।
ସେହିପରି ଏ ଦୁହିଁଙ୍କ ସମର ପ୍ରବଳ
ପୃଥ୍ୱୀ ଟଳମଳ ଯେହ୍ନେ ପଦ୍ମନେତ୍ରେ ଜଳ ।
ଗିରିବରମାନେ ଭାଙ୍ଗି ହେଉଛନ୍ତି ଧୂଳି
ସେ ଧୂଳି ଉଡ଼ି ଅଦୃଶ୍ୟ ହେଲେ ଅଂଶୁମାଳି ।
ଶତଶୃଙ୍ଗ ସୁମରିଲା ପବନର ବାଳ
ଏକୋତ୍ତର ଶତସିଂହ ଲଭିଲା ସେ ବଳ ।
ଦେବଙ୍କୁ ଦୁର୍ଲ୍ଲଭ ଅଟେ ଦୁହିଁଙ୍କ ସମର
ଅଧା ସ୍ୱର୍ଗରେ ଦେଖନ୍ତି ସକଳ ଅମର ।
ପାଞ୍ଚକ୍ରୋଶ ଆୟତନ ବେଧାତ୍ରର ବନ
ଭାଙ୍ଗି ଗୁଣ୍ଡା ହୋଇଗଲା ଗିରି ବୃକ୍ଷମାନ ।
ସମରେ ନିର୍ଭୟ ଅଟେ ରାଜା ଧାର୍ତ୍ତରାଷ୍ଟ୍ରି
ବିମୁଖ ହୋଇଲେ ଯହୁଁ ଦେହଯାକ ଫୁଟି ।

ନଖେ ଖଣ୍ଡ ଖଣ୍ଡ ହୋଇ ଭୀମସେନ କାୟ
ରୁଧିର ବହଇ ଗିରି ଝରଣାର ପ୍ରାୟ ।
ଏହା ଦେଖି ଅରଜୁନ ବୋଲେ ପଦ୍ମମୁଖ
ଭୀମସେନ ମଲେ ଆମ୍ଭେ ହୋଇବୁ ନିରେଖ ।
ଗୋବିନ୍ଦ ବୋଇଲେ ତୁହି ଶୁଣ ସହଦେବ
ସମରେ କ୍ଷୟ କିମ୍ପାଇ ନୁହେଁ କଉରବ ।
ସହଦେବ ବୋଲେ ଦୁର୍ଯ୍ୟୋଧନ ଜନ୍ମକାଳେ
ଧୃତରାଷ୍ଟ୍ର ଦେଲା ନେଇ ଦୁର୍ବାସାଙ୍କ କୋଳେ ।
ଦୁର୍ବାସା ମୁନି ବୋଇଲେ ତୋ ଜୀବନ ସାଧୁ
କୋଟିପାଦେ ନ ଛାଡ଼ିବେ ଲକ୍ଷ୍ମୀ ତୋର ବନ୍ଧୁ ।
ଆପଣା କରେ ଦୁର୍ବାସା ତାହାକୁ ସେକିଲେ
ଶରୀରଯାକ ତାହାର ବଜ୍ରାଙ୍ଗ କରିଲେ ।
ମନ୍ତ୍ରସହ ସେକୁ ସେକୁ ସୁତେ ଜ୍ୱାଳା ହେଲା
ତହୁଁ ଦୁର୍ବାସା ଜାନୁରେ ମଳ ତ୍ୟାଗ କଲା ।
ତାହା ଦେଖିଣ ଅସୁଖ ପାଇ ତପୋନିଷ୍ଠି
ବୋଇଲେ ତୋ ବଳଯାଉ ମଳଦ୍ୱାର ଫାଟି ।
ସମସ୍ତ ଦେହ ସେକିଲେ ଦୁର୍ବାସା ପଣ୍ଡିତ
ମଳଦ୍ୱାରକୁ ତାଙ୍କର ନ ଗଲାକ ହସ୍ତ ।
ପାଶୁପତ ଆସି ଚକ୍ରେ ନ ହୋଇବ ଛେଦ
ଏହି ମଳଦ୍ୱାର ବାଟ ତାର ମୃତ୍ୟୁଭେଦ ।
ଦୁର୍ବାସା ଏହି ପ୍ରକାରେ କହିଛନ୍ତି ପୂର୍ବେ
ଭୀମସେନକୁ ଚେତାଇ କହିଦିଅ ଏବେ ।
ମନ୍ତ୍ରୀ କହନ୍ତେ ହସିଲେ ଶୁଣି ବନମାଳୀ
ତାଳି ମାରନ୍ତେ ଉଛୁଳି ପଡ଼େ ମହୀସ୍ଥଳୀ ।
ଭୀମସେନ ଅନାଇଣ ଦେଲା ହାସ୍ୟ ଶୁଣି
ଜାନୁରେ ଚାପୋଡ଼ା ମାରି ଦେଖାଇଲେ ପୁଣି ।
ରାଜା ଦୁର୍ଯ୍ୟୋଧନ ଚାହେଁ ବାସୁଦେବ ମୁଖ
ବିଚାରେ ମୃତ୍ୟୁଭେଦ ଏ ଜାଣିଛି ପ୍ରତ୍ୟକ୍ଷ ।
ଏହି ଅବସର ଦେଖି କୁରୁ ନୃପରାଣ
ମାଲବନ୍ଧ ଛାଡ଼ି ଗଦା ଧରେ ସେହିକ୍ଷଣ ।
ଚକ୍ରାକାର କରି ଗଦା ଦୃଢ଼େ ବୁଲାଇଲା
ଅଣଚାଶ ମହାବାତ ପରାୟେ ବହିଲା ।
ସେ ମହାବାତ ବହନ୍ତେ ପର୍ବତ କମ୍ପିଲା
ଗଦା ବାତଘାତେ ଭୀମସେନ ଉଡ଼ିଗଲା ।
କ୍ଷୀରକୁ ଜିଣି କ୍ଷୀରୋଦ ସମୁଦ୍ର ଭିତରେ
ଭୀମସେନ ପଡ଼ିଲାକ ଅଗାଧ ଗଭୀରେ ।
ପଡ଼ି ଅସାଷ୍ଟମ ହେଲା ପବନର ବଳା
ଦେଖି କରି ସିନ୍ଧୁରାଜା ଭୟେ ଘୁଞ୍ଚିଗଲା ।
ଶୁଣ ଚଇତନ ମାନଗୋବିନ୍ଦ ମହିମା
ଗଦାର ବାତଘାତରେ ପଡ଼ିଲାକ ଭୀମା ।

ଏହି କାଳରେ ଅନାଇଁ ଦେଲେ ଦାମୋଦର
ଦେଖିଲେ ସମରେ ନାହିଁ ବୀର ବୃକୋଦର ।
ତହୁଁ ମାୟା ଭୀମା ଏକ ଦେଲେ ମାୟାଧର
ମାନଗୋବିନ୍ଦ ତା ସଙ୍ଗେ କରିଲା ସମର ।
ଜୟ ଦୟାର ସାଗର ଦୀନ ଦଇତ୍ୟାରୀ
ଦିନେ ଶୁଭିଲା କର୍ଣ୍ଣେ ଗରିବ ଗୁହାରି ।
ଆହୋ ଚକାଡୋଳା ଭବେ ଲଗାଇଛ ଖେଳ
ସେ ଖେଳ ଦେଖି ଜୀବନ ହେଉଛି ବିକଳ ।
ମାୟାମୋହ ଜଳଧିରେ ପଡ଼ି ନିରନ୍ତର
ତୁମ୍ଭର ନାମ ମହିମା ହେଉଛି ପାଶୋର ।
କେଉଁ ରୂପରେ ତରିବି ତାରିବ ହେ ହରି
ମୋ ବୁଦ୍ଧି ଅଗମ୍ୟ ଅଟେ ଯା କର ବିଚାରି ।
ଶରଣପଞ୍ଜର ନାଥ ଘେନ ମୋ ଆରତ
ଶାରଳା ଦାସକୁ ଦୟା କରିବ କିଞ୍ଚିତ ।

—o—

## ଭୀମ ଅଦର୍ଶନେ ଯୁଧିଷ୍ଠିରଙ୍କ ଶୋକ, ଶ୍ରୀକୃଷ୍ଣଙ୍କଦ୍ୱାରା ଭୀମର ପୁନର୍ଜ୍ଜୀବନ ପ୍ରାପ୍ତି ଓ ପୁନରାଗମନ

ପଚାରନ୍ତି ବୈବସ୍ୱତ ମନୁ ନୃପବର
ଏଥୁଅନ୍ତେ କେଉଁକଥା କଲେ ଯୁଧିଷ୍ଠିର ।
ସେହି କଥା କହି ମୋତେ କରାଅ ତୃପତି
କହନ୍ତି ଅଗସ୍ତି ମୁନି ଶୁଣ ହେ ନୃପତି ।
ମାୟାଧରଙ୍କର ବିଶ୍ୱମାୟା ପ୍ରଭାବରେ
ଦୁର୍ଯ୍ୟୋଧନ ଛଡ଼ା ଭୀମ ନ ଦିଶଇ କାରେ ।
ବୃକୋଦର ନ ଦେଖିଣ ବିକଳ ଯୁଧିଷ୍ଠି
ଆହେ ଭାଇ ଭୀମସେନ ପ୍ରାଣନାଥ ଗୋଟି ।
ବାବୁରେ ସରିଲା ଯୁଦ୍ଧ କଥା ରୁହାଇଲୁ
ଭୀମ ନାମକୁ କେମନ୍ତେ ଏବେ ବୁଡ଼ାଇଲୁ ।
ଦୁର୍ଯ୍ୟୋଧନ ମାରିବାକୁ ତୁ ପ୍ରତିଜ୍ଞା କରି
କେଉଁଆଡ଼େ ଚାଲିଗଲୁ ଏକା ହୋଇକରି ।
ତୋ ବିହୁନେ ମୋ ବଞ୍ଚିବା ଆଉ କାର୍ଯ୍ୟ ନାହିଁ
କାହାର ବଦନ ଆଉ ଚାହିଁବଇଁ ମୁହିଁ ।
ଅନାଥର ବନ୍ଧୁ ତୁରେ ମୋ ଭାଇ ମାରୁତି
କିସ ବୋଲିଣ ବୋଲିବେ ମୋତେ ଦେବୀ କୁନ୍ତୀ ।
ବାବୁ ତୁହି ନାଶଗଲୁ ବିନା ସମରରେ
ଦୁର୍ଯ୍ୟୋଧନ ରାଜା ଏବେ ହୋଇଲା ରାଜ୍ୟରେ ।
ପୋଡୁ ପୋଡୁ ରାଜ୍ୟଭାର କିସ ହେଲା ସୁସ୍ଥ
ରାଜ୍ୟଠାରୁ ଭଲ ଥିଲା ମୋହର ବନସ୍ତ ।

ମିଛରେ ଦହିଯ୍ୟ ମୁହିଁ ହେଲି କାହିଁପାଇଁ
ତୋ ପରାୟ ଭାଇ ଆଉ ପାଇବି ମୁଁ ନାହିଁ ।
ବାବୁରେ ଅନାଥ କରି କେଉଁଆଡ଼େ ଗଲୁ
ଗଭୀର ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ ।
ରୋଦନ କରି ଭୂମିରେ ପଡ଼ିଲେ ଯୁଧିଷ୍ଠି
କେଣେ ଗଲେ ଭାଇ ମୋର ଅନ୍ଧ ଲଉଡ଼ିଟି ।
କୀଚକ ଶତେଭାଇଙ୍କୁ ମାଇଲୁ ତୁ ହେଳେ
ବିରାଟକୁ ଉଦ୍ଧାରିଲୁ ତୋର ଭୁଜବଳେ ।
ବାବୁରେ ଅନେକ କଷ୍ଟ ବନେ ପାଇଲଇଁ
ସବୁ ମୁଁ ପାଶୋରିଥିଲି ତୋର ମୁଖ ଚାହିଁ ।
ଅର୍ଘ୍ୟ ଘେନି ମାତା ବାଟ ଚାହୁଁଥିବେ ଥାଇ
କେଣେ ଛାଡ଼ିଗଲୁ ବାବୁ ପଥରେ ବସାଇ ।
ଯୁଧିଷ୍ଠିରଙ୍କ ଶୋକ ଯେ ଦେଖିଣ ଅର୍ଜ୍ଜୁନ
ଅରୁଣ ଉଲ୍ଲୋଳ ପ୍ରାୟେ ଲୋତକ ନୟନ ।
ଅନେକ ଶୋକ କରିଣ ବୀର ଫାଲଗୁନି
କେଣେ ଛାଡ଼ିଲ ଆମ୍ଭଙ୍କୁ ଠାକୁର ପାବନି ।
ଅର୍ଜ୍ଜୁନ ଅବସ୍ଥା ଦେଖି ଦେଇ ଶିରୀହରି
ମନରେ ସନ୍ତାପ ଜାତ ହୋଇଲାକ ଭାରି ।
ନକୁଳର ଶୋକ କଥା କହୁ ନ ସରଇ
ଚାରିଦିଗଯାକ ଘୋର ଅନ୍ଧାର ଦିଶଇ ।
ଅନେକ ପ୍ରକାରେ ଶୋକ ଯୁଧିଷ୍ଠି କରନ୍ତି
ହେ ଭ୍ରାତ ବୋଲିଣ ଯାଇ ଭୂମିରେ ଲୋଟନ୍ତି ।
ଜତୁଘରୁ ବାହାରିଲୁ ତୋର ବୁଦ୍ଧି ବଳେ
କୁମ୍ଭୀର ଦୈତ୍ୟ ମାଇଲୁ ତୁହି ଅବହେଳେ ।
ମହାଅରଣ୍ୟରେ ସର୍ବେ ଚାଲି ନ ପାରିଲୁ
କାନ୍ଧେ ମୁଣ୍ଡେ ବହି କରି ତୁହି ଘେନିଗଲୁ ।
ହେଳେ ବିନାଶିଲୁ ତୁହି ଅସୁର କିନ୍ନରୀ
ହିଡ଼ିମ୍ବ ବକାକୁ ହେଳେ ଦେଲୁ ଯମପୁରୀ ।
ଓଡ଼ାଶିବପୁରେ ତୁହି ଚାଣ୍ଡାଳଙ୍କୁ ନାଶି
ବିଷ୍ଣୁ କରେ ରାଜ୍ୟ ଦେଲୁ ହୋଇଣ ଉଦାସୀ ।
ବାବୁ ଏକଚକ୍ରୀ ନଗ୍ରେ ବକାସୁର ମାରି
ଦେବଶ୍ରବଣ ପଣ୍ଡାକୁ କଲୁ ଅଧିକାରୀ ।
ଦ୍ରୌପଦୀର ସ୍ୱୟମ୍ବରେ ଲକ୍ଷେ ରାଜା ମିଳି
ସମସ୍ତଙ୍କୁ ଜିଣି ରଣେ ଆଣିଲୁ ପାଞ୍ଚାଳୀ ।
କଳେବର ଗଦା ଦେଖି ସର୍ବେ ଭୟ କରି
ଯମ ଛାଡ଼ି ପଳାଏ ଯେ ସଂଯମନୀ ପୁରୀ ।
ବାବୁ ଅନାଥର ନାଥ ମୋର ଭାଇ ଗୋଟି
କେଣେ ଲୁଚିଲା ଏଥର ତୋ ଚନ୍ଦ୍ରମୁଖଟି ।
ଯୁଧିଷ୍ଠିଙ୍କ ଶୋକ ଦେଖି ହସେ ସହଦେବ
କିମ୍ପାଇ ଶୋକ କରୁଛ ଆହେ ଧର୍ମଦେବ ।

ବୋଲନ୍ତି ଯୁଧିଷ୍ଠି ଶୁଣ ଆହେ ଦେବ ହରି
ସାବତ ମାଆର ପୁଅ ଅଟେ ଯେଣୁ କରି ।
ଆମ୍ଭର ଭାଇ ଅଥବା କେଣେ ଗଲା ନାଶ
ଦୁଃଖ ନ କରି ଆବର କରୁଅଛି ହାସ୍ୟ ।
ଶୁଣି ଭଗବାନ କିଛି ଉତ୍ତର ନ କରି
ସହଦେବଙ୍କୁ ଚାହିଁଣ ବଚନ ପଚାରି ।
କହ ସହଦେବ ଭୀମସେନ କାହିଁ ଅଛି
ସହଦେବ କହିଲେକ ଶୁଣିମା ଶ୍ରୀବତ୍ସି ।
କ୍ଷୀରସିନ୍ଧୁ ଜିଣି କ୍ଷୀର ସମୁଦ୍ର ପଡ଼ିଛି
ଅସାକ୍ଷମ ହୋଇ ତହିଁ ପବନର ବତ୍ସି ।
ଶୁଣି ନାରାୟଣ ଚିନ୍ତା କଲେ ବୈନତେୟେ
ରମ୍ୟକଦ୍ୱୀପୁ ଅଇଲେ ବିନତା ତନୟ ।
ଖଗବରର ପିଠିରେ ବିଜେ ଦେବ ହରି
ଭୀମକୁ ଲୋଡ଼ିବା ପାଇଁ ଗଲେକ ବାହାରି ।
ଯାଇ ପ୍ରବେଶ ହୋଇଲେ କ୍ଷୀର ସମୁଦ୍ରରେ
ଦେଖିଲେ ଭୀମ ପଡ଼ିଛି ସମୁଦ୍ର ଭିତରେ ।
ତାଙ୍କ ଶରୀର କରିଲେ ଯାଇ ଆଶ୍ୱାସନା
ଦେଖିଲେ କିଛି ହିଁ ନାହିଁ ଶରୀରେ ଚେତନା ।
ଦେଖିକରି ବିକଳ ଯେ ହେଲେ ମଧୁହାରୀ
ନିଶ୍ଚୟ ଏ ନାଶଗଲା ବଞ୍ଚିବ କିପରି ।
ଗରୁଡ଼ ବଦନ ଚାହିଁ ବୋଲନ୍ତି ରମେଶ
ଯାଅ ସ୍ୱର୍ଗରୁ ଅମୃତ ବେଗେ ଘେନି ଆସ ।
ଶ୍ରୀକୃଷ୍ଣ ବଚନ ଶୁଣି ବିନତାର ସୁତ
ଅମର ସ୍ୱର୍ଗରେ ଯାଇ ମିଳିଲା ତୁରିତ ।
ହା ହା ହୁ ହୁ ତିନିକୋଟି ଗନ୍ଧର୍ବ ରକ୍ଷକ
ଗରୁଡ଼ ସଙ୍ଗରେ କଲେ ସମର ଅନେକ ।
କୋପେ ଗରୁଡ଼ ମାଇଲା ତାଙ୍କୁ ପକ୍ଷଘାତେ
ଉଡ଼ିଲେ ଗନ୍ଧର୍ବ ସବୁ ପବନ ବିଘାତେ ।
ପଶିଲା ଗରୁଡ଼ ଯାଇ ସୁଧାଭାଣ୍ଡସ୍ଥାନେ
ଅମୃତ ରଖିଲା ଆଣି ଆପଣା ନୟନେ ।
ତାହା ଘେନିଣ ସେଠାରୁ ଉଡ଼ିଲା ବହନ
ପ୍ରବେଶ ହୋଇଲା ଆସି କୃଷ୍ଣ ସନ୍ନିଧାନ ।
ସେ ଅମୃତ ନେଇ ବୃଷ୍ଟି କଲା ଖଗରାୟେ
ସାକ୍ଷାମ ହୋଇ ବସିଲା ପବନ ତନୟେ ।
ବଦନ୍ତି କେଶବ ତୁହି ଶୁଣ ଭୀମସେନ
କେବଣ କାରଣେ ତୋର ଘଟିଲା ଏମାନ ।
ଭୀମ ବୋଲେ କରତାଳି ମାଇଲ ଯେ କାଳେ
ତେଣିକି ଦୃଷ୍ଟି ପଡ଼ିଲା ମୋର ତେତେବେଳେ ।
ଏତିକି ଛିଦ୍ର ପାଇଲା ଯହୁଁ କୁରୁବୀର
ମାଳବନ୍ଧ ଛାଡ଼ି ସେହୁ ହୋଇଲା ବାହାର ।

ବେନି ଗଦା ବୁଲାଇଲା ଧରି ବେନିକରେ
ସେ ଗଦା ପବନ ଘାତେ ପଡ଼ିଲା ଏଠାରେ ।
ତୁମ୍ଭ କୃପାରୁ ବଞ୍ଚିଲି ଆହେ ଜଗନ୍ନାଥ
ବହନ ହୋଇଣ ଚାଲ ନ ରହିବା ଏଥ ।
ପୁଣି ଦୁର୍ଯ୍ୟୋଧନ ଯଦି ପଶେ ବ୍ୟାସସରେ
ମାରି ନ ପାରିବା ସ୍ୱାମୀ ଆଜ ଦିବସରେ ।
ତହୁଁ କୃଷ୍ଣ ଭୀମସେନ ବସି ଗରୁଡ଼ରେ
ପ୍ରବେଶ ହୋଇଲେ ବ୍ୟାସସରୋବର ତୀରେ ।
ଯୁଧିଷ୍ଠିରଙ୍କ ଛାମୁରେ ପ୍ରଣମିଲେ ହରି
ଦେଖି ଯୁଧିଷ୍ଠି ଭୀମଙ୍କୁ କୋଳ କଲେ ଧରି ।
ଅନେକ ପୌରୁଷ କରି ବୋଲନ୍ତି ଯୁଧିଷ୍ଠି
କାହିଁ ଥିଲୁ ଆରେ ବାବୁ ଅନ୍ଧ ଲଉଡ଼ିଟି ।
ମାୟାଭୀମେ ଦୁର୍ଯ୍ୟୋଧନ ମୁଖେ ପ୍ରହାରିଲା
ମୁଥାଘାତେ ତଳେ ପଡ଼ି ଅଦୃଶ୍ୟ ହୋଇଲା ।
ଜୟ ଜୟ ଜଗବନ୍ଧୁ ଜଗତ କାରଣ
ଶାରଳା ଦାସ ମାଗଇ ସର୍ବଦା ଶରଣ ।

—o—

## ଦୁର୍ଯ୍ୟୋଧନର ଉରୁଭଙ୍ଗ, ବଳରାମଙ୍କର ପ୍ରବେଶ, ଯୁଧିଷ୍ଠିରଙ୍କର ଶୋକ ଓ ଦ୍ୱାରକା ଗମନ

ଅଗସ୍ତିଙ୍କ ପାଦତଳେ ମନୁ ନୃପବର
ଅନେକ ବିନୟ ହୋଇ ପଚାରିଲେ ଗିର ।
ମାୟାଭୀମ ଘେନି ଯୁଦ୍ଧ କଲେ ଦୁର୍ଯ୍ୟୋଧନ
ଏ କାଳରେ ପ୍ରବେଶିଲା ବୀର ଭୀମସେନ ।
ତଦୁପରେ କେଉଁରୂପେ ତହିଁ ହେଲା ରଣ
ସେହିକଥା କହ ଶୁଣି ପାଇବି କାରଣ ।
କହନ୍ତି ଅଗସ୍ତି ମୁନି ହେ ମନୁ ନରେଶ
ସାବଧାନ ହୋଇ ଶୁଣ କରୁଛି ପ୍ରକାଶ ।
ବଦନ୍ତି ଯାଦବଈଶ ଶୁଣ ବୃକୋଦର
ଦୁର୍ଯ୍ୟୋଧନ ପଶୁଅଛି ବ୍ୟାସସରୋବର ।
ଶୁଣି ଭୀମସେନ ଦିଏ କୋପେ ଘୋର ରଡ଼ି
ପର୍ବତ କନ୍ଦର କିବା ପଡ଼ିଲାକ ଝଡ଼ି ।
ମୋର ସରିସମ କେହି ନାହିଁ ଚକ୍ରବର୍ତ୍ତୀ
ଭୀମ ପାଶେ ଦୁର୍ଯ୍ୟୋଧନ ମିଳେ କୋପମୂର୍ତ୍ତି ।
ସତୁରି ସତୁରି ଭାର ବେନି ଗଦା ଧରି
ଉଭା ହେଲା ଦୁର୍ଯ୍ୟୋଧନ ରେ ରେକାର କରି ।
ଉଭା ହେଲା ଭୀମସେନ ଦେହକୁ ବଞ୍ଚାଇ
ବାଉନ ବାଉନ ଭାର ବେନି ଗଦା ନେଇ ।
କାଳଚକ୍ର ପ୍ରାୟ ଭୀମ ଡୋଳା ବୁଲାଇଲା
ମୋର ଗଦାଘାତ ଏବେ ସମ୍ଭାଳ ବୋଇଲା ।
ଆରେରେ ମାରୁତି ବୋଲି ଗଦା ପ୍ରହାରିଲା
ଦେଖି ଦୁର୍ଯ୍ୟୋଧନ ତାହା ଗଦା ଆଡ଼ିଦେଲା ।
ଅନେକ ପ୍ରକାରେ ରଣ କରିଲେ ସେ ବେନି
ରଡ଼ି ଶବଦ ଘାତରେ କମ୍ପୁଛି ମେଦିନୀ ।
କେହି କାହାକୁ ସମରେ ନୁହନ୍ତି ନିଉନ
ତାହା ଦେଖି କୋପ କଲେ ବୀର ଅରଜୁନ ।
ସମରେ ପଶି ଛେଦିବି ଦୁର୍ଯ୍ୟୋଧନ ଶିର
ନାହିଁ ନାହିଁ ବୋଲି ମନା କଲେ ଦାମୋଦର ।
ଯାହା ପ୍ରତିଜ୍ଞା କରିଛି ବୀର ଭୀମସେନ
ସେହି ନିଶ୍ଚୟ ମାରିବ ରାଜା ଦୁର୍ଯ୍ୟୋଧନ ।
ଏହା ଶୁଣିଣ ମଉନ ଧନଞ୍ଜୟ ବୀର
ଭୀମ ଦୁର୍ଯ୍ୟୋଧନ ରଣେ ନାହିଁ ଅବସର ।
ସତୁରି ଭାରର ଗଦା ପ୍ରହାରିଲାବେଳେ
ଦେଖିଣ ଭୀମ ଧଇଲା ତାକୁ କୁତୂହଳେ ।
ପୁଣି ଗଦାବର ଧରି ପିଟେ ଦୁର୍ଯ୍ୟୋଧନ
ଦେଖି ଭୀମସେନ ଦେହ ବଞ୍ଚାଏ ବହନ ।
ଚହଟି ମାରୁତି ଗଦା କରନ୍ତେ ପ୍ରହାର
ଅଗ୍ନି ଝଳକିଲା ଦୁର୍ଯ୍ୟୋଧନର ଶରୀର ।
ଅନେକ ସମର ତହିଁ କରିଲେକ ବେନି
କାହରି ତେଜ କଦାପି ନ ହୋଇଲା ହାନି ।
ଅନେକ ରଣେ ବିମୁଖ ହୋଇ କୁରୁପତି
ସାଧୁ ଭୀମସେନ ବୋଲି କରଇ ସୁଖ୍ୟାତି ।
ଆହେ ଚଇତନ ସ୍ୱର୍ଗ ତେଜି ଦେବଗଣ
ଅଧାସ୍ୱର୍ଗେ ଦେଖୁଥିଲେ ଦୁହିଁଙ୍କର ରଣ ।
ତାହାଙ୍କ ସଙ୍ଗେ ନାରଦ ତହିଁ ଥିଲେ ବସି
କୁତୂହଳେ ଦେଖିବାକୁ ହେଲେ ଅଭିଳାଷୀ ।
ତହୁଁ ନାରଦ ମହର୍ଷି ଚଢ଼ି ମନଯାନେ
ଯାଇଁ ପ୍ରବେଶ ହୋଇଲେ ଅମର ଭୁବନେ ।
ବିଚାରିଲେ ଦୁର୍ଯ୍ୟୋଧନ ହଳୀ ଶିଷ୍ୟ ସୁତ
ପାଣ୍ଡବେ ତାହାଙ୍କୁ କଷ୍ଟ ଦେଲେଣି ବହୁତ ।
ତୀର୍ଥ କରି ଯାଇଥିଲେ ଦେବ ହଳପତି
ଏବେ ପ୍ରୟାଗ ତୀର୍ଥରେ ଆସି ରହିଛନ୍ତି ।
ନ କହିଲେ କୋପ ପଛେ କରିବେ ଅପାର
ଏହା ଭାଳି ପ୍ରୟାଗକୁ ଗଲେ ମୁନିବର ।
ହଳଧର ଦେଖି ତାଙ୍କୁ ପ୍ରଣିପାତ ହେଲେ
ବସିବା ପାଇଁକି ପୁଣି ଦିବ୍ୟାସନ ଦେଲେ ।
ପୁଚ୍ଛିଲେ ତାହାଙ୍କୁ ସର୍ବକୁଶଳ ବୃତ୍ତାନ୍ତ
କୁରୁକ୍ଷେତ୍ର ଯୁଦ୍ଧକଥା ହୋଇଲା କେମନ୍ତ ।

ଶୁଣି ନାରଦ କହିଲେ ଶୁଣ ହଳପାଣି
ବହୁତ ଦୁଃଖ ଲଭୁଛି ଏବେ କୁରୁମଣି ।
ସାହା ଭରସା ମରାଇ ଏକା ପଠାଇଲା
ବ୍ୟାସସରୋବର ମଧ୍ୟେ ଯାଇଣ ଲୁଚିଲା ।
ତଥାଚ ଗୋଡ଼ାଇ ମାରି ଲୋଡ଼ନ୍ତି ପାଣ୍ଡବେ
ବ୍ୟାସସରୋବର ଯାଇ ଠାବ କଲେ ଏବେ ।
ମୁହିଁ ଦେଖିଲି ବାହାର ହେଲା କୁରୁବୀର
ଅନେକ ସମର ତହିଁ ହେଲା ଘୋରତର ।
ସ୍ୱାମୀ ତୋତେ ଆଶ୍ରା କରି ହେଲା ସେ ନିର୍ମାଖି
ସମସ୍ତ ମରାଇ ଏବେ ହୋଇଲାଣି ଦୁଃଖୀ ।
ପାଣ୍ଡବେ ଆଶ୍ରା କରିଲେ ତେଣୁ ବାସୁଦେବ
ରାଜ୍ୟ ସମ୍ପଦାଦି କରିନେଲେ ସର୍ବ ଏବେ ।
ରକ୍ଷାକର ଆହେ ସ୍ୱାମୀ ରେବତୀ ରମଣ
ଦୁର୍ଯ୍ୟୋଧନଙ୍କୁ ରଖିଲେ ଅଛିଟି କାରଣ ।
ଏମନ୍ତ ଶୁଣିଣ କୋପ କଲେ ହଳପତି
ଆଜ ପାଣ୍ଡବେ କରିବି ମୁହିଁ ବିନଶ୍ୟତି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଚନ୍ଦ୍ର ସୂର୍ଯ୍ୟ ଆଦି
ରହି ନ ପାରିବେ ହେଲେ ମୋ ସଙ୍ଗେ ବିବାଦୀ ।
ନିଶ୍ଚେ ନାଶଗଲେ ଜାଣ ସେହି ପାଞ୍ଚଭାଇ
ଶ୍ରୀହରି ସହିତେ ହତ କରିବି ମୁଁ ଯାଇ ।
ଏତେକ ବୋଲି ବାହାର ହେଲେ ହଳପତି
ହଳମୂଷଳ ଧରିଣ ହୋଇ କୋପ ମୂର୍ତ୍ତି ।
ବଳରାମଙ୍କର କୋପ ଦେଖିଣ ନାରଦ
ବିଚାରିଲେ ପାଣ୍ଡବଙ୍କୁ ପଡ଼ିଲା ପ୍ରମାଦ ।
ଶ୍ରୀକୃଷ୍ଣ ସହିତେ ଆଜ ନ ବର୍ତ୍ତିବେ କେହି
କୋପେ ମୂଷଳୀ ଧାଇଁଲେ ବେଗ ବେଗ ହୋଇ ।
ଅନ୍ତରୀକ୍ଷ ମାର୍ଗରେ ଯେ ଚଳିଲେ ନାରଦ
ପ୍ରବେଶ ହୋଇଲେ କୃଷ୍ଣ ପାଣ୍ଡବ ସନ୍ନିଧ ।
ଦେଖିକରି ପଚାରିଲେ ତାଙ୍କୁ ଦେବରାଜ
କାହିଁ ଥିଲ ଆହେ ମୁନି ବ୍ରହ୍ମାଙ୍କ ତନୁଜ ।
ବୋଲନ୍ତି ଦାରଦ ଶୁଣ ଆହେ ଦେବ ହରି
ବଳରାମ ଆସୁଛନ୍ତି ମହାକୋପ କରି ।
ହେ ଦେବ ପାଣ୍ଡବଗଣେ ରକ୍ଷାକର ଆଜ
ତାହା ନ କଲେ ମରିବେ ଏଥେ ନାହିଁ ବ୍ୟାଜ ।
ଏମନ୍ତ ଶୁଣିଣ ଚିନ୍ତା କଲେ ଚିନ୍ତାମଣି
ଦୁର୍ଯ୍ୟୋଧନ ପାଇଁ ଚିନ୍ତା କଲେ ହଳପାଣି ।
ଶୁଣ ଚଇତନ ଆହେ ହଳୀଙ୍କ ମହିମା
କୋଟିଏ ସିଂହର ବଳ ତାହାଙ୍କର ସୀମା ।
ରଡ଼ିଘାତେ କମ୍ପୁଅଛି ବ୍ରହ୍ମାଣ୍ଡ ସପତ
ତାହା ଦେଖିଣ କେଶବ ହୋଇଲେ ଶଙ୍କିତ ।
ମହା କୋପମୂର୍ତ୍ତି ହୋଇ ବିଜେ ବଳରାମ
ସମ୍ମୁଖରେ ବିଜେ ହେଲେ ପୁରୁଷ ଉତ୍ତମ ।
ଶ୍ରୀକୃଷ୍ଣ ତାହାଙ୍କୁ କଲେ ଶତେ ପ୍ରଣିପାତ
ବାଞ୍ଛା ସିଦ୍ଧି ହେଉ ଆଜ୍ଞା କଲେ ହଳହସ୍ତ ।
ମାନଗୋବିନ୍ଦ ନରେନ୍ଦ୍ର ହାତ ନ ଟେକିଲା
ଅଭିମାନେ ଅଧୋମୁଖ ହୋଇଣ ରହିଲା ।
ପଞ୍ଚପାଣ୍ଡବେ ଯାଇଣ ଚରଣେ ଭେଟିଲେ
ଦେଖି ବଳରାମ କିଛି ସମସ୍ୟା ନ ଦେଲେ ।
ବଦନ୍ତି କେଶବ ଶୁଣ ଦେବ ହଳଧର
କାହାକୁ ଏଡ଼େକ କୋପ ଅଟଇ ତୁମ୍ଭର ।
ସ୍ୱାମୀ ପାଣ୍ଡବେ ତୁମ୍ଭର ସଦା ଭୃତ୍ୟାଧୀନ
ଏହାଙ୍କୁ କିମ୍ପା ତୁମ୍ଭର ଏଡ଼େ କୋପମନ ।
ଅନେକ ବିନୟଭାବେ କହନ୍ତି ଯୁଧିଷ୍ଠି
ଜୟ ତୁମ୍ଭେ ବଳରାମ ଆଦି ପୁରୁଷଟି ।
ଜୟ ତୁମ୍ଭେ ବଳରାମ ଶରଣ ରକ୍ଷଣ
ଜୟ ତୁମ୍ଭେ ବଳରାମ ଭକ୍ତ ଉଦ୍ଧାରଣ ।
ଜୟ ତୁମ୍ଭେ ବଳରାମ ସର୍ବ ମୁନିମାନେ
ସଦା ଜପୁଥାନ୍ତି ତୁମ୍ଭ ନାମକୁ ହିଁ ଧ୍ୟାନେ ।
ଜୟ ତୁମ୍ଭେ ବଳରାମ ଅନାଥର ନାଥ
ଜୟ ତୁମ୍ଭେ ବଳରାମ ସଦା ହଳହସ୍ତ ।
ଜୟ ତୁମ୍ଭେ ବଳରାମ ଉଦ୍ଧାର ଆମ୍ଭନ୍ତ
ଜୟ ତୁମ୍ଭେ ବଳରାମ ଶରଣ ମୋ ନିତ୍ୟ ।
ଜୟ ତୁମ୍ଭେ ବଳରାମ ପୁରୁଷ ଉତ୍ତମ
ମାନବ ହୋଇ ମୋହର କିସ ଅଛି କ୍ଷମ ।
ବଳରାମଙ୍କର ପଦ୍ମଚରଣେ ଦଇନୀ
ସଦା ମାଗଇ ଶାରଳା ଦାସ ଶୂଦ୍ରମୁନି ।
ଏହି ପ୍ରକାରେ ଯୁଧିଷ୍ଠି କରିବାରୁ ସ୍ତୁତି
ଶାନ୍ତିକି ଭଜିଲେ ତହୁଁ ଦେବ ହଳପତି ।
ବୋଇଲେକ ବଳଦେବ ସାଧୁରେ ପାଣ୍ଡବେ
ନିଶ୍ଚୟ ଏ ପଞ୍ଚରାଜ୍ୟେ ରାଜା ହେଲ ଏବେ ।
ନମସ୍କାର ନ କରିଲା ଯହୁଁ ଦୁର୍ଯ୍ୟୋଧନ
ତହୁଁ ରେବତୀ ରମଣ ପାଇ ଅପମାନ ।
ବୋଇଲେ ପାଣ୍ଡବେ ଏବେ ସୁଖେ କର ରଣ
ଏହା କହି ପ୍ରୟାଗକୁ ଗଲେ ବାହୁଡ଼ିଣ ।
ହେ ମନୁ ମାନଗୋବିନ୍ଦ ନମିଥିଲେ ଆଜ
ପାଣ୍ଡବଙ୍କୁ ମାରି ହଳୀ ଦ୍ୟନ୍ତେ ଅଇଶ୍ୱର୍ଯ୍ୟ ।
ଯଦି ଅନୁରୋଧ କରି କହନ୍ତି କେଶବ
ଅବଶ୍ୟ ତାହାକୁ ମଧ୍ୟ ଦ୍ୟନ୍ତି ପରାଭବ ।
ବୋଲେ ନିଃଶ୍ୱାସ ଛାଡ଼ିଣ ଭୀମ ଘନ ଘନ
ମିଳିଲା ଚନ୍ଦ୍ରକୁ ରାହୁ ଘୋଟିଲା ସମାନ ।

ବାଉନ ବାଉନ ଗଦା ଘେନି ଭୀମସେନ
ପିଟନ୍ତେ ଦେଖାଏ ଛାତି ରାଜା ଦୁର୍ଯ୍ୟୋଧନ ।
ପୁଣି ଦୁର୍ଯ୍ୟୋଧନ ଯାଇ ପିଟେ ଗଦାବର
ଦେଖି ମାରୁତି ଧଇଲା ତାକୁ ବାମକର ।
ପୁଣି ଗଦାବର ଭୀମ ପିଟିଲାକ ତୋଳି
ଦୁର୍ଯ୍ୟୋଧନ ଘୁଞ୍ଚିଗଲା ଦେହକୁ ସମ୍ଭାଳି ।
ଗଦା ଗଦା ପଡ଼ି ତାଳ କରନ୍ତେ ସେ ବେନି
ଝଲକି ବାହାରି ଉଠେ ତହିଁରୁ ବହନି ।
ବେଳୁବେଳ ସମର ଯେ ହେଲା ଘୋରତର
ପିଟାପିଟି ହେଲେ ଗଦା ନ କରି ବିଚାର ।
କେହି କାହାରିକୁ ରଣେ ନୁହନ୍ତି ନିଉନ
ଦୁହିଁଙ୍କର ପରାକ୍ରମ ଏକଇ ସମାନ ।
ଏ ରୂପେ ଅନେକ ରଣ ହେଲା ପରସ୍ପରେ
ଦୁର୍ଯ୍ୟୋଧନ ତେଜ ନାଶ ନୁହେଁ କିଞ୍ଚିତରେ ।
ଯୁଦ୍ଧ କଠୋର ଦେଖିଣ ପବନର ସୁତ
ବାସୁଦେବଙ୍କର ମୁଖ ଚାହିଁଲେ ତୁରିତ ।
ଭୀମସେନ ଚାହିଁବାରୁ ଜାଣି ବନମାଳୀ
ଆପଣା ଜାନୁରେ କର ମାରିଲେକ ତୋଳି ।
ଗୋବିନ୍ଦ ଠାରରେ ତାହା ଜାଣି ବାତସୁତ
ମହାଘୋର ସଂଗ୍ରାମ ଯେ କଲେ ଅବିରତ ।
ଶତଶୃଙ୍ଗଙ୍କୁ ସ୍ମରଣ କଲେ ବୃକୋଦର
ଶତସିଂହ ପରାକ୍ରମ ହୋଇଲା ଅଙ୍ଗର ।
ଶଏ ଏକ ସିଂହ ବଳ ଯେଉଁ ଦୁର୍ଯ୍ୟୋଧନ
ତାକୁ ଊର୍ଦ୍ଧ୍ୱଗତି କରି ଧରେ ଭୀମସେନ ।
ପୃଥିବୀକି ହେଠମୁଣ୍ଡ କରିଣ ଥୋଇଲା
ଦୁର୍ଯ୍ୟୋଧନ ବେନି ଜାନୁ ବିରଳ ଦିଶିଲା ।
ପାଣ୍ଡବ ସୁନ୍ଦର ଧରେ କୁରୁ ବେନି ଜାନୁ
ରାଗେ ମାଡ଼ିଣ ବସିଲା ପୁଣି ତାର ତନୁ ।
କୌମୋଦକୀ ଗଦା ଚିନ୍ତା କଲେ ଶିରୀବତ୍ସ
ଭୀମସେନ ହାତେ ଆସି ପଡ଼ିଲା ପ୍ରତ୍ୟକ୍ଷ ।
ଗଦା ବୁଲାଇଣ ଭୀମ କୋପେ ଦେଲା ପିଟି
ଗଦା ବାଜି ତାର ମଳଦ୍ୱାର ଗଲା ଫାଟି ।
ପାଣ୍ଡବ ସୁନ୍ଦର ପୁଣି ଧରେ ବେନି ଜାନୁ
ଟାଣିଦେଉ ନାଭିଯାଏ ଫାଟିଗଲା ତନୁ ।
ଯେସନ ଗଙ୍ଗା ଯମୁନା ବହେ ଗିରିଫୁଟି
ତେହ୍ନେ ଆକାଶ ଉଚ୍ଛୁଳି ରକ୍ତ ହୁଏ ବୃଷ୍ଟି ।
ପଡ଼ିଲା ମାନଗୋବିନ୍ଦ ହୋଇ ଅସାଷ୍ଟମ
ମଣିମୁକୁଟ ମର୍ଦ୍ଦିଲା ବାମପାଦେ ଭୀମ ।
ପୁଣି ହିଁ ଆକ୍ରୋଶି ଭୀମ ଯୋଡ଼ି ଲୋଡ଼େ ମୁଣ୍ଡ
ଯୁଧିଷ୍ଠି ଦେବ ଧଇଲେ ଯାଇ ଭୁଜଦଣ୍ଡ ।
ଭୀମସେନକୁ ପେଲିଣ ପକାଇ ଯୁଧିଷ୍ଠି
କୋଳରେ ଧଇଲେ ଦୁର୍ଯ୍ୟୋଧନ ମୁଣ୍ଡ ଗୋଟି ।
ଭୀମ ବୋଲେ ଛାଡ଼ ଦେବ ବିଦାରିବି ବୁକୁ
କେତେ କେତେ ଅବସ୍ଥା ଏ ଦେଇଛି ଆମ୍ଭଙ୍କୁ ।
ଯୁଧିଷ୍ଠି ବୋଇଲେ ତୋତେ ଆମ୍ଭ ରାଣ ଭୀମ
ସରିଲା କଥାରେ ଆଉ କେତେ କରୁ ତମ ।
ଯୁଧିଷ୍ଠିର କୋଳେ ଧରି ସେ ମାନଗୋବିନ୍ଦ
ମୁଖକୁ ଚାହିଁ କପାଳେ ମାରି କର ଦ୍ୱନ୍ଦ୍ୱ ।
ଗଳେ ଝର ଝର ହୋଇ ଲୁହ ବେନିଡୋଳେ
ରୋଦନ୍ତି ଧର୍ମ ଯୁଧିଷ୍ଠି ହୋଇ ଅସମ୍ଭାଳେ ।
ବାବୁରେ ମାନଗୋବିନ୍ଦ ଅତି ମାନପଣେ
ସମ୍ପଦ ବୁଡ଼ାଇଲୁ ତୁ ନ ଜାଣିବା ଗୁଣେ ।
କାଳକଯାକ ସମ୍ପଦ ଦେଲି ମୁହିଁ ତୋତେ
ଏହି ତୋହର କଷ୍ଟ ନ ଦେଖିବା ନିମନ୍ତେ ।
ବହୁତ କଷ୍ଟ ସହିଲୁ ଆମ୍ଭେ ପାଞ୍ଚଭ୍ରାତେ
ରାଜ୍ୟ ଛାଡ଼ିଲୁ ବୁଲିଲୁ ବନସ୍ତେ ବନସ୍ତେ ।
ଠାବେ ଠାବେ ଦେଖିଲୁ ତୁ ବଳ କ୍ଷତ୍ରୀଙ୍କର
ପୁଣି ତାଙ୍କ ତୁଲେ କିମ୍ପା କରିଲୁ ସମର ।
ପଞ୍ଚାଳଦେଶେ ଦ୍ରୌପଦୀ ସ୍ୱୟମ୍ବର କାଳେ
ଭୀମାର୍ଜ୍ଜୁନ ଯାହାକଲେ ଦେଖିଛୁ ତ ଡୋଳେ ।
ଆମ୍ଭେ ଯେତେବେଳେ ଥିଲୁ କାମ୍ୟକ କାନନେ
ଘୋଷଯାତ୍ରା କରିଗଲୁ ତୁ ପୁଣି ସେ ସ୍ଥାନେ ।
ଇନ୍ଦ୍ର ପୁଅ ଚିତ୍ରସେନ ତୋତେ ଯାହା କଲା
ଅର୍ଜ୍ଜୁନ ମୋ କଥା ମାନି ଉଦ୍ଧାରି ଆଣିଲା ।
ଗୋଧନ ହରଣ ପାଇଁ ଗଲୁ ବିରାଟକୁ
ଅର୍ଜ୍ଜୁନ ଧ୍ୱଂସିଲା ତୋର ସମୂହ ଥାଟକୁ ।
ବାବୁ ଅନେକ ଅବସ୍ଥା ପାଇ ଠାବେ ଠାବେ
ତାହା ଜାଣି ନ ଜାଣିଲରେ ମୂର୍ଖ କୌରବେ ।
ଶରେ ଅର୍ଜ୍ଜୁନ ସାଗରେ ବନ୍ଧକୁ ବାନ୍ଧିଲା
ତ୍ରେତାଯୁଗ ମଲ୍ଲ ହନୁ ଦର୍ପକୁ ଗଞ୍ଜିଲା ।
ଧନୁରେ ଧଇଲା ପାର୍ଥ ସପ୍ତଦୀପା ପୃଥ୍ୱୀ
ତାହା ଦେଖି ନ ବୁଝିଲ ଆରେ ଦୁଷ୍ଟମତି ।
କିରାତ ବେଶେ ହରଙ୍କୁ ଜିଣିଲା ସେ ବଳେ
ଅକ୍ଷତୂଣ ପାଶୁପତ ତ୍ରିଲୋଚନ ଦେଲେ ।
ନିର୍ବାତ କବଚ ଭୟେ ଇନ୍ଦ୍ର ପଳାଇଲା
ଚାରିଯୁଗ ଅମର ସେ ଅର୍ଜ୍ଜୁନ ମାଇଲା ।
ବାବୁ ଦ୍ୱାରକାରେ ପଶି ସୁଭଦ୍ରା ହରିଲା
ବଳରାମଙ୍କର ତୁଲେ ବହୁ ଯୁଦ୍ଧ କଲା ।
ଖାଣ୍ଡବେ ଦହି ଅଗ୍ନିକୁ ଦେଲ ମହୌଷଧି
ଅଗ୍ନି ଦେବତାର ଗଲା ଲୁଦୁବୁଦୁ ବ୍ୟାଧି ।

ଭୀମସେନର ମହିମା ନ ସରେ କହନ୍ତେ
ଯମ ଆସନ ଛାଡ଼ଇ ସେ ଗଦା ଧରନ୍ତେ ।
ବାବୁ ସହଦେବ ବୋଲି ଯେଉଁ ସାନଭ୍ରାତ
ଜାଣଇ ସେ ମୃତ୍ୟୁଭେଦ ଯାହାର ଯେମନ୍ତ ।
କୋଟିଏ ଯୁଗ ଆଗତ ବାରତା ଜାଣଇ
ଯାହାର ତୁଳରେ ସଖା ଶ୍ରୀକୃଷ୍ଣ ଅଟଇ ।
ତାହାଙ୍କର ତୁଳେ କିସ କରିଲୁ ସଂଗ୍ରାମ
ମାନଗୋବିନ୍ଦ ପଣରେ ବୁଡ଼ାଇଲୁ ଧର୍ମ ।
ବାବୁ ମୁଁ ପ୍ରବେଶ ହେଲି ଯେ ବାରୁଣାବନ୍ତେ
ମଧ୍ୟସ୍ଥ ପାତ୍ର କରିଲେ ଧୌମ୍ୟ ପୁରୋହିତେ ।
ସମସ୍ତଙ୍କୁ କହିଲେ ସେ ବିନୟରେ ବାଣୀ
ଉପହାସ କଲୁ ବାବୁ ସବୁକଥା ଶୁଣି ।
ପୁଣି ହିଁ ତୁମ୍ଭର ମନ ଜାଣିବା ନିମନ୍ତେ
ଆପଣେ ମଧ୍ୟସ୍ଥପାତ୍ର ହେଲେ ଜଗନ୍ନାଥେ ।
ସେ ହରିକି ତୁମ୍ଭେମାନେ ଉପହାସ କଲେ
ଆବର କୁବୁଦ୍ଧି କରି ମାରି ତ ଲୋଡ଼ିଲେ ।
ସଭା ତଳରେ ଶ୍ରୀକୃଷ୍ଣ ପାଇ ଅପମାନ
ତୁମ୍ଭର ତହୁଁ ଲକ୍ଷ୍ମୀଙ୍କି ଆଣିଲେ ବହନ ।
ବାବୁ ମୁଁ ବୋଇଲି ତୋତେ ଲକ୍ଷେରାଜା ଥାଇ
ପଡ଼ା ଖଣ୍ଡିଏକ ମୋତେ ଦିଅ କୁରୁସାଇଁ ।
ଅନେକ ବିନୟ ହୋଇ ଧଇଲି ତୋ ହାତ
ସମର ତୁ ତୁଚ୍ଛାକଲୁ ନ ହେଲୁ ସମ୍ମତ ।
ଏବେ ହେଁ ତୋତେରେ ମୁହିଁ ବୋଲୁଅଛି ଭାଇ
ହସ୍ତିନା ରାଜ୍ୟରେ ତୋତେ ବସାଇବି ନେଇ ।
ତୁହି କେବଳ ବଇଠା ରାଜା ହେବୁ ବାବୁ
ଦୈତ୍ୟ ଦାନବଙ୍କୁ ମାରି ଧନ ଦେଉଥିବୁ ।
ଭୀମ ହସିଲା ଯୁଧିଷ୍ଠି ଦେବ ବାକ୍ୟ ଶୁଣି
ତୁମ୍ଭ ବୋଲେ ରାଜ୍ୟେ ରାଜା ହେବ ଏହିକ୍ଷଣି ।
ବାପତ ଜନ୍ମରୁ ଅନ୍ଧ ପୁଅ ଭଗ୍ନ ଜାନୁ
ଏ ଦୁହେଁ ରାଜ୍ୟ କରନ୍ତୁ ତୁମ୍ଭର ବଚନୁ ।
ଗୋବିନ୍ଦ ବୋଇଲେ ବାବୁ ଶୁଣ ଭୀମସେନ
ପୋଡ଼ିଲା ଘାଆରେ କେତେ ଦେଉଥାଉ ଚୂନ ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ଜଗନ୍ନାଥେ
ଧୃତରାଷ୍ଟ୍ର ଜନ୍ମ ଅନ୍ଧ ହୁଅନ୍ତେ ଯୁକତେ ।
ପଣ୍ଡୁ ଧୃତରାଷ୍ଟ୍ରଙ୍କୁ ଯେ ରାଜଲକ୍ଷ୍ମୀ ଦେଇ
ରହିଲେ ସେ ଶତଶୃଙ୍ଗ ପର୍ବତରେ ଯାଇ ।
ଦୈତ୍ୟ ଦାନବ ମାରନ୍ତି କରି ଦିଗବିଜେ
ଧୃତରାଷ୍ଟ୍ରଙ୍କୁ ନୃପତି କରି ପଞ୍ଚରାଜ୍ୟେ ।
ଏବେ ତ ଏହାଙ୍କୁ ମୁହିଁ ରାଜ୍ୟଭାର ଦେବି
ଭାଇଙ୍କି ଘେନି ବନସ୍ତେ ଯାଇ ବୁଲୁଥିବି ।
ମୋହର ଏ ସତ୍ୟ ସତ୍ୟ ଅଟେ ଦୃଢ଼ବାକ୍ୟ
ଦିଅ ମୋତେ ଏହି ଆଜ୍ଞା ହେ ସାଧୁ ବିବେକ ।
ଭୀମସେନ ବୋଲେ ଦେବ ଶୁଣ ଶିରୀବତ୍ସି
ଏ ବୋଲେ ଶୁଣିଣ ଯାହା ଯା ପ୍ରାଣ ରହିଛି ।
ଦୁର୍ଯ୍ୟୋଧନ ବୋଲେ ସାଧୁ ସାଧୁ ତୋତେ ଭୀମା
ଶରୀରୁ ନ ଛାଡ଼େ କିମ୍ପା ଏ ନିର୍ଲ୍ଲଜ ଆତ୍ମା ।
ସେହିକ୍ଷଣି ପ୍ରାଣ ମୋର କିମ୍ପାଇ ନ ଗଲା
ବାମପାଦେ ମୋ ମୁକୁଟ ଭୀମାଟା ମର୍ଦ୍ଦିଲା ।
ଗୋବିନ୍ଦ ବୋଇଲେ ସ୍ୱାମୀ ବେଗେ ଯିବା ଆସ
ବିଳମ୍ବ ଦେଖି କୋଇନ୍ତା ପ୍ରାଣେ ହେବେ ନାଶ ।
କୋମଳ ପତ୍ରରେ କରି ତହିଁ ଏକ ଶଯ୍ୟା
ତାହାଉପରେ ଶ୍ୱାଇଲେ ନେଇ କୁରୁରାଜା ।
ଯୁଧିଷ୍ଠି ବୋଇଲେ ଧନ୍ୟ ଧନ୍ୟରେ ବିଧାତା
କେବେ ସୁଖ କେବେ ଦୁଃଖ ଦେବତା ଆୟତ୍ତ ।
ହଂସୁଳୀ ତୁଳିରେ ଯାକୁ ନ ଆସଇ ନିଦ
ଏବେ ପତ୍ର ଶଯ୍ୟା କଲୁରେ ମାନଗୋବିନ୍ଦ ।
କିଏ ଆନ କରିପାରେ ଦୈବ ଲିଖନକୁ
ଯାହା ତାହା ହେଲେ ମଧ୍ୟ ଭୁଞ୍ଜିବ ତାହାକୁ ।
ଏମନ୍ତ କହିଣ ଧର୍ମ ଶିରେ ମାରି କର
ବୋଇଲେରେ ଭାଇ କର୍ମ ଭୋଗ କର ତୋର ।
ପୁଣି ଆଦେଶ କରିଲେ ଶୁଣ ହେ ଦୁର୍ଦ୍ଧକ୍ଷ
ଆସୁଛି ରଜନୀ ମାନଗୋବିନ୍ଦକୁ ରଖ ।
ଦୁର୍ଦ୍ଧକ୍ଷକୁ ଶତେ ହସ୍ତୀ ତିନିଅସ୍ତ୍ର ରଥୀ
ପାଞ୍ଚସହସ୍ର ତୁରଗ ଶତେକ ପଦାତି ।
ଲକ୍ଷେକ ସଇନ୍ୟ ଦେଇ ଦୁର୍ଦ୍ଧକ୍ଷ ସଙ୍ଗରେ
ରଣ ଜୟ କରି ସର୍ବେ ଗ୍ଲଲେ ଆନନ୍ଦରେ ।
ବ୍ୟାସସର ନିକଟରେ ଜଇନ୍ତା ନଗର
ହେ ନରେଶ ଚାରିଯୁଣ ଅଟଇ ସେ ଦୂର ।
ପଞ୍ଚପାଣ୍ଡବ ସହିତେ ସଇନ୍ୟକୁ ଘେନି
ଅତି ବେଗରେ ଅଇଲେ ପ୍ରଭୁ ଚକ୍ରପାଣି ।
ଜଇନ୍ତା ନଗରେ ଆସି ହେଲେ ଉପସ୍ଥିତ
ଶତ୍ରୁକୁ ବିନାଶି ମନେ ଆନନ୍ଦ ଅତ୍ୟନ୍ତ ।
ତେଣେ ଅର୍ଘ୍ୟ ଘେନି ଦ୍ୱାରେ କୁନ୍ତୀ ମହାସତୀ
ଏମାନଙ୍କ ଆସିବାକୁ ଚାହିଁ ବସିଛନ୍ତି ।
ଆଗେ କୃଷ୍ଣ ତାଙ୍କ ପାଶେ ପ୍ରବେଶ ହୋଇଲେ
ତାଙ୍କୁ ଦେଖି କୁନ୍ତୀଦେବୀ ଏମନ୍ତ ବୋଇଲେ ।
କହ ହରି କେ ବଧିଲା ମାନଗୋବିନ୍ଦକୁ
ଅର୍ଘ୍ୟ ଘେନି ବନ୍ଦାଇବି ଆଗେ ମୁଁ ତାହାକୁ ।
ଦେବତା ରାକ୍ଷସ ଅବା ହେଉ ସେ ଚାଣ୍ଡାଳ
ନିଶ୍ଚୟ ଅର୍ଘ୍ୟ ବନ୍ଦିବି ତାକୁ ଆଦିମୂଳ ।

ଦୁର୍ଯ୍ୟୋଧନ ନ ମରିବା ଯଦ୍ୟପି ଶୁଣିବି
ଏକ୍ଷଣି ହରି ତୋ ଆଗେ ଜୀବନ ତେଜିବି ।
କୁନ୍ତୀଙ୍କ କଠୋରବାଣୀ ଶୁଣି ନାରାୟଣ
କୋମଳ ବଚନେ ସେହୁ କହିଲେ ଏସନ ।
ଶୁଣ ଆଗୋ ମାତା ତୁମ୍ଭେ ମୋହର ବଚନ
ଦୁର୍ଯ୍ୟୋଧନ ନାଶ କଲେ ଆଜି ଭୀମସେନ ।
ଧନ୍ୟ ମାତ ଜାତ କଲ ତୁମ୍ଭେ ପାଞ୍ଚପୁତ୍ର
ତାଙ୍କ ହାତେ ମହୀଭାରା ହୋଇଲା ନିପାତ ।
ଏବେ ମାତ ଅର୍ଘ୍ୟ ଦିଅ ଭୀମସେନ ଶିରେ
ଶୁଣି କୋଇନ୍ତା ଅତ୍ୟନ୍ତ ଆନନ୍ଦ ମନରେ ।
ଅଙ୍ଗ ପୁଲକି ଉଠିଲା ପ୍ରଫୁଲ୍ଲ ବଦନ
ସ୍ନେହରେ ଡାକିଲେ ଆସି ଆରେ ଭୀମସେନ ।
ମାରୁତି ଯାଇଣ ତାଙ୍କ ଚରଣେ ନମିଲେ
କୁନ୍ତୀ ଭୀମସେନ ଶିରେ ଅର୍ଘ୍ୟ ବନ୍ଧାଇଲେ ।
ବୋଇଲେକ ସାଧୁ ସାଧୁ ତୁ ମୋହର ପୁତ୍ର
ସେ ବଚନେ ତୁଷ୍ଟ ହେଲେ ଭୀମ ବଳବନ୍ତ ।
ଏ ସମୟେ ଭୀମ ବୋଲେ ଗୋବିନ୍ଦଙ୍କୁ ଚାହିଁ
ମୋ ପରି ବୀର ନ ଥିବେ ତ୍ରିଭୁବନେ କେହି ।
ମୁହିଁ ଯେ ଶତ୍ରୁମାନଙ୍କୁ କରିଲଇଁ କ୍ଷୟ
ମୋ ହସ୍ତେ ମଲେ ଗାନ୍ଧାରୀ ଶତେକ ତନୟ ।
ସମରେ ବେନି ଗଦା ମୁଁ ଧରିଣ ନ ଥିଲେ
ଚାରିଭାଇ ଶତ୍ରୁଠାରୁ ନ ବର୍ତ୍ତନ୍ତେ ଭଲେ ।
ଭୀମ କାକ୍ୟ ଶୁଣି ରାଗେ ବୋଇଲେ ଅର୍ଜ୍ଜୁନ
ମୋହର ବଚନ ଶୁମ୍ଭେ ଶୁଣ ଜନାର୍ଦ୍ଦନ ।
ବାଳକ କାଳରେ ବିଦ୍ୟା ପରୀକ୍ଷାର ବେଳେ
ଦ୍ରୋଣଗୁରୁ ସମସ୍ତଙ୍କୁ ଘେନିକରି ଗଲେ ।
କୁଣ୍ଡଳୀ ପର୍ବତଠାକୁ କରିଲୁ ଗମନ
ସେ ପର୍ବତଠାକୁ ଦ୍ରୋଣ ଆଗହୁଁ ଯାଇଣ ।
ତା ଉପରେ ଥିଲା ଏକ ବୃକ୍ଷ କୃଷ୍ଣାଗରୁ
ନାରାଚେ ଅର୍ଦ୍ଧେକ ତାକୁ ଛେଦି ଦ୍ରୋଣଗୁରୁ ।
ତହିଁର ଉପରେ ଏକ ଖଡ଼ିକା ପୋତିଲେ
ଏକ ଗରଗଡ଼ ନେଇ ତା ପରେ ଥୋଇଲେ ।
ଶୃଙ୍ଗଧାନ ରଖିଲେକ ଗରଗଡ଼ ପରେ
ସୋରିଷ ଏକ ରଖିଲେ ତହିଁର ଉପରେ ।
ଏ ରୂପେ ସେଠାରେ ରହି ଭରଦ୍ୱାଜ ଶିଷ୍ୟ
ଆଖଡ଼ା ଶାଳରେ ଆସି ହୋଇଲେ ପ୍ରବେଶ ।
ଦୁର୍ଯ୍ୟୋଧନ ଶତେ ଭାଇ କର୍ଣ୍ଣ ସହିତରେ
ଆମ୍ଭ ପାଞ୍ଚଭାଇଙ୍କି ସେ କହିଲେ ସତ୍ୱରେ ।
ନିଅ ଧନୁଶର ତୁମ୍ଭେ ଚାହିଁ ପର୍ବତକୁ
ସେଠାରେ କି ଦିଶେ ଫେଡ଼ି କହ ହେ ଆମ୍ଭଙ୍କୁ ।
ଶୁଣି ଦୁର୍ଯ୍ୟୋଧନ ଆଗେ ଧନୁଶର ନେଲା
ପର୍ବତ ସ୍ତମ୍ଭ ଖଡ଼ିକା ଦିଶେ ଯା କହିଲା ।
ଆଉ କି ଅଛଇ ଗୁରୁ ନ ଦିଶଇ ମୋତେ
ଏହିରୂପେ ଅନାଇଣ କହିଲେ ସମସ୍ତେ ।
ଖଡ଼ିକା ଗର୍ଗଡ଼ ଯାଏ ସମସ୍ତେ କହିଲେ
ଆଉ ତେଣିକି ବଳିଣ କହି ନ ପାରିଲେ ।
ସର୍ବଶେଷେ ଧନୁଶର ଦେଇ ଗୁରୁ ମୋତେ
ବୋଇଲେ କହରେ ବାବୁ କି ଦିଶିଛୁ ତୋତେ ।
ଗୁରୁଙ୍କ ଆଜ୍ଞାରେ ମୁହିଁ ଧନୁଶର ଧରି
ବୋଇଲି ଏଠାରୁ ଚାରିଯୁଣେ ଅଛି ଗିରି ।
ତା'ପରେ ଗୋଟିଏ ବୃକ୍ଷ କଟା ହୋଇଅଛି
ତହିଁର ଉପରେ ଏକ ଖଡ଼ିକା ରହିଛି ।
ଖଡ଼ିକା ପରେ ଗର୍ଗଡ଼ ପରେ ଶୃଙ୍ଗଧାନ
ତା ପରେ ସୋରିଷ ଅଛି କହିଲି ପ୍ରମାଣ ।
ଏହା ମୁଁ କହନ୍ତେ ଗୁରୁ ହୋଇଲେ ହରଷ
ଆନନ୍ଦେ ବୋଇଲେ ମତେ ବେଗେ ଶର ପେଶ ।
ଖଡ଼ିକା ଗର୍ଗଡ଼ ଧାନ ନ ପଡ଼ି କେବଳ
ସୋରିଷ ଗୋଟି ମଧ୍ୟରୁ ହେବ ବେନିଫାଳ ।
ଗୁରୁଙ୍କ ଆଜ୍ଞାରେ ମୁହିଁ ନାରାଚ ପେଶିଲି
ସୋରିଷ ଗୋଟିକି ଯହୁଁ ବେନିଫାଳ କଲି ।
ତାହା ଦେଖି ଦ୍ରୋଣଗୁରୁ ବହୁ ପ୍ରଶଂସିଲେ
ତ୍ରିପୁରେ ତୋ ସମବୀର ନ ହେବେ ବୋଇଲେ ।
ବାଳୁତ କାଳରୁ ମୁହିଁ ଏମନ୍ତ କ୍ଷତ୍ରିୟ
କିରାତ ରୂପେ ଜିଣିଲି ଦେବ ମୃତ୍ୟୁଞ୍ଜୟ ।
ତରେ ପାଶୁପତ ମୋତେ ସମର୍ପିଲେ ହର
ସନ୍ତୋଷେ ପାର୍ବତୀ ଦେଲେ ଅକ୍ଷୟ ତୂଣୀର ।
ଖାଣ୍ଡବ ବନକୁ ଦେଇ ତୋଷିଲି ଅନଳ
ତେଣୁ ପ୍ରାପ୍ତ ହେଲା ମୋତେ ଦେବାସ୍ତ୍ର ସକଳ ।
ସେ ସମୟେ ଇନ୍ଦ୍ରସହ ହାରିଗଲେ ଦେବେ
କି କ୍ଷମ ଥିଲା ତୁମ୍ଭର ଜିଣନ୍ତା କୌରବେ ।
ଧନୁ ମନଭେଦୀ ଶର ଧରିଥିଲେ ମୁହିଁ
ଭାରତ ଯୁଦ୍ଧେ କେ ମୋତେ ଜିଣିବାକୁ ନାହିଁ ।
ସପ୍ତରଥୀ ମୋ ଶରକୁ ଦେଖିଲେ ଡରନ୍ତି
ମୋ ଶରେ କୌରବଦଳ ହେଲେ ବିନଶ୍ୟତି ।
ପାର୍ଥଙ୍କ ଏ ବାଣୀ ଶୁଣି ନକୁଳ କମ୍ପିଲା
କୃଷ୍ଣଙ୍କ ପାଦେ ପ୍ରଣମି ଏମନ୍ତ ବୋଇଲା ।
ମୁଁ ଯଦ୍ୟପି କୁନ୍ତ ଧରି ନ ଥାନ୍ତି ସମରେ
କୌରବ ସୈନ୍ୟଙ୍କୁ କିଏ ଜିଣନ୍ତା ବଳରେ ।
ମୁହିଁ ବାହୁବଳେ ଧର୍ମ ଯଜ୍ଞ ହେଲା କାଳେ
କୁନ୍ତମୁନେ ପୃଥିବୀକି ଧଇଲି ପାତାଳେ ।

କେତେ ଟାଣ ଦେଖାଇଣ କହିଗଲେ ପାର୍ଥ
କି ଜିଣନ୍ତେ ମୁଁ ନ ଧରିଥିଲେ ଏହି କୁନ୍ତ ।
ନକୁଳ ବାକ୍ୟରେ କମ୍ପି କହେ ସହଦେବ
ମୋ କଥା ଘେନା କରନ୍ତୁ ହେ ଦେବକେଶବ ।
ବିଚାର ନ ଦେଇଥିଲେ ମୁଁ ଏହିମାନଙ୍କୁ
କିସ ଜିଣନ୍ତେ ଏମାନେ କୌରବ ଆଦିଙ୍କୁ ।
ଦୁର୍ଯ୍ୟୋଧନ ମୃତ୍ୟୁଭେଦ ମୁଁ ତ ଥିଲି କହି
ଜିଣିଥାଆନ୍ତେ ଆଜି କି ଭୀମସେନ ଭାଇ ।
ନିଶ୍ଚୟ କରି କହୁଛି ବୁଝ ଯଦୁରାୟ
ମୋ ବିଚାରେ କୌରବାଦି ସର୍ବ ହେଲେ କ୍ଷୟ ।
ଯୁଧିଷ୍ଠି ବୋଇଲେ କୃଷ୍ଣ ଶୁଣ ମୋର କଥା
ଏମାନେ ଯାହା କହିଲେ ନୁହଁଇ ଅନ୍ୟଥା ।
କପଟ ମୁଁ ଜାଣେ ନାହିଁ ମିଛ ନ କହଇ
ସବୁବେଳେ ଧର୍ମପଥ ଆଶ୍ରା କରିଥାଇ ।
ଧର୍ମ ଆଶ୍ରିତ ଜନର ସଦା ହୁଏ ଜୟ
ସେ ପ୍ରାଣୀକି ନ ପଡ଼ଇ କେବେ ଅପଚୟ ।
ମୋ ସତ୍ୟ ଧର୍ମବଳରୁ ମରିଲେ ସକଳ
ଏ କଥା ନିଶ୍ଚୟ ତୁମ୍ଭେ ବୁଝ ଆଦିମୂଳ ।
ଏ ପାଞ୍ଚଙ୍କ କଥା ଶୁଣି ବୋଇଲେ ପାଞ୍ଚାଳୀ
ମୋହର ବଚନ ତୁମ୍ଭେ ଶୁଣ ବନମାଳୀ ।
ଯେଉଁଦିନ ଦୁଃଶାସନ ଧଇଲା ମୋ କେଶ
ସେହିଦିନ କରିଥାନ୍ତି କୁରୁବଂଶ ଧ୍ୱଂସ ।
ଅନଳୁ ଜନ୍ମି ବୋଲାଏ ମୁଁ ପରମା ସତୀ
ମୋ କୋପେ କୌରବ ଆଦି ହେଲେ ବିନଶ୍ୟତି ।
ସୁଭଦ୍ରା ବୋଇଲେ ଶୁଣ ଦ୍ରୌପଦୀଙ୍କ କଥା
ତୁମ୍ଭେମାନେ ଯା କହିଲ ସବୁ ଅଟେ ବୃଥା ।
ମୋର ପୁତ୍ର ଅଭିମନ୍ୟୁ ଯେଣୁ ସେ ମାଇଲେ
ତେଣୁ ମୋ ଭାଇ ଶ୍ରୀକୃଷ୍ଣ ତାଙ୍କୁ ବିନାଶିଲେ ।
କୁନ୍ତୀ ବୋଇଲେ ମୋ କଥା ଶୁଣ ନାରାୟଣ
ବନେ ଗଲାବେଳେ ଯେତେ ଲଭିଲ କଷଣ ।
ସର୍ବଦା ସେ ଆତ୍ମା ଗୋଟି ଆକୁଳ ହୁଅଇ
ସେ ଦିନର ଶାପ ଏବେ ଫଳିଲା କହ୍ନାଇ ।
ଧର୍ମକୁ ସଦା ଜଣାଏ କରିଣ ବିନତି
ଏତେଦିନେ ଧର୍ମ ତାଙ୍କୁ କଲେ ବିନଶ୍ୟତି ।
ଏ ରୂପେ କଥା ହୁଅନ୍ତେ ଯେଝା ପଉରୁଷେ
କାହାରି କଥା କାହାରି ମନକୁ ନ ଆସେ ।
ସମସ୍ତଙ୍କ ଦୁଃଖ ସୁଖ ଭାବ ଜାଣି ହରି
ବୋଇଲେ ଝଗଡ଼ା ତୁମ୍ଭେ ନ କର ଏପରି ।
ତୁମ୍ଭମାନଙ୍କର କଥା ମୁହିଁ ନ ଜାଣଇ
ଶତ୍ରୁ ଏକ ନାଶଗଲେ ବିରସ କିମ୍ପାଇଁ ।
ଏହିରୂପେ କହି ହରି ସବୁଙ୍କୁ ତୋଷିଲେ
ପାଞ୍ଚପାଣ୍ଡବଙ୍କୁ ଚାହିଁ ଏମନ୍ତ କହିଲେ ।
ଚାଲ ଏହିକ୍ଷଣି ଯିବା ସମର ଭୂମିକୁ
ଯୁଦ୍ଧକଥା ପଚାରିବା ବେଲାଲସେନକୁ ।
ସେ କାଳେ ଶିର କମଳ ତାହାକୁ ମାଗିଲି
ସେ ମାଗିବା ଦିବ୍ୟଚକ୍ଷୁ ତାକୁ ଦେଇଥିଲି ।
ସେ ନେତ୍ରେ ସବୁଙ୍କ ଯୁଦ୍ଧ ତହିଁ ଦେଖିଥିବ
ତାକୁ ପୁଚ୍ଛିଲେ ସବୁଙ୍କ ସନ୍ଦେହ ତୁଟିବ ।
ଏହା ଶୁଣିକରି ସର୍ବେ ବାହାର ହୋଇଲେ
ସମର କ୍ଷେତ୍ର ମଣ୍ଡଳେ ଯାଇଁ ପ୍ରବେଶିଲେ ।
ଶୁଭସ୍ତମ୍ଭଠାରେ ମିଳି ଦେବ ନାରାୟଣ
ବେଲାଲସେନକୁ ଚାହିଁ ପୁଚ୍ଛିଲେ ଏସନ ।
କହ ବୀର କି କି ତୁହି ଦେଖିଲୁ ସମରେ
ବହୁ ସନ୍ଦେହ ଜନ୍ମିଛଇ ଆମ୍ଭର ମନରେ ।
କିଏ କାହାକୁ ମାଇଲା କି କି ଅସ୍ତ୍ର ମାରି
କେ କେତେ ମାଇଲା ଗଦା ମଲ୍ଲଯୁଦ୍ଧ କରି ।
ଉଚ୍ଚସ୍ଥାନେ ଥିଲୁ ତୁହି ଦେଖିଥିବୁ ସବୁ
ସଂଶୟ ଫିଟିବ ଫେଡ଼ି କହ ଆରେ ବାବୁ ।
କୃଷ୍ଣଙ୍କ ବାକ୍ୟେ କହଇ ସେ ବେଲାଲସେନ
ମୋହର ବଚନ ତୁମ୍ଭେ ଶୁଣ ଭଗବାନ ।
ଯୁଦ୍ଧ ଦେଖିବାକୁ ଦିବ୍ୟ ଲୋଚନ ମାଗିଲି
କି ରୂପେ ହୋଇବ ଯୁଦ୍ଧ ଦେଖିବି ମୁଁ ବୋଲି ।
ସତରଦିନ ସମର ହୋଇଲା ଏଠାରେ
ନ ଦେଖିଲି ପ୍ରଭୁ ମୁହିଁ କେ କାହାକୁ ମାରେ ।
ରଥ ରଥୀ ଗଜ ଅଶ୍ୱ ସୈନ୍ୟ ଅସୁମାର
ଅଶ୍ୱ ଚକାଚଳି ହୁଏ ମୁଖେ ମାରଧର ।
କିନ୍ତୁ କେ କାରେ ମାରଇ ନ ଦେଖିଲି ଦେବ
ଆଉ ଯାହା ଦେଖିଅଛି ଶୁଣ ହେ କେଶବ ।
ଗୋଟିଏ ଚକ୍ର ଆସଇ ହୋଇ ପରଖର
ସମର ପ୍ରାଙ୍ଗଣେ ସେହି କରଇ ବିହାର ।
ପାଣ୍ଡବଙ୍କ ଥାଟୁ ଯାଇଁ କୁରୁସୈନ୍ୟ ନାଶେ
ତେଣୁ ଫେରି ପାଣ୍ଡବଙ୍କ ସୈନ୍ୟ ମାରି ଆସେ ।
ସେହି ଚକ୍ରଟି ଚୌଦିଗେ ଖେଦି ମାରୁଥାଏ
କୁରୁ ପାଣ୍ଡବ ସୈନ୍ୟଙ୍କୁ ସେହି କଲା କ୍ଷୟେ ।
ଏହାଛଡ଼ା କେ କାହାକୁ ଯୁଦ୍ଧେ ମାରିଅଛି
ମୁହିଁ ଏହା ଦେଖିନାହିଁ ଜାଣ ହେ ଶ୍ରୀବତ୍ସି ।
ଏହିକଥା ଶୁଣି ସର୍ବେ ହୋଇଲେକ ତୁନି
ଶିର କମ୍ପାଇ ରାଗରେ ଉଠିଲେ ପାବନି ।
ଭାଳଇ ସବୁଙ୍କୁ ଯାହା ନିନ୍ଦା କଲା କଲା
ମୋ ପୁତ୍ର ହୋଇ ମୋ ଟେକ ଟିକେ ନ ରଖିଲା ।

ରେ ଅନ୍ଧ କହୁଛି କିଛି ମାରି ନାହିଁ ମୁହିଁ
ଏହା କହି ଏକବିଧା ମାଇଲା ନିଠାଇ ।
ସେ ଆଘାତେ ବେଲାଳର ଶିର ଚୂର୍ଣ୍ଣ ହେଲା
ତା ଆତ୍ମା ଶ୍ରୀକୃଷ୍ଣ ଦେହେ ଲୀନ ହୋଇଗଲା ।
ଶ୍ରୀକୃଷ୍ଣ ବୋଇଲେ ହାୟ ଭୀମ ତୁ କି କଲୁ
ବେଲାଳ ଜୀଆଇ ଥାନ୍ତୁ ମନେ ଭାଳିଥିଲୁ ।
କପଟ କରିଣ ହରି ଏମନ୍ତ କହିଲେ
ଶୁଣି କରି ସମସ୍ତେ ଯେ ବିରସ ହୋଇଲେ ।
ମାୟାଧର ପ୍ରଭୁଙ୍କର କେ ମାୟା ବୁଝିବ
ଏହିରୂପେ ଭାଙ୍ଗିଲେ ପ୍ରଭୁ ପାଣ୍ଡବଙ୍କ ଗର୍ବ ।
ସଂସାରେ ଲଗାଇଥନ୍ତି ଯେହୁ ଖେଳଘର
କେ ଜାଣିବ ତାଙ୍କ ମାୟା ଦେବେ ଅଗୋଚର ।
ଶୁଣ ବୈବସ୍ୱତ ମନୁ ଏଥୁ ଅନନ୍ତରେ
ପଞ୍ଚପାଣ୍ଡବଙ୍କୁ ହରି ଘେନି ସଙ୍ଗତରେ ।
ଜଇନ୍ତା ନଗରେ ଯାଇ ପ୍ରବେଶ ହୋଇଲେ
ଜୟ ପତାକା ସବୁରି ପୁରେ ଉଡ଼ାଇଲେ ।
କୁନ୍ତୀଙ୍କ ପାଶେ ପ୍ରବେଶ କରନ୍ତେ ପ୍ରଣାମ
କଲ୍ୟାଣ ବାଞ୍ଛିଲେ କୁନ୍ତୀ ପୁରୁ ମନସ୍କାମ ।
ଯୁଧିଷ୍ଠି ବୋଇଲେ ହରି ଚାଲ ସର୍ବେ ଯିବା
ସ୍ନାନ ଦେବାର୍ଚ୍ଚନ ସାରି ଭୋଜନ କରିବା ।
ତହୁଁ ସର୍ବେ ଯାଇ ସ୍ନାନ କରିଣ ଅଇଲେ
ଦେବାର୍ଚ୍ଚନ ଭୋଜନାଦି କାର୍ଯ୍ୟ ଶେଷ କଲେ ।
ସଭାଗୃହରେ ପ୍ରବେଶ ହ୍ୱନ୍ତେ ଧର୍ମଶିଷ୍ୟ
ତାଙ୍କୁ ଚାହିଁ ବୋଇଲେ ହେ ଦେବ ପୀତବାସ ।
ଏବେ ଆପଣଙ୍କ ଶତ୍ରୁ ସର୍ବେ ନାଶଗଲେ
ଆପଣ ମନରେ ଏବେ ନିଶ୍ଚିନ୍ତ ହୋଇଲେ ।
ଏବେ ସକଳ ଚାଲନ୍ତୁ ଦ୍ୱାରକାକୁ ଯିବା
ବଳରାମଙ୍କୁ ଯାଇଣ ସମସ୍ତ କହିବା ।
ଆବର କଥାଏ କହେ ବୁଝ ଦେବ ମନେ
ଦଣ୍ଡେ ରହି ନ ଯୋଗାଏ ଜୟ କଲା ସ୍ଥାନେ ।
ଏଥିର କାରଣ ପୂର୍ବୁ ଅଛି ଜାଣି ସ୍ୱାମୀ
ପଞ୍ଚରାତ୍ର ଉପେକ୍ଷିତ ଜୟ କଲା ଭୂମି ।
ଏହା ଶୁଣି ଯୁଧିଷ୍ଠିର କଲେ ସନମତ
ଯେ ଆଜ୍ଞା ତୋହର ମୁହିଁ ପାଳିବି ଅଚ୍ୟୁତ ।
ଯୁଧିଷ୍ଠିଙ୍କି ଏହା କହି କମଳଲୋଚନ
ଦୃଷ୍ଟଦ୍ୟୁମନ ପାଶେ ଯାଇ ମିଳିଲେ ବହନ ।

ପାଞ୍ଚାଳୀଙ୍କ କୁମରକୁ ଶୁଆଇ ଭିତରେ
ଧୃଷ୍ଟଦ୍ୟୁମନକୁ ନେଇ ଜଗାଇଲେ ଦ୍ୱାରେ ।
ଗୋବିନ୍ଦ ବୋଇଲେ ଶୁଣ ପାଞ୍ଚାଳର ରାୟେ
ପାଣ୍ଡବଙ୍କୁ ନେଉଅଛୁ ଦ୍ୱାରାବତୀ ଯାଏ ।
ପାଞ୍ଚାଳୀ କୁମର ଛନ୍ତି ତୁମର ଭଣଜା
ଯତ୍ନେ ରଖ ପଞ୍ଚରାଜ୍ୟେ ହେବେ ମହାରାଜା ।
ଦୁଇ ଅକ୍ଷୌହିଣୀ ସୈନ୍ୟ ରଖି ସିଂହଦ୍ୱାରେ
ଭୈରବ ପିତୁଳା ଏକ ସ୍ଥାପିଲେ ବାହାରେ ।
ପାଣ୍ଡବେ ପଞ୍ଚସୋଦର ଦ୍ରୌପଦୀ ସୁନ୍ଦରୀ
ଆବର କୁନ୍ତୀ ସୁଭଦ୍ରା ଉତ୍ତରାକୁମାରୀ ।
ଏହାଙ୍କୁ ବସାଇ ହରି ନନ୍ଦିଘୋଷ ରଥେ
ପ୍ରବେଶିଲେ ଦ୍ୱାରକାରେ ଯାଇଣ ତୁରିତେ ।
ଉଗ୍ରସେନ ବିଜେ କୃଷ୍ଣ ଆସିବାର ଶୁଣି
ସାତବଂଶ ଯଦୁ ଘେନି ବିଜେ ହଳପାଣି ।
ଦ୍ୱାରାବତୀରେ ଉତ୍ସବ କଲେ ଦେବହରି
ପାଣ୍ଡବଙ୍କୁ ଉଦ୍ଧାରିଣ ଦୁଷ୍ଟଙ୍କୁ ସଂହାରି ।
ଅନେକ ପ୍ରାର୍ଥନା ତହିଁ କରିଲେ ଯାଦବ
ଶୟଳ ଉଦ୍ଧାର କର୍ତ୍ତା ଅଟ ବାସୁଦେବ ।
ଦୁଃଖୀଜନ ଉଦ୍ଧାରଣ ନାଥ ଜଗତବନ୍ଧୁ
ପୃଥ୍ୱୀଜନ ଉଦ୍ଧାରଣ ନାଥ ସତ୍ୟସିନ୍ଧୁ ।
ଭକ୍ତ ଉଦ୍ଧାରଣ ନାଥ ଭକତ ବତ୍ସଳ
ଭାରା ଉଦ୍ଧାରଣ ନାଥ ତାରଣ ଶୟଳ ।
ତୁ ଦେବ ଆଦି ପୁରୁଷ ତୁ ଦେବ ନିୟନ୍ତା
ତୁ ଦେବ ନର୍କଗତିରୁ ଉଦ୍ଧାର କରତା ।
ତୁ ଦେବ ମନ୍ତ୍ର ସାଧନ ତୁ ପରମଯୋଗୀ
ତୁ ଦେବ ଅଣାକାର ତୁ ପରଂବ୍ରହ୍ମ ଭୋଗୀ ।
ତୁହି ଦେବ ଜଳସ୍ଥଳ ତୁ ଦେବ ଅନଳ
ତୁ ଦେବ ଆକାଶ ପୁଣି ସପତ ପାତାଳ ।
ତୁହି ଦେବ ରାତ୍ର ଅଟୁ ତୁ ଦେବ ଦିବସ
ତୁହି ଦେବ ବ୍ରହ୍ମା ଅଟୁ ତୁହି ବିଶ୍ୱବାସ ।
ତୁ ଦେବ ଯାବତ ଜୀବ ଅଟୁ ଶ୍ରେଷ୍ଠମୂଳ
ତୁହି ଦେବ ଧର୍ମାଧର୍ମ ତୁହି ଯେ ସକଳ ।
ଅନିତ୍ୟ ଶରୀର ଏହୁ ଲାଗୁଅଛି ଲୟ
ଚବାଗ୍ରେ ରହିଲେ ଅନୁଭବକୁ ନ ଦିଅ ।
ତୁଳସୀ ବଲ୍ଲଭ ପାଦେ ଅନୁବ୍ରତେ ସେବି
ଶ୍ରୀ ଶାରଳା ଦାସ କବି କହେ ଏହା ଭାବି ।
ଏହିଠାରେ ଗଦାପର୍ବ ହେଲା ସମାପତ
ପଢ଼ି ଶୁଣି ନରେ ହୁଅ ସଂସାରୁ ମୁକତ ।

**ମହାଭାରତ ଗଦାପର୍ବ ସମ୍ପୂର୍ଣ୍ଣ**

—০—

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚିତ




# କାଇଁଶିକା ବା ଐଷିକ ପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ - ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ - ୨
ଦୂରଭାଷ : ୦୬୭୧-୨୬୦୮୨୯୬

# ମହାଭାରତ କାଇଁଶିକା ବା ଐଷିକ ପର୍ବର

# ସୂଚୀପତ୍ର

**ବିଷୟ** **ପୃଷ୍ଠାଙ୍କ**



**— କାଇଁଶିକା ବା ଐଷିକ ପର୍ବର ସୂଚୀ ପତ୍ର —**

**ସମାପ୍ତ**

# ମହାଭାରତ

## କାଇଁଶିକା ବା ଐଷିକ ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।
ଖର୍ବଂ ସ୍ଥୂଳତନୁ ଗଜେନ୍ଦ୍ର ବଦନଂ ଲମ୍ବୋଦର ସୁନ୍ଦରଂ,
ପ୍ରସ୍ୟନ୍ଦନ୍ ମଧୁଗନ୍ଧଲୁବ୍ଧମଧୁପବ୍ୟାଲୋଳ ଗଣ୍ଡସ୍ଥଳଂ ।
ଦନ୍ତାଘାତ ବିଦାରିତାରୁଧିରୈଃ ସିନ୍ଦୂର ଶୋଭାକରଂ,
ବନ୍ଦେ ଶୈଳସୁତାସୁତଂ ଗଣପତିଂ ସିଦ୍ଧିପ୍ରଦ କାମଦଂ ।

କ୍ଷୀରେନ୍ଦୁ କୁନ୍ଦଧବଳଂ ଶଶୀଖଣ୍ଡ ଚୂଡ଼ଂ,
ସ୍ୱକୀୟଂ-ଜନତାପ-ବିନାଶ-ଦକ୍ଷଂ ।
ଗିରିନ୍ଦ୍ର ରାଜତନୟଯୁତାବାମଭାଗଂ,
ନମାମି ଏବଂଭୂତ ବାମଦେବଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃନ୍ତ୍ରଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।
ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଲୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯକ୍ରର୍ଣ୍ଣୋଧାରୋହରିଃ ।

## ବନ୍ଦନା

ଜୟ ଜୟ ଜଗନ୍ନାଥ ଜଗତ କରତା
ଜୟ ପ୍ରଭୁ ଚକାଡୋଳା ତ୍ରଇଲୋକ୍ୟ ପିତା ।
ଜୟ ଜୟ ମହାପ୍ରଭୁ ଭକ୍ତ ଉଦ୍ଧାରଣ
ଜୟ ପ୍ରଭୁ ନାରାୟଣ ପାପାଦି ମୋଚନ ।
ଜୟ ପତିତପାବନ ପାପୀ ତ୍ରାଣକର୍ତ୍ତା
ଜୟ ପ୍ରଭୁ ଅନ୍ତର୍ଯ୍ୟାମୀ ତ୍ରଇଲୋକ୍ୟ ପିତା ।
ଜୟ ପ୍ରଭୁ ଲକ୍ଷୀପତି ଦୁଷ୍ଟ ନିସୂଦନ
ଅନନ୍ତ ଅଚ୍ୟୁତ ପ୍ରଭୁ ତ୍ରୈଲୋକ୍ୟକାରଣ ।
ଜଗତହିତ ନିମନ୍ତେ ନାନା ମୂର୍ତ୍ତି ଧର
କେତେ କେତେ କଷ୍ଟୁ ଦେବଗଣଙ୍କୁ ଉଦ୍ଧାର ।
ଜୟ ନୀଳାଦ୍ରି ବିହାରୀ ହେ ଜଗତନାଥ
ଶଙ୍ଖାସୁର ମାରି ବେଦ ଆଣିଲ ନିୟତ ।
କଚ୍ଛପ ରୂପରେ ପୃଥ୍ୱୀ ଜଳୁ ଉଦ୍ଧରିଲ
ଜଗତଜନମାନଙ୍କୁ ଉଦ୍ଧାର କରିଲ ।
ମହାବଳଶାଳୀ ଦୈତ୍ୟ ହିରଣ୍ୟ ଅସୁର
ତା ପ୍ରତାପେ କମ୍ପମାନ ହେଲା ସ୍ୱର୍ଗପୁର ।
ଯଜ୍ଞ ବରାହ ରୂପରେ ତାକୁ ସଂହାରିଲ
ଦନ୍ତଅଗ୍ରେ ପୃଥିବୀକି ଉଦ୍ଧାର କରିଲ ।
ବୈକୁଣ୍ଠରେ ଦ୍ୱାରୀ ଜୟ ବିଜୟ ଯେ ବେନି
ଶାପ ପାଇ ଜନ୍ମହେଲେ ସେ ଅସୁର ଯୋନି ।
ପ୍ରହଲାଦ ଛଳେ ସ୍ତମ୍ଭୁ ନୃସିଂହ ରୂପରେ
ବାହାରିଣ ହିରଣ୍ୟକୁ ବଧିଲ ସତ୍ୱରେ ।
ମହାପ୍ରତାପୀ ସେ ମୁର ଦାରୁଣ ଅସୁର
ବ୍ରହ୍ମାବରେ ସଂସାରକୁ କଲେ ନାରଖାର ।
ଦେବସ୍ତିରୀମାନଙ୍କୁ ସେ ବଳେ ହରିନେଲେ
ସକଳ ଦେବଙ୍କୁ ଆଣି ପାଦେ ଖଟାଇଲେ ।
ଦେବଙ୍କ ବିକଳ ପ୍ରଭୁ ସହି ନ ପାରିଲେ
ବଦରିକା ନଗ୍ରେ ଯାଇ ଜନମ ହୋଇଲେ ।
ଶେଷ ନୃସିଂହ ନାମରେ ହୋଇଲେ ବିଖ୍ୟାତ
ମୁର ଦାରୁଣକୁ ମାରି ରଖିଲେ ଦୈବତ ।
ଦେବାସୁର ଯେତେବେଳେ ସମୁଦ୍ର ମନ୍ଥିଲେ
ସୁଧା ନିମନ୍ତରେ ଦୁହେଁ ଅନ୍ୟୋଅନ୍ୟ ହେଲେ ।
ମୋହିନୀ ରୂପ ଧରିଣ ସୁଧାକୁ ବାଣ୍ଟିଲ
ଈଶ୍ୱର ପରା ଯୋଗୀଙ୍କି ମୋହିତ କରିଲ ।
ବୈଲୋଚନ ନାମେ ଏକ ପ୍ରତାପୀ ଦଇତ
ମାଳତୀ ରୂପରେ ତାର ପ୍ରାଣ କଲ ହତ ।
କପିଳ ରୂପରେ ସଂସାରରେ ଜ୍ଞାନ ଦେଲ
ବିଷ୍ଣୁ ନାମ ଜଗତରେ ପ୍ରଚାର କରିଲ ।
ପୁଣି ବାମନ ରୂପରେ ବଳି ନୃପତିକୁ
ଦାନ ମାଗି ଦେବ ହିତେ ଚାପିଲ ତଳକୁ ।
ପର୍ଶୁରାମ ରୂପେ ପ୍ରଭୁ ପର୍ଶୁ ଏକ ଧରି
ଏକବିଂଶବାର କ୍ଷତ୍ରିୟକୁଳକୁ ସଂହାରି ।
କ୍ଷତ୍ରିୟ ରୁଧିରେ ପିତୃ ତର୍ପଣ କରିଲ
ମହୀତଳେ ବୀରବର ବାନା ଉଡ଼ାଇଲ ।
ତ୍ରେତୟାରେ ରାମରୂପେ ଚତୁର୍ଦ୍ଧା ମୂରତି
ଦଶରଥ ଘରେ ଜାତ ହେଲ ଲକ୍ଷ୍ମୀପତି ।
ବାଳି ବୀରକୁ କାଣ୍ଡରେ ନିଧନ କରିଲ
ରାବଣକୁ ସଗୋତ୍ର ସହିତେ ବଧ କଲ ।
ବିଭୀଷଣ ତବ ପାଦେ ପଶିଲା ଶରଣ
ଅମର କରି ଲଙ୍କାରେ ଦେଲ ରାଜପଣ ।
ଅଯୋଧ୍ୟାରେ ଆସି ପ୍ରଭୁ ଅଭିଷେକ ହେଲ
ରାଜନୀତି ଧର୍ମନୀତି ସଂସାରେ କରିଲ ।
ପୁଣି ପାପୀ ଉଦ୍ଧାରିଣ ଗଲ ବୈକୁଣ୍ଠରେ
ଦ୍ୱାପର ଯୁଗେ ଜନମ ହୋଇଲ ପୃଥ୍ୱୀରେ ।
କଂସ ନାମେ ମହାବୀର ରାକ୍ଷସ ଦୁର୍ମତି
ଦେବତାମାନଙ୍କୁ ଖଟାଇଲା ପାଦେ ସେଟି ।
ତାହା ପଦଭାରା ପୃଥ୍ୱୀ ସହି ନ ପାରିଲା
ଦେବସହ ମିଳି ଆପଣଙ୍କୁ ଜଣାଇଲା ।
ଦେବଙ୍କ ବିକଳ ପୃଥ୍ୱୀଦେବୀ ଦୁଃଖ ଦେଖି
ଜନମ ହୋଇଲେ କ୍ଷୀରସିନ୍ଧୁକୁ ଉପେକ୍ଷି ।
ବସୁଦେବ ଘରେ କୃଷ୍ଣ ବଳରାମ ରୂପେ
ଜନ୍ମହୋଇ ବେନିଭାଇ ଚଳିଲେ ଗୋପେ ।
ଲୀଳା ବିନୋଦେ କଂସକୁ କରିଲ ସଂହାର
ଗୋପୀଙ୍କ ସହିତେ କ୍ରୀଡ଼ାକଲ ଦାମୋଦର ।
ଦ୍ୱାରକାରେ କୁଟୁମ୍ବ ସ୍ଥାପିଣ ନାରାୟଣ
ମହାଭାରତ କରିଲ ପାଣ୍ଡବ ଘେନିଣ ।
ପାଣ୍ଡବଙ୍କୁ ଘେନି କୁରୁକୁଳକୁ ନାଶିଲ
ଅନେକ ଦୁଷ୍ଟ ରାକ୍ଷସ ନିସୂଦନ କଲ ।
ଶେଷେ ଆପଣା କୁଟୁମ୍ବ ନାଶି ନାରାୟଣ
ମହାଯୋଗେ ଗଲ ପ୍ରଭୁ ବୈକୁଣ୍ଠ ଭୁବନ ।
କଳିଯୁଗେ ପାପୀଙ୍କର ଉଦ୍ଧାର ନିମିତ୍ତ
ନୀଳଶୈଳେ ବୌଦ୍ଧରୂପେ ବିଜେ ଲକ୍ଷ୍ମୀକାନ୍ତ ।
ତୁମ୍ଭର ମହିମା ପ୍ରଭୁ ବ୍ରହ୍ମା ନ ଜାଣଇ
ଏକା ତୋର ଭକ୍ତମାନେ ଜାଣନ୍ତି ଯେ ସେହି ।
ଯୋଗଋଷି ମୁନିମାନେ ଯେତେ ତପ କରି
ତୋ ମହିମା ଅନ୍ତ ନ ପାଇଲେ ଚକ୍ରଧାରୀ ।
ତୁହି ପ୍ରଭୁ ଦୀନବନ୍ଧୁ ପରମ ପୁରୁଷ
ଶାରଳା ଅଟଇ ପ୍ରଭୁ ତୋ ଦାସର ଦାସ ।

ହେ ଶାରଳାକାନ୍ତ ମୋତେ ଅନୁଗ୍ରହ କର
ଶ୍ରୀ ମହାଭାରତ ଲେଖେ ଭାଷା ପ୍ରବନ୍ଧର ।
ଜୟ ମାତା ଶାରଳା ଗୋ ବିଷ୍ଣୁ ପାଟରାଣୀ
ଅପର୍ଣ୍ଣା ମହାମାୟା ତୁ ଆଦି ସନାତନୀ ।
ସଂସାର ରକ୍ଷଣୀ ମାତା ଅନନ୍ତ ତୋ ଗୁଣ
ମୁହିଁ ଛାର କହିବାକୁ ହେବି କି ଭାଜନ ।
କେଉଁ ଜନ୍ମେ ତୋତେ ମୁହିଁ ସେବା କରିଥିଲି
ସଂସାରରେ ମାତା କରି ତୋତେ ମୁଁ ପାଇଲି ।
ତୋ ଦୟାରେ ଗଦାପର୍ବ କଲି ମୁଁ ଲେଖନ
କାଇଁଶିକା ପର୍ବ ପାଇଁ ବଳିଲା ମୋ ମନ ।
ତୋର ଦୟା ହେଲେ ମାତା ଏକେତେ ମାତର
ଅଗାଧ ସମୁଦ୍ର ଲଙ୍ଘେ କଦଳୀ ଭେଳାର ।
ପାଠଶାଠ ନ ଜାଣେ ମୁଁ ଜନ୍ମରୁ ମୂରୁଖ
ଏ ଲଜ୍ଜା ସମୁଦ୍ର ମାତା ଉଦ୍ଧାରିଣ ରଖ ।
ଯାହା ତୁ ପ୍ରସନ୍ନେ ମାତା କଣ୍ଠେ ବସି କହୁଁ
ତାହା ମୁଁ ଲେଖଇ ଦିବା ହୋଇଯାଏ ଯହୁଁ ।
ଆହେ ସାଧୁ ସୁଜ୍ଞଜନେ ନ ଧରିବ ଦୋଷ
ମାତା ଶାରଳା ଦେବୀଙ୍କ ଦାସର ମୁଁ ଦାସ ।
କାହାଙ୍କ ଆଜ୍ଞାରେ ମୁହିଁ କରଇ ଲେଖନ
ସକଳ ଦୋଷ ମୋର କ୍ଷମିବ ସାଧୁଜନ ।
ଜୟ ମାତା ବୀଣାପାଣି ଅଭୟ ହେଙ୍ଗୁଳା
ଶାରଳା ଦାସ କଣ୍ଠରେ ବସି କର ଖେଳା ।

—o—

## ଅଶ୍ୱତ୍ଥାମା କର୍ତ୍ତୃକ ଦ୍ରୌପଦୀର ପଞ୍ଚପୁତ୍ର ଶିରଚ୍ଛେଦ ଓ ଦୁର୍ଯ୍ୟୋଧନର ଦୁଃଖ ସୁଖେ ମୃତ୍ୟୁ

ଅଗସ୍ତିଙ୍କ ପାଦ ପଡ଼ି ବିଳଙ୍କ ରାଜନ
ନାନାପୁଷ୍ପେ ପାଦପଦ୍ମ କରିଣ ପୂଜନ ।
ଉଠି ହସ୍ତଯୋଡ଼ି ରାଜା କହେ ବିନୟରେ
ଭାରତ କହି ପବିତ୍ର କର ମୁନିବରେ ।
ଦୁର୍ଯ୍ୟୋଧନେ ନାଶ କରି ପାଣ୍ଡବେ ଯେ ଗଲେ
ତହିଁପରେ କେଉଁ କୃତ୍ୟ ହୋଇଲା ସେଠାରେ ।
ତାହା ମୋତେ ଫିଟାଇଣ କୁହ ମୁନିବର
ତବ ମୁଖୁଁ ଶୁଣି ମୋର ପାପ ହେବ ଦୂର ।
ରାଜାଙ୍କ ବିନୟ ଭକ୍ତି ଅଗସ୍ତି ଦେଖିଣ
ବୋଇଲେ ଶୁଣ ରାଜନ ହୋଇ ସାବଧାନ ।
ଦୁର୍ଯ୍ୟୋଧନ ନାଶି ପାଞ୍ଚଜଣ ଚାଲିଗଲେ
କୃଷ୍ଣସହ ହସ୍ତିନାରେ ଯାଇଣ ରହିଲେ ।

ଏଣେ ଭୀମର ସେବକ ବ୍ୟାଧ ବୁଲୁଥିଲା
ହୁଙ୍କା ଉହାଡ଼ରେ ତାକୁ ଦ୍ରୋଣୀ ଯେ ଦେଖିଲା ।
ଦେଖି ଅଶ୍ୱତ୍ଥାମା ପୁଚ୍ଛରେ ଭୀମ ନିଯୋଗୀ
ବନସ୍ତରେ ବୁଲୁଅଛୁ କିମ୍ପା ବେଗ ବେଗି ।
ପିଲାପରି ବ୍ୟାଧ ତହିଁ ଇତସ୍ତତଃ ହୋଇ
କିଛି ନ କହିଣ ପେଡ଼ା ଦେଲାକ ଦେଖାଇ ।
ପେଡ଼ା ଦେଖାଇଣ ସେ ବୋଇଲେ ଛନ୍ନଛନ୍ନ
ଆହେ ଦ୍ରୋଣୀ ମୋ ବଚନ ଶୁଣ ସାବଧାନ ।
ଭୀମବୀର କାଲି ମୋତେ ଡାକି କହିଥିଲେ
ପକ୍ଷୀ ଆଣିଲେ ମଣୋହି ହେବ ମୋର ଭଲେ ।
ବହୁ କଷ୍ଟେ ଚକୁଆ ଚକୋଇ ପକ୍ଷୀ ଦୁଇ
ଧରି କାଠପେଡ଼ି ମଧ୍ୟେ ରଖିଥିଲି ନେଇ ।
ଦୁର୍ଯ୍ୟୋଧନକୁ ମାରିବା ପାଇଁ ଭୀମବୀର
କାଲିକି ମଣୋହି ଦେବ ନୋହିଲା ତାଙ୍କର ।
ରାତ୍ରେ ଚକୁଆ ଚକୋଇ ଏଥେ ରହିଥିଲେ
ରାମ ନାମ ସୁମରନ୍ତେ ପେଡ଼ା ଫାଟେ ଭଲେ ।
ପେଡ଼ା ଫାଟନ୍ତେଣ ଉଡ଼ିଗଲେ ପକ୍ଷୀ ବେନି
ଆଜି ଦୁର୍ଯ୍ୟୋଧନ ନାଶ କରିଲେ ପାବନୀ ।
ତାଙ୍କ ମଣୋହିର ପାଇଁ ମୁହିଁ ଛନ୍ନ ଛନ୍ନ
ବନସ୍ତରେ ବୁଲୁଅଛି ଶୁଣ ବିବରଣ ।
ବେଣ୍ଟକାର ବାକ୍ୟ ଶୁଣି ଅଶ୍ୱତ୍ଥାମା ବୋଲେ
ରାତ୍ରେ ଏକତ୍ର ନୋହିବ ରାମ ଶାପ ଦେଲେ ।
ଯେ ଏକଠାବେ ରହିଲେ ମୂର୍ଦ୍ଧନା ଫାଟିବ
କି ଦୁଷ୍ଟ କିମ୍ପାଇଁ କଲୁ ତାଙ୍କୁ ଏକ ଠାବ ।
ସେ ପକ୍ଷୀମାନେ ରାମଙ୍କୁ ସୁମରଣା କଲେ
ପେଡ଼ା ଫାଟନ୍ତେ ଆକାଶମାର୍ଗେ ଉଡ଼ିଗଲେ ।
ଅଶ୍ୱତ୍ଥାମା ବୋଲେ ତୁ କି ଦେଖିଲୁ ଶବର
ଦୁର୍ଯ୍ୟୋଧନ କେଉଁଠାରେ ମରିଛି ଆବର ।
ଶବର ବୋଇଲେ ଶୁଣ ଦୁର୍ଯ୍ୟୋଧନ କଥା
ବ୍ୟାସସରେ ପଡ଼ିଅଛି ପୋତିକରି ମଥା ।
ଶୁଣି ଅଶ୍ୱତ୍ଥାମା ଗଲା ଅତି ଖରତରେ
ବ୍ୟାସସରେ ମିଳେ ମାନଗୋବିନ୍ଦ ପାଶରେ ।
ଦେଖିଲେ ମାନଗୋବିନ୍ଦ ତହିଁ ପଡ଼ିଅଛି
ଦୁର୍ଦ୍ଧକ୍ଷ ପାଖରେ ବସି ଜାନୁ ଆଉଁସୁଛି ।
ଜାନୁ ଭାଙ୍ଗିଯାଇ ଅଙ୍ଗେ କିଛି ନାହିଁ ବଳ
ବେନି ନୟନୁ ବହୁଛି ରୁଧିରର ଧାର ।
ଅଶ୍ୱତ୍ଥାମାକୁ ଦେଖିଣ ବୋଲେ ଦୁର୍ଯ୍ୟୋଧନ
ବାବୁ ତୋତେ ଆଶ୍ରା କରି ହୋଇଲି ପ୍ରସନ୍ନ ।
ଅଶ୍ୱତ୍ଥାମା ବୋଲେ ମୁଁ ପ୍ରଥମେ କହିଥିଲି
ସେନାପତି ପଦରେ ତୁ ମୋତେ ବର ବୋଲି ।

ପାଣ୍ଡବମାନଙ୍କୁ ମୁହିଁ ମାରିଣ ଥାଆନ୍ତି
ଶୁଣି ଉପହାସ ମୋତେ କଲୁ ତୁ ନୃପତି ।
ଏଡ଼େ ବଡ଼ପଣ ମୋର ହେଲା ଅକାରଣ
ମୁହିଁ ପୁଣି ତୋ ଅବସ୍ଥା ଦେଖିଲି ନୟନ ।
ଏତେବେଳେ ଯେବେ ଶାଢ଼ୀ ଦେବ ମୋର ମାଥେ
ପାଣ୍ଡବ ମାରି ନିଶ୍ଚିତ କରାଇବି ତୋତେ ।
ଦୁର୍ଯ୍ୟୋଧନ ବୋଲେ ଏବେ ସବୁ ରସିଲାଣି
ଏତେବେଳେ ଆଶ୍ରା ତୋତେ କଲି କାଳ ଜାଣି ।
ଏବେ ଯେବେ କରିବି ମୁଁ ତୋତେ ସେନାପତି
ରଥ ଗଜ ଅଶ୍ୱ କାହିଁ ପାଇବି ପଦାତି ।
ସୁବର୍ଣ୍ଣବଳା ବାହୁଟି କୁଣ୍ଡଳ କଙ୍କଣ
ନାହିଁ ମାଣିକ୍ୟ ମୁକୁଟ ଆବର ଭୂଷଣ ।
ଏତେବେଳେ ଏ ସକଳ ପାଇବି ମୁଁ କାହିଁ
ସବୁ ହରାଇ ପଡ଼ିଛି ଏ ଅବସ୍ଥା ହୋଇ ।
ଅଶ୍ୱତ୍ଥାମା ବୋଲେ ଆଗେ ଅନୁମତି ଦିଅ
କାର୍ଯ୍ୟ ସଫଳ ହୋଇଲେ ଭୂଷଣ କରାଅ ।
ତାହା ଶୁଣି ଦୁର୍ଯ୍ୟୋଧନ ହୋଇଲେ ହରଷ
ହସ୍ତରେଣ ଦୁବ ଧରି ବୋଲେ ବାବୁ ଆସ ।
ଶ୍ୱେତଦୁବ ନେଇ ବାନ୍ଧେ ଅଶ୍ୱତ୍ଥାମା ଶିରେ
ତହୁଁ ଅଶ୍ୱତ୍ଥାମା ଚଳେ ଧନୁ ଧରି କରେ ।
ଚତୁର୍ଦ୍ଦିଗେ ଘୋଟିଅଛି ଅନ୍ଧକାର ରାତ୍ରି
ନବମ ସିଂହଦ୍ୱାରରେ ପ୍ରବେଶ ତଡ଼ତି ।
ଦ୍ୱାରେ ମିଳି ଦେଖିଲେ ସେ ଭଇରବ ମୂର୍ତ୍ତି
ତାହା ସଙ୍ଗେ ବେନିଘଡ଼ି ଯୁଝେ ମହାରଥି ।
ଭଇରବ ମୂରତିକୁ ଜିଣି ନ ପାରିଲା
ପଛଆଡ଼େ କାନ୍ଥ ଭାଙ୍ଗି ଭିତରେ ପଶିଲା ।
ନିଦ୍ରା ନ ଥିଲା ରଥୀଙ୍କୁ ଅଷ୍ଟାଦଶ ଦିନ
ନିଶ୍ଚିନ୍ତରେ ଶୋଇଥିଲେ ହୋଇ ଅଚେତନ ।
ଦଇବେ ଭିତରେ ପଶି ଅଶ୍ୱତ୍ଥାମା ବୀର
ଦୁଇ ଅକ୍ଷୌହିଣୀ ସୈନ୍ୟ ମାରିଲେ ସେଠାର ।
ଅଚେତନେ ଶୋଇଥିଲେ ବୀର ଧୃଷ୍ଟଦ୍ୟୁମ୍ନ
ତାହାଙ୍କ ମୁଣ୍ଡକୁ କ୍ରୋଧେ କରିଲେ ଛେଦନ ।
ତହୁଁ ଯାଇ ପ୍ରବେଶିଲେ ଚନ୍ଦ୍ରଶାଳା ପୁରେ
ପାଞ୍ଚାଳୀସୁତେ ନିଦ୍ରିତ ଥିଲେ ସେହିଠାରେ ।
ଚନ୍ଦ୍ରକେଶରୀ ନାମରେ ଯୁଧିଷ୍ଠିଙ୍କ ସୁତ
ବୀରକେଶରୀ ବୋଲିଟି ଭୀମଠାରୁ ଜାତ ।
ନରକେଶରୀ ଅଟଇ ଅର୍ଜ୍ଜୁନ କୁମର
ମହୀକେଶରୀ ଯେ ପୁତ୍ର ଅଟେ ନକୁଳର ।
ତ୍ରୈଲୋକ୍ୟ କେଶରୀ ବୋଲି ସହଦେବ ସୁତ
ଏ ବିଧିରେ ପାଞ୍ଚାଳୀଙ୍କ ଅଟେ ପାଞ୍ଚପୁତ୍ର ।

ଅଶ୍ୱତ୍ଥାମା କ୍ରୋଧଭରେ ସେ ସ୍ଥାନରେ ଭେଟି
ଏକ ଏକ ପ୍ରହାରକେ ପାଞ୍ଚମୁଣ୍ଡ କାଟି ।
ହର୍ଷଭରେ ପାଞ୍ଚମୁଣ୍ଡ ଭାର କରି ଘେନି
ଅଶ୍ୱତ୍ଥାମା ଗଲେ ରାତ୍ର ଅଛି ଘଡ଼ି ତିନି ।
ଲେଉଟି ଆସଇ ଦ୍ରୋଣୀ ବହୁତ ହରଷେ
ତ୍ୱରିତେ ଯାଇ ମିଳିଲା ବ୍ୟାସସର ପାଶେ ।
ରାତ୍ର ଶେଷ ହୋଇଣ ପ୍ରଭାତ ଆସି ହେଲା
ଅଶ୍ୱତ୍ଥାମା ବ୍ୟାସସର ପାଶେ ପ୍ରବେଶିଲା ।
ଦୁର୍ଦ୍ଦକ୍ଷ ବୋଇଲା ସ୍ୱାମୀ ଶୁଣ ଦଣ୍ଡଧାରୀ
ଅଶ୍ୱତ୍ଥାମା ବାହୁଛନ୍ତି ମୁଣ୍ଡଭାର କରି ।
ନୟନ ଫେଡ଼ି ଚାହିଁଲା ସେ ମାନଗୋବିନ୍ଦ
ପାଣ୍ଡବଙ୍କ ମୁଣ୍ଡ ଗଣି ହୋଇଲା ଆନନ୍ଦ ।
ସାଧୁ ସାଧୁ ଅଶ୍ୱତ୍ଥାମା ବୋଲିଣ କହଇ
ସେନାପତି ନ କରି ମୁଁ ହୀନସ୍ତା ହେଲଇଁ ।
ସମସ୍ତ ହରାଇ କରି ଶିଖିଲି ଏ ବୁଦ୍ଧି
ପାଦେ ପେଲିଦେଲି ମୁହିଁ ଏଡ଼େକ ସମୃଦ୍ଧି ।
ବାଳୁତକାଳୁ ଯାହାକୁ କରିଥିଲି ଆଶା
ଚିହ୍ନି ନ ପାରିଲି ତାହାକୁ କରିଲି ନିରାଶା ।
ଏପରି ସନ୍ତାପ ବହୁ କଲେ ଧାର୍ତ୍ତରାଷ୍ଟ୍ରି
ଛାମୁରେ ଦ୍ରୋଣୀ ଥୋଇଲେ ମୁଣ୍ଡ ପାଞ୍ଚଗୋଟି ।
ମୁଣ୍ଡ ଦେଖି ମୂର୍ଚ୍ଛାତୀତ ହୋଇଲେ ରାଜନ
ହା ହା ଦଇବ ବୋଲିଣ କଲେକ ରୋଦନ ।
ଆଦ୍ୟରୁ ମୁଁ ଜାଣେ ଦ୍ରୋଣୀ ଅଟୁ ତୁହି ମନ୍ଦ
ତେଣୁ କରି ନ ଦେଲି ମୁଁ ସେନାପତି ପଦ ।
କି ଦୁର୍ଯ୍ୟୋଗେ ଶେଷକାଳେ ସେନାପତି କଲି
ବଂଶ ବୁଡ଼ାଇ ବାଳକହତ୍ୟା ଦୋଷୀ ହେଲି ।
ଅଭିମନ୍ୟୁ ଘଟୋତ୍କଚ ସବୁ ହେଲେ ନାଶ
ଲକ୍ଷ୍ମଣ କୁମାର ମରି କୁଳ ହେଲା ଶେଷ ।
ଯାଙ୍କୁ ଆଶା କରିଥିଲି ବଂଶ ରକ୍ଷା ପାଇଁ
ଏହାଙ୍କୁ ମାରିଣ କୁଳ ବୁଡ଼ାଇଲୁ ତୁହି ।
ଭୋ ଦଇବ ସନ୍ତାନ ଯେ କଳ୍ପତରୁ ବୋଲି
ଅଶ୍ୱତ୍ଥାମାର ପ୍ରସାଦେ ସବୁ ବୁଡ଼ାଇଲି ।
ତୋର ମୁଖ ନ ଚାହିଁବି ଆରେରେ ଚଣ୍ଡାଳ
ବଂଶ ନାଶ କଲୁ ମୋର ପାଶୁ ବେଗେ ଚଳ ।
ଆହା ବାପ ତୁମ୍ଭ ମୁଣ୍ଡ ଦେଖି ମୋର ପ୍ରାଣ
ଦହନ ନ ହୋଇ କିମ୍ପା ରହିଛି ପିଣ୍ଡେଣ ।
ଆରେ ଦୁର୍ଦ୍ଦକ୍ଷ ତୁ ମୋତେ ସମ୍ଭାଳିଣ ଧରି
ପାଞ୍ଚଗୋଟି ମୁଣ୍ଡ ଦିଅ କୋଳରେ ମୋହରି ।
ଦୁର୍ଯ୍ୟୋଧନର ବଚନ ଦୁର୍ଦ୍ଦକ୍ଷ ଶୁଣିଣ
ତାଙ୍କ କୋଳେ ପାଞ୍ଚମୁଣ୍ଡ ଦେଲା ତତକ୍ଷଣ ।

ପାଞ୍ଚଗୋଟି ମୁଣ୍ଡ କୋଳେ ଧରି ଧାର୍ତ୍ତରାଷ୍ଟ୍ରି
ପ୍ରାଣ ବିସର୍ଜନ କଲା ମୂର୍ଦ୍ଧାଗଲା ଫାଟି ।
ଲଜ୍ଜା ପାଇ ବନସ୍ତକୁ ଗଲା ଅଶ୍ୱତ୍ଥାମା
ଦେଖିଲା ତୁଙ୍ଗଭଦ୍ରାରେ କୃପ ମହାତମା ।
ଦ୍ରୋଣୀ ତାହାକୁ କହିଲେ ସମସ୍ତ ଚରିତ
ପାଣ୍ଡବ ବୋଲି ମାଇଲି ପାଞ୍ଚାଳୀର ସୁତ ।
ଜୟ ଜୟ ଜଗନ୍ନାଥ ହୋ କଲା ବନ୍ଦନ
ନରନାରୀ ଦେଖି ପାପୁ ହୁଅନ୍ତି ମୋଚନ ।
ଚଉଦ ବ୍ରହ୍ମାଣ୍ଡନାଥ ତୁ ମଙ୍ଗଳମୟ
ସ୍ଥାବର କୀଟ ପତଙ୍ଗ ତୋହର ଆଶ୍ରୟ ।
ତୁ ପ୍ରଭୁ ସର୍ବ ଜୀବନେ କରିଛୁ ବିଶ୍ରାମ
ଜୟ ତୁ ମହାମହିମା ପୁରୁଷ ପୁରାଣ ।
ଶାରଳା ଦାସ ତୋହର ଚରଣେ ଶରଣ
ପାଦପଦ୍ମେ ଠାବ ଦିଅ ଆହେ ନାରାୟଣ ।
କାଇଁଶିକା ପର୍ବ ଏହି ଶ୍ରୀ ମହାଭାରତ
ତୁମ୍ଭ ପ୍ରସନ୍ନେ ଶାରଳା କରୁଛି ବ୍ୟକତ ।

—o—

## ଦ୍ରୌପଦୀ ପାଞ୍ଚପୁତ୍ରଙ୍କ ପୂର୍ବଜନ୍ମ ବିଷୟ, ପର୍ଶୁରାମ ଓ ବିଶ୍ୱାମିତ୍ରଙ୍କ ଜନ୍ମ, ବଶିଷ୍ଠ ବିଶ୍ୱାମିତ୍ରଙ୍କ ଦାନ, କାମଧେନୁଙ୍କର ଯୁଦ୍ଧ, ଅଷ୍ଟବସୁଙ୍କ ଶାପ ଓ ବିଶ୍ୱାମିତ୍ରଙ୍କ ତପସ୍ୟା

ଏଥୁଅନ୍ତେ ବୈବସ୍ୱତ ମନୁ ଦଣ୍ଡଧର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ବୋଇଲେ ହେ ମହାରଷି ମୋତେ ଦୟା କରି
ଶ୍ରୀ ମହାଭାରତ ମୋତେ କହନ୍ତୁ ବିସ୍ତାରି ।
ସାତବରଷର ମାତ୍ର ପାଞ୍ଚାଳୀ କୁମର
ଅକାରଣେ କିମ୍ପା ମୃତ୍ୟୁ ହୋଇଲା ତାଙ୍କର ।
ଶାସ୍ତ୍ରରେ ହୋଇଛି ଲେଖା ଶତ୍ରୁର ନିଧନ
ଅଦୋଷୀ ଲୋକର ନାଶ କିମ୍ପା ହେଲା ପୁଣ ।
ଏସବୁ କାରଣ ମୋତେ କହ ମୁନିବର
ତବ ମୁଖୁ ଶୁଣି ମୁହିଁ ହୋଇବି ନିସ୍ତାର ।
ରାଜାଙ୍କ ବଚନ ଶୁଣି ଅଗସ୍ତି ବୋଲନ୍ତି
ମନ ସ୍ଥିର କରି ତୁହି ଶୁଣ ହେ ନୃପତି ।
ପାଞ୍ଚାଳୀ କୁମରଙ୍କର ମୃତ୍ୟୁର କାହାଣୀ
ବିସ୍ତାରି କହୁଛି ମନେ ରଖ ନୃପମଣି ।
ବିଷ୍ଣୁ ପ୍ରସାଦ ବୋଲିଣ ଏକ ସତ୍ୟଯୁଗେ
ଗୋରେଖ ଇନ୍ଦ୍ରଦେବତା ଥିଲା ମଧ୍ୟସ୍ୱର୍ଗେ ।
ସେ ସତ୍ୟଯୁଗରେ ବିଷ୍ଣୁଭଦ୍ର ରାଜା ଥିଲା
ମର୍ତ୍ତ୍ୟମଣ୍ଡଳରେ ବହୁ ନାମ ସେ ଅର୍ଜିଲା ।
ବିଷ୍ଣୁଭଦ୍ର ରାଜା ଅଟେ ମହା ଜ୍ଞାନବନ୍ତ
ବିଶ୍ୱାବସୁ ନାମେ ତାର ହୋଇଲାକ ସୁତ ।
ରୁକ୍ମବସୁ ବିଶ୍ୱାବସୁ ନନ୍ଦନ ଅଟଇ
ରୁକ୍ମ ବସୁର ନନ୍ଦନ ଅନଙ୍ଗ ବୋଲାଇ ।
ଅନଙ୍ଗ ସୁତ ତୋରଣ ଆଉ ମନସିଜ
ତାହାର ନନ୍ଦନ ନାମ ଶୁଣ ମହାରାଜ ।
ତୋରଣ ନନ୍ଦନ ନାମ ଆରାଅକ୍ଷଶିବ
ଏହାର ନନ୍ଦନ ନାମ ଅରୁଣାମାଧବ ।
ମାଧବ ନନ୍ଦନ ନାମ ଅଟେ ଅରବିନ୍ଦ
ଏହାର ନନ୍ଦନ ଅଟେ ରାଜା ମକରନ୍ଦ ।
ନିର୍ମଳତନୁ ବୋଲିଟି ତାହାର ତନୁଜ
ତାହାର ନନ୍ଦନ ନାମ ଅଟଇ ସରୋଜ ।
ଏ ମହୀପତି ନନ୍ଦନ ମକର ନୃପତି
ତାହାଙ୍କ ତନୟ ନାମଗାଧି ନାମେ ଖ୍ୟାତି ।
ତିନିଲକ୍ଷ ବର୍ଷ ଭୋଗ କଲେ ଗାଧିରାଜା
ତାହାଙ୍କର ଥିଲା ଜାଣ ନଅଗୋଟି ଭାର୍ଯ୍ୟା ।
ଉମାବସୁ କନ୍ୟା ରେଣୁକା ଯେ ସଉନିକା
ତହୁଁ ଗାଧିରାଜା ବିଭା ହୋଇଲେ ସୈନିକା ।
ରେଣୁକାକୁ ପରିଣୟ କଲେ ଯମଦଗ୍ନି
ପୁତ୍ରଜାତ ନ କରିଲେ ସେହି ଦୁଇ ଭଗ୍ନୀ ।
ଗାଧିରାଜା ବୋଇଲେକ ସଉନିକା ରାଇ
ଯମଦଗ୍ନି ପୁରକୁ ତୁ ଯାଅ ବେଗହୋଇ ।
ସନ୍ତାନ ନିମନ୍ତେ ତୁହି ଶୀଘ୍ର ଚଳିଯାଅ
ବେନି ଭଗ୍ନୀ ଯାଇ ଯମଦଗ୍ନିକୁ ଜଣାଅ ।
ଗାଧି ନୃପତି ବଚନେ ସଉନିକା ଗଲା
ମଳୟ ପର୍ବତେ ଯମଦଗ୍ନିପୁରେ ହେଲା ।
ଅନେକ ଅର୍ଚ୍ଚନା ତାକୁ ଦଣ୍ଡବତ କଲେ
ଶାଶୁ ସାମନାରେ ତାକୁ ସମ୍ମାନ କରିଲେ ।
ସୌନିକା କହିଲେ ରହି ରେଣୁକାର ପାଶ
ସନ୍ତାନ ବିହୁନେ ଆମ୍ଭେ ହୋଇଲୁ ନିରାଶ ।
ଜୁଆଇଁ ଯମଦଗ୍ନିଙ୍କୁ କୁହ ତୁମ୍ଭେ ଯାଇ
ମୁହିଁ ଧନ ଦେବି ଯାଗ ଯେତେକ ଲାଗଇ ।
ରେଣୁକା ଯାଇ କହିଲେ ଯମଦଗ୍ନି ଆଗ
ସନ୍ତାନ ଅର୍ଥେ ଅଇଲେ ଶୁଣ ମହାଭାଗ ।
ଯମଯଗ୍ନି ବୋଇଲେ ମୁଁ ଯାଗ କରିବଇଁ
ସେ ବୋଇଲେ ଦେବୁ ଧନ ଯେତେକ ଲାଗଇ ।
ସଉନିକା ବୋଲେ ପାଞ୍ଚଗୋଟି ଯେ ରତନ
ସନ୍ତାନ ନିମନ୍ତେ ଯାଗ କଲେ ତପୋଧନ ।

ଶୁଭକ୍ଷଣେ ସେ ଭୂମିରେ ତିଳ ବୁଣାଇଲେ
ଫଳ ଝଡ଼ିଯାନ୍ତେ ତହିଁ ଯଜ୍ଞଶାଳ କଲେ ।
ଋଷିକୁଲ୍ୟା ବୋଲି କରି ତହିଁ ନଦୀଗୋଟି
ସରସ୍ୱତୀ ଧାରରୁ ସେ ଉତ୍ତରକୁ ଫୁଟି ।
ସମ୍ପୁଟ ବଟର ତଳେ ଆରମ୍ଭିଲେ ଯାଗ
ମହାମନ୍ତ୍ର ଉଚ୍ଚାରିଣ ଦେଲେ ହବିର୍ଭାଗ ।
ଆପଣେ ବସିଲେ ମନ୍ତ୍ରେ ସ୍ଥାପିଲେ ମହାତ୍ମା
ପ୍ରାଣପାନ ବ୍ୟାନେଦାନ ସମାନ ପଞ୍ଚାତ୍ମା ।
ପଞ୍ଚଦଶ ବର୍ଷ ମୁନି ବସିଲେକ ଯଜ୍ଞେ
ବାମାବର୍ତ୍ତ ଦେଖି ମୁନି ଦ୍ୟନ୍ତେ ହବିର୍ଭାଗେ ।
ଏହିପରି ପଞ୍ଚଦଶ ବର୍ଷ ଯଜ୍ଞ କଲେ
ଆହାର ମୈଥୁନ ନିଦ୍ରା ସମସ୍ତ ଛାଡ଼ିଲେ ।
ପବନ ଜଳରେ ଲକ୍ଷ୍ୟ ରଖିଣ ଜୀବନ
ଏପରି ଯାଗ କରିଲେ ସେହି ତପୋଧନ ।
ମାନ୍ଧତା ପନ୍ଦର ଲକ୍ଷ ପାଞ୍ଚସସ୍ର ଅଙ୍ଗ
ଇନ୍ଦ୍ର ପ୍ରଭୁ ବୋଲି ଜାଣ ସମ୍ବସରେ ଏକ ।
ସେ ବର୍ଷ ମକର ମାସ କୃଷ୍ଣ ପଞ୍ଚମୀରେ
ଉତ୍ତରାଫାଲଗୁନୀ ଋଷି ବୃହସ୍ପତି ବାରେ ।
ସେହିଦିନ ସମାପନ ପାଞ୍ଚଦଣ୍ଡ ଗତି
ସେହି ଦିବସରେ ଯଜ୍ଞେ ଦେଲେକ ଆହୁତି ।
ଦକ୍ଷିଣାବର୍ତ୍ତକ ଯହୁଁ ଦେଖିଲେ ବହନି
ହବିର୍ଭାଗ ଦେଲେ ମହାଋଷି ଯମଦଗ୍ନି ।
ଜପ ମନ୍ତ୍ର ଏକ କରି ଦିଅନ୍ତି ଆହୁତି
ପ୍ରଚଣ୍ଡେ ଶିଖା ଉଠିଲା ବିକଶିଲା ଜ୍ୟୋତି ।
ମନ୍ତ୍ର ଜପ କରି ଅନ୍ୟ ଭାବେ ଦ୍ୟନ୍ତି ଭାଗେ
ଏକ ଏକ ତପୀ ଘୃତ ଦେଉଥାନ୍ତି ଯାଗେ ।
ବେନି ମନ୍ତ୍ରେ ମହାମୁନି ଚରୁ ଫୁଟାଇଲେ
ବ୍ରହ୍ମ କ୍ଷତ୍ରି ଭିନ୍ନ ଭିନ୍ନ କରିଣ ରଖିଲେ ।
ଯମଦଗ୍ନି ବୋଇଲେ ଯେ ଡାକି ରେଣୁକାକୁ
ଅଗ୍ନିକୋଣ ଚରୁ ଦେବ ଗାଧି ଭାରିଯାକୁ ।
ଐଶାନ୍ୟରେ ସ୍ଥାପିଅଛି ଯେଉଁ ଚରୁଅନ୍ନ
ତୁମ୍ଭେ ଶୌଚହୋଇ ତାହା କରିବ ଭକ୍ଷଣ ।
ଆଜ୍ଞା ଦେଲେ ଯମଦଗ୍ନି ଆହାନିକେ ଗଲେ
ବେନିଭଗ୍ନୀ ଶୁଣି ତାହା ଆନନ୍ଦିତ ହେଲେ ।
ସଉନିକା ମହାସତୀ ଗାଧିରାଜା ରାଣୀ
ସ୍ନାନ ସାରିଣ ଆଗରେ ଅଇଲେ ସେ ପୁଣି ।
ଯେଉଁ ଚରୁ ରହିଥିଲା ଐଶାନ୍ୟ ଭାଗରେ
ତାହାକୁ ଭକ୍ଷଣ କଲା ସୌନିକା ସତ୍ୱରେ ।
ଯମଦଗ୍ନିଙ୍କର ଜାୟା ରେଣୁକା ସୁନ୍ଦରୀ
ପଛରେ ଅଇଲେ ସତୀ ନିତ୍ୟକର୍ମ ସାରି ।

ଆସି ଦେଖିଲେ ଐଶାନ୍ୟକୋଣ ଚରୁଅନ୍ନ
ଆଗରୁ ସୌନିକା କରିଅଛନ୍ତି ଭକ୍ଷଣ ।
ରେଣୁକା ବୋଲେ ଐଶାନ୍ୟଦିଗ ଚରୁ ଅପା
ବଦଳାଇ କରି ତୁମ୍ଭେ ଗ୍ରାସ କଲ କିମ୍ପା ।
ବାଣ୍ଟି ଦେଇଥିଲେ ଋଷି ବିପରୀତ କଲ
ଋଷିଙ୍କର କଥା ତିଳେ ଭାବି ନ ପାରିଲ ।
ଏହା କହି ଯେଉଁ ଚରୁ ଅଗ୍ନିକୋଣେ ଥିଲା
ତାହାକୁ ରେଣୁକା ଯାଇ ଭକ୍ତିରେ ଭକ୍ଷିଲା ।
ସୌନିକା କପଟ ଭାବି ଏହିପରି କଲେ
ବ୍ରହ୍ମ କ୍ଷତ୍ରୀ ଚରୁ ଦୁହେଁ ପାଲଟ ହୋଇଲେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
କ୍ଷତ୍ରି ଅର୍ଥେ ଯେଉଁ ଚରୁ ଦେଇଥିଲେ ଯତି ।
ତାକୁ ନେଇ ଗ୍ରାସକଲେ ଶ୍ରୀମତୀ ରେଣୁକା
ଋଷି ଭାଗ ଚରୁ ଗ୍ରାସ କଲେ ସଉନିକା ।
ଗାଧିରାଜ ପୁତ୍ର ହେଲେ ବିଶ୍ୱାମିତ୍ର ନାନ
ଯମଦଗ୍ନି ଔରସରେ ହେଲେ ପର୍ଶୁରାମ ।
ଋଷିଘରେ ଉତପତ୍ତି ହୋଇଲେ ଯେ କ୍ଷତ୍ରୀ
କ୍ଷତ୍ରିଘରେ ଜନ୍ମହେଲେ ବିଶ୍ୱାମିତ୍ର ଯତି ।
ଗାଧିରାଜା ତନୟକୁ ଯୁଦ୍ଧ ଶିଖାଇଲେ
ବିଶ୍ୱାମିତ୍ର ବନେ ପଶି ଦାନବ ମାରିଲେ ।
ନବସସ୍ର ରାଜା ଥିଲେ ଯେତେକ ଦୁରନ୍ତ
ବାହୁବଳେ ସାଧ୍ୟ କଲେ ତାହା ବିଶ୍ୱାମିତ୍ର ।
ଚୌରାଅଶୀ କ୍ଷୌଣୀବଳ ସଙ୍ଗରେ ଘେନିଣ
ଅନୁବ୍ରତେ ଦିଗବିଜେ କରନ୍ତି ସେ ପୁଣ ।
ସର୍ବସାଧି ଜଗଜ୍ଜିତା ନାମ ଭିଆଇଲେ
ଯାଗଯଜ୍ଞ କରି ସର୍ବଦେବେ ତୋଷ କଲେ ।
ଏ ରୂପେ ସୁଖେ ପାଳିଲେ ତାଙ୍କୁ ସବୁ ପ୍ରଜା
ସର୍ବେ ସ୍ୱର୍ଣ୍ଣ କଳସରେ ନିତି କଲେ ପୂଜା ।
ଆହେ ଚଇତନ ଶୁଣ କଟକର ସ୍ଥଳୀ
ପାଞ୍ଚସସ୍ର ଯୋଜନ ଯେ ପାଞ୍ଚଶ ଆଙ୍ଗୁଳି ।
ମକର ଶୁକଳପକ୍ଷ ନବମୀର ଦିନ
ଗୁରୁବାରେ ଯେ ରୋହିଣୀ ରୁକ୍ଷ ବିଦ୍ୟମାନ ।
ତୁଙ୍ଗଭଦ୍ରା ନଦୀ ଦେଇ ପ୍ରାଚୀକୂଳ ମୋଡ଼ି
ହିମଗିରିକି ଯୋଜନ ସାତ ମାତ୍ର ଛାଡ଼ି ।
ବଳିଦାନବ ମାଇଲେ ଯାଇଁ ରଣ କରି
ଅନ୍ୟ ବନେ ବନଫଳ ଯାଇ ଭକ୍ଷ କରି ।
ମାଘମାସ ଶୁକ୍ଳପକ୍ଷ ଦ୍ୱାଦଶୀର ଦିନ
ଆପଣା ରାଜ୍ୟେ ଲେଉଟି ଆସନ୍ତି ବହନ ।
ପାତାଳ ଗଙ୍ଗାକୂଳରେ ନିତ୍ୟକର୍ମ ସାରି
ପ୍ରବେଶ ହେଲେ ଗଣ୍ଡୁକୀ ନଦୀ ହୋଇ ପାରି ।

ସେ ନଦୀତୀରେ ବଶିଷ୍ଠ ଋଷିଙ୍କ ଆଶ୍ରମ
ବିଶ୍ୱାମିତ୍ର ସେହିଠାରେ କରିଲେ ବିଶ୍ରାମ ।
ବଶିଷ୍ଠ ଋଷି ଦେଖିଣ ତାହାଙ୍କ ବଦନ
ବହୁତ ହରଷଯୁକ୍ତ ହେଲା ତାଙ୍କ ମନ ।
ବିଶ୍ୱାମିତ୍ର ବଶିଷ୍ଠଙ୍କ ଚରଣେ ପ୍ରଣମି
ବୋଇଲେ ପଞ୍ଚଦିବସ ଅଇଲି ମୁଁ ଭ୍ରମି ।
ନବମୀ ଦଶମୀ ଏକାଦଶୀ ଦୁଆଦଶୀ
ଚାରିଦିନ ହେଲା ମୋର ସୈନ୍ୟ ଉପବାସୀ ।
ବଶିଷ୍ଠ ବୋଇଲେ ଏବେ ସର୍ବେ ସ୍ନାନ କର
କ୍ଷଣେ ବସ ଅନ୍ନ ଭୁଞ୍ଜିବା ହେ ଶତବୀର ।
ବିଶ୍ୱାମିତ୍ର ବୋଲେ ଥାଟଯାକ ଉପବାସ
କେମନ୍ତ ଅନ୍ନ ଭୁଞ୍ଜିଣ ଆମ୍ଭେ ହେବା ତୋଷ ।
ବଶିଷ୍ଠ ବୋଇଲେ ତୁମ୍ଭେ ସମସ୍ତେ ହେଁ ବସ
ଏକ ପାତ୍ର ଚରୁଅନ୍ନେ ସର୍ବେ ହେବେ ତୋଷ ।
ସମସ୍ତେ ହେଁ ଏକ ଏକ ପାତ୍ର ପାତି ବସ
ଦେଉଛୁ ଅନ୍ନ ପେଟ ଭରିଣ କର ଗ୍ରାସ ।
ତହୁଁ ସେ ସୈନ୍ୟ ବସିଲେ ତିନିଯୁଣ ମାଡ଼ି
ବନସ୍ତ ଭିତରେ ଏକ ଏକ ପତ୍ର ବାଢ଼ି ।
ବଶିଷ୍ଠ ମହର୍ଷିଙ୍କର ଅଶୀସସ୍ର ଛାତ୍ର
ସକଳେ ପର୍ଷନ୍ତି ଅନ୍ନ ହୋଇଣ ପବିତ୍ର ।
ବଶିଷ୍ଠଙ୍କର ଭାରିଯା ଅଟେ ଅରୁନ୍ଧତୀ
ପତିଭକ୍ତା ସ୍ତିରୀ କୋଟିକରେ ମହାସତୀ ।
କୁଡୁଆ ଗୋଟିକେ ଏକା ଭାତ ରାନ୍ଧିଛନ୍ତି
ତହୁଁ ଢାଳି ଅନ୍ନ ନିଜ ସ୍ୱାମୀ କରେ ଦ୍ୟନ୍ତି ।
ବଶିଷ୍ଠ ଆଶ୍ରମୁ ଆଣିଦ୍ୟନ୍ତି ଶିଷ୍ୟ କରେ
ଛାତ୍ରମାନେ ପରଷନ୍ତି ଅତି ଖରତରେ ।
ବଶିଷ୍ଠଙ୍କ ପୁତ୍ରମାନେ ସୁସଞ୍ଚ ବ୍ରାହ୍ମଣ
କାମଧେନୁ ଗାଈଗୋଟି କରିଲେ ଦୋହନ ।
ଗୋଟିଏ ଧେନୁର ଦୁଗ୍ଧ କୋଡୁଆଏ ଭାତ
ରାଜାଙ୍କର ସୈନ୍ୟ ଖାଇ ହୋଇଲେ ତୃପତ ।
ସବିନୟ ହୋଇକରି ବୋଲନ୍ତି ବଶିଷ୍ଠ
ତୃପତ ହୋଇ ଭୁଞ୍ଜନ୍ତୁ ପୁରାଇଣ ପେଟ ।
ଅଦ୍ୟ ଯାଗଅନ୍ନ ଭୁଞ୍ଜି ହୋଇବ ତୃପତି
ନ ଅଣ୍ଟିବ ବୋଲି ମନେ ନ କରିବ ଭୀତି ।
ଏକରୁ ଦ୍ୱିତୀୟଥର ନାହିଁ ଯେ ଦେବାକୁ
ଯାହା ଆମ୍ଭଙ୍କୁ ମିଳିଲା ଅର୍ପିଲୁ ତୁମ୍ଭଙ୍କୁ ।
ଯଜ୍ଞଅନ୍ନ ବୋଲି କରି ବିରକ୍ତ ନ ହେବ
ଘରେ ଯାହା ମିଳେ ତାହା କାହୁଁ ତ ମିଳିବ ।
ପୁଣି ବୋଇଲେ ବିନୟେ ତୁମ୍ଭେ ରାଜା ପୁଅ
ତୁମ୍ଭଙ୍କୁ ଗରିବ ଋଷି କିସ ଦେବ କୁହ ।

ସର୍ବେ ସାତଘଡ଼ିଠାରୁ ଭୋଜନେ ବସିଲେ
କ୍ଷୁଧା ଶାନ୍ତି କରୁ କରୁ ରବି ଅସ୍ତ ଗଲେ ।
ଯେ ଯାହାର ଯେତେ ଇଚ୍ଛା ଭୋଜନ କରିଲେ
କୁଡୁଆଏ ଭାତ ଦୁଧ ସାରି ନ ପାରିଲେ ।
ଭକ୍ଷଣ କରିଣ ଉଠି ନ ପାରନ୍ତି ବଳେ
ଆଚମନ କଲେ ଯାଇ ଗଣ୍ଡୁକୀର ଜଳେ ।
ଯେ ଯାହାର ଉଚ୍ଛିଷ୍ଟକୁ ତହିଁ ଦେଲେ ଫିଙ୍ଗି
ଆଚମନ ସାରି ହେଲେ କଷାଫଳ ଲାଗି ।
ବିଶ୍ୱାମିତ୍ର ବଶିଷ୍ଠଙ୍କୁ ବୋଲନ୍ତି ବଚନ
ବଡ଼ ଆଚମ୍ବିତ ତଥା ଦେଖିଲି ଏ ସ୍ଥାନ ।
କୁଡୁଆଏ ଅନ୍ନ ଆଉ ଏକ ଗାଈ ଦୁଧ
ସାରି ନ ପାରି ଯେ ସୈନ୍ୟମାନେ ହେଲେ ବୋଧ ।
ବଶିଷ୍ଠ ବୋଇଲେ ଏବେ ତୃପ୍ତହେଲେ ରାୟ
ଗହଳ ଲାଗିବ ବନେ ଗୃହେ ଚଳିଯାଅ ।
ଗାଧିସୁତ ବୋଲେ ଯେବେ ଦୟା ଅଛି ମୋତେ
ତୁମ୍ଭଙ୍କୁ ମାଗିବି ମୁହିଁ ଏକଇ ପଦାର୍ଥେ ।
ବଶିଷ୍ଠ ବୋଇଲେ ତୋତେ କିସ ଅପୁରୁବ
ମାଗ ଯେବେ ଦେଇ ମୁଁ ପାରିବି ତୁମ୍ଭେ ନେବ ।
ବିଶ୍ୱାମିତ୍ର ବୋଲେ ମୋତେ ନାହିଁ ନ କରିବ
ତୁମ୍ଭର ଗାଈ ଗୋଟିକି ଆମ୍ଭଙ୍କୁ ଯେ ଦେବ
ବଶିଷ୍ଠ ବୋଇଲେ ତୁମ୍ଭେ ଏଡ଼େ ରାଜା ହୋଇ
ଆମ୍ଭଙ୍କୁ ଗାଈ ମାଗିବା ଉଚିତ ନୁହଇ ।
ଏଡ଼େକ ଧାର୍ମିକ ହୋଇ ହେଲ ଅବିଚାରୀ
ରାଜା ହୋଇ ହରିବ କି ବ୍ରାହ୍ମଣର ଶିରୀ ।
ଗାଧିସୁତ ବୋଲେ ଦେବି ଏକଲକ୍ଷ ଗାଈ
ଏକ ତୁମ୍ଭଠାରୁ ସିନା ନେବି ବଦଳାଇ ।
ବଶିଷ୍ଠ ବୋଇଲେ ଆମ୍ଭେ ଲକ୍ଷେ କି କରିବୁ
କାହିଁ ଖାଇବାକୁ ଦେବୁ ଗୃହ କାହିଁ ବାବୁ ।
ଗାବ ଗୋଟିଏ ଘେନିଣ ଆଶ୍ରମରେ ଥାଉଁ
ଫଳେ ପ୍ରସବିଲେ ଏକ ମନୁ ଦୁଧ ଦୁହୁଁ ।
କଷ୍ଟେ ହୋଇଅଛି ଆମ୍ଭ କାମଧେନୁ ଗୋଟି
ଚିରେକ ଦୁହିଁଣ ତିନିଭୁବନକୁ ବାଣ୍ଟି ।
ଆହେ ଗାଧିସୁତ ତୁମ୍ଭେ କଟାଳ ନ କର
ବ୍ରାହ୍ମଣ ଗାବ ହରିଲେ ଦୋଷଟି ଅପାର ।
ଲଜ୍ଜାଭରେ ରାଜା ଆଉ ମାଗି ନ ପାରିଲେ
ସୈନ୍ୟମାନେ ପରସ୍ପରେ କଥାବାର୍ତ୍ତା ହେଲେ ।
ଯୋଦ୍ଧା ବୋଇଲେ ବଶିଷ୍ଠ କଲେ ମନ୍ଦପଣ
ଏତେ ବଡ଼ ରାଜା ବାକ୍ୟ କରନ୍ତି ଲଙ୍ଘନ ।
ଦୁର୍ଜ୍ଜନ କହିଲେ ଆମ୍ଭେ ବନେ ଥିବା କିଛି
ଚରିଅଇଲେ ଅଡ଼ାଇ ନେବା ସେ ଗାଈକି ।

ଶୁଣ ସାଧୁଜନେ ରାଜା ଏଡ଼େ ଅବିଚାରୀ
ଉପବାସେ ଋଷି ଦେଲେ ଅନ୍ନ ପେଟଭରି ।
ତେବେ ଋଷି ଗାବଗୋଟି ନେବାକୁ ଇଚ୍ଛିଲେ
ଲଜ୍ଜା ଭୟ କୃତଜ୍ଞତା ସବୁ ଉପେକ୍ଷିଲେ ।
ପଣ୍ଡିତଜନ ବିଚାର ପୁରାଣର ବାଣୀ
ମୁନିବଙ୍କୁ ଦେଖାଇଲେ ଭଲ ଦ୍ରବ୍ୟ ଆଣି ।
ଦେଖିଣ ସେ ଶ୍ରଦ୍ଧାଲୋଭ କରିଣ ମାଗନ୍ତି
ନ ଦେଲେ ମନରେ ମହାକ୍ରୋଧ ସେ କରନ୍ତି ।
ବିଶ୍ୱାମିତ୍ର ଯହୁଁ ଗଲେ ଅତି କ୍ରୋଧଭରେ
ବଶିଷ୍ଠ ଛାଡ଼ିଲେ ଧେନୁ ବନସ୍ତ ଭିତରେ ।
ବୋଇଲେ ଗୋ ମହାମତି ଥିବ ସାବଧାନେ
ବଳାତ୍କାରେ ନ ଯିବଟି ରଖିଥାଅ ମନେ ।
ବନେ ଗାଈ ଦେଖି ବିଶ୍ୱାମିତ୍ର ସୈନ୍ୟଗଣେ
ଲଉଡ଼ି ନେଇ ଚଳିଲେ ଆନନ୍ଦିତ ମନେ ।
ବନସ୍ତ ଭିତରେ ଯାଇ ଗାଈ ଅଡ଼ାଇଲେ
ଏହା ଦେଖି କାମଧେନୁ ଅତିକ୍ରୂର ହେଲେ ।
ମହାକ୍ରୋଧେ ଚାହିଁଲେ ଯେ ଅନେକ ନୟନେ
ସହସ୍ରେକ ଯୋଦ୍ଧା ଜଳି ମଲେ ତତକ୍ଷଣେ ।
ପୁଣି ହିଁ ଅନେକ ଯୋଦ୍ଧା ଆସି ବେଢ଼ିଗଲେ
ଶୃଙ୍ଗଘାତେ ସେମାନଙ୍କୁ ଯମାଳୟେ ଦେଲେ ।
ଅନେକ ସମାନ ଅଟେ କାମଧେନୁ କାୟ
ଲୋମୁ ଶର ବାହାରିଣ ସୈନ୍ୟ କଲା କ୍ଷୟ ।
ଶିଙ୍ଗର ଆଘାତେ ବାଜି ଅଶ୍ୱମାନେ ମଲେ
ଲକ୍ଷ ଲକ୍ଷ ସୈନ୍ୟ ତହିଁ ଜୀବନ ତେଜିଲେ ।
ପୁଣି ଭୈରବ ହୁଂକାର ଶବ୍ଦେ ଦେଲେ ରଡ଼ି
ସେ ଶବଦେ ସୈନ୍ୟମାନେ ତହୁଁ ଗଲେ ଉଡ଼ି ।
ଝଞ୍ଜାବାତେ ଯେଉଁପରି ଉଡ଼ନ୍ତି ପତଙ୍ଗେ
ସେହି ରୂପେ କେହି ପଡ଼େ ଧରଣୀର ଅଙ୍ଗେ ।
କ୍ରୋଧେ ବିଶ୍ୱାମିତ୍ର ଧେନୁ ସଙ୍ଗେ ରଣ କଲେ
ରଣେ ହାରି ସୈନ୍ୟସହ ଭୂମିରେ ପଡ଼ିଲେ ।
ଧେନୁ ସଙ୍ଗେ ରଣ କରି ରାଜା ନ ପାରିଲେ
ମାନସରେ ଅତିଶୟ ସନ୍ତାପିତ ହେଲେ ।
ତହୁଁ ଅଷ୍ଟବସୁ ଡାକି ବୋଲେ ନୃପରାଣ
ଚୋରି କରି ବଶିଷ୍ଠଙ୍କ ଗାଈ ତୁମ୍ଭେ ଆଣ ।
ଏହା କହି ନାନା ଅଳଙ୍କାର ତାକୁ ଦେଲେ
ଲକ୍ଷେ ମାଢ଼ ସ୍ୱର୍ଣ୍ଣ ଦେଇ ବିନୟେ କହିଲେ ।
ବିଶ୍ୱାମିତ୍ରଙ୍କ ବଚନ ଭାଙ୍ଗି ନ ପାରିଣ
ଗାଈ ଚୋରି କରିବାକୁ ଗଲେ ତତକ୍ଷଣ ।
ଗାଈ ଦୁହିଁ ବନେ ଛାଡ଼ିଦେଲେ ତପୋବନ୍ତ
ଗଣ୍ଡୁକୀ ନଦୀର ତୀରେ ଚରଇ ସେ ନିତ୍ୟ ।
ଜାଣନ୍ତି ଧେନୁ ହରଣ ମନ୍ତ୍ର ଅଷ୍ଟବସୁ
ମନ୍ତ୍ରଧୂଳି ପକାଇଣ ବୋଲେ ଗାଈ ଆସୁ ।
ମନ୍ତ୍ରବଳେ ତାଙ୍କ ପଛେ ଗୋଡ଼ାଇଲା ଗାଈ
କାମଧେନୁ ଘେନିଗଲେ ସେହୁ ଅଷ୍ଟଭାଇ ।
ବସୁଧା ଭୟ କରିଲେ ସେ ଗାଈ ଆସନ୍ତେ
ବିହନ୍ତା ପୁରୁଷ ହସେ ଥାଇ ଶୂନ୍ୟପଥେ ।
ଧେନୁ ହରି ଘେନିଗଲେ ସେହୁ ଆଠଭାଇ
ସୂର୍ଯ୍ୟ ଅସ୍ତଗଲେ ଗୃହେ ନ ଅଇଲେ ଗାଈ ।
ତହୁଁ ସୁମନ୍ତକ ଋଷି ଗାଈ ଘୋଜିଗଲେ
ଗଣ୍ଡୁକୀ ନଦୀତୀରରେ ଖୋଜି ନ ପାଇଲେ ।
ବାହୁଡ଼ି ଆସି କହିଲେ ହେ ବଶିଷ୍ଠ ଶୁଣ
ଗାଈ ଲୋଡ଼ି ନ ପାଇଲି ବନସ୍ତ ମଧ୍ୟେଣ ।
ଧ୍ୟାନ କରିଣ ଜାଣିଲେ ସେହୁ ତପଚାରୀ
ନେଲେ ମୋର ଅଷ୍ଟବସୁ ଗାଈ ଚୋରି କରି ।
ତହୁଁ ବଶିଷ୍ଠ ମହର୍ଷି ସନ୍ତାପିତ ହୋଇ
ଅଷ୍ଟବସୁ ପଛେ ପଛେ ଆସନ୍ତି ଗୋଡ଼ାଇ ।
ଋଷିକୁଲ୍ୟା ନଦୀତୀରେ ମଧୁବନ ଗିରି
ଗୋମାତାଙ୍କୁ ରଖିଥିଲେ ତହିଁର ଉପରି ।
ମନ୍ତ୍ରବଳେ କାମଧେନୁ ପାଶୋରି ବତ୍ସାକୁ
ଏକାକୀ ରହିଛି ନାହିଁ ରକ୍ଷା କରିବାକୁ ।
ଗଣ୍ଡା ଗୋଟିଏ ବସୁଏ ଆଣିଲେକ ମାରି
ପର୍ବତ ଉପରେ ଅଗ୍ନି ଉଦ୍ଦିପନ କରି ।
ସଯତନରେ ବୋଇଲେ ତହୁଁ ଗଣ୍ଡାମାଂସ
ନେଇଣ ପୋଡ଼ିଲେ ଫଳ ପକାଇ ବିଶେଷ ।
ପତ୍ର ଚଉପଦୀ କରି ବାନ୍ଧିଣ ସେମାନ
ଶଉରୀ ବିଧିରେ ତାକୁ କଲେକ ରନ୍ଧନ ।
ଗାଈକି ଦୁହିଁଣ ଦୁଗ୍ଧ ଯତ୍ନେ ଆଉଟିଲେ
ଗଣ୍ଡା ମାଂସ ଦୁଗ୍ଧ ଅଷ୍ଟଭାଗ କରି ନେଲେ ।
ବନସ୍ତରୁ ସୋମରସ ଠୁଳ କରି ଆଣି
ଭୋଜନ କରନ୍ତି ସେହୁ ମିଷ୍ଟରସ ଜାଣି ।
ବଶିଷ୍ଠ ମହର୍ଷି ଗାଈ ଖୋଜି ଖୋଜି ଗଲେ
ମଧୁବନ ପର୍ବତରେ ଗାଈଙ୍କୁ ଭେଟିଲେ ।
ନିମ୍ବଗଛ ଚେରରେ ସେ ଅଛି ବନ୍ଧାହୋଇ
ଉଠ ଗୋମାତା ବୋଲିଣ ଧରି ଶିଙ୍ଗ ଦୁଇ ।
ଆଶ୍ୱାସନା କରି ମୁନି ବୋଇଲେ ତାହାକୁ
ବନେ ଚରି ଚରି ତୁ କି ଅଇଲୁ ଏଠାକୁ ।
ଶାର୍ଦ୍ଦୁଳ ଭଲ୍ଲୁକ ଏଠି ଅଛନ୍ତି ବହୁତ
ମାରି ଖାଇଥାନ୍ତେ ତୋତେ ସୂର୍ଯ୍ୟ ହେଲେ ଅସ୍ତ ।
ଅଷ୍ଟବସୁଙ୍କୁ ଶୁଭିଲା ସମାଧାନେ ବୋଲୁ
ପର୍ବତ କମ୍ପିଲା ତାଙ୍କ ସଙ୍ଗେ ଗାଈ ଚାଲୁ ।

ବଶିଷ୍ଠ ମହର୍ଷି ଗାଈ ଘେନି ଆସୁଥିଲେ
ଅନୀଳବସୁ ପର୍ବତୁ ଦଉଡ଼ି ଆସିଲେ ।
କ୍ରୋଧଭରେ ସେହୁ ଦେଇ କରି ଘୋର ରଡ଼ି
ସଜୋରେ ପିଟିଲା ଧରି ବଶିଷ୍ଠଙ୍କୁ ବାଡ଼ି ।
ଯଷ୍ଟିଘାତେ ଋଷିଙ୍କର ନେତ୍ରୁ ପଡ଼େ ଲୁହ
କୋପରେ ସେ ଶାପ ଦେଲେ ତୁହି ଅନ୍ଧ ହୁଅ ।
ଆକୁଳରେ ଶାପ ତାକୁ ବଶିଷ୍ଠ ଦିଅନ୍ତେ
ଅନୀଳ ବସୁର ଚକ୍ଷୁ ଫୁଟିଲା ତୁରିତେ ।
ଋଷି କୋପେ କାମ୍ୟକ ଦ୍ୱୀପରେ ଯେ ପଡ଼ିଲା
ତ୍ରାହି କର ଋଷି ବୋଲିଣ ସେ ଡାକ ଦେଲା ।
ଭକତବତ୍ସଳ ଯେଣୁ ସେହି ତପୋନିଧି
ବୋଇଲେ ତୁ ନିଜେ ନିଜେ ନାଶକଲୁ ବୁଦ୍ଧି ।
ଦ୍ୱାପରେ ସୋମବଂଶରେ ଜନ୍ମିବେ ଯୁଧିଷ୍ଠି
ଅରଣ୍ୟେ ଆସି କାମ୍ୟକବନେ ତାଙ୍କୁ ଭେଟି ।
ତାହାଙ୍କ ଦର୍ଶନେ ତୋତେ ହେଉ ଚକ୍ଷୁ ପ୍ରାପ୍ତ
ଦୋଷ କରି ଯେବେ ତୁହି ହେଲୁ ଆକୁଳିତ ।
ପୁଣି କୋପରେ ଧାଇଁଲା ପ୍ରାୟେ ନାମେ ବସୁ
ବଶିଷ୍ଠଙ୍କୁ ଓଗାଳିଲା ଗାଈ ଘେନିଆସୁ ।
ନାନାଦି ଭର୍ତ୍ସନା ବାକ୍ୟ କ୍ରୋଧଭରେ ବୋଲି
ବଶିଷ୍ଠ ଋଷିଙ୍କୁ ଯାଇ ପକାଇଲା ପେଲି ।
ଉତ୍ତାନଶାୟୀ ହୋଇଣ ପଡ଼ିଲେ ବଶିଷ୍ଠ
କୋପରେ ବୋଇଲେ ତୁହି ଆରେରେ ପାପିଷ୍ଠ ।
ବିହନ୍ତା ପୁରୁଷ ହୋଇ ଏଡ଼େ ମନ୍ଦ ଅଟ
ଜନ୍ମେ ଜନ୍ମେ ହେଉଥାଅ ତୋର ମୁଣ୍ଡ କାଟ ।
ପ୍ରାୟବସୁ ବଶିଷ୍ଠଙ୍କୁ କୋଳ କରି ତୋଳେ
ଶାଳପତ୍ରେ ପାଣି ଆଣି ଋଷି ମୁଖେ ଢାଳେ ।
ପ୍ରାୟବସୁର ବଶିଷ୍ଠ ଘେନିଲେ ଭକତି
ତୁ ହୋ ରକ୍ଷା ହୁଅ ବୋଲି ତାକୁ କଲେ ମୁକ୍ତି ।
ଉମାବସୁ ବୋଲେ ମୁନି ଶାପ ଦେଲେ କୋପେ
ମୁକତି ହେବା କାରଣ କହନ୍ତୁ ସ୍ୱରୂପେ ।
ବଶିଷ୍ଠ ବୋଇଲେ ତୁହି ଶୁଣ ଉମାବସୁ
ଗଙ୍ଗାଗର୍ଭୁ ଜାତ ହୁଏ ସେ ତୁମ୍ଭଙ୍କୁ ନାଶୁ ।
ମୁକତ ହୋଇବୁ ତୁହି ଜାହ୍ନବୀକି ଦେଖି
ଶାନ୍ତନୁ ବଚନେ ଗଙ୍ଗା ଏକ ଆସୁ ରଖି ।
ଗଙ୍ଗାଙ୍କଠାରୁ ସେ ଜନ୍ମ ଭୀଷ୍ମ ନାମ ପାଉ
ଭାରତ ଯୁଦ୍ଧରେ ତୋର ଶରଶଯ୍ୟା ହେଉ ।
ଷଡ଼ବସୁ ଗଙ୍ଗାଗର୍ଭୁ ଜନମ ହୋଇଣ
ତାଙ୍କ ହସ୍ତେ ମୁକ୍ତି ପାଅ ଲଭିଣ ନିଧନ ।
ଜଇନ୍ତା ଉପରେ ପାଞ୍ଚଜଣ ଜନ୍ମ ପାଉ
ଉମାବସୁ ପୁରୋଚନ ପଣ୍ଡା ପୁଣି ହେଉ ।
ଏହିରୂପେ ଜନ୍ମି ଜତୁଘରେ ଥିବ ଶୋଇ
ଅନଳ ଲାଗିଣ ତୁମ୍ଭେ ସର୍ବେ ହେବ ଦହି ।
ଏହିରୂପେ ପାଣ୍ଡବଙ୍କ ଉପକାର କର
ଗୋରୁ ଚୋର ନାମ ଆଝୁଁ ହେଉରେ ତୁମ୍ଭର ।
ଏଥୁଅନ୍ତେ ବିଶ୍ୱାମିତ୍ର ଗାଧିର ସନ୍ତତି
ବଶିଷ୍ଠଙ୍କ ଆଶ୍ରମରେ ମିଳିଲେ ତଡ଼ତି ।
ପୁଚ୍ଛିଲେ କେମନ୍ତେ ଜପ କରନ୍ତି ହେ ଯତି
ତପୋନିଷ୍ଠ ହେବା ପାଇଁ ବଳାଇଛି ମତି ।
ବଶିଷ୍ଠ ବୋଇଲେ ତୋର ତପ ହେଉ ସିଦ୍ଧ
ସେ କହିଲେ ମୁଁ ତୋ ପରି ହୋଇବି ପ୍ରସିଦ୍ଧ ।
ରାଜା ବୋଲେ ତୋ ଦହନେ ମୋହରତ ଇଚ୍ଛା
ତାହାହେଲେ ପୂର୍ଣ୍ଣହେବ ଜାଣ ମନୋବାଞ୍ଛା ।
ରାଜ୍ୟଭାର ତ୍ୟାଗକରି ତହୁଁ ଗଲେ ରାଗେ
ଯାଇଁ ବସିଲେ ହିମାଦ୍ରି ପଶ୍ଚିମର ଭାଗେ ।
ଧବଳାଙ୍ଗ ମାଳତୀ ଯେ ସିଦ୍ଧ ମହାନଦୀ
ଐଶାନ୍ୟ ବାହିନୀ ତୋୟା ସରସ୍ୱତୀ ଭେଦୀ ।
ହିଙ୍ଗୁଳା ଗିରି ମାଳତୀ ମହାନଦୀ ତଟ
ତା ପଛଭାଗେ ପର୍ପଟୀ ନାମେ ଏକ ବଟ ।
ସେ ବଟତଳରେ ରାଜା କରିଣ ଆସନ
ନିରାହାର ହୋଇଣ ସେ ଭକ୍ଷିଲେ ପବନ ।
ନିରଞ୍ଜନ ଲୟ କରି ବସିଲେ ନିରାଶେ
ଏକାସନେ ଅଷ୍ଟୋତ୍ତର ଶତେକ ବରଷେ ।
ଏହା ଦେଖିଣ ନାରଦ ଇନ୍ଦ୍ରଙ୍କୁ କହନ୍ତି
ବିଶ୍ୱାମିତ୍ର ବଶିଷ୍ଠଙ୍କ କଳହର ରୀତି ।
ବିଶ୍ୱାମିତ୍ର ରାଜ୍ୟ ସିଂହାସନ ତ୍ୟାଗ କରି
ଅନାହାରେ ତପ କଲେ ସର୍ବ ପରିହରି ।
ବ୍ରହ୍ମା ଇନ୍ଦ୍ରପଦ ନେବ ଯେ ତପ ବଳରେ
ଉପାୟ କରିଣ ରକ୍ଷା ହୁଅ ପୁରନ୍ଦରେ ।
ନାରଦଙ୍କ ବଚନରେ ଇନ୍ଦ୍ର ଭୟ କଲା
ନିକଟକୁ ମେନକା ଅପସରା ଡକାଇଲା ।
ମଳୟ ପବନ ମଦନକୁ ସେ ଦେଇଣ
ମେନକାକୁ ଚାହିଁ ଇନ୍ଦ୍ର ବୋଲନ୍ତି ବଚନ ।
ବଶିଷ୍ଠ ବିଶ୍ୱାମିତ୍ରଙ୍କ ହୋଇଲା ବିବାଦ
ବିଶ୍ୱାମିତ୍ର ତପ କରେ ନେବ ମୋର ପଦ ।
ଋଷି ବିପ୍ରମାନଙ୍କେ ସେ ଅଟେ ବଡ଼ ଦାନୀ
ତାହାର ତପ ବିନାଶ ଏ ଦୁହିଁଙ୍କି ଘେନି ।
ମୋହର ନିମନ୍ତେ ତୁହି ପାଅ ଏବେ କଷ୍ଟ
ତୁ ଦୁଃଖ ନ କଲେ ମୋର ସୁଖ ହେବ ନଷ୍ଟ ।
ଏହା ଶୁଣି ଭୟରେ ଯେ କମ୍ପଇ ମେନକା
ବୋଲେ ବ୍ରହ୍ମା ରୁଦ୍ର ଯାକୁ କରିଥାନ୍ତି ଶଙ୍କା ।

ମନ୍ତ୍ରବଳେ ଯାହାକୁ ନ ପାରିଲେ କନ୍ଦର୍ପ
ମୁହିଁକି ପାରିବି ତାର ଭଗ୍ନ କରି ତପ ।
ତୁ ଦେବ ଅଟୁ ଜଗତ ଜୀବ ହିତକାରୀ
ମହାପ୍ରଭୁ ଦଣ୍ଡ ଦିଅ ଦୋଷକୁ ବିଚାରି ।
ମୁଁ ତୋର କେଉଁଣ ଦୋଷ କରିଥିଲି ପୂର୍ବେ
ତହିଁକି ବିହିଲେ ମୋତେ ଏଡ଼େ ଶାସ୍ତି ଏବେ ।
ଚଉଷଠି କୋଟି ମଧ୍ୟେ ମୁହିଁ ଅପରାଧୀ
ମୋତେ ନାଶ କରି କିବା ପାଇବୁ ତୁ ସିଦ୍ଧି ।
ଇନ୍ଦ୍ର ବୋଇଲେ ମୋହର ଦୁଃଖେ ହୁଅ ଦୁଃଖୀ
ମୋତେ ଏ ସଙ୍କଟୁ ପାରିକର ଶଶିମୁଖୀ ।
ଆସନୁ ଉଠିଣ ଇନ୍ଦ୍ର ଧରି ତାର ହସ୍ତ
ବୋଇଲେ ମୋ ପାଇଁ ନାଶ ହୋଇବୁ ସଙ୍ଗାତ ।
ଅନେକ ବିନୟ ଯହୁଁ କଲେ ପୁରୁହୁତ
ଶୁଣିଣ ମେନକା ନାରୀ କଲା ସନମତ ।
ନାନାଜାତି ଅଳଙ୍କାର କୁବେର ଯେ ଦେଲେ
ଅମ୍ଳାନ ବସ୍ତ୍ର ଆଦିତ୍ୟ ଦେବ ଯୋଗାଇଲେ ।
ଦିବ୍ୟବେଶ ହୋଇଣ ସେ ଜଗତମୋହିନୀ
ସେଠାରୁ ମଳୟ ମଦନକୁ ସଙ୍ଗେ ଘେନି ।
ପୁଣି ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଇନ୍ଦ୍ର ବାକ୍ୟରେ ମେନକା ଛାଡ଼େ ବାରସ୍ୱତୀ ।
ଏଣେ ବିଶ୍ୱାମିତ୍ର ମହାତପେ ବସିଛନ୍ତି
ଏକଧ୍ୟାନେ ନିରାକାର ସ୍ୱାମୀଙ୍କୁ ଭଜନ୍ତି ।
ଏମନ୍ତକାଳେ ମେନକା ଗଲା ସନ୍ନିଧାନ
ମଧୁର ବୀଣା ଝଙ୍କାରି କରିଲା ଗାୟନ ।
ତାନମାନେ ଗାନ କଲା କୋମଳ କଣ୍ଠରେ
ଅଣ୍ଡିର କୋକିଳ ସ୍ୱନ ତୁଚ୍ଛ ତା ସ୍ୱରରେ ।
ସ୍ତମ୍ଭନ ମୋହନ ଆଉ ବଶ୍ୟ ଉଚ୍ଚାଟନ
ଧରିଣ କୁସୁମବାଣ ରହିଛି ମଦନ ।
ପଞ୍ଚମ ତାନରେ ଲୟ କରି ଗାଏ ବାମା
ସେହି ଲଳିତ ଗାନକୁ ନାହିଁ ତ ଉପମା ।
ଅବସନ୍ତେ ବହିଲାକ ବସନ୍ତ ପବନ
ମୃଗନାଭି ଗନ୍ଧେ ଆମୋଦିତ ସେହି ବନ ।
ମଧୁରେ ଗାଇଣ ବାମା ଦେଇ କରତାଳି
ତହିଁ ଭଙ୍ଗି ନୃତ୍ୟକଲା ହରଷରେ ଭୋଳି ।
ବହଇ ସରସ ହୋଇ ମଳୟ ଅନିଳ
ବାତ ବିଘାତରେ କିବା ଟଳିବ ଅଚଳ ।
ମଦନରେ ଅସମ୍ଭାଳ ନିଜେ ନିଜେ ହୁଏ
କ୍ଷଣେ ବସେ କ୍ଷଣେ ନାଚେ କି ସୁନ୍ଦର ଶୋହେ ।
ଓଲଟ ରମ୍ଭା ସଦୃଶ୍ୟ ତାର ଜାନୁ ବେନି
ସୁନ୍ଦର ଦିଶଇ ଫୁଟି ସେ ଝୀନବସନୀ ।
ବସନ୍ତ ପବନ ଯହୁଁ ବହିଲା ସେ ବନେ
ପଲ୍ଲବିତ ହେଲେ ତହୁଁ ଶୁଷ୍କ ବୃକ୍ଷମାନେ ।
କ୍ଷିତି ଆପ ତେଜ ଆଉ ମରୁତ ଆକାଶ
ପଞ୍ଚଭୂତ ଆନନ୍ଦରେ ଧର୍ମ ଗଲା ନାଶ ।
ପାଷାଣ ତରଳି ଧୀରେ ଧୀରେ ଯେ ବହଇ
ଗିରିରୁ ଖସଇ ଶିଳା ଖଣ୍ଡ ଖଣ୍ଡ ହୋଇ ।
ପିକ କୁହ କୁହୁ ବହେ ବସନ୍ତ ଅନଳ
ଅକାଳରେ ମୁକଳିତ ହେଲା ଚୂ୍ୟତଡାଳ ।
ବନ ଜୀବଜନ୍ତୁମାନେ ହରିଣ ହରିଣୀ
ବସନ୍ତ ବହନ୍ତେ ସବୁ ହେଲେ ବିରହିଣୀ ।
ଏକାକାର ହୋଇଲେ ଯେ ମାନି ତା ଗୌରବୀ
ଧରାଧରି ଟଣାଟଣି ଖୁସି ଭୂମିଦେବୀ ।
ବିଶ୍ୱାମିତ୍ରଙ୍କ ସନ୍ନିଧେ ପ୍ରବେଶ ମେନକା
ନିର୍ଜ୍ଜନ ବନେ ସୁନ୍ଦରୀ ଅଛି ତହିଁ ଏକା ।
ଏବେ ତରୁଣୀ ସୁନ୍ଦରୀ ପୁଣି ବିରହିଣୀ
ମଦନମୋହିନୀ ଜାଣେ ସୁସଙ୍ଗୀତ ପୁଣି ।
ଅତି ହରଷ ହୋଇଣ ଗାଏ ସୁସଙ୍ଗୀତ
ସେ ଗୀତ ଶୁଣି ନାରଦ ହୋଇଲେ ଲଜ୍ଜିତ ।
ଶରମୂନେ ପଞ୍ଚଶର ବସାଇ ମଦନ
ବିଶ୍ୱାମିତ୍ର ଶରୀରକୁ ବିନ୍ଧେ ଘନ ଘନ ।
ମଦନଶରେ ମହାତ୍ମା ଶରୀର ବିକୃତି
ମଉନ ହୋଇ ସମସ୍ୟା ନ ଦିଅନ୍ତି ଯତି ।
ସନ୍ନିଧେ ସୁନ୍ଦରୀ ଆସି କରଇ ସୁ ସେବା
ବୋଲେ ଦେହଶୂନ୍ୟ ବୋଲି ଭକତି ଘେନିବା ।
ରାଗ ମାୟା ମୋହ ମୁହିଁ ସବୁ କଲି ତେଜ୍ୟା
ତପକୁ ଇଚ୍ଛିଲି ମୁହିଁ କରି କୁଶଶଯ୍ୟା ।
ମହାପୁଣ୍ୟତୋୟା ଏହି ଅତି ସାର ଭୂମି
ସନ୍ନିଧେ ଖଟିବି ତୋର ଆଜ୍ଞା ଦିଅ ସ୍ୱାମୀ ।
ମଉନେ ଥିବାରୁ ମୁହିଁ ନ କହି ବଚନ
କରରେ ଠାରିଲେ ଥାଅ ଆମ୍ଭ ସନ୍ନିଧାନ ।
ଦୂରେ ନ ଯା ଏଥେ ଛନ୍ତି ବ୍ୟାଘ୍ର ଯେ ଭଲ୍ଲୁକ
ରାକ୍ଷସ ପିଶାଚ ଆଦି ଦାନବ ଅନେକ ।
ଏମାନେ ପାଇଲେ ତୋତେ କରିଦେବେ ଭକ୍ଷ
ବାନ୍ଧବ ସୋଦର ନାହିଁ ଅଟୁ ତୁ ନିରେଖ ।
ମାୟାପଟଳ କୌଶଳେ ବାନ୍ଧିଲା ସୁନ୍ଦରୀ
ମତିଭ୍ରମ କରାଇଲେ ଏଡ଼େ ତପଚାରୀ ।
ଏ ମହୀରେ ନାରୀଜାତି ବଡ଼ ମୋହକାରୀ
ଯେଡ଼େ ଯତି ହେଉ ତାର ନ୍ୟନ୍ତି ଚିତ୍ତହରି ।
ମହାଭୟେ ଧ୍ୟାନ କଲ ଅଷ୍ଟଶତ ବର୍ଷ
ମେନକା ଯେ ଖଟିଥାଏ ରଜନୀ ଦିବସ ।

ଦିନେ ନିଶାକାଳେ ଋଷି ତପରୁ ଉଠିଲେ
ମେନକାକୁ କୋଳ କରି ଚାଟୁ ସେ ବୋଇଲେ ।
ସଲଜ୍ଜ ଭାବରେ ବାମା ତାଙ୍କୁ ପେଲିଦେଇ ।
ଧର୍ମପଥ ଦେଖାଇଣ ବିନୟେ ବୋଲଇ ।
ଆହେ ମହତମା ତୁମ୍ଭେ ତେଜି ରାଜ୍ୟଭାର
ତପ କରିବାକୁ ପୁଣି ଅଇଲ ବନର ।
ପୁଣି କିମ୍ପା ମୁନି ମୋତେ କୁହ ଚାଟୁଭାଷ
ତୁମ୍ଭ କୋପରେ ହେବି ମୁଁ ଜୀବନେ ବିନାଶ ।
ମୋତେ କି ଗୋଚର ଆହେ କି ଇଚ୍ଛା ତୁମର
ମୁହିଁ ତ ଅନାଥ ନାରୀ ମୋତେ ରକ୍ଷା କର ।
ସଂସାର କରି ରହିବା ବିଶ୍ୱାମିତ୍ର କହି
ମେନକା ବୋଲେ ଏ ଦେହେ ହୋଇ ନ ପାରଇ ।
ଏଡ଼େକ ଦୁର୍ଗନ୍ଧ ବାସ ମଳିନ ତୁମ୍ଭର
ବେଗେ ଫିଟାଇ ଶରୀରୁ ଏହି ଜଟାଭାର ।
ତା ଶୁଣି ନଦୀରେ ତହୁଁ ପଶିଲେ ସେ ମୁନି
ମେନକା ଜଟା ଫେଡ଼ଇ ଗନ୍ଧତୈଳ ଘେନି
ନାନା ସୁଗନ୍ଧ ପଦାର୍ଥ ମୁନି ଦେହେ ବୋଳି
ଘଷି ଘାଷି ଧୌତ କଲା ସେ ମେନକାବାଳୀ ।
ସ୍ନାନ ସାରି ତହୁଁ ଉଠି ବିଶ୍ୱାମିତ୍ର ଯତି
ନାନା ଉପଭୋଗ କଲେ ଛାଡ଼ି ତପବୃତ୍ତି ।
କଷାୟ ବସନ ତାଙ୍କ ଦୂରେ ଫିଙ୍ଗିଦେଲେ
କ୍ଷୀନବସନ ସଜାଡ଼ି ଅଙ୍ଗରେ ମଣ୍ଡିଲେ ।
ଅମୃତ ଲଡୁ ନେଇଣ ପରଷେ ଚତୁରୀ
ହରଷେ ଭୁଞ୍ଜନ୍ତି ବିଶ୍ୱାମିତ୍ର ତପଚାରୀ ।
ଭୋଜନ ସାରି ତପୀଷ୍ଟ ମେନକାର ମେଳେ
ବିହାର କରିଲେ ଯାଇ ପର୍ଣ୍ଣଟୀର ମୂଳେ ।
ରାତ୍ରଅର୍ଦ୍ଧେ ଅନ୍ତରୀକ୍ଷେ ଗଲାକ ମେନକା
ମାତଙ୍ଗିନୀ ନଦୀତୀରେ ମୁନି ହେଲେ ଏକା ।
ନିଦ୍ରାରୁ ଉଠିଲେ ମୁନି ପାହିଯାନ୍ତେ ରାତି
ମେନକା ମେନକା ବୋଲି ଡାକନ୍ତି ଚୌକତି ।
ମେନକା ନ ପାଇ ମୁନି ଲୋଡ଼ି ଘୋର ବନେ
ଏଣେ ତେଣେ ବୁଲନ୍ତି ସେ ବାତୁଳ ସମାନେ ।
ସ୍ୱର୍ଗେ ଅପସରା ଗଲା ହୋଇଣ ସାନନ୍ଦ
ଅମରେ ଯାଇ ଦର୍ଶନ କଲା ଦେବ ଇନ୍ଦ୍ର ।
ଘଟିଥିବା କଉତୁକ କହିଲା ଚତୁରୀ
ଅନେକ ସାନନ୍ଦ ହେଲେ ଶୁଣି ବଜ୍ରଧାରୀ ।
ମେନକା ନ ପାଇ ମୁନି ମନେ ବିଷାଦିତ
ହୃଦଗତେ ଜାଣିଲେ ଏ ଦେବତାଙ୍କ କୃତ୍ୟ ।
ବ୍ରହ୍ମା ଯେବେ ମୋହଠାରେ କଲାକ ଏସନ
ବ୍ରହ୍ମାପଦ ଘେନିବି ମୁଁ ଏ ଦୃଢ଼ ବଚନ ।
ଏତେ ବୋଲି ମହାତମା କରିଲେ ସଂକଳ୍ପ
ପୁଣି ଉର୍ଦ୍ଧ୍ୱରେତା ହୋଇ ଆଚରିଲେ ତପ ।
ବେନିସ୍ତମ୍ଭ ପୋତି ବାମ ଡାହାଣ ଦ୍ୱିକତି
ଉପରେ ଧାରଣ କାଠ ବାନ୍ଧିଲେକ ଯତି ।
ତହୁଁ ଦୁଇପାଦ ବାନ୍ଧି ତଳକୁ ଝୁଲିଲେ
ହୋମକୁଣ୍ଡ ତଳେ ରଖି ଆହୁତି ସେ ଦେଲେ ।
ପୁଣି କୁଣ୍ଡପରେ ରଖି ତମ୍ବାର ଖପରା
ଅନଳ ଜଳନ୍ତେ ଉର୍ଦ୍ଧ୍ୱେ ହେଲା ତେଜଭରା ।
ତେଜରାଶି ନାସା କର୍ଣ୍ଣ ତାଳୁକାରେ ଫୁଟି
ନୀରଧାର ପ୍ରାୟ ରକ୍ତ ତହିଁ ହେଲା ବୃଷ୍ଟି ।
ସେ ବୃଷ୍ଟି ଶୋଣିତ ପାଶେ ଯାଇ ତମ୍ବାଭାଣ୍ଡେ
ତାହାକୁ ଆହୁତି କଲେ ମୁନି ଅଗ୍ନିକୁଣ୍ଡେ ।
ଅଗ୍ନିରେ ଦହିଯାଁ ହେଲା ବିଶ୍ୱାମିତ୍ର କାୟେ
ମାଂସ ମିଳାଇ ପଡ଼ିଲା ରକତର ପ୍ରାୟେ ।
ଏ ବିଧିରେ ଶତେବର୍ଷ ଘୋର ତପ କଲେ
ବୈଶ୍ୱାନର ମୁଖରୁ ଯେ ତହୁଁ ଉବୁରିଲେ ।
ହତ ହେଲା ସେ ବେଳରେ ପାତକ ତାହାରି
ତାହା ଜାଣି ମହାତମା ଅନଳୁ ଉତୁରି ।
ପୁନଃ ପୁନଃ ପୋଡୁ ପୋଡୁ ରହିଲାକ ଅସ୍ଥି
ସେ ଅଗ୍ନିରୁ ମାଂସ ପୁଣି ହୁଅଇ ଉତ୍ପତ୍ତି ।
ସ୍ୱଭାବ ସଦୃଶ ପୂର୍ବପରି ହେଲା କାୟ
ପାପଆତ୍ମା ଛାଡ଼ି ରାଜା ନିରାକାରେ ଲୟ ।
ବାୟୁ ନାହିଁ ନୀର ନାହିଁ ଆହାର ହିଁ ନାହିଁ
ଦଶଦ୍ୱାର ରୁନ୍ଧି ସେହୁ ବସିଛି ବିଦେହୀ ।
ନିଜର ପବନ ନିଜ ଅଙ୍ଗରେ ମାଇଲା
ଉଜାଣି ଟେକିଣ ବଜ୍ର ସେହ୍ନାରେ ଛନ୍ଦିଲା ।
ଖେଚରୀ ଛନ୍ଦେ ବାନ୍ଧିଲା ପଞ୍ଚଆତ୍ମା ମୁଦ୍ରା
ନବମ ଦୁଆରେ ଚାପି ତୋଳି ଦଶମୁଦ୍ରା ।
ନିରାକାର ଭଜିଲା ସେ ଦୃଢ଼େ ତପୋବନ୍ତ
ଏକଲୟେ ଲକ୍ଷେ ବର୍ଷ ବସିଲା ଏମନ୍ତ ।
ତା ଶରୀରଯାକ ଉଇ ପୋକ ଚରିଗଲେ
କିଛିଦିନେ ମୁନି ଉଇହୁଙ୍କା ପାଲଟିଲେ ।
ପୁଣି ବସିଲା ମହାତ୍ମା ହୋଇଣ ବାଲ୍ମୀକ
ଏହିପରି କଟାଇଲେ ବର୍ଷ ନବଲକ୍ଷ ।
ବାହାର ହୋଇଲା ଜଟା ସେ ବାଲ୍ମୀକ ଫୁଟି
ପାତାଳକୁ ଲମ୍ବେ ତାହା ମର୍ତ୍ତ୍ୟପୁରେ ଘୋଟି ।
ବର୍ଷା ଶୀତ ଗ୍ରୀଷ୍ମ ଆଦି ଏ ଋତୁ ସମସ୍ତ
ଅକ୍ଳେଶରେ ଭୋଗ କରେ ସଦା ବିଶ୍ୱାମିତ୍ର ।
ଏମନ୍ତ ପ୍ରକାରେ ମୁନି ରହି ଏକାସନେ
ଦଶଲକ୍ଷ ବରଷ ସେ ବସିବେକ ଧ୍ୟାନେ ।

ବ୍ରହ୍ମା ଦିନେ ବଶିଷ୍ଠଙ୍କୁ ବୋଇଲେ ତୁ ଯାଅ
ବିଶ୍ୱାମିତ୍ରେ ଏ ଠାବକୁ ବେଗେ ଆଣିଦିଅ ।
ପିତାର ବଚନେ ଶୀଘ୍ର ଚଳେ ବ୍ରହ୍ମବେତ୍ତା
ବିଶ୍ୱାମିତ୍ରଙ୍କୁ କହିଲେ ଆକାଶର କଥା ।
ଡାକନ୍ତି ହେ ଆସ ଆସ ବିଶ୍ୱାମିତ୍ର ରାୟେ
ସ୍ୱର୍ଗଧାମେ ବସ ଯାଇ ମହାଋଷି ପ୍ରାୟେ ।
ବିଶ୍ୱାମିତ୍ର ବୋଇଲେ ତୁ ଶୁଣ ହେ ବଶିଷ୍ଠ
ତୋହର ପରାୟ ମୁଁ କି ହେଲି ତପୋନିଷ୍ଠ ।
ବଶିଷ୍ଠ ବୋଇଲେ ତୋର ଏଡ଼େ ତପ କାହୁଁ
ରାଜର୍ଷି ପଦ ପାଇଲୁ ମେନକାର ତହୁଁ ।
ପୁଣି ଯେତେ ତପ କଲୁ ହୋଇଲି ମହର୍ଷି
ବ୍ରହ୍ମଋଷି ହେଲେ ସିନା ଆମ୍ଭ ସଙ୍ଗେ ବସି ।
ବିଶ୍ୱାମିତ୍ର ବୋଇଲେ ମୁଁ କାହିଁପାଇଁ ଯିବି
ତୋହର ସମାନ ହେଲେ ତପରୁ ଉଠିବି ।
ବଶିଷ୍ଠ ଫେରାଇଦେଇ ନିରାଶେ ରହିଲେ
ପୁଣି ଦଶଲକ୍ଷ ବର୍ଷଯାଏ ତପ କଲେ ।
ମହାଅନଳରେ ଦେହ ମାଂସ ଦିଏ କର୍ତ୍ତି
ଖପରାରେ ନିଜ ରକ୍ତ କରନ୍ତି ଆହୁତି ।
ଶରୀରରୁ ମାଂସ ସବୁ ଯହୁଁ କାଟିଦେଲେ
ବଶିଷ୍ଠେ ସମ ହେବାକୁ ଅନଳେ ଝାସିଲେ ।
ଅନଳ ଦେବତା ଦେହ ଦହନ ନ କଲେ
ଏହିପରି ଶତେବର୍ଷ ଅଗ୍ନିରେ ପଡ଼ିଲେ ।
ପୁନଶ୍ଚ ସେ ଅନଳରୁ ହେଲେ ଉତପତ୍ତି
ନଖ ମୁଖ ନାସା ପୂର୍ବୁ ତେଜସ୍କର ଅତି ।
ମହାମୂର୍ତ୍ତି ହୋଇ ଯହୁଁ ଅଗ୍ନିରେ ଜନ୍ମିଲେ
ନିରାକାର ଧ୍ୟାୟି ପୁଣି ଅନଳେ ପଶିଲେ ।
ଅଗ୍ନିଦେବ ବେଢ଼ି ଜଳେ ତାହାର ଶରୀର
ଯୋଗଲୟେ ବସିଅଛି ଅଗ୍ନିର ମଧ୍ୟର ।
ପୁଣି ହିଁ ଅନେକ କାଳ ହୁଅନ୍ତେ ଅତୀତ
ବଶିଷ୍ଠେ ହକାରି ଆଜ୍ଞାଦେଲେ ବିଶ୍ୱତାତ ।
ବିଶ୍ୱାମିତ୍ର ଘେନିଆସ ଆମ୍ଭର ଆଜ୍ଞାରେ
ଦେବର୍ଷି ପଣେ ତାହାଙ୍କୁ ବସାଅ ପାଖରେ ।
ବଶିଷ୍ଠ ଡାକି ବୋଇଲେ ବିଶ୍ୱାମିତ୍ର ଆସ
ଦେବର୍ଷି ହୋଇଣ ସ୍ୱର୍ଗେ ଆମ୍ଭ ତୁଲେ ବସ ।
ବଶିଷ୍ଠଙ୍କ ବଚନେ ସେ ଛାଡ଼ିଲେ ଆସନ
ଆସନକୁ ଘେନିଗଲେ ସେହି ତପୋଧନ ।
ଦେବର୍ଷି ପଣେ ସ୍ୱର୍ଗରେ ବିଶ୍ୱାମିତ୍ର ଯତି
ଦଶଲକ୍ଷ ବର୍ଷଯାଏ କରିଲେ ବସତି ।
ଏକଦିନେ ବିଶ୍ୱାମିତ୍ର ମନରେ ବିଚାରି
ବ୍ରହ୍ମାପୁରେ ଗଲେ ଦଣ୍ଡ କମଣ୍ଡଳୁ ଧରି ।

ପିତାର ଦ୍ୱାରୀ କଲ୍ମଷପାଦ ନାମେ ରାଜା
ବିଶ୍ୱାମିତ୍ରଙ୍କୁ ବୋଇଲା ଭିତରକୁ ନ ଯା ।
ଦ୍ୱାରେ ପଶନ୍ତେ ସେ ଦ୍ୱାରୀ ପକାଇଲା ପେଲି
ମୁହାଁ ମୁହିଁ ପଡ଼ିଗଲେ ଧର୍ମ ଧର୍ମ ବୋଲି ।
ଦଣ୍ଡ କମଣ୍ଡଳୁ କରେ ଧରି ମହାତମା
ଚେତନା ପାଇ ବୋଲନ୍ତି ଏଡ଼େ ତୋ ଗାରିମା ।
ଆରେ ଆମ୍ଭେ ଯେବେ ଥିବୁ ବ୍ରହ୍ମସମ ଋଷି
ଯାଅରେ କଲ୍ମଷ ବ୍ରହ୍ମରାକ୍ଷସ ହୁଅସି ।
ଅନ୍ୟଥା ନ ହେଲା ସେ ଯେ ବିଶ୍ୱାମିତ୍ର ଶାପ
ତକ୍ଷଣେ କଲ୍ମଷରାଜା ହେଲା କଉଣପ ।
ଗୋଡ଼ାଇଲା ବିଶ୍ୱାମିତ୍ରେ ରାକ୍ଷସ ସେ ହୋଇ
ବୋଇଲା ତୁ ରହ ରହ ଯାଉଅଛୁ କାହିଁ ।
କଟାକ୍ଷେ ଚାହିଁଲେ ମୁନି ଏଡ଼େ ରୂପ ବୋଲି
ଚାହାଁନ୍ତେ ବିଶ୍ୱାମିତ୍ରଙ୍କୁ ପକାଇଲା ପେଲି ।
ଅସାଷ୍ଟମ ହୋଇ ପଡ଼ିଗଲେ ତପୋନିଷ୍ଠୀ
ମୁହଁ ମାଡ଼ି ପଡ଼ି ପୁଣି ଚେତାପାଇ ଉଠି ।
କଲ୍ମଷ ରାକ୍ଷସେ ମୁନି ଦେଖାଇଣ କର
ବଶିଷ୍ଠଙ୍କ ଶତେପୁତ୍ର କର ତୁ ଆହାର ।
ବିଶ୍ୱାମିତ୍ରଙ୍କ ବଚନେ କଲ୍ମଷ ରାକ୍ଷସ
ବଶିଷ୍ଠଙ୍କ ଶତେପୁତ୍ର ଧରି କଲା ଗ୍ରାସ ।
ତହୁଁ ବିଶ୍ୱାମିତ୍ର ବ୍ରହ୍ମା ସଦନେ ମିଳିଲେ
ତାଙ୍କ ଆସନେ ବସିବା ମାନସ କରିଲେ ।
ପୌଲସ୍ତ୍ୟ ଭୀଷ୍ମକ ମୁନି ସୁମନ୍ତ ଅଗସ୍ତି
ମାରକଣ୍ଡ ସହିତରେ ଉଦ୍ଦାଳକ ଯତି ।
ଭରଦ୍ୱାଜ କଶ୍ୟପ ଯେ ଅଙ୍ଗିରା ମହର୍ଷି
ଏମାନେ ବ୍ରହ୍ମା ଆସନେ ଅଛନ୍ତି ଯେ ବସି ।
ବିଶ୍ୱାମିତ୍ରଙ୍କୁ କେହି ତ ନ କହିଲେ ବସ
ବାହୁଡ଼ିଲେ ମହାକୋପ କରି ତପୋଈଶ ।
ବସ ବୋଲି ନ ବୋଇଲେ ଯହୁଁ ବେଦବ୍ରହ୍ମା
ମାନେ ବାହୁଡ଼ିଲେ ବିଶ୍ୱାମିତ୍ର ମହାତମା ।
ବୋଇଲେ ବ୍ରହ୍ମା ପଦବୀ ହେବ ନବଖଣ୍ଡ
ମୋର ତେଜ ବିକାଶିବ ସପତ ବ୍ରହ୍ମାଣ୍ଡ ।
ଏହାକହି ସେ ସ୍ଥାନରୁ କରନ୍ତେ ଗମନ
ବାଟରେ ଦେଖିଲେ ଏକ ପୁରୁଷ ରତନ ।
ଲମ୍ବାଇଣ ଜଟାଜୁଟ ପିନ୍ଧି ଚିରକୁଟି
ହସ୍ତରେ ଶୂଳେକ ଧରି କଟିରେ କାଛୋଟି ।
ସେ ପୁରୁଷ ଦେଖିକରି ଆସୁଛନ୍ତି ଖେଦି
ଏହାକୁ ଜିଣିଲେ ସୃଷ୍ଟି ପାରିବ ସମ୍ପାଦି ।
ଏମନ୍ତ ବିଚାରି ତାଙ୍କ ସଙ୍ଗେ ଗୋଡ଼ାଇଲେ
କ୍ଷଣମାତ୍ର କାହିଁ ତାଙ୍କୁ ବିଶ୍ରାମ ନ ଦେଲେ ।

ସ୍ୱର୍ଗ ମର୍ତ୍ତ୍ୟ ପାତାଳାଦି ଏହି ତିନିପୁର
କାହିଁ ରହି ନ ପାରିଲେ ସେହି ଦିବ୍ୟବର ।
ସ୍ୱାୟମ୍ଭୁବ ମନୁକାଳେ ଏକ ସତ୍ୟଯୁଗ
ସେହି ବିଦ୍ୟାବର ତ୍ୟାଗ କରିଥିଲେ ସ୍ୱର୍ଗ ।
ସତ୍ୟବାଦୀ ହରିଶ୍ଚନ୍ଦ୍ର ସେ ସତ୍ୟଯୁଗେଣ
ଦାନ ଦ୍ୟାନ ଧର୍ମ ଆଦି ସମ୍ପାଦେ ଶରଣ ।
ଗୋଡ଼ାନ୍ତେ କୌଶିକ ବିଦ୍ୟାବର ପଳାଇଲେ
ହରିଶ୍ଚନ୍ଦ୍ର ରାଜାଠାରେ ଶରଣ ପଶିଲେ ।
ବିଦ୍ୟାବର ବୋଇଲେ ହୋ ରକ୍ଷାକର ରାୟେ
ଲକ୍ଷେ ବର୍ଷ ପଳାଇଲୁ ବିଶ୍ୱାମିତ୍ର ଭୟେ ।
ଆମ୍ଭଙ୍କୁ ଧରିଣ ଯେବେ ତରିବ ସେ ସିଦ୍ଧି
ତବ ସୃଷ୍ଟି ଭିଆଇବ ବ୍ରହ୍ମାରେ ବିବାଦୀ ।
ହରିଶ୍ଚନ୍ଦ୍ର ରାଜା ତାଙ୍କୁ ଶରଣ ସମ୍ଭାଳି
ଏମନ୍ତ ସମୟେ ବିଶ୍ୱାମିତ୍ର ଯାଇ ମିଳି ।
ବେଦ ପଠନ କରନ୍ତି ସେହି ତପୀ ଗୋଟି
ବେଦ ଶବଦେ ସପତ ବ୍ରହ୍ମାଣ୍ଡ ଯେ ଘୋଟି ।
ବେଦ ଅଧ୍ୟୟନ ଶୁଣି ରାଜା ଦଉଡ଼ିଲେ
ତେଜୋପୁଞ୍ଜ ମୂର୍ତ୍ତି ଦେଖି ତାହାଙ୍କୁ ବୋଇଲେ ।
ରହ ଦ୍ୱିଜବର ବହୁ ମହିମା ତୋହର
ଯେ ତୋହର କାର୍ଯ୍ୟ ମାଗ ଦେବି ତତପର ।
କୁଶ ହସ୍ତେ ବିଶ୍ୱାମିତ୍ର ତାହାଙ୍କୁ ବୋଇଲେ
ଦାନ ଘେନିବି ଉପରେ ହସ୍ତେ ତୁହି ଦେଲେ ।
ଡାହାଣବର୍ତ୍ତକ ଶଙ୍ଖେ ଜଳ ତିଳ ଭରି
କୌଶିକ ଘେନଇ ଦାନ ତଳହସ୍ତ କରି ।
ବୋଲେ ବିଶ୍ୱାମିତ୍ର ରାଜା ଛାଡ଼ନ୍ତେଣ ପାଣି
ସର୍ବ ରାଜ୍ୟଯାକ ତୋଷେ ଦେବୁ ନୃପମଣି ।
ଧନକୋଷ ଗଜ ଅଶ୍ୱ ରଥ୍ ଯେ ପଦାତି
ନବସହସ୍ର ଯୋଜନେ ଅଟୁ ଚକ୍ରବର୍ତ୍ତୀ ।
ଗୋଧନ ଯେ ଧନଧାନ୍ୟ ସର୍ବ ଗୃହ ବାସ
ଘେନିଲା ସେ ମହାଦାନ ହୋଇଣ ସନ୍ତୋଷ ।
ରାଜାରାଣୀ ରୋହିତାଶ୍ୱ ନାମେ ତାଙ୍କ ପୁତ୍ର
ତିନିଙ୍କୁ ରାଜ୍ୟ ବାହାର କଲେ ବିଶ୍ୱାମିତ୍ର ।
ପୁଣି ବୋଇଲେ ରାଜାଙ୍କୁ ଶୁଣ ମୋ ବଚନ
ମୁଁ ଯାହା କହୁଛି ତାହା ନ କରିବୁ ଆନ ।
ଅନ୍ନଜଳ ନ ଖାଇବୁ ତୋର ରାଜ୍ୟ ଯେତେ
ନବସହସ୍ର ଯୋଜନ ଅଟଇ ଯୁକତେ ।
ରାଜ୍ୟରୁ ବାହାର ହେଲେ ପୁତ୍ର ରାଜାରାଣୀ
ଚଳନ୍ତେ ଅଶକ୍ତ ସେ ନ ଖାଇ ଅନ୍ନପାଣି ।
ରୋହିତାଶ୍ୱ ଏକାବେଳେ ନ ପାରଇ ଚାଲି
ଚାଲ ବୋଲି ବିଶ୍ୱାମିତ୍ର ପକାଇଲା ପେଲି ।

ସେ କୁମାର ପଡ଼ିଲାକ ତହୁଁ ମୁହଁ ମାଡ଼ି
କୋପେ ବିଶ୍ୱାମିତ୍ର ତାର ପରେ ପିଟେ ବାଡ଼ି ।
ମୁଖବାଟରେ ତାହାର ବହଇ ଶୋଣିତ
ତହିଁର ଉପରେ ମୁନି ପ୍ରହାରିଲା ନାତ ।
ବୃନ୍ଦାରକେ ଦେଖୁଥିଲେ ଥାଇଣ ଆକାଶେ
ସହି ନ ପାରି ମୁନିଙ୍କି କହିଲେ ସରୋଷେ ।
ବିଶ୍ୱଦେବ ବୋଇଲେ ତୁ ଏଡ଼େ ମନ୍ଦ ଅଟୁ
ସୁକୁମାର ରାଜାପୁଅ ତାକୁ ଯଷ୍ଟି ପିଟୁ ।
ଏଡ଼େ ବଡ଼ ତପୀ ହୋଇ ରାଗୀ ତୁ ଏମନ୍ତେ
ସୃଷ୍ଟି ଭେଇବା ମାନସ କରୁ ତ କେମନ୍ତେ ।
ଶୁଣି କୋପେ ବିଶ୍ୱାମିତ୍ର ଚାହିଁଲେ ତରାଟି
ବୋଇଲେ ଯାହା ମୁଁ କରେ ମୋର ଇଚ୍ଛା ଗୋଟି ।
ମୋହର କଥାରେ ତୁମ୍ଭେ କିମ୍ପା କଥା କହ
ପଞ୍ଚବିଶ୍ୱଦେବ ତୁମ୍ଭେ ମର୍ତ୍ତ୍ୟେ ଜନ୍ମ ହୁଅ ।
ବିଶ୍ୱାମିତ୍ର ଶାପେ ସେହୁ ପଞ୍ଚ ବିଶ୍ୱଦେବା
ଶତେବର୍ଷ ପରିଯନ୍ତେ ତାଙ୍କୁ କଲେ ସେବା ।
ଶତେବର୍ଷ ପରେ ମୁନି ହୋଇଲେ ସଦୟ
ବୋଇଲେ କୋପକୁ ମୋର ଯେବେ କଲ ଭୟ ।
ତୃପତି ହୋଇଲି ଏବେ ମାଗ ମୋତେ ବର
ବିଶ୍ୱଦେବାଏ ବୋଇଲେ ଅନୁଗ୍ରହ କର ।
ଆମ୍ଭେମାନେ ଯେଣୁ ଅଟୁ ବିହନ୍ତା ପୁରୁଷ
କଳ୍ପ କଳାନ୍ତରେ ସୁଦ୍ଧା ନ ହେଉ ବିନାଶ ।
ଯଜ୍ଞାଦି କର୍ମେ କରଣ ଆମ୍ଭେ ହେଉ ଯେଣୁ
ନରରୂପେ ମର୍ତ୍ତ୍ୟେ ରହି ନ ପାରିବୁ ତେଣୁ ।
ଅଳପ ଦୋଷକୁ ମୁନି ବହୁ କଲ ରାଗ
ଅନୁଗ୍ରହ କର ସ୍ୱାମୀ ଶୀଘ୍ରେ ଆସୁ ସ୍ୱର୍ଗ ।
ନୀଚକୁଳେ ନ କରାଅ ଜନମ ଆମ୍ଭଙ୍କୁ
ଏତେ ମାତ୍ର କର ଆମ୍ଭେ ମାଗୁଛୁ ତୁମ୍ଭଙ୍କୁ ।
ଦୟା କଲେ ବିଶ୍ୱାମିତ୍ର ଭକ୍ତଙ୍କ ବିକଳେ
ସୋମବଂଶେ ଜାତ ହୁଅ ପାଣ୍ଡବଙ୍କ କୋଳେ ।
ସାତବରଷେ ତୁମ୍ଭଙ୍କୁ ପଡ଼ିବ ପ୍ରମାଦ
ଭାରତ ଯୁଦ୍ଧରେ ଦ୍ରୋଣୀ କରୁ ଶିରଚ୍ଛେଦ ।
ଶୁଣ ବୈବସ୍ୱତ ମନୁ ଅଗସ୍ତି ବୋଇଲେ
ଏହି ହେତୁ ଶିରଚ୍ଛେଦ ପାଞ୍ଚଭାଇ ହେଲେ ।
ବିଶ୍ୱାମିତ୍ର ଶାପେ ନରଜନ୍ମ ହୋଇଥିଲେ
ଶିରଚ୍ଛେଦ ହୋଇ ପୁଣି ସ୍ୱର୍ଗକୁ ଚଳିଲେ ।
ତୁ ଯେ ପୁଚ୍ଛିଲୁ ପାଞ୍ଚାଳୀ କୁମରଙ୍କ କଥା
ବିଶ୍ୱାମିତ୍ର ଶାପେ ସେହୁ ହେଲେ ଏ ଅବସ୍ଥା ।
ନମସ୍ତେ ଶ୍ରୀ ନିରାକାର ପ୍ରଭୁ ବାସୁଦେବ
ତବ ଶ୍ରୀପୟରେ ସେବି ମୋର ଦୁଃଖ ଯିବ ।

ଜପ ମନ୍ତ୍ରେ ଧ୍ୟାନେ ଆଉ ଶାସ୍ତ୍ର ଅନୁକ୍ରମେ
ଅନୁବ୍ରତେ ସ୍ଫୁରୁ ନାମ ମମ ହୃଦେ ଧର୍ମେ ।
ଶ୍ରୀରାମ ବେନି ଅକ୍ଷର ଯେଉଁ ମନ୍ତ୍ରଗୋଟି
କିଞ୍ଚିତେ ଜପିଲେ କୋଟି ବ୍ରହ୍ମାଣ୍ଡରେ ଘୋଟି ।
ତବ ଲୟେ ଅନୁବ୍ରତେ କଲି ମୁହିଁ ଆଶା
ଯମଦଣ୍ଡ ବଞ୍ଚିବାକୁ କରଇ ଭରସା ।
ଦିବାରାତ୍ର ଘୋଷୁଥାଅ ଶ୍ରୀରାମ ନାମକୁ
ଅଗାଧ ସାଗରେ ଭେଳା ଅଟେ ତରିବାକୁ ।
ମାୟାମୋହ ବନ୍ଧନକୁ ବହୁ ଅଶରଧା
ରାଗ ଲୋଭ ଅହଙ୍କାର ବଢ଼ାଏ ସେ ସଦା ।
ତ୍ରୈଲୋକ୍ୟ ମଧ୍ୟରେ ଅଟେ ଯାର ନାମ ସାର
ସଦୟ ଥାଆନ୍ତୁ ତାଙ୍କ କନିଷ୍ଠ ସୋଦର ।
ଯୋଗୀଜନଙ୍କ ରଞ୍ଜନ ଜୟ ନାରାୟଣ
ତବ ଲୟେ ପ୍ରାପ୍ତି ହେଉ ଭକ୍ତି ମୁକ୍ତି ପୁଣ ।
ଯାବତ ଅଛନ୍ତି ଚନ୍ଦ୍ର ଦିବାକର ଆଦି
ଚରଣେ ଶରଣ ଗଲି ରଖ ଦୟାନିଧି ।
କଳିକାଳ ଦେଖିଣ ମୁଁ ସର୍ବ କଲି ତେଜ୍ୟା
ମନରେ ମୁଁ ଚିନ୍ତାକଲି ସେ ଅନ୍ତର ଶଯ୍ୟା ।
ଅଗାଧ ସମୁଦ୍ରେ ଯହିଁ ଫୁଟିଲା କମଳ
ତବ ନାମ ଧରି ନାଥ ପାଇବଇଁ ସ୍ଥଳ ।
ଅକ୍ଷୟ କୋଷେ ସଞ୍ଚିଲେ ବାକ୍ୟ ବାକ୍ୟଦେବୀ
ବଚନରେ ଥରେ ମାତ୍ର ନ ପାରଇ ସେବି ।
ଯା ହୃଦୟ ପଙ୍କଜେ ଜୟ ରାମନାମ ସ୍ୱାମୀ
ସେହି ଚରଣେ ସର୍ବଦା ମୁହିଁ ପରଣାମି ।
ଜୟ ଜୟ ମାହେଶ୍ୱରୀ ମଙ୍ଗଳା ଅଭୟା
କମଳ ମାଳେକ ହୋଇ ଲମ୍ବ ମୋର ହିଆ ।
ଦୁସ୍ତର ପାତକୁ ମାତା ତୁହି କରୁ ପାରି
ଶାରଳା ଦାସ କହଇ ହରିନାମ ଧରି ।
ଜୟ ତୁ ଦଧିବାମନ ପ୍ରଭୁ ବିଘ୍ନରାଜ
ଭକ୍ତଜନଙ୍କ ବାନ୍ଧବ ଦେଉଛ ଐଶ୍ୱର୍ଯ୍ୟ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳାଦି ଅନନ୍ତ ବ୍ରହ୍ମାଣ୍ଡ
ତବପାଦେ ବିରାଜଇ ପୃଥ୍ୱୀ ନବଖଣ୍ଡ ।
ଯମ ଶଙ୍କର ଇନ୍ଦ୍ର ଯା ନାମକୁ ସ୍ମରନ୍ତେ
ଅଗାଧ ପାପ ନାଶଇ ଯେ ନାମ ଧରନ୍ତେ ।
ବିସ୍ତାର ହୃଦୟ ଯାର ଶ୍ରୀକରପଲ୍ଲବ
ଅମର ଲଡୁ ଭକ୍ଷିଲେ ଜୟ ବାମଦେବ ।
ଐରାବତ ନନ୍ଦନ ଯେ ପୁଷ୍ପଦନ୍ତି ହସ୍ତୀ
ପୁଷ୍ପଦନ୍ତ ମହାନାଗ ତାର ପଣନାତି ।
ସେ ଗଜମସ୍ତକ ଗୋଟି ଯାର ଗ୍ରୀବାସ୍ଥଳେ
ମେରୁ ଟଳିଲା ଯାହା ହିଁ ନୃତ୍ୟରସ କାଳେ ।
କୋଟି କନ୍ଦର୍ପ ଯାହାର ପାଦ ପରିମଳେ
ମହା ଅନନ୍ତ ପଇତା ଯାର ବକ୍ଷସ୍ଥଳେ ।
ଯଜନ ଯାଜନ ଯାର ଚିନ୍ତା ମାରତଣ୍ଡ
ଉନ୍ନତ ମଦନେ ଭୋଳା ଭୈରବ ଯା ତୁଣ୍ଡ ।
ପାଶ ଅଙ୍କୁଶ ମୁଦୁଗର ପର୍ଶୁ ତୀକ୍ଷ୍ଣମୁନ
ଭାର ହର ନାୟକ ହେ ତାଣ୍ଡବେ ମୋ ମନ ।
ରୁଣୁ ଝୁଣୁ ନୂପୁର ଯେ ବାଜଇ ତୋ ପାୟେ
ତବ ନାମ ସ୍ମରଣରେ ସର୍ବପାପ ଯାଏ ।
ଜୟ ତୁ ଜୟ ତୁ ଦେବ ହେ ଚନ୍ଦ୍ର ମଉଳି
ଜୟ ତୁ ଜୟ ତୁ ଦେବ ମହାମୁଦ୍ରା ତୋଳି ।
ଜୟ ତୁ ଜୟ ତୁ ଦେବ ସୁରବୃନ୍ଦ ଗୁରୁ
ଜୟ ଜୟ ବିଶ୍ୱନାଥ ଜୟ ମହାମେରୁ ।
ଜୟ ତୁ ଜୟ ତୁ ଦେବ ଭକତ ସୋଦର
ଜୟ ତୁ ଜୟ ତୁ ଦେବ ବାଞ୍ଛା ସିଦ୍ଧ କର ।
ଜୟ ଜୟ ଦେବ ଚନ୍ଦ୍ର ସୂର୍ଯ୍ୟ ବେନିନେତ୍ର
ଜୟ ଜୟ ଦେବ ତୁମ୍ଭ ନାମରେ ପବିତ୍ର ।
ସ୍ୱାମୀ ତବ ପାଦପଦ୍ମେ ବିନୟ ମୋହର
କହି ଏ ଭାରତ କଥା ହୋଇବି ଉଦ୍ଧାର ।
ଝଙ୍କଡ଼ପୁର ବାସିନୀ ଅଭୟା ମଙ୍ଗଳା
ଜନ୍ମେ ଜନ୍ମେ ସେବଇ ଗୋ ମୁଁ ମାତ ଶାରଳା ।
ମହାଶକ୍ତିମୟୀ କାଳିକାର ଦର୍ପ ଧ୍ୱଂସ
ତାରିଣୀ ବୈଷ୍ଣବୀ ମାଗୋ ନାଶ କାଳପାଶ ।
ଅନୁବ୍ରତେ ହରଷ ଗୋ ପରମ ଆନନ୍ଦେ
ସୁରସିଦ୍ଧ ମୁନିମାନେ ବନ୍ଦନ୍ତି ତୋ ପାଦେ ।
ମାଗୋ କୌମାରୀ ରୂପରେ ଖେଳ କୁତୂହଳେ
ଭକ୍ତଜନଙ୍କ ଜନନୀ ସଦା ତୁ ମଙ୍ଗଳେ ।
ଶ୍ରୀ ମହାଭାରତ କାଇଁଶିକା ପର୍ବ ଏହି
ତୋହର ଦୟାରେ ମାତ ଲେଖନ କରଇ ।
ଆଉ ଏଣିକି ଗୋ ମାତ ଅନୁଗ୍ରହ କରି
ପଦ କହି ଶାରଳା ଦାସକୁ ନିଅ ତାରି ।

—o—

## ଶ୍ରୀକୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥେ ଗମନ, ପାଞ୍ଚାଳୀ ପଞ୍ଚପୁତ୍ର ସହ ଧୃଷ୍ଟଦ୍ୟୁମ୍ନ ଶିରଚ୍ଛେଦନ ବାର୍ତ୍ତା ପାଣ୍ଡବଙ୍କୁ ପ୍ରଦାନ ଓ ଅଶ୍ୱତ୍ଥାମା ଅସ୍ତ୍ର ହରଣ

ଅଗସ୍ତି କହନ୍ତି ଶୁଣ ବିଲଙ୍କ ଈଶ୍ୱର
ଶ୍ରୀ ମହାଭାରତ ଏହା ଶୁଣି ପାପ ହର ।
ସମସ୍ତେ ନିଧନ ଯହୁଁ ହୋଇଲେ ଯୁଦ୍ଧରେ
ପାଣ୍ଡବେ ରହି ଅଛନ୍ତି ଦ୍ୱାରାବତୀ ପୁରେ ।

ପ୍ରଭାତ ହୁଅନ୍ତେ ଧର୍ମ ନାରାୟଣେ ଚାହିଁ
ବୋଇଲେ ଚାଲନ୍ତୁ ଇନ୍ଦ୍ରପ୍ରସ୍ଥେ ଯଦୁସାଇଁ ।
ଶୁଣି ଶ୍ରୀହରି ବୋଇଲେ ଶୁଣ ଧର୍ମରାଜ
ଦୁର୍ଯ୍ୟୋଧନ ମଲାକଥା ବୁଝିଲେ ମୁଁ ଆଜ ।
ତେବେ ତୁମ୍ଭଙ୍କୁ ସଙ୍ଗରେ ଇନ୍ଦ୍ରପ୍ରସ୍ଥେ ନେବି
ଦୁର୍ଯ୍ୟୋଧନ ଥିଲେ ଆଉ ନେଇ ନ ପାରିବି ।
ଏପରି ପାଣ୍ଡବେ ବୋଧି ପ୍ରଭୁ ଜନାର୍ଦ୍ଦନ
ଗରୁଡ଼କୁ ସୁମରନ୍ତେ ମିଳିଲା ବହନ ।
ଗରୁଡ଼ ଆରୋହି ହରି ଇନ୍ଦ୍ରପ୍ରସ୍ଥେ ଗଲେ
ବାହନୁ ଉତୁରି ନଗ୍ର ଭିତରେ ପଶିଲେ ।
ଭୈରବୀ ରୂପ ରହିଣ ଯେ ଅଛଇ ଦ୍ୱାରେ
ତହୁଁ ହରି କ୍ରମେ କ୍ରମେ ଚଳିଲେ ଭିତରେ ।
କିଛି ଦୂର ଯାଆନ୍ତେଣ ପ୍ରଭୁ ନାରାୟଣ
ଦେଖିଲେ ଦକ୍ଷିଣ ପ୍ରାଚୀର ହୋଇଛି ଭଗ୍ନ ।
ସେହି ଭଙ୍ଗାବାଟ ଦେଇ ଭିତରେ ପଶିଲେ
ଦୁଇକ୍ଷୌଣୀ ବଳ ତହିଁ ନିଧନ ଦେଖିଲେ ।
ଦେଖି ଶ୍ରୀହରିଙ୍କ ମୁଖୁଁ ବାକ୍ୟ ନ ସ୍ଫୁରଇ
ଆବର ଦେଖିଲେ ଧୃଷ୍ଟଦ୍ୟୁମ୍ନ ପଡ଼ିଛଇଁ ।
ତହୁଁ ହରି କିଛିଦୂର ଅଗ୍ରସର ହେଲେ
ଚନ୍ଦ୍ରଶାଳାପୁର ମଧ୍ୟେ ଯାଇଣ ପଶିଲେ ।
ଦେଖିଲେ ପାଞ୍ଚାଳୀ ପାଞ୍ଚପୁତ୍ର ପାଞ୍ଚଜଣ
ପଡ଼ିଛନ୍ତି ମୁଣ୍ଡହୀନ ହୋଇ ଭିନ୍ନ ଭିନ୍ନ ।
ଏସନ ଦେଖିଣ ହରି ଦୁଃଖେ ଚଳିଗଲେ
ବ୍ୟାସସରୋବର ପାଶେ ଯାଇଣ ମିଳିଲେ ।
ମାନଗୋବିନ୍ଦ ସେଠାରେ ଜୀବନ ହରାଇ
ପଡ଼ିଛି ତା ସଙ୍ଗେ ପଡ଼ିଛନ୍ତି ପାଞ୍ଚଭାଇ ।
ଏ ପାଞ୍ଚଙ୍କ ମୁଣ୍ଡ ହରି ସେଠାରେ ଦେଖିଣ
ପୁଣି ଦେଖିଲେ ଦୁର୍ଦ୍ଧକ୍ଷ ବସିଛି ସେ ସ୍ଥାନ ।
ଶ୍ରୀକୃଷ୍ଣ ଦେଖି ଦୁର୍ଦ୍ଧକ୍ଷ ପ୍ରଣିପାତ କଲା
ବହୁ ସ୍ତବ କରି ହସ୍ତଯୋଡ଼ି ଛିଡ଼ାହେଲା ।
ବୋଇଲା ହେ ହରି ଏବେ ସରିଲା ସଂସାର
ବେନିକୁଳ ବଂଶ ଏବେ ବୁଡ଼ିଲା ଶ୍ରୀଧର ।
ପାଞ୍ଚାଳୀ ପାଞ୍ଚପୁତ୍ରଙ୍କୁ ଦେଖି ଦୁର୍ଯ୍ୟୋଧନ
ହା ଦଇବ ବୋଲି ଦୁଃଖେ ତେଜିଲା ପରାଣ ।
ଶୁଣି ଶ୍ରୀହରି ବୋଇଲେ ଏ ବଡ଼ ବିଚିତ୍ର
କିଏ ସେ ମାରି ଆସିଲା ପାଞ୍ଚାଳୀର ପୁତ୍ର ।
ଦୁର୍ଦ୍ଧକ୍ଷ ବୋଇଲେ ଶୁଣ ଦେବ ନାରାୟଣେ
ଅବରଣେ ଅଶ୍ୱତ୍ଥାମା ଆସିଲା ଏ ସ୍ଥାନ ।
ଶ୍ୱେତଦୁବ ନେଇ ରାଜା ସେନାପତି କଲା
କାଲି ରାତ୍ରିକ ମଧ୍ୟରେ ସକଳ ନାଶିଲା ।
ପାଣ୍ଡବ ଭାବିଣ ଏହି ପାଞ୍ଚପୁତ୍ର ମାରି
ଏମାନଙ୍କ ମୁଣ୍ଡକୁ ଆଣିଲା ଭାର କରି ।
ଦେଖି ଦୁର୍ଯ୍ୟୋଧନ ମନେ ବହୁ ଦୁଃଖ କଲା
ଅଶ୍ୱତ୍ଥାମାକୁ ଝିଙ୍ଗାସି ପରାଣ ତେଜିଲା ।
ଅଶ୍ୱତ୍ଥାମା ବୀର ଏଥୁ ଅପମାନ ପାଇ
ଅରଣ୍ୟ ମଧ୍ୟେ ପଶିଲା ଅତି ଦୁଃଖୀ ହୋଇ ।
କୃଷ୍ଣ ବୋଇଲେ ଦୁର୍ଦ୍ଧକ୍ଷ ଥାଅ ଏହିଠାରେ
ପାଣ୍ଡବଙ୍କୁ ଘେନି ମୁହିଁ ଆସୁଛି ଏଠାରେ ।
ଦୁର୍ଦ୍ଧକ୍ଷେ ବସାଇ ହରି ଗରୁଡ଼େ ଆରୋହି
ଦ୍ୱାରକା ଭୁବନରେ ପ୍ରବେଶ ହେଲେ ଯାଇ ।
ପାଣ୍ଡବ ପାଞ୍ଚଭାଇ ଯେ କରି ଦରଶନ
କୁଶଳବାର୍ତ୍ତା ପୁଚ୍ଛନ୍ତି ହୋଇ ତୋଷ ମନ ।
ଆହେ ବାସୁଦେବ ଗଲ ଇନ୍ଦ୍ରପ୍ରସ୍ଥ ପୁରୀ
କୁହନ୍ତୁ ଶୁଭ ବାରତା ଶୁଣିବା ସବୁରି ।
ସମସ୍ତ ଭଲ କହିଲେ ତାଙ୍କୁ ନାରାୟଣ
ଚାଲ ଯିବା ସର୍ବେ ଏବେ ଇନ୍ଦପ୍ରସ୍ଥ ସ୍ଥାନ ।
ଏସନ କହି ପ୍ରବେଶ କରି ଜନାର୍ଦ୍ଦନ
ଏକାନ୍ତେ ସହଦେବଙ୍କୁ ବୋଲନ୍ତି ବଚନ ।
ଗୋବିନ୍ଦ ବୋଇଲେ ବାବୁ ଶୁଣ ସହଦେବ
ଅଶ୍ୱତ୍ଥାମା ସେନାପତି ହତ କଲା ସର୍ବ ।
ଦୁଇକ୍ଷୌଣୀ ବଳ ଆଉ ଧୃଷ୍ଟଦ୍ୟୁମ୍ନକୁ
ନାଶ କଲା ପାଞ୍ଚାଳୀଙ୍କ ପଞ୍ଚ କୁମରକୁ ।
କୃପାଚାର୍ଯ୍ୟ ଅଶ୍ୱତ୍ଥାମା ଛନ୍ତି ଏକସ୍ଥାନେ
ତାହାଙ୍କୁ ଲାଗଇ ବଡ଼ ଭୟ ମୋର ମନେ ।
ଆଜଦିନ ରହିଥାଅ ଏହି ଦ୍ୱାରକାରେ
ଅଶ୍ୱତ୍ଥାମା ପାଶକୁ ମୁଁ ଯାଉଛି ସତ୍ୱରେ ।
ପାଞ୍ଚପୁତ୍ର ମୃତ୍ୟୁ ଶୁଣି ପାଣ୍ଡବ କାନ୍ଦିଲେ
ଉଭୟକୁଳ ବୁଡ଼ିଲା ବୋଲିଣ ବୋଇଲେ ।
କେ କହି ପାରିବ ଆହା ଦ୍ରୌପଦୀ ବିକଳ
ପଥେ ଆସି ଆଶ୍ୱାସନ୍ତି ପ୍ରଭୁ ଆଦିମୂଳ ।
ସାନ୍ତ୍ୱନା କରିଣ ତହୁଁ ଦେବ ଚକ୍ରପାଣି
ଗରୁଡ଼କୁ ସୁମରଣା କଲେକ ତକ୍ଷଣି ।
ରମ୍ୟକ ଦ୍ୱୀପୁଁ ଗରୁଡ଼ ସତ୍ୱରେ ଆସିଲା
ପ୍ରଭୁଙ୍କ ଚରଣେ ଆସି ଦରଶନ କଲା ।
ଗରୁଡ଼ ବାହନେ ଚଢ଼ି ପ୍ରଭୁ ଦେବରାୟ
ନନ୍ଦୀ ନାମକ ବନକୁ କରିଲେ ବିଜୟ ।
ନନ୍ଦିକେଶ୍ୱର ବନରେ ହୋଇ ପରବେଶ
ବୁଲନ୍ତି ବ୍ରହ୍ମାଣ୍ଡରୂପ ଧରି ପୀତବାସ ।
ଶ୍ରୀବତ୍ସ ଲାଞ୍ଛନ ଚିହ୍ନ ହସ୍ତେ କୁଶବିଡ଼ି
ସ୍କନ୍ଧରେ ପଇତା ବେଦ ଯାନ୍ତି ପଢ଼ି ପଢ଼ି ।

ଶୁକ୍ଳବସ୍ତ୍ର ପିନ୍ଧି ବେଦ ଅଧ୍ୟୟନ ପୋଥି
ତପୋଧନ ବେଶ ହୋଇ ବନସ୍ତେ ଭ୍ରମନ୍ତି ।
ଅନ୍ଧକ ନାମରେ ଖ୍ୟାତ ଏକନଦୀ ଗୋଟି
ତହିଁ ଯାଇଁ ହରି କୃପ ଅଶ୍ୱତ୍ଥାମା ଭେଟି ।
ଅଶ୍ୱତ୍ଥାମା ପଚାରନ୍ତି ପଣ୍ଡା କେଉଁ ଦେଶୀ
ଆମ୍ଭର ତୁଲେ ତ ତୁମ୍ଭେ ହେଲ ବନବାସୀ ।
ଗୋବିନ୍ଦ ବୋଇଲେ ଆମ୍ଭେ ଥାଉଁ ସର୍ବ ତୀର୍ଥେ
ସୁସଙ୍ଗ ସୁକଥା ଦେଖି ରହୁ ପଞ୍ଚରାତ୍ରେ ।
କୃପ ବୋଇଲେ ଆମ୍ଭେ ତ ନୋହୁ ସେ ସୁସଙ୍ଗ
ଅନେକ ପାତକ କଲା ଆମ୍ଭର ଏ ଅଙ୍ଗ ।
ଭାରତ ଯୁଦ୍ଧରେ ଆମ୍ଭେ ହୋଇ ସେନାପତି
ଗୋ ବ୍ରାହ୍ମଣେ ହତ୍ୟା କଲୁ ରଣେ ଅପ୍ରମିତି ।
ଦ୍ରୋଣଙ୍କ ଶାଳକ ଆମ୍ଭେ କୃପ ମହାତମା
ଆମ୍ଭର ଭଣଜା ଏହା ନାମ ଅଶ୍ୱତ୍ଥାମା ।
ପର୍ଶୁରାମ ପ୍ରସାଦେ ଏ ହୋଇଲା ଚ୍ରିଜୀବୀ
ଦୁର୍ଯ୍ୟୋଧନ ବୋଲେ ସେନାନାୟକ କରିବି ।
ଏହାଙ୍କ ପିତା ନିଧନ ଭାରତ ସମରେ
ଅସ୍ତ୍ର ତ୍ୟାଗ କରି ଏହୁ ଦ୍ରୋଣଙ୍କ ଶୋକରେ ।
ଅଦ୍‌ଭୁତେ ଗଲେ ଏହୁ ପରଦିନ ରାତ୍ରେ
ସାତ ସାତ ବରଷର ପାଞ୍ଚାଳୀଙ୍କ ପୁତ୍ରେ ।
ସେମାନଙ୍କୁ ବିନାଶିଲେ ବିନା ଅପରାଧେ
କୁମ୍ଭୀପାକ ନର୍କ ଯୋଗ୍ୟ ହେଲେ ବାଳ ବଧେ ।
ଏତେକ ପାତକ ଏବେ ଅର୍ଜିଅଛୁ ଆମ୍ଭେ
କେମନ୍ତ ଆମ୍ଭର ତୁଲେ ରହିବଟି ତୁମ୍ଭେ ।
କୃପଙ୍କ ବଚନ ଶୁଣି ବୋଲନ୍ତି ଶ୍ରୀପତି
ବେଦମନ୍ତ୍ର ଅଧ୍ୟୟନେ ପାରଙ୍ଗମ ଅତି ।
ବ୍ରାହ୍ମଣ ହୋଇ ଶିଖିଲେ ଯେବେ ଶସ୍ତ୍ରବିଦ୍ୟା
ଶିରଛେଦ କଲେ ତେବେ କିସ ଅବା ବାଧା ।
ଏବେ ଆମ୍ଭର ବଚନ ଶୁଣ ତୁମ୍ଭେ ବେନି
ମନ୍ତ୍ର ଅର୍ଥରେ ପେଶିବା ଶସ୍ତ୍ରକୁ ନ ଘେନି ।
ଅନୁବ୍ରତେ ହସ୍ତେ ଶସ୍ତ୍ର ଥିଲେ ରାଗବଳ
ରାଗ ଥିଲେ ଯେ ବଢ଼ଇ ପ୍ରମାଦ ସକଳ ।
ପୁଣି ଗୋବିନ୍ଦ ତାହାଙ୍କୁ କହନ୍ତି କପଟେ
ତୁମ୍ଭ ଧନୁଶର ଧରି ଥୁଅ ବୃକ୍ଷ କ୍ରୋଟେ ।
ଗମିବା ପ୍ରୟାଗ ଗଙ୍ଗା ଗୟା କୃଷ୍ଣା ବେଣୀ
ନର୍ମଦା କାବେରୀ ଗଉତମୀ ନାରାୟଣୀ ।
ହେମ ବୈତରଣୀ ଆଉ କେଦାର ଗଣ୍ଡୁକୀ
ଆଦିନାଥ ସେତୁବନ୍ଧ ଚାଲ ଯିବା ଦେଖି ।
କୃଷ୍ଣଙ୍କ ବଚନେ ସେହୁ ହେଲେ ମୋହ ବଶ
ସର୍ବଶସ୍ତ୍ର ବୁଡ଼ାଇଲେ କପିଳେଶ ପାଶ ।

ମହାଓଡ଼ପା ଗଣ୍ଡୁକୀ ସରିତ ଭିତରେ
ଶସ୍ତ୍ରମାନ ବୁଡ଼ାଇଲେ ମହା ଆନନ୍ଦରେ ।
ଛାଡ଼ିଲେ ଅସ୍ତ୍ର କରିଣ କପିଳେଶ ସାକ୍ଷୀ
ଗୋମତୀ ତୀର୍ଥେ ତୋଷନ୍ତି ମାତା ପିଙ୍ଗଳାକ୍ଷୀ ।
ଦିନେକ ପଶିଲେ ସେହୁ ଗଣ୍ଡୁକୀର ତୀର୍ଥେ
ଲୋଡ଼ି ଶ୍ରୀଳଗ୍ରାମ ଶିଳା ବାଛି ମୂର୍ତ୍ତିମନ୍ତେ ।
ସେ ଗଣ୍ଡୁକୀ ନୀରେ ରତ୍ନଗିରି ନାମେ ଗିରି
ବଜ୍ର କୀଟ ନାମେ ପୋକ ଥାଏ ବାସ କରି ।
ହୀରା ନୀଳା ମାଣିକ୍ୟ ଯେ ଅଷ୍ଟରତ୍ନ କାୟ
ନୟନ ଦିଶଇ ତାର ମରକତ ପ୍ରାୟ ।
ଦନ୍ତ ପ୍ରବାଳ ସଦୃଶ ଦେହ ହୀରା ଜିଣେ
ସହସ୍ର ବରଷେ ସେହୁ ମୂର୍ତ୍ତିଟି ନିର୍ମାଣେ ।
ମହାପ୍ରତାପୀ ଅଟଇ ସେ ଯେ ବଜ୍ରକୀଟ
ମହାପ୍ରଳୟ କାଳରେ ଥାଏ ଗିରିକ୍ରୋଟ ।
ଜଳସ୍ଥଳ ଅନଳ ଯେ ଅଟେ ତାର କାୟ
ମହାପ୍ରଳୟକୁ ମଣେ ଏକଦିନ ପ୍ରାୟ ।
ଶିଳା ନିବିଡ଼େ ଅନନ୍ତ କୋଟି କୋଟି ମୂର୍ତ୍ତି
ସେହି ସେ ଜାଣଇ ସିନା ଶିଳାର ସଙ୍ଗତି ।
ସେ ନଦୀରେ କୃପ ଅଶ୍ୱତ୍ଥାମାଙ୍କୁ ଶ୍ରୀବତ୍ସି
ରାତ୍ରିରେ ଛାଡ଼ି ଅଇଲେ ନ ଜାଣନ୍ତି କିଛି ।
ଗଣ୍ଡୁକୀ ନଦୀ ଐଶାନ୍ୟ କୋଣେ ରହିଥିଲେ
ସଙ୍ଗୁ ଛାଡ଼ିଣ ପର୍ବତରେ ହରି ବିଜେ କଲେ ।
ଗରୁଡ଼କୁ ସୁମରଣା କଲେ ଚକ୍ରଧର
ରାତ୍ରି ପାଞ୍ଚଘଡ଼ିଠାରେ ମିଳିଲା ଛାମୁର ।
ବିଜେ କଲେ ନାରାୟଣ ବୈନତେୟ ପିଠି
କପାଳ ବିମୋଚନେ ସେ ମିଳିଲେ ଲେଉଟି ।
କୃପ ଦ୍ରୋଣ ଅସ୍ତ୍ର ଯହିଁ ଥିଲେକ ବୁଡ଼ାଇ
ଆଣିଲେ ଜଳରେ ବୁଡ଼ି ତାହା ଯଦୁସାଇଁ ।
ଗରୁଡ଼ ପିଠିରେ ତାହା ଥୋଇଲେ ସତ୍ୱରେ
ରାତ୍ରେ ବିଜେ କଲେ ଯାଇ ଦ୍ୱାରାବତୀ ପୁର ।
କୃଷ୍ଣ ବିଜେ କରିବାର ଜାଣିଣ ଦ୍ରୌପଦୀ
କାନ୍ଦ କାନ୍ଦି ହୋଇ ଆସି ପ୍ରବେଶିଲେ କତି ।
ଗୋବିନ୍ଦ ବୋଇଲେ ପୁଣ ଦ୍ରୁପଦ କୁମାରୀ
ଅସ୍ତ୍ର ଆଣିଲି ତୋ ପୁତ୍ର ବୈରୀ ଠକି କରି ।
ଦ୍ରୌପଦୀ ଛାମୁରେ ନେଇ ଥୋଇଲେ ଗୋବିନ୍ଦ
ତାହା ଦେଖି ଯାଜ୍ଞସେନୀ ହୋଇଲେ ଆନନ୍ଦ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଚଉଦ ବ୍ରହ୍ମାଣ୍ଡନାଥ ବୋଲାଅ ଆପଣ ।
ଛପନକୋଟି ଜୀବର ଅଟ ପଡ଼ି ଦାତା
ସମସ୍ତଙ୍କୁ ସୁଖ ଦୁଃଖ ଲାଗଇ ସର୍ବଥା ।

ମୁଁ କି ସେମାନଙ୍କଠାରୁ ଅଛଇ ବାହାରେ
ମୋହର ଗୁହାରି ପ୍ରଭୁ ନ ଶୁଭେ କର୍ଣ୍ଣରେ ।
ପାପ ପଙ୍କେ ପଡ଼ି ମୁହିଁ ହେଉଅଛି ନାଶ
ନାମ ମାଳା ଦେଇ ତାହା କରିଦିଅ ଧ୍ୱଂସ ।
ଏହି ଭିକ୍ଷା ସଦାବେଳେ ଆହେ ନାରାୟଣ
ଶାରଳା ଦାସକୁ ପୁଣି ପାଦେ ଦିଅ ସ୍ଥାନ ।

—o—

## ନନ୍ଦ ଓ ବସୁଦେବ ଶ୍ରୀକୃଷ୍ଣଙ୍କଠାରୁ ଭାରତ ଯୁଦ୍ଧ ଶ୍ରବଣ

ବୈବସ୍ୱତ ମନୁ ଅଗସ୍ତିଙ୍କ ପାଦେ ପଡ଼ି
ଭକ୍ତିଭରେ ପଚାରନ୍ତି ବେନିକର ଯୋଡ଼ି ।
କହ ମହାମୁନି ମୋତେ ସଦୟ ହୋଇଣ
ଅସ୍ତ୍ର ହରଣ ଉତ୍ତାରୁ କି ହେଲା ଘଟଣ ।
ଅଗସ୍ତି କହନ୍ତି ଶୁଣ ଆହେ ଦଣ୍ଡଧର
ଶ୍ରୀକୃଷ୍ଣ ଦ୍ୱାରାବତୀରେ ମିଳନ୍ତେ ସତ୍ୱର ।
ନନ୍ଦ ଉଗ୍ରସେନ ବସୁଦେବ ଆଦି କରି
ଶ୍ରୀହରିଙ୍କ ପାଶେ ଯାଇ ବଚନ ଉଚ୍ଚାରି ।
କହ ବାବୁ କି ନିମନ୍ତେ ଏତେ ଦୁଃଖ ଚିତ୍ତ
କିସ ଅବା ବିପତ୍ତି ତୋ ହୋଇଛିରେ ସୁତ ।
ପାଣ୍ଡବଙ୍କୁ ସପକ୍ଷ ହୋଇଣ ତୁ ଗଲୁ
ଭାରତ ଯୁଦ୍ଧ କିପରି ହେବାର ଦେଖିଲୁ ।
ତାହା ସବୁ ବିସ୍ତାରିଣ କହ ମୋ ଆଗରେ
ଶୁଣିବାକୁ ବହୁ ଶ୍ରଦ୍ଧା ଜନ୍ମିଛି ଚିତ୍ତରେ ।
ପ୍ରଥମରୁ ଆଜିଯାଏ ତୁହି ତହିଁ ଥିଲୁ
କିଏ ସେ ମଲା କିଏ ସେ ବର୍ତ୍ତିଲେ ଦେଖିଲୁ ।
ଶ୍ରୀହରି ବୋଲନ୍ତି ତାତ କର ଅବଧାନ
ଆଦ୍ୟ ଯୁଦ୍ଧ ମାଘ ଶୁକ୍ଳ ପ୍ରତିପଦା ଦିନ ।
ବୁଧବାର ସେହିଦିନ ଧନିଷ୍ଠାର ଭୋଗ
ବାଳବ ନାମେ କରଣ ଶୁଭନାମେ ଯୋଗ ।
ତିନିଉଣା ଲକ୍ଷେରାଜା ମାନଗୋବିନ୍ଦର
ପାଣ୍ଡବଙ୍କ ପକ୍ଷେ ଏକଉଣା ତ୍ରିହଜାର ।
ବିଶାଶତ ପଦ୍ମ ତିନିକ୍ଷଉଣୀ ପଦାତି
ଏତେକ ସୈନ୍ୟ ହୋଇଲେ କୌରବ ସଙ୍ଗତି ।
ସତୁରି ସହସ୍ର ରାଜା ଦୁର୍ଯ୍ୟୋଧନ ଭାଗେ
ତିନିଉଣା ତ୍ରିଂଶସସ୍ର ପାଣ୍ଡବଙ୍କ ସଙ୍ଗେ ।
ବିଶାଶତେ ପଦ୍ମ ଚାରି ଅରବୁଦ ରଥୀ
ଏତେକ ସୈନ୍ୟ ହୋଇଲେ କଉରବ କତି ।
ପାଣ୍ଡବଙ୍କ ବାଅସ୍ତରୀ କ୍ଷୌଣୀ ଆଟ ସର୍ବେ
କହନ୍ତି ଗୋବିନ୍ଦ ଶୁଣୁଅଛନ୍ତି ସରବେ ।
ଅରବୁଦ ରଥ ଦୁଇ ଅରବୁଦ ହସ୍ତୀ
ଚାରି ଅର୍ବୁଦ ପଦାତି ପାଣ୍ଡବଙ୍କ କତି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆଉ ଅଶ୍ୱଥାମା
ଭୂରିକଶ୍ରବା ବାହ୍ଲିକ ଯେ ସୋମ କୃପବର୍ମା ।
କୌରବଙ୍କ ହେଲେ ତାତ ନବ ମହାରଥି
କେବଳ ଅର୍ଜ୍ଜୁନ ରଥି ପାଣ୍ଡବଙ୍କ ସାଥି ।
ଦୁର୍ଦ୍ଦକ୍ଷ ସଙ୍ଗରେ ଘେନି ଦୁଇକ୍ଷୌଣୀ ସୈନ୍ୟ
ପାଣ୍ଡବଙ୍କ ପକ୍ଷେ ଆସି ପଶିଲା ଶରଣ ।
ପ୍ରଥମଦିନ ଯୁଦ୍ଧରେ ଭୀଷ୍ମ ସେନାପତି
ପାଣ୍ଡବଙ୍କର ମାରିଲେ ଦଶସସ୍ର ରଥି ।
ପନ୍ଦର ସହସ୍ର ମଲେ ଦନ୍ତା ମତ୍ତହସ୍ତୀ
ବିଂଶସସ୍ର ଅଶ୍ୱ ଚାରିକ୍ଷଉଣୀ ପଦାତି ।
ଆଦ୍ୟଦିନ ପାଣ୍ଡବଙ୍କ ଏତେ ସୈନ୍ୟ ମଲେ
ଦୁର୍ଯ୍ୟୋଧନ ପକ୍ଷ ରଥୀ ଅର୍ବୁଦେ ପଡ଼ିଲେ ।
ଦ୍ୱିଅର୍ବୁଦ ହସ୍ତୀ ପଞ୍ଚ ଅରବୁଦ ହୟ
ଦଶକ୍ଷଉଣୀ ପଦାତି ତାଙ୍କ ଗଲେ କ୍ଷୟ ।
ପୁଣି ଯୁଦ୍ଧ ହେଲା ଶୁକ୍ଳ ଦ୍ୱିତୀୟାର ତିଥି
ଶତଭିଷା ନକ୍ଷତ୍ରକୁ ବାର ବୃହସ୍ପତି ।
କୌଳବ ନାମେ କରଣ ଶୁକ୍ଳ ନାମେ ଯୋଗ
ସେହିଦନି ଘୋରତର ହୁଏ ରଣ ରଙ୍ଗ ।
ଦ୍ୱିତୀୟା ଦିନରେ ଭୀଷ୍ମ କୋଟି କୋଟି ରଥୀ
ପାଞ୍ଚ ଅଇବ୍ରତ ତିନି କ୍ଷଉଣୀ ପଦାତି ।
ତିନି ଅଇବ୍ରତ ଅଶ୍ୱ ମାଇଲେ ସମରେ
ପାଣ୍ଡବଙ୍କ ପକ୍ଷରୁ ଏତେ ଗଲେ ଯମଘରେ ।
ମାନଗୋବିନ୍ଦର ମଲେ ତିନିକୋଟି ରଥୀ
ନବକୋଟି ଅଶ୍ୱ ଆଉ ପାଞ୍ଚକୋଟି ହସ୍ତୀ ।
ଷୋଳକ୍ଷଉଣୀ ପଦାତି ବଳ ତାର ମଲେ
ଯୁଦ୍ଧ ହେଉ ହେଉ ରବି ଅସ୍ତମିତ ହେଲେ ।
ଭୋ ତାତ ମକରଶୁକ୍ଳ ତୃତୀୟାରଦିନ
ଭୃଗୁବାର ପୂର୍ବଭାଦ୍ର ତାର ବିଦ୍ୟମାନ ।
କିସ୍ତୁଘ୍ନ ନାମେ କରଣ ଅମୃତ ନାମେ ଯୋଗ
ସେଦିନ ସମରେ ବାହି ପଡ଼ିଲେ ମାତଙ୍ଗ ।
କୌରବଙ୍କ ପକ୍ଷେ ଥିଲା ଭୀଷ୍ମ ମହାରଥୀ
ପାଣ୍ଡବଙ୍କର ହୋଇଲା ଶ୍ୱେତ ସେନାପତି ।
ଏକଲକ୍ଷ ରଥ ପୁଣି ବେନିଲକ୍ଷ ହସ୍ତୀ
ଚାରିଲକ୍ଷ ଅଶ୍ୱ ଚାରିକ୍ଷଉଣୀ ପଦାତି ।
ଭୀଷ୍ମ ବଧିଲେ ପାଣ୍ଡବ ପକ୍ଷ ଏତେ ବଳ
ବହୁତ ସମର କଲା ବିରାଟର ବାଳ ।
ମାନଗୋବିନ୍ଦର ମଲେ ଚାରି ଲକ୍ଷ ରଥୀ
ଷଡ଼ଲକ୍ଷ ଅଶ୍ୱେ ଯୋଦ୍ଧା ନବଲକ୍ଷ ହସ୍ତୀ ।

ଷୋଳକ୍ଷଉଣୀ ପଦାତି ସମରେ ପଡ଼ିଲେ
ଆଦିତ୍ୟ ଅସ୍ତ ହୁଅନ୍ତେ ରଣ ବନ୍ଦ କଲେ ।
ଭୋ ତାତ ଚଉଠି ଦିନ ସୌରିବାର ଜାଣ
ଉତ୍ତରଭାଦ୍ର ନକ୍ଷତ୍ର ବିଷ୍ଟି ଯେ କରଣ ।
ମହାଗୋଳ ରଣ ଯୋଗ ହେଲା ସେ ଦିନର
ଅଷ୍ଟାଦଶ କ୍ଷୌଣୀ ମଲେ କଉରବଙ୍କର ।
ପାଣ୍ଡବଙ୍କର ପଡ଼ିଲେ ପାଞ୍ଚକ୍ଷୌଣୀ ବଳ
ଶ୍ୱେତକୁମାର ପଡ଼ିଲା ତିନିଘଡ଼ି ବେଳ ।
ମକରଶୁକ୍ଳ ପଞ୍ଚମୀ ଦିନ ଅର୍କବାର
ରେବତୀ ନକ୍ଷତ୍ରକୁ ଯେ ଭୋଗ ସେ ଦିନର ।
ବିଷ୍ଟି ନାମରେ କରଣ ଯୋଗ ପ୍ରୀତିନାମେ
ସେଦିନ ଉଭୟବଳ ପଡ଼ିଲେ ସଂଗ୍ରାମେ ।
ପାଣ୍ଡବଙ୍କର ପଡ଼ିଲେ ପଞ୍ଚାଶ ନୃପତି
ଅଶୀସସ୍ର ରଥୀ ସହ ବେନିଲକ୍ଷ ହସ୍ତୀ ।
ଚାରିଲକ୍ଷ ଅଶ୍ୱଯୋଦ୍ଧା ଚାରିଲକ୍ଷ ବଳ
ପାଣ୍ଡବଙ୍କର ପଡ଼ିଲେ ଏତେକ ସକଳ ।
ଦୁର୍ଯ୍ୟୋଧନର ପଡ଼ିଲେ ନବଶତ ଯୋଦ୍ଧା
ନବଲକ୍ଷ ରଥୀବର ଫାଟିଗଲା ମୁର୍ଦ୍ଧା ।
ଷୋଳ କ୍ଷଉଣୀ ସଇନି ତହିଁ ଗଲେ ନାଶ
ବେଳ ତିନିପ୍ରହରକେ ରଣ ହେଲା ଶେଷ ।
ମକର ଶୁକଳ ପକ୍ଷ ଷଷ୍ଠୀ ଚନ୍ଦ୍ରବାର
ଦଶକ୍ଷୌଣୀ ବଳ ମଲେ କଉରବଙ୍କର ।
ପାଞ୍ଚ ଅଇବ୍ରତ ହସ୍ତୀ ବେନିଲକ୍ଷ ହୟେ
ପନ୍ଦର କ୍ଷୌଣୀ ପଦାତି ତିନିସସ୍ର ରାୟେ ।
ଏତେକ ସଇନି ନାଶ କଉରବଙ୍କର
ତିନିକ୍ଷୌଣୀ ସର୍ବେ ମଲେ ପାଣ୍ଡବ ପକ୍ଷର ।
ସେଦିନ ସମର କଲେ ଭୀଷ୍ମ ସେନାପତି
ପାଣ୍ଡବଙ୍କର ମାଇଲେ ଦଶସସ୍ର ରଥୀ ।
ସପ୍ତମଦିନ ସଂଗ୍ରାମ ଶୁଣ ମନଦେଇ
କୁରୁକ୍ଷେତ୍ରେ ଦୁଇବଳ ଭେଟାଭେଟି ହୋଇ ।
ଲକ୍ଷେ ମତ୍ତହସ୍ତୀ ସଙ୍ଗେ ବେନିଲକ୍ଷ ରଥୀ
ପାଞ୍ଚଲକ୍ଷ ଅଶ୍ୱ ଚାରି କ୍ଷଉଣୀ ପଦାତି ।
ଏତେ ସୈନ୍ୟ ପାଣ୍ଡବଙ୍କ ଭୀଷ୍ମ ନାଶ କଲେ
ଲକ୍ଷେ ଯୋଦ୍ଧା କୌରବଙ୍କ ସେଦିନ ପଡ଼ିଲେ ।
ଚାରିଲକ୍ଷ ଅଶ୍ୱଗଜ କୋଟିଏ ପଦାତି
ଆହୁରି ପଡ଼ିଲେ ତହିଁ ସହସ୍ରେ ନୃପତି ।
ହେ ତାତ ଅଷ୍ଟମଦିନ ମଲେ ଅଗଣତି
ସେଦିନ ଭୀଷ୍ମ ମାଇଲେ ବାରସସ୍ର ରଥୀ ।
ଶତସସ୍ର ପାରିଦଣ୍ଡ ତ୍ରିଅର୍ବୁଦ ନାଗ
ବାରକ୍ଷଉଣୀ ସଇନି ଲକ୍ଷେକ ତୁରଙ୍ଗ ।
କୌରବ ପକ୍ଷରୁ ମଲେ ବାରସସ୍ର ଗଜ
ନ ଲକ୍ଷ ରଥ ପନ୍ଦରଲକ୍ଷ ପୁଣି ଗଜ ।
ତିନିକୋଟି ହୟବର କୋଟିଏ ପଦାତି
ଏତେ ମାରି ଜୟ କଲେ ଭୀଷ୍ମ ସେନାପତି ।
ନବମ ଦିନରେ ହେଲା ଘୋର ରଣ ରଙ୍ଗ
ସେଦିନ ଭୀଷ୍ମ ମାଇଲେ ନ ଲକ୍ଷ ତୁରଙ୍ଗ ।
ତିନି ସହସ୍ର ରାଜନ ଚାରିସସ୍ର ହସ୍ତୀ
ଅଶ୍ୱଯୋଦ୍ଧା ଲକ୍ଷେ ଚାରି କ୍ଷଉଣୀ ପଦାତି ।
ଦଶମ ଦିନରେ ଭୀଷ୍ମ ଯୁଦ୍ଧ କରି ତେଜ୍ୟା
ରଣ ଭୂଇଁରେ ଶୋଇଲେ ଶର କରି ଶଯ୍ୟା ।
ମକର ଶୁକ୍ଳପକ୍ଷ ଏକାଦଶୀ ଦିନ
ପୂର୍ବଫାଲଗୁନୀ ନକ୍ଷତ୍ର ଅଟେ ବିଦ୍ୟମାନ ।
ଏହିଦିନ ସେନାପତି ହୋଇଲେକ ଦ୍ରୋଣ
ଚକ୍ରବ୍ୟୂହ ଗୋଟିଏ ଯେ କଲେକ ନିର୍ମାଣ ।
ବହୁତ ସମର କଲା ଅଭିମନ୍ୟୁ ବାଳ
ପାଞ୍ଚଲକ୍ଷ ରଥୀ ମାରେ ପଲକ ଭିତର ।
ଆଠଲକ୍ଷ ଗଜ ଯୋଦ୍ଧା ଦଶଲକ୍ଷ ହୟେ
ଅଲେଖା ବଳ ପଡ଼ିଲେ ଅଭିମନ୍ୟୁ ଘାଏ ।
ନ ପାରିଣ ଦୁର୍ଯ୍ୟୋଧନ ତାକୁ କଲା କଟ
ଗୋଳ କରି ଯୁଦ୍ଧ କଲେ ତହୁଁ ବାଟ ଥାଟ ।
ଜଳଧର ଯୁଦ୍ଧେ ଗଲା ଘେନି ଅର୍ଜ୍ଜୁନକୁ
ଦୁଃଶାସନ ନାଶ କଲା ସେ ଅଭିମନ୍ୟୁକୁ ।
ଚଉଦ ଲକ୍ଷ ମେଳଛ ଯୋଦ୍ଧା ଦଳବଳ
ଏକା ଅର୍ଜ୍ଜୁନ ସମରେ କରିଲେ ନିର୍ମୂଳ ।
ଭୋ ତାତ ମକର ଶୁକ୍ଳ ଦୁଆଦଶୀ ବାର
ଉତ୍ତରାଫାଲଗୁନୀ ତାରା ଅଟେ ସେ ଦିନର ।
ଶକଟବ୍ୟୂହ ରଚିଲେ ଦ୍ରୋଣ ସେନାପତି
ଗଲେ ସେ ବ୍ୟୂହକୁ ଭେଦି ପାର୍ଥ ମହାରଥୀ ।
ସାତ୍ୟକି ଭୀମ ଚଳିଲେ ପଛେ ପଛେ ତାର
ମୁକୁଟ ଯୋଦ୍ଧା ପଡ଼ିଲେ ତହିଁ ଲକ୍ଷେଥର ।
ଗଜ ଯୋଦ୍ଧା କୋଟିଏ ଯେ ଅଶ୍ୱ ପାଞ୍ଚକୋଟି
ଭୂରିଶ୍ରବା ତୁଲେ ଏବେ ହୋଇଗଲେ ମାଟି ।
ବତିଶଦ୍ୱାରେ ବତିଶ ସସ୍ର ଥିଲେ ରାୟ
ଏକା ଏବେ ନାଶକଲେ ବୀର ଧନଞ୍ଜୟ ।
ଜୟଦ୍ରଥ ପଡ଼ିଲା ଯେ ରବିଅସ୍ତ କାଳେ
ଷୋଳକ୍ଷଉଣୀ ପଡ଼ିଲେ ସେ ଦିନର ରୋଳେ ।
ସେହି ରାତ୍ରରେ ପୁନଶ୍ଚ ସମର ହୋଇଲା
କର୍ଣ୍ଣ ବଜ୍ର ଶକ୍ତି ହାତେ ଘଟୋତ୍କଚ ମଲା ।
ଘଟୋତ୍କଚର ନନ୍ଦନ ଘଟୁକ ଯେ କ୍ଷତ୍ରୀ
ଏହାର ତୁଲେ ପଡ଼ିଲେ ଦଶସସ୍ର ରଥୀ ।

ଦ୍ରୁପଦ ନାମରେ ଥିଲେ ପାଞ୍ଚାଳର ରାୟେ
ପାଞ୍ଚଲକ୍ଷ ଯୋଦ୍ଧା ସହ ମଲେ ଦ୍ରୋଣଯାଏ ।
ମଘ ଦେଶର ରାଜନ ଅଟଇ ବିରାଟ
ସମରେ ପଡ଼ିଲେ ତିନିକ୍ଷୌଣୀ ଘେନି ଥାଟ ।
ମରୁତ ଦେଶର ରାଜା ଭୀମ ଚକ୍ରବର୍ତ୍ତୀ
ପାଞ୍ଚଲକ୍ଷ ହସ୍ତୀସହ ଗଲେ ଯମ କତି ।
ମଙ୍ଗଳ ଦେଶର ରାଜା ନାମ ଅରଜୁନ
ଅଶ୍ୱତ୍ଥାମାଙ୍କ ସଙ୍ଗରେ ହୋଇଲା ନିଧନ ।
ପଦ୍ମବଳ ଦେଶ ରାଜା ପଦ୍ମନକେଶରୀ
ଦୁଃଶାବାଣେ ନାଶ ହେଲା ଘେନି ଅଶ୍ୱକାରୀ ।
ବୃନ୍ଦାଅର୍କ ଦେଶ ରାଜା ନାମ ମାନସିଜ
ଦୁର୍ଜ୍ଜୟଚେତା ମାଇଲା ନବସସ୍ର ଗଜ ।
ମହ୍ଲାର ଦେଶର ରାଜା ଅଟଇ ତ୍ରିଗର୍ତ୍ତ
କର୍ଣ୍ଣ ମାଇଲା ତା ତୁଲେ ରଥୀ ଅଇବ୍ରତ ।
ନିର୍ଝର ଦେଶର ରାଜା ନାମ ଗଣପତି
ଦୁଃଶା ନାଶିଲା ତା ଦେହ ସାତସସ୍ର ରଥୀ ।
ଅର୍ବୁଦେକ ରଥ ପାଞ୍ଚ ଅର୍ବୁଦେ ସେ ଗଜ
ନବ ଅର୍ବୁଦ ତୁରଙ୍ଗ ପାଞ୍ଚକ୍ଷୌଣୀ ଗଜ ।
ଶ୍ରୀକୃଷ୍ଣ ବୋଇଲେ ତାତ ଏତିକି କହିଲି
ପାଣ୍ଡବ ପକ୍ଷରୁ ଏବେ ମରିଥିଲେ ବୋଲି ।
ଦୁର୍ଯ୍ୟୋଧନର ପକ୍ଷରୁ ମଲେ ବହୁସୈନ୍ୟ
ଥୋକାଏ କହିବି ତାତ ସାବଧାନେ ଶୁଣ ।
ଘଟୋତ୍କଚ ସମରେ ଯେ ମଲା ଅଳମ୍ବୁଷ
ଅଳାୟୁଧ ତୁଲେ ମଲେ ଅର୍ବୁଦେ ରାକ୍ଷସ ।
ଦୁର୍ଯ୍ୟୋଧନର ଶ୍ୱଶୁର ଅଟେ ଭୁତମନ୍ୟୁ
ସାତସସ୍ର ସହ ମଲେ ଦିଗାନ୍ତର ସୁନୁ ।
ମାଳବ ଦେଶର ରାଜା ନାମ କୃତବର୍ମା
ପାଞ୍ଚଲକ୍ଷ ସହ ମଲା ହସ୍ତୀ ଅଶ୍ୱତ୍ଥାମା ।
ବିଡ଼ଙ୍ଗ ଦେଶର ରାଜା ବଡ଼ଙ୍ଗ ସୁମାଳି
ଲକ୍ଷେ ଯୋଦ୍ଧା ସହ ସେହୁ ପଡ଼ିଲାକ ଢଳି ।
କୁମୁଦ ଦେଶର ରାଜା ଅଟେ ଚନ୍ଦ୍ର ମୌଳି
ନବକ୍ଷୌଣୀ ରାଜାସହ ପଡ଼ିଲାକ ଭୂମି ।
ଚନ୍ଦ୍ର ସୁବାହୁ ଅଟଇ ବଙ୍ଗଦେଶ ରାୟେ
ପାଞ୍ଚକ୍ଷୌଣୀ ବଳ ତୁଲେ ସେହୁ ନାଶଯାଏ ।
ପ୍ରଭାତରେ ଅସ୍ତ୍ର ତ୍ୟାଗ କଲେ ଦ୍ରୋଣଗୁରୁ
ଧୃଷ୍ଟଦ୍ୟୁମ୍ନ ତାଙ୍କ ଶିର ଛେଦିଲାକ ଦୂରୁ ।
ତାହା ଶୁଣି ବାସୁଦେବ କରନ୍ତି ଉତ୍ତର
ଭାର୍ଗବ ସମାନେ ସେହୁ ଅଟେ ବୀରବର ।
ବିନା ରଣେ କିମ୍ପା ହେଲା ତାଙ୍କ ଶିର ହାଣ
ସନ୍ଦେହ ହେଉଛି ବାପ କହ ସେ କାରଣ ।

ଗୋବିନ୍ଦ ବୋଇଲେ କଲେ ବହୁଶର ବୃଷ୍ଟି
ଅଶ୍ୱତ୍ଥାମା ଗଜକୁ ଯେ ଭୀମ ଦେଲା ପିଟି ।
ଅଶ୍ୱତ୍ଥାମା ହତ ବୋଲି ଶୁଭିଲାକ ବାଣୀ
ଦ୍ରୋଣଗୁରୁ ଅସ୍ତ୍ରତ୍ୟାଗ କଲେ ଏହା ଶୁଣି ।
ଧୃଷ୍ଟଦ୍ୟୁମ୍ନଙ୍କର ସେ ଯେ ପିତାର ବଇରି
ଧାତିକାରେ ଦ୍ରୋଣଙ୍କୁ ସେ ପକାଇଲା ମାରି ।
ସେ ମାରନ୍ତେ ଦୁର୍ଯ୍ୟୋଧନ ହୋଇଲା ବ୍ୟାକୁଳ
ସେନାପତିରେ ବରିଲା କର୍ଣ୍ଣ ମହାବୀର ।
ମାଘ ଶୁକ୍ଳ ତ୍ରୟୋଦଶୀ ପୁଣି ଚନ୍ଦ୍ରବାର
ପୂର୍ବ ଫାଲଗୁନୀ ନକ୍ଷତ୍ର ହୁଏ ସେଦିନର ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ମକର ସଂକରାନ୍ତିକି ଅଷ୍ଟଦିନ ଭୋଗ ।
ପଞ୍ଚଦଶ ଦିନ ଯୁଦ୍ଧ ହୋଇଲାକ ଏବେ
ଆରଦିନ ସେନାପତି ହୋଇଲେ ରାଘବେ ।
ଷୋଳଦିନେ ସେନାପତି ହେଲେ କର୍ଣ୍ଣବୀର
ଦୁର୍ଯ୍ୟୋଧନର ଭାକୁ ମାରେ ବୃକୋଦର ।
ପାଞ୍ଚ ଅରବୁଦ ରଥୀ ଦଶର୍ବୁଦ ହସ୍ତୀ
ବାଇଶ କ୍ଷଉଣୀ ତାର ପଡ଼ିଲେ ପଦାତି ।
ପାଣ୍ଡବଙ୍କର ପଡ଼ିଲା ତିନିସସ୍ର ରଥ
ପାଞ୍ଚ ଅରବୁଦ ଅଶ୍ୱ ଗଜ ତ୍ରିଅୟୁତ ।
ଆରେକ ଦିନ ସମର କରଇ ଯେ କର୍ଣ୍ଣ
ମକର ଶୁକଳପକ୍ଷ ଚତୁର୍ଦ୍ଦଶୀ ଦିନ ।
ନବଲକ୍ଷ ହସ୍ତୀ ଘେନି କଳିଙ୍ଗ ଯେ ଥିଲା
ଭୀମ ଗଦା ବୁଲାନ୍ତେ ସେ ଗଗନେ ଉଡ଼ିଲା ।
ସାତକ୍ଷୌଣୀ ବଳ ନବଲକ୍ଷ ଯେ ମାତଙ୍ଗ
ଗଗନ ମଣ୍ଡଳେ ଯାଇ ଉଡ଼ିଲେକ ବେଗ ।
ସୁହସ୍ତା ହସ୍ତୀର ପୃଷ୍ଠେ ଭୃଗୁଦତ୍ତ ରାଜା
ଲକ୍ଷେ ରାଜା ତୁଲେ ସେହୁ କଲା ଭୂମିଶଯ୍ୟା ।
ଗୁଞ୍ଜୀର ମଗଧ ସଉରାଷ୍ଟ୍ର କଉଶିକ
କନାଉଜ ରାଜା କ୍ଷତ୍ରୀ ପଡ଼ିଲେ ଅନେକ ।
ଏମନ୍ତ ସମୟେ ହେଲା ବେଳ ପାଞ୍ଚଘଡ଼ି
ଭୀମ ଦୁଃଶାସନ ହେଲେ ହାବୁଡ଼ା ହାବୁଡ଼ି ।
ଦୁଃଶା ଭୁଜ ଉପାଡ଼ିଣ ବୀର ବୃକୋଦର
ରୁଧିର ଦେଲାକ ନେଇ ଦ୍ରୌପଦୀର ଶିର ।
ବାସୁଦେବ ବୋଇଲେ ଯେ ସେ ଅତି ମହତ
ଲକ୍ଷ୍ମୀ ସମା କିମ୍ପା ତାର ରୁଧିରରେ ଚିତ୍ତ ।
ଗୋବିନ୍ଦ ବୋଇଲେ ଦୁର୍ଯ୍ୟୋଧନ ମନ୍ତ୍ର ବୋଲେ
ଯୁଧିଷ୍ଠିଙ୍କୁ ନେଇ କୂଟପଶା ଖେଳାଇଲେ ।
ପଶାଖେଳେ ଯୁଧିଷ୍ଠିର ହାରିଲେ ସକଳ
ପାଞ୍ଚଭାଇ ଯାଇଣ ବସିଲେ ସଭାତଳ ।

ଦ୍ରୌପଦୀଙ୍କୁ ଆଣ ବୋଲି ଦୁଃଶାକୁ ବୋଇଲା
ଦୁଃଶାସନ ପବନହୁଁ ବେଗେ ଚଳିଗଲା ।
ପାଞ୍ଚାଳୀ ଲୁଚନ୍ତେ ସେହୁ ଧଇଲା ତା ବାଳ
ଶୂନ୍ୟରେ ଟେକିଣ ତାକୁ ଆଣିଲା ଚଣ୍ଡାଳ ।
ଜାନୁ ସ୍ତନ ଦେଖିବାକୁ ରାଜା କରି ମନ
ଦୁଃଶା ହାତେ କରାଇଲା ତାଙ୍କୁ ବିବସନ ।
ବିରଞ୍ଚି ନାରାୟଣ ତା ଦେଖିଲେ ଗଗନେ
ସତୀଙ୍କୁ ଝିଙ୍ଗାସ ବୋଲି ଭୟ କରି ମନେ ।
ଏକବର୍ଣ୍ଣ ପାଟବସ୍ତ୍ର ପଞ୍ଚାବନ କୋଟି
ଛାୟାକନ୍ୟା ବେଢ଼ାଇଲେ ଦ୍ରୌପଦୀ ଦେହଟି ।
ଭୀଷ୍ମ ଦ୍ରୋଣ ଏକା ଦେଖି ହୋଇଲେ ବ୍ୟାକୁଳ
କେହୁ ବସ୍ତ୍ର କୁଢ଼ାଇଲେ ମେରୁସମ ତୁଲ ।
ସେ ପାମର ମୂର୍ଖେ କେହି ନ ପାରିଲେ ବାରି
ଦ୍ରୌପଦୀଙ୍କୁ ବହୁ କଷ୍ଟେ ଦେଲେ ଅବିଚାରି ।
ବହୁତ ଝିଙ୍ଗାସି ବାକ୍ୟ ତାହାଙ୍କୁ ବୋଇଲେ
ତହୁଁ କୋପେ ନେତ୍ର ଟେକି ଦେବୀ ଚାହିଁଦେଲେ ।
ଦୋହରା ଘରୁ ତାହାର ଉଠିଲା ବହନି
ତ୍ରାସ କରି ପଳାଇଲେ କୌରବ ସଇନୀ ।
କେଶ ଧରି ଯେଦିନୁ ଆଣିଲା ଦୁଃଶାସନ
ସେହିଦିନୁ ସତୀ କେଶ ନ କଲେ ବନ୍ଧନ ।
ଦ୍ରୌପଦୀ ପ୍ରତିଜ୍ଞା କରି କହିଲେ ରେ ଦୁଃଶା
କାଳସର୍ପ ଧଇଲୁ ତୁ ଏଡ଼େକି ଭରସା ।
ମୋହର କେଶ ଧଇଲୁ ଯେବଣ ଭୁଜରେ
କରିବି ସ୍ନାହାନ ସେହି ଭୁଜ ଶୋଣିତରେ ।
ତେବେ ତ ବାନ୍ଧିବି ମୁହିଁ କେଶକୁ ମୋହର
ଚୌଦବର୍ଷ ସାତମାସ କେଶ ତା ମୁକୁଳ ।
ଭୋ ତାତ ଦ୍ରୌପଦୀ ବୋଲି ଯେଉଁ ଯାଜ୍ଞସେନୀ
ଅଗ୍ନିରୁ ଜାତ ତାହାକୁ କଲେ ବ୍ୟାସମୁନି ।
ଭୋ ତାତ ପଞ୍ଚପାଣ୍ଡବେ ତାଙ୍କୁ ହୁନ୍ତି ଲାଗି
ଏକ ଶବର ପାଞ୍ଚକୁ ଦ୍ୟନ୍ତି ଅଙ୍ଗଲାଗି ।
ଭୋ ତାତ ପଞ୍ଚପାଣ୍ଡବେ ତାହାଙ୍କର ପତି
ତେବେ ହେଁ ଦ୍ରୌପଦୀ ଦେବୀ ବୋଲାନ୍ତିରେ ସତୀ ।
ଯେ ପଞ୍ଚଭ୍ରାତାଙ୍କୁ ଭୋଗ ଦିଏ ପଞ୍ଚରାତି
ପ୍ରଥମ ଦିନ ଶୟନ ଯୁଧିଷ୍ଠିର କତି ।
ଯେଉଁ ରାତ୍ରୀ ଏକ ସ୍ୱାମୀ ସଙ୍ଗେ କଲେ ଭୋଗ
ପ୍ରଭାତୁ ଉଠିଣ ଯାଇ ଅନଳରେ ଯୋଗ ।
ସେ କାୟାକୁ ଦାହ କରି ଶୋଧେ ମହାସତୀ
ପୁଣି ଅନ୍ୟ କାୟେ ଭୋଗେ ଅନ୍ୟ ଏକ ପତି ।
ଅନ୍ୟ କାୟେ ଘେନି ପୁଣି ଭୀମସେନ ଲାଗି
ସେ ରାତ୍ରକ ଭୀମସେନ ହୁଅଇ ଯେ ଭୋଗୀ ।
ପ୍ରଭାତେ ବହ୍ନିରେ ପୁଣି ପଶଇ ସେ ଯାଇ
ସେ କାୟା ତେଜିଣ ନବକାୟା ସେ ବହଇ ।
ଦିନକୁ ଦିନ ଧରିଣ ଅଭିନବ ଅଙ୍ଗ
ପାଞ୍ଚଦିନେ କରଇ ସେ ପାଞ୍ଚପତି ସଙ୍ଗ ।
କୃଷ୍ଣ ବୋଇଲେ ପାଣ୍ଡବ ଜାଣ ପଞ୍ଚଭୂତ
ବ୍ରହ୍ମା ବିଷ୍ଣୁ ଶିବ ଇନ୍ଦ୍ର ଅଟଇ ମରୁତ ।
ସବୁ ସତୀ କରିଥାନ୍ତି ଜଳରେ ସ୍ନାହାନ
ଦ୍ରୌପଦୀ ଅଗ୍ନିରେ ସ୍ନାନ କରେ ପ୍ରତିଦିନ ।
ଏକେ ରମିଲେ ଉଚ୍ଛିଷ୍ଟ ଆନେ ହୁଏ ବୋଲି
ଅଗ୍ନିରେ ବାହୁଡ଼ି ଦେବୀ କରେ ପାଞ୍ଚଓଳି ।
ଆହେ ତାତ ଦ୍ରୌପଦୀର ଏମନ୍ତ ମହିମା
ଯାହାର କୋପକୁ ଭୟ କରିଥାନ୍ତି ବ୍ରହ୍ମା ।
ତାହାର କେଶ ଧଇଲା ମୂର୍ଖ ଦୁଃଶାସନ
ବୁଝ କଉରବଙ୍କର ଭରସା କେସନ ।
ତେଣୁ କରି ଭୀମ ତାର ଉପାଡ଼ିଲା ବାହୁ
ସେ ରକତେ ସ୍ନାନ କରି ତୃପ୍ତ ହେଲେ ସେହୁ ।
କୃଷ୍ଣ ତାତ ମାତା ଶୁଣି ଆଶ୍ଚର୍ଯ୍ୟ ହୋଇଲେ
ବୋଇଲେ ମୂର୍ଖପଣରେ କୁରୁବଂଶ ମଲେ ।
ଭୋ ତାତ ଦୁଃଶା ପଡ଼ନ୍ତେ ହେଲା ମହାଗୋଳ
ସେଦିନୁ ପଡ଼ିଲେ ପୁଣି କର୍ଣ୍ଣଙ୍କର ବଳ ।
କର୍ଣ୍ଣର ତୁଲେ ପଡ଼ିଲେ ତିନିକୋଟି ରଥୀ
ପାଞ୍ଚକୋଟି ଅଶ୍ୱ ଚାରିକୋଟି ମତ୍ତହସ୍ତୀ ।
ପଡ଼ିଲେ ପଦାତି ପାଞ୍ଚକୋଟି କର୍ଣ୍ଣ ତୁଲେ
ଆରଦିନ ସେନାପତି ଶଲ୍ୟବୀର ହେଲେ ।
ଯୁଧିଷ୍ଠିଙ୍କି ଶଲ୍ୟବୀର ବହୁ ଦୁଃଖ ଦେଲେ
ତାହାଙ୍କ କୋପରେ ସେହୁ ପୋଡ଼ିହୋଇ ମଲେ ।
ତିନିଶ ରାଜା ପଞ୍ଚାଶ ହସ୍ତୀ ଯେ ପଡ଼ିଲେ
ଆହୁରି ଅନେକ ସୈନ୍ୟ ମଲେ ତା ସଙ୍ଗରେ ।
ସହସ୍ରେକ ତୁରଙ୍ଗମ ଚାରିକ୍ଷୌଣୀ ବଳ
ଶଲ୍ୟ ତୁଲେ ଆହେ ତାତ ପଡ଼ିଲେ ସକଳ ।
ମକର ଶୁକ୍ଳପକ୍ଷ ପୂର୍ଣ୍ଣିମାର ତିଥି
ପୂର୍ବ ଫାଲଗୁନୀ ନକ୍ଷତ୍ରେ ମଲେ ଶଲ୍ୟରଥୀ ।
ଶୁଣ ତାତ ସାବଧାନେ ଯୁଦ୍ଧ ଶେଷକଥା
ଶଲ୍ୟପରେ ସେନାପତି କୃପ ମହାରଥା ।
ଅପାର ସମର ସେହି ହେଲା ସେ ଦିନର
ଏକୋଇଶ କ୍ଷୌଣୀବଳ ମଲେ ପାଣ୍ଡବର ।
ବିଶେଷେ ବ୍ରାହ୍ମଣ ସେହୁ ଯୁଦ୍ଧେ କାମରଥ
ସଂଗ୍ରାମ କରନ୍ତେ ତାକୁ ନ ଜିଣିଲେ ପାର୍ଥ ।
ନୀଳବାଣ ଭୁଜବାଣ ବୋଲି କରି ବେନି
କୋପରେ ପେଶିଲେ ତାହା ବୀରଫାଲଗୁନୀ ।

ହରିହର ଅଟନ୍ତି ସେ ଦୁଇଗୋଟି ବାଣ
କୃପଙ୍କର ଶିରଚ୍ଛେଦ କଲେ ସେ ଯାଇଣ ।
ଅର୍ଜୁନ ଆଜ୍ଞାରେ ତାକୁ କଲେ ବେନିଖଣ୍ଡ
ବ୍ରହ୍ମହତ୍ୟା ଯୋଗୁ ପୁଣି ଲଗାଇଲେ ମୁଣ୍ଡ ।
ମହାମନ୍ତ୍ର ଉଚ୍ଚାରିଣ ମୃତ୍ୟୁ ସଞ୍ଜୀବନୀ
କୃପଙ୍କୁ ଜୀଆଇଲେ ସେ ମହାବାଣ ବେନି ।
ପଳାଇଲେ କୃପ ତହିଁ ନ ରହି ସମରେ
ପଶିଲେ ସେଠାରୁ ଯାଇଁ ନିର୍ଜନ ବନରେ ।
ସେଦିନ ସମର ତାତ ହେଲା ଗୁରୁତର
ପଡ଼ିଣ ଅସଂଖ୍ୟ ବଳ ଗଲେ ଯମପୁର ।
କଉରବଙ୍କର ଥିଲା ନବଲକ୍ଷ ହସ୍ତୀ
ତିନିକୋଟି ତୁରଙ୍ଗମ ପାଞ୍ଚକୋଟି ରଥୀ ।
ବତିଶସସ୍ର ପଦାତି ସସ୍ରେ ପାରିଦଣ୍ଡ
ଗଦା ସମରେ ପଡ଼ିଲେ ଶେଷେ ସର୍ବ ପିଣ୍ଡ ।
ସାତଅକ୍ଷୌଣୀ ବଳ ପାଣ୍ଡବଙ୍କ ଥବଲେ
ପାଞ୍ଚକ୍ଷୌଣୀ ମରି ଦୁଇକ୍ଷଉଣୀ ରହିଲେ ।
ସେଦିନ ସମର ହେଲା ଅର୍ଦ୍ଧରାତ୍ରଯାଏ
ଲେଉଟିଲେ ପାଞ୍ଚମୂର୍ତ୍ତି କରି ରଣେ ଜୟେ ।
ଦୁର୍ଯ୍ୟୋଧନ ରକ୍ତ ନଦୀ ମଧ୍ୟେ ଲୁଚିଥିଲା
ନିଃଶବ୍ଦ ବେଳରେ ତହୁଁ ପଳାଇଣ ଗଲା ।
ବ୍ୟାସସରୋବରେ ଯାଇ ପଶିଲେ ଶରଣ
ଯେ ମହାଲିଙ୍ଗ ତାହାକୁ କରିଲେ ରକ୍ଷଣ ।
ଜୟ କରିଣ ପାଣ୍ଡବେ ଗଲେ ଇନ୍ଦ୍ରପ୍ରସ୍ଥେ
ଅର୍ଘ୍ୟଘେନ ବୋଲି କୁନ୍ତୀ ବୋଇଲେ ଯେ ମୋତେ ।
କେ ମାଇଲା କହ ବାବୁ ମାନଗୋବିନ୍ଦକୁ
ଜ୍ୟେଷ୍ଠ ବା କନିଷ୍ଠ ହେଉ ଅର୍ଘ୍ୟ ଦେବି ତାକୁ ।
ଦୁର୍ଯ୍ୟୋଧନକୁ ମାରିବା ନ ଜାଣିଲେ କେହି
ପୁଣି ହିଁ ଧାଇଁଲେ ସର୍ବେ ରଣ ରଙ୍ଗଭୂଇଁ ।
ମଡ଼ାମାନ ଲେଉଟାଇ ଚିହ୍ନିଲେ ସମସ୍ତ
ଲୋଡ଼ି ନ ପାଇଲେ କେହୁ ରାଜା କୁରୁନାଥ ।
ସହଦେବ ବୋଲେ ବ୍ୟାସସରେ ଅଛି ପଶି
ଭୀମସେନ ମାଗୁଁ ସିଂହନାଦ ଦେଲେ କାଶୀ ।
ତହୁଁ ଭୀମ ସେ ନାଦକୁ ଦେଲେ ଗଳଗାଜି
ସହି ନ ପାରି ରାଜନ ଆସେ ସର ତେଜି ।
ଅନେକ ଯୁଦ୍ଧ ହୋଇଲା ବ୍ୟାସସର ତୀର
ଦୁର୍ଯ୍ୟୋଧନ ଜାନୁଭଗ୍ନ କଲା ବୃକୋଦର ।
ଦୁର୍ଯ୍ୟୋଧନ ରାଜା ଜାନୁ ଯହୁଁ ହେଲା ଭଗ୍ନ
ପାଦେ ମୁକୁଟ ମର୍ଦ୍ଦିଲା ତହୁଁ ଭୀମସେନ ।
ପାଣ୍ଡବେ ଚଳିଲେ ତହୁଁ ରଣ ଜୟ କରି
ପ୍ରବେଶ ହୋଇଲେ ଯାଇ ଜଇନ୍ତା ନଗରୀ ।

ମାତାଙ୍କୁ କହିଲେ ଯାଇ ଧର୍ମଦେବ ସ୍ୱାମୀ
ପାଞ୍ଚରାତ୍ର ନ ରହନ୍ତି ଜୟ କଲା ଭୂମି ।
କୁନ୍ତୀ ଦ୍ରୌପଦୀ ସୁଭଦ୍ରା ପାଣ୍ଡବ ସହିତେ
ନନ୍ଦିଘୋଷ ରଥେ ବସି ଆସିଲେ ସେ ଏଥେ ।
ବାଳୁତ ବୋଲି ପାଞ୍ଚାଳୀ କୁମରଙ୍କୁ ଶ୍ୱାଇ
ଧୃଷ୍ଟଦ୍ୟୁମ୍ନର ପୁରରେ ଅଇଲୁ ଜଗାଇ ।
ତିନିସସ୍ର ରଥୀ ନବସସ୍ର ଗଜସିଂହ
ଦ୍ୱିସସ୍ର କ୍ଷୌଣୀ ସେନା ବତିସସ୍ର ରାୟ ।
ଯାଙ୍କଦ୍ୱାରା ଜଗାଇଣ ପଞ୍ଚକୁମରଙ୍କୁ
ଆମ୍ଭ ସଙ୍ଗେ ଅଇଲେ ସେ ଦ୍ୱାରକାପୁରକୁ ।
ଏକାଳେ ଅଶ୍ୱତ୍ଥାମାକୁ ରାଜା କୁରୁପତି
ପାଣ୍ଡବ ବିନାଶ ପାଇଁ କରେ ସେନାପତି ।
ସେ ଅଶ୍ୱତ୍ଥାମା ଆସିଲା ମହାନିଶାକାଳେ
ଦୁଇକ୍ଷୌଣୀ ପଦାତିକ ମାରେ ଏକାବେଳେ ।
ଗଜ ଅଶ୍ୱ ଯୋଦ୍ଧା ଆଉ ସର୍ବ ପରିଦଣ୍ଡ
ଖଡ଼ଗ ଘେନି ଛେଦିଲା ସବୁରିଙ୍କ ମୁଣ୍ଡ ।
ଧୃଷ୍ଟଦ୍ୟୁମ୍ନେ ଦେଖି ତାର ପିତାର ବଇରୀ
ଭିତର ଦ୍ୱାରେ ପଶିଣ ତାହାକୁ ସଂହାରି ।
ଦେଖିଲା କୁମାରେ ଶୋଇଥିଲେ ପଲ୍ୟଙ୍କର
ପାଣ୍ଡବ ବୋଲି ଛେଦିଲା ସବୁରିଙ୍କ ଶିର ।
ପଞ୍ଚମୁଣ୍ଡ ଭାର କରି ଘେନିଣ ରାତ୍ରରେ
ଦୁର୍ଯ୍ୟୋଧନ ପାଶେ ଚଳେ ପାହାନ୍ତି ପହରେ ।
ଦେଖି ବହୁତ ହରଷ ହେଲା କୁରୁନାହା
ବୋଲେ ସାଧୁ ଅଶ୍ୱତ୍ଥାମା ସାଧୁ ତୋର ବାହା ।
ଅପାର ପ୍ରଶଂସା କରୁ ପାହିଲା ରଜନୀ
ପାଞ୍ଚାଳୀ କୁମର ବୋଲି ଦୁର୍ଯ୍ୟୋଧନ ଚିହ୍ନି ।
ହରଷ ଛାଡ଼ି ରାଜନ ବିରସ ହୋଇଲା
କୁମରଙ୍କୁ ଦେଖି ଶୋକେ ପରାଣ ଛାଡ଼ିଲା ।
ସାବଧାନେ ଶୁଣ ତାତ ଶ୍ରୀକୃଷ୍ଣ କହନ୍ତି
ଅତି କର୍କଶ ଅଟଇ ମାନଚକ୍ରବର୍ତ୍ତୀ ।
ବରବେଶ ହୋଇ ସେହୁ ଥାଇ ନିରନ୍ତର
ଦେବାସୁର ବ୍ରହ୍ମାକୁ ହିଁ ନ କରେ ଜୁହାର ।
ଭୋ ତାତ କୁରୁପାଣ୍ଡବ ଏଡ଼େ ବଡ଼ ବଂଶ
ଏକା ଦୁର୍ଯ୍ୟୋଧନ ଲାଗି କୁରୁବଳ ନାଶ ।
ଉତ୍ତରରେ ଏକ ଊଣା ସହସ୍ର ଚତୁର
ନୃପତିମାନେ ବସନ୍ତି ନୁଆଇଣ ଶିର ।
ବସନ୍ତି ତିନି ସହସ୍ର ରାଜା ପୂର୍ବକତି
ଏକଊଣା ସାତ ସସ୍ର ଦକ୍ଷିଣେ ବସନ୍ତି ।
ଦୁଇଊଣା ପାଞ୍ଚସସ୍ର ପଶ୍ଚିମେ ନୃପତି
ଚତୁର୍ଦ୍ଦିଗେ ସେହିଭାବେ ବେଢ଼ିଣ ବସନ୍ତି ।

ବ୍ରହ୍ମା କ୍ଷତ୍ରି ବୈଶ୍ୟ ଶୂଦ୍ର ଦାନବ ରାକ୍ଷସ
ବନ୍ଧ ଲୁବଧକ ମହ୍ଲାର ଆଦି ଅଷ୍ଟବଂଶ ।
ନିମନ୍ତ୍ରଣେ ଆସି ତିନି ଊଣା ଲକ୍ଷେ ରାଜା
ଯେ ଯାହାର ଅନୁଯାୟୀ କଲେ ପାଦପୂଜା ।
ଚାରିଦିଗେ ସତାଣୋଇ ସହସ୍ର ନୃପତି
ଏତେକ ହୋଇଲେ ମାନଗୋବିନ୍ଦର କତି ।
ବାଆସ୍ତରୀ ପଦ୍ମ ହସ୍ତୀ ପାଞ୍ଚପଦ୍ମ ରଥ୍
ବିଶାଶତ ସିନ୍ଧୁ ଯୋଦ୍ଧା ଦୁର୍ଯ୍ୟୋଧନ କତି ।
ପାଣ୍ଡବଙ୍କ ପକ୍ଷେ ତିନି ଅରବୁଦେ ରଥ୍
ବତିଶ ସହସ୍ର ଅଶ୍ୱ ଅରବୁଦେ ହସ୍ତୀ ।
ବାସ୍ତିରିକ୍ଷୌଣୀ ପଦାତି ଅର୍ଦ୍ଧଲକ୍ଷ ଯୋଦ୍ଧୀ
ଏତେକ ଘେନି ପାଣ୍ଡବେ ହୋଇଲେ ପ୍ରସିଦ୍ଧି ।
ପାଣ୍ଡବଙ୍କ ପକ୍ଷରୁ ଯେ ଗଲେ ଏତେ ବଳ
ଦୁଇସସ୍ର ବାଆସ୍ତରି କ୍ଷୌଣୀ କୁରୁବଳ ।
ପୂର୍ବରେ ପାଣ୍ଡବ ଥିଲେ ପଶ୍ଚିମେ କୌରବେ
ପ୍ରଥମରେ ସେନାପତି ହୋଇଲେ ଗାଙ୍ଗବେ ।
ଦଶଦିନ ଭୀଷ୍ମ ଶରଶଯ୍ୟା କଲେ ଯୁଦ୍ଧେ
ଦ୍ରୋଣ ନାଶହେଲେ ପାଞ୍ଚ ଦିବସର ମଧ୍ୟେ ।
କର୍ଣ୍ଣ କୃପ ଶଲ୍ୟ ତିନିଦିବସେ ନିଧନ
ଅଷ୍ଟାଦଶ ଦିବସରେ ସର୍ବେ ହେଲେ ଲୀନ ।
ଭୋ ତାତ ଏତେକ ବଳ ଉଭୟରୁ ମଲେ
ସେଥିମଧ୍ୟୁ ତେରଜଣ ବର୍ତ୍ତିଣ ରହିଲେ ।
ବସୁଦେବ ବୋଇଲେ ରେ କହ ନାରାୟଣ
ଏଡ଼େ ସମରେ ରହିଲେ କେକେ ତେରଜଣ ।
ଗୋବିନ୍ଦ ବୋଇଲେ ତାତ ସାବଧାନେ ଶୁଣ
ଆଦ୍ୟେ ବଞ୍ଚିଲେ ପାଣ୍ଡବ ଭ୍ରାତା ପାଞ୍ଚଜଣ ।
ଦ୍ରୋଣ କୁମର ସଞ୍ଜୟ କୃପ ଧୃତରାଷ୍ଟ୍ର
ବିଦୁର ସାତ୍ୟକି ମାନଗୋବିନ୍ଦ କନିଷ୍ଠ ।
ଦୁର୍ଦ୍ଦକ୍ଷ ଯୁଧିଷ୍ଠିଠାରେ ପଶିଲା ଶରଣ
ଆମ୍ଭଙ୍କୁ ମିଶାଇ ତେଣୁ ହେଲା ତେରଜଣ ।
ଆଉମାନେ ସମସ୍ତେ ଯେ ମଲେ ଘୋର ଯୁଦ୍ଧେ
ତେରଜଣ ମାତ୍ର ବର୍ତ୍ତିଗଲେ ରଣ ମଧ୍ୟେ ।
ଏହା ଶୁଣି ଉଗ୍ରସେନ କଲା ବହୁ ସ୍ତୁତି
ତୁହି ପ୍ରଭୁ ଚରାଚର ଲୋକଙ୍କର ଗତି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ଜାତି
ଚାରିଖାନି ଚୌରାଶୀକି ଏକା ତୁହି ଗତି ।
ଦେବଲୋକେ ନବଲକ୍ଷ ପାରୁ ତୁ ଏ ବିଧି
ସତୁରିଲକ୍ଷ ଜୀବ ଯେ ଶୂନ୍ୟରେ ସମ୍ଭବି ।
ପରବତମାନଙ୍କୁ ଯେ ଆଠଲକ୍ଷ ଗଣି
ଏକୋଇଶ ଲକ୍ଷେ ତେଜ ନାମକୁ ବଖାଣି ।
ପାତାଳରେ ନବଲକ୍ଷ ଛଡ଼ ନାଗଲୋକ
ଚତୁଲକ୍ଷ ଯମଲୋକେ ଜୀବନ ଦର୍ଶକ ।
କ୍ଷୀର ପାନରେ ଅଛନ୍ତି ଆଠଲକ୍ଷ ଜୀବ
ଏକୋଇଶ ଲକ୍ଷ ଅଣ୍ଡ ଜୀବଙ୍କର ଧ୍ରୁବ ।
ଏକଲକ୍ଷ ଜୀବଜନ୍ତୁ ଜଳରେ ବଞ୍ଚନ୍ତି
ତୁମ୍ଭପାଇଁ ବିପଦରୁ ସର୍ବଦା ତରନ୍ତି ।
ତୀରରେ ରହି ବର୍ତ୍ତନ୍ତି ଜୀବ ଚାରିଲକ୍ଷ
ଏକଲକ୍ଷ ଚାରିଖାନି ଅଟଇ ପ୍ରତ୍ୟକ୍ଷ ।
ନବଲକ୍ଷ ବୃକ୍ଷର ଯେ ନାହିଁ ଗନ୍ଧବାସ
ଚାରିଲକ୍ଷ ବୃକ୍ଷଙ୍କର ସୁଗନ୍ଧ ବିଶେଷ ।
ମୂଳରେ ଫଳନ୍ତି ଫଳ ଆଠ ଲକ୍ଷ ବୃକ୍ଷ
ଡାଳରେ ଫଳନ୍ତି ଫଳ ଏକୋଇଶ ଲକ୍ଷ ।
ସ୍ୱାମୀ ଏକୋଇଶ ଚାରିଖାନି ଜୀବଜନ୍ତୁ
ସ୍ୱେଦ ଅଣ୍ଡଜ ତା ତହୁଁ ଉତ୍ପତ୍ତି କଲୁ ତୁ ।
ଆପ ତେଜ ପୃଥିବୀ ଯେ ବାୟବ୍ୟ ଆକାଶ
ଏ ପଞ୍ଚମହାଭୂତ ତୋ ଶରୀରୁ ପ୍ରକାଶ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
ତୁମ୍ଭର ଭିଆଣ ସବୁ ଅଟେ ଦେବହରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଶୂନ୍ୟ ରସାତଳ
ନିତଳ ବିତଳ ମହୀତଳ ସପ୍ତତଳ ।
ସତାଇଶ ବଇକୁଣ୍ଠ ତୋ ତହୁଁ ଉତ୍ପତ୍ତି
ତୋ ଲୋମକୂପରେ କେତେ ବ୍ରହ୍ମାଣ୍ଡର ସ୍ଥିତି ।
ମତ୍ସ୍ୟ କଚ୍ଛପ ବରାହ ନୃସିଂହ ବାମନ
ପର୍ଶୁରାମ ଶ୍ରୀରାମ ଯେ ତୁହି ଭଗବାନ ।
ବଉଦ୍ଧ କଳକୀ ଆଦି ଯେତେ ଅବତାର
କାଳର ଉଦରରୂପେ ବହୁ ତୁ ସଂସାର ।
ସ୍ୱାମୀ ଖ୍ୟାତ ଅନ୍ତ ମଧ୍ୟେ ଅକାଳ ଅନାମ
ପୁରୁଷଙ୍କର ଉତ୍ତମ ଯେଉଁ ସ୍ୱାମୀ ନାମ ।
ତୁଳସୀର ବଲ୍ଲଭ ଯେ ସହଦେବ ପାଦେ
ମୁଁ ଶୂଦ୍ରମୁନି ଶାରଳାଦାସ ସଦା ବନ୍ଦେ ।

—o—

## ଅଶ୍ୱତ୍ଥାମା ବାଇଁଶିକାଶର ମାରିବା ଓ ଶ୍ରୀକୃଷ୍ଣଙ୍କର ପ୍ରତିଅସ୍ତ୍ର

ଏଥୁଅନ୍ତେ ଅଗସ୍ତିଙ୍କୁ ମୁନି ନୃପବର
ବିନୟ ଭାବେ ବୋଇଲେ ଯୋଡ଼ି ବେନି କର ।
କହ ମହାମୁନି ମୋତେ ସଦୟ ହୋଇଣ
ଏହାପରେ କେଉଁ କଥା ହୋଇଲା ଘଟଣ ।
ଶ୍ରୀହରି କୃପ ଦ୍ରୋଣଙ୍କୁ ଠକାଇଣ ଦେଲେ
ତହିଁପରେ କୃପଦ୍ରୋଣ କେଉଁ କୃତ୍ୟ କଲେ ।

ଏହା ଶୁଣିବାକୁ ମୋର ହୋଇଅଛି ମନ
କହିଣ ସନ୍ଦେହ ଦୂର କର ତପୋଧନ ।
ରାଜାର ବିନୟ ଭକ୍ତି ଶୁଣି ମୁନିବର
ବୋଇଲେ ଶୁଣ ହେ ରାଜା ମନ କରି ସ୍ଥିର ।
ନାରାୟଣ କୃପ ଦ୍ରୋଣ ଦୁହିଁଙ୍କୁ ଭଣ୍ଡିଣ
ଅସ୍ତ୍ର ଶସ୍ତ୍ର ନେଇଗଲେ ଦ୍ୱାରକା ଭୁବନ ।
କୃପ ଅଶ୍ୱଥାମା ଭୟେ ଦେବ ନାରାୟଣ
ପାଣ୍ଡବଙ୍କୁ ଦ୍ୱାରକାରେ ରଖିଲେ ଗୁପ୍ତେଣ ।
ଶୁଣ ସାଧୁଜନେ ଏବେ ମନକର୍ଣ୍ଣ ଦେଇ
ଯେଉଁ ମହାଋଷି କଳ୍ପଜୀବୀ ସେ ଅଟଇ ।
ବାଳକାଳେ ସାତସମୁଦ୍ରକୁ ଯେ ଲୀଳାରେ
ସହଜରେ ଯୋଗବଳେ ଶୋଷିଲେ ଗର୍ଭରେ ।
ମହାପ୍ରଳୟରେ ନାରାୟଣ ଗର୍ଭେ ଥାଇଁ
ସଂସାରର ସର୍ବ ଘଟଣାମାନ ଦେଖଇ ।
ମହାଯୋଗାଧି ପୁରୁଷ ବ୍ରହ୍ମ ପରାୟଣ
ବ୍ରହ୍ମ ପ୍ରଳୟକୁ ମଣେ ଦିବସ ସମାନ ।
ଯାହାଙ୍କ ମହିମା ଯେ ଦେବଙ୍କୁ ଅଗୋଚର
ସତ୍ୟ ତ୍ରେତା ଦ୍ୱାପର କଳି ଚାରିଯୁଗର ।
ମହାଯୋଗେ ବସିଥାନ୍ତି ମୃତ୍ୟୁଙ୍କୁ ଜିଣିଣ
ସେ ଅଗସ୍ତି ମୁନି ପାଦେ ମୋର ନିବେଦନ ।
ନ ପଢ଼ି ପଣ୍ଡିତ ମୁହିଁ ଶାରଳା ପ୍ରସନ୍ନେ
ଜନ୍ମରୁ ମୂରୁଖ ଅଟେ ନ ପାରେ ଲେଖନେ ।
ତାହାଙ୍କ ପ୍ରସାଦେ ମୋତେ ଯାହା ହୁଏ ଦୃଶ୍ୟ
ତାହା ମୁହିଁ ଲେଖୁଅଛି କରିଣ ସାହସ ।
ସେ ବେନି ପଦ୍ମପାଦକୁ ସଦା କରି ଆଶ
ତୁଳସୀ କାନ୍ତକୁ ସେବେ ଶାରଳାର ଦାସ ।
ଭକ୍ତ ବୈବସ୍ୱତ ମନୁ ଶ୍ରୋତା ହୋଇଛନ୍ତି
ବ୍ରହ୍ମା ପଣ୍ଡିତ ଅଗସ୍ତି ତାହାଙ୍କୁ କହନ୍ତି ।
ଧର୍ମ ଅର୍ଥ କାମ ମୋକ୍ଷ ମିଳେ ଚଉବର୍ଗ
ଯମଦଣ୍ଡ ନ ରହଇ ପ୍ରାପ୍ତ ସୁଖସ୍ୱର୍ଗ ।
ଦାରା ପୁତ୍ର ଧନଦ୍ରବ୍ୟ ସବୁ ଅଟେ ମିଛ
ବିଷ୍ଣୁଲୋକେ ବସିବାକୁ ହୃଦଗତେ ଇଚ୍ଛ ।
କୃପ ଅଶ୍ୱଥାମାଙ୍କର ଭୟରେ ଶ୍ରୀହରି
ପାଣ୍ଡବଙ୍କୁ ଦ୍ୱାରକାରୁ ବାହାର ନ କରି ।
ଆଗରୁ କପଟ କରି ଦେବ ନରହରି
ଆଣିଲେ ତାଙ୍କର ଅସ୍ତ୍ର ସବୁ ଚୋରି କରି ।
ରଜନୀ ପ୍ରଭାତ ହେଉ କୃପ ଅଶ୍ୱଥାମା
ପର୍ବତେ ଡାକନ୍ତେ କେଣେ ଗଲ ହେ ମହାତ୍ମା ।
ଲୋଡ଼ିଣ ନ ପାଇ ତାଙ୍କୁ ଚାହାଁନ୍ତି ଚୌକତି
ବାଘ ଭାଲୁ ଖାଇଲେ ବା ମନରେ ଚିନ୍ତନ୍ତି ।
ଦୈତ୍ୟ କିନ୍ନର-ପିଶାଚ ଅଛନ୍ତି ବିଶେଷ
ବ୍ରାହ୍ମଣ ଗୋଟିକୁ ବନେ କରିଲେ ବିନାଶ ।
ଗହନ ବନସ୍ତେ ଯାଇ ନ ପାବନ୍ତେ ଲୋଡ଼ି
କପାଳ ମୋଚନ ପାଶେ ଅଇଲେ ବାହୁଡ଼ି ।
ଓଡ଼ପା ତୀର୍ଥକୁ ଆସି ଦେଖନ୍ତି ଅନ୍ୱେଷି
ପଦଚିହ୍ନ ପଡ଼ିଅଛି ଥିଲା କିଏ ପଶି ।
ପୁଣି ଦେଖିଲେ ବାହୁଡ଼ି ଯିବା ପାଦଚିହ୍ନ
ବିକଶିତ ପଦ ପ୍ରାୟ ହୁଏ ଶୋଭମାନ ।
ବିଚାରିଲେ କେଉଁ ରାଜା ଏଥେ ଗଲା ପଶି
ଆମ୍ଭ ଅସ୍ତ୍ରମାନଙ୍କୁ କେ ଘେନିଗଲା ଆସି ।
ଧ୍ୟାନରେ ଜାଣିଲେ ତହୁଁ କୃପ ଦ୍ୱିଜବର
କପଟେ ଅସ୍ତ୍ର ହରଣ କଲେ ଚକ୍ରଧର ।
ଏକେ ପ୍ରତ୍ୟକ୍ଷେ ଜାଣିଲେ ଦ୍ୱିଜ ଅଶ୍ୱଥାମା
ଅଜ୍ଞାନ ବାଳକ ବଧ ପାପ ନୁହେଁ କ୍ଷମା ।
କୃପାଚାର୍ଯ୍ୟ ବୋଇଲେ ତୁ ଶୁଣ ଆରେ ଦ୍ରୋଣୀ
ପାଞ୍ଚାଳୀ ପୁତ୍ରଙ୍କୁ ତୁହି ପକାଇଲୁ ହାଣି ।
ତେଣୁ କରି ଶ୍ରୀକୃଷ୍ଣଙ୍କୁ ହେଲା ମହାଭୟ
ଜଗତ ବନ୍ଦନନାଥ ରଚିଲେ ଉପାୟ ।
ଆମ୍ଭେ ତୁଲେ ଥିଲେ କୃଷ୍ଣ ମାୟାରୂପ ଧରି
କପାଳମୋଚନ ଅସ୍ତ୍ର ନେଲେ ଚୋରି କରି ।
ଧ୍ୟାନ କରିଣ କହିଲେ ଯହୁଁ କୃପବ୍ରହ୍ମା
ଅଧରକୁ କମ୍ପାଇଲେ ରାଗେ-ଅଶ୍ୱଥାମା ।
ଏତେକ କୃତ୍ୟ ଯଦ୍ୟପି କଲା ଦେବରାଜ
କେମନ୍ତେ ପାଣ୍ଡବେ ରକ୍ଷା କରିବଟି ଆଜ ।
ମାରିବି ପାଣ୍ଡବ ଆଜ କୃଷ୍ଣଙ୍କ ସହିତ
ଦ୍ୱାରକା ଭୁବନ ନିଶ୍ଚେ କରିବି ନିପାତ ।
ଶୁଣି କୃପ ବୋଇଲେ ତୁ ଶୁଣ ଅଶ୍ୱଥାମା
କୃଷ୍ଣ ତୁଲେ କିସ ତୋର ଏଡ଼େକ ଗାରିମା ।
ଦ୍ରୋଣ ବୋଇଲେ ମାମୁଁ ହେ ଦେଖ ମୋର ଜିତା
ମୋର ସଙ୍ଗେ ଶ୍ରୀକୃଷ୍ଣର ଏଡ଼େ ଦର୍ପ କଥା ।
ଏପରି ପଣ କହନ୍ତେ ଦ୍ରୋଣୀ ମହାକ୍ଷତ୍ରୀ
କୃପ ବୋଲେ କିସ ଘେନି କୃଷ୍ଣଙ୍କୁ ଅପ୍ରୀତି ।
ତୋହର ହସ୍ତରେ ନାହିଁ କୌଣସି ଆୟୁଧ
କିସ ଘେନି ପାଣ୍ଡବଙ୍କୁ କରିବୁ ତୁ ବଧ ।
କୃପଙ୍କ ବଚନ ଶୁଣି ଭରଦ୍ୱାଜ ନାତି
କାଇଁଶିକା ବୃକ୍ଷ ଏକ ଦେଖିଲେ ସେ କତି ।
ଆକର୍ଷି ଉପାଡ଼ିଲେ ସେ ବୃକ୍ଷରୁ ଗୋଟିଏ
ଅତି କୋପେ ଥରହର ହୁଏ ତାର କାୟେ ।
ନଖରେ ଚିରିଣ ତାହା ବେନିଫାଳ କରି
ଏକ ଫାଳକରେ ଧନୁ କରିଲେ ତିଆରି ।

ଆନ ଫାଳକରୁ ଅନ୍ତ ଯତନ୍ତେ ଛଡ଼ାଇ
ତାହାକୁ ମୋଡ଼ିଣ ଗୁଣ ଦେଲାକ ଚଢ଼ାଇ ।
ନାରାଚ କଲେ କାଂଶିକା ଅଗ୍ରଭାଗ ଗୋଟି
ଧନୁରେ ପୂରାନ୍ତେ ତେଜ ଦିଶିଲା ଚହଟି ।
ତଦୁତ୍ତାରୁ ମହାମନ୍ତ୍ରେ ଅଭିଷେକ କଲେ
ଦୁଇଗୁଣ ତେଜ ବଢ଼େ ସୂର୍ଯ୍ୟର ପ୍ରକାରେ ।
ଅଶ୍ୱତ୍ଥାମା ବୋଇଲା ତୁ ଶୁଣ ବ୍ରହ୍ମଶର
ଏକ୍ଷଣି ଶିର ଛେଦିବୁ ପଞ୍ଚପାଣ୍ଡବର ।
ଯେବେ ଚକ୍ର ଆବୋରିବେ ଅବା ଚକ୍ରଧର
ପାଣ୍ଡବ ସହିତ ନେବୁ ତାହାଙ୍କର ଶିର ।
ପୁଣି ବୋଇଲେ ଯାଦବ ହରି ସାତବଂଶ
ସମସ୍ତଙ୍କୁ ଛେଦିବୁ ତୁ ନ ରଖିଣ ଲେଶ ।
ଏମନ୍ତ ତିଆରି କରି ମହାମନ୍ତ୍ର ବଳେ
ଛାଡ଼ିଲା କାଂଶିକା ଶର ଗଗନ ମଣ୍ଡଳେ ।
ଛାଡ଼ନ୍ତେ ଆକାଶେ ମହାବାୟୁ ବେଗେ ଉଠି
ଦ୍ୱାରକା ଆକାଶେ ଯାଇ ଶର ଗଲା ଘୋଟି ।
ଯେସନେ ଉଲକାପାତ ହୁଅଇ ଆକାଶୁ
ମହୀ ହେଲା ଟଳମଳ କାଇଁଶିକା ଖସୁ ।
ଶୂନ୍ୟକୁ ଭେଦୀ ଯେସନ ଆସଇ ଅରୁଣ
ଦିବ୍ୟଭୁବନ ଘୋଟିଲା ଅଶ୍ୱତ୍ଥାମା ବାଣ ।
ବାଣ ତେଜେ ହତ ହେଲା ଆଦିତ୍ୟର ଜ୍ୟୋତି
ଦ୍ୱାରକା ଲୋକେ ଭୟରେ ଥରହର ହୁନ୍ତି ।
ଭୋ କୃଷ୍ଣ ଶରଣ ରଖ ଶୂନ୍ୟେ ଶୁଭେ ବାଣୀ
ଆଉଟି ହୁଅନ୍ତି ଲୋକେ ଯେହ୍ନେ ସିନ୍ଧୁପାଣି ।
କୃଷ୍ଣ ପଚାରିଲେ ଆହେ ଶୁଣ ସହଦେବ
ଯୁଗାନ୍ତକ ପ୍ରାୟେ ମୋତେ ଦିଶେ ଏହି ଭାବ ।
ସହଦେବ ବୋଲେ ସ୍ୱାମୀ ଶୁଣ ମଧୁରିପୁ
ତୁ ଦେବ ସକଳ ସ୍ଥାନେ ସଂସାରକୁ ସ୍ଥାପୁ ।
କୃପ ଅଶ୍ୱତ୍ଥାମାଙ୍କର ନେଲୁ ଧନୁଦ୍ରୋଣ
କୋପେ ଦ୍ରୋଣି ପେଶିଅଛି କାଇଁଶିକାବାଣ ।
ଅଶ୍ୱତ୍ଥାମା ମହାମନ୍ତ୍ରେ ତେଜସ୍ୱୀ ଅଟଇ
ପେଷନ୍ତେ ମେରୁ ପର୍ବତ ଫୁଟାଇ ପାରଇ ।
ଯଦି ବା ତୋ ଦ୍ୱାରକାରେ ପଡ଼ିବ ଏକ୍ଷଣି
ଛପନକୋଟି ଯାଦବ ଯିବଟି ସେ ହାଣି ।
ଶୁଣି କରି ମହାକୋପ କରିଲେ ଅଚ୍ୟୁତ
ଏହାକୁ ଯେ ପ୍ରତିଶର କରିବା ଉଚିତ ।
ଶ୍ରୀକରେ କୋଦଣ୍ଡକାଣ୍ଡ ଧରି ଦେବ ହରି
ଅଶ୍ୱତ୍ଥାମା ଶରେ ଶର ପ୍ରତି କଛ କରି ।
ବିନ୍ଧିଲେ ପର୍ବତାଶର ତହୁଁ ବନମାଳୀ
କାଂଶିକା ଶର ତେଜରେ ସେହୁ ଗଲା ଜଳି ।
ଲକ୍ଷେକ ପର୍ବତ ଯହୁଁ ହୋଇଗଲା ଭସ୍ମ
ଦେଖିଣ ବିସ୍ମୟ ହେଲେ ପୁରୁଷ ଉତ୍ତମ ।
ଲକ୍ଷେ ଯୋଜନ କାଶିକା ମହାଶର ଥିଲା
ଅଶୀସହସ୍ର ଯୋଜନେ ଆସିଣ ମିଳିଲା ।
କୋପେଣ ନିର୍ଘାତଶର କେଶବ ପେଶିଲେ
କାଇଁଶିକା ଶରେ ବାଜି ଶତଖଣ୍ଡ ହେଲେ ।
ପୁଣି ହିଁ ପେଷିଲେ ଦେବ ଶତଧାରା ଶକ୍ତି
କାଇଁଶିକା ଶରେ ପଡ଼ି ହେଲା ଭସ୍ମଗତି ।
ଅଶୀ ସହସ୍ର ଯୋଜନେ କାଇଁଶିକା ଥିଲା
ଷାଠିଏ ସହସ୍ର ଯୁଣେ ଆସିଣ ମିଳିଲା ।
ପୁଣି ହିଁ ପେଷିଲେ ଦେବେ ଅମୋଘ ଶକତି
କାଇଁଶିକା ଶରେ ପଡ଼ି ହେଲା ଭସ୍ମଗତି ।
ଷାଠିଏ ସସ୍ର ଯୋଜନେ କାଇଁଶିକା ଥିଲା
ଚାଳିଶ ସସ୍ର ଯୋଜନେ ପ୍ରବେଶ ହୋଇଲା ।
ପୁଣି ନାରାଚ ପେଷିଲେ ହରି ତୀକ୍ଷ୍ଣମୁନା
କାଇଁଶିକା ଶରେ ବାଜି ହୋଇଗଲା ଚୂନା ।
ଚାଳିଶସସ୍ର ଯୋଜନେ କାଇଁଶିକା ଥିଲା
ବିଂଶସହସ୍ର ଯୋଜନେ ଆସିଣ ମିଳିଲା ।
କୋପେ ପେଶିଲେ କେଶବ ତେଜାନଳ ବାଣ
କାଇଁଶିକା ପରେ ପଡ଼ି ଲିଭିଲା ତକ୍ଷଣ ।
ବିଂଶ ସହସ୍ର ଯୋଜନେ କାଇଁଶିକା ଥିଲା
ଦଶସହସ୍ର ଆସିଣ ନିକଟ ହୋଇଲା ।
ମହୀସ୍ଥଳେ ଥିଲା ଯେତେ ତୃଣ କାଷ୍ଠାବଳି
ଶସ୍ତ୍ର ତେଜ ଲାଗି ସର୍ବେ ଗଲେ ତହୁଁ ଜଳି ।
ସହଦେବ ବୋଲେ ସ୍ୱାମୀ ନ ଘୁଞ୍ଚଇ ତେଣେ
ଦ୍ୱାରକା ଭୁବନ ତୋର ଦହିବ ଏକ୍ଷଣେ ।
ଅପାଲଟ ଶର ଅଟେ ସେଇ କାଇଁଶିକା
ସମସ୍ତ ଦହନ କରି ଚଳଇ ସେ ଏକା ।
ଦ୍ରୋଣି କହିଛି ଶ୍ରୀକୃଷ୍ଣ ପାଣ୍ଡବ ସହିତେ
ଯଦୁ ସାତବଂଶ ଛେଦି ଆସ ତୁ ତୁରିତେ ।
ନ ପାରିବ ଆତ୍ମରକ୍ଷା କରି ନାରାୟଣ
ବିଚାର କାହାକୁ ବଳି ଦେବା ଏକଜଣ ।
ତୁ ଦେବ ଜଗଜ୍ଜୀବନ ଚକ୍ରକୂଟ ବୁଦ୍ଧି
ତୋହର ବିଚାରେ ସର୍ବ ହୋଇପାରେ ସିଦ୍ଧି ।
ଗୋବିନ୍ଦ ବୋଇଲେ ତୁମ୍ଭେ ମୋର ପଞ୍ଚଆତ୍ମା
ବିଚାର କାହାକୁ ବଳି ଦେବା ହେ ମହାତ୍ମା ।
ମନ୍ତ୍ରୀ ବୋଇଲେ ଯାହାକୁ ତୋହର ବିଚାର
ଏକ୍ଷଣି ଦିଅ ତୁ ଶୀଘ୍ର ବିଳମ୍ବ ନ କର ।
ଜଣେ ହେଲେ ରକ୍ଷା ଯେବେ ହେବେ ସର୍ବପ୍ରାଣୀ
ହେଳା ନ କରିଣ ନାଥ ଦିଅ ଏହିକ୍ଷଣି ।

ଆମ୍ଭେ ତୋର ବନ୍ଧୁ ବୋଲି ନ କର ଉପ୍ରୋଧ
ବଂଶରକ୍ଷା ହେବ ଦେବ ଏକ ହେଲେ ବଧ ।
ନିରାକାର ପୁରୁଷ ତୁ ସର୍ବ ଜୀବଆତ୍ମା
ସର୍ବ ଜୀବ ଚିନ୍ତାମଣି ଅଟୁ ତୁ ମହାତ୍ମା ।
ତୋହର ଆଜ୍ଞାରେ ସଦା ଚାଲୁଅଛି ବିଧି
ସକଳ ଜୀବନ ନାଥ ଅଟୁ ତୁ ମୌଷଧି ।
ବିଳମ୍ବ ନ କରି ବେଗେ ଉପାୟ ତୁ କର
ଦ୍ୱାରକା ଭୁବନ ପ୍ରଭୁ ନୋହୁ ଛାରଖାର ।
ସର୍ବ ଜୀବଙ୍କର ପ୍ରଭୁ ଅଟୁ ତୁ ନିୟନ୍ତା
ତାର କେଉଁ କଥା ପାଇଁ ପୁଣି କରୁ ଚିନ୍ତା ।
କ୍ଷଣକେ ସଂସାର ରଖ କ୍ଷଣକେ ସଂହାର
ଚଉଦ ବ୍ରହ୍ମାଣ୍ଡ ତୋର ଅଟେ ଖେଳଘର ।
ତୁହି ସ୍ୱାମୀ ରକ୍ଷାକାରୀ ଦେବ ଜଗନ୍ନାଥ
ଶାରଳା ଦାସ ସେ ପଦେ ଶରଣ ନିୟତ ।

—o—

## କାଇଁଶିକା ଶରକୁ ଶ୍ରୀକୃଷ୍ଣଙ୍କ ସ୍ତୁତି, ଉତ୍ତରା ଗର୍ଭସ୍ଥ ବାଳକ ବଳିଦାନ ଓ ଉତ୍ତରାର ଅଚେତନରେ ସମସ୍ତଙ୍କର ଶୋକ

ଏତୁଅନ୍ତେ ବିଲଙ୍କ ଦେଶର ନୃପବର
ଅଗସ୍ତି ମୁନିଙ୍କ ପାଦେ ପଡ଼ିଣ ସତ୍ୱର ।
ଗନ୍ଧ ପୁଷ୍ପ ଧୂପଦୀପେ ପାଦ ପୂଜା କରି
ବିନୟେ ବୋଲନ୍ତି ସେ ବିଲଙ୍କ ଦଣ୍ଡଧାରୀ ।
ଆହେ ମହାମୁନି ମୋତେ ସଦୟ ହୋଇଣ
ଶ୍ରୀମହାଭାରତ କହି କର ପରିତ୍ରାଣ ।
କାଇଁଶିକା ଶରେ ହରି ପ୍ରତିଶସ୍ତ୍ର କଲେ
କିପରି ଘଟଣା ତହିଁ ହେଲା ଦ୍ୱାରକାରେ ।
ରାଜାଙ୍କ ବିନୟ ଭକ୍ତି ଦେଖି ମୁନିବର
ବୋଇଲେ ଶୁଣ ରାଜନ ମନ କରି ସ୍ଥିର ।
ଯେଉଁପରି ଦ୍ୱାରକାକୁ ରକ୍ଷା କଲେ ହରି
ସେ ସବୁ ଘଟଣା ମୁହିଁ କହୁଛି ବିସ୍ତାରି ।
ସହଦେବ କଥା ଶୁଣି କୃଷ୍ଣ ଚିନ୍ତା କଲେ
ପ୍ରତିଅସ୍ତ୍ର ନ କରିଣ ସ୍ତୁତି ଆରମ୍ଭିଲେ ।
ଜୟ ଜୟ ବ୍ରହ୍ମଶର ଅଟୁ ତେଜୀୟାନ
ତୋହର ତେଜେ ସଂସାର ହୋଇବ ଦହନ ।
ନିରାକାରଙ୍କର ମନ୍ତ୍ରେ ଅଭିଷେକ ତୋର
ମହାପ୍ରଳୟରେ ତୁହି ଅଟୁ ଅନିର୍ବାର ।
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ଆଦି ପୁର ତିନି
ଅକ୍ଳେଶରେ ଭେଦିପାରୁ ତୁହି ମହାଜ୍ଞାନୀ ।
ଅନୀତି ଅନ୍ୟାୟମାନ ତୁହି ଯେ ନ ସହୁ
ଅଣାକାର ରୂପ ତୁହି ଶୂନ୍ୟେ ଭେଦି ରହୁ ।
ଯାବତ ଶସ୍ତ୍ର ମଧ୍ୟରେ ତୁହି ଆଦି ଗୁରୁ
ଅଣାକାର ରୂପ ତୁହି ଶୂନ୍ୟେ ଅବତରୁ ।
କାଳାନଳ ରୂପ ତୋର କାଳକର୍ମ ଭେଦି
ଯେ ପେଶେ ଦୁଷ୍କର କାର୍ଯ୍ୟ କରୁ ତାର ସିଦ୍ଧି ।
ଅକ୍ଷୟ ଅଜେୟ ତୁହି ଅଟୁ ମହାବାହୁ
ତୁମ୍ଭର ତେଜକୁ କାର ଅଛଇ ଯେ କହୁ ।
ଅଭୁତେ ଉତ୍ପତ୍ତି ତୋର ଆକାଶ ମଣ୍ଡଳୁ
ଅଣଧନୁ ଆଗମନ ବ୍ରହ୍ମ ଭେଦି ଚଳୁ ।
ଦ୍ରୋଣର ନନ୍ଦନ ଏବେ ମହାବ୍ରହ୍ମଜ୍ଞାତା
ତୋହର ପ୍ରସନ୍ନେ ସେହୁ ହୁଏ ଜଗଜ୍ଜିତା ।
ନମସ୍ତେ ବ୍ରହ୍ମଶର ହେ ଶୂନ୍ୟ ମହୀଭେଦି
ଆଉ ମାନେ ପୃଥୁଳ ତୁ କରୁ ସର୍ବସିଦ୍ଧି ।
ମୁହୂର୍ତ୍ତକେ ପାରୁ କୋଟି ବ୍ରହ୍ମାଣ୍ଡକୁ ଜାଳି
ତୋହର କୋପ କିଏରେ ପାରିବ ସମ୍ଭାଳି ।
ଯାହାର କୋପକୁ ସହି ନ ପାରନ୍ତି ଦେବେ
ମାନବ ହୋଇଣ କିଏ ସହିବ ଏ ଭବେ ।
ଆଦି ଉତପତ୍ତି ତୋର ବ୍ରହ୍ମାର ଅନଳୁ
ଶତକୋଟି ମନ୍ତ୍ର ଘେନି ଶୂନ୍ୟେ ମଧ୍ୟେ ଚଳୁ ।
ଅଜେୟ କ୍ଷତ୍ରିୟ ଅଟେ ଭରଦ୍ୱାଜ ନାତି
ଦେବଶରକୁ ପେଷିଛି ମାନବଙ୍କ ପ୍ରତି ।
କୃଷ୍ଣ ଅବତାରେ ମୁହିଁ ନରଦେହେ ଜନ୍ମି
ଭାରା ନିବାରଣ ଏବେ କରିବି ଅବନୀ ।
ପାଣ୍ଡବଙ୍କ ଉତପତ୍ତି ଭାରା ନିବାରଣେ
ସେ ହେତୁ ପାଣ୍ଡବେ ଜାତ କଲେ ଦେବଗଣେ ।
ଏହାଙ୍କୁ ଘେନି ମାଇଲୁ ଦୁଷ୍ଟଜନମାନେ
ଏହି ସଂସାରେ ଅଛନ୍ତି ବହୁ ଯାତୁଧାନେ ।
ସବୁରି ଠାକୁର ଆମ୍ଭେ ତୋର ନିରିମାକ୍ଷୀ
ତୋହର ବିନୁ ଆମ୍ଭଙ୍କୁ କେ ପାରିବ ରଖି ।
ଦାବାନଳ କାଳାନଳ ପୁଣି ମହାଜ୍ୱାଳା
ପ୍ରାଣାନଳ ବୈଶ୍ୱାନଳ ଅଟୁ ତୁ ପିଙ୍ଗଳା ।
ବ୍ରହ୍ମଅଗ୍ନି ବିଷ୍ଣୁଅଗ୍ନି ରୁଦ୍ରାଗ୍ନି ଦହତି
ଜୀବାନଳ ବଡ଼ବାନଳ ଦାବାନଳ ମୂର୍ତ୍ତି ।
ଆଦିଅନ୍ତ ଅବକାଶ ତୋର ମଧ୍ୟେ ନାହିଁ
ଚଉବିଂଶ ଅଗ୍ନି ମଧ୍ୟେ ତେଜୀୟାନ ତୁହି ।
ତୁ ପୁଣି ଜାତ ହୋଇଛୁ ପ୍ରଳୟ ନିକଟେ
ସମସ୍ତ ଦହିବୁ ଅନୁକୂଳ କଳ୍ପବଟେ ।
ଯେତେବେଳେ ଆଜ୍ଞା ତୋତେ ଦିଏ ପ୍ରଜାପତି
ସମସ୍ତଙ୍କୁ ଦହନ ତୁ କରୁ ଯେ ଝଟତି ।

ବହୁ ବିନୟରେ ସ୍ତୁତି କଲେ ନାରାୟଣ
ପାଣ୍ଡବଙ୍କ ସହ ମୁଁ ଯେ ତୋହର ଶରଣ ।
ଆରେ ଶର ଦୟା ନାହିଁ ତୋରେ ଚିତ୍ତେ ଯେବେ
ଯେ ଇଚ୍ଛା ତୋହର ବୋଲି ଉଭା ହେଲେ ସର୍ବେ ।
ନାରାୟଣଙ୍କର ଯହୁଁ ବିନୟ ଦେଖିଲା
ଅପାଲଟ ଶର ଶୂନ୍ୟେ ପ୍ରତିବାକ୍ୟ ଦେଲା ।
କାଇଁଶିକା ଶର ବୋଲେ ଶୁଣ ନାରାୟଣ
ମୋତେ ଯେ ପେଶିଲା ଦ୍ରୋଣ ନାମକ ବ୍ରାହ୍ମଣ ।
ତା ବାକ୍ୟେ ଯାଦବ ସାତବଂଶ ରଖିଗଲି
ପାଣ୍ଡବଙ୍କୁ ଭୁଞ୍ଜିବି ମୁଁ ଆଜ୍ଞା ଅଛି ବୋଲି ।
ଶ୍ରୀକୃଷ୍ଣ ବୋଇଲେ ମୁହିଁ ପାଣ୍ଡବଙ୍କୁ ଘେନି
ଦୁଃସହ ଭାରା ନିବାର କରିବି ମେଦିନୀ ।
ମୋଢ଼ା ପ୍ରଳମ୍ବା କଦମ୍ବାସୁର ଛନ୍ତି ତିନି
ଏହାଙ୍କୁ ମାରି ଉଶ୍ୱାସ କରିବି ମେଦିନୀ ।
ଯେବେ ନିତାନ୍ତ କଟାଳ କରୁ ବ୍ରହ୍ମବାଣ
ପାଣ୍ଡବଙ୍କୁ ଛାଡ଼ି ମୋତେ କର ତୁ ଭକ୍ଷଣ ।
ଶୁଣି କାଂଶ ବୋଲେ ତୁହି ବ୍ରହ୍ମାଣ୍ଡ ଠାକୁର
ତୋତେ ଦେବାକୁ ଶକତି କାହିଁ ଅଛି ମୋର ।
ତୁହି କରିବାରେ ମୁହିଁ ଅପାଲଟ ଶର
ଏହାକୁ ନ ଦେଲେ ପାପ ହୋଇବ ତୋହର ।
ଶୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ସହଦେବ
କାକୁ ଦେବ କାଇଁଶିକା କରୁ ପରାଭବ ।
ସହଦେବ ବୋଲେ ଦେବ ଶୁଣ ଯଦୁମଣି
ଯେଉଁ କଥା କହୁଛି ମୁଁ ଅଟେ ଗୁପ୍ତବାଣୀ ।
ଅଭିମନ୍ୟୁ ସୁତ ବୀର୍ଯ୍ୟେ ଉତ୍ତରାର ଗର୍ଭେ
ପୁତ୍ରେକ ଅଛଇ ରହି ତାକୁ ଦେବା ଏବେ ।
ସହଦେବଙ୍କ ବଚନ ଶୁଣି ନାରାୟଣ
ସେ ବ୍ରହ୍ମଶରକୁ ଚାହିଁ ବୋଇଲେ ଏସନ ।
ବିରାଟ କନ୍ୟା ଉତ୍ତରାବଳୀ ନାମେ ବାଳୀ
ତା ଗର୍ଭେ ଯେ ଅଛି ତାକୁ ଦେଲୁ ତୋତେ ବଳି ।
ଶର ପଡ଼ିଲା ଉତ୍ତରା ଗର୍ଭ ବ୍ରହ୍ମଦ୍ୱାର
ବାଳକର ପ୍ରାଣ ନାଶି ହୋଇଲା ବାହାର ।
ବ୍ରହ୍ମଶର ମାଇଲା ଯେ ବାଳ ପୁଅ ଗୋଟି
ଉତ୍ତରାର ପାଦବାଟେ ବାହାରିଲା ଫୁଟି ।
ସୁଭଦ୍ରା କୋଳରେ ନିଦ୍ରା ଯାଇଥିଲା ବାଳୀ
ଅସାଷ୍ଟମ ଦେଖି ତାକୁ ଧଇଲେ ସେ ଟୋଳି ।
ଉତ୍ତରା ଉତ୍ତରା ବୋଲି ଡାକନ୍ତି ସୁଭଦ୍ରା
ନ ଦିଏ ସମସ୍ୟା ହୋଇ ଅସାଷ୍ଟମ ନିଦ୍ରା ।
ଧାତିକାରେ ଉଠିଣ ସେ ଅର୍ଜ୍ଜୁନ ହିଆଳୀ
ଦେଖିଲେ ସେ ସୁନ୍ଦରୀକୁ ଦୁଇହସ୍ତେ ଟୋଳି ।

ବିରାଟ ରାଜନନ୍ଦିନୀ ହୋଇ ମତିଭ୍ରମ
ଶରୀରରେ ଜୀବ ନାହିଁ ମୃତ ପ୍ରାଣୀସମ ।
ଉଭୟ କୁଳବଧୂର ହତପ୍ରାଣ ଦେଖି
ମୋହେ ଢଳିପଡ଼ିଲେ ସେ ପାର୍ଥ ପ୍ରାଣସଖୀ ।
ଅନ୍ତଃପୁରରେ ଚହଳ ମୁଖରାବ ଶୁଣି
ସତ୍ୟଭାମା ବିଜେ କଲେ ସଙ୍ଗରେ ରୁକ୍ମିଣୀ ।
ରୁକ୍ମିଣୀ ବୋଇଲେ ମାଗୋ କିସ କଲୁ ପାପ
ଏ ବିଷ୍ଣୁ ବଂଶକୁ କଥା ରହିଲା ଅମାପ ।
ବିଷ୍ଣୁର ବଲ୍ଲଭୀ ତାକୁ କୋଳରେ ଧରନ୍ତେ
ସାଷ୍ଟାମ ହୋଇ ଉତ୍ତରା ଉଠିଲା ତ୍ୱରିତେ ।
କୁମାରୀ ସାଷ୍ଟାମ ହେଉଁ ହେଲା ରଜଭାର
ନିଜସ୍ଥାନ ଛାଡ଼ିଲା ସେ ଗର୍ଭର କୁମର ।
ଫାଲଗୁନ କୃଷ୍ଣପକ୍ଷ ଦଶମୀର ତିଥି
ଅର୍କବାର ଶ୍ରବଣା ଯେ ନକ୍ଷତ୍ର ଯୁକତି ।
ତୈତିଳ କରଣ ରାଜଯୋଟକ ଯେ ଯୋଗ
ନବଘଡ଼ି ରାତ୍ରେ ପୁତ୍ର ଜନ୍ମିଗଲା ସ୍ୱର୍ଗ ।
ମୃତଶବ ହୋଇ ଯହୁଁ ଗର୍ଭରୁ ପଡ଼ିଲା
ପୁତ୍ରକୁ ଚାହିଁ ଉତ୍ତରା ପ୍ରାଣ ବିସର୍ଜିଲା ।
ତନୟକୁ କୋଳ କରି ଧରିଣ ସୁଭଦ୍ରା
ବୋଇଲେ କିମର୍ଥେ ପୁତ୍ରଭଗ୍ନ କଲୁ ମୁଦ୍ରା ।
ସୁଭଦ୍ରା ଦେବୀ କହନ୍ତି ଚାହିଁ ପୁତ୍ର ମୁଖ
କାହିଁପାଇଁ ବିହି ତୁରେ ଦେଲୁ ଏତେ ଦୁଃଖ ।
ଉତ୍ତରାକୁ କୋଳ କରି ଧଇଲେ ରୁକ୍ମିଣୀ
ମତ୍ସ୍ୟଦେଶ କନ୍ୟା ସୋମବଂଶର ମଣ୍ଡଣି ।
ମୃତଗତ ହୋଇଅଛି ପୂର୍ଣ୍ଣଚନ୍ଦ୍ର ମୁଖୀ
ବିଚାରିଲେ କିମ୍ପା ମଲା ପୁତ୍ର ମୁଖ ଦେଖି ।
ମୃତଗତ ନନ୍ଦନର ପୂର୍ଣ୍ଣଚନ୍ଦ୍ରାନନ
କେବଣ ମତେ ଏ ପୁରେ ମୃତ୍ୟୁ ଆଗମନ ।
କେବଣ ପାପରେ ପ୍ରାଣ ଛାଡ଼ିଲୁରେ ବଳା
ସୋମବଂଶର ନନ୍ଦନ ଅନାଥର ବଳା ।
ବେନି କୁଳରେ ବାବୁ ତୁ ଲଗାଇଲୁ କଳା
ଅଥଳ ସମୁଦ୍ରେ ଏବେ ବୁଡ଼ାଇଲୁ ଭେଳା ।
ବାବୁ ତୋହଠାରୁ ଏହି ବଂଶ ଯେ ବୁଡ଼ିଲା
କେଉଁ ପାତକ ଦେଖିଣ ଲକ୍ଷ୍ମୀ ଛାଡ଼ିଗଲା ।
ବାବୁ ତୋ ବଦନେ ଇନ୍ଦ୍ର ଦିଶେ ନିଉଛୁଣା
ତୁ ଥିଲୁ ମୋର ଉଭୟ କୁଳର ଦୁଲଣା ।
ବାବୁ ଚୌଦିଗ ଅନ୍ଧାର କଲୁ ମୋତେ ବଳା
ଅଗାଧ ସମୁଦ୍ରେ ମୋର ବୁଡ଼ାଇଲୁ ଭେଳା ।
ମୋ କତିରେ ଥାଇ ତୋର ହୋଇଲା ଏସନ
ତୋ ହୃଦେ ପଡ଼ିଲା କିବା ଅଶ୍ୱଥାମା ବାଣ ।

କେଉଁ ଗୁରୁଜନଙ୍କର ଶାପ ବା ପଡ଼ିଲା
କିମ୍ପାଇ ମୋର ନନ୍ଦନ ପ୍ରାଣେ ହତ ହେଲା ।
ସୁଭଦ୍ରା ରୁକ୍ମିଣୀ ସତ୍ୟଭାମା ଜମ୍ବୁବତୀ
କାଳିନ୍ଦୀ ଲକ୍ଷ୍ମୀ ସହିତେ ସର୍ବେ ବିଳପନ୍ତି ।
ଆରେ ଦୁଃଖୀର ସଙ୍ଗାଳି ଅନାଥର ବନ୍ଧୁ
ମଉନ ହୋଇ ରହିଛୁ କିମ୍ପାଇ ନ କାନ୍ଦୁ ।
କି ଅବିଗୁଣେ ଆମ୍ଭଙ୍କୁ ତୁହି କଲୁ ତେଜ୍ୟା
ଆମ୍ଭ କର୍ମ ଦେଖି କିବା କଲୁ ମୃତଶଯ୍ୟା ।
ବାଳୁତ ହୋଇଣ ତୋର ଏଡ଼େକ ନିର୍ଦ୍ଦୟା
କା ମୁଖ ନ ଚାହୁଁ କରି ପାଷାଣର ହିୟା ।
କେହି ମୁଖେ କେହି କର୍ଣ୍ଣେ ଦେଉଥାଇ ଫୁଙ୍କି
ବାବୁ ସୋମବଂଶ ତେଜିଗଲୁ ତୁ କାହିଁକି ।
ରସାଣିଲା ପତ୍ର ପ୍ରାୟ ତୋ ଲଲାଟ ପାଟି
ତରଳ ରଙ୍ଗ ପ୍ରାୟ ତୋ ଚକ୍ଷୁ ଦୁଇଗୋଟି ।
ବାବୁ ପକ୍ୱବିମ୍ବ ଜିଣି ତୋର ଓଷ୍ଠ ବେନି
ଆମ୍ଭେ ନ ମରୁ କିମ୍ପା ତୋ ଏ ଆପଦ ଘେନି ।
ରୋଦନ ଶୁଣିଲେ ତୋର ପିକକୁ ଜିଣନ୍ତା
ତୋ ବାକ୍ୟ ଶୁଣି ଦ୍ୱାରକାପୁର ଉଚ୍ଛୁଳନ୍ତା ।
ବିସ୍ତାର ବକ୍ଷ ତୋ ଜିଣି ବିକ୍ରମ କେଶରୀ
ଉଠିନାହୁଁ କିମ୍ପା ବାବୁ କୁଆଁ କୁଆଁ କରି ।
ଶରଣଜନ ତାରଣ ଅଟନ୍ତି ଯୁଧିଷ୍ଠି
ତାଙ୍କ ପୁଣ୍ୟ ଘେନି କିମ୍ପା ନଫେଡୁ ତୁ ଦୃଷ୍ଟି ।
ଏକ ଆତ୍ମା ଅଟନ୍ତି ଯେ କୃଷ୍ଣ ଫାଲଗୁନି
ତାଙ୍କ ଆତ୍ମା ଘେନି ଉଠ କିମ୍ପା ହେଲ ତୁନି ।
ପଦ୍ମନାଡ଼ ଜିଣି ତୋର ଭୁଜ ବେନିଗୋଟି
ଚମ୍ପାକଢ଼ିକି ଜିଣନ୍ତା ତୋହର ଅଙ୍ଗୁଷ୍ଠି ।
ଅତ୍ୟନ୍ତ ସୁନ୍ଦର ଦିଶେ ପୁତ୍ର ତୋର କାୟ
ଆମ୍ଭ ଦୁଃଖ ଦେଖି କନ୍ୟା ନ ହେଉ ସଦୟ ।
ଓଲଟା ରମ୍ଭା ଜିଣିବ ଏ ତୋହର ଜାନୁ
ନୀଳରେଖା ରୋମାବଳି ଶୋଭେ ତାର ତନୁ ।
ମୃତପିଣ୍ଡ ହୋଇ ମଧ୍ୟ କେନେ ସୁଶୋଭିତ
ତୋତେ ନେବାପାଇଁ ଯମ ବଳାଇଲା ଚିତ୍ତ ।
ରୁକ୍ମିଣୀ ଭଦ୍ରା ଆଦିଙ୍କ ବାହୁନିବା ଶୁଣି
ବିଜେ କଲେ ତହିଁ ଆସି ଦେବ ଚକ୍ରପାଣି ।
ପୁତ୍ରକୋଳେ ଧରି ଦେବୀ କୃଷ୍ଣ ମୁଖ ଦେଖି
ବଜ୍ରହତ ପ୍ରାୟ ମୂର୍ଚ୍ଛଗଲେ ଶଶିମୁଖୀ ।
ଶ୍ରୀକୃଷ୍ଣ ବୋଇଲେ ରହ ରହ ଗୋ ସୁଭଦ୍ରା
ମୃତାହତ ନୁହେଁ ପୁତ୍ର ଅସାଷ୍ଟମ ନିଦ୍ରା ।
ସଦା ମଙ୍ଗଳ ଅଟଇ ଏ ମୋହର ପୁର
ଆନନ୍ଦ ଛାଡ଼ି କିମ୍ପାଇ ବୃଥା ଶୋକ କର ।
ସୁଭଦ୍ରା ପ୍ରଣାମ କଲେ ଶ୍ରୀକୃଷ୍ଣଙ୍କ ପାଦେ
ଯାବତ ଅବସ୍ଥା ହରି ତୋହର ପ୍ରସାଦେ ।

ମୁଁ କାହିଁ ଅର୍ଜ୍ଜୁନ କାହିଁ ଏକ ଯୋଗ କଲୁ
କିଅର୍ଥେ ଯଦୁବଂଶକୁ ବହୁ ଗଞ୍ଜାଇଲୁ ।
ଆଜହୁଁ ଭାଙ୍ଗିଲେ ଏହା ବଳରାମ ଦେବା
ତାର କଥା ଭାଙ୍ଗି ମୋତେ ପାର୍ଥ କଲ ବିଭା ।
ତୁ ବୋଇଲୁ ମୋ ଗର୍ଭରୁ ହେବ ଯେ ପୁତ୍ରଟି
ସେହି ତ ରକ୍ଷା କରିବ ସମୁଦାୟ ସୃଷ୍ଟି ।
ଅର୍ଜ୍ଜୁନକୁ ସମର୍ପିଲୁ ଏସନକ ଭାଳି
ଅନ୍ତେ ବୁଡ଼ାଇଲୁ ମୋର ବଂଶ ବନମାଳୀ ।
ଏବେ ଜାଣିଲି ତୋହର ଅର୍ଜ୍ଜୁନେ ଅଭାବ
କି ଦୋଷ ତୋଠାରେ କଲେ ସେ ପଞ୍ଚପାଣ୍ଡବ ।
କୌରବଙ୍କ ବଂଶ ହରି ନାଶ କଲୁ କୂଟେ
ପାଣ୍ଡବଙ୍କ ବଂଶ ତୁହି କରୁଛୁ କପଟେ ।
ଶ୍ରୀକୃଷ୍ଣ ବୋଇଲେ ମାଗୋ କିମ୍ପା ବୋଲ ଏହା
ଶୁଣି ମୋଠାରେ କୁପିତ ହେବେ ତୋର ନାହା ।
ସୁଭଦ୍ରା ବୋଇଲେ ତାଙ୍କୁ ଯେବେ ଏଡ଼େ ଡର
ତେବେ କିମ୍ପା ତାହାଙ୍କର ବଂଶ ନାଶ କର ।
ସୁଭଦ୍ରା ବଚନ ଶୁଣି ଶ୍ରୀକୃଷ୍ଣ ବୋଇଲେ
ଯେଝା ପାପ ଅନୁସାରେ କାଳେ ନାଶଗଲେ ।
ଶୁଣି ସୁଭଦ୍ରା ବୋଲନ୍ତି ତୁ ଜଗତ୍ତାରଣ
ତେଣୁ ତୋତେ ପାଣ୍ଡବେ ଯେ ପଶିଲେ ଶରଣ ।
ସୁଦର୍ଶନ ଚକ୍ରର ଯେ ସହସ୍ରେକ ଧାର
ଦିବାରାତ୍ର ଭ୍ରମଇ ଯେ ଦ୍ୱାରକା ନଗର ।
ମାଛି ତିରଣ ପଡ଼ିଲେ ହୁଏ ସସ୍ତ୍ରଖଣ୍ଡ
ତେଣୁ ଏହିପୁରେ ଆସେ ଯମ କାଳଦଣ୍ଡ ।
ନିରୋଗରେ ପୁର ଏଥି କାକୁ ନାହିଁ ମୃତ୍ୟୁ
ନାତିଗୋଟି ନାଶହେଲା କହ କେଉଁ ହେତୁ ।
ଅନନ୍ତ ବ୍ରହ୍ମାଣ୍ଡର ତୁ ଅଟୁ ଅଧିକାରୀ
ତୋର ଆଜ୍ଞା ବିନା ଯମ ପାରଇ କି କରି ।
ଚଉଦ ବରଷ ମୋର ପୁତ୍ର ଅଭିମନ୍ୟୁ
ରଣଗୋଳେ ମରାଇଲୁ ତାହାଙ୍କୁ ଜୀବନୁ ।
ସମସ୍ତେ ସୁଖେ ରହିଲେ ଦ୍ୱାରକାର ଜନ
କେବଣ ପାତକ ମୁହିଁ କଲି ଭଗବାନ ।
ଏଠା ସ୍ତିରୀମାନେ ଛନ୍ତି ହୋଇ ସୁଲକ୍ଷଣୀ
ହୀନ ସ୍ତିରୀ ମଧ୍ୟେ ଏକା ହୋଇଲି ମୁଁ ଗଣି ।
ପୁତ୍ର ନାଶ ହେବାରୁ ମୋ ପ୍ରାଣେ ନାହିଁ ଆଶ
ନାତିଟିକି ଆଶ୍ରା କଲି ସେ ହେଲା ବିନାଶ ।
ଯୁଧିଷ୍ଠିର ଭୀମାର୍ଜ୍ଜୁନ ଦୁଇ ମାଦ୍ରୀ ସୁତ
ପ୍ରବେଶ ହୋଇଲେ ପାଞ୍ଚ ଯାଇଣ ତ୍ୱରିତ ।
ଦେଖିଣ ପୌତ୍ର ସହିତ କୁଳବଧୂ ହତ
ସୁଭଦ୍ରାର କାନ୍ଦ ଶୁଣି ହେଲେ ମୂର୍ଚ୍ଛାଗତ ।
ଯୁଧିଷ୍ଠି ବୋଇଲେ ଏହା ଦଇବ ତୋ ଗତି
ଧର୍ମେ ଥାଇ ନ ଦେଖିଲେ ମୋର ପୁତ୍ର ନାତି ।

ସହୋଦର ନାଶ କଲୁ ରାଜ୍ୟର ନିମନ୍ତେ
ବଂଶ ବୁଡ଼ିଲା ଜୀବନ ଅଛି କିସ ଅର୍ଥେ ।
କୃଷ୍ଣଙ୍କୁ ବୋଇଲେ ତୁମ୍ଭେ ନର ନାରାୟଣ
ଜନ୍ମେ ଜନ୍ମେ ଆମ୍ଭେ ଅଟୁ ତୁମ୍ଭର ଶରଣ ।
ହରି ଦୟାସାଗର ତୁ ଭକତ ବତ୍ସଳ
ତୋର ଆଶ୍ରାରୁ ଆମ୍ଭର ସବୁ ଦର୍ପବଳ ।
କେବଣ ପାପ ଦେଖିଣ ହୋଇଲୁ ନିର୍ଦ୍ଦୟ
ତେଣୁ କରି ଆମ୍ଭର ଏ ବଂଶ ହେଲା କ୍ଷୟ ।
ଅର୍ଜ୍ଜୁନ ବୋଇଲେ ବଂଶ ରକ୍ଷାର କାରଣ
ଏଥେ ଆଣିଥିଲ ଏବେ ହୋଇଲା ମରଣ ।
ମୃତପିଣ୍ଡ ଗୋଟି କୋଳେ ଧରି ଦେବୀ କୁନ୍ତୀ
ଦ୍ରୌପଦୀ ସହିତେ ବସି ବାହୁନି କାନ୍ଦନ୍ତି ।
ଦେବକୀ ଯଶୋଦା ଆଦି କାନ୍ଦନ୍ତି ଦୁଃଖିତେ
ନନ୍ଦ ବସୁଦେବ ଉଗ୍ରସେନର ସହିତେ ।
କୃଷ୍ଣଙ୍କ ବତ୍ରିଶସସ୍ର ଅଷ୍ଟପାଟବଂଶୀ
ଅତି ଶୋକେ କାନ୍ଦି କାନ୍ଦି ମିଳିଲେକ ଆସି ।
ସର୍ବେ ବସି ବିଚାରନ୍ତି ମନେ ମନେ ଗୁଣି
କେବଣ ବିଚାରେ ଏହା କଲେ ଚକ୍ରପାଣି ।
ଯେବଣ ଭୁବନେ ନାହିଁ ଜରା ଶୋକବ୍ୟାଧି
ଏତେକାଳେ ଯମ କିମ୍ପା କଲାକ ଅବିଧି ।
ସମସ୍ତେ ମିଳି ରୋଦନ କରନ୍ତି ବିକଳେ
ଦ୍ୱାରକାପୁରକୁ ଧର୍ମ ଛାଡ଼େ ଏତେକାଳେ ।
ବହୁତ କୁଟୁମ୍ବ ଯହୁଁ ଦ୍ୱାରକାରେ ହେଲେ
ତେଣେ ଦ୍ୱାରକାରୁ କୃଷ୍ଣ ମମତା ଛାଡ଼ିଲେ ।
କି ଅବା କପଟ କଲେ ଶ୍ରୀପୁରୁଷୋତ୍ତମ
ପୁତ୍ରେ ବଞ୍ଚାଇବେ ଅବା ଉଦେ କରି ଧର୍ମ ।
କେ ବୋଲେ କୃଷ୍ଣର କୋପ ଅଛି ପାଣ୍ଡବଙ୍କୁ
କେ ବୋଲେ ମାୟା କରନ୍ତି ମନ ବିଡ଼ିବାକୁ ।
କେ ବୋଲେ କୃଷ୍ଣ କରିଛି ଅର୍ଜ୍ଜୁନକୁ କୋପ
ଶତଧନୁ ପାଇଁ ପାର୍ଥ ହରିଲା ତା ଦର୍ପ ।
କେ ବୋଲଇ ସୁଭଦ୍ରାକୁ ହରିନେଲାବେଳେ
ବହୁତ ଅପମାନିତ ହେଲେ କାମପାଳେ ।
ସେ ରାଗ ଖଣ୍ଡିବ ହରି ଧରିଅଛି ଏବେ
ତେଣୁ କରି ପୁତ୍ର ପଡ଼ି ମରିଲା ସମ୍ଭବେ ।
ସୁଭଦ୍ରା ଅର୍ଜ୍ଜୁନ ଆଦି ଯେତେ ଥିଲେ ତଥି
କୃଷ୍ଣଙ୍କ ନାମ ସମସ୍ତେ କଲେ ଅପଖ୍ୟାତି ।
ସୁଭଦ୍ରା ବୋଇଲେ ଦେବ ସାବଧାନେ ଶୁଣ
ତୋହର କଳା ଏ କୃତ୍ୟ ନୁହଇଟି ଆନ ।
ଯୁଧିଷ୍ଠି ବୋଇଲେ ଚିତା କର ଆରୋପଣ
ପୁତ୍ରେ ଘେନି ଦାହ ଆମ୍ଭେ ଦେବୁଁ ପାଞ୍ଚଜଣ ।
ନମୋ ବେଦବ୍ୟାସ ପରାଶରଙ୍କ ନନ୍ଦନ
ଯାହାଙ୍କ ମହିମା ବ୍ୟାପିଅଛି ତ୍ରିଭୁବନ ।
ଭୂତ ଭବିଷ୍ୟତ ଜ୍ଞାତା ମହାଯୋଗେ ସାର
ନିମିଷକେ ବୁଲନ୍ତି ସେ ସମସ୍ତ ସଂସାର ।
ଅଷ୍ଟାଦଶ ପୁରାଣକୁ ରଚନା କରିଲ
ଗଣେଶଙ୍କୁ ଲେଖକ ପଣରେ ରଖାଇଲ ।
ଆହୋ ମହାମୁନି ମୋତେ ହୋଇଣ ପ୍ରସନ୍ନ
ଭାରତ ସମ୍ପନ୍ନ ହେଉ ଦିଅ ଆଜ୍ଞାଦାନ ।
ଜୟମାତ ଶାରଳା ଗୋ ଶଙ୍କର ମୋହିନୀ
ଅଗତି ଗତିଦାୟିନୀ ଦେବୀ ଗୋସାମଣି ।
ତୋହର ପ୍ରସନ୍ନେ ମାତ କରଇ ଲେଖନ
କଣ୍ଠେ ବସି ପଦ କହିଦିଅ ମାତା ପୁଣ ।
ଜୟ ମାତ ଶାକମ୍ଭରୀ ଏତିକି ବିନତି
ଜନ୍ମେ ଜନ୍ମେ ଶାରଳାକୁ ପାଦେ ଦିଅ ଗତି ।

—o—

## ପରୀକ୍ଷିତର ପୂର୍ବଜନ୍ମ

ବିଲଙ୍କଦେଶ ରାଜନ ଅତି ବିନୟରେ
ଅଗସ୍ତି ମୁନିଙ୍କ ପାଦେ ପଡ଼ିଣ ସତ୍ୱରେ ।
ବିଧିମତେ ମୁନିଙ୍କ ଚରଣେ ପୂଜା କରି
ବୋଇଲେ ହୋ ମହାମୁନି ଶୁଣ ମୋ ଗୁହାରି ।
ଶ୍ରୀକୃଷ୍ଣ ଲୀଳା ଏହି ଅତି ଅଗୋଚର
କହିଣ ହୃଦୟକୁ ପବିତ୍ର କର ମୋର ।
ସମସ୍ତେ ନିନ୍ଦା କରିଣ କହିଲେ ହରିଙ୍କୁ
ତହୁଁ କି ଉପାୟ କଲେ କହନ୍ତୁ ଆମ୍ଭଙ୍କୁ ।
ଅଗସ୍ତି ବୋଲନ୍ତି ତୁମ୍ଭେ ଶୁଣ ମୁନିବର
ଏଥୁ ଅନ୍ତେ ଯାହା କଲେ କମଳାରବର ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ଦେବକୀ ବୋଇଲେ
ହେ ଶ୍ରୀହରି ତୋର ନାମେ ଅପଖ୍ୟାତି ଦେଲେ ।
ଏ ବାଳକ ବଞ୍ଚାଇଣ ଦିଅ ମୋର ଧନ
ତୋ ମାୟା ବଳରେ ପୃଥ୍ୱୀ ଚଳେ ଅନୁକ୍ଷଣ ।
ତୁ ଯେବେ ଅମୃତ ନୟନରେ ଅନାଇବୁ
ଅକ୍ଳେଶରେ ଏ ବାଳକେ ଜୀବଦାନ ଦେବୁ ।
କି ପାଇଁ ବିଳମ୍ବ କରୁ ଆରେ ବାପଧନ
ବିଳମ୍ବେ ନାଶ ହୋଇବେ ସର୍ବ ପାଣ୍ଡୁଗଣ ।
ଯୁଧିଷ୍ଠିର ଆଦି ପାଞ୍ଚପାଣ୍ଡବେ ସତ୍ୱରେ
ଶ୍ରୀକୃଷ୍ଣ ବିନୟରେ ବୋଇଲେ ସେଠାରେ ।
ତୁମ୍ଭରି ଆଶ୍ରାରେ ହରି ଆମ୍ଭେ ବଡ଼ ଜାଣ
ବିଳମ୍ବ କିପାଇଁ ଅବା କରୁ ତୁ ବହନ ।
ସଂସାରେ ହେବ ବିଖ୍ୟାତ ପାଣ୍ଡବଙ୍କ ନାଥ
ପାଣ୍ଡବ ବନକୁ ଶେଷେ କରିଲେ ନିହତ ।
ସମସ୍ତଙ୍କ ବିନୟକୁ ଶୁଣି ନାରାୟଣ
ମନମଧ୍ୟେ ଦୟା କଲେ କମଳଲୋଚନ ।
ନିଜ ନାମ ସୁମରିଣ ବାଳକକୁ ଧରି
କପାଳକୁ ଆଉଁଷିଣ ବୋଇଲେ ଶ୍ରୀହରି ।

ବୋଇଲେ ହେ ପିତାମହ ବାରେ ଏଣେ ଚାହଁ
ସୋମବଂଶ ବୁଡ଼ିଲେ ତୁ କି ସ୍ଥାପିବୁ ଦେହ ।
ମୁହିଁ ଯେବେ ସତ୍ୟ ତୋର ବାକ୍ୟେ ପ୍ରଜାପତି
ଦିଗପାଳ ହୋଇ ମର୍ତ୍ତ୍ୟେ ହୋଇଲି ଉତ୍ପତ୍ତି ।
ମୁହିଁ ଯେବେ ଉତପତ୍ତି ଭାରା ନିବାରଣେ
ଜନ୍ମେ ଜନ୍ମେ ଜାତ ହୁଏ ନର ନାରାୟଣେ ।
ଯେବେ ଧରେ ମତ୍ସ୍ୟ କଚ୍ଛ ବରାହ ଶରୀର
ନୃସିଂହ ବାମନ ପର୍ଶୁରାମ ଧନୁର୍ଦ୍ଧର ।
ଯେବେ ମୁହିଁ ମହୀଭାରା ନିବାରଣ ପାଇଁ
ନିଜ ଅଂଶ ନାନାରୂପେ ଅବତାର ହୋଇ ।
ନିଜ ପିତା ବୋଲି ଯେବେ ନିରାକାର ଧ୍ୟାନ
କରୁଥାଏ ନିରିମଳ କରି ନିଜ ମନ ।
ସାଧୁ ଯୋଗୀଙ୍କର ମୁହିଁ ଯେବେ ମୋକ୍ଷଦାତା
ଯୋଗୀଜନ ଯେବେ ମୋତେ କରୁଥିବେ ଚିନ୍ତା ।
ଯେବେ ଅନୁବ୍ରତେ ମୋର ବ୍ରହ୍ମେ ଥାଏ ଭକ୍ତି
ଯେବେ ସଂସାରଜନଙ୍କୁ ପାଳଇ ମୁଁ ନିତି ।
ମୁହିଁ ଯେବେ ନିବାରଣ ପୃଥ୍ୱୀ ଜୀବ ଚିନ୍ତା
ମୁହିଁ ଯେବେ ଇହଲୋକ ସଦ୍‌ଗତି ଦାତା ।
ଧର୍ମରେ ବର୍ତ୍ତନ୍ତି ଜପ ମନ୍ତ୍ରେ ଯେତେ ପ୍ରାଣୀ
ଯେବେ ତାଙ୍କ ଦୁଃଖ ଖଣ୍ଡେ ବେଳକାଳ ଜାଣି ।
ସାଧୁ ଯୋଗୀଙ୍କ ରକ୍ଷଣେ ଥାଏ ଯେବେ ଚିତ୍ତ
ଯେବେ ଯୋଗୀମାନେ ମୋର ନିଶ୍ଚୟ ଭକତ ।
ଯେବେ ମୁହିଁ ଥାଏ ସର୍ବ ଜନଙ୍କର ହୃଦେ
ସକଳେ ନାଶନ୍ତି ଦୁଃଖ ଯଦି ମୋ ପ୍ରସାଦେ ।
ଯେବେ ମୁଁ ନ ମାରେ ବଳହୀନ ଧର୍ମଯୁଦ୍ଧେ
ହେତି ପ୍ରହେତି ନାଶିଲେ ଯେବେ ପିତା କ୍ରୋଧେ ।
ଆକାଶ ମଛିଲେ ଯହୁଁ ମାଳି ଯେ ସୁମାଳି
ମୁହିଁ ଯେବେ ବଧ କରି ଉଦ୍ଧରିଲି ସ୍ଥଳୀ ।
ଜଗଜ୍ଜନ ତାରି ଯେବେ ଜଗନ୍ନାଥ ନାମ
ଯଦି ମୋ ଆୟତ୍ତେ ଥାଏ ଧର୍ମ ଅର୍ଥ କାମ ।
ଧରଣୀ ଉଶ୍ୱାସ ପାଇଁ ଯେବେ ଜନ୍ମେ ମୁହିଁ
ଶରଣଜନଙ୍କୁ ଯେବେ ମୁଁ ରକ୍ଷା କରଇ ।
କ୍ଷିତି ଆପ ତେଜ ଆଉ ବାୟବ୍ୟ ଆକାଶ
ଏ ପଞ୍ଚଭୂତ ଯଦ୍ୟପି ଅଟେ ମୋର ବଂଶ ।
ଯେବେ ମୁଁ ଆଶ୍ରିତ ରଖେ ଦୁଷ୍ଟ ଦର୍ପ ଗଞ୍ଜି
ମୋ ଭକ୍ତଜନର ମନ ଯେବେ କରେ ରାଜି ।
ମୁହିଁ ଯେବେ ନିଷ୍କାମଟି ଏକାଦଶ ଭେଦି
ମମ ଭକ୍ତ ଯେହୁ ତାର କାର୍ଯ୍ୟ କରେ ସିଦ୍ଧି ।
ଯେବେ ମୁହିଁ ଏକମାତା ପିତାଠାରୁ ଜାତ
ଯଦି ପିତା ମାତା ଗୁରୁ କରଇ ପୂଜିତ ।
ନରକକୁ ତାରେ ଯେବେ ମୁହିଁ ନାରାୟଣ
ଅନାଥର ଭକ୍ତି ଘେନି କରେ ମୁଁ କାରଣ ।
ଜୀବଜନ୍ତୁଙ୍କୁ କରନ୍ତି ହିଂସା ଯେବେ ପ୍ରାଣୀ
ତାଙ୍କ ଚିନ୍ତା ଘେନି ଯେବେ ନାମ ଚିନ୍ତାମଣି ।
ମୁହିଁ ଯେବେ ପିତା ବାକ୍ୟେ ଶିବଧନୁ ଭାଙ୍ଗି
ରାବଣ କୁମ୍ଭକର୍ଣ୍ଣର ଦର୍ପ ଥିବି ଗଞ୍ଜି ।
ମୁହିଁ ଯେବେ ପାତାଳକୁ ଚାପିଥିଲି ବଳି
ଶଙ୍ଖ ଚକ୍ର ଧରି ଯେବେ ନାମ ବନମାଳି ।
ମୁହିଁ ଯେବେ ପର୍ଶୁ ହୋଇ ଦାନବ ଗଞ୍ଜିଲି
ଯେବେ କି ସତ୍ୟ ହିରଣ୍ୟକଶିପୁ ବଧିଲି ।
ମହୀଭାରା ନିବାରଣ ଅର୍ଥେ ଯେବେ ମୁହିଁ
କଂସ କେଶୀ ଅଷ୍ଟମଲ୍ଲ ନାଶକଲି ଯାଇଁ ।
ଯେବେ ମୋତେ ଯୋଗୀ ମୁନି କରୁଥାନ୍ତି ଧ୍ୟାନ
ବୈକୁଣ୍ଠରେ ତାଙ୍କୁ ଯେବେ ଦିଅଇ ସୁସ୍ଥାନ ।
ଯେବେ ମୋତେ ଚିହ୍ନିଥାନ୍ତି ନିରତେ ମହାତ୍ମା
ଯେବେ ପାଣ୍ଡବ ଅଟନ୍ତି ମୋର ପଞ୍ଚଆତ୍ମା ।
ପାଣ୍ଡବଙ୍କୁ ଯେବେ ମୋର ନ ଥାଏ କପଟ
ଅର୍ଜ୍ଜୁନ ମୋହର ଯେବେ ଅଟେ ଭକ୍ତଶ୍ରେଷ୍ଠ ।
ସ୍ୱଚ୍ଛେ ବିଭା କରାଇଲି ଯେବେ ସୁଭଦ୍ରାକୁ
କପଟ ନ କରେ ଯେବେ ମୁଁ ବଳରାମଙ୍କୁ ।
ଶ୍ରୀମନ୍ତ ଲୋକକୁ ଯେବେ ମୋର ଦୟା ଅଛି
ତେଣୁ ନାମ ଯଦ୍ୟପି ମୁଁ ଶ୍ରୀବତ୍ସ ବହିଛି ।
ଜନଜନ୍ତୁ ଆରତ ମୁଁ ଶୁଣେ ଯେବେ କର୍ଣ୍ଣ
ଯଦ୍ୟପି ମୋହର ନାମ ଅଟେ ଜନାର୍ଦ୍ଦନ ।
ଯେବେ ତୁଳସୀକୁ ଭାବେ ସଦା ମନ ମଧ୍ୟେ
ସପ୍ତସିନ୍ଧୁ ନବଦ୍ୱୀପ ଘୋଟି ଏକପାଦେ ।
ଭକ୍ତଜନଙ୍କ ନାଶଇ ହୃଦୟ ବିଷାଦ
ଯେବେ ମୋର ଭୁବନକୁ ନାହିଁଟି ପ୍ରସାଦ ।
ଏ ମୋହର ବାକ୍ୟ ଯଦି ଅଟେ ସତ୍ୟ ସତ୍ୟ
ସାକ୍ଷୀ ଏଥିକି ବିହନ୍ତା ପୁରୁଷ ନିୟତ ।
ଆହେ ଦିଗପାଳମାନେ ସର୍ବେ ମୋର ସାକ୍ଷୀ
ପର ଦୁଃଖ ଯଦି ନେତ୍ରେ ନ ପାରେ ମୁଁ ଦେଖି ।
ପରନିନ୍ଦା ପରିହିଂସା ଯେ କରଇ ହୃଦେ
ତାହା ମୁଁ ନ ସହଇଟି ଯଦି ମନମଧ୍ୟେ ।
ଭାରତ ଯୁଦ୍ଧରେ ମୋର ପାଣ୍ଡବଙ୍କ ହିତେ
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ବଧିଲା ନିରତେ ।
ଏ ବଚନମାନ ଯେବେ ମୋର ଅଟେ ସତ୍ୟ
ତେବେ ମମ ଆୟୁ ଘେନି ଉଠୁ ଏ ବାଳୁତ ।
ଶ୍ରୀକୃଷ୍ଣ ମୁଖୁ ଏସନ ସତ୍ୟବାଣୀ ଶୁଣି
ଜୀବନ ପ୍ରାପତ ହେଲା ସେ କୁମରମଣି ।
ଜୀବନ୍ୟାସ କରି ଯହୁଁ କୃଷ୍ଣ କଲେ ଦୃଷ୍ଟି
କର ମୋଡ଼ିଦେଇ ପୁତ୍ର କାନ୍ଦିଲା ତଡ଼ିତି ।
ଦେଖି ଚକିତ ହୋଇଲେ ସେଠା ସର୍ବଲୋକ
ସର୍ବେ ଆନନ୍ଦିତ ହେଲେ ଛାଡ଼ି ସବୁ ଶୋକ ।

ସାଧୁ ସାଧୁ ଧନ୍ୟ ଧନ୍ୟ ଭାଷିଲେ ସମସ୍ତେ
ଦୁଃଖ ପାଶୋରିଣ ହର୍ଷ ଉଠିଲା ତ୍ୱରିତେ ।
ଜୀବନ ପାଆନ୍ତେ ସର୍ବେ ହୋଇଲେ ଆନନ୍ଦ
ସୁଭଦ୍ରାର ମୁଖ ଦିଶେ ଯେହ୍ନେ ପୂର୍ଣ୍ଣଚାନ୍ଦ ।
ଶ୍ରୀକୃଷ୍ଣଙ୍କ ପାଦେ ଭଦ୍ରା ପ୍ରଣାମ କରିଣ
ବୋଇଲା ହେ ଭାଇ ତୋର ମାୟା ଅଟେ ଧନ୍ୟ ।
ମୁହିଁ ଛାର ନାରୀ ଜାତି କାହୁଁ ତୋର ଗୁଣ
ଜାଣିବି ହେ ନାରାୟଣ ପାଣ୍ଡବ ରକ୍ଷଣ ।
କେଉଁ ଜନ୍ମେ ମୁହିଁ କେତେ ତପ କରିଥିଲି
ତେଣୁ ତୋର ଭଉଣୀ ହୋଇଣ ଜନ୍ମ ହେଲି ।
ଧନ୍ୟ ଧନ୍ୟ ଏହି ଦ୍ୱାରାବତୀ ନାରୀ
କେତେ ତପେ ମନାଇଲେ ତୋତେ ବଂଶୀଧାରୀ ।
ଯୋଗୀ ଋଷି ଯା ଦର୍ଶନ ପାଇଁ ଭାବୁଥାନ୍ତି
ପୁତ୍ର ସ୍ୱାମୀ ରୂପେ ଏହିମାନେ ଯେ ସେବନ୍ତି ।
ଆହେ ଭାଇ ଯେବେ ଅଛି ଦୟା ମୋହଠାରେ
ଦୀର୍ଘାୟୁ କରିଣ ଯାକୁ ରଖ ଏ ସଂସାରେ ।
ଯୁଧିଷ୍ଠି ଅର୍ଜ୍ଜୁନ ଭୀମ ଆଦି ପାଞ୍ଚବୀରେ
ଭକ୍ତିଭରେ ବୋଇଲେ ସେ ଚାହିଁ ଶ୍ରୀକୃଷ୍ଣରେ ।
କି ଅବା ନ ଜାଣୁ ନାଥ ଜଗତର ସ୍ୱାମୀ
ଅକାରଣେ କିମ୍ପା କଷ୍ଟ ଦେଉ ଅନ୍ତର୍ଯ୍ୟାମୀ ।
କିବା ମନ ବିଡ଼ିବାକୁ ମାୟା ଆରମ୍ଭିଲୁ
ମନ ଦେଖି ହୃଦୟରେ ସୁଦୟା ବହିଲୁ ।
ଆହେ ପତିତପାବନ ମାନ ଉଦ୍ଧାରଣ
କେତେ କେତେ ବିପତ୍ତିରୁ କରିଛ ତାରଣ ।
ପାଣ୍ଡବଙ୍କ ନାମ ବୋଲି ଜଗତେ ବିଦିତ
ତୋହର ଆଶ୍ରାରେ ବର୍ତ୍ତିଥାଇ ପଞ୍ଚଭ୍ରାତ ।
ବ୍ରହ୍ମମୟ ଅଟୁ ତୁହି ତୋତେ ଆମ୍ଭେମାନେ
ମାମୁଁ ପୁଅ ଭାଇ ବୋଲି କହୁ ଅକାରଣେ ।
ଜାଣିବାରେ ତୋ ଚରଣେ କରିନାହିଁ ଦୋଷ
ଅଜଣାରେ କରିଥିଲେ କ୍ଷମ ପୀତବାସ ।
ଏହିପରି ଶୁଣି ହରି ଆନନ୍ଦ ହୋଇଲେ
ଦ୍ୱାରକା ଭୁବନରେ ମଙ୍ଗଳଘୋଷ ଦେଲେ ।
ସତ୍ୟଭାମା ରୁକ୍ମିଣୀ ଆଦି ଯେ ନାରୀମାନେ
ଭ୍ରୂଭଙ୍ଗୀ କଟାକ୍ଷେ ଚାହିଁକରି ନାରାୟଣେ ।
ବୋଇଲେ ହେ ନାଥ ତୁମ୍ଭେ ଅଟ ମାୟାଧର
ପର ଘରବୁଡ଼ା ନାମ ଗୋପୀ ଚିତ୍ତ ଚୋର ।
ସହଜରେ ଆମ୍ଭେ ନାରୀଜାତି ବୁଦ୍ଧିହୀନ
ତୋହର ସଙ୍ଖୁଳା ଅଟେ ଆହେ ପ୍ରାଣଧନ ।
ଏହିପରି ସର୍ବେ କୃଷ୍ଣେ ପ୍ରଶଂସା କରିଣ
ଆନନ୍ଦରେ ହରିଧ୍ୱନି କଲେ ନାରୀଗଣ ।
ଶୁଣି ବଳଦେବ ତହିଁ ଉପସ୍ଥିତ ହେଲେ
ପୁତ୍ରକୁ ଦେଖିଣ ବଡ଼ ଆନନ୍ଦ ହୋଇଲେ ।
ବଡ଼ ବିଚିତ୍ର ଅଟଇ ମାୟାଧର ମାୟା
ଜଗତ ଜନକ ନାଥ କଲେକ ସୁଦୟା ।
ମୃତପିଣ୍ଡେ ଜୀବଦେଇ ସୋମବଂଶ ସ୍ଥାପି
ତେଣୁ ଅରକ୍ଷିତ ନାମ ଦେଲେ ପଦ୍ମ ଆଖି ।
ଜଗତ ବନ୍ଦନ ନାଥ ଜୟ ପୀତବାସ
ଜଗତଜନ କାରଣ ଜୟ ଶ୍ରୀନିବାସ ।
ଜୟ ଜୟ ନାରାୟଣ ଜଗତ ତାରଣ
ଜୟ ପ୍ରଭୁ ଜନାର୍ଦ୍ଦନ ଭକ୍ତ ଉଦ୍ଧାରଣ ।
ଜୟ ହେ କପିଳରୂପୀ ପ୍ରଭୁ ଦଇତ୍ୟାରୀ
ଜୟ ହେ ନୃସିଂହ ହରିଣାକ୍ଷ ନାଶକାରୀ ।
ଜୟ ହେ ପରଶୁରାମ କ୍ଷତ୍ରିୟ ମର୍ଦ୍ଦନ
ଜୟ ହେ ଶ୍ରୀରାମ ଦଶକନ୍ଧ ବିନାଶନ ।
ଜୟ ହେ ମାତଳୀରୂପା ବୈଲୋଚନ ହନ୍ତା
ଜୟ ନାରାୟଣ କର ପୃଥ୍ୱୀ ଉଦ୍ଧାରନ୍ତା ।
ଜୟ ହେ ବାମନରୂପୀ ଦେବ ରକ୍ଷାକାରୀ
ଜୟ ତ୍ରିବିକ୍ରମ ପ୍ରଭୁ ଅବନୀ ଉଦ୍ଧାରି ।
ଜୟ ହେ ବରାହରୂପୀ ଧରଣୀ ଉଦ୍ଧାରି
ଜୟ ହେ ଶ୍ରୀକୃଷ୍ଣ କଂସ କେଶୀ ଦର୍ପହାରୀ ।
ଜୟ ହେ ମଧୁସୂଦନ ଭକ୍ତ ଉଦ୍ଧାରଣ
ଜୟ ନୀଳାଦ୍ରିବିହାରୀ ପାପୀଙ୍କ ତାରଣ ।
ଶ୍ରୀନୀଳ କନ୍ଦରେ ପ୍ରଭୁ ଏ କଳିକାଳରେ
ବିଜେ କରିଅଛ ରତ୍ନସିଂହାସନ ପରେ ।
ବ୍ରହ୍ମା ଶିବ ତୋ ଚରଣେ କରନ୍ତି ଦୟିନୀ
ସ୍ୱର୍ଗେ ଇନ୍ଦ୍ରପଦ ଦେଲୁ ଭକ୍ତ ଭାବ ଘେନି ।
ପକ୍ଷୀଜନ୍ମ ମାତ୍ରେ ସେ ଭୂଷଣ୍ଡ ନାମ ଯାର
ତୋ ନାମ ଧରନ୍ତେ ସେହୁ ହେଲା ଅକ୍ରାମର ।
ଶ୍ରୀବସ୍ତ ବ୍ରାହ୍ମଣ ତୋତେ ନାତେକ ମାଇଲା
ତା ଭକ୍ତିରେ ତୁଷ୍ଟ ତୁହି ହେଲୁ ନନ୍ଦବଳା ।
ତୋର ନାମେ ଅଜାମିଳ ହୋଇଲା ନିସ୍ତାର
ଏ ଶାରଳା ଦାସ ସଦା କିଙ୍କର ତୋହର ।
ନ ଜାଣଇ ଜପ ତପ ଅତି ମୂଢ଼ଜନ
ଶ୍ରୀରଙ୍ଗାଚରଣ ତଳେ ପଶିଲି ଶରଣ ।
ତାର ଅବା ମାର ପ୍ରଭୁ ଯେ ଇଚ୍ଛା ତୋହର
ସଦା ମୁଁ ତୋ ପାଦପଦ୍ମେ ଯୋଡ଼ିଥିବି କର ।
ତୁମ୍ଭର ପ୍ରସନ୍ନେ କାଇଁଶିକ ପର୍ବ ମୁହିଁ
ଶେଷକଲି ସାଧୁଜନେ ଦୋଷ ଧର ନାହିଁ ।
ଜୟ ମାତା ଶିବଧବ ଶିବଙ୍କ ଘରଣୀ
ସତ୍ୟ ତୋ ସେବକ ଅଟେ ଏ ଶାରଳା ମୁନି ।
ଜନ୍ମେ ଜନ୍ମେ ମାତ ମୋତେ କରୁଥାଅ ଦୟା
ଏ ନର ଜନ୍ମୁ ଉଦ୍ଧର ମାତ ମହାମାୟା ।

—o—

**କାଇଁଶିକା ବା ଐଷିକ ପର୍ବ ସମ୍ପୂର୍ଣ୍ଣ**

—o—

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚିତ




# ନାରୀ ଓ ଶାନ୍ତିପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଦୂରଭାଷ : ୦୬୭୧-୨୬୦୮୨୯୬

## ମହାଭାରତ ନାରୀ ଓ ଶାନ୍ତି ପର୍ବର

# ସୂଚୀପତ୍ର



## ମହାଭାରତ ନାରୀ ଓ ଶାନ୍ତି ପର୍ବର ସୂଚୀପତ୍ର

## ସମାପ୍ତ

# ମହାଭାରତ

## ନାରୀ ଓ ଶାନ୍ତି ପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ,
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା,
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧ ବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃନ୍ତ୍ରଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯକ୍ରୁର୍ଣ୍ଣଧାରୋହରି ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ,
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ,
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧମ୍ ।

ତତ୍ରେ ଚ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣୀ ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାରକଥାପ୍ରସଙ୍ଗଃ ।

## ବନ୍ଦନା

ଜୟ ମା ଶାରଳା କୃପାଜଳର ନନ୍ଦିନୀ
ମହିଷାସୁର ମର୍ଦ୍ଦିନୀ ଝଙ୍କଡ଼ ବାସିନୀ ।
ଅସୁରମାନଙ୍କ ଦର୍ପ ବିନାଶିବା ପାଇଁ
ଭାରା ନିବାରଣେ କଲୁ ଦେବତାଙ୍କ ପାଇଁ ।
ମୁଁ କିସ କହିବି ମାଗୋ ତୋହର ମହିମା
ଦେବଗଣ ଯେ ମହିମା ବର୍ଣ୍ଣନେ ଅକ୍ଷମ
ଛାର ନରଦେହ ବହି ମୁଁ କି ହେବି କ୍ଷମ ।
ତୋର ଅନୁଗ୍ରହ ମାଗୋ ଶ୍ରୀମହାଭାରତ
କିଞ୍ଚିତ ମୁଁ ଲେଖିବାକୁ ହୋଇଲି ସାମର୍ଥ୍ୟ ।
ନାରୀ ଶାନ୍ତିପର୍ବ ଏହୁ ସୁଧାରସ ବାଣୀ
ବର୍ଣ୍ଣନେ ଉଦ୍ୟତ ହେଉଅଛି ଏହିକ୍ଷଣି ।
ତେଣୁ ତୋ ଅଭୟ ପାଦେ ପଶୁଛି ଶରଣ
ଶାରଳା ଦାସକୁ ମାତ ଦିଅ ଦିବ୍ୟଜ୍ଞାନ ।

—o—

## ପଞ୍ଚପାଣ୍ଡବଙ୍କର ହସ୍ତିନା ପ୍ରବେଶ ଧୃତରାଷ୍ଟ୍ରର ଶୋକ ଓ ଗାନ୍ଧାରୀର ନେତ୍ରାନଳରେ ଦୁର୍ଦ୍ଧର୍ଷର ଦହନ

ବିଲଙ୍କର ଅଧିପତି ବୈବସ୍ୱତ ମନୁ
ଆସନେ ବସାଇ ପୂଜି କୁମ୍ଭଋଷି ସୁନୁ ।
ବୋଇଲେ ହେ ମୁନି ତୁମ୍ଭେ ତିନିକାଳଜ୍ଞାତା
ଶୁଣିବି ମୁଁ ତବ ମୁଖୁଁ ଭାରତର କଥା ।
ପରୀକ୍ଷିତ ଜନ୍ମକଥା କହିଗଲେ ଯେତେ
ତାହା ଶୁଣି ହର୍ଷଜାତ ହେଲା ମୋର ଚିତ୍ତେ ।
ଏକାଦଶ ଅକ୍ଷୌହିଣୀ ସମରେ ପଡ଼ିଲେ
ତିନିଜଣ ମାତ୍ର ତହୁଁ ନିସ୍ତାର ପାଇଲେ ।
ଏ ଉତ୍ତାରୁ ହୋଇଲାକ ଯେଉଁ ଯେଉଁ କଥା
ତାହା ବିସ୍ତାରି କହିବେ ମୁନି ମହାରଥା ।
ପୁତ୍ର ଶୋକେ ଧୃତରାଷ୍ଟ୍ର କିପରି ରହିଲା
କାହା ବୋଲେ ସେହୁ ପୁଣି ସାନ୍ତ୍ୱନା ପାଇଲା ।
ଦୁର୍ଯ୍ୟୋଧନ ପ୍ରାୟ ପୁତ୍ର ମଲାଟି ଯାହାର
କିପରି ପ୍ରାଣ ରହିଲା ଶୋକରେ ତାହାର ।
ଗାନ୍ଧାରୀ କେମନ୍ତେ ବଞ୍ଚିଲା ପୁତ୍ରର ଶୋକରେ
ଏକଥା ବିସ୍ତାର କରି କହ ମୋ ଆଗରେ ।
ବୈବସ୍ୱତ ମନୁ ଆଗେ କହନ୍ତି ଅଗସ୍ତି
ମୃତ୍ୟୁ ଲଭି ପଡ଼ିଥିଲା ଅଭିମନ୍ୟୁ ପତ୍ନୀ ।
ବାରାନିଧି ତୀରେ ତାର କଲେ ପ୍ରେତକାର୍ଯ୍ୟ
ଯୁଦ୍ଧ ଶ୍ରାଦ୍ଧଅନ୍ତେ ବିଜେ କଲେ ଦେବରାଜ ।
ପଞ୍ଚଦଶ ଦିବସରେ କୃଷ୍ଣ ପାଶେ ବସି
ଯୁଧିଷ୍ଠିର ଧୀରେ ଧୀରେ ତାହାକୁ ସମ୍ଭାଷି ।
ଦ୍ରୌପଦୀ ପଞ୍ଚପୁତ୍ରେ ତ ହୋଇଲେ ବିନାଶ
କେ ରକ୍ଷା କରିବ ଶିଶୁ ବିନା ସୋମବଂଶ ।
ତେଣୁ ଏ ପୁତ୍ରକୁ ପାଳ କରିଣ ଯତନ
ଏହା ବିନା ରଖିବାକୁ ବଂଶ ନାହିଁ ଆନ ।
ଆହେ ଦେବରାଜ ଯେବେ ତୁମ୍ଭେ ନ ପାଳିବ
ଏହିଠାରୁ ସୋମବଂଶ ରବି ଅସ୍ତହେବ ।
ତୁମ୍ଭେ ସକଳ ଜୀବର ଅଟ ପଞ୍ଚଭୂତ
ତୋତେ ତିଆରିବା ପାଇଁ ମୁହିଁକି ସମର୍ଥ ।
ସବୁବେଳେ ବଞ୍ଚୁ ଆମ୍ଭେ ତୁମ୍ଭ ଆଶ୍ରେ କରି
ଯାଉଛୁ ଦେଖିବୁ ଧୃତରାଷ୍ଟ୍ର ଯେ ଗାନ୍ଧାରୀ ।
ପୁତ୍ରଶୋକେ କରୁଥିବେ କିସ ଦୁଇପ୍ରାଣୀ
ତାଙ୍କୁ ସଙ୍ଗୋଳି ଆସିବୁ ଏହିଠାକୁ ପୁଣି ।
ଶ୍ରୀକୃଷ୍ଣ ବୋଇଲେ ମୁହିଁ ତୁମ୍ଭ ସଙ୍ଗେ ଯିବି
କି କହିବ ଧୃତରାଷ୍ଟ୍ର ତାହା ମୁଁ ଶୁଣିବି ।
ତହୁଁ ପାଞ୍ଚଭାଇ ପାଞ୍ଚ ରଥକୁ ଆରୋହି
ଗରୁଡ଼ ପିଠିରେ ଗଲେ ଜଗତ ଗୋସାଇଁ ।
କୁନ୍ତୀ ଦ୍ରଉପଦୀ ପଞ୍ଚପାଣ୍ଡବଙ୍କ ତୁଲେ
ଇନ୍ଦ୍ରପ୍ରସ୍ଥ ଅଭିମୁଖେ ଗମନ କରିଲେ ।
ଶ୍ରୀକୃଷ୍ଣ କହିଲେ ପଥେ ଭୀମକୁ ଅନାଇ
ତୋ ବିନା ଧୃତରାଷ୍ଟ୍ରର ଅନ୍ୟେ ରାଗ ନାହିଁ ।
ତେଣୁ ତୁ ତାହାର ଶତପୁତ୍ର କଲୁ ନଷ୍ଟ
ତେଣୁ ତୋହଠାରେ ସେହି ହୋଇଅଛି ରୁଷ୍ଟ ।
ବାହ୍ୟରେ ପ୍ରେମ ହୋଇଣ ଡାକିବ ପାଶକୁ
କେଉଁେ ନ ଯିବ ମନରେ ରଖ ଏ କଥାକୁ ।
କ୍ଷତ୍ରିୟ କୁଳର ଷଣ୍ଢ ଅତ୍ୟନ୍ତ ପ୍ରଚଣ୍ଡା
ମହାପର୍ବତେ ଚାପିଲେ ହେବ ମସିଗୁଣ୍ଡା ।
କୃଷ୍ଣ ଯହୁଁ କହିଲେ ଏ ଚକ୍ରକୂଟ ବୁଦ୍ଧି
ଯେଉଁ ଦେବଙ୍କ ମାୟାରେ ସର୍ବକାର୍ଯ୍ୟ ସିଦ୍ଧି ।
ଏହିପରି କହି କହି ପଥ ଗମିଗଲେ
ଇନ୍ଦ୍ରପ୍ରସ୍ଥ କଟକରେ ପ୍ରବେଶ ହୋଇଲେ ।
ଅଗସ୍ତି କହନ୍ତି ଶୁଣ ହେ ମନୁରାଜନ
ପଞ୍ଚପାଣ୍ଡବ ଆବର ଦେବଙ୍କ ନନ୍ଦନ ।
ଧୃତରାଷ୍ଟ୍ର ପୁରଦ୍ୱାରେ ପ୍ରବେଶ ହୋଇଲେ
ବିଦୁରଙ୍କୁ ଦେଖି ତହିଁ ନମସ୍କାର କଲେ ।
କହିଲେକ ଯୁଧିଷ୍ଠିର ବିଦୂର ଅଗ୍ରତେ
ଧୃତରାଷ୍ଟ୍ରଙ୍କ ଛାମୁକୁ ଯିବାକୁ କେମନ୍ତେ ।
ତାହା ଶୁଣିଣ ବିଦୂର ଭିତରକୁ ଗଲେ
ପାଣ୍ଡବଙ୍କ ଆସିବାର ରାଜାଙ୍କୁ କହିଲେ ।

ଶୁଣିଣ ବିଦୂର ବାକ୍ୟ ବୋଲେ ଧୃତରାଷ୍ଟ୍ର
ଅଇଲେ କି ସୁମରଇ ମୋତେ ପୁତ୍ରକଷ୍ଟ ।
କର୍ଣ୍ଣ ଶଲ୍ୟ ଭୁରିଶ୍ରବା ଆଦିଙ୍କୁ ମାଇଲେ
ଭୀଷ୍ମ ଦ୍ରୋଣ ଆବର ଯେ ଶତେପୁତ୍ର ତୁଲେ ।
ବନ୍ଧୁ ସୋଦର ସଖାଙ୍କୁ ସମୂଳେ ନିପାତ
ଆସିଛନ୍ତି ଦେଖିବାକୁ ମୋହର ସମ୍ପଦ ।
ନିଷ୍ଠୁର ସେ ପାଣ୍ଡବେ ମୋଠାରେ କିସ କାର୍ଯ୍ୟ
ନିଷ୍କଣ୍ଟକ ହେଲା ଏବେ ଭୁଞ୍ଜନ୍ତୁ ସ୍ୱରାଜ୍ୟ ।
ଏପରି ବଚନ ଯହୁଁ ବୋଲେ କୁରୁସାଇଁ
ଭାଷଇ ବିଦୂର କ୍ରୋଧ କର କିସପାଇଁ ।
ପାଣ୍ଡବଙ୍କର ଏଥିରେ ନାହିଁ କିଛି ଦୋଷ
କୁଳକ୍ଷୟ କରାଇଲୁ ତୁହି ହୋ ନରେଶ ।
ଅଗସ୍ତି ହୋଇ ତୁ ଜନ୍ମିଥିଲୁ ଆହୋ ନୃପ
ଶୋଷିବୁ କୁରୁସାଗର ସେ ତ ଜୀର୍ଣ୍ଣକୂପ ।
ଆଦ୍ୟରୁ ନକଲ ନୃପ ଯେ ଯେତେ କହିଲେ
ଏକ ପୁତ୍ର ତେଜିଥିଲେ ସର୍ବେ ଥାନ୍ତେ ଭଲେ ।
ଏକପୁତ୍ର ତେଜିବାକୁ ମନେ କଷ୍ଟ କଲୁ
ଆପେ ଅରଜିଣ କିମ୍ପା ପରେ ଦୋଷ ଦେଲୁ ।
ଯାହାଙ୍କୁ ନନ୍ଦନନ୍ଦନ ଅଟନ୍ତି ସପକ୍ଷ
ତାଙ୍କର ଏ ତିନିଲୋକେ ଅଛି କେ ବିପକ୍ଷ ।
ବିଦୂର ଯହୁଁ କହିଲେ ଉଚିତ ବଚନ
ଶୁଣିକରି ଧୃତରାଷ୍ଟ୍ର ହୋଇଲେ ମଉନ ।
ବିଦୂର ବୋଇଲେ ଶତପୁତ୍ରଙ୍କୁ ମରାଇ
ନିର୍ଲ୍ଲଜ ଜୀବନ ତୋର ନଗଲା କିମ୍ପାଇଁ ।
ବଞ୍ଚିବାକୁ ଇଚ୍ଛା ଯେବେ କରୁ ଧୃତରାଷ୍ଟ୍ର
ପାଣ୍ଡବଙ୍କୁ କୋଳ କରି ଛାଡ଼ ପୁତ୍ରକଷ୍ଟ ।
ମୂର୍ଖ ପଣକୁ ଆଚରି କଲୁ କେଉଁ କର୍ମ
ସର୍ବନାଶ ହେଲା ଏବେ ନ ବୁଝି ତା ଧର୍ମ ।
ଏହି ପରକାରେ ଯହୁଁ କହିଲେ ବିଦୂର
କ୍ରୋଧକୁ ସମ୍ଭାଳି ବୋଲେ ଧୃତରାଷ୍ଟ୍ର ଗିର ।
ହେ ବିଦୂର ପାଣ୍ଡବଙ୍କୁ ଆଣ ଯା ବହନ
କିମର୍ଥେ ଅଇଲେ ତାହା ବୁଝିବା ଏକ୍ଷଣ ।
ଏପରି ଶୁଣି ବିଦୂର ବାହାରକୁ ଗଲେ
ହେ କୃଷ୍ଣ ଯୁଧିଷ୍ଠି ଆସ ରାଜା ଆଜ୍ଞା ଦେଲେ ।
ଆଜ୍ଞା ପାଇ ପାଞ୍ଚଭାଇ ଭିତରକୁ ଗଲେ
ଧୃତରାଷ୍ଟ୍ର ଗାନ୍ଧାରୀର ଚରଣେ ନମିଲେ ।
ପୁତ୍ରଶୋକେ ଧୃତରାଷ୍ଟ୍ର ବିହ୍ୱଳ ମତିରେ
ଏମାନଙ୍କୁ ଦେଖିକରି ପଡ଼ିଲା କ୍ଷିତିରେ ।
ବାୟୁଯୋଗେ ମହାବୃକ୍ଷ ଯେସନେ ପଡ଼ଇ
ସେପରି ପଡ଼ି କାନ୍ଦିଲା ହାହା ପୁତ୍ର କହି ।
ଏକ ଦୁଇ ନୁହେଁ ମଲେ ଶଏ ଏକାବେଳେ
ବୁଢ଼ାକାଳେ ଯା ଦେଖିଲି ଥିଲା ମୋ କପାଳେ ।
ଆରେ ପୁତ୍ର ଦୁର୍ଯ୍ୟୋଧନ କାହିଁ ତୁ ରହିଲୁ
ଶୋକ ସମୁଦ୍ରରେ ମୋତେ ବୁଡ଼ାଇଣ ଗଲୁ ।
ବିଧାତା ଗଢ଼ି ଅଛଇ ମୋ ହିଆ ପାଷାଣେ
ଏ ପାପପ୍ରାଣ ରହିଛି ଅହିତ କାରଣେ ।
ଉଚ୍ଚସ୍ୱରେ କାନ୍ଦି କାନ୍ଦି କହେ ଏ ପ୍ରକାରେ
ହେ ସଞ୍ଜୟ କି କରିବି କହ ତ ବିଚାର ।
ବୁଢ଼ା ହେଲି ନୟନକୁ କିଛି ନ ଦିଶଇ
କେତେବେଳେ ଯା ସହିତ କେଉଁପରି ମୁହିଁ ।
କେତେ ହିତ ବୁଝାଇଲେ ମୋର ବନ୍ଧୁଜନେ
ସେମାନଙ୍କ କଥା ମୁହିଁ ନ ଶୁଣିଲି କାନେ ।
ହେ ସଞ୍ଜୟ ଭୀଷ୍ମ ଦ୍ରୋଣ ହାରିବେକ ରଣେ
ଏକଥା କେଭେ ବିଚାରି ନ ଥିଲି ମୁଁ ମନେ ।
ପୃଥିବୀରେ ନ ଥିଲା କେ ବୀର କର୍ଣ୍ଣ ପରି
ତାହାକୁ ପାର୍ଥ ମାଇଲା କହ କେଉଁପରି ।
ପୁଣି ସଞ୍ଜୟ କହିଲା ଯୋଡ଼ି ବେନିପାଣି
ସବୁ ବିଧିର ଆୟତ୍ତ ଶୁଣ ନରମଣି ।
କେବଣ ଶାସ୍ତ୍ର ନ ଜାଣ ଆହେ ନରପତି
ମୁହିଁ କିସ ବୁଝାଇବି ଅଟେ ମୂର୍ଖମତି ।
ଜୀଇବା ମାରିବା ଦୁଃଖ ସୁଖ ଭୋଗାଭୋଗ
କର୍ମଫଳେ ଏ ସକଳ ହୁଅଇ ସଂଯୋଗ ।
ତୁମ୍ଭ ପୁତ୍ର ଦୁର୍ଯ୍ୟୋଧନ ଖଳ ବୁଦ୍ଧି କଲା
ସାଧୁଜନଙ୍କର ହିତ କେଭେ ନ ଶୁଣିଲା ।
ଭୀଷ୍ମ ଦ୍ରୋଣାଦି ବିଦୂର ଯେତେ ବୁଝାଇଲେ
କେତେଖଣ୍ଡ ପଡ଼ାଗ୍ରାମ ଦେବାକୁ କହିଲେ ।
ସେଥିପାଇଁ ନିଜେ କୃଷ୍ଣ ଆସିଣ ଏଠାକୁ
ବୁଝାଇଲେ ନ ଶୁଣିଲା ତାଙ୍କର କଥାକୁ ।
କେବଳ କହିଲା ମୋର ସଙ୍ଗତରେ ରଣ
ନ କଲେ ନ ଦେବି ଭୂମି ତିଳେ ପରିମାଣ ।
ଆପଣ ମଧ୍ୟ ତାହାକୁ କହିଲେ ବୁଝାଇ
ତାହା ନ ଶୁଣିଲା ମନେ କୁରୁ ନରସାଇଁ ।
ଏହି ହେତୁରୁ ସେମାନେ ଅକାଳେ ବିନାଶ
ହୋଇଲେ ଏଥିକି ଦେବ କାହାର ଏ ଦୋଷ ।
ଆପଣାର ଦୋଷେ ସର୍ବେ ଗଲେ ଯମଆଳ
ତୁମ୍ଭର କିସ ଆୟତ୍ତ କିମ୍ପା ତୁମ୍ଭେ ଭାଳ ।
ପୂର୍ବାପର ନ ଭାବିଣ କଲା ଯେଉଁ କର୍ମ
ପତଙ୍ଗ ପ୍ରାୟ ଅନଳେ ହୋଇଲା ଦହନ ।
ଏହା ଶୁଣି ପୁଣି ଅନ୍ଧ କଲାକ ରୋଦନ
ନ ଯାଇ କିମ୍ପା ରହିଛି ଏହି ପଞ୍ଚପ୍ରାଣ ।

ଆହା ଦୁର୍ଯ୍ୟୋଧନ ପୁତ୍ର ତୁ କାହିଁ ରହିଲୁ
ଆରେ ଦୁଃଶାସନ ମୋତେ ସଙ୍ଗରେ ନ ନେଲୁ ।
ଶକୁନି ଆସିଣ ମୋତେ ଏତେ ଦଶା ଦେଲା
ତାହା ମନ୍ତ୍ରଣାରେ ମୋର ବଂଶ ନାଶ ହେଲା ।
କାହାର ଆଶ୍ରୟ ନେଇ ଏବେ ମୁଁ ରହିବି
ଦିନ ନ ସରିବ ମୋର ଏହା ଭାବି ଭାବି ।
ପଣ୍ଡିତ ବିଦୂର ପୁଣି କହିଲେ ବୁଝାଇ
ମହାରାଜା ଆଉ ଶୋକ କର କାହିଁପାଇଁ ।
ଯେତେ ଦିନକୁ ନିୟତ ଯାର ହୋଇଥାଏ
ସେଦିନ ନ ଟଳଇ ସେ ପରଲୋକଯାଏ ।
ମହା ମହାବୀର ଯାନ୍ତି ନିତି ଯମପୁର
ଭାବି ଦେଖ ମୃତ୍ୟୁ ଶବ ସକଳ ସଂସାର ।
ମରଣର କାଳାକାଳ ନାହିଁ ହେ ରାଜନ
ତୁମ୍ଭର ଶୋକ କରିବା ଅଟେ ଅକାରଣ ।
କେହି ମରେ ଗର୍ଭେ ଥାଇ ସେହି ଦଶମାସେ
କେ ପୃଥିବୀ ସ୍ପର୍ଶ କରି ଯାଏ ଯମବାସେ ।
କେହି ମରେ ବାଲ୍ୟକାଳେ ଏହା କର୍ମ ଫଳ
କେ କାହାକୁ ନ ପାରଇ ମାରି ରବିତଳ ।
ମୋର ବାକ୍ୟେ ଶାନ୍ତ ହୁଅ ଆହେ ନରସାଇଁ
ଶୋକ କଲେ ଆଉ ଫେରି ଆସିବେକି କେହି
ବିଦୂରଠାରୁ ଏପରି ଶୁଣି ତଥ୍ୟକଥା
ଦୀର୍ଘ ନିଃଶ୍ୱାସ ପକାଇ ପୋତିଲା ସେ ମଥା ।
ପୁଣି ଗାନ୍ଧାରୀ କହିଲା ଆରେ ଯୁଧିଷ୍ଠିର
କି ଯଶ ଅର୍ଜିଲୁ ମାରି ଶତ ପୁତ୍ରମୋର ।
ଛାର ରାଜ୍ୟପାଇଁ ବାବୁ ଧର୍ମକୁ ଲଙ୍ଘିଲ
ଜ୍ଞାତି ବନ୍ଧୁବାନ୍ଧବଙ୍କୁ ବିନାଶ କରିଲ ।
ଯେବଣ କାଳରେ ବାବୁ ବିଭା ମୁଁ ହୋଇଲି
ସ୍ୱାମୀ ମୋର ଅନ୍ଧ ବୋଲି ଶ୍ରବଣେ ଶୁଣିଲି ।
ମନ ମଧ୍ୟରେ ଭାବିଲି ଭର୍ତ୍ତା ଚକ୍ଷୁହୀନ
ସୁନ୍ଦର ବସ୍ତୁ ଦେଖିବା ମୋର ଅକାରଣ ।
ଅନ୍ଧପଟଳ ବାନ୍ଧିଲି ସ୍ୱାମୀର ନିମନ୍ତେ
ନ ଚାହିଁଲି ପୁତ୍ର ମୁଖ ଆଜ ପର୍ଯ୍ୟନ୍ତେ ।
ଅନ୍ଧପଟଳ ମୋହର ଫେଡ଼ ଯୁଧିଷ୍ଠିର
ତୁମ୍ଭ ମୁଖ ଚାହିଁ ଯାଉ ପୁତ୍ରଶୋକ ମୋର ।
ଶ୍ରୀକୃଷ୍ଣ ପୁଚ୍ଛିଲେ ଗୁପ୍ତେ କହ ସହଦେବ
ପଟଳ ଫେଡ଼ି ଚାହିଁଲେ କେଉଁ କଥା ହେବ ।
ସହଦେବ ବୋଲେ ଏହି ଚାହିଁବ ଯାହାରେ
ଅବଶ୍ୟ ଦହନ ହେବ ତା ନେତ୍ର ଅଗ୍ନିରେ ।
ପୁଣି ଶ୍ରୀହରି କହିଲେ ଆହେ ସହଦେବ
ଏହାର ଅନ୍ଧପଟଳ କିପରି ଫିଟିବ ।
ବିଚାରେ ଯା ଏକ ପୁତ୍ର ଅଟଇ ଦୁର୍ଦ୍ଧକ୍ଷ
ସେ ଅନ୍ଧପଟଳ ଫେଡୁ ଚାହୁଁ ତାର ମୁଖ ।
ଏହା କହି ଦୁର୍ଦ୍ଧକ୍ଷକୁ ଡାକିଣ ସରାଗେ
ବୋଇଲେ ମାତା ପଟଳ ଫେଡ଼ ବାବୁ ବେଗେ ।
ଶୁଣି ଶ୍ରୀକୃଷ୍ଣ ବଚନ ସେ ଦୁର୍ଦ୍ଧକ୍ଷ ବାଳ
ଫେଡ଼ନ୍ତେ ଯାଇ ମାତାର ସେ ଅନ୍ଧପଟଳ ।
ଚକ୍ଷୁ ମଳିଣ ଗାନ୍ଧାରୀ ବଦନକୁ ଟେକି
ଚାହିଁ ଦିଅନ୍ତେ ଦୁର୍ଦ୍ଧକ୍ଷ ଦେହ ଗଲା ଜଳି ।
ପାଣ୍ଡବଙ୍କୁ ତହୁଁ ହରି ଆଡ଼ କରିଥିଲେ
କି କର୍ମ କଲୁ ଗାନ୍ଧାରୀ ବିଦୂର କହିଲେ ।
ଯୁଧିଷ୍ଠି ଶରଣେ ବଞ୍ଚିଥିଲା ଯେଉଁ ବସ୍ତ୍ର
ତାକୁ ତୁ ଦହନ କଲୁ ସେ ପରା ଦୁର୍ଦ୍ଧକ୍ଷ ।
ଗାନ୍ଧାରୀ ବୋଇଲେ ମୁହିଁ ଆଦ୍ୟରୁ ଅନ୍ଧୁଣୀ
କିଏ ସେ ମୋ ପୁତ୍ର ବୋଲି ନ ପାରିଲି ଚିହ୍ନି ।
ଶ୍ରୀକୃଷ୍ଣ ବୋଇଲେ ମାଗୋ ତୋର ପୁତ୍ର ଗୋଟି
ଶରଣ ପଶିଲା ତାକୁ ରଖିଲେ ଯୁଧିଷ୍ଠି ।
ଏକ ନନ୍ଦନ ଥିଲା ତୋ ଅନ୍ଧର ଲଉଡ଼ି
ଧିକ ତୋ ବିଚାର ତାକୁ ମାଇଲୁ ଯା ପୋଡ଼ି ।
ଏବେ ପୂର୍ବପରି ବାନ୍ଧ ଅନ୍ଧପଟଳକୁ
କି ଯଶ ଲଭିବୁ ନାଶ କଲେ ଯୁଧିଷ୍ଠିଙ୍କୁ ।
ଏବେ ବିଚାର ପାଣ୍ଡବେ ତୋର ନିଜ ବାଳ
ନିଜ ପୁତ୍ରଙ୍କୁ ପାଶୋରି ଯାଙ୍କୁ ପ୍ରତିପାଳ ।
ଗାନ୍ଧାରୀ ହୋଇଲେ ଶାନ୍ତ କୃଷ୍ଣଙ୍କ ବଚନେ
ଧୃତରାଷ୍ଟ୍ର କୋପ କଲା ଦୁର୍ଦ୍ଧକ୍ଷ ନିଧନେ ।
ରେ ଦଇବ ବୃଦ୍ଧକାଳେ ଦେଲୁ ପୁତ୍ର କଷ୍ଟ
ଇନ୍ଦ୍ର ସମ ଶତପୁତ୍ର ମୋର କଲୁ ନଷ୍ଟ ।
ବୁଢ଼ାକାଳେ ମୋତେ ତୁହି କଲୁ ଅପୁତ୍ରିକ
କେଉଁ ଜନ୍ମେ କରିଥିଲି କେବଣ ପାତକ ।
ଶ୍ରୀକୃଷ୍ଣ ବୋଇଲେ ପାଞ୍ଚଭାଇ ତୋର ବାଳ
ତାଙ୍କୁ ପାଶୋରି ଏହାଙ୍କୁ ଏବେ ପ୍ରତିପାଳ ।
ଜୟ ମାତା ସରସ୍ୱତୀ ବିଷ୍ଣୁଙ୍କ ଘରଣୀ
ଜୟମାତା ସରସ୍ୱତୀ ଜୟ ବୀଣାପାଣି ।
ତୋହର ବୀଣା ଶୁଣିଣ ବିଷ୍ଣୁ ମୋହ ହୋଇ
ସବୁବେଳେ ତୋତେ ପାଖେ ରଖିଥାନ୍ତି ସେହି ।
ତୋ ପାଦ କମଳେ ମୋର ସଦା ରହୁ ଆଶ
କହଇ ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

—o—

## ଧୃତରାଷ୍ଟ୍ରଦ୍ୱାରା ଲୌହଭୀମ ଚୂର୍ଣ୍ଣ ଓ ଗାନ୍ଧାରୀର କୃଷ୍ଣଙ୍କୁ ଶାପ ଦେବା

ଏଥୁଅନ୍ତେ ରାଜା ପୁଚ୍ଛେ ଯୋଡ଼ି ବେନିପାଣି
କି ହେଲା ଏଥିଉତ୍ତାରୁ କହ ମୁନିମଣି ।
ରାଜା ବଚନେ କହନ୍ତି କୁମ୍ଭଋଷି ଶିଷ୍ୟ
ମନଦେଇ ଶୁଣ ତୁମ୍ଭେ ବିଲଙ୍କର ଈଶ ।
ଧୃତରାଷ୍ଟ୍ର ଶୁଣିକରି ଶ୍ରୀକୃଷ୍ଣଙ୍କ କଥା
ଭୀମସେନକୁ ବୋଇଲେ ଛାଡ଼ ମନୁ ବ୍ୟଥା ।
ଆସ ବାବୁ ଭୀମସେନ ଆସ ମୋର ବାପ
ତୋତେକୋପେ ଧରି ମନୁ ତେଜିବି ସନ୍ତାପ ।
କୋଳ ପ୍ରସାରିଣ ଯହୁଁ ଭୀମକୁ ଡାକିଲା
ଭୀମ ଉଠି ଯିବାପାଇଁ ମାନସେ ଭାଳିଲା ।
ଚକ୍ରଧର ଜାଣିପାରି ମନ ଭୀମଙ୍କର
ପଛକୁ ଘୁଞ୍ଚାଇ ଦେଲେ ଧରି ତାଙ୍କ କର ।
ପୁଣି ଅନ୍ଧ ଧୃତରାଷ୍ଟ୍ର ବୁଢ଼ା ଛିଡ଼ା ହୋଇ
ଡାକେ ଭୀମସେନ ଚାଟୁ ବଚନକୁ କହି ।
ତହୁଁ ଲୌହଭୀମ ଆଣି ଦେଲେ ନରହରି
ଧୃତରାଷ୍ଟ୍ର ଧରି ତାକୁ କକର୍ଷଣ କରି ।
ମହାବଳବନ୍ତା ଧୃତରାଷ୍ଟ୍ର ବଜ୍ରସେହ୍ନା
ଭୁଜେ ଭିଡ଼ନ୍ତେ ଲୁହାର ଭୀମ ହେଲା ଚୂନା ।
ବୈବସ୍ୱତ ମନୁ ପୁଚ୍ଛା କଲେ ହେ ଅଗସ୍ତି
ଆଶ୍ଚର୍ଯ୍ୟ କଥା କହିଲ ଆହେ ବ୍ରହ୍ମଯତି ।
ଲୌହମୟ ଭୀମମୂର୍ତ୍ତି କେଉଁଠୁ ପାଇଲେ
ଧାତିକାରେ କୃଷ୍ଣ ଧୃତରାଷ୍ଟ୍ର ଆଗେ ଦେଲେ ।
ଅଗସ୍ତି ବୋଇଲେ ଶୁଣ ହେ ମନୁ ରାଜନ
ଧୃତରାଷ୍ଟ୍ର ଶତପୁତ୍ର ଜନ୍ମିଲେ ଯେ ଦିନ ।
ଅନ୍ଧ ନରପତି ବୋଲେ ଶୁଣ ହେ ବିଦୁର
ପୁତ୍ର ସମସ୍ତଙ୍କୁ ଆଣି ଦିଅ ମୋ କୋଳର ।
ବିଦୁର ବୋଇଲେ ଦେବ ଜ୍ୟେଷ୍ଠପୁତ୍ର ତୋର
ଏକାଙ୍ଗ ଚକ୍ରବର୍ତ୍ତୀ ଏ ହୋଇବ ମହୀର ।
ଶଙ୍ଖନିଧି ପଦ୍ମ ନିଧି ଅଛି ଏକା କରେ
ପଦ୍ମବିକାଶ ହୋଇବ ଚାଲିଲେ ପାଦରେ ।
ଲକ୍ଷେ ନୃପତିରେ ହେବ ଏ ମଉଡ଼ମଣି
ଏହା କନ୍ଧୁ ନ ଛାଡ଼ିବେ କେଭେ କମଳିନୀ ।
ଜଣାଯାଏ ଲେଖାଅଛି ଏହା କପାଳରେ
ଅନ୍ତକାଳେ ବଧ ହେବ ଭୀମର ହସ୍ତରେ ।
କର୍କଶ ମଧୁ ପିଙ୍ଗଳ ପ୍ରକୃତି ଏହାର
ଏହୁ ଥିଲେ ବଂଶ ଭଲେ ନ ରହିବ ତୋର ।
ଏହା ହେତୁ କୁଳକ୍ଷୟ ହେବ ନରସାଇଁ
ତେଣୁ କହିଛି ଏହାକୁ ରଖି ନ ଯୋଗାଇ ।
ଧୃତରାଷ୍ଟ୍ର ବୋଲେ ଶୁଣି ବିଦୁର ବଚନ
ଏଡ଼େ ବିଚକ୍ଷଣ ପୁତ୍ରେ ନାଶିବି କେସନ ।
ତହୁଁ ଏକ ଲୁହା ଭୀମ ଗଢ଼ାଇ ଆଣିଲା
ଆଖଡ଼ା ଶାଳରେ ତାକୁ ନେଇ ରଖାଇଲା ।
ଲୌହଗିରି ସମ ତାର ଦିଶଇ ଶରୀର
ନିତି ତା ସଙ୍ଗେ ଲଢ଼ଇ ଦୁର୍ଯ୍ୟୋଧନ ବୀର ।
ଏପରି ପ୍ରତ୍ୟହ ଲଢ଼ି ଭାନୁମତୀ ଈଶ
ଭୀମକୁ ମାରିବା ପାଇଁ କରଇ ଅଭ୍ୟାସ ।
କୃଷ୍ଣ ଭୀମ ପାର୍ଥ ଯାଇ ତାହାକୁ ଆଣିଲେ
ଧୃତରାଷ୍ଟ୍ରଙ୍କ କୋଳରେ ନେଇକରି ଦେଲେ ।
ତାହାକୁ ଯେ ଧୃତରାଷ୍ଟ୍ର ସବଳେ ଚାପିଲେ
ମୋଡ଼ାମୋଡ଼ି କରନ୍ତେ ସେ ଗୁଣ୍ଡା ହୋଇଗଲା ।
ଲୁହାର ଆଘାତେ ମୁଖୁଁ ବହନ୍ତେ ରୁଧିର
ଅସାଷ୍ଟ ହୋଇ ରାଜା ପଡ଼ିଲା ଭୂମିର ।
ଭୀମସେନ ଶତସିଂହ ବଳେ ବଳବାନ
ଏକଲକ୍ଷ ସିଂହବଳ ବହଇ ରାଜନ ।
କୋଳରେ ଧରି ବିଦୁର ମୁଖେ ସିଞ୍ଚି ପାଣି
ସଚେତ ନିମନ୍ତେ ବିଞ୍ଚେ ଧରିଣ ବିଞ୍ଚଣି ।
ଯହୁଁ ଚେତନା ପାଇଲା ଅନ୍ଧ ଦଣ୍ଡଧାରୀ
ସଙ୍କଟେ କ୍ରୋନ୍ଦନ କଲା ଭୀମ ନାମ ଧରି ।
କୁଳର ମଣ୍ଡନ ଆରେ ମୋର ବୃକୋଦର
ଗାଢ଼ ଆଲିଙ୍ଗନ କଲି ମୁହିଁ ମୂର୍ଖ ଛାର ।
ତୋରହୀନବଳ ଜାଣି ନ ଥିଲି ମୁଁ ମନ୍ଦ
କେଉଁବଳେ ମାଇଲୁ ତୁ ମୋ ମାନଗୋବିନ୍ଦ ।
ଜାଣୁ ଜାଣୁ ଏଡ଼େ ବଡ଼ ମନ୍ଦକର୍ମ କଲି
ତୋତେ ମାରି କି ମୋହର ପୁତ୍ରଙ୍କୁ ପାଇଲି ।
ତୋତେ ମାଇଲି ବାବୁରେ ଲଭିଲି କି ଯଶ
ଏଡ଼େ ମନ୍ଦପଣ କିମ୍ପା କଲି ମୁଁ ବାଳୀଶ ।
ଏପରି କାନ୍ଦିଲା ଯହୁଁ ଧୃତରାଷ୍ଟ୍ର ରାୟ
ଶୁଣି ଭୀମ କ୍ରୋଧଭରେ କମ୍ପାଇଲା କାୟ ।
ଦୁଇହାତେ ବୁଲାଇଲା ଗଦା ଅତି ରୋଷେ
ଧୃତରାଷ୍ଟ୍ର ମାରିବାକୁ ଚିନ୍ତିଲା ମାନସେ ।
ଯୁଧିଷ୍ଠି ବୋଇଲେ ନୁହେଁ ଉଚିତ ଏ କର୍ମ
ପୁତ୍ର ପାଇଁ ହୋଇଛନ୍ତି ଏହି ମତିଭ୍ରମ ।
ଜ୍ୟେଷ୍ଠପିତା ଅଟନ୍ତି ସେ ତାଙ୍କ ଦୋଷ ଛାଡ଼
ପୁତ୍ରଙ୍କ ନିଧନେ ରାଗି ହୋଇଛି ସେ ରାଢ଼ ।
ଶ୍ରୀକୃଷ୍ଣ ବୋଇଲେ ଆହେ ଶୁଣ ଧୃତରାଷ୍ଟ୍ର
ଭୀମକୁ ପ୍ରାଣେ ମାଇଲ ଗଲା ପୁତ୍ର କଷ୍ଟ ।

ଯାହା ଉପରେ ତୁମ୍ଭର ଚିତ୍ତେ କ୍ରୋଧ ଥିଲା
ସେ ମରିଲା ନିଷ୍କଣ୍ଟକ ରାଜ୍ୟ ଏବେ ହେଲା ।
ଭୀମର ନିଧନେ ଏବେ ପାଣ୍ଡବ ନିର୍ମାକ୍ଷୀ
କ୍ରୋଧ ସମ୍ଭାଳ ହେ ରାଜା ହେଲ ମହାସୁଖୀ ।
ପୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ନରସାଇଁ
ତୁମ୍ଭ ବଳରେ ଭୀମର କିସ ପାରେ ହୋଇ ।
ଭୀମସେନ ବୋଲେ ଶାନ୍ତ ହୋଇଲୁକି ପିତା
ମୁହିଁ ପରା ଭୀମସେନ ତୁମ୍ଭ ପୁତ୍ରହନ୍ତା ।
ଏମନ୍ତ କୂଟ କଲେ କି ପାଣ୍ଡବଙ୍କୁ ମାରି
ଯାହାଙ୍କ ସହାୟକର୍ତ୍ତା ଅଛନ୍ତି ଶ୍ରୀହରି ।
ଅନେକ ଝିଙ୍ଗାସ ଯହୁଁ ପାବନୀ କହିଲା
ଧୃତରାଷ୍ଟ୍ର ବେନି ନେତ୍ରୁ ଲୋତକ ବହିଲା ।
କୋଳେ ଧରି ଧୃତରାଷ୍ଟ୍ର ବୋଲଇ ବିଦୂର
ସବୁ ସରିଲାଣି କ୍ରୋଧ ପରିତ୍ୟାଗ କର ।
ଧୃତରାଷ୍ଟ୍ର ବୋଲେ ଦେବ କେମନ୍ତେ ଧରିବି
ପୁତ୍ରଙ୍କ ନିଧନେ ଆଉ ଜୀଇ କି ମରିବି ।
ଚାଲ ହେ ବିଦୂର ଦେଖିଯିବା କୁରୁକ୍ଷେତ୍ର
ରଥରେ ଆରୋହି ତହୁଁ ଚଳିଲେ ତ୍ୱରିତ ।
ସଞ୍ଜୟ ସାରଥି ପଣେ ବାହେ ରହୁବର
କୃଷ୍ଣ ସହିତେ ପାଣ୍ଡବ ପାଞ୍ଚ ସହୋଦର ।
ବିଦୂର ଆବର ଧୃତରାଷ୍ଟ୍ର ନରସାଇଁ
ଗାନ୍ଧାରୀ ସହ ବଧୂଏ ରଥକୁ ଆରୋହୀ ।
କୁରୁକ୍ଷେତ୍ର ମଧ୍ୟେ ଯହୁଁ ପ୍ରବେଶ ହୋଇଲେ
ଶ୍ରୀକୃଷ୍ଣ ଅଗ୍ରତେ ତହୁଁ ଗାନ୍ଧାରୀ କହିଲେ ।
ଦେଖିବି ବଂଶ ମୋର କେହ୍ନେ ହେଲେ ହତ
ଏହାକହି ପଟଳକୁ ଫେଡ଼ିଣ ତୁରିତ ।
ବୋଇଲା ଦେଖ ହେ କୃଷ୍ଣ ଏହି କୁରୁକ୍ଷେତ୍ର
ମହାନିଦ୍ରା ଯାଇଛନ୍ତି କେତେ କ୍ଷତ୍ରିପୁତ୍ର ।
ଦ୍ୱାଦଶ ଯୋଜନଯାଏ ମୃତ୍ୟୁପିଣ୍ଡ ପଡ଼ି
ଧରାଧରି ହୋଇ ସର୍ବେ ଗଲେଣି ତ ସଡ଼ି ।
ଅନେକ ରାଜା ସମର କାରଣେ ଅଇଲେ
ରଣ ତେଜି ଶୋଇଛନ୍ତି ଧରଣୀର କୋଳେ ।
ନାନା ରତ୍ନ ଆଭରଣ ଅଙ୍ଗେ ପିନ୍ଧିଛନ୍ତି
ସେ ବାଳ ରବି ପରାୟ ତେଜ ବିକାଶନ୍ତି ।
ଚାରିଆଡ଼କୁ ନିରୀକ୍ଷି ଗାନ୍ଧାରୀ ଚାହିଁଲା
ଅଗଣିତ ସୈନ୍ୟ ପଡ଼ିଅଛନ୍ତି ଦେଖିଲା ।
ଏହିପରି ଦେଖି ଦେଖି ଗଲା ଧୀରେ ଧୀରେ
ପହଞ୍ଚିଲା ଭୀଷ୍ମ ଶରଶଯ୍ୟା ନିକଟରେ ।
ସଞ୍ଜୟ କହନ୍ତି ଦେଖ ଦେଖ ଗୋ ଗାନ୍ଧାରୀ
ଶରଶେଯେ ଶୋଇଛନ୍ତି ଭୀଷ୍ମ କେଉଁପରି ।

ଗାନ୍ଧାରୀ ବୋଲେ ହେ କୃଷ୍ଣ ଏ ଶାନ୍ତନୁସୁତ
ସୁରଗଣେ ଜିଣିବାକୁ ଏକା ସାମରଥ ।
କହି ନିରୀକ୍ଷି ଚାହିଁଲା ଭୀଷ୍ମଙ୍କର ମୁଖ
ମୋର ପୁତ୍ରଙ୍କ ନିମନ୍ତେ ଭୋଗିଲ ଏ ଦୁଃଖ ।
ଧନ୍ୟ ଧନ୍ୟ ଭୀଷ୍ମ କୁରୁବଂଶେ ଉପୁଜିଲ
ପିତାର ନିମନ୍ତେ ଦାରା ଗ୍ରହଣ ନ କଲ ।
ସ୍ୱଇଚ୍ଛାରେ ମରିବାକୁ ମନକୁ ବଳାଇ
ଶରଶଯ୍ୟା କରି ରଣକ୍ଷେତ୍ରେ ଅଛ ଶୋଇ ।
ହେ କୃଷ୍ଣ ନ ଜାଣିଲି ମୁହିଁ ଭୀଷ୍ମଙ୍କ ଚରିତ
ଆପେ ମଲେ ପାଣ୍ଡବଙ୍କୁ ନ କରିଲେ ହତ ।
ସର୍ବଦା ଏ ସେମାନଙ୍କୁ ସ୍ନେହ କରିଥାନ୍ତି
କେମନ୍ତେ ନାଶିଲେ ତାଙ୍କୁ ପାଣ୍ଡବ ଦୁର୍ମତି ।
ପୁଣି ପାଣ୍ଡବେ ବୋଇଲେ ମନ୍ଦକୃତ୍ୟ କଲ
ଗତ ଆଗତ ନ ପାଞ୍ଚି ସବୁ ବୁଡ଼ାଇଲ ।
ଭୂରିଶ୍ରବା ଯେ ବାହ୍ଲିକ ବୀର ସୋମଦତ୍ତ
ବଂଶହୀନ ଜନେ ବାବୁ ନାଶିଲ କେମନ୍ତ ।
ତହୁଁ ଗାନ୍ଧାରୀ କ୍ରୋଧରେ ଚଳିଲା ତ୍ୱରିତ
ଦେଖିଲା ପଡ଼ିଅଛନ୍ତି ଭରଦ୍ୱାଜ ସୁତ ।
ଆହେ କୃଷ୍ଣ ଦେଖ ଦେଖ ଦ୍ରୋଣ ଏ ଅଟନ୍ତି
ଏହାଙ୍କୁ ଜିଣନ୍ତା କେହି ନ ଥିଲା ଏ କ୍ଷିତି ।
ଅଚଳ ଚାଳିବା ପାଇଁ କେ ହେଲା ସମର୍ଥ
ପୃଥିବୀକି ତୋଳିଧରି କେ କରିଲା ଛତ୍ର ।
ଅଣଚାଶ ବାୟୁଗତି ରୁନ୍ଧେ ଯେଉଁ ଜନ
ଜାଣିବା ସେ ଦ୍ରୋଣେ ଅବା କରିବ ନିଧନ ।
କେଉଁ କାରଣରୁ ଆହେ ଦେବ ଚକ୍ରଧାରୀ
ପଡ଼ିଲେ ଏ ଦ୍ରୋଣଗୁରୁ ରଣେ ପ୍ରାଣହାରି ।
ଯାହାଠାରେ ବିଦ୍ୟା ଶିଖି ଦେବକାର୍ଯ୍ୟ କଲା
ତାହାକୁ କେମନ୍ତେ ପାର୍ଥ ରଣରେ ମାଇଲା ।
ହେ କୃଷ୍ଣ ଦ୍ରୋଣ ଅଟନ୍ତି ଗୁରୁ ଏହାଙ୍କର
ନାଶିବାକୁ କେହ୍ନେ ସତ ବଳିଲା ତାଙ୍କର ।
ଗୁରୁଜନ ବଧ କଲେ ଛାର ରାଜ୍ୟପାଇଁ
ଏହି ଚାଣ୍ଡାଳଙ୍କ ମୁଖ ନ ଚାହିଁବି ମୁହିଁ ।
ତହୁଁ ଚଳିଲା ଗାନ୍ଧାରୀ କ୍ରୋଧଭର ହୋଇ
ଦେଖିଲାକ କର୍ଣ୍ଣ ଶରାଘାତେ ଅଛି ଶୋଇ ।
ଗାନ୍ଧାରୀ ବୋଲଇ କୃଷ୍ଣେ ଖେଦଭର ହୋଇ
ଦେଖ କର୍ଣ୍ଣ ତ୍ରିଭୁବନ ଅଜୟ ଅଟଇ ।
ମୋର ପୁତ୍ରଙ୍କ ନିମନ୍ତେ ଏହୁ ଯୁଦ୍ଧ କଲା
ଏଡ଼େ ବଡ଼ ବୀର ହୋଇ ରଣେ ପ୍ରାଣଦେଲା ।
ହା ହା କର୍ଣ୍ଣ ବୋଲି ତାକୁ ଧଇଲା ତୁରିତେ
ଆରେ ତୁମ୍ଭର ଭାଇକି ମାଇଲ କେମନ୍ତେ ।

ଅଭେଦ କବଚ କର୍ଣ୍ଣେ ଅମୃତ କୁଣ୍ଡଳ
କପଟରେ ମାଗି ଦାନ ନେଲେ ଆଖଣ୍ଡଳ ।
ଧୀର କରି ତୁହି ପାଦ ପକାଇବା ପାଇଁ
କ୍ଷିତି ନିତି ଶତଭାର ସୁବର୍ଣ୍ଣ ଦିଅଇ ।
ଇନ୍ଦ୍ରକୁ ତୋଷି ପାଇଲୁ ତୁ ବଜ୍ର ଶକତି
ଏତେବଡ଼ ଅସ୍ତ୍ର ରଖି ନ ପାରିଲୁ ବର୍ତ୍ତି ।
କର୍ଣ୍ଣକୁ କେମନ୍ତେ ନାଶ କଲୁ ଅରଜୁନ
ସକଳ ଭିଆଣ ତୋର ଅଟେ ଭଗବାନ ।
କୁରୁ ସାଗରକୁ କିଏ ପାରନ୍ତା କି ଜିର୍ଣି
ଉପାୟ କରିଣ ମରାଇଲୁ ଚକ୍ରପାଣି ।
ତହୁଁ ରୋଦନ କରିଣ ଚଳଇ ଗାନ୍ଧାରୀ
ଦେଖିଲାକ ଦୁଃଶାସନ ପଡ଼ିଅଛି ମରି ।
ଦେଖ ହେ ଶ୍ରୀକୃଷ୍ଣ ମୋର ଦୁଃଶାସନ ପୁତ୍ର
ରୁଧିରରେ ଜର ଜର ହୋଇଛି ତା ଗାତ୍ର ।
ଧନ୍ୟ ଭୀମସେନ ଧନ୍ୟ ପ୍ରତିଜ୍ଞା ତୋହର
ଦୁଃଶା ରକ୍ତେ ବନ୍ଧାଇଲୁ କେଶ ଦ୍ରୌପଦୀର ।
କ୍ଷତ୍ରିୟପଣ କରିଣ ରଣରେ ମାଇଲୁ
ହିଆ ବିଦାରିଣ ତାର ରୁଧିର ପିଇଲୁ ।
ଭୀମସେନ ବୋଇଲା ମୋ ହେଲା କେଉଁ ଦୋଷ
ପ୍ରତିଜ୍ଞା ପାଳନ କରି ନୁହେଁ ଅପଯଶ ।
ଭୀମ ବୋଲେ ଦେହେ ମାତ୍ର ମୁହଁ ଲଗାଇଲି
ଅକୀର୍ତ୍ତିକି ଡରି ରକ୍ତ ଗର୍ଭକୁ ନ ନେଲି ।
ଧଇଲା ଯାଜ୍ଞସେନୀର କେଶ ଯେଉଁ ହସ୍ତେ
ତାହା ଉପାଡ଼ିଲି ମାନଗୋବିନ୍ଦ ସାକ୍ଷାତେ ।
ତହୁଁ ଚଳିଲା ଗାନ୍ଧାରୀ ବିଦୂରକୁ ଘେନି
କିଛିଦୂରେ ଦେଖିଲା ଯେ ପଡ଼ିଛି ଶକୁନି ।
ଆରେ ବାବୁ ମୋ ଗାନ୍ଧାରଦେଶ ଅଧିପତି
ବୁଦ୍ଧି ବିବେକ ଜ୍ଞାନରେ ସମ ବୃହସ୍ପତି ।
ବିନାଦୋଷେ ଦୁର୍ଯ୍ୟୋଧନ ବହୁ ଶାସ୍ତି ଦେଲା
ପଥରଘରେ ଭରି ତୋ ବଂଶ ମରାଇଲା ।
ତହୁଁ ଉବୁରି ଅଇଲୁ ତୋର ବୁଦ୍ଧିବଳେ
ପିତୃଋଣ ପରିଶୋଧ କଲୁ ଏତେକାଳେ ।
ଦେଖ ବିଷ୍ଣୁ ଏ ମୋର ନିଜ ସହୋଦର
ଉପାୟ କରି ମାଇଲା ବଂଶକୁ ମୋହର ।
ଭାଇଏ ଏହାକୁ କି ବୋଲିବି ଯଦୁନାଥ
ଦେଖି ୟାକୁ ଶୋକ ମୋର ନ ହୁଏ କିଞ୍ଚିତ ।
ଭୋ କୃଷ୍ଣ ଏ ଯେବେ କରି ନ ଥାନ୍ତା ଏ କୃତ୍ୟ
କାହିଁପାଇଁ ମରିଥାନ୍ତେ ମୋର ଶତପୁତ୍ର ।
ହେ କୃଷ୍ଣ କୁରୁପାଣ୍ଡବ ଏହି ବେନିଦଳ
ଶକୁନି କୂଟ ନ ବୁଝି ଆରମ୍ଭିଲେ ଗୋଳ ।

ଆରେ ଆରେ ଶକୁନି ତୁ ନର୍କଗତି ପାଥି
ଦୁଷ୍ଟବୁଦ୍ଧି କରି ମରାଇଲୁ ଶତେପୁଅ ।
ଜୟଦ୍ରଥେ ଦେଖିଲା ସେ ତହୁଁ ଚଳିଯାଇ
ପାର୍ଥ ଏହାକୁ ମାଇଲୁ କେଉଁ ଦୋଷ ପାଇଁ ।
ଦୁଃଶୀଳା ତୁମ୍ଭମାନଙ୍କ ନୁହଇ କି ଭଗ୍ନୀ
ଏ କି ଦୋଷ ତାର ନ ସହିଲୁ ଫାଲଗୁନି ।
ତାହା ଶୁଣି ବୋଲେ ପାର୍ଥ କପଟେ ଗୋ ମାତ
ଜୟଦ୍ରଥ ମୋ ପୁତ୍ରକୁ ମାଇଲା କେମନ୍ତ ।
ବନସ୍ତେ ଚୋରାଇ ନେଉଥିଲା ଦ୍ରୌପଦୀକୁ
ଦୁଃଶୀଳା ସକାଶେ ଥରେ ଛାଡ଼ିଦେଲି ତାକୁ ।
ତହୁଁ କ୍ରନ୍ଦନ କରିଣ ଚଳିଲା ଗାନ୍ଧାରୀ
ଦେଖ ସତାନବେ ପୁତ୍ର ପଡ଼ିଛନ୍ତି ମରି ।
ହା ହା ପୁତ୍ର ଗୁଣମଣି ଛାଡ଼ିଗଲ କେଣେ
ଜୀବନ୍ତେ ତୁମ୍ଭ ମୁଖ ମୁଁ ନ ଦେଖିଲି ଦିନେ ।
ଏବେ ତୁମ୍ଭ ମୃତଦେହ ଦେଖୁଛିରେ ବାବୁ
ଦେଖ ଶ୍ରୀକୃଷ୍ଣ ମୋ ବଂଶ ଛାଡ଼ିଲାଣି ସବୁ ।
ଏତେ ପୁତ୍ର ଉପୁଜାଇ ଆଣ୍ଠୁକୁଡ଼ି ହୋଲି
ଏହା କହି ମୂର୍ଚ୍ଛାଯାଇ ପଡ଼ିଲା ସେ ଢଳି ।
ବିଦୂର ସଞ୍ଜୟ ତାକୁ ଧରନ୍ତେଣ ଟେକି
ଚେତନା ପାଇ ବୋଇଲା ଶୁଣ ବନମାଳି ।
ଡାକ ହେ ଭୀମସେନକୁ ଦେଖେ ତାର ମୁଖ
କେହ୍ନେ ପାଶୋରିବି ଶତପୁତ୍ରଙ୍କର ଦୁଃଖ ।
ଖେଦବର ହୋଇ ତହୁଁ ଗାନ୍ଧାରୀ ଚଳିଲା
ଅସାଷ୍ଟମେ ଦୁର୍ଯ୍ୟୋଧନ ପଡ଼ିଛି ଦେଖିଲା ।
ମଣି ନିର୍ମିତ ମୁକୁଟ ଗଳାରତ୍ନ ହାର
ଦିଶୁଛନ୍ତି ନୀଳମେଘେ ବିଦ୍ୟୁ ପରକାର ।
ଯୁଝିବାକୁ ଆସିଥିଲେ ଯେତେ ଦଣ୍ଡଧାରୀ
ମଣିମୟ ହାର ହୃଦେ ଦେଖୁଥିଲେ ଭରି ।
କିମ୍ପାଇରେ ଭୀମ ଏଡ଼େ ମନ୍ଦକର୍ମ କଲୁ
ଦୁର୍ଯ୍ୟୋଧନ ଜାନୁପରେ ଗଦା ତୁ ପିଟିଲୁ ।
ଦିଶୁଥିଲା ଏ ମୁକୁଟ ମଣି କି ସୁନ୍ଦର
ପାଦରେ ମରଦି ତାକୁ କରିଦେଲୁ ଚୁର ।
ବୋଇଲା ଯେ ଭୀମସେନ ଶୁଣ ଆଗୋ ମାଏ
ଦ୍ରୌପଦୀର ଜାନୁ ଦେଖୁଥିଲେ ତୋର ପୋଏ ।
ତେଣୁ ଦ୍ରୌପଦୀ ତାହାକୁ ଶାପ କଲେ ଦାନ
ରେ ମୂଢ଼କାଳେ ତୋହର ହେଉ ଜାନୁଭଗ୍ନ ।
ଅପାର ଅନ୍ୟାୟ ମାଗୋ ତୋର ସୁତ କଲେ
ଯୁଧିଷ୍ଠିଙ୍କି କୂଟ ପଶା ଭ୍ୟାଇ ଖେଳାଇଲେ ।
ତେରବର୍ଷ ପଠାଇଲେ ବନକୁ ଆମ୍ଭଙ୍କୁ
ମଗାଇଲୁ ନିଜ ଗ୍ରାମ ପେଷି ଶ୍ରୀକୃଷ୍ଣଙ୍କୁ ।

ଅପମାନ ଦେଲେ ଫେରି ଅଇଲେ ମୁରାରି
କଳି ନ ଭାଙ୍ଗିଲୁ କିମ୍ପା ପୁତ୍ରଙ୍କୁ ତିଆରି ।
ତୁହି କି ନ ଜାଣୁ ମୋତେ ଦେଲେ ବିଷଲଡ୍ଡୁ
ଆମ୍ଭଙ୍କୁ ବିଷ ଦେଉଛୁ ତୋର ମୁହଁ ପୋଡୁ ।
ପୁଣି ଏକ ଜତୁଘର ଭିଆଇଲେ କୂଟେ
ତୋର ପୁତ୍ରମାନେ ପରା ନ ଥାନ୍ତି କପଟେ ।
ସାଧୁ ନିର୍ଦ୍ଦୋଷ ଲୋକଙ୍କୁ ଦେଲେ ଏତେ ଶାସ୍ତି
ଏପରି କେତେ ଅନ୍ୟାୟ ସହେ ପ୍ରଜାପତି ।
ଆମ୍ଭମାନଙ୍କୁ ପୂରାଇ ନ ଦେଲା ରାଜ୍ୟକୁ
ସେ କାଳେ ନ ତିଆରିଲୁ କିମ୍ପା ତୋ ପୁତ୍ରକୁ ।
ପୁଣି ମଧ୍ୟସ୍ଥ ହୋଇଣ ଗଲେ ଜନାର୍ଦ୍ଦନ
ସଭାରେ ତାଙ୍କୁ ଯେତେକ ଦେଲେ ଅପମାନ ।
ଏକାଳେ କିମ୍ପା ତିଆରି ନ ପାରିଲୁ ମାୟେ
ମନ୍ଦ ବୁଦ୍ଧିରେ ଅବଶ୍ୟ ହୁଅଇ ଅଜୟେ ।
ତୋ ପୁତ୍ରଙ୍କ ଅନ୍ୟାୟକୁ କାହିଁକି ନ ନିନ୍ଦୁ
ବୁଝି ନ ବୁଝିଲା ପରି ବାହୁନି ତୁ କାନ୍ଦୁ ।
ପୁଣି କାନ୍ଦି ଭୀମସେନେ ଗାନ୍ଧାରୀ କହିଲା
ମାଇଲୁ ତେବେ ତୋ ମନ ଶାନ୍ତ ନ ହୋଇଲା ।
ଦୁର୍ଯ୍ୟୋଧନ ଗଦାଘାତେ ଅସାକ୍ଷମ ହୋଇ
ପଡ଼ିଲା ପରେ ମୁକୁଟ ମର୍ଦ୍ଦିଲୁ କିମ୍ପାଇଁ ।
ଗୁରୁତର ଶୋକେ ଦେବୀ ହୋଇ ଅସମ୍ଭାଳ
ମାନଗୋବିନ୍ଦ ରାଜାକୁ କଲା ଯାଇ କୋଳ ।
ଉଠ ଉଠ ଆରେ ବାବୁ ମାନଚକ୍ରବର୍ତ୍ତୀ
କେତେ ନିଦ୍ରା ଯାଇଅଛୁ ପାହିଲାଣି ରାତି ।
ତୋତେ ଶତେକ ଯୁବତୀ ଚାମର ଢାଳନ୍ତି
ହଂସୁଲୀ ତୁଳିରେ ନିଦ୍ରା ନ ମାଡ଼ଇ ରାତି ।
କସ୍ତୁରୀ ନନ୍ଦନ ନିତି ବୋଳନ୍ତି ତୋ କାୟେ
ଏବେ ଶରୀରକୁ କିମ୍ପା କଲୁ ରକ୍ତମୟେ ।
ଲକ୍ଷେ ରାଜାଙ୍କ ଉପରେ ହେଲୁ ଉଚ୍ଚତମ
ଅତିମାନେ ଦେଲେ ମାନଗୋବିନ୍ଦ ତୋ ନାମ ।
ଗାନ୍ଧାରୀ ଦେବୀ ଏପରି ଶୋକ ଯହୁଁ କଲେ
ତହୁଁ ମନ୍ଦେ ମନ୍ଦେ ହସି ଶ୍ରୀକୃଷ୍ଣ ବୋଇଲେ ।
ଯେ ତାହାର କଲା କର୍ମ ସୁଝଇ କି ଆନ
ସେବେଳେ ନ କଲୁ କିମ୍ପା ବିଦୁର ବଚନ ।
ସେ କାଳ କଥା ପଶିଲା ନାହିଁ ତୋର କର୍ଣ୍ଣେ
କାହିଁପାଇଁ ଏବେ ଶୋକ କରୁ ଅକାରଣେ ।
ପୁନଶ୍ଚ ବୋଇଲା ବାବୁ ଦେଖ ହେ କହ୍ନାଇ
ଏ ବୋହୂଙ୍କ ଦୁଃଖ ଦେଖି ମୋ ଅନ୍ତ ଦହଇ ।
କେହି ପତି କେହି ପୁତ୍ର କେହି ଭ୍ରାତା ନାତି
କେହି ବା ବନ୍ଧୁ ବାନ୍ଧବ ପାଇଁ କାନ୍ଦୁଛନ୍ତି ।
କାକ ଶୃଗାଳ କୁକ୍କୁର ଗୃଧ୍ର ତୋଷ ବହି
ଶତଶତ ମୃତପିଣ୍ଡ ଭକ୍ଷିଛନ୍ତି ଧାଇଁ ।
ରଣନିହତ ବୀରଙ୍କ ଦଶା ନେତ୍ରେ ଚାହିଁ
କେଶବାସ ଅସମ୍ଭାଳେ ଦେଖନ୍ତି ସେ ଧାଇଁ ।
କାନ୍ଦୁଛନ୍ତି ହାହାକାର କରି ଦେଖ ଦେଖ
କେବା ମୃତ ସୁହୃଦର ଦେଖୁଛନ୍ତି ମୁଖ ।
କେବା ତାଙ୍କ ଗୁଣ ଗୁଣି କୁରରୀ ପରାୟ
କାନ୍ଦୁଛନ୍ତି ନୟନରୁ ନୀରକୁ ବୁହାଇ ।
କେବା ବକ୍ଷେ କର ତାଡ଼େ କେ ମହୀରେ ପଡ଼େ
କେବା ପ୍ରାଣନାଥ ବୋଲି ଉଚ୍ଚେ ରଡ଼ିଛାଡ଼େ ।
ଚନ୍ଦ୍ରସୂର୍ଯ୍ୟ ଯାହାଙ୍କର ଛାଇ ଦେଖି ନାହିଁ
ସେମାନେ ଭ୍ରମୁଅଛନ୍ତି ଦେଖି ବାଇହୋଇ ।
ଅଷ୍ଟାଦଶ ଅକ୍ଷୌହିଣୀ ସେନା ମହାପ୍ରାଣୀ
ଯମଘରର ଅତିଥି ହେଲେ ଚକ୍ରପାଣି ।
ଦେଖ ହରି ଭାନୁମତୀ ଦୁର୍ଯ୍ୟୋଧନ ନାରୀ
ମୃତପତି ବକ୍ଷେ ଅଛି ମଥାନତ କରି ।
କାନ୍ଦୁଅଛି ମୋତେ ଛାଡ଼ିକରି କେଣେ ଗଲ
ଅମୀୟ ବଚନ ପଦେ ବାରେ ନ କହିଲ ।
ବିରାଟ ରାଜକୁମାରୀ ଉତ୍ତରା ସୁନ୍ଦରୀ
ମୃତ ଅଭିମନ୍ୟୁ ମୁଖ ନୟନେ ନିହାରି ।
ନେତ୍ରନୀରେ ହୋଇଅଛି ଅଙ୍ଗ ଜରଜର
କର୍ଣ୍ଣ ଦୁର୍ଯ୍ୟୋଧନାଦିଙ୍କୁ କରୁଛି ଧିକ୍କାର ।
କହୁଛି ହେ ନାଥ ଛଅମାସ ହେଲା ମୋତେ
ବିଭାହୋଇ ଏକା ସ୍ୱର୍ଗେ ଚଳିଲ କେମନ୍ତେ ।
ସ୍ୱର୍ଗ ବିଦ୍ୟାଧରୀ ସଙ୍ଗେ ରହିବ ସୁଖରେ
ମୁହିଁ ସିନା ହେଉଥିବି ଘାଣ୍ଟି ଦୁଃଖ ଘୋରେ ।
ମୋର କପାଳେ ବିଧାତା ଏହା ଲିହିଥିଲା
ତୁମ୍ଭ ମୁଖ ଦେଖି ଯା ମୋ ଜୀବନ ନ ଗଲା ।
ଆନ ବଧୂଗଣ ଯେତେ କରୁଛନ୍ତି ଶୋକ
ତାହାତ ପ୍ରତ୍ୟକ୍ଷେ ଦେଖୁଅଛ ପଦ୍ମମୁଖ ।
ଏହିପରି ବହୁଶୋକ ଗାନ୍ଧାରୀ ଯେ କଲେ
ଶୁଣି ଦରହାସେ ଦେବ ଶ୍ରୀକୃଷ୍ଣ ବୋଇଲେ ।
ଯେ ଯାହାର କଲାକର୍ମ ନୁହଇ ଯେ ଆନ
ସେ କାଳେ ନ କଲୁ କିମ୍ପା ବିଦୁର ବଚନ ।
ସେ ବେଳର କଥା ନ ପଶିଲା ତୋର କର୍ଣ୍ଣେ
ଏତେବେଳେ ଶୋକ କାହିଁପାଇଁ କର ମନେ ।
ଚାଲ ଚାଲ ଦେବୀ କୁରୁକ୍ଷେତ୍ର ବୁଲିଯିବା
ଦ୍ୱାଦଶ ଯୋଜନ ଭୂମି ବୁଲିଣ ଦେଖିବା ।
ଗାନ୍ଧାରୀ ବୋଇଲେ ଆହେ ଶୁଣ ପୀତବାସ
ଆବର ରାଜାଙ୍କୁ ଦେଖି ପ୍ରୟୋଜନ କିସ ।

ଲକ୍ଷେ ରାଜା ଏ ଠାବରେ ହୋଇଛନ୍ତି ନାଶ
ତା ପରେ ତା ପରେ ପଡ଼ି ନ ଦିଶଇ ଦିଶ ।
ତୋର ପୁତ୍ରେ ସଭାମଧ୍ୟେ ମୋତେ ଦ୍ୟନ୍ତେ ଲାଜ
ମୁଁ ପାଣ୍ଡବପକ୍ଷ ହୋଇ କଲି ତାଙ୍କ କାର୍ଯ୍ୟ ।
ତାହା ଶୁଣି ବିକଳରେ ବୋଇଲା ଗାନ୍ଧାରୀ
ତୁହି ନାଶ କରାଇଲୁ ବଂଶକୁ ମୋହରି ।
ଅନ୍ୟର ବଳେ ଏହା ତ ହୋଇ ଯେ ନ ପାରେ
ଏକା ତୋହ ଯୋଗୁ ସିନା ହେଲା ଏ ପ୍ରକାରେ ।
ତୋହର କପଟେ ନାଶଗଲା ମୋର ବଂଶ
ହେ କୃଷ୍ଣ ଏପରି ତୋର ବଂଶ ହେଉ ନାଶ ।
ଏକ ସହୋଦରେ ଭିନ୍ନ ଭିନ୍ନ କରାଇଲୁ
ଏ ମୋହର ଅଭିଶାପ ତୋତେ ନିଶ୍ଚେ ଫଳୁ ।
ଏ ବଚନ ଶୁଣି କୃଷ୍ଣ ଉଲୁସାଇ ଗାତ୍ର
ବୋଇଲେ ଉଚିତ ଶାପ ଦେଲୁ ଆଗୋ ମାତ ।
ଆନର ଅନିଷ୍ଟ କରିନାହିଁ କେତେବେଳେ
କେ ଅଛି ପ୍ରମାଦ ମୋତେ ଦେବ ରବିତଳେ ।
ଆପଣେ ଆପଣେ ମରାମରି ହୁଅନ୍ତୁ ସତ
ଏ ବଚନ ଗୋଟି କେଭେ ନ ଘଟୁ ଗୋ ମାତ ।
କୃଷ୍ଣଙ୍କ ବାକ୍ୟେ ଗାନ୍ଧାରୀ ପାଇଲାକ୍ତ ଲାଜ
ଭଲ ଶାପ ଦେଲି ହେଲା ଦେବତାଙ୍କ କାର୍ଯ୍ୟ ।

ଲଜ୍ଜା ପାଇଣ ଗାନ୍ଧାରୀ ହୁଅନ୍ତେ ନିରୁତ୍ତର
କୋମଳ କରି କହିଲେ ତାଙ୍କୁ ଯୁଧିଷ୍ଠିର ।
ତୁମ୍ଭେ ମାତ ମନ ମଧ୍ୟେ ନ ହୁଅ ଭାବିତ
ମୁହିଁ ତୁମ୍ଭମାନଙ୍କର ବିନୟ ଭକତ ।
ରଥ ଲେଉଟାଇ ଯହୁଁ ଧୃତରାଷ୍ଟ୍ର ଗଲେ
ଯୁଧିଷ୍ଠିରଙ୍କୁ ଅନାଇ ଶ୍ରୀକୃଷ୍ଣ କହିଲେ ।
ଚାଲ ଆମ୍ଭେମାନେ ଯିବା ଏଣେ ନାହିଁ କାର୍ଯ୍ୟ
ରାଜ୍ୟେ ଅଭିଷେକ ହୋଇ ସୁଖେ କର ରାଜ୍ୟ ।
ସେ ସ୍ଥାନରୁ ଷଡ଼ଜଣ କରିଲେ ଗମନ
ତହିଁ ଯାହା ଯାହା ହେଲା ଯୁଧିଷ୍ଠି ରାଜନ ।
ଦ୍ରୌପଦୀ ଆଗରେ ସବୁ ବିସ୍ତାରି କହିଲେ
ତେମନ୍ତ ମାୟାରେ ତାଙ୍କୁ କୃଷ୍ଣ ରକ୍ଷାକଲେ ।
କହୁଥିଲେ ନ ସରଇ ଚରିତ ଯାହାର
ସେହି ଯୁଧିଷ୍ଠି ଦେବଙ୍କୁ ଦେଲେ ରାଜ୍ୟଭାର ।
ବ୍ରହ୍ମା କଳି ନ ପାରିଲେ ମାୟା ଯାହାଙ୍କର
ତାହାର ଚରଣ ତଳେ ଶରଣ ମୋହର ।
ତ୍ରିଲୋକର ଅଧିପତି ଅଟନ୍ତି ଯେ ନାଥ
ମାୟାରେ ସେ ଅସୁରଙ୍କୁ କରନ୍ତି ନିପାତ ।
ସେ ଦେବଦେବ ଚରଣେ ରହୁ ମୋର ମନ
ଶାରଳା ଦାସର ଏହା ଅଟେ ନିବେଦନ ।

## ମହାଭାରତ ନାରୀ ପର୍ବ ସମ୍ପୂର୍ଣ୍ଣ



# ମହାଭାରତ

## ଶାନ୍ତିପର୍ବ

### ଭୀଷ୍ମ ଓ କୌରବ ଶତଭ୍ରାତାଙ୍କ ପିଣ୍ଡଦାହ

ବୈବସ୍ୱତ ମନୁ ଆଗେ ଅଗସ୍ତି କହିଲେ
ଶ୍ରୀକୃଷ୍ଣ ସଙ୍ଗେ ପାଣ୍ଡବ ପଞ୍ଚମୂର୍ତ୍ତି ଗଲେ ।
ଯୁଧିଷ୍ଠିରଙ୍କୁ କହିଲେ ଦେବକୀ ନନ୍ଦନ
ଅଭିଷେକ ଦ୍ରବ୍ୟମାନ କର ଆୟୋଜନ ।
ତାହା ଶୁଣି ଯୁଧିଷ୍ଠିର କହିଲେ ହେ ହରି
ଭୀଷ୍ମେ ନ ବିଚାରି ରାଜା ହେବା କେଉଁପରି ।
ତହୁଁ ଭୀଷ୍ମଙ୍କ ପାଖକୁ କଲେ ସେ ଗମନ
ସୈନ୍ୟଶାଖା ନାହିଁ କେହି ସେହି ଷଡ଼ଜଣ ।
ଯେଉଁଠାରେ ଭୀଷ୍ମ ଶରଶଯ୍ୟା କରିଥିଲେ
ସର୍ବେ ସେ ସ୍ଥାନରେ ଯାଇ ପରବେଶ ହେଲେ ।
ମୌନବ୍ରତେ ଭୀଷ୍ମଦେବ ତହିଁ ଶୋଇଥିଲେ
କିଏ ସେ ଆସିଲା ବୋଲି ଚକ୍ଷୁ ମେଲାଇଲେ ।
ଚକ୍ଷୁ ମେଲି ଯୁଧିଷ୍ଠିଙ୍କ ମୁଖକୁ ଅନାଇଁ
ବୋଇଲେ ସୁଖରେ ବାବୁ ରାଜ୍ୟ କର ଯାଇଁ ।
କାହିଁପାଇଁ ଧର୍ମରାଜ ଅଇଲୁ ମୋ ପାଶ
ବୋଇଲେ ଯୁଧିଷ୍ଠି ଶୁଣ କୁରୁକୁଳ ଈଶ ।
ଆମ୍ଭ ହିତେ ଦେବ ତୁମ୍ଭେ ତେଜିଲ ସଂଗ୍ରାମ
ତ୍ରିଭୁବନେ କିଏ ଅଛି ତୁମ୍ଭର ସମାନ ।
ଯୁଝିଥିଲେ ତୁମ୍ଭଙ୍କୁ ବା ଜିଣିଥାନ୍ତା କିଏ
ଆମ୍ଭଙ୍କୁ ତୁମ୍ଭର ସଦା ଚିତ୍ତେ ଦୟା ଥାଏ ।
ପ୍ରଥମ ସମରେ ଆଜ୍ଞା ଦେଇଥିଲ ଦେବ
ଶତ୍ରୁ ମାରି ପଞ୍ଚକଟକରେ ରାଜା ହେବ ।
ମହତ ବଚନ କେଭେ ନୁହଇ ଅନ୍ୟଥା
ହସିଲେ ଭୀଷ୍ମ ଶୁଣିଣ ଯୁଧିଷ୍ଠିଙ୍କ କଥା
ଦରହସିତ ବଦନେ ଦିଅନ୍ତେ ଉତ୍ତର
ଏବେ ନିଷ୍କଣ୍ଟକ ହେଲା ସୁଖେ ରାଜ୍ୟ କର ।
ନାନା ଉପଭୋଗ କର ସୁଖେ ରାଜାହୋଇ
ଶ୍ରୀକୃଷ୍ଣ ପ୍ରସନ୍ନେ ତୋତେ କିଛି ଭୟ ନାହିଁ ।
ଧୃତରାଷ୍ଟ୍ର ଶତେପୁତ୍ର ହୋଇବେ ନିପାତ
ବଡ଼ ସନ୍ଦେହ ମୋ ଚିତ୍ତେ ଥିଲା ଧର୍ମସୁତ ।
ରାଜ୍ୟ କର ବାବୁ ଏବେ ଧର୍ମ ପ୍ରତିପାଳି
ଅଧର୍ମ କଲେ ସହିବ ନାହିଁ ମହୀସ୍ଥଳୀ ।

ଏପରି ପ୍ରଜା ପାଳିବୁ ନୋହିବେ କେ ଦୁଃଖୀ
ପ୍ରଜାଙ୍କ ସୁଖରେ ସିନା ରାଜା ହୁଏ ସୁଖୀ ।
ନ୍ୟାୟେ ପ୍ରଜାଙ୍କୁ ପାଳିଲେ ଇନ୍ଦ୍ର କରେ ବୃଷ୍ଟି
ରାଜାର ପାଳନେ ସିନା ରକ୍ଷା ହୁଏ ସୃଷ୍ଟି ।
ପ୍ରଜା ସନ୍ତୋଷେ ରାଜାର ହୁଏ ସର୍ବସିଦ୍ଧି
ପ୍ରଜାଙ୍କ ସୁଖେ ରାଜାର ଆୟ ହୁଏ ବୃଦ୍ଧି ।
ଦୋଷାଦୋଷ ବିଚାରିଣ ଦଣ୍ଡ ଦେଉଥିବୁ
ଦେଖି ତାହା ତୋଷ ହେବେ ପ୍ରଜାମାନେ ସବୁ ।
ଚାର ବରଗି ବୁଝିବୁ ବିଧି କି ଅବିଧି
ଅନୀତି କହିଲେ ଶିର ପକାଇବୁ ଛେଦି ।
ଦୋଷୀଙ୍କୁ ଦଣ୍ଡିଲେ ତୋର ନ ହୋଇବ ଦୋଷ
ତେବେ ନିଶ୍ଚଳରେ ଲକ୍ଷ୍ମୀ ଥିବେ ତୋର ଦେଶ ।
ବିଂଶ ହାତରେ କରିବୁ ଏକ ନଳକାଠି
ପଞ୍ଚବିଂଶ ଗୁଣେ ମାଣ ବିଂଶମାଣେ ବାଟି ।
ବାଟି କରେ ଏକ ଚିନା ନେଉଥିଲେ ସଞ୍ଜା
ପ୍ରଜା ବୋଲିବେ ଦୀର୍ଘାୟୁ ହୁଅନ୍ତୁ ଆମ୍ଭ ରାଜା ।
ପ୍ରଜାଙ୍କ ମୁଖରୁ ଯାର ଶୁଭେ ସାଧୁଧ୍ୱନି
ଯମ ଦଣ୍ଡ ନ ପାରଇ ତାକୁ ପାଶ ଘେନି ।
ବିଦ୍ରୋହ ଦମନ ପାଇଁ ଭାଇଙ୍କି ପେଶିବୁ
ଡଗର ମୁଖୁ ରାଜ୍ୟର ଖବର ବୁଝିବୁ ।
ମନ୍ତ୍ରୀପଣେ ସୁଚତୁର ଲୋକଙ୍କୁ ରଖିବୁ
ତାଙ୍କ ପରାମର୍ଶ ଘେନି କାର୍ଯ୍ୟ କରୁଥିବୁ ।
କୃଷିକାରୀଙ୍କୁ କଦାପି ଅର୍ଥେ ନ ଦଣ୍ଡିବୁ
ନିର୍ଦ୍ଦୋଷୀଜନଙ୍କୁ ସଦା କ୍ଷମା ଆଚରିବୁ ।
ବୃଦ୍ଧ ରାଉତଙ୍କୁ ଛୋଟ ଘୋଟକକୁ ଦେବୁ
ପଞ୍ଚାଶବର୍ଷ ପଦାତି ଗଜ କରିଥିବୁ ।
ସତର ବର୍ଷର ଯେଉଁ ଗଜ ହୋଇଥିବ
ବଳିଷ୍ଠ ମାହୁନ୍ତ ତାକୁ ସଜ କରିଥିବ ।
କଟୁଆଳ ଅନୁବ୍ରତେ ହୋଇଥିବେ ସଜ
ପର ରାଜ୍ୟେ ନିଅଳସ ହୋଇଥିବୁ ରାଜ ।
ପଣ୍ଡିତ ମୁଖୁ ଶୁଣିବୁ ପୁରାଣର କଥା
ସ୍ତ୍ରୀଲିଙ୍ଗ ବିଶ୍ୱାସ ବାବୁ ନ ଯିବୁ ସର୍ବଥା ।

ଅସୁରଭୋଗୀ ତୀର୍ଥେ ନ ବୁଡ଼ାଇ ତୁ କାୟ
ଧନ ସଞ୍ଚିବାକୁ ଲୋଭୀ ନ ହୋଇବୁ ରାୟ ।
ବେଳକାଳ ଜାଣି ଧନ ପ୍ରଜାଙ୍କୁ ଯେ ଦେବୁ
ଅନ୍ଧାରି ବିଜେ ନ କରି ବିଶ୍ୱାସ ନ ଯିବୁ ।
ପାରିଧିକୁ ଏକାବେଳେ ନ ତେଜିବୁ ରାଜା
ଦେବତା ବ୍ରାହ୍ମଣେ ନିତ୍ୟେ କରୁଥିବୁ ପୂଜା ।
ଧାର୍ମିକଙ୍କୁ ଏକାଦଶୀ ବ୍ରତ କରାଇବୁ
ବିଦେଶୀ ଦୂତେ କଟକେ ପ୍ରବେଶି ନ ଦେବୁ ।
ପରଦାରା ପରଧନେ ଲୋଭ ନ କରିବୁ
ବିବାହିତ ନାରୀ ସଙ୍ଗେ କେବଳ ରହିବୁ ।
ସଦା ଯଜ୍ଞ କରି ଦେଉଥିବୁ ଯେ ଆହୁତି
ଦଣ୍ଡ ବିହିବୁ ଯେ ଉପଗତ ଶତ୍ରୁ ପ୍ରତି ।
ଦୁଷ୍ଟ ଦାନବମାନଙ୍କୁ କରିବୁ ତୁ ନାଶ
ଏହାଦ୍ୱାରା ନୃପତିକୁ ନ ଲାଗଇ ଦୋଷ ।
ପରଦାର ପରଦ୍ରବ୍ୟ ବଳେ ନ ହରିବୁ
ପ୍ରାଣୀ ଶରଣ ପଶିଲେ ତାହାକୁ ରଖିବୁ ।
ରାଜ୍ୟଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନ ଦେବୁ ତାହାରେ ।
କଷ୍ଟ ନ ପାନ୍ତି ଯେପରି ଗୋରୁ ଯେ ବ୍ରାହ୍ମଣ
ଏ କଥାକୁ ସଦା ରଖିଥିବୁ ସାବଧାନ ।
କୃଷି କର୍ମକାରୀଜନେ ନ ଦଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁସ୍ଥାନ ।
ତୀର୍ଥରେ ଲୋକମାନଙ୍କୁ ଦେବୁ ଅନ୍ନଦାନ
ଉତ୍ତମ ସ୍ଥାନେ ରଖିବୁ ସେନାପତି ଗଣ ।
ଗଜ ଅଶ୍ୱଙ୍କ ନିମନ୍ତେ ଦେଉଥିବୁ ଧନ
ଗୋପାଳେ ବିଶ୍ୱାସ କରି ଅର୍ପିବୁ ଗୋଧନ ।
ପୁଣି ଗୁଣ ଜାଣିକରି କରୁଥିବୁ ପୂଜା
କବିମାନଙ୍କୁ କୃପଣ ନ ହୋଇବୁ ରାଜା ।
ଏସନକ କହି ଭୀଷ୍ମ ରାଜବିଧିମାନ
କୃଷ୍ଣ ଯୁଧିଷ୍ଠିରଙ୍କର ଚାହିଁଲେ ବଦନ ।
ଭୋ କୃଷ୍ଣ ଭୋ କୃଷ୍ଣ ତୋର ପଶିଲି ଶରଣ
ଏହା କହି ଭୀଷ୍ମଦେବ ତେଜିଲେ ଜୀବନ ।
ପୁଷ୍ପକରଥେ ବସାଇ ନେଲେ ଦେବଗଣ
ବୈକୁଣ୍ଠ ଭୁବନେ ତାଙ୍କୁ ଦେଲେ ଦିବ୍ୟସ୍ଥାନ ।
ଜୟ ଜୟ ଜଗନ୍ନାଥ ଜୟ ଚକ୍ରଧାରୀ
ସକଳ ଭିତରେ ତୁହି ରହିଅଛୁ ପୁରି ।
ମହାଭାଗ ନାଶକଲୁ ଆହେ ଦେବ କୂଟେ
ଅନ୍ତିମ କାଳରେ ସ୍ଥାନ ଦିଅ ବଇକୁଣ୍ଠେ ।

ନମାମି ଶ୍ରୀନାରାୟଣ ଶଙ୍ଖ ଚକ୍ରଧାରୀ
ଲଭିବାକୁ ଇଚ୍ଛା ମୋର ପୟର ତୋହରି ।
ତାବତ ଜୀବନ ପିଣ୍ଡେ ପ୍ରାଣ ଅଛି ହରି
ଯାବତ ଗାଉ ତୋ ନାମ ରସନା ମୋହରି ।
ସମସ୍ତଙ୍କୁ ଦୟା ଥାଏ ତୋହର ପଦ୍ମାକ୍ଷ
ଶତ୍ରୁପଣେ ଚିନ୍ତି ତୋତେ ପାଇଛନ୍ତି ମୋକ୍ଷ ।
ଯେତେ ଜନମାନେ ରଣଭୂମିରେ ପଡ଼ିଲେ
ଶତ୍ରୁହୋଇ ସ୍ୱର୍ଗସ୍ଥାନ ସେହୁ ଲାଭ କଲେ ।
ଏତେଦିନ ଶବ ରଣଭୂମିରେ ପଡ଼ିଲେ
କାହାରି ଦେହରେ କୃମି ଜନ୍ମ ନ ହୋଇଲେ ।
ତ୍ରୈଲୋକ୍ୟ କାରଣ ଅଟେ କୃଷ୍ଣ ନାମଗୋଟି
ମମହୃଦେ ମାଳା କଣ୍ଠ ଦେଶେ ହେବ କଣ୍ଠି ।
ଜୀବଙ୍କର ପ୍ରାଣପାନ ଆଦି ପଞ୍ଚଆତ୍ମା
ବିଷ୍ଣୁଙ୍କୁ ଆନ ବୋଲି ନ ଭାବନ୍ତି ମହାତ୍ମା ।
ବିଭୀଷଣ ବଳୀ ଦକ୍ଷ ପ୍ରହ୍ଲାଦ ଅକ୍ରୂର
ଭକ୍ତିକରି ପ୍ରତ୍ୟକ୍ଷରେ ଗଲେ ସ୍ୱର୍ଗପୁର ।
ରକ୍ଷ ଭକ୍ଷ ହେତି ମାଳି ପ୍ରହେତି ସୁମାଳି
ହିରଣ୍ୟ ହିରଣ୍ୟାକ୍ଷ ମଧୁକୈଟଭ ବାଳୀ ।
ବିଂଶମାଥ କୁମ୍ଭକର୍ଣ୍ଣ ପୁଣି ଶିଶୁପାଳ
ବିଷ୍ଣୁଙ୍କୁ ହେୟ କରନ୍ତି ଏମାନେ ସକଳ ।
ଶାସ୍ତ୍ର ପୁରାଣମାନଙ୍କୁ କରି ପରିତେଜ୍ୟା
ବାହୁବଳରେ ହରିବେ ତାଙ୍କର ଭାରିଯା ।
ବିଷ୍ଣୁଙ୍କୁ ମାରିବେ ବୋଲି କରିଥାନ୍ତି ଲୟ
ତେଣୁ କରି ଏ ସମସ୍ତେ ହେଲେ ବିଷ୍ଣୁମୟ ।
ସେହି ନିରାକାର ବିଷ୍ଣୁ ଚରଣ କମଳେ
ଶୂଦ୍ରମୁନି ଶ୍ରୀ ଶାରଳାଦାସ ଶିର ଲୁଳେ ।
ଭୀଷ୍ମ ମୃତ୍ୟୁଶବ ଦେଖି ପାଣ୍ଡବେ ଭାବନ୍ତି
ସଂସ୍କାର ନିମନ୍ତେ ତାକୁ ମନରେ ଭାଳନ୍ତି ।
ଅପୋଡ଼ା ଭୂମି ଯୁଧିଷ୍ଠି ଖୋଜନ୍ତି ବୁଲିଣ
ବିଚାରନ୍ତି ତହିଁ ଶବ କରିବେ ଦହନ ।
ବହୁତ ଦେଶ ପାଣ୍ଡବ ସମୟେ ବୁଲିଲେ
ଅପୋଡ଼ା ଭୂମିଖଣ୍ଡିକ ଲୋଡ଼ି ନ ପାଇଲେ ।
ବହୁତୀର୍ଥେ ଶବ ଘେନି ବୁଲିଲେ ପାଣ୍ଡବ
ମହୋଦଧିକୂଳେ କୃଷ୍ଣ କଲେ ନେଇ ଠାବ ।
ସମୁଦ୍ର ମଧ୍ୟେ ଦେଖିଲେ କୁଦ ଏକ ଅଛି
ଏହି ହେ ଅପୋଡ଼ାଭୂମି ବୋଇଲେ ଶ୍ରୀବତ୍ସି ।
ତହିଁ ନେଇ ଭୀଷ୍ମ ପିଣ୍ଡ କରିଲେ ଦହନ
ସମୁଦ୍ରରେ ମେଲିଦେଲେ ଅସ୍ଥି ଭସ୍ମମାନ ।
ବିଶ୍ୱଦେବ ଶୂନ୍ୟେ ରହି ଏପରି ଭାଷିଲେ
ଭଲ ଅପୋଡ଼ା ଭୂମିକି ପାଣ୍ଡବେ ପାଇଲେ ।

ମନୁଷ୍ୟମାନଙ୍କ ଅସ୍ଥି ଭୂମିରେ ପଡ଼ିଛି
ମହୀମଣ୍ଡଳେ ଅପୋଡ଼ା ଭୂମି ଅଳ୍ପ ଅଛି ।
ତିଳମନ୍ଦାକିନୀ ଅଛି ନୀଳ ପର୍ବତରେ
ଅପୋଡ଼ା ଭୂମି ରହିଛି ତାହାର ମଧ୍ୟରେ ।
ଜମ୍ବୁଦ୍ୱୀପର ଉତ୍ତରେ ହିମ ଗିରିମାଳା
ସୂଚୀମୁନେ ବିଜେ କରି ଅଛନ୍ତି ହେଙ୍ଗୁଳା ।
ଭୋଗମଣ୍ଡଳରେ ଅଛି ତିଳମନ୍ଦା ସରି
ତହିଁ ପରେ ବିଜେ କରିଅଛନ୍ତି ବାସେଳୀ ।
ମତ୍ସ୍ୟଦେଶ ରହିଅଛି କେଶନଦୀ ତଟ
ତହିଁ ଲତା ଏକ ଅଛି ନାମ ବାଞ୍ଛାବଟ ।
ଓଡ଼ିଶା ମଣ୍ଡଳ ଚିତ୍ରୋତ୍ପଳା ନଦୀକୂଳେ
ପାରେଶ୍ୱର ଲିଙ୍ଗ ଅଛି ଅପୋଡ଼ା ଭୂମିରେ ।
ଜମ୍ବୁଦ୍ୱୀପ ମଧ୍ୟେ ପାଞ୍ଚଗୋଟି ଅଛି ଠାବ
ଆଉ ମାନେ ପୋଡ଼ାଭୂମି ବୋଲେ ବିଶ୍ୱଦେବ ।
ଚନ୍ଦ୍ରଦ୍ୱୀପେ ଅଛି ମେରୁ ପଶ୍ଚିମ ପାରୁଶେ
ଶବ ସେ ସ୍ଥାନରୁ ନେଇ ଦହନ୍ତି ମନୁଷ୍ୟେ ।
ଯେ ପ୍ରାଣୀମାନଙ୍କୁ ହୋଇଥିବ ବିଷ୍ଣୁଜ୍ୱର
ସେମାନଙ୍କୁ ନେଇ ମେଲେ ସାଗର ଭିତର ।
ଯେ ଧର୍ମ ନନ୍ଦନ ଏହିସ୍ଥାନ ନୁହେଁ ପୋଡ଼ା
ଆଉ ମାନ ପୋଡ଼ାଭୂମି ଜାଣ ଏହାଛଡ଼ା ।
କରଞ୍ଚ ଦ୍ୱୀପରେ ନବକୋଟି ସ୍ଥାନ ଅଛି
କୁଶଦ୍ୱୀପରେ ଅପୋଡ଼ା ଭୂମି ନାହିଁ କିଛି ।
ପଦ୍ମଦ୍ୱୀପ ମଧ୍ୟେ ଅଛି ଚଉବିଂଶ ସ୍ଥାନ
ବିଶ୍ୱଦେବ ପାଣ୍ଡବଙ୍କୁ କହିଲେ ଏସନ ।
ତାହା ଶୁଣି ଯୁଧିଷ୍ଠିର ହରଷ ହୋଇଲେ
ଭୀଷ୍ମ ପ୍ରେତକୃତ୍ୟ ବେଗେ ସମାପ୍ତ କରିଲେ ।
ପ୍ରେତକୃତ୍ୟ ସାରି ସର୍ବେ ହୋଇ ହୃଷ୍ଟମତି
ଯାଇଁ ପ୍ରବେଶ ହୋଇଲେ ଧୃତରାଷ୍ଟ୍ର କତି ।
ଗାନ୍ଧାରୀ ବୋଇଲେ ଆରେ ଶୁଣ ଫାଲଗୁନି
ମୋ ପୁତ୍ରମାନଙ୍କୁ ବାବୁ ଦେବଟିକି ଅଗ୍ନି ।
ଗାନ୍ଧାରୀ ବଚନ ଶୁଣି ପାଣ୍ଡବେ ଚଳିଲେ
କୌରବଙ୍କୁ ଦେବାକୁ ଆୟୋଜନ କଲେ ।
ଦୁର୍ଯ୍ୟୋଧନ ଭୀମ ବ୍ୟାସ ସରୋବରୁ ଟୀରୁ
କନ୍ଧରେ ଆଣିଲା ମଣି ଗିରିସମ ଗରୁ ।
ସବୁ ଭାଇଙ୍କ ଉପରେ ତାକୁ ଦେଲେ ଶୁଆଇ
କୃଷ୍ଣ ପାର୍ଥଙ୍କୁ କହିଲେ ପୋଡ଼ ବେଗେ ତୁହି ।
ଦକ୍ଷିଣ ଦିଗରୁ ବହେ ମନ୍ଦ ସମୀରଣ
ଅଗ୍ନିବାଣ ଗୁଣେ ଭରି ବିନ୍ଧିଲା ଅର୍ଜୁନ ।
ପ୍ରଳୟ କାଳରେ ଅଗ୍ନିସମ ମହାତେଜ
ଦ୍ୱାଦଶ ଯୋଜନଯାଏ କରିଲା ଦହିର୍ଯ୍ୟ ।
ସବୁ ମୃତପିଣ୍ଡମାନେ ହୋଇଲେ ବନ୍ଧନ
ତହିଁ ମୂଳ ଶବ ହେଲା ରାଜା ଦୁର୍ଯ୍ୟୋଧନ ।
ଅଶ୍ୱମେଧ ଯଜ୍ଞେ ଅଗ୍ନି ଯେସନେ ପ୍ରବଳ
ଆକାଶେ ବ୍ୟାପିଲା ତେହ୍ନେ ସେ ଚିତାଅନଳ ।
ଧୃତରାଷ୍ଟ୍ର ଅଗ୍ନି ଦେଖି ବୋଇଲା ଏସନ
ଆଜିଠାରୁ ରାଜ୍ୟ ବୁଝ ତୁ ଧର୍ମ ନନ୍ଦନ ।
ପୁତ୍ରଙ୍କ ଅଭାବେ କେହ୍ନେ ରଖିବୁ ଜୀବନ
ଏହି ବହ୍ନିରେ ପଶିବୁ ଆମ୍ଭେ ଦୁଇଜଣ ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ତାତ ମାତ
ଆମ୍ଭପ୍ରତି ସଦା ଥାଏ ତୁମ୍ଭ ସ୍ନେହଚିତ୍ତ ।
ଏତେବେଳେ କାହିଁପାଇଁ ହେଉଛ ନିର୍ଦ୍ଦୟ
ଆମ୍ଭେ ପାଞ୍ଚଭାଇ ତୋର ନୋହୁ କି ତନୟ ।
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ବୋଲନ୍ତି ଏ ବାଣୀ
ପୁତ୍ର କଷ୍ଟ ପାଶୋରିଲୁ ତୋ ବଚନ ଶୁଣି ।
ପରମ କଲ୍ୟାଣ ତୋତେ ହେଉରେ ନୃପତି
ମମ ଆୟୁଷ ଘେନିଣ ଥାଅରେ ବରତି ।
ରଖିଲି ମୋହର ଆତ୍ମା ତୋହର ବଚନେ
ତୁମ୍ଭର ସମ୍ପଦ ପୁଣି ଦେଖିବି ନୟନେ ।
ବହୁଦାନ ପୁଣି କରିଣ ଯେ ମହାରାଜ
ଦ୍ୱାଦଶ ଦିବସେ ଶେଷ କଲେ ପ୍ରେତକାର୍ଯ୍ୟ ।
ମକର ମାସ ଶୁକଳପକ୍ଷ ଭୃଗୁବାର
ଶତଭିଷା ନକ୍ଷତ୍ର ଯେ ଅଟେ ସେ ଦିନର ।
ତୈତିଳନାମେ କରଣ ଧୃତିନାମେ ଯୋଗ
ମାଘ ସଂକ୍ରାନ୍ତିକି ଯେ ପନ୍ଦରଦିନ ଭୋଗ ।
ସେହିଦିନଠାରୁ ସମର ହୋଇଲା ପ୍ରଥମ
ଅଷ୍ଟାଦଶ ଦିନେ ଶେଷ ହୋଇଲା ସଂଗ୍ରାମ ।
କୁମ୍ଭ କୃଷ୍ଣ ଚତୁର୍ଥୀରେ ଅଟେ ସୌରୀବାର
ହସ୍ତାନକ୍ଷତ୍ର ହୋଇଛି ଭୋଗ ସେ ଦିନର ।
ସେଦିନ ରାଜା ସମର ହୋଇଲାକ ଶେଷ
ଏ ବିଧିରେ ଗଲା ଉନବିଂଶତି ଦିବସ ।
ଅଶ୍ୱତ୍ଥାମା ଲାଗି ପଞ୍ଚଦିନ ଗତ ହେଲା
ପ୍ରେତକୃତ୍ୟ ସାରିବାକୁ ବାରଦିନ ଗଲା ।
କୁମ୍ଭଅନ୍ତେ ମୀନମାସ ହେଲା ଉପସ୍ଥିତ
କୁରୁପାଣ୍ଡବ ଯୁଦ୍ଧରୁ ହୋଇଲେ ବିରତ ।
ଯୁଧିଷ୍ଠି କହନ୍ତି ଶୁଣ ଆହେ ପୀତବାସ
ତୋହର କୂଟରେ କୁରୁବଂଶ ଗଲେ ନାଶ ।
ହରି କୌରବଙ୍କ ମୁଖ ନ ଚାହିଁବ ବୋଲି
ଚଉଦ ବର୍ଷ ପର୍ଯ୍ୟନ୍ତ ବନବାସ କଲି ।
ଯେତେବେଳେ ନିଜରାଜ୍ୟେ ହେଲି ପରବେଶ
ଉଭୟକୁଳ ବୁଡ଼ିଲା ସର୍ବେ ଗଲେ ନାଶ ।

ଭୀମ ପ୍ରତିଜ୍ଞାରେ ନାଶକଲା ଶତେ ଭ୍ରାତ
ଅର୍ଜ୍ଜୁନ ମାଇଲା ଦ୍ରୋଣ କର୍ଣ୍ଣ ଗଙ୍ଗାସୁତ ।
ନକୁଳର ପ୍ରତିଜ୍ଞାରେ ମଲେ ବ୍ରହ୍ମକ୍ଷତ୍ରି
ସହଦେବ ପ୍ରତିଜ୍ଞାରେ ଶକୁନି ନିପାତି ।
ମୋର ପ୍ରତିଜ୍ଞାରେ ରଥ ଶଲ୍ୟେ କଲି ନାଶ
ତୋର ପ୍ରତିଜ୍ଞାରେ ନାଶଗଲା କୁରୁବଂଶ ।
ଧୌମ ପୁରୋହିତ ମଧ୍ୟ ପ୍ରାଣପଣେ ଗଲେ
ଗ୍ରାମ ମାଗନ୍ତେ କୌରବେ ଉପହାସ କଲେ ।
ଧୌମ୍ୟ ପୁରୋହିତ କଲେ ପ୍ରତିଜ୍ଞା ଅପାର
ତୁମ୍ଭ କାର୍ଯ୍ୟ ବରିବାକୁ ନାହିଁ ମୋତେ ଡର ।
ତାଙ୍କର ପ୍ରତିଜ୍ଞା ଏତେକାଳେ ପୂର୍ଣ୍ଣହେଲା
ତୁମ୍ଭ ଦୟାରୁ ଆମ୍ଭର ସର୍ବସିଦ୍ଧ ହେଲା ।
ମୋର ବଚନ ମାନି ଧୌମ୍ୟ ପୁରୋହିତେ
ସମସ୍ତଙ୍କ ପ୍ରେତକ୍ରିୟାକଲେ ବିଧିମତେ ।
ଆମ୍ଭର ପୂରଣ ହେଲା ପ୍ରତିଜ୍ଞା ସମସ୍ତ
କେବଳ ତୋର ପ୍ରସନ୍ନେ ସିନା ଯଦୁନାଥ ।
ଯେ ନାମ ଧଇଲେ ପ୍ରାଣୀ ଏ ଭବୁ ଉଦ୍ଧରେ
ଶାରଳା ଦାସର ମନ ରହୁ ସେ ପୟରେ ।

—o—

## ଯୁଧିଷ୍ଠିଙ୍କର ଅଭିଷେକ

ଏଥୁଅନ୍ତରେ ବୋଇଲେ ଶ୍ରୀ ନନ୍ଦନନ୍ଦନ
ଅଭିଷେକ ବିଧି ରାଜା କର ଆୟୋଜନ ।
ବିଦୂରସହ ଅଇଲେ ସର୍ବେ ନିଜ ପୁରୀ
ଅଭିଷେକ ଆୟୋଜନ କଲେ ବେଗକରି ।
ମେଷମାସ ଶୁକ୍ଳପକ୍ଷ ତୃତୀୟା ଯେ ତିଥି
ରୋହିଣୀ ନକ୍ଷତ୍ର ଆଉ ବାର ବୃହସ୍ପତି ।
ବ୍ୟାସଦେବଙ୍କୁ ସ୍ମରଣ କରିଲେ ଯୁଧିଷ୍ଠି
ଷାଠିସସ୍ର ଶିଷ୍ୟ ଘେନି ବିଜେ ତପୋନିଷ୍ଠି ।
ଧୌମ୍ୟ ପୁରୋହିତ ତୁଲେ ଲକ୍ଷେକ ବ୍ରାହ୍ମଣ
ବଶିଷ୍ଠ ମାର୍କଣ୍ଡ ତୁଲେ ବ୍ରହ୍ମଋଷିଗଣ ।
ଶୁକ ଅଶୀଲକ୍ଷ ଶିଷ୍ୟ ଘେନିଣ ଅଇଲେ ।
ନବଲକ୍ଷ ବାଳଖିଲ୍ୟା ଅଗସ୍ତିଙ୍କ ତୁଲେ
କୋଟିଏ ଯତି ଘେନିଣ ଦୁର୍ବାସା ଅଇଲେ ।
ପରାଶର ଲକ୍ଷେ ଶିଷ୍ୟସହ ବିଜେ କଲେ
ଅର୍ବୁଦେକ ଶିଷ୍ୟ ଘେନି ବିଜେ ବିଭାଣ୍ଡକ ।
ନବସସ୍ର ଶିଷ୍ୟ ଘେନି ବିଜୟେ ଲୋମଶ
ଲକ୍ଷେକ ଶିଷ୍ୟ ଘେନିଣ ସୁମନ୍ତ ପ୍ରବେଶ ।
ବେନିଲକ୍ଷ ଶିଷ୍ୟ ଘେନି ବିଜୟେ ଅଜପା
ଲକ୍ଷେକ ଶିଷ୍ୟ ଘେନିଣ ଅଇଲେ ଇତପା ।
ଅର୍ବୁଦେକ ଶିଷ୍ୟ ଘେନି କଣ୍ୱ ମହାଋଷି
ଋଷ୍ୟଶୃଙ୍ଗ ତୁଲେ ନବଲକ୍ଷ ବାଳଶିଷି ।
ଲକ୍ଷେକ ବ୍ରାହ୍ମଣ ଘେନି ଅତ୍ରି ମହାମୁନି
ଗର୍ଗ ପଞ୍ଚ ଅୟୁବ୍ରତ ଶିଷ୍ୟ ସଙ୍ଗେ ଘେନି ।
ଅଷ୍ଟବକ୍ର ଲକ୍ଷେ ଶିଷ୍ୟ ଘେନି ଉପଗତ
ଅୟୁବ୍ରତେ ଚେଲା ଘେନି ପ୍ରବେଶ ପୌଲସ୍ତ୍ୟ ।
ବାସୁଦେବ ବାମଦେବ ବିଜେ ଦୁଇଜଣ
ଏହାଙ୍କ ତୁଲେ ଅଇଲେ ଲକ୍ଷେକ ବ୍ରାହ୍ମଣ ।
ଅରୁଣ ତେଜ ଅନଙ୍ଗ ତୁଲେ ସଦାଶିବ
ପାଞ୍ଚଲକ୍ଷ ଯୋଗୀ ଘେନି ବିଜେ ବାମଦେବ ।
ଯେତେ ମହାଋଷି ବନ ମଧ୍ୟେ ରହିଥିଲେ
ଯୁଧିଷ୍ଠିଙ୍କ ଅଭିଷେକେ ସମସ୍ତେ ଅଇଲେ ।
ପିନ୍ଧିଅଛନ୍ତି ସମସ୍ତେ କଷା କଉପୁନି
କମଣ୍ଡଳୁ ଜପାମାଳା ହସ୍ତେ ଛନ୍ତି ଘେନି ।
ପାଉଁଶରେ ସର୍ବେଅଙ୍ଗେ ବୋଳି ହୋଇଛନ୍ତି
ଗୋପୀ ଚନ୍ଦନର ଚିତା ସର୍ବେ ଘେନିଛନ୍ତି ।
ତ୍ରିକଚ୍ଛ ବସନ ବେଦପୋଥି ଯେ କରାଣ୍ଡି
ପୀତ ଉତ୍ତରୀୟ ଧୋତି ହସ୍ତେ କୁଶବିଡ଼ି ।
ଗଳାରେ ଶୋହେ ରୁଦ୍ରାକ୍ଷ ତୁଳସୀର ହାର
କରେ କୁଶବଟ ତମ୍ବାପାତ୍ରୀ କି ସୁନ୍ଦର ।
ନିର୍ଧୂମ ଅଗ୍ନିକୁ ଜିଣି ବିରାଜେ ଶରୀର
ସମସ୍ତଙ୍କ ବଦନରୁ ବାହାରେ ଓଁକାର ।
କର୍ଣ୍ଣରେ କୁଣ୍ଡଳ ବେଦ ପଇତା କାନ୍ଧରେ
ଯୁଧିଷ୍ଠିଙ୍କୁ ଆଶୀର୍ବାଦ କହେ ଆନନ୍ଦରେ ।
ଋକ୍‌ଯଜୁ ଅଥର୍ବ ସାମବେଦ ଚାରି
ଅଜପା ଗାୟତ୍ରୀ ମନ୍ତ୍ରେ କଲ୍ୟାଣ ଉଚ୍ଚାରି ।
କୋଳାହଳ ଶବଦକୁ ଶୁଣି ଧୃତରାଷ୍ଟ୍ର
ଅତ୍ୟନ୍ତ ବ୍ୟାକୁଳ ଚିତ୍ତେ ପାଏ ମହାକଷ୍ଟ ।
ଆରେ ଦଇବ ପୁରୁଷ ଏହା ମୋତେ କଲୁ
ଚିତ୍ରପଟ ପ୍ରାୟ କରି ଦେଖାଇ ହରିଲୁ ।
ଗାନ୍ଧାରୀ ବୋଇଲେ ସ୍ୱାମୀ ଶୁଣ ମୋ ବଚନ
ଯେତେକାଳ ଥିବା ସହୁଥିବା କଷ୍ଟମାନ ।
ଅଭିଷେକେ ସାରି ଆମ୍ଭେ ଯାଇ ଏଥୁ ଜାଣ
ଗଙ୍ଗା ସାଗରରେ ଝାସି ହାରିବା ଏ ପ୍ରାଣ ।
ଅଭିଷେକ ଯେତେ ଦ୍ରବ୍ୟ ହୁଏ ପ୍ରୟୋଜନ
ବିଦୁର ତା ଆଗୁଁ ଯାଇ କଲେ ସମ୍ପାଦନ ।
ଶ୍ୱେତଅଶ୍ୱ ଶ୍ୱେତହସ୍ତୀ ଶୁକଳ ଚାମର
ଶ୍ୱେତକର୍ଣ୍ଣ ବସ୍ତ୍ର ଶ୍ୱେତବର୍ଣ୍ଣର ଶ୍ରୀଫଳ ।
ଗୁଆଘୃତ ଭରି ଶ୍ୱେତ ଦୀପମାନଙ୍କରେ
ଶ୍ୱେତ ବଳିତା ପୂରାଇ ସ୍ଥାପିଲେ ରୁଖାରେ ।

ଶ୍ୱେତ ଗନ୍ଧ ଚନ୍ଦନ ଯେ ଶ୍ୱେତ ପୁଷ୍ପମାଳ
ଲକ୍ଷେ ଲକ୍ଷେ ସଞ୍ଚିଥିଲେ ଶ୍ୱେତ ଦୁର୍ବାଦଳ ।
ସ୍ଫଟିକ ନିର୍ମିତ ଶ୍ୱେତବର୍ଣ୍ଣ ସିଂହାସନ
ତହିଁରେ ହୋଇଛି ବହୁ କାରୁକାର୍ଯ୍ୟମାନ ।
ଶ୍ୱେତମୃଗ ଶ୍ୱେତଗଣ୍ଡା ଶ୍ୱେତବର୍ଣ୍ଣ ଗାଈ
ସନ୍ନିଧିରେ ଶ୍ୱେତଷଣ୍ଢ ଲକ୍ଷେକ ରଖାଇ ।
ଶ୍ୱେତ ପାଷାଣ ପାବଚ୍ଛ ଶ୍ୱେତ ଶୁକଶାରୀ
ଶ୍ୱେତବର୍ଣ୍ଣ ରମ୍ଭାତରୁ ଦ୍ୱାରେ ପୋତି କରି ।
ବେଦ ମନ୍ତ୍ରରେ ପାରଗ ନୈଷ୍ଠିକ ବ୍ରାହ୍ମଣ
ଲକ୍ଷେ ଲକ୍ଷେ ଚାରିବେଦୁଁ କଲେକ ବରଣ ।
ବୈଶ୍ୱାନର କଳାନଳ ବହନି ପିଙ୍ଗଳ
କ୍ରୋଧ ଅନଳ ଆହୁତି ବଡ଼ବା ଅନଳ ।
ଭୀଷ୍ମଙ୍କ ଯୋଗ ଅନଳ ଭୋଗ କାଳାନଳ
ବ୍ରହ୍ମଅଗ୍ନି ରୁଦ୍ରଅଗ୍ନି ଅତ୍ୟନ୍ତ ପ୍ରବଳ ।
ଏମାନଙ୍କ ସହିତରେ ଚବିଶ ଅନଳେ
ଯୁଧିଷ୍ଠିଙ୍କ ଯାଗଶାଳେ ଆସି ବିଜେ କଲେ ।
ଆଚାର୍ଯ୍ୟପଣେ ବରିଲେ ମାରକଣ୍ଡ ଶୁକେ
ବିଶ୍ୱେଦେବା ବିଭାଣ୍ଡକ ପୁଣି କଉଶିକେ ।
ଚାରିହାତକୁ ବରିଲେ ଚାରିକୋଟି ଋଷି
ତାଙ୍କ ସହିତେ ଅଜପା ଚାରିଲକ୍ଷ ଋଷି ।
ଯାଗନିକ ପରାଶର ସୁମନ୍ତ ଅଗସ୍ତି
ବ୍ୟାସଦେବ ବଶିଷ୍ଠ ଯେ ବିଶ୍ୱାମିତ୍ର ଯତି ।
ଶ୍ରୀରାମ ସୁଭଦ୍ରା ମୁଦ୍ରା ଶାଳଗ୍ରାମ ଶିଳା
ଲକ୍ଷ୍ମୀ ନାରାୟଣ ଶିଳା ରୁଦ୍ରାକ୍ଷ ପିଙ୍ଗଳା ।
ମୀନରୂପେ ବସାଇଲେ ଲକ୍ଷେକ ପ୍ରତିମା
ଲକ୍ଷେ କାମରୂପ ପୁଣି ଲକ୍ଷେ ରମା ଉମା ।
ସୁବର୍ଣ୍ଣର ସିଂହାସନ ବିଜେ ନରସିଂହ
ମୀନରୂପୀ ନାରାୟଣ ପୁଣି ଯେ ବରାହ ।
ଯୋଗଧ୍ୟାନ ନରସିଂହ ମନୁ ନରସିଂହ
ପ୍ରହ୍ଲାଦ ନରସିଂହ ଯେ ଲକ୍ଷ୍ମୀ ନରସିଂହ ।
ଅଭିଷେକ ନରସିଂହ ଶୁକ୍ଳ ନରସିଂହ
ଜଗତ ତାରଣ କାରଣ ସେ ନରସିଂହ ।
ବାମନ ପ୍ରତିମା ଲକ୍ଷେ ସ୍ଥାପିଲେ ପ୍ରତ୍ୟକ୍ଷ
ପରଶୁରାମ ମୂରତି ସ୍ଥାପି ଏକଲକ୍ଷ ।
ସଦାଶିବ ପ୍ରତିମା ଯେ ବାରଲକ୍ଷ ଲିଙ୍ଗ
ତ୍ରିଶାଖା ବିଲ୍ୱପତ୍ରରେ ଲୁଚାଇଲେ ଅଙ୍ଗ ।
ପ୍ରତିଲିଙ୍ଗେ ଲକ୍ଷେ ଦେଲେ ଦୁହାଁଳିଆ ଗାଈ
ଦଶାବତାରେ ତୁଳସୀମାଳମାନ ଦେଇ ।
ସହସ୍ରଭୁଜ ହୋଇଲେ ଦୁର୍ଗାର ପ୍ରତିମା
ବସାଇଲେ ଏକଲକ୍ଷ ଚତୁର୍ମୁଖ ବ୍ରହ୍ମା ।
ଲକ୍ଷେକ ପ୍ରତିମା ସର୍ବମଙ୍ଗଳ ପିତୁଳା
ଲକ୍ଷେକ ପ୍ରତିମା ଲକ୍ଷ୍ମୀ ଅଟନ୍ତି ଧବଳା ।
ଆଦିତ୍ୟ ଦେବ ଆବର ଚନ୍ଦ୍ରମା ପବନ
ନବଗ୍ରହ ତୁଲେ ବିଜେ ଦିଗପାଳମାନ ।
ଶଙ୍ଖପଦ୍ମ ମହାପଦ୍ମ କର୍କୋଟ ଯେ ଶ୍ୱେତ
ତକ୍ଷକମାନଙ୍କ ସହ ଆସିଲେ ଅନନ୍ତ ।
ଗ୍ରାମଦେବତା ଅଇଲେ ଲକ୍ଷେକ ମୂରତି
ଶମନ କାଳ ବିକାଳ ଚିତ୍ରଗୁପ୍ତ ମନ୍ତ୍ରୀ ।
ଦକ୍ଷିଣାବର୍ତ୍ତକ ଶଙ୍ଖ ଗଣି କେ ପାରିବ
ଏକମୁଖା ରୁଦ୍ରାକ୍ଷର ଅନ୍ତ କେ କରିବ ।
ପଡ଼ିଥିଲା ଲକ୍ଷ ଲକ୍ଷ ଧବଳ ଛାଉଣି
ସୁବର୍ଣ୍ଣ କଳସ ଲକ୍ଷେ ଥିଲେ ନିରିମାଣି ।
ବିଦ୍ୟାଧରୀମାନେ ଗୀତ ଗାଇଣ ସୁସ୍ୱରେ
ଭଙ୍ଗି କରି ନାଚୁଥିଲେ ପ୍ରତି ଘରେ ଘରେ ।
ମର୍ଦ୍ଦଳ ତାଳ କଂସାଳ ଶଙ୍ଖ ଭେରୀ ବୀଣା
ତୂରୀ ମଙ୍ଗଳ ମହୁରୀ ନୁହଇ ଗଣନା ।
ମଙ୍ଗଳାଷ୍ଟକ ପଠନ କଲେ ଗ୍ରହପୁତ୍ରେ
ମାହେନ୍ଦ୍ରବେଳକୁ ଗଣି କହିଲେ ତୁରିତେ ।
କୋଟି କୋଟି ତୀର୍ଥନୀର ଘେନିଣ ସଙ୍ଗର
କ୍ଷେତ୍ରାଧିପ ଉପସ୍ଥିତ ଦ୍ରୋଣ ଯେ ପୁଷ୍କର ।
ସିଂହାସନ ଅଷ୍ଟରତ୍ନେ ମଣ୍ଡିତ ହୋଇଛି
ତାହାଉପରେ ଉତ୍ତମ ଆସନ ପଡ଼ିଛି ।
ତଥି ଉପରେ ମହୀନ୍ଦ୍ର ବିଜେ କଲେ ଯାଇଁ
ଶାଳଗ୍ରାମ ଲକ୍ଷେ ଆଠକୋଟି ଥିଲା ତହିଁ ।
ସେ ଶିଳାମାନଙ୍କୁ ବିଧିମତେ ପୂଜା କଲେ
ସେହି ସିଂହାସନେ ଧର୍ମରାଜ ବିଜେ କଲେ ।
ପରମ ଯୋଗୀ ସୁବର୍ଣ୍ଣ ପଇତା ଘେନିଣ
ଯୁଧିଷ୍ଠିଙ୍କ ଗଳେ ନେଇ କରିଲେ ପ୍ରଦାନ ।
ଶ୍ରୀକୃଷ୍ଣ ସଙ୍ଗରେ ଘେନି ବହୁମୂଲ୍ୟ ମାଳା
ଆଭରଣ କଲେ ନେଇ ଯୁଧିଷ୍ଠିଙ୍କ ଗଳା ।
ଅମୃତଯୋଗ ମାହେନ୍ଦ୍ରବେଳା ଅନୁକୂଳେ
ପାଞ୍ଚାଳୀ ବିଜେ କରିଲେ ଯୁଧିଷ୍ଠିଙ୍କ କୋଳେ ।
ଡାହାଣରେ ବୃକୋଦର ବାମେ ଫାଲଗୁନି
ପୃଷ୍ଠଦେଶରେ ନକୁଳ ରତ୍ନଦଣ୍ଡ ଘେନି ।
ଆସେ ସହଦେବ ହସ୍ତେ ମନ୍ତପୋଥି ଧରି
ପାଣ୍ଡବଙ୍କୁ ନାନାରତ୍ନ ତହିଁ ଦେଲେ ହରି ।
ଲକ୍ଷେକ ଧବଳ ଛତ୍ର ଉଡ଼ଇ ଅଗ୍ରତେ
ନେତର ଆଲମ୍ୱ ପଡ଼େ ପାଞ୍ଚ ଅୟୁବ୍ରତେ ।
ମୟୂର ପକ୍ଷୀ ଆଲଟ କେତେ ଯେ ପଡ଼ଇ
ସଂଖ୍ୟା କରିବାକୁ ଶକ୍ତି କାହାର ଅଛଇ ।

ବକ ଶ୍ୟାମଳ ପକ୍ଷୀ ଯେ ଲକ୍ଷେକ ଉଡ଼ଇ
ଶଙ୍ଖଚିଲ ପକ୍ଷୀ ଯେତେ କେ ପାରିବ କହି ।
ଶୁଭ ମହୁରୀ ଅସଂଖ୍ୟ ଘେନିଣ ବଜାନ୍ତି
ମଙ୍ଗଳ ସଙ୍ଗୀତ ବିଦ୍ୟାଧରୀଏ ଗାବନ୍ତି ।
ମଙ୍ଗଳ ହୁଳହୁଳି ଯେ ଦିଅନ୍ତି ଗଣିକା
ଆଗେ ଉଭାହୋଇ ଲକ୍ଷେ ନାଚନ୍ତି ନାୟିକା ।
ଆଗେ ଉଭା ହୋଇ ସ୍ତୁତି କରିଲା ଗୋବିନ୍ଦ
ଐରାବତେ ବସି ପୁଷ୍ପ ବୃଷ୍ଟି କରେ ଇନ୍ଦ୍ର ।
ସୁବର୍ଣ୍ଣ କଳସେ କୋଟିତୀର୍ଥ ପାଣି ଘେନି
ପୁଷ୍କର ଯେ ଅଭିଷେକ କଲେ ତାହା ଆଣି ।
ଅମୃତ ବୃଷ୍ଟି କରନ୍ତି ପୁଣି ମେଘମାଳ
ଡାକୁଛନ୍ତି ଚଣ୍ଡପୁତ୍ରେ ଶୁଭଯୋଗ ବେଳ ।
ଅର୍ଘ୍ୟଆଣି ଯୁଧିଷ୍ଠିଙ୍କୁ କୋଟି କୋଟି ଋଷି
ପାଦେ ବନ୍ଦାଇଣ ପୂଜା କରୁଛନ୍ତି ଆସି ।
କ୍ଷଣେ ପଳ ପଞ୍ଚାମୃତ ହୁଏ ପାଦପୂଜା
ବିଧିମତେ ଅଭିଷେକ ହେଲେ ଧର୍ମରାଜା ।
ବାଜଇ ଟମକ ଭେରୀ ତୁରୀବୀଣାମାନ
ଝାଞ୍ଜ ମୃଦଙ୍ଗ ମର୍ଦ୍ଦଳେ ପୃଥ୍ୱୀ କମ୍ପମାନ ।
ଏହିପରି ଅଭିଷେକ ବିଧିମତେ ସାରି
ପାଟହସ୍ତୀ ପରେ ଧର୍ମରାଜା ବିଜେ କରି ।
ଅଶ୍ୱ ଆରୋହଣ କଲେ ଅନ୍ୟ ଚାରିଭାଇ
ଗରୁଡ଼ ପିଠିରେ ବିଜେ କଲେ ହରି ସାଇଁ ।
ପରମାନନ୍ଦ ପୁରୁଷ ଜୟ ବାସୁଦେବ
ବ୍ରହ୍ମାଣ୍ଡ କରତା ନାଥ ତୁହି ଦେବଦେବ ।
ମାନଗୋବିନ୍ଦକୁ ମାରି ପାଣ୍ଡବଙ୍କୁ ସ୍ଥାପି
ଜଗତ ଉଶ୍ୱାସ କଲୁ ତୁହି ବିଶ୍ୱରୂପୀ ।
ଧର୍ମନନ୍ଦନଙ୍କର ଯେ ଅଭିଷେକ କାଳେ
ବିଜୟରେ ଲୋଟୁଅଛି ତବ ପାଦତଳେ ।
ନୁହଇ ପଣ୍ଡିତ ଜାଣେ ନାହିଁ ଶାସ୍ତ୍ରବିଧି
ତବ ପାଦେ ଆଶ୍ରେ କରିଅଛି ନିରବଧି ।
ଯାହା ଆଜ୍ଞାଦେଲେ କୃପାଜଳର ନନ୍ଦିନୀ
ତାହା ଲେଖୁଅଛି ମୁହିଁ ଧରିଣ ଲେଖନୀ ।
ଦୀନହୀନ ନାଥ କୃଷ୍ଣ ଚରଣ ପଙ୍କଜେ
ଶାରଳାଦାସ ସେ ପାଦ ସର୍ବଦା ଯେ ଭଜେ ।
ଏଥୁଅନ୍ତେ ବୈବସ୍ୱତ ମନୁରାଜା ଭାଷି
କୋଟିଜନ୍ମ ପାପୁଁ ମୁହିଁ ତରିଲି ମହର୍ଷି ।
ଅଗସ୍ତି ବୋଇଲେ ଧର୍ମରାଜା ନିରଞ୍ଜନ
ଯାହା ପାଦ ଆରାଧନା କଲେ ନାରାୟଣ ।
ତାହାଙ୍କର ଅଭିଷେକ ଶୁଣନ୍ତି ଯେ ଜନ
ଲଭନ୍ତି ବୈକୁଣ୍ଠ ଦଣ୍ଡି ନ ପାରଇ ଯମ ।
ଲୟ ଲଗାଇ ଶୁଣନ୍ତି ଯେତେ ଯେତେ ଲୋକ
ଜରା ରୋଗ କାହିଁ ତାଙ୍କୁ ନ ଲଭନ୍ତି ଶୋକ ।
ଆୟୁ ଧନ ପୁତ୍ର ମନେ ଯେ ଯାହା ପୁଛଇ
ଅକ୍ଳେଶରେ ସେ ଅବଶ୍ୟ ପ୍ରାପତ ହୁଅଇ ।
କୋଟି ଗୋରୁ ଦାନ ଦେଇ କୋଟି ତୀର୍ଥ କଲେ
ପର୍ବତ ସରି କଣୟ ଅବା ଦାନ ଦେଲେ ।
ଅନ୍ନବସ୍ତ୍ର ଜଳ ଭୂମି ଏ ଦାନ ସକଳ
ଭାରତ ଶୁଣିବା ଫଳେ ନୁହେଁ ସମତୁଲ ।
ବିଷ୍ଣୁରେ ଭକତି ବଇକୁଣ୍ଠେ ଯାର ଇଚ୍ଛା
ଯୁଧିଷ୍ଠିଙ୍କ ଅଭିଷେକ ଶୁଣି କର ବାଞ୍ଛା ।
ଧର୍ମ ଅର୍ଥ କାମ ମୋକ୍ଷ ଏହି ଚାରିବର୍ଗ
ଏ ଅଭିଷେକ ଶୁଣନ୍ତେ ପାଇ ସ୍ୱର୍ଗ ଭୋଗ ।
ଶରୀରରେ ନ ପୀଡ଼ଇ କାଳ କାମ ନିଦ୍ରା
ରାଜ୍ୟ ସୁତ ଅର୍ଥ ହୁଏ ପ୍ରାପତ ସର୍ବଦା ।
ଧର୍ମରାଜା ଅଭିଷେକ କର୍ଣ୍ଣେ ଯେ ଶୁଣନ୍ତି
ଅମରଗଣଙ୍କ ସହ ସ୍ୱର୍ଗେ ସେ ବସନ୍ତି ।
ରାମ ରାମ ନାମ ଗୋଟି ହୃଦମଧ୍ୟେ ଧର
ବଦନ୍ତି ଶାରଳା ଦାସ ଭାବି ଚକ୍ରଧର ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଏଡ଼େ ଅଭିଷେକେ ସୈନ୍ୟ ନ ଥିଲେ କାହିଁକି ।
ଅଗସ୍ତି ବୋଇଲେ ଶୁଣ ମନୁ ନରନାଥ
କୃଷ୍ଣଙ୍କ ଲକ୍ଷେ ଷାଠିଏ ସହସ୍ର ଅଶୀ ସୁତ ।
ଏମାନେ ଯାନବାହନ ମାନଙ୍କେ ଆରୋହୀ
ଅଭିଷେକ କାଳେ ଆସିଥିଲେ ସର୍ବେ ତହିଁ ।
ଦିବ୍ୟ ଆଭରଣ ପିନ୍ଧି ନାନା ଶସ୍ତ୍ର ଘେନି
ନାନାରଙ୍ଗେ ବିହରନ୍ତି ଯାଦବ ସଇନି ।
ଯାଦବ ବୀରେ ଦିଶନ୍ତି କାମଦେବ ପ୍ରାୟେ
ଆବର ଦିଶନ୍ତି ଯଥା ବୃନ୍ଦାର୍କ ପରାୟେ ।
ବିଦ୍ୟାଧର ମଧ୍ୟେ ଯେହ୍ନେ ଦେଖାଯାନ୍ତି ସ୍କନ୍ଦ
ସେପରି ଶୋଭା ଦିଶନ୍ତି ଧର୍ମ ନରଇନ୍ଦ୍ର ।
ଦେବଋଷି ବ୍ରହ୍ମଋଷି ଶ୍ରୀକୃଷ୍ଣ ସହିତେ
ଭ୍ରମନ୍ତି ସେ ଲୀଳାରଙ୍ଗେ ସେହି ଇନ୍ଦ୍ରପ୍ରସ୍ଥେ ।
ଆଲଟ ଚାମର ଧରି କୃଷ୍ଣଙ୍କର ସୁତେ
ଉଭାରି ରହିଅଛନ୍ତି ଯୋଜନ ପର୍ଯ୍ୟନ୍ତେ ।
ମହାସମ୍ଭର୍ବେ ଏକାଳେ ପଞ୍ଚରାଜ୍ୟ ଫେରି
ଦର୍ଶନ କରିଲେ ଧୃତରାଷ୍ଟ୍ର ଯେ ଗାନ୍ଧାରୀ ।
ତାଙ୍କୁ ଦେଖିଣ ଗାନ୍ଧାରୀ ଧୃତରାଷ୍ଟ୍ର ରାଜା
ବୋଇଲେ ଏପରି ବାବୁ ପାଉଥାଅ ପୂଜା ।
ଆନନ୍ଦ ହେଲେ ଯୁଧିଷ୍ଠି ତାଙ୍କ କଥା ଶୁଣି
ପଞ୍ଚଜନ୍ୟ ଶଙ୍ଖନାଦ କଲେ ଚକ୍ରପାଣି ।

ସକଳ ଋଷି ତାହାଙ୍କୁ କଲ୍ୟାଣ କରିଲେ
ବହୁ ଧନବସ୍ତ୍ର ନେଇ ଯେଝାଶ୍ରମେ ଗଲେ ।
ରାଜ୍ୟ ଏକଚ୍ଛତ୍ର କରି ଯୁଧିଷ୍ଠି ଚଳାନ୍ତି
ଦେଖିଣ ଶ୍ରୀକୃଷ୍ଣ ହେଲେ ସନ୍ତୋଷିତ ମତି ।
କହନ୍ତି ଶ୍ରୀକୃଷ୍ଣଚନ୍ଦ୍ର ଯୁଧିଷ୍ଠିଙ୍କ ଆଗେ
ଆମ୍ଭେ ଦ୍ୱାରକାକୁ ଯିବୁ ଆଜ୍ଞାଦିଅ ବେଗେ ।
ଧର୍ମରେ ରାଜ୍ୟକୁ ତୁମ୍ଭେ ପ୍ରତିପାଳୁଥିବ
ପ୍ରଜାଙ୍କୁ ସୁଖୀ କରାଇ ଭୋଗ ଭୁଞ୍ଜୁଥିବ ।
ଏତେକ ତିଆରି ପୁତ୍ରେ ଘେନିଗଲେ ହରି
ଯେଉଁ ଦେବ ମାୟା ତିନି ଭୁବନରେ ପୂରି ।
ଯୁଧିଷ୍ଠିଙ୍କି ତିଆରିଣ ଗଲେ କୃଷ୍ଣ ବେଗେ
ଦ୍ୱାରକାରେ ପ୍ରବେଶିଲେ ଅତ୍ୟନ୍ତ ସରାଗେ ।
ବଳରାମଙ୍କୁ କହିଲେ ଫେଡ଼ି ସର୍ବକଥା
କୌରବ ପାଣ୍ଡବଙ୍କର ଯୁଦ୍ଧର ବ୍ୟବସ୍ଥା ।
ଏମନ୍ତ ଯହୁଁ ସକଳ ବୃତ୍ତାନ୍ତ କହିଲେ
ଶୁଣି କରି ବଳଦେବ ସନ୍ତୋଷ ହୋଇଲେ ।
ଶ୍ରୀ ଭଗବାନଙ୍କର ମୁଁ ଦାସର ଯେ ଦାସ
କହନ୍ତି ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।
ଶ୍ରୀ ମହାଭାରତ କଥା ସୁଜ୍ଞଜନେ ଜାଣି
ଶ୍ରୁତିପଥେ ପିଇ ତର ଭବ ତରଙ୍ଗିଣୀ ।

—o—

## ଦୁର୍ବାସା ଋଷି କୃଷ୍ଣଙ୍କ ମାୟା ଦର୍ଶନ କରି ବ୍ରହ୍ମାଙ୍କୁ ଜଣାଇବା ଓ କୋଣାର୍କ ତୀର୍ଥ ମହାତ୍ମ୍ୟ

ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଭୋ ମୁନି ଗାନ୍ଧାରୀ ଶାପ ଭୋଗିଲେ କୃଷ୍ଣକି ।
ଏହା ମୋତେ ସଂକ୍ଷେପିଣ କହନ୍ତୁ ଯେ ଯତି
ସେ ଶାପକୁ ଭୋଗିଲେକି ଦେବ ଶିରୀପତି ।
ବଦନ୍ତି ଅଗସ୍ତି ଶୁଣ ମନୁ ମହାରାୟେ
ପୁତ୍ରସହ ହରି କଲେ ଦ୍ୱାରକା ବିଜୟେ ।
ପାଣ୍ଡବେ ପଞ୍ଚକଟକେ ନିଶ୍ଚିନ୍ତେ ରହିଲେ
ଧର୍ମାଧର୍ମ ବିଚାରିଣ ପ୍ରଜାକୁ ପାଳିଲେ ।
ଶ୍ରୀକୃଷ୍ଣ ଦ୍ୱାରକାପୁରେ ସୁଖେ ରହିଥାନ୍ତି
ଷୋଳସସ୍ର କନ୍ୟା ସଙ୍ଗେ ବିହାର କରନ୍ତି ।
ପୃଥିବୀର ଭାରାଭର ନିବାରଣ ଅର୍ଥେ
ହଳୀ ହରି ବେନି ଭାଇ ଜନ୍ମିଥିଲେ ମର୍ତ୍ତ୍ୟେ ।
ଶ୍ରୀକୃଷ୍ଣଙ୍କର ଚରିତ ବୁଝିବା କାରଣେ
ଅଇଲେ ଦୁର୍ବାସା ଋଷି ତାଙ୍କ ପାଶେ ଦିନେ ।

କହନ୍ତି ଅଗସ୍ତି ମୁନି ଶୁଣ ମହାରାୟେ
ଦ୍ୱାରକା ଭୁବନେ ଯାଇ ଦୁର୍ବାସା ବିଜୟେ ।
ଜାଣିପାରି ମାୟାଧର ଦୁର୍ବାସାଙ୍କ ଚିତ୍ତ
ଦ୍ୱାରକା ଭୁବନେ ମାୟା କଲେ ଯଦୁନାଥ ।
ପ୍ରଥମେ ରୁକ୍ମିଣୀଙ୍କର ନବରକୁ ଗଲେ
ତହୁଁ ଯାଇ ଶ୍ରୀକୃଷ୍ଣଙ୍କୁ ଦୁର୍ବାସା ଭେଟିଲେ ।
ଦୁର୍ବାସା ଋଷିଙ୍କୁ ଦେଖି ରୁକ୍ମିଣୀ ନନ୍ଦନ
ଶ୍ରୀକୃଷ୍ଣ ସହ ପୂଜିଲେ ତାଙ୍କୁ ତିନିଜଣ ।
ଶ୍ରୀକୃଷ୍ଣଙ୍କୁ ଦେଖି ମୁନି ହୋଇଣ ସନ୍ତୋଷ
ତହୁଁ ଯାଇ ଜମ୍ବୁବତୀ ପୁରରେ ପ୍ରବେଶ ।
ଶ୍ରୀକୃଷ୍ଣଙ୍କୁ ତହିଁ ପୁଣି ଦୁର୍ବାସା ଦେଖିଲେ
ବସିଛନ୍ତି ଦାମୋଦର ଜମ୍ବୁବତୀ ତୁଲେ ।
ଦୁର୍ବାସା ଋଷିଙ୍କୁ ଦେଖି ଶ୍ରୀକୃଷ୍ଣ ଉଠିଲେ
ପାଦେ ପ୍ରଣାମ କରିଣ ବହୁ ସ୍ତୁତି କଲେ ।
ପୁଣି ଗମିଲେ ଦୁର୍ବାସା ଶତ୍ରାବତୀ ପୁର
ତହିଁ ଦେଖିଲେ ଅଛନ୍ତି ଦେବ ଚକ୍ରଧର ।
ଭାଳନ୍ତି ସେ ମୁନି ଦେଖି ଶ୍ରୀକୃଷ୍ଣ ଚରିତ
ଏପରି ହରନ୍ତି ହରି କନ୍ୟାଙ୍କର ଚିତ୍ତ ।
ଏପରି ବିଚାରି ମୁନି ଗମନ କରିଲେ
ଗୋପ କନ୍ୟାଙ୍କର ପୁରେ ପ୍ରବେଶ ହୋଇଲେ ।
ସେଠାରେ ଶ୍ରୀକୃଷ୍ଣ ଥିବା ଦୁର୍ବାସା ଦେଖିଲେ
ଋଷିଙ୍କୁ ଦେଖି ଶ୍ରୀକୃଷ୍ଣ ବହୁ ପୂଜା କଲେ ।
ତହୁଁ ମୁନିବର ଯଥାବିଧି ପୂଜା ପାଇ
ଆବର କନ୍ୟାର ପୁରେ ପ୍ରବେଶିଲେ ଯାଇ ।
ସେଠାରେ ମିଳି ଦେଖିଲେ ଛନ୍ତି ଦେବହରି
ଋଷିଙ୍କୁ ନମିଲେ କୃଷ୍ଣ କର ଯୋଡ଼ି କରି ।
ଭକ୍ତିଭରେ ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲେ
ଏପରି ସକଳ କନ୍ୟା ପୁରେ ମୁନି ଗଲେ ।
ସର୍ବସ୍ଥାନେ ଦେଖିଲେକ କୃଷ୍ଣ ମହାମୁନି
ଋଷିଙ୍କ ପୂଜା କରନ୍ତି ତଥା ଚକ୍ରପାଣି ।
ଷୋଳସହସ୍ର ଗୋପୀ ଅଷ୍ଟଉତ୍ତର ନାୟିକା
ଷୋଳସସ୍ର ଅପସରା ଯେ ଆଣିଥିଲେ ଏକା ।
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ସବୁରି ପାଶେ ଦେଖିଲେ କୃଷ୍ଣ ଛନ୍ତି ବସି ।
ସର୍ବଭୁବନେ ଦୁର୍ବାସା ପୂଜାକୁ ପାଇଲେ
ଆପଣା ମନକୁ ଆପେ ଲଜ୍ଜିତ ହୋଇଲେ ।
ମୁନି ଦେଖିଣ କୃଷ୍ଣର ଏସନ ବିଧାନ
ଭାବିଲେ ମର୍ତ୍ତ୍ୟେ ଭୁଞ୍ଜନ୍ତି ସୁଖ ଭୋଗମାନ ।
ତକ୍ଷଣେ ଦୁର୍ବାସା ତହୁଁ ଅନ୍ତର୍ଦ୍ଧାନ ହେଲେ
ପିତାମହଙ୍କ ଛାମୁରେ ତ୍ୱରିତ ମିଳିଲେ ।

ତାହାଙ୍କ ଛାମୁରେ କହେ ମୁନି ଯୋଡ଼ି କର
କୃଷ୍ଣର ଚରିତ ଦେବ ଦେବ ଅଗୋଚର ।
ଶୁଣି କରି ବ୍ରହ୍ମା ଅତି ହରଷେ ବୋଲନ୍ତି
ପୃଥ୍ୱୀଭାରା ନାଶି ସ୍ୱର୍ଗେ କିମ୍ପା ନ ଆସନ୍ତି ।
ଦୁର୍ବାସା କହିଲେ ତହୁଁ ପିତାମହ ଆଗେ
ମହାସୁଖେ ଛନ୍ତି ତେଣୁ ନ ଆସନ୍ତି ସ୍ୱର୍ଗେ ।
ଭୋ ପରମେଷ୍ଠୀ ସେ କିମ୍ପା ଏଠାକୁ ଆସିବେ
ଆଶ୍ଚର୍ଯ୍ୟ ହୋଇଲି ତାଙ୍କ ରୀତି ଦେଖି ଭବେ ।
ସବୁ କନ୍ୟାଙ୍କ ଗୃହରେ ମୋତେ କଲେ ପୂଜା
ତାହା ଦେଖି ଆପେ ଆପେ ପାଇଲି ମୁଁ ଲଜ୍ଜା ।
ଏହା ଶୁଣି ବୋଲେ ଧାତା ଉଲ୍ଲସାଇ କାୟ
ପୃଥ୍ୱୀ ଭାରା ଉଶ୍ୱାସିବା ପାଇଁ ଦେବରାୟ ।
ରାମ ଅବତାରେ ବହୁ ପାଇଥିଲେ ଦୁଃଖ
ତେଣୁ କହ୍ନା ଅବତାରେ ଭୁଞ୍ଜନ୍ତି ସେ ସୁଖ ।
ରୋଦନ କରି ଆମ୍ଭଙ୍କୁ କହିଲାକ ମହୀ
କଂସ ଚାଲନ୍ତେ ମୋ ମୁଖୁ ଶୋଣିତ ବହଇ ।
ଅଷ୍ଟମଲ୍ଲ ଘେନି କଂସ ଅଛି ଅବତରି
ତାର ପାଦଭାର ଆଉ ନ ପାରିବି ଧରି ।
କ୍ଷୀରାର୍ଣ୍ଣବେ ବିଷ୍ଣୁ ଶୋଇଥିଲେ ନିଦ୍ରାବଶେ
ପୃଥ୍ୱୀ ଦେବୀର ଏ କଷ୍ଟ ନିବାରିବା ଆଶେ ।
ତେତିଶକୋଟି ଦେବତା ସହ ତହିଁ ମିଳି
ସ୍ତୁତି କରନ୍ତେ ପ୍ରସନ୍ନ ହୋଇ ବନମାଳି ।
ଆମ୍ଭମାନଙ୍କୁ ସେ ତହୁଁ ବୋଇଲେ ଏସନ
କାହିଁ ପାଇଁ ଦେବଗଣ କଲ ଆଗମନ ।
ସର୍ବେ ତାହାଙ୍କୁ ବୋଇଲୁ ହୋଇ କୃତାଞ୍ଜଳି
ଦୈତ୍ୟ ପାଦଭାର ପୃଥ୍ୱୀ ନ ପାରେ ସମ୍ଭାଳି ।
ମହୀଭାରା ଆମ୍ଭ ଦୁଃଖ ନିବାରଣ ପାଇଁ
ଭୋ ଦେବ ତୁମ୍ଭ ଛାମୁରେ ଅଇଲୁ ଯେ କହି ।
ପରମବିଷ୍ଣୁ ବୋଇଲେ ତହୁଁ ଆମ୍ଭ ଆଗେ
ଅବତରି ଥିଲୁଁ ରାମରୂପେ ତ୍ରେତାଯୁଗେ ।
ସୀତା ହରାଇଣ ପାଇଥିଲୁ ବହୁ ଦୁଃଖ
ତୁମ୍ଭେ ଦେବଗଣ ତାହା ଦେଖିଛ ପ୍ରତ୍ୟକ୍ଷ ।
ନ ଜାଣି ଦୁଷ୍ଟଙ୍କୁ ବର ଦେଉଥିବ ତୁମ୍ଭେ
ଅସାଧ୍ୟ ହୋଇଲେ ଯାଇ ସଂହାରିବୁ ଆମ୍ଭେ ।
ଏହିପରି ତୁମ୍ଭେମାନେ ପାଳିବ ଏ ପୃଥ୍ୱୀ
ଯୋଗନିଦ୍ରାରେ ଜାଣୁଛୁ ଆମ୍ଭେ ଶୋଇ ଏଥି ।
ତୁମ୍ଭେମାନେ ଏ ସ୍ଥାନରୁ ଯାଅ ନିଜ ସ୍ଥାନ
ବିନୟରେ ଆମ୍ଭେମାନେ କହିଲୁ ଏସନ ।
ନ କରିବ ଯେବେ ଦେବ ପୃଥ୍ୱୀକୁ କାରଣ
ରସାତଳଗାମୀ ହୋଇଯିବ ଏହିକ୍ଷଣ ।

ଅନନ୍ତ ବଚନେ ପୃଥ୍ୱୀ ରୋଦନ କରିଲା
ତା ରୋଦନେ ଅନନ୍ତଙ୍କ ଦୟା ଉପୁଜିଲା ।
ବୋଇଲେ କିମ୍ପା ରୋଦନ କର ଦେବୀ ତୁମ୍ଭେ
ତୋହର ରୋଦନ ଦେଖି ନ ସହିଲୁ ଆମ୍ଭେ ।
ବୋଲନ୍ତି ଆମ୍ଭର ମୁଖ ଚାହିଁ ଯଦୁସାଇଁ
ତୁମ୍ଭର ନିମନ୍ତେ ମଞ୍ଚେ ଜନ୍ମି ହେଲି ମୁହିଁ ।
ଏହିପରି ବାରେ ବାରେ ଜନ୍ମି ମୁଁ ଅନେକ
ଦୁଷ୍ଟ ନିବାରଣେ ପାଇଅଛି ବହୁ ଦୁଃଖ ।
ଏବେ ଦେବଗଣ ତୁମ୍ଭେ ଚିନ୍ତା ପରିହର
ଉଶ୍ୱାସିବି ଗୁପ୍ତେ ଜନ୍ମ ହୋଇ ମହୀଭାର ।
ରାମରୂପେ ପାଇଅଛି ବହୁତର ଦୁଃଖ
ଏଥର ଯେପରି ବହୁ ଭୁଞ୍ଜିବି ମୁଁ ସୁଖ ।
ଏପରି କହିଣ ଦେବେ ଦେବକୀ ଉଦରେ
ଜନମ ହୋଇଲେ ଆସି ବସୁଦେବ ଘରେ ।
ତେଣୁ କରି ବହୁସୁଖ ଭୁଞ୍ଜନ୍ତି ମୁରାରୀ
ବିନାଶ କରିଣ ଆମ୍ଭମାନଙ୍କର ଵୈରି ।
ଲୀଳାରେ ମାଇଲେ ତହୁଁ ଦୁଷ୍ଟ କଂସାସୁର
ସିନ୍ଧୁ ମଧ୍ୟେ ବସାଇଲେ ଦ୍ୱାରାବତୀ ପୁର ।
ଦେଇଛୁ ସୁନ୍ଦରୀଗଣ ସ୍ୱର୍ଗୁ ବାଛି ବାଛି
ତାଙ୍କସହ କ୍ରୀଡ଼ା କରୁଅଛନ୍ତି ଶ୍ରୀବତ୍ସି ।
ଏହିପରି ପୂର୍ବକଥା କହିଲୁ ହେ ଯତି
ବତିଶ ସହସ୍ର କନ୍ୟା ଭୋଗନ୍ତି ଶ୍ରୀପତି ।
ଲକ୍ଷେ ରାଜାଙ୍କର ଅଟେ ଯେତେକ ବିଭବ
ସେ ଭୋଗ ଭୁଞ୍ଜନ୍ତି ସୁଖେ ଦେବ ପଦ୍ମନାଭ ।
କୃଷ୍ଣଙ୍କୁ ଦେଖିବା ପାଇଁ ଯାନ୍ତି ବହୁ ଯତି
ତାଙ୍କ ତୃପ୍ତି ପାଇଁ ଧରିଛନ୍ତି ବହୁମୂର୍ତ୍ତି ।
ଭୋ ଦୁର୍ବାସା ମଞ୍ଚପୁରେ ଯାଅ ତୁ ବହନ
କୃଷ୍ଣଙ୍କୁ ଚେତାଇ ଆସ ସର୍ବ କଥାମାନ ।
ଏଥୁ ଯାଇ ନିଶ୍ଚିନ୍ତରେ ଛନ୍ତି ଶିରୀବତ୍ସି
କୁଟୁମ୍ବମାନଙ୍କ ସ୍ନେହେ ନ ଜାଣନ୍ତି କିଛି ।
ଶୁଣ ହୋ ମନୁରାଜନ କେତେକ ସମୟେ ,
ଶାମ୍ବ କୁମରକୁ ଆଜ୍ଞା ଦେଲେ ଦେବରାୟେ ।
ସତ୍ୟଭାମାଙ୍କ ଦୁଆରେ ତୁହି ରହିଥିବୁ
କାହାରିକୁ ପଶିବାକୁ ଭିତରେ ନ ଦେବୁ ।
ନିଶ୍ଚିନ୍ତରେ ଅବକାଶ ଆମ୍ଭେ ବଢ଼ାଇବୁ
ଆଜ୍ଞା ମେଣ୍ଟିଲେ ଶାମ୍ବ ତୁ ଶାପ ଯୋଗ୍ୟ ହେବୁ ।
ଆମ୍ଭେ ଯାଇ ବିଜେ କରିଅଛୁ ରମ୍ୟସ୍ଥାନେ
କେହି ଯେହ୍ନେ ନ ପଶିବେ ଆମ୍ଭର ଭବନେ ।
ଏତେ ବୋଲି ସତ୍ୟଭାମାପୁରେ କୃଷ୍ଣ ଗଲେ
ଶାମ୍ବକୁମରକୁ ଦ୍ୱାରେ ନିଶ୍ଚିନ୍ତେ ରଖିଲେ ।

ଧାତା ବଚନେ ଦୁର୍ବାସା ଦ୍ୱାରେ ହେଲେ ଆସି
ଶାମ୍ବ ତାହାଙ୍କୁ ଭିତରେ ନ ଦେଲେକ ପଶି ।
ନିଅବକାଶରେ ପିତା ଛନ୍ତି ମାତା ତୁଲେ
ତୁମ୍ଭେ ଭେଟ ନ ପାଇବ ତାଙ୍କର ଏ କାଳେ ।
ସାମାନ୍ୟ କାର୍ଯ୍ୟ ହୋଇଲେ ବାହୁଡ଼ିଣ ଯାଅ
ଦେବକାର୍ଯ୍ୟ ହେଲେ ତୁମ୍ଭେ ଏଥିକ୍ଷଣେ ରୁହ ।
ଦୁର୍ବାସା ବୋଲେ ଆକଟ କଥା ଅଛି ବାବୁ
ଏକ୍ଷଣି କୃଷ୍ଣଙ୍କୁ ଆମ୍ଭେ ଦର୍ଶନ କରିବୁ ।
ଶାମ୍ବ ବୋଲେ ପିତାମାତା ଛନ୍ତି ଏକସ୍ଥାନେ
ମୁହିଁ ପୁତ୍ର ହୋଇ ତହିଁ ଯିବଇଁ କେସନେ ।
ଦୁର୍ବାସା ବୋଇଲେ ତୁହି ବେଗ ହୋଇଯାଅ
କୃଷ୍ଣଙ୍କୁ ଜଣାଇ ମୋତେ ଭିତରକୁ ନିଅ ।
ବୋଇଲା ଶାମ୍ବକୁମର କୃତାଞ୍ଜଳି ହୋଇ
କେବଣ ମତେ ଭିତରେ ପଶିବି ମୁଁ ଯାଇ ।
ଶାମ୍ବର ବଚନେ ମୁନି ବହୁତ କୋପିଲେ
କଟାଳ କରିଣ ବହୁ ବଚନ ବୋଇଲେ ।
ପୁଣି ବୋଇଲେ ତୁ ଯେବେ ନ ଯିବୁ ଭିତର
ଦ୍ୱାରକା ସହିତେ ଭସ୍ମ କରିବି ତୋହର ।
କୃଷ୍ଣଙ୍କୁ ତୁ ଯାଇ ବେଗେ ନ ଆଣିଲେ ଶାମ୍ବ
ଦହନ କରିବି ସାତବଂଶର ଯାଦବ ।
ଭାଳଇ ଶାମ୍ବକୁମର କରିବି କେମନ୍ତ
ଅବକାଶେ ବିଜେ କରିଛନ୍ତି ତାତ ମାତ ।
ତାଙ୍କର ଭେଟ ଦେଖିଲେ ହେବ ମହାଦୋଷ
ନ ଗଲେ ଭସ୍ମ କରିବି ଋଷି ସାତବଂଶ ।
ପିତା କୋପ କଲେ ସିନା ଏକା ନାଶଯିବି
ମୁହିଁ ଏକା ମଲେ ସାତବଂଶ ଉଦ୍ଧାରିବି ।
ଏତେ ଭାବି ଋଷିଙ୍କୁ ସେ ଦ୍ୱାରରେ ରଖାଇ
ଶାମ୍ବକୁମର ଭିତରେ ପଶିଲାକ ଯାଇ ।
କୃଷ୍ଣ ସତ୍ୟଭାମାଙ୍କର କ୍ରୀଡ଼ାରସବେଳେ
ଶାମ୍ବକୁମର ଭିତରେ ପଶନ୍ତେ ସେ କାଳେ ।
ଉଭୟ ଅନ୍ତର ହେଲେ ଦେଖି ନିଜ ପୁତ୍ର
ରସଭଗ୍ନହନ୍ତେ କୃଷ୍ଣ ହେଲେ ରାଗାନ୍ୱିତ ।
ବୋଇଲେ ଶାମ୍ବକୁମରେ ପୁରୁଷ ଉତ୍ତମ
ଲଙ୍ଘିଲୁ ମୋର ବଚନ ନିର୍ଲ୍ଲଜ ଅଧମ ।
ଯେଣୁ କରି ମୋ ବଚନ ହେଲୁ ତୁହି ଭ୍ରଷ୍ଟ
ତେଣୁ ତୋହର ଶରୀରେ ଜାତ ହେଉ କୁଷ୍ଟ ।
ତତକ୍ଷଣେ କୁଷ୍ଟରୋଗ ତା ଦେହେ ଜନ୍ମିଲା
ଶରୀରର ଚର୍ମସବୁ ଧବଳ ଦିଶିଲା ।
ତହୁଁ ଶାମ୍ବ ବୋଇଲାକ ଶୁଣ ଆହେ ବାପ
କି ବିଚାରି ଦେଲ ମୋତେ ଏଡ଼େ ବଡ଼ ଶାପ ।
ସର୍ବଜ୍ଞ ହୋଇଣ ମୋତେ ଏତେ ଶାସ୍ତି ଦେଲ
ନିଜ ପୁତ୍ରପ୍ରତି କିଛି ବିଚାର ନ କଲ ।
ଏହିକ୍ଷଣି ଦ୍ୱାରେ ଆସି ମିଳିଲେ ଦୁର୍ବାସା
ତବ ଦର୍ଶନକୁ ମନେ କରି ବଡ଼ ଆଶା ।
ବୁଝାଇ କହିଲି ତାଙ୍କୁ ସମସ୍ତ ବୃତ୍ତାନ୍ତ
ତେବେ ମଧ୍ୟ ମୋତେ କୋପ କରି ତପୋବନ୍ତ ।
ବୋଇଲେ କୃଷ୍ଣଙ୍କୁ ବେଗେ ନ ଦେଲେ ଦେଖାଇ
ଦ୍ୱାରକାପୁର ଦହନ କରିଦେବି ମୁହିଁ ।
ନ ବିଚାରି ଏଡ଼େ ଦଣ୍ଡ ବିହିଲୁ ତ ସ୍ୱାମୀ
ଯାଇ ଦୁର୍ବାସା ଚରଣେ ହୁଅ ପରଣାମି ।
ଶାମ୍ବ କଥା ଶୁଣି କୃଷ୍ଣ ଚଳିଲେ ବହନ
ମହାଋଷିଙ୍କର ଚରଣେ କରିଣ ପ୍ରଣାମ ।
ବୋଇଲେ ଭୋ ମୁନି ଏଥି କିମ୍ପା ଆଗମନ
ତୁମ୍ଭ ଯୋଗୁଁ ନାଶହେଲା ମୋହର ନନ୍ଦନ ।
ଦୁର୍ବାସା ବୋଇଲେ ଆଜ୍ଞା ଅଛି ଧାତାଙ୍କର
ସ୍ୱର୍ଗକୁ ଚଳ ଶ୍ରୀବତ୍ସି ତେଜି ମର୍ତ୍ତ୍ୟପୁର ।
ଶ୍ରୀକୃଷ୍ଣ ବୋଇଲେ ଯେବେ ଅଛି ଧାତାଙ୍କର
ତେବେ ଅଳ୍ପଦିନେ ଆମ୍ଭେ ଯିବୁ ସ୍ୱର୍ଗପୁର ।
ପୁଣି ଦୁର୍ବାସାଙ୍କୁ ଚାହିଁ ବୋଲନ୍ତି ଗୋବିନ୍ଦ
ତୁମ୍ଭ ଯୋଗୁ ମୋ ପୁତ୍ରକୁ ପଡ଼ିଲା ପ୍ରମାଦ ।
ଦୁର୍ବାସା ବୋଇଲେ ଶାମ୍ବେ ଶୁଣରେ କୁମର
ଭାସ୍କର ତୀର୍ଥ ଯା ନାମ ତହିଁ ଜପ କର ।
ଦୁର୍ବାସାଙ୍କ ବାଣୀ ଶୁଣି ତହୁଁ ଚଳିଗଲା
ଏକତୀର୍ଥରେ ମିଳିଣ ତପ ଆଚରିଲା ।
ଚନ୍ଦ୍ରଭାଗା ମହୋଦଧି ତୀରେ କରି ସ୍ନାନ
ବଟ ପ୍ରଦକ୍ଷିଣ କରି ଗଲା ଚନ୍ଦ୍ରକୋଣ ।
ତପ କଲା ବଟପତ୍ର କରିଣ ଆହାର
ଦ୍ୱାରକା ଭୁବନ ତେଜିଗଲେ ମୁନିବର ।
ବ୍ରହ୍ମା ଆଗରେ କହିଲେ ସମସ୍ତ ବିସ୍ତାରି
କିଛିଦିନେ ମର୍ତ୍ତ୍ୟେ ତେଜି ଆସିବେ ମୁରାରୀ ।
ଏହା ଶୁଣି ପ୍ରଜାପତି ହୋଇଲେ ତୃପତି
ପୁଣି ଅଗସ୍ତିଙ୍କି ପୁଚ୍ଛେ ମନୁ ନରପତି ।
ବୋଇଲେ ହେ ମୁନି ଶାମ୍ବ ତପ କରି ଗଲା
ଅର୍କତୀର୍ଥରେ କିପରି ତପ ଆଚରିଲା ।
ଅଗସ୍ତି ବୋଲନ୍ତି ଜମ୍ବୁଦ୍ୱୀପ ଅଗ୍ନିକୋଣେ
ଅର୍କଦୈତ୍ୟକୁ ନାଶିଲେ ସୂର୍ଯ୍ୟ ନାରାୟଣେ ।
ଦକ୍ଷିଣ ସମୁଦ୍ର ଚନ୍ଦ୍ରଭାଗା ଉତ୍ତରରେ
କୋଟିତୀର୍ଥ ଘେନି ଗଙ୍ଗା ଅଛନ୍ତି ସେଠାରେ ।
ତହିଁ ସ୍ନାହାନ କରି ଯେ ବିରଞ୍ଚି ଦେଖଇ
ଦେହ ନିଷ୍କଳଙ୍କ ହୋଇ ପାପ ନାଶ ଯାଇ ।
ସେଠାବରେ ତପ କଲା କୃଷ୍ଣଙ୍କ କୁମର
କେବଳ ଜଳ ପବନ କରିଣ ଆହାର ।
ଦ୍ୱାଦଶ ବରଷ ଏହିପରି ବହିଗଲା
ନିଷ୍କଳଙ୍କ ହେଲା ତାର ବ୍ୟାଧି ନାଶଗଲା ।
କନ୍ଦର୍ପ ସମାନ ତାର ହେଲା ଅପଘନ
ତପସ୍ୟାରେ ସର୍ବପାପ କରିଣ ଦହନ ।
ତୀର୍ଥସ୍ଥାନରେ ଦୁର୍ବାସା ଯାଇ ପହଞ୍ଚିଲେ
ତପ କରୁଥିଲେ ଶାମ୍ବ ମୁନିଙ୍କୁ ଦେଖିଲେ ।

ତକ୍ଷଣେ ଶାମ୍ବକୁମର ତାହାଙ୍କୁ ପ୍ରଣମି
ବୋଲେ ଏ ତୀର୍ଥର କଥା କହ ମହାମୁନି ।
ଦୁର୍ବାସା ବୋଇଲେ ଶୁଣ ଆହେ କୃଷ୍ଣପୁତ୍ର
ଏହି ସ୍ଥାନଟି ଅଟଇ ଅତ୍ୟନ୍ତ ପବିତ୍ର ।
ଏଠାରେ ଯେ ଦୃଢ଼ ତପ କଲେ ଆଚରଣ
ସହାୟ ହୁଅନ୍ତି ତାକୁ ସୂର୍ଯ୍ୟ ନାରାୟଣ ।
ଚନ୍ଦ୍ରଙ୍କଠାରେ ଅପ୍ରୀତି ହୋଇ ଜଳପତି
ସେ ପଦ ଘେନିବା ପାଇଁ ବଳାଇଲେ ମତି ।
ଏହି ଚନ୍ଦ୍ରଭାଗା ତୀରେ ବସି ତପ କଲା
ସୂର୍ଯ୍ୟରୂପ ନବଲକ୍ଷ ବର୍ଷ ନ ଦେଖିଲା ।
ମକର ଶୁକଳଷଷ୍ଠୀ କୃତ୍ତିକା ନକ୍ଷତ୍ର
ଅର୍କବାର ସେ ଦିନର ଅଟଇ ନିୟତ ।
ବିଷ୍ଟିନାମରେ କରଣ ଅତିଗଣ୍ଡ ଯୋଗ
ଅର୍କଦୈତ୍ୟ ଭ୍ରମୁଥିଲା ଯାଇ ମଧ୍ୟସ୍ୱର୍ଗ ।
ତୀର୍ଥ ବୁଲି ମିଳିଲା ସେ ମହୋଦଧି କୂଳେ
ବିଶ୍ରାମ କରିଲା ଯାଇ ସେ ବଟର ତଳେ ।
ଦେଖଇ ପୁରୁଷ ତହିଁ ବିଦ୍ୟାଧର ରୂପ
ମହୋଦଧି ଚନ୍ଦ୍ରଭାଗା ମଧ୍ୟେ କରେ ତପ ।
ଭାଳେ ଅର୍କଦୈତ୍ୟ ଏ ତ ଅଟେ ମଧୁମାଂସ
ଖାଇବି ମୁଁ ବହୁଦିନ ଅଛି ଉପବାସ ।
ଏତେ ବିଚାରି ବାହାର ହୋଇଲା ସତ୍ୱରେ
ଧୀରେ ଧୀରେ ପ୍ରବେଶିଲା ସେ ବଟ ତଳରେ ।
ପଛରୁ ଆସଇ ଦୈତ୍ୟ ହୋଇ ତୁନି ତୁନି
ଲୁହାର ଯଷ୍ଟି ଏକ ଯେ କରେ ଅଛି ଘେନି ।
ଉଞ୍ଚାଇ ପିଟନ୍ତେ ଯଷ୍ଟି ତାହାର ଉପରେ
ଉଦେ ହୋଇ ସୂର୍ଯ୍ୟ ଥିଲେ ସାଗର ଭିତରେ ।
ଦୈତ୍ୟ ପ୍ରହାରିବା ଦେଖି କହନ୍ତି ଅରୁଣ
ତପୋଧନଟିକୁ ଦୈତ୍ୟ କରଇ ନିଧନ ।
ଦେଖିଲେ ସୂର୍ଯ୍ୟଦେବତା ରଥ ମଧ୍ୟେ ଥାଇ
ଜାଣିଲେ ଆମ୍ଭଙ୍କୁ ଧ୍ୟାନ ବସି ଏ କରଇ ।
ଲକ୍ଷେ ଯୋଜନରେ ଥାଇ ବିରଞ୍ଚି ଠାକୁର
କର ବାଙ୍କି ନିବାରିଲେ ଦୈତ୍ୟର ପ୍ରହାର ।
ଲକ୍ଷେ ଯୋଜନରେ ଥାଇ କର ବଢ଼ାଇଲେ
ଅର୍କଦୈତ୍ୟର କରକୁ ସ୍ୱକରେ ଧଇଲେ ।
ରହ ରହ ବୋଲି ଉଚ୍ଚେ ଡାକି ଅଂଶୁମାଳି
ରାଗାନ୍ୱିତ ହୋଇ ଦୈତ୍ୟ ପକାଇଲେ ପେଲି ।
ଉତ୍ତାନଶାୟୀ ହୋଇଣ ଦାନବ ପଡ଼ିଲା
କାଳଚକ୍ର ଘେନି କରେ ସୂର୍ଯ୍ୟଙ୍କୁ ଚାହିଁଲା ।
ଅର୍କଦୈତ୍ୟ ବୋଲେ ଅଟୁ କେବଣ ପୁରୁଷ
ମୋଠାରେ ବିବାଦୀ ହୋଇ ପାଇବୁ କି ଯଶ ।
ଅର୍କଦଇତ୍ୟେ କହନ୍ତି ସୂର୍ଯ୍ୟ ନାରାୟଣ
ଆରେ ମୁହିଁ ସୂର୍ଯ୍ୟ ଏହି ତୀର୍ଥ ମୋର ଜାଣ ।
ଅର୍କଦୈତ୍ୟ ହିଁ ବୋଲେ ମୁଁ ତୀର୍ଥ ଅଧିପତି
ମୋର ଆହାର ଅଟଇ ଜାଣ ଏହି ଯତି ।
ଅକାରଣେ ମୋହଠାରେ ହେଉ ତୁ ବିବାଦୀ
ଆଗ ତେବେ ତୋର ଶିର ପକାଇବି ଛେଦି ।
ଏହା କହି ଯୁଝିବାକୁ କହିଲା ଅସୁର
କୋପେ ତହୁଁ କାଳଚକ୍ର ମାଇଲେ ଭାସ୍କର ।
ଅର୍କଦୈତ୍ୟର ଶରୀର ଥିଲା ବଜ୍ରସେହ୍ନା
ବାଜି କାଳଚକ୍ର ତହିଁ ହୋଇଗଲା ଚୂନା ।
ପୁଣି ପରିଘ କୁନ୍ତ ସେ ମାଇଲେ ବହୁତ
ତହିଁରେ ସେ ଅର୍କଦୈତ୍ୟ ନୋହିଲାକ ହତ ।
କେଉଁ ଅସ୍ତ୍ରେ ବଧ ଯହୁଁ ନୋହିଲା ଅସୁର
ତାର ବକ୍ଷସ୍ଥଳେ ମାଡ଼ି ବସିଲେ ଭାସ୍କର ।
କଳ୍ପବଟ ତଳେ ସେହି ଚନ୍ଦ୍ରଭାଗା ସ୍ଥାନେ
ତାହାକୁ ମାଡ଼ିବସିଲେ ସଂଜ୍ଞା ପ୍ରାଣଧନେ ।
ପୃଥ୍ୱୀ ଅଗ୍ନିକୋଣେ ଯହୁଁ ଦୈତ୍ୟ ହେଲା ହତ
ତେଣୁ ସେ କୋଣାର୍କ ନାମେ ହୋଇଲା ବିଖ୍ୟାତ ।
ସେଦିନ ସେଠାରେ ଯେହୁ ହୋଇ ଉଜାଗର
କାଳ ଯାପଇ ତା ପୁଣ୍ୟ ଅଟଇ ଅପାର ।
ସପ୍ତମୀରେ ସ୍ନାନ ଦାନ ଧର୍ମ ଯେହୁ କରେ
ତାହା ସମ ପୁଣ୍ୟାତ୍ମା କେ ନାହିଁ ଏ ସଂସାରେ ।
କୋଣାର୍କ ବୋଲିଣ ଯେହୁ ଅଟେ ତୀର୍ଥଗୋଟି
ତାହାକୁ ସମାନ ନୁହେଁ ତୀର୍ଥ କୋଟି କୋଟି ।
କୋଟି କୋଟି ଗୋରୁ ଦାନ କୋଟି ଅଶ୍ୱ ଗଜ
କୋଟିଏକ କନ୍ୟା ପୁଣି କୋଟିଏକ ରାଜ୍ୟ ।
କୋଟିଏ ପର୍ବତ ସମ ଦାନ ଦେଲେ ହୀରା
ତଥାପି ସମ ନୋହିବ ଅର୍କତୀର୍ଥ ପରା ।
ଜୟ ଜୟ ଭାସ୍କରହେ ଜୟ ମାରତଣ୍ଡ
ଅର୍କ ବିଦାରଣ ନାଥ ପୂଜିତ ବ୍ରହ୍ମାଣ୍ଡ ।
ଛାୟାର ବଲ୍ଲଭ ପ୍ରଭୁ କୃତାନ୍ତକ ପିତା
ପାପୀ ପାପହାରୀ ଅଟ ହର୍ତ୍ତା କର୍ତ୍ତା ।
ସକଳ ଲୋକର ଅଟୁ ତୁହି ଦିବ୍ୟ ଚକ୍ଷୁ
ସକଳ ଜଗତ ଭ୍ରମି ତୁହି ଏକା ଦେଖୁ ।
ନମସ୍ତେ ନମସ୍ତେ ପ୍ରଭୁ କମଳ-ଲୋଚନ
ଶନିଶ୍ଚର ପିତା ଅନ୍ଧକାର ବିଧ୍ୱଂସନ ।
ସପ୍ତଦ୍ୱୀପର ତିମିର କରୁ ନିବାରଣ
ତୋ ପ୍ରସନ୍ନେ ସର୍ବପାପ ହୁଅଇ ଧ୍ୱଂସନ ।
ପ୍ରଳୟ ତାରଣ ନାଥ ତୁ କଶ୍ୟପଗୋତ୍ରୀ
ଅରୁଣ ପ୍ରକାଶେ ତୋର ବିକାଶଇ ଜ୍ୟୋତି ।
ମହାତେଜୋବନ୍ତ ନାଥ ଶୂନ୍ୟ ମାରଗରେ
ତୋ ଯୋଗୁ ଦିବସ ହୁଏ ମାନବ ଲୋକରେ ।
ଚନ୍ଦ୍ରଭାଗା କୋଣାର୍କର ମହୋଦଧି ତୀରେ
ଭାବନା ରହୁ ସର୍ବଦା ସେ ବଟ ପାଶରେ ।
ଶ୍ରୀ ବିରଞ୍ଚିନାରାୟଣ ଚରଣେ ଶରଣ
ପଶିଲା ଶାରଳାଦାସ କର ଉଦ୍ଧାରଣ ।

---o---

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚିତ




# ଅଶ୍ୱମେଧ ଓ ଆଶ୍ରମିକପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ - ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ - ୨

ଦୂରଭାଷ : ୦୬୭୧-୨୬୦୮୨୯୬

# ଅଶ୍ୱମେଧ ପର୍ବ

## ସୂଚୀପତ୍ର





# ଆଶ୍ରମିକ ପର୍ବ



**ଅଶ୍ୱମେଧ ଓ ଆଶ୍ରମିକ ପର୍ବର ସୂଚୀପତ୍ର**
**ସମାପ୍ତ**

# ମହାଭାରତ

## ଅଶ୍ୱମେଧ ଓ ଆଶ୍ରମିକ ପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ,
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା,
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧ ବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।
କୃଷ୍ଣଦ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯକ୍ରର୍ଣ୍ଣଧାରୋହରି ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ,
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠାନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ,
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧମ୍ ।

ତତ୍ରେ ଚ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ତ ।
ସର୍ବାଣୀ ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦରକଥାପ୍ରସଙ୍ଗଃ ।

## ବନ୍ଦନା

ଜୟ ଜୟ ବିଶ୍ୱନାଥ ପ୍ରସନ୍ନ ବଦନ
ଜୟ ଜୟ କୃତ୍ତିବାସ ଜୟ ତ୍ରିନୟନ ।
ବ୍ୟାଘ୍ରଚର୍ମ ମେଖଳା ଯେ ଶିରେ ଶୋହେ ଜଟା
ଦିଗମ୍ବର ନାଥ ମାରିଥାଅ ହେ ଲେଙ୍ଗଟା ।
ଅମରପଦ ସେବକ ଲୋକଙ୍କୁ ଯେ ଦିଅ
ଭୋଗେ ମନ ନ ଦେଇ ଯେ ତୁନି ହୋଇଯାଅ ।
ପରମାନନ୍ଦ ନାଥ ତୁ ପରଦୁଃଖେ ଦୁଃଖୀ
ସମସ୍ତଙ୍କୁ ସବୁ ଦେଇ କିଛି ନାହୁଁ ରଖି ।
ସଂସାରପାଳକ ନାଥ ଚରଣେ ନମସ୍ତେ
ଦୁସ୍ତର ସାଗରୁ ନାଥ ଉଦ୍ଧର ହେ ମୋତେ ।
ମମ ହୃଦେ ଜ୍ଞାନ ଦୀପ ଜାଳ ପଞ୍ଚାନନ
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଅଟେ ତୁମ୍ଭର ନୟନ ।
ସୁଗନ୍ଧ ତେଜି ବିଭୂତି ଭୂଷଣ ଯେ ହୁଅ
ନୀଳବର୍ଣ୍ଣ କଣ୍ଠ ତବ ସ୍ଫଟିକ ଯେ ଦେହ ।
କେତେ ଏହି ସଂସାରେ ଯେ ହେଲାଣି ପ୍ରଳୟ
ରହିଅଛ ଦେବ ତୁମ୍ଭେ ଧରି ନିଜ ଦେହ ।
ତ୍ରିଲୋକ ରକ୍ଷଣେ ଭକ୍ଷିଥିଲ କାଳକୂଟ
ତେଣୁ ତବ ନାମ ହୋଇଅଛି ନୀଳକଣ୍ଠ ।
ଭାସ୍କର ତୀର୍ଥରେ ଯାଇ ତବରୂପ ଦେଖି
ଜନମାନେ ସର୍ବପାପ ଆସନ୍ତି ଉପେକ୍ଷି ।
ଶ୍ରୀରାମେଶ୍ୱର ଦେବଙ୍କ ପାଦେ ସଦା ସେବି
ନମଇଁ ଶ୍ରୀ ଶୂଦ୍ରମୁନି ଶାରଳା ଯେ କବି ।

—o—

## ଶ୍ରୀକୃଷ୍ଣଙ୍କର ଅଶ୍ୱମେଧ ଯଜ୍ଞ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
କହିବାକୁ ଅଶ୍ୱମେଧ ଯାଗର ଯେ ରୀତି ।
କହନ୍ତି ଶ୍ରୀକୃଷ୍ଣ ମୁଖ ଚାହିଁ ବସୁଦେବ
ବହ୍ମା ନରହତ୍ୟା ତୁହି କଲୁରେ ମାଧବ ।
ସେହି ଦୋଷମାନଙ୍କରୁ ଉଦ୍ଧାର ନିମନ୍ତେ
ଅଶ୍ୱମେଧ ଯାଗ ବାବୁ କର ଶୁଦ୍ଧ ଚିତ୍ତେ ।
ଆବର ବୋଇଲେ ଆନନ୍ଦରେ ଯାଗକର
ମୋ ପରେ ରହିଲା ଯାଗଶାଳ ରକ୍ଷାଭାର ।
ଚୌରାଶୀ ଗୁଣ ଲକ୍ଷଣ ଅଶ୍ୱଏକ ଆଣି
ଶିରେ ମଣି ଖଞ୍ଜି କୋଟି କିରଣକୁ ଜିଣି ।
କୃଷ୍ଣ ବୋଇଲେ ଅକ୍ରୁର ଯିବୁ ଇନ୍ଦ୍ରପ୍ରସ୍ଥେ
ପଞ୍ଚପାଣ୍ଡବଙ୍କୁ ଘେନି ଆସିବୁ ତୁ ଏଥେ ।
ସୁଭଦ୍ରା ଦ୍ରୌପଦୀ ଘେନିଆସ ବାବୁ ବେଗେ
ବୋଲିବ କୃଷ୍ଣ ବରିଲେ ଅଶ୍ୱମେଧ ଯଜ୍ଞେ ।
ଅକ୍ରୁର ଗମନ କଲା ଶ୍ରୀକୃଷ୍ଣ ବଚନେ
ପ୍ରବେଶ ହୋଇଲା ଇନ୍ଦ୍ରପ୍ରସ୍ଥର ଆସ୍ଥାନେ ।
ପ୍ରଣମି ଯୁଧିଷ୍ଠି ଆଗେ କହିଲା ସକଳ
ଶୁଣିଣ ସାନନ୍ଦ ହେଲେ ପଣ୍ଡୁର ଦୁଲାଳ ।
ଅକ୍ରୁର କହନ୍ତେ ଅଶ୍ୱମେଧ ଯାଗ କଥା
ଦଣ୍ଡ ସାଜିଲେ ଯାଦବ ପଞ୍ଚ ମହାରଥୀ ।
ଆସିଣ ହେଲେ ଦ୍ୱାରକା ଭୁବନେ ପ୍ରବେଶ
ଦେଖି ତାଙ୍କୁ ପୂଜା କଲେ ପ୍ରଭୁ ହୃଷୀକେଶ ।
ଦ୍ରୌପଦୀ ସତ୍ୟଭାମାଙ୍କ ବଢ଼ିଲା ପୀରତି
ଆନନ୍ଦେ ରହିଲେ ଯାଗ କରିବେ ଶ୍ରୀପତି ।
ବୋଇଲେ ଶ୍ରୀକୃଷ୍ଣ ଯୁଧିଷ୍ଠିଙ୍କି ହେ ନରେନ୍ଦ୍ର
ତୁମ୍ଭେ ଆସିବାରୁ ହେଲି ମୁଁ ବଡ଼ ଆନନ୍ଦ ।
ପାଞ୍ଚଭାଇଯାକ ଏଥି ରହ ଯେ ନିଶ୍ଚିନ୍ତେ
ବଦନ୍ତି ଯୁଧିଷ୍ଠିଦେବ କୃଷ୍ଣଙ୍କୁ ଏକାନ୍ତେ ।
ଅଶ୍ୱମେଧ ଯାଗ ଦେବ କରିବ ତ ତୁମ୍ଭେ
ସମସ୍ତ ଚରଚା ସୁଖେ କରିବୁ ଯେ ଆମ୍ଭେ ।
ଯାଗଶାଳେକ ଶ୍ରୀକୃଷ୍ଣ ଭ୍ୟାଇଲେ ତୁରିତେ
ଆସିଲେ କୃଷ୍ଣ ଆଜ୍ଞାରେ ମହର୍ଷି ସମସ୍ତେ ।
ଋଷିମାନଙ୍କୁ କହିଲେ ତହୁଁ ନାରାୟଣ
ତୁମ୍ଭେମାନେ ଯାଇ ଯାଗ କର ଆରୋପଣ ।
ବଶିଷ୍ଠ ଯେ ମାରକଣ୍ଡ ପୌଲସ୍ତି ଅଗସ୍ତି
ପରାଶର ଭରଦ୍ୱାଜ ଲୋମଶ ଯେ ଶକ୍ତି ।
ବିଭାଣ୍ଡକ ଋଷ୍ୟଶୃଙ୍ଗ ପଣ୍ଡୁଙ୍କ ସନ୍ତତି
ଜନକ ସନକ ଋଷି କଉସ୍ତୁଭ ଯତି ।
ବ୍ୟାସ ବାଲମିକ ମୁନି ବିଶ୍ୱାମିତ୍ର ମେଳେ
ସମସ୍ତେ ପ୍ରବେଶ ହେଲେ ଆସି ଯାଗଶାଳେ ।
ଶ୍ରୀକୃଷ୍ଣ ବୋଇଲେ ତହୁଁ ଯୁଧିଷ୍ଠି ଦେବଙ୍କୁ
ଦ୍ୱାରୀହୋଇ ତୁମ୍ଭେ ଚର୍ଚ୍ଚାକର ସମସ୍ତଙ୍କୁ ।
ଯୁଧିଷ୍ଠି ବୋଇଲେ ଦ୍ୱାରେ ଅରର୍ଜୁନ ଥାଉ
ତାହା ବିନେ ସେ କାର୍ଯ୍ୟ କେ କରିପାରେ ଆଉ ।
କୃଷ୍ଣ ବୋଇଲେ ତା ସାଧ୍ୟ ନ ପାରେ ଅର୍ଜୁନ
କେଭେ ଯଜ୍ଞ କରି ନ ପାରିବୁ ସମାପନ ।
ଅର୍ଜୁନ ବୋଇଲେ ସ୍ୱାମୀ ସବୁ ତୁମ୍ଭେ ଜାଣ
କିମ୍ପାଇ ଏପରି କଥା କହ ନାରାୟଣ ।
ମହାଯୁଦ୍ଧେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ମୂଳେ
ଏଗାର କ୍ଷଉଣୀ ବଳ ନାଶିଲି ମୁଁ ହେଳେ ।
ଏତେ ପରାକ୍ରମ ମୋର ଥିଲାଟି ସେ ବେଳେ
ତବ ଦ୍ୱାର ଦେଖି ନ ପାରିବି ଏତେବେଳେ ।
ଏହା ଶୁଣି ଭଗବାନ ମନେ ବିଚାରିଲେ
କୋପ କରିବ ଏ ମନେ ଦ୍ୱାରେ ନ ରଖିଲେ ।

ବୋଇଲେ ଦ୍ୱାରକୁ ଯେବେ ପାର ରକ୍ଷା କରି
ଦ୍ୱାରପାଳ ସୁଖେ ଯାଇଁ ହୁଅ ଧନୁର୍ଦ୍ଧାରୀ ।
ତହୁଁ ଯାଇ ଦ୍ୱାରପାଳ ହେଲେ ଅରଜୁନ
ଧରି ଧନୁଶର ପାଶୁପତ ଅକ୍ଷ ତ୍ରୋଣ ।
ଲକ୍ଷେ ଷାଠିଏ ସହସ୍ର କୃଷ୍ଣଙ୍କର ପୁତ୍ର
ଚଉଦ ଲକ୍ଷ ଯାଦବ ବଳ ଯେ ସମସ୍ତ ।
ଅନ୍ଧକ ବଂଶ ଯେ କୃଷ୍ଣ ବଂଶ ଭୋଜବଂଶ
ଏ ବିଧିରେ ସାତବଂଶ ଘେନି ହୃଷୀକେଶ ।
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ଦିବ୍ୟ ଅଳଙ୍କାର ପିନ୍ଧି ଯାଗଶାଳେ ପଶି ।
କୃଷ୍ଣ ବୋଇଲେ ପାର୍ଥ ତୁ ଥିବୁ ଯାଗଦ୍ୱାରେ
ବିନା ଆଜ୍ଞାରେ କେହି ନ ପଶିବେ ଭିତରେ ।
ତୁମ୍ଭେ ସମସ୍ତ ହେଁ ଥିବ ଅସ୍ତ୍ରଶସ୍ତ୍ର ଧରି
ବଳାତ୍କାରେ ଯେ ପଶିବ ପକାଇବ ମାରି ।
ପିନ୍ଧିଲେ ଯେ ଯାଗନିକମାନେ ଝୀନବାସ
ଧଇର୍ଯ୍ୟ ଧରି ବସିଲେ ପ୍ରଭୁ ହୃଷୀକେଶ ।
ବସିଲେ ଯେ କପିଳାର ଛାଲେ ଦେବହରି
କଟୀରେ ମେଖଳା କୃଷ୍ଣାଜିନ ଯେ ଉତ୍ତରୀ ।
ବ୍ରାହ୍ମଣଙ୍କୁ ଭୋଜନ ସେ ଦିଅନ୍ତି ଅନେକ
ଅଗ୍ନି ଆରୋପଣ କଲେ ଯାଇଁ ଯାଗନିକ ।
ମକର ଶୁକଳପକ୍ଷ ଚତୁର୍ଥୀ ଯେ ତିଥି
ଶ୍ରବଣାନକ୍ଷତ୍ର ପୁଣି ବାର ବୃହସ୍ପତି ।
ଆୟୁଷ୍ମାନ ନାମେ ଯୋଗ ତୈତିଳ କରଣ
ସେ ଦିନ ହୋଇଲା ଯଜ୍ଞ କର୍ମ ଆରୋପଣ ।

—o—

## ବ୍ରାହ୍ମଣର ମୃତ ପୁତ୍ର ଆନୟନ

ଏଥୁଅନନ୍ତରେ କଥା ଶୁଣ ହେ ନରେଶ
ଯଜ୍ଞର ତୃତୀୟ ଦିନ ହୋଇଲା ପ୍ରବେଶ ।
ସେ ନଗରେ ଥାଇ ବସୁକଳ୍ପ ଦ୍ୱିଜବର
ଶ୍ରୀୟା ନାମେଣ ଭାରିଯା ଅଟଇ ତାହାର ।
ଷଡ଼ଗୋଟି ପୁତ୍ର ତାର ଜାତ ହୋଇଥିଲେ
ଅନ୍ତୁଡ଼ିଶାଳୁ ଯେ ଅଦ୍‌ଭୁତେ କେଣେ ଗଲେ ।
ଅତ୍ୟନ୍ତ ବିକଳ ତହୁଁ ହେଲା ଦ୍ୱିଜବର
ପୁଣି ଅଶୁଚି ହୋଇଛି ଭାରିଯା ତାହାର ।
ଭାଳଇ ଦ୍ୱିଜ ବସି ଏ ଅଟେ ବିଷ୍ଣୁପୁର
ବଇଷ୍ଣବୀ ଚକ୍ର ଏଥି ବୁଲେ ଶତଧାର ।
ଯମଦେବତା ଯହିଁ ନ ପଶେ ଭୟ କରି
ଅନ୍ତୁଡ଼ିଶାଳରୁ ପୁତ୍ର କିଏ ନିଏ ହରି ।
ବାର ବାର ହୋଇ ଷଡ଼ପୁତ୍ର ଜାତ ହେଲେ
ବଡ଼ ଅଭୁତ ଏ ଅନ୍ତର୍ଦ୍ଧାନେ କେଣେ ଗଲେ ।
କେବଣ ଚରିତ ଏହା କିପରି ବୁଝିବି
ଭାଳଇ ବ୍ରାହ୍ମଣ କେଉଁ ଉପାୟ କରିବି ।
ଏ ମୋ ବିପଦ କରିବ କେହୁ ପ୍ରତିକାର
ଅନ୍ତୁଡ଼ଶାଳରୁ ପୁତ୍ର କେ ନେଲା ମୋହର ।
ବ୍ରାହ୍ମଣ ବୋଇଲେ ପୋଡୁ ପୋଡୁ ଏ ଦ୍ୱାରକା
ଏ ବିଷ୍ଣୁ ଭୁବନେ ପାପ କଲି ମୁହିଁ ଏକା ।
ବ୍ରାହ୍ମଣୀ ବୋଲେ ପଣ୍ଡାଏ ନ ହୁଅ ବିକଳ
ଦୁଃଖ ନାଶ ହେବ ଶ୍ରୀକୃଷ୍ଣର ଯାଗଶାଳ ।
ଯଜ୍ଞଦ୍ୱାରେ ତୁମ୍ଭେ ଯାଇଁ ମାଗ ବଚନେକ
ଅବଶ୍ୟ ଦେବାକୁ ସେହି ହୋଇବେ ଉତ୍ସୁକ ।
ଯାଗର ତୃତୀୟ ଦିନ ଆଜ ଯେ ଅଟଇ
ବ୍ରାହ୍ମଣକୁ ପତ୍ନୀ ତାର କହିଲା ବୁଝାଇ ।
ଯେ ଯାହା ମାଗଇ ଅନୁକ୍ଷଣେ ଦ୍ୟନ୍ତି ଦାନ
ତୁମ୍ଭେ ଏବେ ପାଇ ପୁତ୍ର ଦାନ ମାଗି ଘେନ ।
ବ୍ରାହ୍ମଣ ଚଳିଲା ତହୁଁ ବେଦଧ୍ୱନି କରି
ଯାଗଶାଳାଦ୍ୱାରେ ଯାଇ କରଇ ଗୁହାରି ।
କେଡ଼େ କେଡ଼େ ଦୁଷ୍ଟଙ୍କର ଗର୍ବ ମୁଁ ଭାଙ୍ଗିଲି
କେଉଁ କଥାକୁ ତୋର ମୁଁ କ୍ଷମା ଯେ ନୋହିଲି ।
ଦ୍ରୁପଦ ରାଜା ଯେ କାଳେ କଲା ସ୍ୱୟମ୍ବର
ଲକ୍ଷେ ରାଜା ଆସିଥିଲେ ନିମନ୍ତ୍ରଣେ ତାର ।
ଲାଖ ବିନ୍ଧି ଦ୍ରୌପଦୀଙ୍କି ମୁହିଁ ଯେ ଆଣିଲି
କୁରୁବଳ ସୈନ୍ୟ ମୁହିଁ ଏକା ନିବାରିଲି ।
ବିରାଟ ରାଜ୍ୟେ ଯେ ନପୁଂସକ ମୁଁ ହୋଇଲି
ନାଟ ଆଖଡ଼ାରେ ନାଟ ଶିଖାଉଣ ଥିଲି ।
ଗୋଧନ ହରଣେ ଦୁର୍ଯ୍ୟୋଧନ ଯେ ଅଇଲା
ଶୁଣିଣ ଉତ୍ତର ମୋର ଚରଣେ ପଡ଼ିଲା ।
ତାହାର ତୁଳେ ସାରଥି ହୋଇ କରି ଗଲି
ରଥୀଙ୍କ ନିଉନ ଦେଖି ସୈନ୍ୟ ନିବାରିଲି ।
କୁରୁପାଣ୍ଡବ ବଳ ଯେ ମହାଯୁଦ୍ଧ କଲେ
ଅନେକ ସୈନ୍ୟ ମୋହର ହସ୍ତେ ନାଶ ଗଲେ ।
ମାଇଲି ମୁଁ ଭୀଷ୍ମ ଦ୍ରୋଣ ଜୟଦ୍ରଥ ତୁଳେ
ଏଗାର କ୍ଷଉଣୀ ସଂହାରିଲି କୁତୂହଳେ ।
ଏହା ଶୁଣି ଦ୍ୱିଜବର ଉପହାସ କଲା
ତହିଁ ବୀରବର ପାର୍ଥ ଅତ୍ୟନ୍ତ କୋପିଲା ।
ପୁଣି ବୋଇଲା ଅଟଇ ତୋର କିସ କାର୍ଯ୍ୟ
କହ ବ୍ରାହ୍ମଣ ମୋ ଆଗେ କରିଣ ନିଧାର୍ଯ୍ୟ ।
ଆହେ ଦ୍ୱିଜ ଯେ କୃଷ୍ଣ ସେ ଅଟଇ ଅର୍ଜୁନ
ଭାରା ନିବାରଣେ ନରଦେହ ବେନିଜନ ।
ଏହା ଶୁଣି ଦ୍ୱିଜ ପୁଣି କହେ ଅର୍ଜୁନକୁ
ଯାଅ ଫାଲଗୁନି ଶୀଘ୍ର ଜଣାଅ କୃଷ୍ଣଙ୍କୁ ।

ଷଡ଼ବେଳେ ଛ'ପୁତ୍ର ମୋ ନାରୀ ଜନ୍ମ କଲା
ତକ୍ଷଣେ ପୁତ୍ରକୁ ମୋର କିଏ ଘେନିଗଲା ।
ଏବେ ବ୍ରାହ୍ମଣ ପ୍ରସବ କାଳ ଯେ ପ୍ରବେଶ
ତେଣୁ ତ ତକ୍ଷଣେ ଆସେ ମୁହିଁ କୃଷ୍ଣ ପାଶ ।
ତୋହର ବେଦନା କହ କିନା ମୋର ଆଗେ
ମୁଁ ତାହା ଭଲ କରିବି ବିଷ୍ଣୁ ଅନୁରାଗେ ।
ବୋଇଲେ ବ୍ରାହ୍ମଣ କହିବାକୁ ଶକ୍ୟ ନାହିଁ
କିସ ତୁ କରିବୁ ତୋର ଆଗେ ଅବା କହି ।
ଏମନ୍ତ ଶୁଣି ଅର୍ଜୁନ ହସିଣ ବୋଲଇ
ସକଳ ପ୍ରାଣୀଙ୍କ କଷ୍ଟ ମୁଁ ସିନା ହରଇ ।
ତୁ ମୋର ଦର୍ପ ନ ଜାଣୁ ଆହେ ଦ୍ୱିଜବର
ମୁହିଁ ଯେ ସକଳ ଦୁଷ୍ଟଜନ ଦର୍ପହର ।
ହେ କୃଷ୍ଣ ତୋ ପୁରେ କିମ୍ପା ଏ ଅନୀତି ହୁଏ
ଷଡ଼ପୁତ୍ର ଜନ୍ମିଲେ ମୋ ନେଲା ତାଙ୍କୁ କିଏ ।
ଭୋ କୃଷ୍ଣ ତୋ ଧର୍ମେ କିମ୍ପା ଘଟଇ ଅରିଷ୍ଟ
ପୁତ୍ର ଦେଇ ମୋହର ଯେ ଦୂର କର କଷ୍ଟ ।
ଏହା ଶୁଣି ବୋଲଇ ଯେ ବୀର ଅରଜୁନ
ଏତେବେଳେ ଚହଳ ତୁ ନ କର ବ୍ରାହ୍ମଣ ।
ମୋତେ ଏହି ଯଜ୍ଞଶାଳ ଦ୍ୱାରେ ରଖି କରି
ଯଜ୍ଞସ୍ଥାନେ ବସିଛନ୍ତି ଦେବ ଦଇତ୍ୟାରି ।
କେଉଁ କାର୍ଯ୍ୟ ଅଛି ତୋର କହ ଦ୍ୱିଜବର
କିସ ଗୁହାରି ତୁ କର ହୋଇଣ କାତର ।
ଦଶମାସ ସମ୍ପୂର୍ଣ୍ଣ ଯେ ହୋଇଲାକ ଆସି
ଅନ୍ତୁଡ଼ିଶାଳେ କେ ହରି ନେବ ବଳେ ପଶି ।
ଅର୍ଜୁନ ବୋଇଲେ ବ୍ରାହ୍ମଣ ଶୁଣ ମୋ ଉତ୍ତର
ତୋର ଆଗେ କି କହିବି ଦର୍ପ ଯେ ମୋହର ।
ଅନେକ ନିବାରିବାକୁ ମୋର ବଳ ଅଛି
ତୋହର କଥା ତ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।
ଏ ଘାନ୍ତି ପ୍ରସବ ବେଳେ ରଖିବି ତୋ ବଳା
ବୋବାଳି ନ ପକାଅ ତୁ ଏଥୁ ବେଗେ ପଳା ।
ଏ ତୋହର ପୁତ୍ର ଯେବେ ନ ପାରିବି ରଖି
ଅଗ୍ନିଜାଳି ମରିବି ଏ ସତ୍ୟ ଧର୍ମ ସାକ୍ଷୀ ।
ଏ ଛାର କଥାକୁ ତୋର ଏଡ଼େକ ଚହଳ
ଚାଲ ହୋ ବ୍ରାହ୍ମଣ ଏବେ ଯିବା ତୋର ଘର ।
ଆଗରେ ବ୍ରାହ୍ମଣ ପଛେ ଅରଜୁନ ଚାଲେ
ଯାଇଁ ବ୍ରାହ୍ମଣ ମନ୍ଦିରେ ପ୍ରବେଶ ହୋଇଲେ ।
ଭିତରକୁ ଆସ ଆସ ବୋଇଲେ ବ୍ରାହ୍ମଣ
ପାର୍ଥ ଭାଳେ କେହ୍ନେ ଯିବି ପ୍ରସବର ସ୍ଥାନ ।
ବୋଲଇ ବ୍ରାହ୍ମଣ ତୁହୋ କହୁଥିଲୁ ମିଥ୍ୟା
ସନ୍ନିଧେ ଦେଖିବୁ ନାହିଁ ହରଣ ବ୍ୟବସ୍ଥା ।
ବ୍ୟାକୁଳ ଜାଣି ଅର୍ଜୁନ ପଶିଲା ଭିତରେ
ଧନୁଶର ଧରି ପାର୍ଥ ବସିଲାକ ଦ୍ୱାରେ ।
ପୁତ୍ରେକ ବ୍ରାହ୍ମଣୀ ଗର୍ଭୁ ପ୍ରସବ ହୋଇଲା
ନାଭି କାଟି ଅର୍ଜୁନକୁ ପୁତ୍ର ଦେଖାଇଲା ।
ଗାଧୁଆଇ ଅନ୍ତୁଡ଼ିରେ ଶୁଆଇଲା ବାଳି
ଜନ୍ମୋତ୍ସବେ ଘନ ଘନ ପଡ଼େ ହୁଳହୁଳି ।
ଉଚ୍ଚରେ ଶୁଭିଲା ଯହୁଁ ହୁଳହୁଳି ଶବ୍ଦ
ସେ ହୁଳହୁଳି ମଞ୍ଜେକି ପଡ଼ିଲା ପ୍ରମାଦ ।
ବାଳକ ଦେଖି ଅର୍ଜୁନ ଆନନ୍ଦ ହୋଇଲେ
ମନଭେଦୀ ନାରାଚକୁ ବେଗେ ସେ ପେଶିଲେ ।
ଗୃହର ଚଉକତିକି ବେଢ଼ିଲା ସେ ଶର
ମାଛି ନ ଗଳିବ ଶର ବାଡ଼ର ଭିତର ।
ଏଣେ ତ ଦ୍ୱାର ନିର୍ବନ୍ଧେ ଅର୍ଜୁନ ଜଗିଲା
ତାହା ଦେଖି ବ୍ରାହ୍ମଣ ଯେ ଆନନ୍ଦ ହୋଇଲା ।
ଶୁଣ ଆହେ ସୁଜ୍ଞଜନେ ଏଥିର ଚରିତ
ଦଇବର ବିଡ଼ମ୍ବନା ହୋଇଲା କେମନ୍ତ ।
ଅଦଭୁତେ ନନ୍ଦନ ତ କେଉଁଆଡ଼େ ଗଲା
ହାପୁତ୍ର ବୋଲି ବ୍ରାହ୍ମଣ ଉଚ୍ଚେ ଶୋକ କଲା ।
କାନ୍ଦଇ ବ୍ରାହ୍ମଣ ଅର୍ଜୁନର ମୁଖ ଚାହିଁ
ବିଶ୍ୱାସଘାତକା ତୁ ଯେ ହୋଇଲୁ କିମ୍ପାଇଁ ।
ଶସ୍ତ୍ର ଧରି କହନ୍ତିରେ ବ୍ରାହ୍ମଣ ବ୍ରାହ୍ମଣୀ
ତୋହ ଯୋଗୁ ହତ ଆମ୍ଭେ ହେବୁ ହୋଇ ହାଣି ।
ଧିକ ଧିକ ଅର୍ଜୁନ ହୋ ତୋର କ୍ଷତ୍ରିଧର୍ମ
କ୍ଷତ୍ରିୟକୁଳେ କିମ୍ପାଇ ହୋଇଲୁ ତୁ ଜନ୍ମ ।
ଧିକ ହେଉନା ଅକ୍ଷୟ ଦ୍ରୋଣ ବେନି ତୋର
ଧିକ ତୋ ଗାଣ୍ଡିବ ଧନୁ ଜନନୀ ପିଅର ।
ଏଡ଼େ ବଡ଼ ପ୍ରତିଜ୍ଞା ତୁ କରିଣ ଅଇଲୁ
ମୋହର ପୁତ୍ରକୁ ଯାହା ରଖି ନ ପାରିଲୁ ।
ଅଇଲୁ ତୁ ଏଡ଼େ ଟାଣ କରି ପୁତ୍ର ରଖି
ଏବେ ମୋର ହତ୍ୟାକାଣ୍ଡ ଯାଅ ନେତ୍ରେ ଦେଖି ।
ଶୁଣି ଅର୍ଜୁନ କପାଳେ ମାରି ବେନି ହସ୍ତ
ବୋଇଲେ ଏ କର୍ମ ନିଶ୍ଚେ ଦଇବର କୃତ୍ୟ ।
କାଷ୍ଠ ଅଣାଇ ଅନଳ ଜାଳିଲା ଅର୍ଜୁନ
ପ୍ରଦକ୍ଷିଣ କରି ଆଣିବାକୁ କରେ ମନ ।
ଏ ବାରତା ଶ୍ରୀକୃଷ୍ଣଙ୍କୁ ଡଗର କହିଲା
ଧର୍ମବଳେ ଆହେ ଦେବ ପ୍ରମାଦ ପଡ଼ିଲା ।
ବ୍ରାହ୍ମଣର ପୁତ୍ର ରଖି ନ ପାରିଲା ଯେଣୁ
ହୁତାଶନେ ଭସ୍ମ ହେବ ଅରଜୁନ ତେଣୁ ।
କି କରିବି ବୋଲି ଭାଳୁଛନ୍ତି ବାସୁଦେବ
କେଉଁପରି ଅନଳରେ ପାର୍ଥ ନାଶଯିବ ।

ଏଡ଼େ ବଡ଼ ଯଜ୍ଞ ମୋତେ ପ୍ରାପତ ନୋହିଲା
ପୂର୍ବ ଅଭିଶାପ ଆଣି ଏହା ଘଟାଇଲା ।
ଉଠିଲେ ଆସନ ତେଜି ତହୁଁ ଭାବଗ୍ରାହୀ
ବ୍ରାହ୍ମଣ ମନ୍ଦିରେ ପ୍ରବେଶିଲେ ବେଗେ ଯାଇ ।
ଅନଳେ ପଶୁଁ ପାର୍ଥଙ୍କୁ ଧଇଲେ ଯେ କୋଳେ
କିମ୍ଭୂତ କାରଣ ବୋଲି ମଧୁରେ ପୁଛିଲେ ।
ପାର୍ଥ ବୋଲେ କେ ବ୍ରାହ୍ମଣ ପୁତ୍ର ନିଏ ହରି
ତେଣୁ ସେ ବ୍ରାହ୍ମଣ ଦ୍ୱାରେ କଲାକ ଗୁହାରି ।
ମୁହିଁ ବୋଇଲି ଗୋଳ ନ କର ଧର୍ମବଳେ
ତୋ ପୁତ୍ରକୁ ରଖିବି ମୁଁ ଜନ୍ମହେବା କାଳେ ।
ମୋହର ଦେଖନ୍ତେ ନେଲା ଗୁପତେ କେ ହରି
ଆବର କି ପ୍ରୟୋଜନ ଜୀବନେ ମୋହରି ।
ବାଚା ବିଚଳିତ ହୋନ୍ତି ଯେବଣ ପୁରୁଷ
ହେ ଦେବ ତାଙ୍କ ଜୀବନେ ପ୍ରୟୋଜନ କିସ ।
ତାହା ଶୁଣିଣ ଶ୍ରୀକୃଷ୍ଣ ବୋଇଲେକ ବସି
ଆସ ହୋ ଅର୍ଜ୍ଜୁନ ତାର ପୁତ୍ରକୁ ଦିଅସି ।
ଏମନ୍ତ ବଚନ କୃଷ୍ଣ ମୁଖୁ ପାର୍ଥ ଶୁଣି
କହନ୍ତି କେସନେ ପୁତ୍ର ଦେବ ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ଆସ ଆସ ହୋ ଅର୍ଜ୍ଜୁନ
ବ୍ରାହ୍ମଣର ପୁତ୍ରକୁ ମୁଁ ଦେବଇଁ ବହନ ।
ଶ୍ରୀକୃଷ୍ଣ ବାକ୍ୟେ ବିଷାଦ ଲଭି ଅରଜୁନ
ଶୁଣି ବୋଇଲେ କିପରି ଦେବୁ ଜନାର୍ଦ୍ଦନ ।
ତହୁଁ ପୁଷ୍ପକ ଆରୋହି ଦେବକୀର ସୁତ
ସହିତରେ ବିଜେ କଲେ ବୀରବର ପାର୍ଥ ।
ବଳଦେବଙ୍କୁ ବୋଇଲେ ଦେବ ଦେବ ହରି
ମୋ ଆସିବାଯାଏ ଥିବ ଦ୍ୱାର ରକ୍ଷାକରି ।
ଋଷିମାନେ ରକ୍ଷା କରିଥାନ୍ତୁ ମୋର ଯାଗ
ଅର୍ଜ୍ଜୁନ ପ୍ରତିଜ୍ଞା ରଖି ଆସଇ ନା ବେଗ ।
ରଥ ଚଢ଼ି ବିଜେ କଲେ ପାର୍ଥ ପୀତବାସ
ପାତାଳ ଭିତରେ ଯାଇ ହୋଇଲେ ପ୍ରବେଶ ।
ତେଣିକି ଯେ ଆଉ ରଥ ନ ପାରିଲା ଯାଇ
ତହିଁ ରଥ ରଖି ତହୁଁ ପଶିଲେ ସେ ଦୁଇ ।
ମହାଘୋର ଅନ୍ଧାର ଯେ ନ ଦିଶଇ ବାଟ
ବେନି ଜନେ ପଶିଲେ ସେ ଦୁଃସହ ସଙ୍କଟ ।
ଅର୍ଜ୍ଜୁନର ହସ୍ତ ଧରି କେତେଦୂର ଗଲେ
ଅନ୍ଧାର ତେଜି ସୁବର୍ଣ୍ଣ ପୁରେକ ଦେଖିଲେ ।
ଅର୍ଜ୍ଜୁନ ବୋଇଲେ ତହିଁ କୃଷ୍ଣ ମୁଖ ଚାହିଁ
ଅଦ୍ଭୁତ ଭୁବନେ ଦେବ ପଶିଲୁଁ କିପାଇଁ ।
ବୋଲନ୍ତି ମାଧବ ଆହେ ଅର୍ଜ୍ଜୁନ ତୁ ଶୁଣ
ଏ ପୁରକୁ ସରି ନୋହେ ବାରସ୍ୱତୀ ପୁଣ ।
ବହୁ ପୁଣ୍ୟ କଲେ ଏହି ପୁର ଦେଖିପାରି
ସାମାନ୍ୟ ଲୋକ ଏଥିକି ପଶି ଯେ ନ ପାରି ।
କୃଷ୍ଣ ବଚନେ ବୋଲନ୍ତି ବୀର ଧନଞ୍ଜୟ
ଆକାଶେ ବସନ୍ତି ସିନା ଦେବତା ନିଶ୍ଚୟ ।
ବୋଲନ୍ତି କେଶବ ଆହେ ଶୁଣ ଫାଲଗୁନି
ଦେବତାଙ୍କ ଯାନ ତିନି ଭୁବନରେ ପୁଣି ।
ଏହିରୂପେ ସଦାଶିବ ବସନ୍ତି ତ୍ରିପୁରେ
ସେ ବିଷ୍ଣୁ ଯେ ହର ନାହିଁ ସନ୍ଦେହ ଏଥିରେ ।
ଏହି ପାତାଳେ ହାଟକେଶ୍ୱର କଇଳାସ
ନିର୍ଝର କୈଳାସ ମଧ୍ୟେ ସ୍ୱର୍ଗେ ଯାର ବାସ ।
କନକ କୈଳାସ ନାମେ ଭୁବନ ଆକାଶେ
ତ୍ରିଅମ୍ବକନାଥ ତହିଁ ବସେ ଚତୁର୍ମାସେ ।
ବିଷ୍ଣୁନାଥଙ୍କର ଏହି ବଇକୁଣ୍ଠପୁର
ମର୍ତ୍ତ୍ୟପୁରେ ଦ୍ୱାରକାରେ ହୁନ୍ତି ଅବତାର ।
ସ୍ୱର୍ଗପୁର ବାରସ୍ୱତୀ ଭୁବନ ନିର୍ମାଣ
ଏ ବିଧି ତିନିଭୁବନ ଅଟଇ ପ୍ରମାଣ ।
ଚଉଦଲକ୍ଷ ଯେ ବିଷ୍ଣୁଗଣ ଥାନ୍ତି ଏଥେ
ବିଷ୍ଣୁନାଥଙ୍କୁ ଦର୍ଶନ କରୁଥାନ୍ତି ନିତ୍ୟେ ।
ବିଷ୍ଣୁକଳା ଲୋକଙ୍କର ଅଟେ ଏ ଆବାସ
ଆମ୍ଭଙ୍କୁ ଦେଖି କରି ସେ ହୋଇଲେ ଉଲ୍ଲାସ ।
ମହାପୁଣ୍ୟବନ୍ତ ତୁମ୍ଭେ ଅଟ ହେ ଅର୍ଜ୍ଜୁନ
ସେ ବିଷ୍ଣୁଙ୍କୁ ଆଜ ତୁମ୍ଭେ କରିବ ଦର୍ଶନ ।
•ଭୋ ରାଜନ ରତ୍ନପୁର ସେ ସ୍ୱର୍ଣ୍ଣ ନିର୍ମିତ
ହୀରା ନୀଳା ମଣି ମାଣିକ୍ୟରେ ଯେ ମଣ୍ଡିତ ।
ପ୍ରବାଳେ ବିଚିତ୍ର ରୂପ କମନୀୟ କାନ୍ତି
ସୁବର୍ଣ୍ଣ ଛାଉଣୀ ସେହି ସୁସଞ୍ଚ ଯେ ଅତି ।
ଦେଖି ତାହା ଅର୍ଜ୍ଜୁନର ଉଲସଇ ଗାତ୍ର
ବିଚିତ୍ର ଭୁବନ ମୋହି କରଇ ସେ ଚିତ୍ତ ।
କୃଷ୍ଣ ବୋଲନ୍ତି ଜଣାଅ ହେ ଜୟ ବିଜୟ
କହିବ ଆସିଅଛନ୍ତି କୃଷ୍ଣ ଧନଞ୍ଜୟ ।
ବିଜୟ ଯେ ଜଣାଇଲା ବିଷ୍ଣୁଙ୍କର ଆଗ
ଏହା ଶୁଣିଣ ସାନନ୍ଦ ହେଲେ ଶିରୀରଙ୍ଗ ।
ଆଜ୍ଞା ପାଇ ବେନି ଜଣେ ଭିତରେ ପଶିଲେ
ମନୋହର ରତ୍ନ ସିଂହାସନ ଯେ ଦେଖିଲେ ।
ସୁବର୍ଣ୍ଣର ପୁର ଅଷ୍ଟରତନ ଜଡ଼ିତ
ହୀରା ନୀଳା ମାଣିକ୍ୟ ଯେ ବୈଦୁର୍ଯ୍ୟ ଖଞ୍ଜିତ ।
ଯୋଗଧ୍ୟାନେ ବସିଛନ୍ତି ସେ ପୁରୁଷୋତ୍ତମ
ଦେଖି ତାଙ୍କୁ ହରଷିତ ହେଲେ ବେନି ଜନ ।
ଚତୁର୍ଭୁଜ ନୀଳୋତ୍ପଳ ବର୍ଣ୍ଣ ଭଗବାନ
ପୀତବର୍ଣ୍ଣଧାରୀ ପଦ୍ମ ପଲାଶ ଲୋଚନ ।

ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜେ ଶୋହେ
ସ୍ୱର୍ଣ୍ଣ ପଦ୍ମ ମାଳା ଲମ୍ବିଅଛି ଯେ ହୃଦୟେ ।
ଦେଖି ତାଙ୍କୁ ଭକ୍ତିଭରେ ପ୍ରଣମିଲେ ବେନି
ଉଠି ଉଭାହୋଇ ପୁଣି କରନ୍ତି ଦଇନୀ ।
ଯୋଗଧ୍ୟାନ ଭେଦୀ ତହୁଁ ଦେବ ନାରାୟଣ
ଦେଖି ଶ୍ରୀକୃଷ୍ଣଙ୍କୁ ଧୀରେ ବୋଲନ୍ତି ବଚନ ।
ହେ ପୁରୁଷୋତ୍ତମ ବଳରାମ ଅର୍ଜ୍ଜୁନକୁ
ଘେନି କିମ୍ପା ଆସୁନାହଁ ବୈକୁଣ୍ଠପୁରକୁ ।
ଏଠାବରୁ ଯାଇ ପାଶୋରିଲ ଏ ଭୁବନ
ଏତେବେଳଯାଏ ରହିଅଛ କି କାରଣ ।
ନର ନାରାୟଣ ମୂର୍ତ୍ତି ଅଟ ତୁମ୍ଭେ ବେନି
ଭାରା ନିବାରଣେ ଜାତ ହୋଇଲ ମେଦିନୀ ।
ମହୀ ଯହୁଁ ସହି ନ ପାରିଲା ମହାଭାର
ମୋ ପାଶକୁ ଅଇଲେ ଯେ ତ୍ରିଦଶ ଅସ୍ଥିର ।
କ୍ଷୀର ସମୁଦ୍ରରେ ରହୁଥିଲେ ଯୋଗଧ୍ୟାନେ
ସର୍ବେ ମିଳିଲେ ଯେ ଆସି ମୋର ସନ୍ନିଧାନେ ।
ବହୁତ ବିନୟ କରି କହିଲେ ଯେ ମୋତେ
ମହୀଭାରୁ ତାହା ତୋଳି ରଖିବା ନିମନ୍ତେ ।
ତହୁଁ ଆମ୍ଭେ ନିଜ ଦେହୁ ଧଳା କଳା ଲୋମ
ଦୁଇଗୋଟି ଦେଲୁ ତହିଁ ହୋଇ ପୂର୍ଣ୍ଣକାମ ।
ମଥୁରା ନଗରେ ଦେବକୀ ଯେ ବସୁଦେବ
ତାଙ୍କ ପୁତ୍ର ହୋଇ ତୁମ୍ଭେ ହୋଇଲ ଉଭବ ।
ସେ ଶୁକଳ ଲୋମ ଅଟଇ ଯେ ବଳରାମ
କଳାଲୋମୁଁ ଜନ୍ମିବାରୁ କୃଷ୍ଣ ତୋର ନାମ ।
ଯେ କାରଣେ ପଠାଇଲୁ ତା ସାଧନ କରି
ନିଶ୍ଚିନ୍ତେ କିମ୍ପାଇ ରହିଅଛ ମଧୁପୁରୀ ।
ମର୍ତ୍ତ୍ୟେ ସୁଖ ଭୋଗ ପାଇ ତାହା ପାଶୋରିଲ
ଏବେ ଯାଇଁ ବେଗେ ଆସ ନୋହି ତହିଁ ଭୋଳ ।
ମୁହିଁ ମହାବିଷ୍ଣୁ ଅଟେ ଶୁଣ ମୋର ଯୋଗ
ମର୍ତ୍ତ୍ୟେ ରହି କେତେ କରୁଥିବ ସୁଖ ଭୋଗ ।
ପୁଣି ଶ୍ରୀକୃଷ୍ଣ ବୋଲନ୍ତି କୃତାଞ୍ଜଳି ହୋଇ
ଭୋଳେ ସେ ସକଳ କଥା ଆମ୍ଭ ମନେ ନାହିଁ ।
ଏବେ ତୁମ୍ଭ ଆଜ୍ଞାରେ ଯେ ଆସିବୁ ସତ୍ୱର
ପୂର୍ବକଥା ସବୁ ମନେ ପଡୁଛି ଆମ୍ଭର ।
ମହାଭାର ଉଶ୍ୱାସ ଯେ ହେଲାଣି ମେଦିନୀ
ଶୀଘ୍ରେ ମୁଁ ଆସିବି ସଙ୍ଗେ ବଳରାମ ଘେନି ।
ଯାଦବେ ଯେତେ ଅଛନ୍ତି ମୋର ସାତବଂଶ
ଆସିବା ବେଳେ ତାହାଙ୍କୁ କରିବି ଯେ ନାଶ ।
ଯାଅ ବୋଲି ବିଷ୍ଣୁ ତହିଁ ତାଙ୍କୁ ଆଜ୍ଞା ଦେଲେ
ପ୍ରଣମି ମହାବିଷ୍ଣୁଙ୍କୁ ଶ୍ରୀକୃଷ୍ଣ ବୋଇଲେ ।
ଯେବଣ କାରଣେ ଆମ୍ଭେ ଅଇଲୁ ଗୋସାଇଁ
ସେ କାର୍ଯ୍ୟ ସାଧି ଆମ୍ଭଙ୍କୁ ବେଗେ କର ତ୍ରାହି ।
ମୋହର ନଗରେ ଦେବ ଏକ ଦ୍ୱିଜବର
ସପତପୁତ୍ର ଜନମ ହୋଇଲା ତାହାର ।
ଅନ୍ତୁଡ଼ିଶାଳେ ତାହାଙ୍କୁ ଶୁଆଇଦେଲେ ଯହୁଁ
ଶୂନ୍ୟେ ହରଣ କରିଣ ନେଇଗଲା କେହୁ ।
ଯାଗଶାଳ ଭିତରେ ଯେ ମୁହିଁଥିଲି ବସି
ଗୁହାରି କଲା ବ୍ରାହ୍ମଣ ଦ୍ୱାରଦେଶେ ଆସି ।
ପାର୍ଥକୁ ରଖାଇଥିଲି ଯାଗଶାଳଦ୍ୱାରେ
ସେ ଦ୍ୱିଜ ଗୁହାରି କଲେ ଅତ୍ୟନ୍ତ କାତରେ ।
ଯାଗ ସମୟରେ ମୋତେ ଯେ ମାଗିବ ଯାହା
ପ୍ରତିଜ୍ଞା ମୁଁ କରିଥିଲି ଦେବି ତାକୁ ତାହା ।
ସେ ବ୍ରାହ୍ମଣ ପାର୍ଥେ ମାଗି ସତ୍ୟ କରାଇଲେ
ଦେବାକୁ ଏ କହି ବହୁ ପ୍ରତିଜ୍ଞା ସେ କଲେ ।
ପୁଣି ବୋଇଲେ ଯେବେ ମୁଁ ରଖି ନ ପାରିବି
ତୁମ୍ଭ ଆଗେ ଅଗ୍ନି ଜାଳି ନିଶ୍ଚୟ ମରିବି ।
ଅନ୍ତୁଡ଼ିଶାଳୁ ତା ପୁତ୍ରକୁ କେ ଘେନିଗଲା
ତେଣୁ ଅର୍ଜ୍ଜୁନ ଅଗ୍ନିରେ ମରିବ ବୋଇଲା ।
ନ ଦେଖି ପୁତ୍ରକୁ ଦ୍ୱିଜ ବହୁ ଶୋକ କଲା
ତେଣୁ ତାର ଆଗେ ପାର୍ଥ ଅଗ୍ନି ଲଗାଇଲା ।
ଦ୍ୱାରପାଳ ଏହିକଥା କହିଲେକ ଯାଇ
ଅଗ୍ନିରେ ଅର୍ଜ୍ଜୁନ ପଶୁଅଛି ହେ ଗୋସାଇଁ ।
ତାହା ଶୁଣି ମୁହିଁ ବଡ଼ ସନ୍ତାପିତ ହେଲି
ବ୍ରାହ୍ମଣ ପୁରକୁ ଆସି କାରଣ ପୁଛିଲି ।
ସକଳ ବୃତ୍ତାନ୍ତ କହିଲେ ସେ ଦ୍ୱିଜବର
ରଥ ଆରୋହି ଅଇଲି ତହୁଁ ଏହି ପୁର ।
ଆସୁ ଆସୁ ଦେବ ତବ ଏ ପୁରେ ପାଇଲି
ତୁମ୍ଭଙ୍କୁ ଦର୍ଶନ କରି ଆନନ୍ଦିତ ହେଲି ।
ଏଥିର ବୃତ୍ତାନ୍ତ ମୋତେ କହନ୍ତୁ ବହନ
ଯେଉଁପରି ହୁତାଶନେ ନ ପଶେ ଅର୍ଜ୍ଜୁନ ।
ହସିଣ ପରମ ବିଷ୍ଣୁ କହିଲେ କୃଷ୍ଣଙ୍କୁ
ମୁହିଁ ଆଣିଅଛି ସେହି ବ୍ରାହ୍ମଣ ପୁତ୍ରଙ୍କୁ ।
ତୁମ୍ଭେ ଆସିଲେ ସାକ୍ଷାତ ହେବ ବୋଲି କରି
ଦ୍ୱିଜସୁତକୁ ଆଣିଲି ମୁଁ ଉପାୟ କରି ।
ଦେଇ ତାଙ୍କୁ ଶ୍ରୀକୃଷ୍ଣଙ୍କୁ ପ୍ରକାଶିଲେ ଭାଷ
ଦ୍ୱାପର ସରିଲା କଳି ହୋଇବ ପ୍ରବେଶ ।
ମର୍ତ୍ତ୍ୟରେ ନ ରହ ଭୋଗେ କରି ଅଭିଳାଷ
ଭୀମଙ୍କୁ ଘେନି ବହନ ତୁମ୍ଭେ ସ୍ୱର୍ଗେ ଆସ ।
ତୋର ବଂଶ ପୃଥିବୀକୁ ହୋଇଅଛି ଭାରା
ସେମାନେ ଥିଲେ ଉଶ୍ୱାସ ନୁହେଁ ବସୁନ୍ଧରା ।

ତାହାଙ୍କୁ ବିନାଶି ଶୀଘ୍ର ଆସ ବୈକୁଣ୍ଠକୁ
ବାଟ ଚାହିଁ ବସିଛନ୍ତି ତ୍ରିଦଶ ତୁମ୍ଭଙ୍କୁ ।
ସେହି ବ୍ରାହ୍ମଣର ସପ୍ତପୁତ୍ରକୁ ହେ ନିଅ
ସୁଖୀ ହେବ ସେ ବ୍ରାହ୍ମଣ ଶୀଘ୍ର ହୋଇ ଯାଅ ।
ମହୀରେ ଯେତେକ ଭାରା ଆଉ ଅଛି ରହି
ସକଳ ବିନାଶି ତୁମ୍ଭେ ଆସ ବେଗ ହୋଇ ।
ସୁଖ ଭୋଗ ପାଇ ପୁଣି ଆଉ ନ ରହିବ
ଯାଅ ଶୀଘ୍ର ହୋଇ ସ୍ୱର୍ଗେ ଆସ ବାସୁଦେବ ।
ସାତ କୁମରକୁ ମହାବିଷ୍ଣୁ ଦେଲେ ଆଣି
ପୁଣି ବିଷ୍ଣୁଙ୍କୁ ନମିଲେ କୃଷ୍ଣ ଫାଲଗୁନି ।
ଜୟ ଜୟ ନୀଳଗିରିବାସୀ ପୀତବାସ
ଜନ୍ମେ ଜନ୍ମେ ମୁହିଁ ତୋର ଦାସର ଯେ ଦାସ ।
ଅମୃତ ଭାଷା ଏହି ଯେ ଶ୍ରୀବିଷ୍ଣୁର ଲୀଳା
ଯାଦବଚନ୍ଦ୍ରାଙ୍କେ ସମ୍ଭୁତ ହୁଏ ତୋର କଳା ।
କଳିକାଳ ଜନଙ୍କର ଅଟେ ଅଳ୍ପ ବୁଦ୍ଧି
କେହୁ ଅନ୍ତ ପାଇବ ଏ ଅଗାଧ ଜଳଧି ।
ଅଗାଧ ସାଗର ମହାଭାରତର କଥା
ବୋଲନ୍ତି ଭାବି ଭାବି ନ ସରେ ଯେଉଁ ଗାଥା ।
କୃପାଜଳମୟୀ ଯାହା ନାମ ଭଦ୍ରାକାଳୀ
ସେ ମୋହର ବକ୍ଷସ୍ଥଳେ ନୀଳୋତ୍ପଳ ମାଳି ।
ତାର ପ୍ରସାଦେ କରିବି ହରିର ଯେ ରୀତି
ପଢ଼ନ୍ତେ ଶୁଣନ୍ତେ ଯାହା ଲଭନ୍ତି ସଦ୍‌ଗତି ।
ଝଙ୍କଡ଼ପୁର ବାସିନୀ ଶାରଳାଙ୍କୁ ଚିନ୍ତେ
ଶ୍ରୀ ଶୂଦ୍ରମୁନି ଶାରଳା ଦାସ ଭାବେ ନିତ୍ୟେ ।

—୦—

## କଦମ୍ବାସୁରର ଯୁଦ୍ଧ ଯାତ୍ରା

ଜୟ ଜୟ ପରାଶର ସୁତ ମୁନି ବ୍ୟାସ
ଯାହାର ଯୋଗୁଁ ଶ୍ରୀମହାଭାରତ ପ୍ରକାଶ ।
ବିଷ୍ଣୁରୂପେ ଆମ୍ଭ ତୁମ୍ଭେ ଅଟ ମୁନିବର
କୋଟି କୋଟି କଳ୍ପେ ତୁମ୍ଭେ ଅଟ ଯେ ଅମର ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ସଞ୍ଚି ପଞ୍ଚଭୂତ କରି ଲୟେ ଏକବାସ ।
ନରକୁ ଉଦ୍ଧାର କରେ ତୁମ୍ଭର ଭାରତୀ
ମହାବ୍ରହ୍ମ ଭେଦି ଦୁହି ହୋଇବୁ ଉତ୍ପତ୍ତି ।
ସେ ମୁନିର ପ୍ରସାଦେ ମୁଁ କହିବି ଭାରତ
ଅଶ୍ୱମେଧ ଯାଗ ଏ ଯେ କୃଷ୍ଣର ଚରିତ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ଗଲେ ପାତାଳପୁରକୁ
ବ୍ରାହ୍ମଣର ସାତପୁତ୍ର ଘେନି ଆସିବାକୁ ।
ଅଶ୍ୱମେଧ ଯାଗଦ୍ୱାରେ ରକ୍ଷାକାରୀ କାହିଁ
ବଳଦେବ ଶକ୍ରାଜିତ ଉଦ୍ଧବକୁ ରାଇ ।
ବୋଇଲେ ପାତାଳେ ଗଲେ ଶ୍ରୀକୃଷ୍ଣ ଅର୍ଜ୍ଜୁନ
ଯାଗଶାଳ ଦ୍ୱାର ବାବୁ ହୋଇଲାକ ଶୂନ୍ୟ ।
ତୁମ୍ଭେ ଦୁହେଁ ଯାଇ ବାବୁ ଦ୍ୱାର ରକ୍ଷା କର
କେହି ନ ପଶିବେ ଯାଗଶାଳାର ଭିତର ।
ଆଜ୍ଞା ଦେଇ ଯହୁଁ ଶକ୍ରାଜିତ ଉଦ୍ଧବଙ୍କୁ
ଦ୍ୱାର ରକ୍ଷାକାରୀ ନିରୋଧିଲେ ସେ ସବୁଙ୍କୁ ।
ମାରକଣ୍ଡ ବଶିଷ୍ଠ ସେ ଦିଅନ୍ତି ଆହୂତି
ବେଦଧ୍ୱନି ଶବଦରେ କମ୍ପେ ବସୁମତୀ ।
ନାରଦ ଭାବନ୍ତି ଏ କି ହରିର ଚରିତ
ଅଶ୍ୱମେଧ କଲେ ଘେନି ଋଷିଙ୍କି ସମସ୍ତ ।
କେବଣ କାରଣେ ହରି ନ ବରିଲେ ମୋତେ
ଜାଣିବା ଯାଗ ସମାପ୍ତ କରିବେ କେମନ୍ତେ ।
ଏତେକ ବିଚାରି ପିତାମହଙ୍କର ସୁତ
ଶ୍ରୋଣିତ ନଗ୍ରରେ ଯାଇ ମିଳିଲେ ତ୍ୱରିତ ।
ମୁନିଙ୍କି ଦେଖି କଦମ୍ବାସୁର କଲା ପୂଜା
ଶତେ ଦଣ୍ଡବତ ହୋଇ ଶୁତିଲାକ ରାଜା ।
ବସନ କୁଣ୍ଡଳ ରତ୍ନମାଳା ଗଳେ ଦେଇ
ପୁଛଇ କେବଣ ପୁରୁ ଅଇଲ ଗୋସାଇଁ ।
ନାରଦ ବୋଇଲେ ଶୁଣ ଆହେ ସୁରେଶ୍ୱର
ଅଶ୍ୱମେଧ କରନ୍ତି ଯେ ଦେବ ଦାମୋଦର ।
ଯୁକତେ ନାରାୟଣ ତୋ ବଂଶର ବଇରି
ପିତାଙ୍କୁ ତୋହର ବଧ କଲେ ଦେବହରି ।
ମୀନରୂପ ଧରି ଶଙ୍ଖାସୁର ବଧ କଲେ
କୂର୍ମରୂପେ ଶଙ୍ଖାସୁର ପୁତ୍ରକୁ ମାଇଲେ ।
ତାହାର ପୁତ୍ର ହୋଇଲା ଦୈତ୍ୟ ହିରଣାକ୍ଷ
ବରାହ ରୂପେ ତାହାକୁ ମାଇଲେ ପଦ୍ମାକ୍ଷ ।
ତାହାର ଭାଇ ଅଟଇ ହିରଣ୍ୟକଶିପୁ
ନରସିଂହ ରୂପେ ତାର ବିଦାରିଲେ ବପୁ ।
ହିରଣ୍ୟକଶିପୁ ପୁତ୍ର ନାମ ପ୍ରହଲ୍ଲାଦ
କୃଷ୍ଣ ଭକତ ହୋଇ ସେ ରଖିଲା ସମ୍ପଦ ।
ସେ ପ୍ରହଲ୍ଲାଦର ପୁତ୍ର ବୈଲୋଚନ ବୀର
ସ୍ତିରୀ ରୂପରେ ମାଇଲେ ତାକୁ ଦାମୋଦର ।
ବଇଲୋଚନର ପୁତ୍ର ହୋଇଲାକ ବଳି
ବାମନରୂପେ ପାତାଳେ ଦେଲେ ପାଦେ ଚାଳି ।
ବଳିର ନନ୍ଦନ ନାମ ଅଟେ ବାଣାସୁର
ନବଶତ ଅଠାନବେ ଭୁଜ ଛେଦି ତାର ।
ପୁନରପି ବାଣାସୁର ପୁତ୍ର ମୃଢ଼ାସୁର
ମରାଇଲେ ଅର୍ଜ୍ଜୁନର ହସ୍ତେ ଚକ୍ରଧର ।
ତୁ ମହାରାଜା ଧାର୍ମିକ ଅଟୁ ମହାଯୋଦ୍ଧା
ବଳବୀର୍ଯ୍ୟ ଥିଲେ ପିତା ଶତ୍ରୁକୁ ନିରୋଧା ।

ସୁପୁତ୍ର ଯେବେ ପିତାକୁ ତାରଣ କରନ୍ତି
ଏକାବନ ପୁରୁଷ ତାର ସ୍ୱର୍ଗକୁ ଗମନ୍ତି ।
ଯେବଣ ପୁତ୍ର ନ କରେ ପିତାକୁ ତାରଣ
କାଳେ ହୁଅଇ ପତନ ଆପଣାର ପ୍ରାଣ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ଯାଇ ଅଛନ୍ତି ପାତାଳେ
ଋଷିମାନେ ଅଛନ୍ତି ସେ ମହା ଯାଗଶାଳେ ।
ବ୍ରହ୍ମାଙ୍କର ବରେ ତୁହି ମହାବଳବନ୍ତା
ପାରୁ ଯେବେ ସୈନ୍ୟ ଘେନି ଯାଅ ମହାରଥା ।
ନାରଦଙ୍କ ବାକ୍ୟେ ଦୈତ୍ୟ କରେ ବଡ଼ ତାପ
ଯଷ୍ଟି ପ୍ରହାରେ ଯେସନେ ଗର୍ଜ୍ଜେ କାଳସର୍ପ ।
ଶସ୍ତ୍ର ଧରିଣ ଅସୁରେଶ୍ୱର ଉଠେ ଗର୍ଜି
ପ୍ରତିଜ୍ଞା କରି ଉଠିଲା ସମଦଣ୍ଡ ସାଜି ।
ଏକ ପଦ୍ମ ଯୋଦ୍ଧା ସଙ୍ଗେ ଘେନି ଦଣ୍ଡଧାରୀ
କମ୍ପାଇ ଦୁନ୍ଦୁଭି ବାଦ୍ୟନାଦ ଦିଗଚାରି ।
ଗଦା ମୁଦ୍ଗର କୁନ୍ତ ଅସିପତ୍ର ଆଣି
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଦୈତ୍ୟ ସିନ୍ଧୁ ଘୋଷ ଜିଣି ।
ଧାମନ୍ତି ସେ କରେ ଶାଳ ଶିଳ ଶୂଳ ଘେନି
ତାହାଙ୍କର ପାଦଭରେ କମ୍ପଇ ମେଦିନୀ ।
ଯେସନେ ସିନ୍ଧୁ ଉଛୁଳେ ଚନ୍ଦ୍ର ଦରଶନେ
ତଥା ଘୋଟିଆସନ୍ତି ଯେ ଦୈତ୍ୟବଳମାନେ ।
କହିଣ ନାରଦ ତହୁଁ ଗଲେ ଅନ୍ତର୍ଦ୍ଧାନେ
ଦ୍ୱାରକା ସନ୍ନିଧେ ଶୂନ୍ୟେ ରହିଲେ ଗୋପନେ ।
ଏହା ଶୁଣି ବୋଇଲେକ ମନୁ ଦଣ୍ଡଧର
ସଂଶୟ ଉପୁଜିଲା ମୋ ମନେ ମୁନିବର ।
ସକଳ ଋଷି ମୁନିଙ୍କି ଯାଗଶାଳେ ବରି
ନାରଦଙ୍କୁ ନ ବରିଲେ କିମ୍ପାଇ ଶ୍ରୀହରି ।
ଦେବଋଷି ନାରଦ ଯେ ବ୍ରହ୍ମାଙ୍କର ସୁତ
ଯାଗ ବିନାଶେ ବଳିଲା କିମ୍ପା ତାଙ୍କ ଚିତ୍ତ ।
ପୃଥିବୀରେ ଯେତେ ଦୁଷ୍ଟ ନାଶିଲେ ଶ୍ରୀହରି
ଏ ଦୁଷ୍ଟ ଅସୁର କିମ୍ପା ଥିଲା ଦେହ ଧରି ।
ତାହାଙ୍କର ନାମ ଅଟେ ପତିତପାବନ
ସେ କିମ୍ପାଇ ଯାଗକଲେ ଆହେ ତପୋଧନ ।
ଅଗସ୍ତି ବୋଇଲେ ଶୁଣ ମନୁ ନରପତି
ଅନ୍ତର୍ଯ୍ୟାମୀ ନାଥ କୃଷ୍ଣ ଜଗତର ପତି ।
ମନେ ବିଚାରିଲେ ପୃଥ୍ୱୀଭାରା ହେଲା କ୍ଷୟ
ଆମ୍ଭେ ଏଥର ଛାଡ଼ିଣ ଯିବା ନରକାୟ ।
ଏକମାତ୍ର ଅଛଇ ଯେ କଦମ୍ବା ଅସୁର
ଏହାର ଥିଲେ ଜଗତ କରିବ ସଂହାର ।
ମନ ମଧ୍ୟେ ମାୟାଧର ଏମନ୍ତ ବିଚାରି
ଯଜ୍ଞ ଆରମ୍ଭିଲେ ମୁନିମାନଙ୍କୁ ହେ ବରି ।
ନାରଦ ମୁନିଙ୍କି ସେହି ନ ଦେଲେ ବରଣ
ନାରଦ ଯୋଗୁଁ ଅସୁର ହୋଇବ ନିଧନ ।
କଳହପ୍ରିୟ ସେ ମୁନି ଲଗାଇଲେ କଳି
ଏଣୁ ତାଙ୍କୁ ନ କହିଲେ ପ୍ରଭୁ ବନମାଳୀ ।
ପରମ ବୈଷ୍ଣବ ସେହି ବ୍ରହ୍ମାଙ୍କର ସୁତ
ତାହାଙ୍କୁ ଅଜଣା ନାହିଁ କୃଷ୍ଣଙ୍କର ଚିତ୍ତ ।
ଲୋକଙ୍କର ହିତେ ସଦା ଥାନ୍ତି ସେହୁ ମୁନି
ସେ କି ଯାଇ ଭଙ୍ଗାଇବେ ଅଟନ୍ତି ଅଜ୍ଞାନୀ ।
ତୋ ମନୁ ଏବେ ସଂଶୟ ହୋଇଲା ତ ଦୂର
ସନ୍ତୋଷ ହୋଇଲା ଶୁଣି ମନୁ ନୃପବର ।

—o—

## ଯାଗଭଗ୍ନ

ଏଥୁଅନନ୍ତରେ କଥା ଶୁଣ ଦଣ୍ଡଧାରୀ
ଦ୍ୱାରକା ସିନ୍ଧୁର ତଟେ ଅସୁର ଆବୋରି ।
ଯାନ ବାହନ ତେଜିଣ ହେଲେ କାମରୂପୀ
ଦିଶିଲେ ପ୍ରଳୟ ଘନ ସମ ଶୂନ୍ୟବ୍ୟାପୀ ।
ଆକାଶେ ଲାଗଇ ସବୁ ଦୈତ୍ୟଙ୍କର ଶିର
ଅସୁରଙ୍କ ଦର୍ପେ ଘୁଞ୍ଚିଗଲା ସିନ୍ଧୁ ନୀର ।
ଦ୍ୱାରକା ଭୁବନେ ଯାଇ ହୋଇଲେ ପ୍ରବେଶ
ଉଦୟଗିରିକି ଜିଣି ଦିଶନ୍ତି ରାକ୍ଷସ ।
ଦେଖିଲେ ଆସି ଉଦ୍ଧବ ସତ୍ୟକି ଏ ବେନି
ବାହାର ହୋଇଲେ ଦୁହେଁ କରେ ଶସ୍ତ୍ର ଘେନି ।
ଦିଶନ୍ତି କୃଷ୍ଣ ସଦୃଶ୍ୟ ସେହି ବେନି ବୀର
ବୃକ ମୁଦ୍‌ଗର ଆଣି କଲେକ ପ୍ରହାର ।
ଦେଖିଣ ଦୈତ୍ୟ ପାତିଲେ ନେଇ ବାମଅଙ୍ଗ
ଭାଙ୍ଗି ମସିଗୁଣ୍ଡା ହେଲା ପାଇ ଅଙ୍ଗ ସଙ୍ଗ ।
ପ୍ରହାର କରନ୍ତେ ଶସ୍ତ୍ର ଗଲେ ଯହୁଁ ଭାଜି
ଦ୍ୱାରିକାଭୁବନେ ଦୈତ୍ୟ ପଶିଲେ ଗରଜି ।
ଲୌହଦଣ୍ଡ କାଳଦଣ୍ଡ ବେନି ସେନାପତି
ଲୁହାର ଶର ଧନୁରେ ପୂରାଇ ବିନ୍ଧନ୍ତି ।
ଦୁଃସହ ପ୍ରତିଜ୍ଞା କରି କୋପେ ଲୌହଦଣ୍ଡ
ଉଦ୍ଧବ ଉପରେ ଗଦା ପିଟିଲା ପ୍ରଚଣ୍ଡ ।
ଉଦ୍ଧବ ପଡ଼ିଲା ଗଦାଘାତେ ମହୀଲୋଟି
ଅସିପତ୍ର ଘେନି ତାର କାଟିଲାକ ତୋଟି ।
ଉଦ୍ଧବ ନିଧନ ଦେଖି ବୀର ଶକ୍ରାଜିତ
ବଜ୍ରାବଳୀ ଗଦା ଘେନି ଧାମନ୍ତି ତ୍ୱରିତ ।
ଶସ୍ତ୍ର ବୁଲାନ୍ତେ ପଡ଼ିଲେ ସୈନ୍ୟର ଆପଦ
ଦେଖି କୋପେ ଲୋହାସୁର ପ୍ରହାରିଲା ପାଦ ।
ଅସୁରର ପାଦଘାତେ ସେ ଉତ୍ତାନଶାୟୀ
କରଘାତେ ବିଦାରଣ କଲା ତାର ଦେହୀ ।

ଉଦ୍ଧବ ଶକ୍ରାଜିତ ଏ ଦୁହେଁ ଗଲେ ନାଶ
ଦ୍ୱାରକାର ଭିତରକୁ ପଶିଲେ ରାକ୍ଷସ ।
ପ୍ରତାପୀ ଦଇତେ ନାହିଁ କାହାକୁ ଯେ ଭୟ
ଉଦୟଗିରି ପରାୟେ ଦିଶେ ତାଙ୍କ କାୟ ।
ଏ ସମୟେ ଦ୍ୱାରକାରେ ପ୍ରବେଶ ନାରଦ
ବଳଦେବଙ୍କୁ ବୋଇଲେ କାହିଁ ତ ଗୋବିନ୍ଦ ।
କଦମ୍ବାସୁର ବାହିଲା ତୋହର ପୁରକୁ
ପ୍ରଥମେ ବଧିଲା ଶକ୍ରାଜିତ ଉଦ୍ଧବକୁ ।
ଶୁଣିଣ ଅତି ଆଶ୍ଚର୍ଯ୍ୟ ହେଲେ ବାସୁଦେବ
କଦମ୍ବାସୁର ବୋଲିଣ କେବଣ ଦାନବ ।
ବୋଲନ୍ତି ଯାଦବ ଶୁଣ ଆହେ ଯଦୁବଂଶୀ
ବ୍ରହ୍ମାର ଅଂଶରେ ପୂର୍ବେ ଜାତ ପାଠ ଋଷି ।
ସେ ପାଠଋଷିର ଅଂଶେ ସିଂହିକାର ସୁତ
ତହୁଁ ଉତପତ୍ତି ହେଲେ ଅସୁରଙ୍କ ଗୋତ୍ର ।
ବାଣାସୁର ସେ ବଂଶରେ ହୋଇଲେକ ଜାତ
କଦମ୍ବାସୁର ଅଟଇ ତାର ନିଜ ପୁତ୍ର ।
ସେହି ତୋହର ପୁରକୁ ବାହିଲା କୋପେଣ
ଏହିକ୍ଷଣି ହରିବ ଏ ପୁର ଦର୍ପ ଜାଣ ।
ଶୁଣି ବିସ୍ମୟ ହୋଇଲେ ଦେବ କାମପାଳ
ଧର୍ମବଳେ ଦୁଷ୍ଟେ ଆସି କଲେ ମହାଗୋଳ ।
କରେଣ ଶସ୍ତ୍ର ଯେ ନାହିଁ ତପୋଧନ ବେଶ
ଧର୍ମ ସମୟରେ ଦୁଷ୍ଟ ହେଉଛି ଝିଙ୍ଗାସ ।
ନାରଦ ବୋଇଲେ ଏହା ଛାଡ଼ ବଳରାମ
ଶତ୍ରୁ ଉପଦ୍ରବ ହେଲା ଆଚର କି ଧର୍ମ ।
ନାରଦଙ୍କର ବଚନ କାମପାଳ ଶୁଣି
ରାଗେଣ ଟେକିଲେ ଶିର ନେଇ ସପ୍ତଫଣୀ ।
ସିଂହନାଦ କରି ଭୁଜେ ଧରିଲେ ଲଙ୍ଗଳ
ଦକ୍ଷିଣ ହସ୍ତରେ ଶୋହେ ସୌନନ୍ଦ ମୂଷଳ ।
ଯାଗ ତ୍ୟାଗ କରି ବେଗେ ଉଠି ନୀଳାମ୍ବର
ଦେଖିଲେ ଦ୍ୱାରେ ଆବୋରି ଅଛନ୍ତି ଅସୁର ।
ଗିରିବର ସମ ଦୈତ୍ୟ ଉଭା ହୋଇଛନ୍ତି
ମହା ଗର୍ଜ୍ଜନ ତର୍ଜ୍ଜନ ଅସୁରେ କରନ୍ତି ।
ହସ୍ତେ ଅସ୍ତ୍ର ଶସ୍ତ୍ର ଧରି କୃଷ୍ଣ ପୁତ୍ରମାନେ
ଅସୁରଙ୍କ ଉପରକୁ ପ୍ରହାରନ୍ତି ଟାଣେ ।
ଯାଦବେ ଦାନବେ ହେଲେ ଏକସ୍ଥାନେ ଭେଟ
ଦେଖି ବଳରାମ ଗଲେ ଦେଇଣ କୁହାଟ ।
କୋପେ ଦୁରାନ୍ତକ ବଳେ ଧଇଲେ ଆୟୁଧ
ଯାଦବେ ଦାନବେ ତହିଁ କଲେ ମହାଯୁଦ୍ଧ ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ ହେଲେ ଏକ ଯୋଗ
ବନ ଭାଙ୍ଗିବାକୁ ଯେହ୍ନେ ଧାଏଁ ମତ୍ତନାଗ ।

ଲୌହଦଣ୍ଡ କାଳଦଣ୍ଡ ବେନି ସେନାପତି
ଶାମ୍ବ ପ୍ରଦ୍ୟୁମ୍ନଙ୍କ ତୁଲେ ହୋଇ ଏକ ମୂର୍ତ୍ତି ।
ଲୌହସାର ଧନୁ କରେ ଧରି ଲୌହଦଣ୍ଡ
ପ୍ରଦ୍ୟୁମ୍ନ ଉପରେ ବାଣ ବିନ୍ଧଇ ପ୍ରଚଣ୍ଡ ।
ଅସୁର ନିଷ୍ଠୁର ରଣ ଦେଖିଣ ଅନଙ୍ଗ
ତୀକ୍ଷଣ ନାରାଚ ବିନ୍ଧିଲାକ ଅତି ବେଗ ।
ଦେଖନ୍ତି ଅସୁର ସେହି ରତ୍ନମୟ ପୁରୀ
ଲୋଭେଣ ଶୂନ୍ୟେ କ୍ଷେପନ୍ତି ମହାତେଜ କରି ।
ବିଚାରନ୍ତି ଯାଦବଙ୍କୁ ମାରିବା ସମରେ
ବଳେ ମାଡ଼ି ବସିବା ଏ ରତ୍ନମୟ ପୁରେ ।
ଏତେକ ବିଚାରି ଦୈତ୍ୟ ମହା ପରାକ୍ରମ
ଏକମୁଖ ହୋଇଲେ ସେ ପଶିଲେ ସଂଗ୍ରାମ ।
ବିନ୍ଧନ୍ତି ଅସ୍ତ୍ର ଶସ୍ତ୍ର ସେ ଯେଝା ବଳ ଜାଣି
କକଡ଼ା ମାସରେ ଯେହ୍ନେ ବରଷଇ ପାଣି ।
କୋପେ ଲୌହଦଣ୍ଡ ବଜ୍ର ଘେନିଣ ବୁଲାଇ
ପ୍ରଦ୍ୟୁମ୍ନ ଉପରେ ବେଗେ ପ୍ରହାରନ୍ତେ ନେଇ ।
ଶସ୍ତ୍ର ବିଘାତେ ଦେଖିଣ କୋପଇ ଅନଙ୍ଗ
କାମ୍ୟକଶର ପେଷିଲା ହୋଇ ଅତି ବେଗ ।
ଯେସନେକ ଆକାଶରୁ ପଡ଼େ ବଜ୍ର ସୂଚୀ
ଅସୁରକୁ ଅନ୍ଧକାରେ ନ ଦିଶଇ କିଛି ।
ପଡ଼ଇ ନାରାଚ ଏଣେ ଅତି ତୀକ୍ଷଣ ମୁନା
ଧାତିକାରେ ଭେଦିଲାକ ଦୈତ୍ୟ ବଜ୍ରସ୍ନେହା ।
ଶସ୍ତ୍ର ବିଘାତେ ଦଇତ୍ୟ ଦେହେ ହେଲା ଘାରି
ବହଇ ଶୋଣିତ ତାର ରୋମେ ରୋମେ ଝରି ।
ପଡ଼ିଲା ପ୍ରଦ୍ୟୁମ୍ନ ବାଣାଘାତେ ଲୌହଦଣ୍ଡ
ଯାଇଣ ମୀନକେତନ ଛେଦିଲାକ ମୁଣ୍ଡ ।
କାଳଦଣ୍ଡ ନାମେ ଯେଉଁ ଦୈତ୍ୟ ସେନାପତି
ଶାମ୍ବକୁମାର ସଙ୍ଗରେ ରଣରଙ୍ଗେ ମାତି ।
ନବ ନିଶିତ କୁନ୍ତ ଯେ ମାଇଲା ଦର୍ପିଷ୍ଟ
ଆଘାତେ ଶାମ୍ବକୁମର ହୋଇଲା ଅଚେଷ୍ଟ ।
ସୋଦର ଅଚେଷ୍ଟ ଦେଖି ଶାମ୍ବର ଅଇରି
କାଳଦଣ୍ଡ ସଙ୍ଗତରେ ସଂଗ୍ରାମ ଆଚରି ।
ଅନୁକ୍ଷଣେ ବାଣମାନ ବିନ୍ଧେ ମନସିଜ
ସହସ୍ରଯୁଣ କରିଣ ବେଢ଼ିଲେ ଦନୁଜ ।
ସହସ୍ର ଅୟୁତ କୋଟି କୋଟି ବାଣ ବିନ୍ଧି
ବାଣର ଜାଳେ ପବନ ନ ପାରଇ ଭେଦି ।
ଲକ୍ଷେ ଷାଠିଏ ସହସ୍ରେ ଅଶୀଏ କୁମର
ଏକମୁଖେ ହୋଇ ସର୍ବେ ବିନ୍ଧିଲେକ ଶର ।
ଆକାଶେ ଅଦୃଶ୍ୟ ହେଲା ଦିନକର ଜ୍ୟୋତି
କାଳାନଳ ଜିଣି ଦିଶେ ଅସୁରଙ୍କ କାନ୍ତି ।

ବିକଟ ଦନ୍ତ ଖାଙ୍କର କେଶ ଊର୍ଦ୍ଧ୍ୱବାହୁ
ଚନ୍ଦ୍ରଅର୍କ ଦେଖି ଯେହ୍ନେ ଘୋଟିଆସେ ରାହୁ ।
ପ୍ରଦ୍ୟୁମ୍ନ କାଳଦଣ୍ଡର ଯୁଦ୍ଧ ଅତି ଘୋର
ଲୌହସାର ଗଦା ଏକ ପିଟିଲା ଅସୁର ।
ଫୁଟିଲା ସ୍ନେହା ତାହାର ଗଲା କାମ ବଞ୍ଚି
ପରଶୁ ମୁଦ୍‌ଗର କରେ ଘେନିଣ ଆମଞ୍ଚି ।
ପ୍ରଦ୍ୟୁମ୍ନର ଶରଘାୟେ ପତିତ କାଳଦଣ୍ଡ
ପୁନରପି ମୋହ ତେଜି ଉଠିଲା ପ୍ରଚଣ୍ଡ ।
କଙ୍କପକ୍ଷ ନାରାଚ ଯେ ଅତି ତୀକ୍ଷଣମୁନା
ସହସ୍ରଶରେ ପ୍ରଦ୍ୟୁମ୍ନ ଛେଦିଲା ତା ସ୍ନେହା ।
ପୁଣି ମୋହଶର ପେଶେ ଶମ୍ବର ଅଇରି
କାଳଦଣ୍ଡ ପଡ଼ିଲାକ ଘାଏ ପ୍ରାଣହାରି ।
କରେ ଘେନିଣ ପ୍ରଦ୍ୟୁମ୍ନ ଅମୋଘ ଶକତି
ମାରନ୍ତେ ଅସୁର ହୃଦେ ଭେଦିଲା ତଡ଼ତି ।
ଶମ୍ବରାସୁର ଦହିଲା ଯେହ୍ନୁ ବାଳକାଳେ
ସାତ ଅକ୍ଷୌହିଣୀବଳ ଛେଦି କୁତୂହଳେ ।
ଛାମୁରେ ଥିଲେ ତାହାର ଯେତେକ ଦନୁଜ
ଏକ ପ୍ରହାରେ ଛେଦିଲା ସବୁ ମନସିଜ ।
ପଡ଼ନ୍ତେ ଦୂରନ୍ତେ ଦୈତ୍ୟ କଦମ୍ବା ଦେଖଇ
ବଜ୍ରସେହ୍ନା ଆଭରଣ କରିଣ.ଧାମଇଁ ।
କୁନ୍ତେକ ଘେନି ଅସୁରେ ସମର ପ୍ରହାରି
କୁନ୍ତଘାତେ ଅସାଷ୍ଟମ ଶମ୍ବର ଅଇରି ।
ମନସିଜ ସାରଥି ଯେ ଲେଉଟାଇ ରଥ
ନିଜ ଭୁବନରେ ନେଇ କଲାକ ଗୁପତ ।
ଧାମଇଁ କଦମ୍ବାସୁର ବହି ମହାରୋଷ
ପଦ୍ମେକ ଯୋଦ୍ଧା ଗୋଡ଼ାଇଛନ୍ତି ତାର ପାର୍ଶ୍ୱ ।
ପ୍ରଦ୍ୟୁମ୍ନ ମୋହେ ପଡ଼ନ୍ତେ ଭାଜିଲେ ଯାଦବେ
ଭୁବନ ମଧ୍ୟରେ ଯାଇ ପଶିଲେକ ସର୍ବେ ।
ପ୍ରଳୟ ମେଘ ଜିଣିଣ ଅସୁର ଗରଜି
ବାହାର ଗଡ଼ ଜଗତୀ ପକାଇଲା ଭାଙ୍ଗି ।
କୁମରେ ରଣ ଛାଡ଼ନ୍ତେ ଦେଖି କାମପାଳ
ପଶନ୍ତି ବାହାର ଗଡ଼ ଜିଣି ଦୈତ୍ୟବଳ ।
ବିପତ୍ତି ପଡ଼ିଲା ଦ୍ୱାରକାକୁ ଏତେକାଳେ
ଅକଳିତ ଭୁବନରେ ପଶିଲେ ଚଣ୍ଡାଳେ ।
ଦୁରାପଦ ଦାନବଙ୍କୁ ବଳରାମ ଦେଖି
ଦ୍ୱାର ନିରୋଧିଲେ ଯାଗଶାଳକୁ ଉପେକ୍ଷି ।
ଯେସନେକ ଗିରିରେ ଉଠଇ ପାତାଳୁ
ତେସନେ ଉଠିଲେ ବଳରାମ ଯାଗଶାଳୁ ।
ଦୂରାନ୍ତକ ବଳ ଦେଖି ଭୟ କଲେ ଋଷି
ଯାଗ ତେଜି ସର୍ବେ ରାମ କତିହିଁ ସେ ଆସି ।
ଅସୁରଙ୍କ ଦର୍ପ ଦେଖି କାନ୍ଦି ସର୍ବନାରୀ
ବୋଲନ୍ତି କାହିଁକି ତେଜିଗଲୁ ଦେବ ହରି ।
ନିଶ୍ଚୟ ଦ୍ୱାରକା ଶିରୀ ହୋଇଲାକ ଶେଷ
ଜାଣି ଅପସରି କେଣେ ଗଲୁ ପୀତବାସ ।
ଦ୍ୱାରକା ଭୁବନେ ଉଠେ ଏସନକ ଗୋଳ
ରାମ ରଖ ରଖ ବୋଲି ଶୁଭଇ ଚହଳ ।
ସ୍ତିରୀ ପୁରୁଷ ସମସ୍ତେ ଅଶ୍ରୁପୂର୍ଣ୍ଣ ଆଖି
ବୋଲନ୍ତି ତୋହର ଥାନ୍ତେ ହୋଇଲୁ ନିର୍ମାକ୍ଷୀ ।
ବୋଧନ୍ତି ମୂଶଳୀ ଶୋକ ନକର ଗୋମାୟେ
ମୋହର ଥାନ୍ତେ ତୁମର କାହାକୁ ଗୋ ଭୟେ ।
ଦେବକୀ ବୋଇଲେ ବାବୁ ଥିଲେ ଜଗନ୍ନାଥ
ଦ୍ୱାରକାରେ ପଶିବାକୁ କେହୁ ସାମରଥ ।
ମାତାଙ୍କର ଏ ବିକଳ ଦେଖି ନୀଳାମ୍ବର
ଅସୁରଙ୍କୁ ଓଗାଳିଲେ ବନ୍ଧ ପରକାର ।
କାଳଚକ୍ର ପ୍ରାୟ ସ୍ୱାମୀ ନୟନ ବୁଲାଇ
କୋପେ ରଣଗୋଳ କଲେ ଦେବ ହଳୀ ଯାଇ ।
ଉଚ୍ଚସ୍ୱରେ ସିଂହରଡ଼ି ଦେଇ ଗର୍ଜି ଉଠି
ଦୁରନ୍ତ ଅସୁର ଶିରେ ନେଇ ଶସ୍ତ୍ର ପିଟି ।
ଲକ୍ଷପୁର କରି ବଳରାମଙ୍କୁ ସେ ବେଢ଼ି
ନିର୍ଘାତ ଶବଦ ପ୍ରାୟ ଦ୍ୟନ୍ତି ଘୋରରଡ଼ି ।
ସାତ୍ୟକି ଅକ୍ରୁର ଆଉ ଆଉ ଯେତେ ଯଦୁବୀର
ସମସ୍ତେ ମିଳିଲେ ବଳରାମଙ୍କ ଛାମୁର ।
ଅସୁର ସଇନିଙ୍କ ସେ ହେଲେ ପ୍ରତିତୁଲ୍ୟ
ନ ଘୁଞ୍ଚନ୍ତି ଦାନବେ ସେ ଯୁଦ୍ଧେ ମହାମଲ୍ଲ ।
ଗଦା ମୁଦୁଗର ଶଲ୍ୟ କୁନ୍ତ ଚକ୍ର କାତି
ବିଜୁଳି ତେଜକୁ ଜିଣି ଶସ୍ତ୍ରେ ଝଲକନ୍ତି ।
ଆପେ ପୁଣି କାମପାଳ ଉଠିଲେ ସମରେ
କୋପେ ଶସ୍ତ୍ର ପ୍ରହାରନ୍ତି ଦୈତ୍ୟଙ୍କ ଉପରେ ।
ପର୍ବତ ସମାନ ହସ୍ତେ ଦିଶଇ ମୂଷଳ
ପିଟନ୍ତେ ଦାନବବଳ ହୋଇଲେ ବ୍ୟାକୁଳ ।
ବଳରାମଙ୍କ ପ୍ରହାରେ ପଡ଼ିଲେ ସଇନି
ହାହାକାର ଶବଦରେ କମ୍ପଇ ମେଦିନୀ ।
ଭାଙ୍ଗନ୍ତେ ଦାନବ ବଳ କଦମ୍ବା ଦେଖଇ
ଗର୍ଜନ ନାଦ କରିଣ ଅସୁର ଧାମଇଁ ।
କଦମ୍ବା ମୂଷଳୀ ଦୁହେଁ ହେଲେ ଏକତ୍ରିତ
ଯୁଦ୍ଧ କରନ୍ତି କି ମେରୁ ମନ୍ଦର ପର୍ବତ ।
ବଜ୍ର ଶକତି ଆବର ଅମୋଘ ଶକତି
ବେନିଜନେ ମରାମରି ସମରେ ହୁଅନ୍ତି ।
କୁଠାର ଆୟୁଧ ଧରି ଧାଏଁ ଦୈତ୍ୟପତି
ବଳରାମଙ୍କ ଉପରେ ପିଟିଲେ ତଡ଼ତି ।

ଦେଖି କୋପେ ବଳରାମ ପିଟିଲେ ଲଙ୍ଗଳ
ଶସ୍ତ୍ରେ ଶସ୍ତ୍ର ବାଜି ତହୁଁ ଉଠିଲା ଅନଳ ।
ଦଇତ ପ୍ରହାର କଲା ପୁନରପି ଶୂଳ
କୋପେ ପ୍ରହାରିଲେ ରାମ ସୌନନ୍ଦ ମୂଷଳ ।
ରାମ ପ୍ରହାରେ ନୋହିଲା ଅସୁରର କ୍ଷତି
ଦେଖି ଶଙ୍କର୍ଷଣ କୋପେ ଧରି ବିଶ୍ୱମୂର୍ତ୍ତି ।
ପୁଣି ବଜ୍ର ଲଙ୍ଗଳକୁ କୋପେ ପ୍ରହାରନ୍ତେ
ସେ ପ୍ରହାରକୁ କଦମ୍ବା ମଣଇ କିଞ୍ଚିତେ ।
ଚନ୍ଦ୍ରାବଳୀ ଗଦା ଘେନି କଦମ୍ବା ଅସୁର
ଧାଇଁଣ ପିଟିଲା ବଳରାମଙ୍କ ଉପର ।
ଶସ୍ତ୍ର ଯହୁଁ ନ ଭେଦିଲା ଅସୁର ଶରୀର
ରାମ ଗଲେ ଶସ୍ତ୍ର ରଖି ଭାବନ୍ତି ମନର ।
ପ୍ରତି ଶସ୍ତ୍ର ପ୍ରହାରିଲା ନେଇଣ ଅସୁର
ରାମ ବକ୍ଷସ୍ଥଳେ ପଡ଼ି ହୋଇଲାକ ଚୂର ।
ଶସ୍ତ୍ର ବ୍ୟର୍ଥ ଦେଖି ସେହି ଅସୁର ରାଜନ
ରାମଙ୍କୁ ଶସ୍ତ୍ର ପ୍ରହାର କଲେ ପୁଣ ପୁଣ ।
ବଜ୍ରଶକ୍ତି ଘେନି ପୁଣି କଦମ୍ବା ପିଟିଲା
ସମରେ ବଳରାମଙ୍କ ଆରମ୍ଭ ଭାଜିଲା ।
ଶସ୍ତ୍ରାଘାତେ ବଳରାମ ହୋଇଲେ ଅଜ୍ଞାନ
ପୁଣ ପୁଣ ପ୍ରହାରିଲେ ରାଗେ ଦୈତ୍ୟଗଣ ।
ନିଶ୍ଚେଷ୍ଟ ହୋଇଲେ ଯହୁଁ ରଣେ ଦେବ ହଳୀ
କୋଳ କରିଣ କଦମ୍ବା ଆକର୍ଷିଣ ତୋଳି ।
ଧରିଣ ବଳରାମଙ୍କୁ ପକାଇଲେ କାନ୍ଧେ
ବାହୁଡ଼ିଣ ରଣ ଜୟ କରି ଶଙ୍ଖନାଦେ ।
ଦ୍ୱାରକା ଭୁବନ ମଧ୍ୟେ ପଶିଲା ଅସୁର
ଅନେକ ଧନ ଭଣ୍ଡାର କରିଲା ସେ କ୍ରୁର ।
ଜୟ ଶଙ୍ଖ ବଜାଇଣ ତହୁଁ ଦୈତ୍ୟମଣି
ପ୍ରଦ୍ୟୁମ୍ନ ଶାମ୍ବ ଗଦାକୁ ଧଇଲା ସେ ପୁଣି ।
ଦ୍ୱାରକା ଭୁବନ ତେଜି ଦନୁଜ ଚଳିଲା
ମଣିନାଗ ପର୍ବତରେ ସେଦିନ ରହିଲା ।
ଅନେକ ଯାଦବବଳ ପଡ଼ିଯାନ୍ତେ ରଣେ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ସ୍ୱର୍ଗେ ଦେବଗଣେ ।
ଝଙ୍କଡ଼ପୁର ବାସିନୀ ଦେବୀ ଗୋ ଶାରଳା
ତୋହର ପାଦେ ଶରଣ ପଶଇ ଶାରଳା ।

—୦—

## କଦମ୍ବାସୁର ବଧ

ଅଗସ୍ତି କହିଲେ ବୈବସ୍ୱତ ମନୁ ଆଗେ
ଏପରି ଘଟିଲା ଏଣେ ଅଶ୍ୱମେଧ ଯାଗେ ।
ଭୋ ମୁନି କୃଷ୍ଣ ଯେ ଗଲେ ପାତାଳ ଭୁବନେ
ନିଶ୍ଚିତ ହୋଇ ରହିଲେ ବିଷ୍ଣୁ ଦରଶନେ ।
ଅଗସ୍ତି ବୋଇଲେ ଶୁଣ ବିଲଙ୍କାଧିପତି
ବ୍ରାହ୍ମଣର ସାତପୁତ୍ର ମାଗିଲେ ଶ୍ରୀପତି ।
ସେ ପୁତ୍ରଙ୍କୁ ଆଣି ଯହୁଁ ମହାବିଷ୍ଣୁ ଦେଲେ
ଘେନି ତାହାଙ୍କୁ ଶ୍ରୀକୃଷ୍ଣ ପାର୍ଥ ବାହୁଡ଼ିଲେ ।
ପାତାଳ ଭୁବନୁ ଦେବ ହୋଇଲେ ବାହାର
ଅର୍ଜ୍ଜୁନକୁ ତିଆରନ୍ତି ପଥେ ଦାମୋଦର ।
ବୈକୁଣ୍ଠେ ପଡ଼ିଲା ଯେଉଁ ଯେଉଁ କଥାମାନ
କାହା ଆଗେ ନ କହିବୁ ଆରେ ଅରଜୁନ ।
ନ ଜାଣିବେ ଯୁଧିଷ୍ଠିର ଭୀମ ସହଦେବ
ନକୁଳ ସୁଭଦ୍ରା କୃଷ୍ଣ ଯେତେକ ଯାଦବ ।
ଏକଥା ଯେବେ ଅର୍ଜ୍ଜୁନ ହୋଇବ ବ୍ୟକତ
କାଳେ କାଳେ ଭେଟ ମୋର ନ ପାଇବୁ ତୁ ତ ।
ଏହିରୂପେ ତିଆରିଣ ଦେବ ଜନାର୍ଦ୍ଦନ
ମଧ୍ୟ ଭୁବନରେ ଯାଇ ମିଳିଲେ ବହନ ।
ପାତାଳପୁରୁ ବାହୁଡ଼ି ଆସନ୍ତି ଗୋବିନ୍ଦ
ଏକାଳେ ତାହାଙ୍କୁ ଭେଟି କହିଲେ ନାରଦ ।
ବୋଇଲେ ଯେ ପାତାଳକୁ ଗଲ ବାସୁଦେବ
ତୋ ପୁରକୁ ଧାଡ଼ିଦେଲା କଦମ୍ବା ଦାନବ ।
ଅନେକ ସୈନ୍ୟର୍ ତୁଲେ ଦୈତ୍ୟ ମହାବଳ
ଭାଙ୍ଗିଲା ଦ୍ୱାରକାପୁର ତୋହର ସକଳ ।
ସମର କରି ମାଇଲା ବହୁ ଯାଦବଙ୍କୁ
ପୁଣି ବଧ କଲା ଶାମ୍ବ ଗଦା ପ୍ରଦ୍ୟୁମ୍ନକୁ ।
ଧନ ଭଣ୍ଡାର ସମସ୍ତ ଧ୍ୱଂସିଲା ଅସୁର
ବିଶେଷେ ଭାଙ୍ଗିଲା ଧର୍ମଯଜ୍ଞ ଯେ ତୋହର ।
ବଳରାମଙ୍କୁ ତୋହର ଧରିନେଲା କୋପେ
ମଣିନାଗ ପର୍ବତରେ ଅଛନ୍ତି କୌଣପେ ।
ନାରଦଙ୍କ ମୁଖୁଁ ଏସନକ ବାକ୍ୟ ଶୁଣି
ଅତି ବିଷାଦିତ ହେଲେ ଦେବ ଚକ୍ରପାଣି ।
ଅର୍ଜ୍ଜୁନ ବୋଇଲେ ଦେବପୁରରେ କି କାର୍ଯ୍ୟ
ମଣିନାଗ ପର୍ବତକୁ ଚାଲ ଦେବରାଜ ।
ଦେଖିବା ଦାନବଙ୍କର କେଡ଼େ ପରାକ୍ରମ
ଧରି ନେବାକୁ ରାମକୁ ହୋଇଲେ ସେ କ୍ଷମ ।
ଶୁଣି କରି ଚିନ୍ତାକଲେ ଦେବ ନାରାୟଣ
ମଣିନାଗ ପର୍ବତରେ ବିଜୟ ତକ୍ଷଣ ।
ଦେଖିଲେ ରାକ୍ଷସବଳେ ପୂରିଛି ଶଇଳ
ମାଂସ ମଦିରା ଭୋଜନେ ହୋଇଛନ୍ତି ଭୋଳ ।
ନିଶାଣ ଟମକ ପୁଣି ବାଜଇ ଦାଉଣ୍ଡ
ନାଚନ୍ତି ସେମାନେ ତହିଁ ଭୋଳେ ନାଟଖଣ୍ଡ ।
ଏସନ ଦେଖିଣ ଯହୁଁ ଦେବ ଚକ୍ରଧର
ମନମଧ୍ୟେ ସୁମରିଲେ ବିନତା କୁମର ।

ରମ୍ୟକ ଦ୍ୱୀପରେ ରହିଥିଲା ପକ୍ଷୀବର
ସନ୍ନିଧ୍ୟେ ପ୍ରବେଶ ହେଲା ଆସିଣ ସତ୍ୱର ।
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଧରି ଚକ୍ରପାଣି
ବୀରବେଶ ହେଲେ କନ୍ଧେ ବାନ୍ଧି ତ୍ରୋଣ ବେନି ।
ଗାଣ୍ଡୀବ ଯେ ପାଶୁପତ ଅକ୍ଷୟ ତୂଣୀର
ଘେନି ଦିବ୍ୟବେଶ ହେଲେ ପାର୍ଥ ଧନୁର୍ଦ୍ଧର ।
ପାଞ୍ଚଜନ୍ୟ ଶଙ୍ଖଧ୍ୱନି କରିଣ ଅଚ୍ୟୁତ
ଆରୋହିଲେ ଖଗପୃଷ୍ଠେ ହୋଇ କୋପାନ୍ୱିତ ।
ସେ ଶଙ୍ଖର ଶବଦରେ କମ୍ପେ ବସୁନ୍ଧରା
ସମୁଦ୍ର ଉଚ୍ଛୁଳି ଜଳ ମାଡ଼ିଲାକ ଧରା ।
ଶ୍ରୀକୃଷ୍ଣଙ୍କ ତେଜରାଶି ଚୌଦିଗେ ବିକାଶେ
ଦେଖି କୋପାନଳେ ତାଙ୍କୁ ଚାହିଁଲେ ରାକ୍ଷସେ ।
ନାରଦ ବୋଇଲେ ଶୁଣ ହେ କଦମ୍ବାସୁର
ଏହି ଯେ ଶ୍ରୀକୃଷ୍ଣ ଜାଣ ଦେବ ଦାମୋଦର ।
ଏହି ସିନା ତୋର ପିତା ମୋହର ବଇରୀ
ଏହି ଯେ ଅସୁରକୁଳ ପାରଇ ସଂହାରି ।
ରାମକୁ ଆଣିଲୁ ସେତ ନ ଜାଣଇ କିଛି
ଏହାକୁ ଜିଣିଲେ ଏଣେ କାର୍ଯ୍ୟ ତୋର ଅଛି ।
ନାରଦଙ୍କ ଏ ବଚନ ଶୁଣିଣ ରାକ୍ଷସ
ସୈନ୍ୟ ପଛ କରି ଆପେ ଆଗରେ ପ୍ରବେଶ ।
କୌମଦକୀ ଗଦା କରେ ଘେନି ଯଦୁସାଇଁ
ଗରୁଡ଼ ପିଠିରୁ ଦେବ ପଡ଼ିଲେକ ଡେଇଁ ।
ପବନହୁଁ ବେଗ କରି ଗଦାବର ହସ୍ତେ
ରାଗେ ପିଟିଲେ କଦମ୍ବା ଦଇତର ମାଥେ ।
ଗଦା ପିଟନ୍ତେ ଡେଇଁଣ କଦମ୍ବା ଧାଇଁଲା
କୌମଦକୀ ଗଦାବର ବ୍ୟର୍ଥ ହୋଇଗଲା ।
ଗଦା ବାହୁଡ଼ନ୍ତେ ଉଭାହେଲେ ଦେବହରି
କଦମ୍ବା ଧଇଲା ପୃଷ୍ଠେ କରକୁ ପ୍ରସାରି ।
ସେହି ଗଦାବର କୋପେ ହସ୍ତରେ ବୁଲାଇ
କୃଷ୍ଣ ଉପରେ ପିଟିଲା ଦୈତ୍ୟବର ନେଇ ।
ଆପଣା ଗଦା ପଡ଼ନ୍ତେ ଆପଣାର କନ୍ଧ
ମୂର୍ଚ୍ଛାଗତ ହୋଇ ତହିଁ ପଡ଼ିଲେ ଗୋବିନ୍ଦ ।
ଶ୍ରୀକୃଷ୍ଣ ପଡ଼ିବା ଦେଖି ପାଣ୍ଡୁର ନନ୍ଦନ
ଦେବଦତ୍ତ ଶଙ୍ଖନାଦ କଲେ ଘନ ଘନ ।
ତେତେବେଳେ କୃଷ୍ଣ ତହିଁ ଥିଲେ ଅଚେତନ
ନାଗପାଶେ କଲା ତାଙ୍କୁ ଅସୁର ବନ୍ଧନ ।
ତା ଦେଖି ଶର ସନ୍ଧାନ କଲେ ଫାଲଗୁନି
ପେଷଇ ସେ ପାଶୁପତ ଶର ହସ୍ତେ ଘେନି ।
ଲୋମ ଲୋମରେ ଅସୁର ଦେହରେ ଫୁଟଇ
ଝର ଝର ହୋଇ ରକ୍ତ ଅଙ୍ଗରୁ ବହଇ ।

ପୁଣି ପେଷିଲା ସେ କରେ କାଳଚକ୍ର ଘେନି
ଛେଦି ପକାଇଲା ଯେତେ ଦଇତ ସଇନି ।
ସୈନ୍ୟ ସମାପତ ହେବା ଦେଖିଣ କଦମ୍ବ
ଅର୍ଜ୍ଜୁନ ସଙ୍ଗରେ ଯୁଦ୍ଧ କରେ ବହି ଦମ୍ଭ ।
ସହସ୍ର ଶର ପେଷିଲା କଦମ୍ବ ଅସୁର
ନିମିଷ ମାତ୍ରକେ ଘୋଟିଗଲା ସେ ଅମ୍ବର ।
ପଞ୍ଚଦଶ ବାଣ ରୋଷେ ପେଶି ଫାଲଗୁନି
ଦଇତର ଶର ସବୁ ପକାଇଲା ହାଣି ।
ପୁଣି ସେ କଦମ୍ବାସୁର ଲୌହଦଣ୍ଡ ମାରେ
ପନ୍ନଗ ଶର ପେଷିଲା ପୁଣି କୋପଭରେ ।
ଫୁଙ୍ଫୁକାର ଧ୍ୱନି କରି ଗର୍ଜନ୍ତେ ଉରଗେ
ଧାଇଁ ଧାଇଁ ଖଗବର ମିଳିଲାକ ବେଗେ ।
ଗରୁଡ଼ ମାଇଲା ବହୁ ସୈନ୍ୟ ପକ୍ଷବାତେ
ଉଡ଼ି ସମୁଦ୍ରେ ପଡ଼ିଲେ ଅସୁର ସମସ୍ତେ ।
ମଣିନାଗ ସର୍ପକୁ ଯେ ଚାହିଁ ଖଗେଶ୍ୱର
ଦେଖିଲେ ନାଗେ ବନ୍ଧନ କୃଷ୍ଣ କଳେବର ।
ଗରୁଡ଼କୁ ଦେଖି ପଳାଇଲେ ସର୍ପଗଣ
ଧାଇଁ ଗରୁଡ଼ ଭକ୍ଷିଲା ତାହାକୁ ବହନ ।
ଚାହିଁଦେଲା ରାମକୃଷ୍ଣ ରଣେ ଅଚେତନ
ଅମରପୁରକୁ ପକ୍ଷୀ ଚଳିଲା ବହନ ।
ଇନ୍ଦ୍ର ଛାମୁରେ କହିଲା ସର୍ପଙ୍କ ଅଇରି
ଶୁଣ ଇନ୍ଦ୍ରରାୟେ ମନ ମଧ୍ୟେ ଲୟ କରି ।
ଅମୃତ ବର୍ଷିଲା ଆଣି ସ୍ୱର୍ଗ ସହସ୍ରାକ୍ଷ
ଚେତନା ପାଇ ଉଠିଲେ ରାମ ପଙ୍କଜାକ୍ଷ ।
ରାମକୃଷ୍ଣ ବେନି ଯହୁଁ ସଚେତ ହୋଇଲେ
ବିନୟ ଭାବରେ ଇନ୍ଦ୍ରଦେବତା ବୋଇଲେ ।
ଅତି ବଳବନ୍ତ ଅଟୁ ତୁ ହୋ ବଳରାମ
ଛାର ଅସୁର ଗୋଟାଏ ଜିଣିଲା ସଂଗ୍ରାମ ।
ଏଡ଼େ ବଡ଼ପଣ ତୋର କେଉଁଆଡ଼େ ଗଲା
ଅସୁରର ହାତେ ପୁଣି ଝିଙ୍ଗାସ ହୋଇଲା ।
ବୃହସ୍ପତି ବୋଇଲେ ତୁ ଶୁଣ ଆଖଣ୍ଡଳ
ଦ୍ୱାପର ଯୁଗର ଶେଷେ ହେବ କଳିକାଳ ।
ତେଣୁ ବଳରାମଙ୍କର ବଳ ହେଲା କ୍ଷୀଣ
ଆବର ମଧ୍ୟଭୁବନେ ଛନ୍ତି କି କାରଣ ।
ମହାବିଷ୍ଣୁ ତୁମ୍ଭଙ୍କୁ ଯେ କରନ୍ତି ଆହ୍ୱାନ
ମୋହତେଜି ବୈକୁଣ୍ଠକୁ କର ଆଗମନ ।
ଅନେକ ଭୋଗ ଭୁଞ୍ଜିଲେ ହରି ମଧ୍ୟ ପୁରେ
ଦଇବ ବିପାକ ଏବେ ପଡ଼ିଲା ଉପରେ ।
ଶ୍ରୀକୃଷ୍ଣ ବୋଇଲେ ଯାଉଅଛୁ ଆଖଣ୍ଡଳ
ଦଇତ୍ୟେ ଅର୍ଜ୍ଜୁନ କରୁଥିବେ ଯେ କଟାଳ ।

ଏହା କହି ବୈନତେୟ ଚଢ଼ି ବେନି ଭାଇ
ମଣିନାଗ ପର୍ବତରେ ପ୍ରବେଶିଲେ ଯାଇ ।
ଦେଖିଲେ ଦୈତ୍ୟଙ୍କ ମାଂସ ହୋଇ ଖଣ୍ଡ ଖଣ୍ଡ
ପାଞ୍ଚକ୍ରୋଶ ମାଡ଼ି ପଡ଼ି ଅଛି ମୃତ୍ୟୁପିଣ୍ଡ ।
ରାମକୃଷ୍ଣଙ୍କୁ ଦେଖି ସାନନ୍ଦ ଫାଲଗୁନି
ଅନେକ ପ୍ରଶଂସା କଲେ ତାଙ୍କୁ ଭାଇ ବେନି ।
ମହୀର ଆନନ୍ଦ କିଏ ପାରିବ ସେ କଳି
ନାଚନ୍ତି କବନ୍ଧେ ରକ୍ତ ପଡ଼ନ୍ତି ନିକିଳି ।
ଏ ସମୟେ ବିଜେ କଲେ ରାମ ଶିରୀପତି
ଅର୍ଜ୍ଜୁନ କଦମ୍ବାସୁର ସମର କରନ୍ତି ।
ଦେଖି ରୋଷେ ଧାମନ୍ତି ଯେ ଦେବ କାମପାଳ
ରାମଙ୍କୁ ଦନୁଜ ଆସି କଲାକ ପ୍ରହାର ।
ଦେଖି କାମପାଳ କଲେ ଗରୁଡ଼କୁ ତେଜ୍ୟା
ହଳମୂଷଳ ଘେନିଲେ କରେ ଦେବରାଜା ।
ବଳରାମ ବୋଇଲେ ତୁ ଶୁଣ ଫାଲଗୁନି
ମୋ ସଙ୍ଗେ ଅସୁର ଯୁଦ୍ଧ କରୁ ଶସ୍ତ୍ର ଘେନି ।
ବଳରାମଙ୍କ ବଚନ ଶୁଣି ପାର୍ଥବୀର
ବୋଲେ ତୁମ୍ଭ ହସ୍ତେ ମୃତ୍ୟୁ ଅଛଇ ଏହାର ।
ଏଣେ ଅସୁର ଯେ ଧାଇଁଅଛି ରୋଷ ବହି
ବଳରାମଙ୍କ ଆଗରେ ମିଳିଲାକ ଯାଇ ।
ଦେଖି ହଳମୂଷଳ ମାଇଲେ ବଳରାମ
ସହି ତାହା ରଣରଙ୍ଗୀ ହୁଏ ତମ ତମ ।
ଅସିପତ୍ର ମାଇଲା ଯେ ହୋଇଣ ପ୍ରଚଣ୍ଡ
ରାମ ଦେହେ ବାଜି ତାହା ହେଲା ଖଣ୍ଡ ଖଣ୍ଡ ।
ପୁନରପି ପ୍ରହାରିଲା ଧରି ଲୌହ ଦଣ୍ଡ
ନବଲକ୍ଷ ଭାର ଗଦା ପଡ଼ି ରାମମୁଣ୍ଡ ।
ଭାଙ୍ଗି ଚୂର ହୋଇଗଲା ତେଡ଼େ ଗଦାବର
ପ୍ରହାରିଲେ ବଜ୍ରହଳ ନେଇ ନୀଳାମ୍ବର ।
ବୁଲାଇ ପିଟନ୍ତେ ତାହା ଧରି କଉଣପ
ରାମ ବକ୍ଷସ୍ଥଳେ କଲା ସେ ଗଦା ନିକ୍ଷେପ ।
ଧାଡିକାରେ ଧଇଲେ ହେ ଅସ୍ତ୍ର ନୀଳାମ୍ବର
ଲେଉଟି ପେଷିଲେ ତାଙ୍କୁ ଦନୁଜ ଶରୀର ।
ଅନ୍ୟ ଅସ୍ତ୍ରେ ନ ମରିବ ବର ପାଇଅଛି
ଆକାଶ ମାର୍ଗେ ଥାଇଣ ବୋଇଲେ ବିରଞ୍ଚି ।
ନୀଳଚକ୍ରକୁ ପେଷିବେ ଯେବେ ହଳଧର
ତେବେ ପ୍ରାଣେ ହତ ହେବ କଦମ୍ବା ଅସୁର ।
ନୀଳଚକ୍ରକୁ ଯେ ଦେବ କରିଲେ ସ୍ମରଣ
ଆନନ୍ଦରେ ଦେଲେ ବଳରାମେ ଦେବଗଣ ।
ସେ ନୀଳଚକ୍ରକୁ ରାମ ଧଇଲେକ କରେ
ଆକ୍ରୋଶି ମାଇଲେ ଦେବ କଦମ୍ବା ଉପରେ ।

ଚକ୍ର ବିଘାତରେ ଭାଙ୍ଗିଗଲା ତାର ଦର୍ପ
ବେନିଖଣ୍ଡ ହୋଇ ଛିଡ଼ିଗଲା କଉଣପ ।
ଅସୁର ସଙ୍ଗରେ ଯୋଦ୍ଧା ଏକପଦ୍ମ ଥିଲେ
ଅର୍ଜ୍ଜୁନର ନାରାଚରେ ସମସ୍ତେ ପଡ଼ିଲେ ।
ଯେ ଶ୍ରୀକୃଷ୍ଣ ସେହି ଜାଣ ଅଟଇ ଅର୍ଜ୍ଜୁନ
ଭାରା ନିବାରଣକାରୀ ସେହି ବେନିଜନ ।
କଦମ୍ବା ଅସୁର ବଧ ଅନ୍ତେ ସେ ଯେ କଥା
କହୁଅଛି ତାହା ଏବେ ଶୁଣ ମହାରଥା ।
ଶାମ୍ବ ଗଦା ପ୍ରଦ୍ୟୁମ୍ନଙ୍କୁ କୃଷ୍ଣ ଜିଆଇଲେ
ପାର୍ଥ ବଳରାମ ସହ ପୁରକୁ ଗମିଲେ ।
ମରିଥିଲେ ବ୍ରାହ୍ମଣର ସାତ ଯେ କୁମର
ସଙ୍ଗରେ ଆଣିଲେ ସମସ୍ତଙ୍କୁ ଚକ୍ରଧର ।
ବୈନତେୟର ପୃଷ୍ଠରେ ଚଢ଼ି ନାରାୟଣ
ଦ୍ୱାରକାପୁରେ ବିଜୟ ହେଲେ ତତକ୍ଷଣ ।
ଦେଖନ୍ତି ଯାଦବ ଦ୍ୱାରେ ଅଛନ୍ତି ଯେ ପଡ଼ି
ସୁବର୍ଣ୍ଣ ଜଗତୀ ଖଣ୍ଡ ଖଣ୍ଡ ହୋଇ ଝଡ଼ି ।
ଯେତେ ଯାଦବେ ଆଗରୁ ମରି ପଡ଼ିଥିଲେ
ଶ୍ରୀକୃଷ୍ଣ ପ୍ରସନ୍ନେ ସର୍ବେ ଚେତନା ଲଭିଲେ ।
ନନ୍ଦ ବସୁଦେବ ଉଗ୍ରସେନର ସହିତେ
ଆନନ୍ଦାଶ୍ରୁ ଜଳପୂର୍ଣ୍ଣ ସବୁଙ୍କରି ନେତ୍ରେ ।
ପାତାଳପୁରକୁ ତୁହି ଯାନ୍ତେ ଦେବହରି
ଏଡ଼େ ପ୍ରମାଦ ପଡ଼ିଲା ଦ୍ୱାରକା ନଗରୀ ।
ତହୁଁ ଦ୍ୱାରକାରେ କଲେ ସର୍ବେ ମହୋତ୍ସବ
କୃଷ୍ଣ ସନ୍ନିଧେ ମିଳିଲା ବିପ୍ର ବସୁଦେବ ।
କୃଷ୍ଣ ତାଙ୍କୁ ଦେଖି ବୋଇଲେ ହେ ଦ୍ୱିଜବର
ତବ ପୁତ୍ର ପାଇଁ ଗଲୁ ନଷ୍ଟହେଲା ପୁର ।
କର୍ମର ଅବଳେ ତବ ପୁତ୍ର ନାଶଗଲେ
ବାହୁଡ଼ାଇ ଆଣିବେ କେ ତାଙ୍କୁ ବୁଦ୍ଧିବଳେ ।
ଏପରି ଦ୍ୱିଜକୁ କୃଷ୍ଣ ବହୁ ଛଳ କଲେ
ପୁତ୍ରକୁ ଦେଖାଇ ଚିହ୍ନି ନିଅ ଯେ ବୋଇଲେ ।
ବ୍ରାହ୍ମଣ ବୋଇଲେ ଦେବ ଶୁଣସି ଅଚ୍ୟୁତ
କେବଳ ମାତ୍ର ଜନମ ହେଲେ ସାତପୁତ୍ର ।
ନ ଦେଖିଲି ନ ଖୋଇଲି ନ ଧଇଲି କୋଳେ
ତୁ ତାହାଙ୍କୁ ଆଣିଦେଲୁ ତୋର ବୁଦ୍ଧିବଳେ ।
ସାତପୁତ୍ରଙ୍କୁ ପାଇଲି ଅଣଚାଶ ବର୍ଷେ
ନ ବଞ୍ଚିଲେ ଦଣ୍ଡେ କ୍ଷଣେ ଦିନେ ଅବା ମାସେ ।
ମୁହିଁ ଏହାଙ୍କୁ ଚିହ୍ନିବି କେହ୍ନେ ଦାମୋଦର
ମୃତ୍ୟୁପୁରୁ ଆଣିବାକୁ ଶକ୍ୟ ଯେ କାହାର ।
ଗୋବିନ୍ଦ ବୋଇଲେ ପାର୍ଥ ମୃତ୍ୟୁ ହେଲା ପରି
ପୁତ୍ରଙ୍କୁ ଯତନ କରି ସମ୍ଭାଳ ତୋହରି ।

ପାର୍ଥ ବୋଲେ ମୋର ଦେବା ହେଲା ସାତବଳ
ଏ ଦ୍ୱାରକା ଭୁବନରୁ ଘେନି ତାଙ୍କୁ ପଳା ।
ସୁଦର୍ଶନ ଚକ୍ର ଯହିଁ ଭ୍ରମେ ଶତବାର
ମାଛି ପଡ଼ି ଶତଖଣ୍ଡ ହୁଅଇ ଶରୀର ।
ଏ ଭୁବନେ ପଶିବାକୁ କାର ଶକ୍ତି ଅଛି
ପାର୍ଥ ବୋଲେ ପଳା ଯେବେ ଜୀବେ ଆଶା ଅଛି ।
ଏବେ ଦେଖ କେଉଁପରି ପ୍ରମାଦ ପଡ଼ିଲା
ଅସୁର ମାତ୍ରକେ ଆସି ଏ ପୁର ଧ୍ୱଂସିଲା ।
ନିଶ୍ଚେ କୃଷ୍ଣ ଛାଡ଼ିଲେଣି ଏ ପୁରର ସ୍ନେହ
ପୁତ୍ରକୁ ଘେନି ବ୍ରାହ୍ମଣ ଏଠି ତୁ ନ ରହ ।
ଯାଗ ସମାପତ କରି ସେ ପ୍ରଭୁ ଗୋବିନ୍ଦ
ପ୍ରଣାମ କଲେକ ଧରି ବସୁଦେବ ପାଦ ।
ବଳରାମ ଯୁଧିଷ୍ଠିଙ୍କୁ ନମସ୍କାର କରି
ଆପଣା ମନ୍ଦିରେ ବିଜେ କଲେ ଦେବହରି ।
ଭୀମଙ୍କୁ ସେ ଆଲିଙ୍ଗନ କରିଣ ମୁରାରି
ସନ୍ତୋଷ ମନେ ରହିଲେ ଆପଣାର ପୁରୀ ।
ତହୁଁ ଯୁଧିଷ୍ଠି ସ୍ୱପୁରେ ଯିବାକୁ ଇଚ୍ଛିଲେ
ମାନ୍ୟ କରି ତାହାଙ୍କୁ ଶ୍ରୀକୃଷ୍ଣ ବିଦାକଲେ ।
ଦ୍ୱାରକାରୁ ବାହାରି ଯେ ଯୁଧିଷ୍ଠି ଚଳିଲେ
ଆନନ୍ଦରେ ଇନ୍ଦ୍ରପ୍ରସ୍ଥେ ଯାଇ ପ୍ରବେଶିଲେ ।
ଆନନ୍ଦେ ଯୁଧିଷ୍ଠି ତହୁଁ ପାଳିଲେ ପ୍ରଜାଙ୍କୁ
କିଛିଦିନେ ଡାକି ପଚାରିଲେ ଅର୍ଜୁନକୁ ।
କୃଷ୍ଣଙ୍କ ସହିତେ ତୁମ୍ଭେ କେଉଁଠାକୁ ଗଲ
କେଉଁଠାରୁ ବ୍ରାହ୍ମଣର ପୁତ୍ର ଆଣିଦେଲ ।
କେଉଁଠାରେ ଥିଲେ ତାହା ଜାଣିଲ କିପରି
ସେ ସକଳ କଥା ମୋତେ କହ ତୁ ବିସ୍ତାରି ।
ବୋଲନ୍ତି ଅର୍ଜୁନ ଶୁଣ ଆହେ ଜ୍ୟେଷ୍ଠଭ୍ରାତ
ଯାଆନ୍ତେ ଭୁବନ ଏକ ଦେଖିଲୁ ଭୂଗର୍ତ୍ତ ।
ନବର ବାହାରେ କୃଷ୍ଣ ଥୋଇ ମୋତେ ଗଲେ
ଯାଇ ଶ୍ରୀହରି ପୁତ୍ରଙ୍କୁ ଘେନିଣ ଅଇଲେ ।
ନର ହୋଇ ଶ୍ରୀକୃଷ୍ଣର ମାୟା କେ ବୁଝିବ
ମାୟା ରଚି ତ୍ରିଭୁବନ ପାଳୁଛି ସେ ଦେବ ।
ଏକା ସେ ଅଟଇ ତିନି ଭୁବନେ କାରଣ
ତ୍ରିଭୁବନ ମଧ୍ୟେ ସେହି ଅଟେ ଧନ୍ୟ ଧନ୍ୟ ।
ରମ୍ୟକ ବିବାଦେ ବକ୍ର ଅଙ୍ଗକୁ ସେ ମାରି
ଚରାଚର ବ୍ରହ୍ମାଣ୍ଡ ଯା ହୃଦେ ଅଛି ପୂରି ।
ଅମାର୍ଗ ମାର୍ଗ ହୁଅଇ ଯାହାର ଦୟାରେ
ସିଦ୍ଧ ବିବୁଧେ ଭଜନ୍ତି ଯାହାର ପୟରେ ।
ଚନ୍ଦ୍ର ଦିବାକର ଯାର ଆଜ୍ଞାରେ ଚଳନ୍ତି
ଭୂତ ଭବିଷ୍ୟତ ସବୁ ଜାଣେ ସେ ଶ୍ରୀପତି ।
ମୁଁ ତୁମ୍ଭର ଦାସର ଦାସ ଅଟେ ଜନ୍ମେ ଜନ୍ମେ
ଉଦ୍ଧରି ଧର ହେ ପ୍ରଭୁ ମୋତେ ସୁପ୍ରସନ୍ନେ ।
ଶିରେ ଶୋହଇ ସଂପତଫଣୀ ଯେ କୁଣ୍ଡଳୀ
ମହାତେଜୋବନ୍ତ ନାଥ ଚରାଚର ବଳୀ ।
ଯାଦବ ନିଧନେ କାଦମ୍ବରୀ ପାନ କଲୁ
ତୀର୍ଥବ୍ରତେ ବ୍ରହ୍ମହତ୍ୟା ଦୋଷୁ ଉଦ୍ଧରିଲୁ ।
ଅକାଳେ କାଳେ ମହିମା ତୋର ଅଟେ ସତ
ପ୍ରଳୟ ତାରଣ ନାଥ ମହାକାଳକୃତ ।
ତୋର ପାଦପଦ୍ମେ ନାଥ ନମାମି ନମାମି
ଉତ୍ପତ୍ତି ସ୍ଥିତି ପ୍ରଳୟ ଉଦ୍ଧାରଣ ସ୍ୱାମୀ ।
କୋଟିଏ ଚନ୍ଦ୍ର ଯାହାର ଏକ ନିଶାଭୋଗୀ
ଶାରଳା ଦାସେ ଉଦ୍ଧାର ହେ ପରମଯୋଗୀ ।

—o—

## ମରୁତସେନ ଚରିତ

କହୁଛନ୍ତି ବୈବସ୍ୱତ ମନୁ ହେ ଅଗସ୍ତି
ଏଥିଉତ୍ତାରୁ କି କଥା କହ ବ୍ରହ୍ମଯତି ।
ଅଗସ୍ତି ବୋଇଲେ ଶୁଣ ହେ ବିଲଙ୍କ ରାୟେ
କରିବେ ଯେ ଅଶ୍ୱମେଧ ଯାଗ ଧର୍ମରାୟେ ।
ଯୁଧିଷ୍ଠି ପୁଚ୍ଛିଲେ ଧୌମ୍ୟ ପୁରୋହିତେ ଚାହିଁ
ଅଶ୍ୱମେଧ ଯାଗ ବିଧି କେମନ୍ତ ଅଟଇ ।
କହନ୍ତି ଯେ ପୁରୋହିତ ଶୁଣ ଧର୍ମସୁତ
ଯଦ୍ୟପି ଅଟନ୍ତି ଦେବରାଜ ଜଗନ୍ନାଥ ।
ତେବେ ସୁଦ୍ଧା ପାପ ଲାଗେ କଲେ ହତ୍ୟା ଦୋଷ
ଅଶ୍ୱମେଧ ଯାଗ କଲେ ସବୁ ହୁଏ ଧ୍ୱଂସ ।
ଧୌମ୍ୟ ପୁରୋହିତ ତାଙ୍କୁ କହିଲେ ଏ ବିଧି
ହତ୍ୟା ବିମୋଚନ ଏହି ଯାଗ ହିଁ ପ୍ରସିଦ୍ଧି ।
ଏ ଯାଗ ଯେ କରେ ମର୍ତ୍ତ୍ୟେ ଜନ୍ମ ନ ହୁଅଇ
ନିଶ୍ଚୟ ସେ ଲୋକ ବ୍ରହ୍ମଲୋକକୁ ଯେ ପାଇ ।
ଧୌମ୍ୟଙ୍କ ମୁଖରୁ ଏହା ଶୁଣିଣ ଯୁଧିଷ୍ଠି
ବୋଇଲେ ଏ ଯାଗ ଆମ୍ଭେ କରିବା କିରୀଟୀ ।
ପୁରୋହିତଙ୍କ ମୁଖରୁ ଶୁଣି ଦଣ୍ଡଧାରୀ
ମହାମୁନି ବଶିଷ୍ଠଙ୍କୁ ମନରେ ସୁମରି ।
ଉଦୟଗିରି କନ୍ଦରେ ଥିଲେ ତପୋବନ୍ତ
ଯୁଧିଷ୍ଠିର ସୁମରନ୍ତେ ଜାଣିଲେ ତୁରିତ ।
ହସ୍ତିନା ଭୁବନେ ଧର୍ମରାଜ ସୁମରନ୍ତି
ଶୁଣ ହୋ ମନୁରାଜନ ଅଗସ୍ତି କହନ୍ତି ।
ହସ୍ତିନା ଭୁବନେ ଆସି ପ୍ରବେଶ ବଶିଷ୍ଠ
ଯୁଧିଷ୍ଠିଦେବ କହନ୍ତି ଆହେ ତପୋନିଷ୍ଠ ।
ବଶିଷ୍ଠଙ୍କୁ ଯୁଧିଷ୍ଠିର ନାନା ପୂଜା କଲେ
ଆସନାଦି ଦେଇ ପୁଣି ବିନୟେ କହିଲେ ।

ମୋହର ବିନୟ ବାଣୀ ଶୁଣ ମୁନିବର
ଅଶ୍ୱମେଧ କରିବଇଁ କରିଛି ବିଚାର ।
ବଶିଷ୍ଠ ବୋଇଲେ ସାଧ୍ୟ କଲ ସର୍ବ ଧର୍ମ
ଅଶ୍ୱମେଧ ଯାଗବିଧି ଅଟେ ଶ୍ରେଷ୍ଠ କର୍ମ ।
ଅଶ୍ୱମେଧ ଯାଗ କରି ପାରଇ ଯେ ଶେଷ
ଅବଶ୍ୟ ସେ ବ୍ରହ୍ମଲୋକେ ହୁଅଇ ପ୍ରବେଶ ।
ତାର ତୁଲେ ଯେତେ ଲୋକ ହୋଇଥାନ୍ତି ଶ୍ରମି
ବ୍ରାହ୍ମଣ କିବା ଚାଣ୍ଡାଳ ହେବ ସ୍ୱର୍ଗଗାମୀ ।
ପୁତ୍ର କନ୍ୟା ଭାରିଯା ଯେ କୁଟୁମ୍ବ ସଙ୍ଗରେ
ଦିବ୍ୟରୂପ ହୋଇ ସର୍ବେ ବସନ୍ତି ସ୍ୱର୍ଗରେ ।
ଯାଗ ମହିମା ଶୁଣିଣ ଯୁଧିଷ୍ଠି କହନ୍ତି
ଏହା ନ କରି କି ଧର୍ମ କରିଛି ମୁଁ ଯତି ।
ତୁମ୍ଭଙ୍କୁ ଆଦ୍ୟରୁ ଦେବ କଲି ମୁଁ ବରଣ
କରିବି ଯାଗର ଅଟେ ଯେ ବିଧି ବିଧାନ ।
ରାଜାର ବଚନ ଶୁଣି ବଶିଷ୍ଠ ବୋଲନ୍ତି
କହିବୁ ଯେ ଯାଗ କଥା ଶୁଣ ନରପତି ।
ଏହି ବଂଶେ ଶ୍ୱେତ ନାମେ ଥିଲେ ନରପତି
ଦେବଯାଗ କରିବାକୁ ବଳିଲା ତା ମତି ।
ମୋତେ ସେ ବରିଲା ବିଷ୍ଣୁ ଗର୍ଭ ସତ୍ୟଯୁଗେ
ମୁହିଁ ଯାଗନିକ ହେଲି ଯାଇ ତାର ଯଜ୍ଞେ ।
ମୁଁ ବୋଇଲି କିମ୍ପା ମୋତେ ବରିଲୁ ତୁ ଯାଗେ
ଅଟନ୍ତି ଘୃତ ପ୍ରୋକ୍ଷଣୀ ମୋର ଚାରିମେଘେ ।
ମୁଁ ହୋମ କଲେ ଅଣ୍ଟାଇ ପାରିବୁ କି ଘୃତ
ଶୁଣି ଏହା ସନମତ କଲା ରାଜା ଶ୍ୱେତ ।
ସନମତ କରି ରାଜା ଗଲାକ ତୁରିତ
ଘୃତ ସମୁଦ୍ରକୁ ସେବା କରିଲା ବହୁତ ।
ପଞ୍ଚଦଶ ବରଷ ସେ ତାକୁ ସେବା କଲା
ମନାଇ ଘୃତସମୁଦ୍ର ସେ ଘୃତ ଆଣିଲା ।
ଚଉବିଂଶ ବର୍ଷଯାଏ ଯଜ୍ଞେ ନରମଣି
ମୂଷଳ ଧାରାରେ ଘୃତ ବର୍ଷାଇଲା ଆଣି ।
ଲୋଭେ ବୈଶ୍ୱାନର ତହିଁ ଭକ୍ଷି ସର୍ବ ଘୃତ
ତାଙ୍କ ଦେହେ ଲୁଦୁବୁଦୁ ବ୍ୟାଧି ହେଲା ଜାତ ।
ବୋଲନ୍ତି ବଶିଷ୍ଠ ମୁନି ଶୁଣ ହେ ଯୁଧିଷ୍ଠି
ଅଗ୍ନି ଅବଳେ ଆହାର ହୀନ ହେଲା ସୃଷ୍ଟି ।
ଅଗ୍ନି ବିହୁନେ ସମସ୍ତେ ହେଲେ ଲୁଦୁବୁଦୁ
ଅଶକତ ହେଲେ ଜାତ ନ ହୋଇଲା ବିନ୍ଦୁ ।
ଅଗ୍ନି ଇନ୍ଦ୍ର ଦେବତାଙ୍କୁ ମାଗିଲେ ଔଷଧି
ଇନ୍ଦ୍ର ନ ଦେବାରୁ ତାର ଭଲ ନୋହେ ବ୍ୟାଧି ।
ଭାଇ ତୋହର ଅର୍ଜୁନ ଇନ୍ଦ୍ରେ ହୋଇ ବାଦୀ
ପାଣ୍ଡବ ଦହି ଖଣ୍ଡିଲା ବାହାର ସେ ବ୍ୟାଧି ।
ଯଜ୍ଞେ ଅଗ୍ନିକୁ ଆହାର ଦେଲେ ଧର୍ମରାୟ
ଅଶ୍ୱମେଧ ଫଳ ପ୍ରାପ୍ତି ହୁଅଇ ନିଶ୍ଚୟ ।
ପୃଥ୍ୱୀର ସମାନ ଏଥେ ଲାଗିବଟି ବିତ୍ତ
ନ ସଞ୍ଚଣ ଯାଗେ କିମ୍ପା ପଶ ଧର୍ମସୁତ ।
ରାଜସୂୟ ଯଜ୍ଞ ତୁମ୍ଭେ କଲ ଯେତେବେଳେ
ଭଣ୍ଡାର ଘରୁଆ ଦୁର୍ଯ୍ୟୋଧନ ହୋଇଥିଲେ ।
ଶଙ୍ଖନିଧି ପଦ୍ମନିଧି ତାର କରେ ଥିଲା
ତେଣୁ ଯେତେ ଖର୍ଚ୍ଚ ହେଲା କେଭେ ନ ସରିଲା ।
ବଶିଷ୍ଠଙ୍କୁ ଯୁଧିଷ୍ଠିର ଗୃହ ଦେଖାଇଲେ
ନ ଅଣ୍ଟିବ ଏ ଧନ ଯେ ବଶିଷ୍ଠ ବୋଇଲେ ।
ତୋର ସଙ୍ଗେ ଆମ୍ଭେ ଯିବା କାଞ୍ଚନଗ୍ର ବନ
ଦେବଇଁ ମୁହିଁ ସେଠାରେ ଅଛି ଯେତେ ଧନ ।
ବଶିଷ୍ଠଙ୍କ ସହ ଭୀମ ଯୁଧିଷ୍ଠି ଅର୍ଜୁନ
ଦିନ ଶେଷ ସମୟରେ କଲେକ ଗମନ ।
ବେଗେ ଯାଇ କାଞ୍ଚନଗ୍ରେ ହୋଇଲେ ପ୍ରବେଶ
ବହଇ ଯେ ତୁଙ୍ଗଭଦ୍ରା କାଞ୍ଚନଗ୍ର ପାଶ ।
ବହିତୁଆ ନାମେ ଅଛି ପର୍ବତ ଗୋଟାଏ
ଶତେ ଯୋଜନ ନିଗମ ନଦୀ ବହିଯାଏ ।
ସମସ୍ତେ ଯାଇ ପ୍ରବେଶ ହୋଇଲେ ସେଠାରେ
ରହିଲେ ପାପୁଚିବଟ ବୃକ୍ଷ ନିକଟରେ ।
ବଶିଷ୍ଠ ବୋଇଲେ ତୁ ହୋ ଶୁଣ ବୃକୋଦର
ଏ ପର୍ବତକୁ ଉପାଡ଼ି ଘେନି ଗଦା ତୋର ।
ତେଣୁ ଦେଖି ପଳାଇଲି ତାହାଠାରୁ ବୁଝି
ଭୟେ ଲୁଚିଅଛି ଏବେ ମେରୁ କ୍ରୋଟ ମଝି ।
ଶୁଣି ବୃକୋଦର ବେଗେ ଗଦାବର ତୋଳି
ତାଡ଼ନ୍ତେ ସେ ଗିରିବର ପଡ଼ିଲାକ ଢଳି ।
ଫରୁଆରୁ ଭିତରଟି ଯେଉଁପରି ଖୋଳ
ସେହି ଖୋଳର ଉସର୍ଗ ଅଟେ ନବତଳ ।
ତଳକୁ ଗଭୀର ତାର ଉଣେଇଶ ବାଡ଼ି
ଅଠାଇଶ ତାଳଯାଏ ଧନ ଅଛି ପୁରି ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଯୁଧିଷ୍ଠି ରାଜନ
ବଶିଷ୍ଠ ବୋଇଲେ ଯାଗ କର ନେଇ ଧନ ।
ଯୁଧିଷ୍ଠି ବୋଇଲେ ଯାଗ ମୋର ଧର୍ମ ଅର୍ଥେ
ପରଧନ ଏହା ମୁହିଁ ନେବଇଁ କେମନ୍ତେ ।
ବୋଲନ୍ତି ବଶିଷ୍ଠ ଶୁଣ ଧର୍ମ ନରପତେ
ପରଧନ ଆମ୍ଭେ କିମ୍ପା ଦେଖାଇବୁ ତୋତେ ।
ତୋହର ଉପର ବଂଶେ ଚନ୍ଦ୍ର ଯେ ଦେବତା
ତାର ତହୁଁ ଉପୁଜିଲା ସୋମ ନାମେ ପୁତା
ସୋମର ନନ୍ଦନ ବୁଧ ନାମେ ନରପତି
ପୁରୁରବା ନାମେ ଜାଣ ତାହାର ସନ୍ତତି ।

ପୁରୁରବାର ନନ୍ଦନ ଆୟ ମହାରାଜା
ନହୁଷ ବୋଲି ହୋଇଲା ତାହାର ତନୁଜା ।
ନହୁଷର ନନ୍ଦନ ଯେ ହୋଇଲେ ଯଯାତି
ମାନଧାତା ନାମେ ନୃପ ତାହାର ସନ୍ତତି ।
ସାତଲକ୍ଷ ସତାଣୋଇ ସହସ୍ର ବରଷ
ସତ୍ୟଯୁଗ ଭୋଗିଲେ ସେ ହୋଇ ନରଈଶ ।
ତ୍ରେତୟାରୁ ତେରଲକ୍ଷ ବତ୍ରିଶ ହଜାର
ସେ ମାନଧାତା ଭୋଗିଲେ ହୋଇ ନରେଶ୍ୱର ।
ତାଙ୍କ ପଞ୍ଚାଶତ ପଞ୍ଚଚାଳିଶ ଅଙ୍କରେ
ଉଦ୍ଧରସ ବୋଲିଣ ଯେ ଏକ ସମ୍ବତ୍ସରେ ।
କାର୍ତ୍ତିକ କୃଷ୍ଣପକ୍ଷ ଯେ ଚତୁର୍ଥୀର ତିଥି
ରୋହିଣୀ ନକ୍ଷତ୍ର ବାର ଅଟେ ବୃହସ୍ପତି ।
ପୁଣ୍ୟତୋୟା କୂଳେ ସେ ନୀରୁତସେନ ନୃପ
ଯାଗ କରିବାକୁ ମନେ କଲେ ସଙ୍କଳପ ।
ଯାଗନିକେ ଆମ୍ଭଙ୍କୁ ସେ କରିଲେ ବରଣ
ମୁଁ ବୋଇଲି ବିଶ୍ୱାମିତ୍ର କରୁ ସମାଧାନ ।
ଅକାଳେ ଅକାମେ ବ୍ରହ୍ମପଦ ସେ ଇଚ୍ଛନ୍ତି
ଯାଗନିକ ବରିଲେ ସେ ଆସିବେ ଝଟତି ।
ନାରଦ କହିଲେ ଯାଇ ପିତାମହ ଆଗେ
ବିଶ୍ୱାମିତ୍ର ତପେ ଚଳି ଯାଉଛନ୍ତି ବେଗେ ।
ଉତ୍ତାନ ପର୍ବତେ ବସିଛନ୍ତି ବୃହସ୍ପତି
ତାହାଙ୍କୁ ବରଣ କର ଉତ୍ତମ ଅଟନ୍ତି ।
ଆମ୍ଭ ବଚନରେ ଗଲା ସେ ମରୁତ ରାୟେ
ଦେଖିଲାକ ବୃହସ୍ପତି ବସିଛନ୍ତି ଲୟେ ।
ନୃପତି ଛାମୁକୁ ଯାଇ ପ୍ରଣାମ କରନ୍ତି
ସୋମବଂଶୀ ବଳ ଦେଖି ପୁଣି ସେ ବାଞ୍ଛନ୍ତି ।
ମରୁତସେନ ବୋଇଲା ଶୁଣ ବିଶ୍ୱାମିତ୍ରେ
ଯାଗ କରନ୍ତେ ଇଚ୍ଛନ୍ତି ଆଜ୍ଞା ଦିଅ ମୋତେ ।
ପୁଣି ନୃପତି ବୋଇଲା ଅତି ଅନୁରାଗେ
ତୁମ୍ଭେ ଯାଗନିକ ଗୁରୁ ହୁଅ ମୋର ଯାଗେ ।
ବୃହସ୍ପତି ବୋଇଲେ ତୁ ମର୍ତ୍ତ୍ୟେ ଜାତ ହୋଇ
ଆମ୍ଭଙ୍କୁ ବରଣ କରୁ ଜ୍ଞାନ ତୋର ନାହିଁ ।
ନର ପାମର ସିନାରେ ତୁମ୍ଭକୁ ହିଁ ଜାଣି
କିସ ଯାଗ ତୋର ତୁହି କରିବୁ ହେ ପୁଣି ।
ବହୁତ ଝିଙ୍ଗାସ କଲେ ତାକୁ ବୃହସ୍ପତି
ଲଜ୍ଜା ପାଇଲଣ ସେ ସୋମବଂଶ ନରପତି ।
ଲାଜେ ଚରଣ ଛାମୁରେ ନ ପାରଇ କାଢ଼ି
ବୃହସ୍ପତି ଅନ୍ତର୍ଦ୍ଧାନେ ଗଲେ ତହୁଁ ଛାଡ଼ି ।
ଦିଗମ୍ବର ହୋଇ ରାଜା ଭାଳଇ ବିଷାଦେ
ଏସନ ସମୟେ ଯାଇ ମିଳିଲେ ନାରଦେ ।

ବିଷାଦେ ସମସ୍ୟା ଦେଇ ନ ପାରଇ ରାୟେ
ବିକଳେ ବିନୟୀ ହେଲା ନାରଦଙ୍କ ପାୟେ ।
କିମର୍ଥେ ମରୁତସେନ ତୋହର ବିଷାଦ
ପ୍ରଜାମାନଙ୍କର ତୁ କି କଲୁ ଅପରାଧ ।
ପ୍ରଜାଙ୍କ ଅବିଧି କଲେ ରାଜା ପାଏ କଷ୍ଟ
ଆପେ ପୁଣି ନାଶଯାଇ ଉପୁଜେ ଅନିଷ୍ଟ ।
ଯାଗ ନ କଲୁକି ଶସ୍ୟହୀନ ମହୀତଳ
ମେଘ ନ ବର୍ଷିଲେ ପ୍ରଜା ହୁଅନ୍ତି ବିକଳ ।
ମରୁତସେନ ବୋଇଲା ଶୁଣିମା ନାରଦେ
ଅଶ୍ୱମେଧ ଯାଗ ଅନୁକୂଳ କଲି ହାଦେ ।
ବରଣ କଲି ବଶିଷ୍ଠ ଋଷିଙ୍କୁ ମୁଁ ଆଗେ
ବିଶ୍ୱାମିତ୍ରଙ୍କ ଝଗଡ଼େ ଗଲେ ସେହି ରାଗେ ।
ବୃହସ୍ପତିଙ୍କି କହିଲେ ବରଣ ନିମନ୍ତେ
ଅନେକ ଝିଙ୍ଗାସି ପୁଣି ବୋଇଲେ ସେ ମୋତେ ।
ନାରଦ ବୋଇଲେ ଦୁଃଖ ନ କରୁ ତୁ ଚିତ୍ତେ
ଆମ୍ଭ ତୋର ଯାଗେ ଋଷି ଜଣେ ଦେବା ତୋତେ ।
ମରୁତ ବୋଇଲେ ଯେବେ ଆଜ୍ଞା ଦେବୁ ଋଷି
ମୁହିଁ ନ ବରିବି କେବେ ବୃହସ୍ପତି ବଂଶୀ ।
ମୁନି ବୋଇଲେ ଜଣେ ହେଁ ବରଣ ତୁ କର
ତା ନୋହିଲେ ଯାଗ ନଷ୍ଟ ହୋଇବ ତୋହର ।
ଏମନ୍ତ କଥା ଭୋ ରାୟେ ନ ବୋଲ ତୁ କିଛି
ବୃହସ୍ପତିଙ୍କ ଉତ୍ତମ ପୁତ୍ରେକ ଯେ ଅଛି ।
ବଡ଼ଇ ପଣ୍ଡିତ ନାମ ତାହାଙ୍କର କଚ
ତାହାଙ୍କୁ ବରିଲେ କିଛି ନାହିଁ ଉଚ୍ଚ ବାଚ ।
ପାଠ ପଢ଼ାଇଲେ ତାକୁ ଯହୁଁ ବୃହସ୍ପତି
ଅକ୍ଷୟ ବାଳୁତ ଯେଣୁ ଛନ୍ନ ଛନ୍ନ ମତି ।
ତୁହି ଏବେ ଏହିକ୍ଷଣି ଚଳିଯା ତୁରିତେ
ଏତେବେଳେ ବସିଛନ୍ତି ସେ ମେରୁପର୍ବତେ ।
ଶ୍ରୀକରେ ତୁ ଘେନିଯିବୁ ତୋର ଅସିପତ୍ର
ତୋତେ ଦେଖି ପଳାଇବ ସେ ବହୁତ ପଥ ।
ନିଉନ ହୋଇଲେ ତୋତେ କରିବ ସେ କୋପ
କିମ୍ପାଇ ଅଇଲୁ ବୋଲି ଦେବ ଅଭିଶାପ ।
ତୋତେ ସେ ଦେଖିଲା ମାତ୍ରେ ପଳାଇ ବଡ଼ରେ
ଏସନ ତୁ ମୂର୍ତ୍ତିମନ୍ତ ହୋଇବୁ ଛାମୁରେ ।
ଥୋକାଏ ଦୂରୁ ସେ ତୋତେ ଚାହିଁବ ଲେଉଟି
ଝୁଣ୍ଟି ବାଟେ ପଡ଼ିବ ସେ ବାଳପୁଅ ଗୋଟି ।
ଖଡ୍ଗ ବୁଲାଇ ପ୍ରବେଶ ହେବୁ ତା ଆଗର
ପ୍ରତିଉତ୍ତର ଦେବୁ ସେ ହୋଇଣ କିଙ୍କର ।
ପ୍ରଣମିତ ହୋଇବୁ ତୁ ତେତେବେଳେ ତାଙ୍କୁ
ବରଣ କରିବୁ ତୁହି ତୋହର ଯାଗକୁ ।

କହିଣ ନାରଦ ମୁନି ଗଲେ ଅନ୍ତର୍ଦ୍ଧାନେ
ମରୁତସେନ ରାଜନ ଗଲା ଅନ୍ତର୍ଦ୍ଧାନେ ।
ଆକାଶେ ଗଙ୍ଗାରେ ମୁନି ସନ୍ଧ୍ୟା କରୁଥିଲେ
ନୃପତିର ମୂର୍ତ୍ତି ଦେଖି ଭୟେ ପଳାଇଲେ ।
କେଶମୁକୁଳା ବସନ ପଡ଼ଇ ଯେ ଖସି
ପଳାଇଲା ବାପ ବାପ ବୋଲି ବାଳଶିଷି ।
ବିଶାଶତେ ଯୋଜନେ ଯେ ଚାହିଁଲା ଲେଉଟି
ଲେଉଟି ଚାହାଁନ୍ତେ ତଳେ ପଡ଼ିଗଲା ଝୁଣ୍ଟି ।
ଖଡ଼ଗ ଘେନି ଗମଇ ପଛେ ମହାରାୟେ
ମୂର୍ତ୍ତି ଧରି ଆକ୍ରୋଶିଲା ରାହୁ ତେଜ ପ୍ରାୟେ ।
ଦନ୍ତେ ତିରଣ ସେ ଧରି ବୋଲେ ରଖ ରଖ
ତୁ ମହାତମା ନ ମାର ମୁଁ ଅଟେ ନିରେଖ ।
ସନ୍ନିଧେ ପାଇ ଚାହିଁଲା ତାହାର ବଦନ
କଚକୁମର ବୋଇଲା ତୁ ମରୁତସେନ ।
ବିଶ୍ୱାମିତ୍ର ଅଭିଶାପେ କଳ୍ମଷ ରାଜନ
ରାକ୍ଷସ ହୋଇ ଭକ୍ଷିଲା ବଶିଷ୍ଟ ନନ୍ଦନ ।
ତେଣୁ ଦେଖି ପଳାଇଲି ତାହା ପରି ବୁଝି
ଭୟେ ଲୁଚିଅଛି ଏବେ ମେରୁକ୍ରୋଟ ମଝି ।
ଶୁଣି ମରୁତସେନ ଯେ କଲା ପ୍ରଣିପାତ
କରିବି ମୁଁ ଅଶ୍ୱମେଧ ଯାଗ ତପୋବନ୍ତ ।
ଆସିଲି ଯାଜ୍ଞିକପଣେ ତୁମ୍ଭଙ୍କୁ ବରିବି
ଅନେକ ଦୁଃଖ ପାଇଲି ତୁମ୍ଭଙ୍କୁ ସେବିବି ।
କଚ ବୋଇଲେ ବରଣ ଘେନିଲି ମୁଁ ରାଜା
ଆମ୍ଭ ସରିକି ତୋହର ଯୋଗାଡ଼ କର ଯା ।
ସର୍ବ ସମ୍ଭାଦି କହିବୁ ମୋହର ଅଗ୍ରତେ
ମୁହିଁ ଥିବି ମଣିଚୂଡ଼ ନାମେ ପରବତେ ।
ଯଥାବିଧିରେ ବରଣ କର ସୋମବଂଶୀ
ଏହା କହି ବରଣ ସେ ନେଲେ ବାଳଶିଷି ।
ବିଜୟ ମରୁତସେନ ଯାଇ ଇନ୍ଦ୍ରପ୍ରସ୍ଥେ
କରଇ ଯେ ଯୋଗ ଧୌମ୍ୟ ପୁରୋହିତ ମତେ ।
ଚଉଦ ବରଷେ ରାଜା ସବୁ ସମ୍ଭାଦିଲା
କଚରଷି ସନ୍ନିଧିରେ ପ୍ରବେଶ ହୋଇଲା ।
ଅନେକ ଦୂରରେ ଥାଇ ଡାକଦେଲେ ନୃପ
ମୁଁ ମରୁତସେନ ମୋତେ ନ କରିବା କୋପ ।
ଗହ ଗହ ଶବଦରେ ଶୁଭିଲାକ ବାଣୀ
ଆସନ କମ୍ପନ୍ତେ କଚ ଧ୍ୟାନେ ତାହା ଜାଣି ।
କ୍ଷଣକେ ବାଳୁତ ପୁଣି କ୍ଷଣକେ ସେ ଜ୍ଞାତା
ମନ କଲେ ଦୃଶ୍ୟ ହୁଏ ବ୍ରହ୍ମାଣ୍ଡ ବାରତା ।
ଏକାଳେ ମରୁତସେନ ଚରଣେ ପ୍ରଣମି
ଇନ୍ଦ୍ରପ୍ରସ୍ଥକୁ ବିଜୟେ କର ଦେବସ୍ୱାମୀ ।
ରାଜାର ବଚନ ଶୁଣି ବୋଇଲେ ସେ କଚ
ତୁହି ଆଗ ହୋଇଥାଅ ମୁଁ ହେଉଛି ପଛ ।
ପଥ ଅତି ଦୁର୍ଗମ ତୁ ଆଗେ ଚଳ ବାବୁ
ଇନ୍ଦ୍ରପ୍ରସ୍ଥେ ଯାଅ ନାହିଁ ଆମ୍ଭଙ୍କୁ ଦେଖିବୁ ।
ଏତେ ବୋଲି କଚରଷି ଅନ୍ତର୍ଦ୍ଧାନ ହେଲେ
ମନଯାନ ଚଢ଼ି ଯାଗେ ପ୍ରବେଶ ହୋଇଲେ ।
ମରୁତସେନ ପ୍ରବେଶ ହୋଇ ସ୍ୱରାଜ୍ୟରେ
କଚକୁ ଦେଖିଲା ବସିଅଛନ୍ତି ସେଠାରେ ।
ଆଶ୍ଚର୍ଯ୍ୟ ହୋଇଣ ପଚାରଇ ଦଣ୍ଡଧାରୀ
ଆଗେ କିପରି ଅଇଲ ଆହେ ତପଚାରୀ ।
ସେ ବୋଲେ ମୋର ମହିମା ନ ଜାଣୁ ମରୁତ
ମନ ଯଥା ଗମେ ମୋର ଗମନ ସେ ମତ ।
ତହୁଁ ଦେଖାଇଲେ ଯାଗ ସମ୍ପଦ ନରେନ୍ଦ୍ର
ଦେଖି ଉପହାସ କଲା ମୁନି କୁଳଚନ୍ଦ୍ର ।
ଭିଆଇଅଛୁ ତୁ ବଡ଼ ସମ୍ଭାର ନୃପତି
ଆଜି ଯାଗକୁ ଉତ୍ତମ ଜାଣ ଏ ଯୁକତି ।
ଅଶ୍ୱମେଧ ଯାଗ ରାଜା ନୁହେଁ ଏଣେ କରି
ଶୁଣି କରଯୋଡ଼ି ପୁଣି କହେ ଦଣ୍ଡଧାରୀ ।
କଚ ବୋଇଲେ ଯେବେ ତୁ ବରିବୁ ଆମ୍ଭଙ୍କୁ
ଆସ ହୋ ମରୁତ ଧନ ଦେବାକୁ ତୁମ୍ଭଙ୍କୁ ।
ବଦନ୍ତି ବଶିଷ୍ଠମୁନି ଶୁଣ ହୋ ଯୁଧିଷ୍ଠି
କଚ କଥାରେ ମରୁତସେନ ବେଗେ ଉଠି ।
ମହାଅରଣ୍ୟେ ପ୍ରବେଶ ହେଲେ ଦଣ୍ଡଧାରୀ
ସୌରାଷ୍ଟ୍ରବନ ସହସ୍ର ଯୋଜନ ଯେ ଚାରି ।
ବାରାତୀ ନଦୀର ପାଶେ ଚଉଦ ପର୍ବତ
କଚ ବୋଲେ ରାଜା ଏଥେ ହୁଅ ତୁ ଗୁପତ ।
ଅନ୍ୟ କାହାରିକୁ ତୁହି ନ ହୋଇବୁ ଦୃଶ୍ୟ
ଏଥେ ଥାଏ ମହାରୁଦ୍ର ନାମରେ ରାକ୍ଷସ ।
ମଣିଭଦ୍ର ବୋଲେ ପୁଣି ରାକ୍ଷସକେ ଅଛି
ବ୍ରାହ୍ମଣ କିବା ଚଣ୍ଡାଳ ସବୁ ଯାଏ ଭକ୍ଷି ।
ରୁଦ୍ର ସତ୍ୟଯୁଗେ କାଶୀବାସୀ ସେବା କଲା
ସତରଲକ୍ଷ ବରଷ ଲୁହା ସେ ଭକ୍ଷିଲା ।
ଭାବେ ତାକୁ ବର ଦେଲେ ଦେବ ସଦାନନ୍ଦ
ଈଶ୍ୱରଙ୍କୁ ମାଗିଲା ସେ ମହେଶ୍ୱର ପଦ ।
ଭୋଳେ ତାକୁ ବର ଦେଲେ ଦେବଗୁଣନିଧି
ମୋର ପଦ ଘେନି ଭୁଞ୍ଜି ଯେ ଅଛି ବାରିଧି ।
ହର ବର ପାଇ ଦୈତ୍ୟ ସିନ୍ଧୁକୁ ଗମିଲା
ବହୁ ଧନ ଆଣି ତହୁଁ ଭଣ୍ଡାର ରଖିଲା ।
ତୁ ଏଥି ମରୁତ ରାଜା ରହିଥାଅ ଦଣ୍ଡେ
ଆମ୍ଭେ ଏଥୁ ଯାଇ ଘେନି ଆସୁ ରତ୍ନଖଣ୍ଡେ ।

ଏହି ପର୍ବତ ଉପରେ ଗୁପ୍ତେ ରହିଥିବୁ
ଆମ୍ଭର ଡାକ ଶୁଣିଲେ ବହନ ତୁ ଯିବୁ ।
ଏତେ କହି କଚ ତହୁଁ ବେଗେ ଚଳିଗଲେ
ଚଉଦ ପର୍ବତେ ଯାଇ ପ୍ରବେଶ ହୋଇଲେ ।
ନିଦ୍ରାରେ ସେ ମଣିଭଦ୍ରା ନ ଜଣାଇ କିଛି
ଭୟେ ଥୋକାଏ ଦୂରରେ କଚଋଷି ଅଛି ।
ଜୀବସବୁ ଆତଯାତ ହେଲେ ଯେତେବେଳେ
ଚିଆଇଁ ଉଠି ବସିଲା ଅସୁର ଚଣ୍ଡାଳେ ।
ଦଇତ୍ୟ ଜିହ୍ୱାରୁ ନୀର ସ୍ରବିଲାକ ଯହୁଁ
ଚଣ୍ଡାଳ ଅସୁର ବେଗେ ଚିଆଁଇଲା ତହୁଁ ।
ବୋଇଲେ ଅସୁର ଭଲକଲୁ ଆରେ ଦ୍ୱିଜ
ତିନିଦିନ ହେଲା ମୋର ନାହିଁ ନରଭୋଜ୍ୟ ।
ତୋର ମାଂସ ଭକ୍ଷିଲେ ମୁଁ ହୋଇବି ଯେ ସୁସ୍ଥ
ଆସ ଆସ ମହାତ୍ମା ତୁ ଅଜ୍ଞାନ ବାଳୁତ ।
କଚ ବୋଇଲାକ ମୋତେ ଭୁଞ୍ଜାକିନା ବାବୁ
ପଦାର୍ଥେକ ମାଗିବଇଁ ମୋତେ ଦାନ ଦେବୁ ।
ମଣିଭଦ୍ରା ବୋଇଲାକ ଯେଣେ ତୋର କାର୍ଯ୍ୟ
ମୁହିଁ ତାହା ନିର୍ଭା କରି ଦେବି ଆହେ ଦ୍ୱିଜ ।
ଋଷି ବୋଇଲେ ମରୁତସେନ ନୃପମଣି
ଇନ୍ଦ୍ରପ୍ରସ୍ଥେ ଅଶ୍ୱମେଧ କରିବ ସେ ପୁଣି ।
ମୋତେ ସେ ବରିଛି ଆଜ ଯାଗନିକ ପଣେ
ଧନ ନ ଅଣ୍ଟିଲା ଆସିଅଛି ସେ କାରଣେ ।
ମଣିଭଦ୍ର ବୋଇଲା ମୁଁ ଅଟଇ ରାକ୍ଷସ
ମୋହର ନିଜ ଆହାର ଅଟେ ମଧୁମାଂସ ।
ବିଶେଷେ ବ୍ରାହ୍ମଣ ତୁହି ବେଦମନ୍ତ୍ରେ ସିଦ୍ଧି
ବ୍ରାହ୍ମଣ ମାଂସ ଭକ୍ଷିଲେ ନ ରହଇ ବ୍ୟାଧି ।
ଯତନେ ଲୋଡ଼ି ଆମ୍ଭେ ଯେ ମଧୁମାଂସ ଭକ୍ଷୁ
ଏଡ଼େ ପ୍ରମାଦେ ପଡ଼ିଲ କିମ୍ପା ଦେଖୁ ଦେଖୁ ।
କଚ ବୋଇଲା ମୁଁ ଭୂତ ଭବିଷ୍ୟତ ଜ୍ଞାତା
ମୁଁ ଜାଣଇ ତୋର ସପ୍ତପୁରୁଷ ବାରତା ।
ପର ଉପକାର ମରଣକୁ ନ ଡରଇ
ସଦା ପରଦୁଃଖେ ମୁହିଁ ଦୁଃଖୀ ଯେ ଅଟଇ ।
ମଣିଭଦ୍ରା ବୋଲେ ଯେବେ ଦେବି ତୋତେ ଧନ
କିଏ ଏଥୁ ବହିନେବ ତୁ ମୋର ଭୋଜନ ।
କଚ ବୋଇଲା ମୁଁ ନିଜେ ଧନ ଘେନି ଯିବି
ମରୁତସେନକୁ ଦେଇ ପୁଣି ମୁଁ ଆସିବି ।
ବିଚାରେ ମଣିଭଦ୍ର ଏ ପରଦୁଃଖେ ଦୁଃଖୀ
ଆସିବ କି ନ ଆସିବ ବାରେ ତାହା ଦେଖି ।
ଏତେ ଭାବିଣ ଅସୁର କଚେ ଘେନିଗଲା
ହିରଣ୍ୟ ପର୍ବତେ ବାରାନିଧି ଦେଖାଇଲା ।

ଯେତେକେ ଅଣ୍ଟଇ ଧନ ହେ ବ୍ରାହ୍ମଣ
ଧନ ନେଇ ଦେଇଆସ ତୁ ଏଥେଁ ବହନ ।
ତୁ ଯେବେ ଆସିବୁ ମୋର ଆଜ ହେବ ଗ୍ରାସ
ନ ଆସିଲେ ପଞ୍ଚଆତ୍ମା ମୋର ଉପବାସ ।
ଏକ ନିଧିରେ କନକ ଅଛି ଦଶଲକ୍ଷ
ବୀରବୃତ୍ତି ପଣେ ତାହା ଭୋଗକଲା କଚ ।
ମରୁତସେନ ରାଜାର ସନ୍ନିଧେ ମିଳଇ
ଦେଖି ସହସ୍ର ପ୍ରଣାମ କରେ ନରସାଇଁ ।
କଚ ବୋଇଲା ତୁ ଧନ ବହି ଘେନିଯାଅ
ଶୁଭେ ନିଜ ରାଜ୍ୟେ ଯାଇ ତୁହି ରହିଥାଅ ।
ତହୁଁ ସେ ବନରୁ ଖେଦିଆଣି ମହାରାଜ
ବହନ କରିଲା ରାଜା ଦଶଲକ୍ଷ ଗଜ ।
ଧନଯାକ ଲଦି ସେହି ଗଜଙ୍କ ଉପରେ
ମରୁତସେନ ଚଳିଲା ଆନନ୍ଦ ମନରେ ।
କଚ ମୁନି ବୋଇଲେ ହେ ଶୁଣ ମହାରାୟ
ଅଶ୍ୱମେଧ ଯାଗକୃତେ ବେଗ ହୋଇଯାଅ ।
ରାଜା ବୋଲେ ଯାଗନିକ ଅଟନ୍ତି ଆପଣ
ମୁଁ ଆଗରେ ଗଲେ କିସ ହେବ ପ୍ରୟୋଜନ ।
କଚମୁନି ବୋଇଲେ ମୁଁ ଯିବି ଆଉ କାହୁଁ
ଏ ଧନ ଆଣିଲି ମୁହିଁ ମଣିଭଦ୍ରା ତହୁଁ ।
ତାହାର ଆଜକୁ ତିନିଦିନ ଉପବାସ
ମୋତେ ଭକ୍ଷିଲେ ତାହାର ଆତ୍ମା ହେବ ତୋଷ ।
ତୋ କାର୍ଯ୍ୟ ନିମନ୍ତେ ବେଗେ ଅଇଲଇଁ ମୁହିଁ
ମୋହର ଯିବାକୁ ସେହି ବାଟ ଥିବ ଚାହିଁ ।
ଏହା ଶୁଣି ବୋଲେ ଏହି ବହନ୍ତି କି ଲୋକେ
ତୁମ୍ଭେ କିମ୍ପା ଯିବ ଦୈତ୍ୟକରୁ ତହିଁ ଭୋକେ ।
ଆପେ ମରି ପରକୁ ଯେ ଦୟା କରିବାର
କେବେ ଏହା ଶୁଣିନାହିଁ ଆହେ ମୁନିବର ।
କଚ ବୋଇଲା ସେ ମୋତେ କରିଅଛି ଆଶ
ନ ଗଲେ ଧର୍ମ ମୋହର ହୋଇବ ବିନାଶ ।
ଅନେକ ବୈକୁଲ୍ୟ ହୋଇ ବୋଲେ ନୃପମଣି
କଚ ନ ଶୁଣେ ମରୁତସେନ ରାଜା ବାଣୀ ।
ଭୟେ କଣ୍ଠ ଶୁଷ୍କ ରାଜା ନ ପାରିଲା ଚାଲି
ବୋଇଲା ଆଚ୍ଛା ତ ଅଶ୍ୱମେଧ ଯାଗ କଲି ।
ଅନେକ ବୁଝାଇ କହେ ରାଜାକୁ ଯେ କଚ
ପାଷାଣର ରେଖା ଜାଣ ମହତମା ବାଚ ।
ବାଚା ବିଚଳିତ ହୁଏ ଯେଉଁ ପୁରୁଷର
କିସ ତାର ଧର୍ମ କିସ ତପସ୍ୟା ତାହାର ।
ଏତେ ବୋଲି କଚ ଘୋର ବନକୁ ଚଳିଲେ
ହିରଣଗର୍ଭ ପର୍ବତେ ସଧୀରେ ଉଠିଲେ ।

ବିଳମ୍ବ ଦେଖି ବୋଇଲା ମୁଁ ବଡ଼ ମୂରୁଖ
ଦେଖୁ ଦେଖୁ ଉପେକ୍ଷିଲି କରିଥିଲା ଭୋକ ।
ଚାଳିଶ ଯୋଜନଯାଏ କେହି ମୋର ଡରେ
ପଶି ନ ପାରନ୍ତି କାହୁଁ ଆସେ ପୁନର୍ବାରେ ।
ଅପାରବେଳେ ଅସୁର ଚାହିଁଲାକ ବାଟ
ନ ଦେଖି ନିରାଶ ହୋଇ ବାନ୍ଧେ ପୁଣି ଆଣ୍ଟ ।
ଏମନ୍ତ ସମୟେ ଯାଇଁ ମିଳିଲେ ସେ ଦ୍ୱିଜ
ତାକୁ ଦେଖି ମଣିଭଦ୍ର ହୋଇଲା ଆଶ୍ଚର୍ଯ୍ୟ ।
ଏକ ଦୃଷ୍ଟିରେ ତାହାକୁ ଚାହିଁ ବିଚାରଇ
ବାଳୁତ ହୋଇ ଉତ୍ତମ ସାଧୁ ଏ ଅଟଇ ।
ଗିରିବର ଉପରକୁ ଉଠିବା ସମୟେ
ମଣିଭଦ୍ର ବୋଇଲା ତୁ ଅଇଲ ପଣ୍ଡାଏ ।
ମାତା ପିତା ସ୍ତିରୀକିରେ ନାହିଁ ତୋର କେହି
କେମନ୍ତେ ମୁରୁଛି ତୋତେ ଛାଡ଼ିଦେଲେ ସେହି ।
ବ୍ରାହ୍ମଣ ହୋଇ ତୁ ପୁଣି ଏଡ଼େକ ନିର୍ଭୟ
ଏଠାକୁ ତୁ ଆସିବାକୁ ନ କରୁରେ ଭୟ ।
ଏହା ଶୁଣି କଚ ବୋଲେ କିଛି ନ ପଚାର
ଶୀଘ୍ର ମୋତେ ଖାଇ ତୋର ଆତ୍ମା ତୃପ୍ତି କର ।
ମଣିଭଦ୍ର ବୋଇଲେ ମୁଁ କ୍ଷୁଧାରେ ଆତୁର
ବଡ଼ ଦୁର୍ଲ୍ଲଭ ଦେଖିଲି ମହିମା ତୋହର ।
ମନୁଷ୍ୟ ହୋଇ ପୁଣି ତୁ ଏଡ଼େକ ମହତ
ତୋତେ ଭକ୍ଷିବାକୁ ମୋର ନ ବଳଇ ଚିତ୍ତ ।
କଚ ବୋଇଲା ତୁ ପୁଣି ହୋଇ ବହୁ ଭୋକୀ
ମୋତେ ଛାଡ଼ିଲେ କ୍ଷୁଧାରେ ହେବୁ ବଡ଼ ଦୁଃଖୀ ।
କ୍ଷୁଧାର୍ଥୀ ଆତ୍ମାକୁ ଯେହୁ କରନ୍ତି ନିରାଶ
କହିଲେ ତ ନ ସରଇ ଏଥୁ ଯେତେ ଦୋଷ ।
ମଣିଭଦ୍ର ବୋଇଲା ମୁଁ ହୋଇଲି ତୃପତି
ବଚନେ ତୋଷିଲୁ ମୋତେ ତୁ ବାଳୁତ ଯତି ।
ହୋଇଲଇଁ ତୃପତି ଯେ ତୋତେ କଲି ତେଜ୍ୟା
ତୋହର ମନ୍ଦିରକୁ ତୁ ବେଗେ ଚଳି ଯା ଯା
ମଣିଭଦ୍ର ତେଜ୍ୟା କରି କଚ ତହୁଁ ଆସି
ବାଳୁତ ପ୍ରାୟ ବୁଲଇ ବନେ ବାଳଶିଷି ।
ପୀଡ଼ାଇଲେ ଏକପୁତ୍ର ବୋଲି ବୃହସ୍ପତି
ତେଣୁ ଅକ୍ଷୟ ବାଳୁତ ବିହ୍ୱଳିତ ମତି ।
ଏଥୁଅନ୍ତେ ଯେ ବିଲଙ୍କ ଦେଶ ମହାରାଜା
ଅଗସ୍ତି ମହାଋଷିଙ୍କ ପାଦେ କଲା ପୂଜା ।
ଅନେକ ଧନ ଘେନି ସେ ମରୁତ ଅଇଲା
କାହାକୁ ବରଣ କରି ଅଶ୍ୱମେଧ କଲା ।
କହନ୍ତି ଅଗସ୍ତି ଶୁଣ ମନୁ ମହାରାୟ
ଏ ବିଷ୍ଣୁ ପୁରାଣ ଶୁଣି ପାପ କର କ୍ଷୟ ।

ଅନେକ ମହାଋଷିଙ୍କୁ ବରିଲା ମରୁତ
କଚଙ୍କ ବରଣ ଶୁଣି ହେଲେ ସର୍ବେ ଭୀତ ।
ନାରଦ କହିଲେ ବୃହସ୍ପତିଙ୍କର ଆଗେ
ପୁତ୍ର କଷ୍ଟ ହେଲା ତୋତେ ମନ୍ଦକର୍ମ ଯୋଗେ ।
ସୋମବଂଶୀ ହେ ମରୁତସେନ ମହାରାୟ
ଦେବଯାଗ କରିବାକୁ ବରେ ତୋ ତନୟ ।
ଧନ କ୍ଷୀଣ ଦେଖି ତୋର ପୁତ୍ର କଚ ଗଲା
ମଣିଭଦ୍ରା ଦାନବକୁ ଧନ ଯେ ମାଗିଲା ।
ରାକ୍ଷସ ଭୋଜନ ହେଲା ଯେ ତୋହର ବାଳ
ତେଣୁ କଚକୁ ବନରେ ପଡ଼ିଲା କଟାଳ ।
ଶୁଣି କୋପ କଲେ ଦେବ ଗୁରୁ ବୃହସ୍ପତି
କରେ କବଚ ଧଇଲେ ହୋଇ କୋପମୂର୍ତ୍ତି ।
କୋପେଣ ପଣ୍ଡିତ ତହୁଁ ଧାମନ୍ତି ଗରଜି
ଯାଗଶାଳ ସହିତରେ ପକାଇଲେ ଭାଜି ।
ଅନେକ ଋଷି ଯେ ସେହି ଯାଗଶାଳେ ଥିଲେ
ବୃହସ୍ପତିଙ୍କର ଭୟେ ସର୍ବେ ପଳାଇଲେ ।
ମରୁତସେନ ନୃପତି ପଳାଇଲା ଡରେ
ଯାଇଣ ଲୁଚିଲା ସେହି ମନ୍ଦର କନ୍ଦରେ ।
ଶୁଣ ହୋ ଯୁଧିଷ୍ଠି ତହିଁ ଗୋଳ ହେଲା ଯହୁଁ
ଭାଙ୍ଗିଲା ଯାଗ ଆରୋପ ନୋହିଲାକ ତହୁଁ ।
ଶୁଣ ଆହେ ମହାରାଜା ବଦନ୍ତି ବଶିଷ୍ଠ
ମରୁତସେନ ରାଜାର ଯାଗ ହେଲା ନଷ୍ଟ ।
ଯେତେ ଧନ ସେ ମରୁତ ବହି ଆଣିଥିଲା
ପର୍ବତ ଖୋଳାଇ ଏହା ମଧ୍ୟେ ପୁରାଇଲା ।
ସୁବର୍ଣ୍ଣଭାଣ୍ଡ ରାନ୍ଧଣା ଯୋଗାଡ଼ ହିଁ ଯେତେ
ନଉତି ପଲମ ସରା କଳସୀ ସହିତେ ।
ସୁବର୍ଣ୍ଣର ଥାଳି ଗିନା ଖୋରି ଆଦି କରି
ସମସ୍ତ ରଖିଲା ଖୋଳି ପୁଣି ଏକ ଗିରି ।
ମରୁତସେନ ବୋଇଲା ଯେ ମୋହର ବଂଶେ
ଅଶ୍ୱମେଧ କରିବ ସେ ନେବ ଏହା ତୋଷେ ।
ଅନେକ ପୁରୁଷ ଏବେ ଗଲା ତୋର ବହି
ଅଶ୍ୱମେଧ କରିବାକୁ କେ ଭାଜନ ନୋହି ।
ବଶିଷ୍ଠ ବୋଇଲେ ତୁ ଯେ ପରଧନ ବୋଲୁ
ତଦନ୍ତ କରି ଏଥିର ଅର୍ଥ କହିଦେଲୁ ।
ତୋହର ଉପରବଂଶ ଅର୍ଜିତ ଏ ଧନ
ଏହା ଘେନି ଯାଗ କର ଯୁଧିଷ୍ଠି ରାଜନ ।
ବଶିଷ୍ଠ ବାକ୍ୟେ ଫିଟିଲା ତାଙ୍କ ମନୁ ଭ୍ରାନ୍ତି
ତହୁଁ ପାଣ୍ଡବମାନେ ଯେ ଧନ ଘେନିଯାନ୍ତି ।
ଚଉଦକୋଟି ଯେ ଘର ପୂର୍ଣ୍ଣ ପୁଣ୍ୟବଳେ
ସୁବର୍ଣ୍ଣ ଯୋଗାଡ଼ମାନ ନେଲେ ଯାଗଶାଳେ ।

ନମସ୍ତେ କମଳାପତି ନମସ୍ତେ ମୁରାରି
ଯେଉଁ ଦେବ ଏ ସଂସାର ହିତେ ଅବତରି ।
ସେ ଦେବ ପାଦପଙ୍କଜେ ନିତ୍ୟ ମୋର ସେବା
ନମଇଁ ଶାରଳା ଦାସ ଗତିମୁକ୍ତି ଦେବା ।

—୦—

## ଯୁଧିଷ୍ଠିରଙ୍କର ଅଶ୍ୱମେଧଯାଗ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଧନ ନେଇଣ ପାଣ୍ଡବେ ହୋଇଲେ ତୃପତି ।
ଏଥୁଅନ୍ତେ ଯୁଧିଷ୍ଠିର ସେ ଯାଗ ଆରୋପି
ସୁମରନ୍ତେ ବିଜେ କଲେ ଆସି ସର୍ବ ତପୀ ।
ସୁମନ୍ତୁକ ବିଶ୍ୱାମିତ୍ର ବାମଦେବ ମୁନି
ଚାରିଦ୍ୱାରେ ଯାଗନିକ ବଶିଷ୍ଠଙ୍କୁ ଘେନି ।
ସତୁରି ସହସ୍ର ଶିଷ୍ୟ ଘେନି ମାରକଣ୍ଡ
ନିର୍ମାଣ କରନ୍ତି ବସି ସେହି ଯାଗକୁଣ୍ଡ ।
ଦୁର୍ବାସାଙ୍କ ତୁଲେ ନଉସହସ୍ର ଯେ ଚେଲା
ଦ୍ୱିତୀୟ ଈଶ୍ୱର କି ଯେ ଯୋଗେ ବିଜେ କଲା ।
ବାଇଶି ସହସ୍ର ଶିଷ୍ୟ ଘେନି ମୁଁ ଆସିଲି
ଶୁକମୁନି ଜଇମିନି ଅଛନ୍ତି ଦେଖିଲି ।
ପୌଲସ୍ତି ବିଭାଣ୍ଡକ ଯେ ଧୌମ୍ୟ ଋଷିଶୃଙ୍ଗ
ସମସ୍ତେ ମିଳିଲେ ଶୁଣି ଯୁଧିଷ୍ଠିଙ୍କ ଯାଗ ।
ବ୍ୟାସଙ୍କୁ ସେ ସୁମରଣ କଲେ ଧର୍ମସୁତ
ଶୀଘ୍ର ଚଳିଲେ ସେ ଥିଲେ ଜଳଦ ପର୍ବତ ।
ଭାଳିଲେ ସବୁ କଥାରେ ସୁମରେ ଯୁଧିଷ୍ଠି
ଧାତିକାରେ ବିଜେ କଲେ ଘେନି ଶିଷ୍ୟଗୋଷ୍ଠୀ ।
ଷାଠିଏ ସହସ୍ର ଶିଷ୍ୟ ବ୍ୟାସଙ୍କର ତୁଲେ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଆସି ପ୍ରବେଶ ହୋଇଲେ ।
ପିତାମହ ଦେଖି ରାଜା ଛାଡ଼ିଲା ଆସନ
ଶତସହସ୍ର ପ୍ରଣାମ କଲା ପଣ୍ଡୁନାନ ।
ବ୍ୟାସେ ଯୁଧିଷ୍ଠିଙ୍କୁ ନେଇ ବସାଇଲେ କୋଳ
ପଚାରିଲେ ସେ ସମସ୍ତ ବାରତା କୁଶଳ ।
ଯୁଧିଷ୍ଠିର ଜଣାଇଲେ ବ୍ୟାସଙ୍କର ପାଦେ
ଅଶ୍ୱମେଧ କରିବି ମୁଁ ତୁମ୍ଭର ପ୍ରସାଦେ ।
ବ୍ୟାସ ବୋଇଲେ ତୋହର ଏ ଉଚିତ କର୍ମ
ଅଶ୍ୱମେଧ ଯୋଗୁ ବଳି ନାହିଁ ଆନ କର୍ମ ।
ରାଜସୂୟ ଯାଗ କଲୁ ତୋର ପୁଣ୍ୟବଳେ
ହତ୍ୟାଦୋଷ ଗଲା ପଣ୍ଡୁ ଗଲେ ସ୍ୱର୍ଗଆଳେ ।
ପୁଣି ବୋଇଲେ ବାବୁ ତୁ ଶୁଣରେ ଯୁଧିଷ୍ଠି
ଅଶ୍ୱିନୀ କୁମାରକୁ ତୁ ମାଗ ଅଶ୍ୱଗୋଟି ।
ଧର୍ମନନ୍ଦନ ଚିନ୍ତିଲେ ଯୋଗାସନ ଧ୍ୟାନେ
ଆସନ କମ୍ପୁ ଅଇଲେ ସେ ମଧ୍ୟ ଭୁବନେ ।
ଅଶ୍ୱିନୀ କୁମାର ଦେଖି କଲେ ସାଧୁ ସାଧୁ
ତୁ ମହାରାଜା ଯୁଧିଷ୍ଠି ତ୍ରୈଲୋକ୍ୟର ବନ୍ଧୁ ।
ଯାଗଙ୍କ ମଧ୍ୟରେ ଅଶ୍ୱମେଧ ଯାଗ ଶ୍ରେଷ୍ଠ
ଜ୍ଞାନ ମଧ୍ୟେ ଯେହ୍ନେ ବ୍ରହ୍ମଜ୍ଞାନ ହିଁ ଅତୁଟ ।
ଏ ଦୁଇରୁ ଶ୍ରେଷ୍ଠ ଆଉ ନାହିଁ ତ୍ରୟଲୋକେ
ଏକ ଯୋଗେ ବସନ୍ତି ତା ସଙ୍ଗେ ବୃନ୍ଦାରକେ ।
ଧର୍ମ ଅର୍ଥ କାମ ମୋକ୍ଷ ଅଟେ ଚାରିବିଧ
ଏ ଚାରିହେଁ ଏକ ମହାଯୋଗେ ହୋଇ ସିଦ୍ଧ ।
ଯୁଧିଷ୍ଠି ବୋଇଲେ ଶୁଣ ଅଶ୍ୱିନୀକୁମାର
କୁବଳୟା ଅଶ୍ୱ ଦିଅ ଯେ ଅଶ୍ୱରେ ସାର ।
ଏହା ଶୁଣିଣ କୁମାର ପ୍ରସନ୍ନ ହୋଇଲେ
ଅନେକ ବୁଝାଇ ତାଙ୍କୁ କୁବଳୟା ଦେଲେ ।
ଅଶ୍ୱକୁ ଘେନି ପାଣ୍ଡବେ ଆରମ୍ଭିଲେ ଯାଗ
ଅନୁକୂଳ କଲେ ବ୍ୟାସ ବହି ଅନୁରାଗ ।
ବ୍ୟାସ ବୋଇଲେ ତ୍ରୈଲୋକ୍ୟେ ତୁହି ଏକ ଦେବ
ଅନନ୍ତ ବ୍ରହ୍ମାଣ୍ଡେ ତୋତେ କେବଣ ଦୁର୍ଲ୍ଲଭ ।
ଅଶ୍ୱିନୀ କୁମାର ତୋର ଅଟନ୍ତି ଯେ ପିତା
ପରମେଷ୍ଠୀ ଆଦି କିଏ ବଚନ ମେଣ୍ଟନ୍ତା ।
ଏ ଅଶ୍ୱ ତୁଲେ କାହାକୁ ବରଗିବୁ ତୁହି
ପ୍ରମାଣ ଥିବୁ ଏ ଦେବ ଅଶ୍ୱଗୋଟାକୁ ହିଁ ।
ଶୁଣି ବୋଇଲେ ଚଳାଇଯାଉ ଅରଜୁନ
ଆସୁ ରାଜାମାନଙ୍କୁ ସେ ଦେଇ ନିମନ୍ତ୍ରଣ ।
ଏତେ ବୋଲୁଁ ବ୍ୟାସଦେବ ଅଇଲେ କିରୀଟୀ
ଅନେକ ତିଆରି ତାଙ୍କୁ କହିଲେ ଯୁଧିଷ୍ଠି ।
ବୁଲିବୁ ତୁ ଅଶ୍ୱ ସଙ୍ଗେ ଘେନି ସୈନ୍ୟଗଣ
ରାଜଗଣଙ୍କୁ ଯେମନ୍ତ ନିମନ୍ତ୍ରି ତୁ ଆଣ ।
ସବୁ ନୃପତି ପଡ଼ିଲେ ଆମ୍ଭ ଯୁଦ୍ଧକାଳେ
ବଳକା ରାଜା ଅଛନ୍ତି ଏ ମହୀମଣ୍ଡଳେ ।
ଯେମନ୍ତ ଭକ୍ତି କରନ୍ତି ସେହି କାଳରାୟ
ଅନ୍ତରେ ତାକୁ କେବଳ ଦେଖାଇବୁ ଭୟ ।
ଯଜ୍ଞାଦି ଉତ୍ସବମାନ ହୁଏ ଯେତେବେଳେ
ବହୁତ ଲୋକ ଆସନ୍ତି ତହିଁ ଏକମେଳେ ।
ତେବେ ସିନା ସହୋଦର ପଣରେ ରହଇ
ପଣ୍ଡିତ ଯେ କାର୍ଯ୍ୟକାଳେ ସମସ୍ତ ସହଇ ।
ଯାଅ ଧନଞ୍ଜୟ ହେଉ ତୋରରେ କଲ୍ୟାଣ
ସୁବୁଦ୍ଧିବେଳ ଘେନି ତୁ ରାଜାମାନ ଆଣ ।
ଆମ୍ଭେ ରହିଥିବୁ ବାବୁ ଏକାମ୍ର କାନନେ
ସେଠାରେ ଭେଟିବୁ ତୋତେ ବୁଝିରଖି ମନେ ।
ଏସନ ସମୟେ ତହୁଁ ଦୁର୍ବାସା ମହର୍ଷି
ଅର୍ଜ୍ଜୁନ ସନ୍ନିଧେ ବେଗେ ମିଳିଲେକ ଆସି ।

ପାର୍ଥଙ୍କୁ ବୋଇଲେ ସ୍ଥୂଳ ଚକ୍ଷୁ ତୁ ପାଇଛୁ
ଆମ୍ଭେ ପ୍ରଦାନ କରିବୁ ତୋତେ ଦିବ୍ୟଚକ୍ଷୁ ।
ଶତେ ଯୋଜନ ଥାଇ ତୁ ଚାହିଁଲେ ଫାଲଗୁନି
ବିଦିତ ହୋଇବ ତୋତେ ସମସ୍ତ ଯେ ପୁଣି ।
ଏହିଠାରୁ ଯାଅ ତୁହି ଏକାମ୍ର କାନନେ
ସେ ସ୍ଥାନରୁ ଫଳ ଏକ ଆଣ ତୁ ବହନେ ।
ଦୂରେ ଥାଇ ଜାଣିବୁ ତୁ ସବୁ ସବ୍ୟସାଚୀ
ଯେ ଫଳ ଇଚ୍ଛା ତାହାକୁ ଆଣିବୁ ତୁ ବାଛି ।
ଏହା ଶୁଣି ଅରଜୁନ ଗଲା ତତକ୍ଷଣି
କାନନରୁ ଏକଗୋଟି ଫଳ ତହୁଁ ଆଣି ।
ଦୁର୍ବାସାଙ୍କ ହସ୍ତେ ସେହି ଫଳଗୋଟି ଦେଲେ
ଦୁର୍ବାସା ଋଷି ସେ ଫଳ ଗୋଟିକ ମନ୍ତ୍ରିଲେ ।
ଅର୍ଜ୍ଜୁନ ଧରନ୍ତେ ଫଳ ଶିବଦୂତୀ ମିଳି
ଦିବ୍ୟଚକ୍ଷୁ ଦେଲେ ତାକୁ ହୋଇ କୁତୂହଳୀ ।
ଅର୍ଜ୍ଜୁନକୁ କହିଲେ ତୁ ଶୁଣ ଫାଲଗୁନି
ଶତେ ଯୋଜନ ତୁ ଦେଖି ପାରିବୁ ସଇନି ।
ଏତେ ବୋଲି ତହୁଁ ଚଳିଗଲେ ଶିବଦୂତୀ
ଚଳଇ ତହୁଁ ବିଚିତ୍ରବୀର୍ଯ୍ୟର ଯେ ନାତି ।
ଶ୍ରୀଭୁଜେ ଗାଣ୍ଡିବ ଧନୁ ତୂଣ ଦେଲେ କଷି
ଅନେକ ରତ୍ନ ମଣ୍ଡିଲେ ଅଶ୍ୱଦେହେ ଆସି ।
ବହୁତ ବର୍ଣ୍ଣ ଚାମର ସୁବର୍ଣ୍ଣ ବିକର୍ଣ୍ଣ
ତହିଁର ସଙ୍ଗେ ମୁକୁତା ରତ୍ନ ଖଞ୍ଜା ଜାଣ ।
ଏସନକ ଅଶ୍ୱ ମଣ୍ଡି ଚଳାଇଲା ବେଗେ
ଚଳଇ ସେ ଯୁଗଧର ପଦନୁ ଉଦ୍‌ବେଗେ ।
ଶ୍ରୀବଟୀ ବଟର ତଳେ ତିଆରନ୍ତି ବ୍ୟାସେ
ଲକ୍ଷେକ ରାଜା ଆଣିବୁ ବିଛା ଧନୁମାସେ ।
ମକରମାସରେ ଶେଷ ହୋଇବ ଆହୃତି
ଯାଅ ଯାଅ ବୋଲି ଆଜ୍ଞା ଦେଲେ ମହାଯତି ।
ଆଦ୍ୟେ ପ୍ରବେଶ ପଶ୍ଚିମେ ଯହିଁ ସୋମନାଥ
ଦର୍ଶନ କରି ପ୍ରଣାମ କଲେ ତାଙ୍କୁ ପାର୍ଥ ।
ଦେଖିଲି ହେ ଯୋଗେଶ୍ୱର ତୋତେ ପ୍ରଥମରେ
ଜଗତକାରଣ ନାଥ ପଡ଼େ ତୋ ପୟରେ ।
ଅଭୟ ନିରାକାର ତୁ ପରଂବ୍ରହ୍ମ ଯୋଗୀ
କିଞ୍ଚିତ ଦୋଷ ତୁ ଦେବ ମାୟାଦର୍ପ ଭାଙ୍ଗି ।
ଜଗତ ସୋଦର ଦେବ ତୁ ପରମ ବନ୍ଧୁ
ସଂସାର ଅନ୍ଧକାରକୁ ତୁହି ଦେବ ଇନ୍ଦୁ ।
ସ୍ୱାମୀ ଚାରିଯୁଗେ ତୋତେ ଏକଇ ନିମିଷ
ବ୍ରହ୍ମା ଦେବତାଙ୍କୁ ହୁଏ ଏକଇ ଦିବସ ।
ନାରାୟଣ ଦେବତାଙ୍କୁ ହୁଏ ଦଣ୍ଡ ଦଶ
ଦେବତାମାନଙ୍କୁ ହୁଏ ସହସ୍ର ବରଷ ।
ଦେବତାମାନଙ୍କୁ ଯେତେବେଳେ ହୁଅ ଅର୍ଦ୍ଧେ
ତେତେବେଳେ ହୁଏ ତୋର ନିଃଶ୍ୱାସର ଅର୍ଦ୍ଧେ ।
ତୋତେ ଯେବେ ସହସ୍ରେକ ବରଷ ହୁଅଇ
ସଚରାଚର ବ୍ରହ୍ମାଣ୍ଡ ପ୍ରଳୟେ ବୁଡ଼ଇ ।
ସ୍ୱାମୀ ଦିବ୍ୟ ରୂପ ଧରୁ ତୁ ସଂସାର ଅର୍ଥେ
ଭବଂ ଭୂତନାଥ ଚିନ୍ତାବାକ୍ୟ କିସ ତୋତେ ।
ଏ ତୋହର ଚିହ୍ନବର୍ଣ୍ଣ ନ ଜାଣନ୍ତି କେହି
ତେଣୁ ଅନୁକୂଳ ଗୋତ୍ର ନିର୍ମଳ ତୋ ଦେହୀ ।
ମୁଁ ଯାହା ଜାଣଇ ସର୍ବ ହୁଏ ତୋର ସିଦ୍ଧି
ଅକିଞ୍ଚନ ଜନର ତୁ କରୁଣା ବାରିଧି ।
ସମସ୍ତ ପରକୁ ଦେବ ଇଚ୍ଛିଲା ଲେଙ୍ଗଟା
ଅଙ୍ଗେ ପାଂଶ ବୋଲି ଶିରେ ବାନ୍ଧିଅଛ ଜଟ ।
ତୁ ଦେବ ପରମାନନ୍ଦ ପୁରୁଷ ଉତ୍ତମା
ଶରଣ ରକ୍ଷଣ ଜନ୍ମେ ଜନ୍ମେ ତୁମ୍ଭ ବାନା ।
ଅଦ୍ଭୁତ ସାଧନ ତବ ନାଥ ତ୍ରିଲୋକରେ
ବଦନ୍ତି ଶାରଳା ଦାସ ଶିବ ଶ୍ରୀପୟରେ ।

—୦—

## ଅଶ୍ୱ ସହିତ ଅର୍ଜ୍ଜୁନର ଚତୁର୍ଦ୍ଦିଗ ଭ୍ରମଣ ଓ ବଭ୍ରୁବାହନ ସଙ୍ଗେ ଯୁଦ୍ଧ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଅର୍ଜ୍ଜୁନ ବିଜୟ ଦେଖି ବିଜେ ପଶୁପତି ।
ବୃଷଭ ବାହନେ ଆସି ମିଳନ୍ତେ କପାଳୀ
ଦେଖି ପାର୍ଥ ତାଙ୍କ ପାଦେ କଲେ ନିଉଛାଳି ।
ବୋଇଲେ ଶ୍ରୀ ଯୋଗେଶ୍ୱର ଶୁଣ ହୋ ବାସବି
ଅଶ୍ୱମେଧ ଯାଗ ତୁମ୍ଭେ ଅଛ ଯେ ଆରମ୍ଭି ।
ଅଶ୍ୱର ଲକ୍ଷଣ ଦେଖି ଆମ୍ଭେ ପଚାରିଲୁଁ
ଅଶ୍ୱମେଧ ଯାଗ ତୁମ୍ଭେ କରୁଛ ଜାଣିଲୁ ।
ପାର୍ଥ ବୋଇଲା ପ୍ରସନ୍ନ ହୁଅ ଆହେ ନାଥ
ଯାଅ ବୋଲି ଆଜ୍ଞା ଦେଲେ ଦେବ ବିଶ୍ୱନାଥ ।
ଆଲୋପ ଧର୍ମକୁ ଇଚ୍ଛା କରୁଅଛ ତୁମ୍ଭେ
ସେ ମହାଯାଗକୁ ବିଜେ କରିବାଟି ଆମ୍ଭେ ।
ବହୁ ରାଜା ବଧ କଲ ଏ ଭାରତ ଯୁଦ୍ଧେ
ଧର୍ମ ନାଶ ଯାଇ ବାଳକୁମରର ବଧେ ।
ଯଦ୍ୟପି ଦୁଷ୍ଟ ହୋଇବେ ସେ ବାଳକୁମରେ
ନ ଧରିବା ତାହାଙ୍କର ଦୋଷକୁ ମନରେ ।
ଏତେ ବୋଲି ହର ବେଗେ ଗଲେ ମନ୍ଦିରକୁ
ତହୁଁ ଅର୍ଜ୍ଜୁନ ଚଳିଲେ ପଶ୍ଚିମ ଦେଶକୁ ।
ସ୍ୱର୍ଗର ଅଶ୍ୱ ଯେ ଭୂତ ଭବିଷ୍ୟତଜ୍ଞାତା
ଜାଣଇ ଅନନ୍ତକୋଟି ଯୁଗର ବାରତା ।

ସେ ଅଶ୍ୱ ଯାର୍ଗ ପଶିଲା ପଦ୍ମଦଳ ଦେଶେ
ଚନ୍ଦ୍ର କିରଣ ପରାୟ ପ୍ରାଣେ ପ୍ରାଣେ ପଶେ ।
ଦେବଙ୍କ ଆଭରଣରେ ଭୂଷିତା ତା ଅଙ୍ଗ
କିଞ୍ଚିତ ଚାଲି ତାହାର ବଡ଼ଇ ସରାଗ ।
ଜନମନରଞ୍ଜନ ଯେ ଚୌରାଶୀ ଲକ୍ଷଣେ
ଦେଖି ରାଜାମାନେ ହର୍ଷ ହେଲେ ମନେ ମନେ ।
ରାଜା ଆଗରେ କହିଲେ ଯାଇ ଦେଶାଉରେ
ଅପୂର୍ବ ଅଶ୍ୱ ପଶିଲା ଆସି ଆମ୍ଭ ଘରେ ।
ଅପାର ରତ୍ନ ତାହାର ଦେହେକେ ଖଞ୍ଜିଲା
ଶୁଣିଣ କର୍ଣ୍ଣକେଶରୀ ଆପେ ବିଜେ କଲା ।
ଅଶ୍ୱକୁ ଦେଖିଣ ରାଜା ମୋହେ ପଡ଼ି ଲୋଭେ
ମନ୍ତ୍ରୀ ଅମାତ୍ୟକୁ ଘେନି ଧରେ ଯାଇ ଯେବେ ।
ଅଶ୍ୱ ପ୍ରତି ବାକ୍ୟ କରେ ରାଜା ଛାଡ଼ ମୋତେ
ମୁହିଁ ଦେବଅଶ୍ୱ ତୁହି ହରିବୁ କେମନ୍ତେ ।
ଅଶ୍ୱିନୀକୁମାର ବାକ୍ୟେ ଅଇଲା ରାଜନ
ମୋତେ ପୁଣି ସାଜିଅଛି ପାଣ୍ଡବ ଅର୍ଜୁନ ।
ଅଶ୍ୱ ମୁଖରୁ ଶୁଣନ୍ତେ ଏମନ୍ତ ସୁଲଭ
ଭାଳଇ ନରେନ୍ଦ୍ର ଏହା ବଡ଼ଇ ଦୁର୍ଲ୍ଲଭ ।
ଅଶ୍ୱ ହୋଇ ଭାଷଇ ଏ ମନୁଷ୍ୟର ବାଣୀ
ପାଣ୍ଡବ ନାମ ଧରନ୍ତେ ଛାଡ଼େ ନୃପମଣି ।
ତା ତହୁଁ ମଣିଲା ଅଶ୍ୱ ଲକ୍ଷଗୁଣ ଧନେ
ସମର୍ପିଲା ଅର୍ଜୁନର ଛାମୁରେ ଯତନେ ।
ପୟରେ କର୍ଣ୍ଣକେଶରୀ ସହସ୍ରେ ପ୍ରଣମି
କିଞ୍ଚିତେ ଅନେକ ଦୋଷ କଲି ଦେବସ୍ୱାମୀ ।
ଶୁଣି ସାନନ୍ଦ ହୋଇଲେ ବୀର ଫାଲଗୁନି
ଅଶ୍ୱମେଧ ଯାଗକୁ ଯା ତୋର ବଳ ଘେନି ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ପବନ ବେଗେ ଚଳଇ ବାସବର ସୁନୁ ।
ପଶ୍ଚିମ ଦେଶେ ଚଳଇ ଗହନ କନ୍ଦରେ
ବିଜୟ ସେ ବୀରବର ମଗଧ ଦେଶରେ ।
ନନ୍ଦ ଭୁପାଳ ଅଟଇ ଜରାସନ୍ଧ ପିତା
ଜରାପୁତ୍ର ସହଦେବ ମହାବଳବନ୍ତା ।
ଜରାସନ୍ଧକୁ ମାଇଲା ବୀର ବୃକୋଦର
ସହଦେବ ସ୍ୱୟଂ ପୁତ୍ର ଅଟଇ ତାହାର ।
ତାକୁ ରାଜା କଲା ଭୀମସେନ ସେହି ରାଷ୍ଟ୍ରେ
ଭାରତ ଯୁଦ୍ଧେ ସେ ଥିଲା ପାଣ୍ଡବଙ୍କ ଥାଟେ ।
ସହଦେବର ନନ୍ଦନ ମହାଦେବ ନୃପ
ତାହାର ରାଜ୍ୟରେ ଅଶ୍ୱ ପଶେ ଦେଇ ଧାପ ।
ବିଚକ୍ଷଣ ଅଶ୍ୱ ଅଙ୍ଗେ ରତ୍ନ ଖଞ୍ଜାଅଛି
ଯୋଦ୍ଧାହୋଇ ସେ ଅଶ୍ୱକୁ କେ ଅବା ମୁରୁଛି ।

ଅଶ୍ୱ ଅଇଲା ଦୂଷଣ ନାମେ ସେନାପତି
ବାନ୍ଧିନେଲା ଦେଲା ମହାଦେବର ଯେ କତି ।
ରାଜାକୁ ଦେଖି ହସିଲା କୁବଳୟା ହୟ
ତା ଦେଖି ଆଶ୍ଚର୍ଯ୍ୟ ହେଲା ମହାଦେବରାୟ ।
କିମ୍ଭୁତ କାରଣ ଏହା କହ ସେନାପତି
ମନୁଷ୍ୟ ପ୍ରାୟ ହସଇ ଏ କେଉଁ ଯୁକତି ।
ସନ୍ନିଧେ ଯାଇ କହଇ ତାକୁ ମହାରାଜ
ଭୋ ଅଶ୍ୱ ତୁ ପଶୁ ହୋଇ ହସ କି ଆଶ୍ଚର୍ଯ୍ୟ ।
ଅଶ୍ୱ ବୋଇଲା ମୁଁ ଅଟେ ଆକାଶର ହୟ
କୁବଳୟ ନାମ ମୋର ମୋତେ ଧନଞ୍ଜୟ ।
ଆଣିଅଛି ଅଶ୍ୱମେଧ କରିବେ ଯୁଧିଷ୍ଠି
ରାଜା ଧରିବେ ଧଇଲେ ହୋଇବ ଅରିଷ୍ଟି ।
ଶୁଣିଣ ସାନନ୍ଦ ହେଲା ମହାଦେବ ରାଜା
ସେ ପାଣ୍ଡବ ଯୋଗୁଁ ନାଶଗଲେ ମୋର ଅଜା ।
ପିତା ହିଁ ପଡ଼ିଲା ମୋର ସେ ଭାରତ ଯୁଦ୍ଧେ
ପାଇଲି ମୁଁ ପାଣ୍ଡବଙ୍କୁ ମୋର ବଂଶ କ୍ରୋଧେ ।
ଏତେ ବୋଲି ଅଶ୍ୱକୁ ସେ ଦୃଢ଼ କରି ଧରି
ଅର୍ଜୁନ ଚାହିଁଲା ପୁଣି ପଞ୍ଚଦଶ ଘଡ଼ି ।
ବାଟ ଚାହାଁନ୍ତେ ଯହୁଁ ସେ ଅଶ୍ୱ ନ ଆସଇ
ଏକାକୀ ହୋଇ ଅର୍ଜୁନ ସେ ରାଜ୍ୟେ ପଶଇ ।
ଦେଖି ଉଗାଳିଲେ ତାକୁ ଅନେକ ସଇନି
ନାରାଚେ ବିଘାତ ତାକୁ କଲେ ଫାଲଗୁନୀ ।
ଏକା ପ୍ରହାରେ ଅନେକ ସୈନ୍ୟ ତହିଁ ଲୋଟି
ଦେଖି ଗଜେନ୍ଦ୍ର ସମରେ ଆପେ ଗଲା ଉଠି ।
ଅର୍ଜୁନ ବୋଇଲେ ଆହୋ ଶୁଣିବାକ ତୁମ୍ଭେ
ରାଜା ନିମନ୍ତ୍ରଣ କରି ଆସିଅଛୁ ଆମ୍ଭେ ।
ଅଦୋଷେ ନାଶ ନ କର ତୋର ସୈନ୍ୟବଳ
ସୈନ୍ୟ ଘେନି ଆପେ ଅଶ୍ୱମେଧ ଯାଗ ଚଳ ।
ମନ୍ତ୍ରୀ ତାହାକୁ ବୁଝାଏ ଶୁଣ ନରପତି
ତ୍ରୈଲୋକ୍ୟ ମଧ୍ୟରେ ପାର୍ଥ ଅଟେ ଏକ କ୍ଷତ୍ରୀ
ଏମନ୍ତ ମହିମା ଯହୁଁ ଶୁଣିଲାକ ରାୟ
ନିଉଛାଳି କଲା ସହଦେବର ତନୟ ।
ନିମନ୍ତ୍ରଣ କରି ତାକୁ ବୋଇଲେ ଫାଲଗୁନି
ଏହିକ୍ଷଣି ଚଳ ତୁହୋ ପାତ୍ରମନ୍ତ୍ରୀ ଘେନି ।
ଲକ୍ଷେ ରାଜା ମଧ୍ୟେ ଯାଇ ଘେନ ଅର୍ଘ୍ୟନୀର
ଚଳିଲା ସେ ମହାଦେବ ହସ୍ତିନା ନଗର ।
ଅର୍ଜୁନ ଯେ ଅଶ୍ୱ ବେଗେ ଦେଲାକ ଚଳାଇ
ଭାନୁମତୀ ପୁରେ ସେହି ପଶିଲାକ ଯାଇ ।
ଅଭୟମନୁ ବୋଲି ସେ ତହିଁରେ ନୃପତି
ଅଶ୍ୱକୁ ଦେଖି ମିଳିଲା ଆସି ତାର କତି ।

ଅଶ୍ୱକୁ ଦେଖି ଧରିବା ପାଇଁ କଲା ଇଚ୍ଛା
ଅଶ୍ୱ ବୋଇଲା ମୃତ୍ୟୁକୁ ନ କର ତୁ ବାଞ୍ଛା ।
ପାଣ୍ଡବେ କରିବେ ପୃଥ୍ୱୀ ଅଶ୍ୱମେଧ ଯାଗ
ଯୋଦ୍ଧାଙ୍କୁ ଘେନି ରାଜା ତୁ ଚଳହୋଇ ବେଗ ।
ଅର୍ଜ୍ଜୁନ ଦେବ ଅଛନ୍ତି ଗଙ୍ଗାନଦୀ କୂଳେ
ଶୁଣି ଦଣ୍ଡ ଘେନି ମହୀପାଳ ବେଗେ ଚଳେ ।
ଅନେକ ପୂଜା କରଇ ଫାଲଗୁନିଙ୍କୁ ଯାଇ
ବହୁତ ଧନ ରତନ ସଙ୍ଗତରେ ନେଇ ।
ନିମନ୍ତ୍ରଣ ଦେଇ ପାର୍ଥ କହେ ସର୍ବ କଥା
ସମଦଣ୍ଡ ଘେନି ତୁହୋ ଚଳ ମହାରଥା ।
ଅଶ୍ୱମେଧ ଯାଗରଟି ଯେତେକ ବିଧାନ
ଅନେକ ଦ୍ରବ୍ୟ ଘେନିଣ ଚଳେ ସେ ରାଜନ ।
ପାତ୍ର ମନ୍ତ୍ରୀ ସହ ତହୁଁ ହସ୍ତିନାକୁ ଗଲା
ଅଶ୍ୱ ଘେନି ବେଗେ ପାର୍ଥ ସେଠାରୁ ଚଳିଲା ।
ବେଲାଳ ଦେଶରେ ଯାଇଁ ବିଜେ ସବ୍ୟସାଚୀ
ବେଲାଳସେନ ଅଶ୍ୱକୁ ଧରିବାକୁ ଇଚ୍ଛି ।
ଅଶ୍ୱ ବୋଇଲା ମୁଁ ଅଟେ ଅର୍ଜ୍ଜୁନର ହୟ
ଅଶ୍ୱମେଧ ଯାଗକୁ ହୋ ଚଳ ବେଗେ ରାୟ ।
ଅର୍ଜ୍ଜୁନ ହିଁ ବିଜେ କଲେ ଅଶ୍ୱ ପଛେ ପଛେ
ରାଜାର ଯେ ପୂଜାବିଧି ଘେନିଲେ ବିବସ୍ୱେ ।
ମଣୋହି ଯେ ଗାଡ଼ କରି ଲୋଡ଼ଇ ସେ ରାୟ
ନାସ୍ତି କରି ତହୁଁ ଚଳିଗଲେ ଧନଞ୍ଜୟ ।
ଏହିପରି ବହୁ ଦେଶ ବହୁତ ନୃପତି
ନିମନ୍ତ୍ରି ଚଳେ ବିଚିତ୍ରବୀର୍ଯ୍ୟର ଯେ ନାତି ।
ତହୁଁ ସେ ଡାହାଳ ଦେଶେ ଯାଇଣ ମିଳଇ
ଅଶ୍ୱ ଦେଖି ରାଜା ମନେ ବିଚାର କରଇ ।
ଅଶ୍ୱକୁ ଧଇଲାବେଳେ ଶୂରବର ରାୟ
ଅଶ୍ୱ ବୋଇଲାକ ଆସୁଅଛି ଧନଞ୍ଜୟ ।
ଶୁଣିଣ ଡାହାଳେଶ୍ୱର କଲା ଅଶ୍ୱପୂଜା
ଅର୍ଜ୍ଜୁନ ଛାମୁରେ ବିଜେ ଡାହାଳେଶ ରାଜା ।
ପାଞ୍ଚକୋଟି ତୁରଙ୍ଗମ ଘେନି ମହୀପାଳ
ପ୍ରଚଣ୍ଡ ମଣ୍ଡଳୁ ବେଗେ ଚଳେ ତତକାଳ ।
କ୍ଷୀରଦେଶେ ପ୍ରବେଶିଲା ବୀର ଫାଲଗୁନି
ଅଶ୍ୱ ସଙ୍ଗରେ ଅନେକ ରତ୍ନ ଅଛି ଘେନି ।
ଧର୍ମସେନ ବୋଲି ଅଟେ ତହିଁର ନୃପତି
ସେ ରାଜା ଅଶ୍ୱକୁ ଯାଇ ଧଇଲା ତଡ଼ତି ।
ଅଶ୍ୱ ବୋଇଲା ତୁ ମୋତେ ନ ଧର ହେ ରାୟ
ଅଶ୍ୱମେଧ ଯାଗପାଇଁ ପାର୍ଥ ଦିଗ୍‌ବିଜୟ ।
ଶୁଣିଣ ସାନନ୍ଦ ହେଲା କ୍ଷୀରଦେଶ ରାଜା
ଅନେକ ସମ୍ଭାର ଦେଇ କଲା ଅଶ୍ୱପୂଜା ।
ଅର୍ଜ୍ଜୁନ ବିନୟ କଲେ ତହିଁ ବେଗ ଯାଇଁ
ଅନେକ ଭକତି ତାକୁ କଲା ନରସାଇଁ ।
ନିମନ୍ତ୍ରଣ ଯୋଗାଡ଼ ଯେ ଦେଲାକ ବିବସ୍ୱ
ଚଳ ଅଶ୍ୱ ଘେନି ଅଶ୍ୱମେଧକୁ ପ୍ରତ୍ୟକ୍ଷ ।
ଶୁଣିଣ ସେ ରାଜା ଗଲା ସୈନ୍ୟ ତୁଲେ ସାଜି
ତାହାର ସଙ୍ଗରେ ଅଛି ଦଶଲକ୍ଷ ବାଜି ।
ଅଶ୍ୱମେଧ ଯାଗକୁ ଯେ ଚଳେ ନରପତି
ସମସ୍ତ ରାଜାଏ ସମାରୋହରେ ଚଳନ୍ତି ।
ମାଧୁର୍ଯ୍ୟ ଦେଶର ରାଜା ମଧୁସେନ ରାୟ
ତାହାର ରାଜ୍ୟରେ ଯାଇ ପଶିଲା ସେ ହୟ ।
ଅଶ୍ୱକୁ ଧରନ୍ତେ ସେହି କହିଲା ଯେ କଥା
ପାଣ୍ଡବଙ୍କୁ ଅଶ୍ୱମେଧ ଯାଗର ବାରତା ।
ଅର୍ଜ୍ଜୁନକୁ ଯାଇ ଦରଶନ କଲା ରାଜା
ଅର୍ଜ୍ଜୁନ ବୋଇଲେ ଅଙ୍ଗବଳ ଘେନି ଯାଯା ।
ସକଳ ଅଶ୍ୱମାନଙ୍କୁ କରି ରତ୍ନମୟ
ଚଳଇ ସେ ଇନ୍ଦ୍ରପ୍ରସ୍ଥେ ମଧୁସେନ ରାୟ ।
ତହୁଁ ପୁଣ ଅର୍ଜ୍ଜୁନ ସେ ଅଶ୍ୱକୁ ଚଳାଇ
ମାନଭଙ୍ଗ ରାଜ୍ୟେ ପୁଣି ପ୍ରବେଶିଲେ ଯାଇ ।
ଧୀର ଅର୍ଜ୍ଜୁନ ବୋଲି ଯେ ତହିଁର ନୃପତି
ତାହାର ରାଜ୍ୟରେ ଅଶ୍ୱ ପଶିଲାକ ଧାତି ।
ଅଶ୍ୱକୁ ଧରନ୍ତେ ସବୁ କହିଲାକ ହୟ
ଶୁଣି ସେ ଅଶ୍ୱକୁ ପୂଜା କଲା ମହାରାୟ ।
ନିମନ୍ତ୍ରଣ ଯୋଗାଡ଼କୁ ଦେଇ ଅରଜୁନ
ଅଶ୍ୱ ଘେନି ତହୁଁ ବୀର ଚଳଇ ବହନ ।
ସାନନ୍ଦ ବଳ ରାଜ୍ୟରେ ରାଜା ବୃହନ୍ନାଳୀ
ଅଶ୍ୱ ଘେନି ଅର୍ଜ୍ଜୁନ ତା ରାଜ୍ୟେ ଯାଇଁ ମିଳି ।
ଅଶ୍ୱ ଧରନ୍ତେ କହିଲା ସେ ସକଳ କଥା
ଅଶ୍ୱବଳ ଘେନି ବେଗେ ଚଳେ ମହାରଥା ।
ନନ୍ଦିବନେ ଯାଇ ବିଜେ କଲେ ସବ୍ୟସାଚୀ
ନନ୍ଦିକେଶ୍ୱର ଯେ ତହିଁ ବିଜେ କରିଛନ୍ତି ।
ନନ୍ଦିକେଶ୍ୱର ଯେ ରୁହାଇଲେ ଅର୍ଜ୍ଜୁନକୁ
ଅମୃତପାନ ଭୋଜନ ଦେଲେକ ତାହାକୁ ।
ଯଥାବିଧିରେ ସେଠାରେ ସାରିଲେ ଭୋଜନ
ଆଚମନ ସାରି କଲେ ତାମ୍ବୁଳ ଚର୍ବଣ ।
କହିଲେ ନନ୍ଦିକେଶ୍ୱର ରାଜା ପରମାର୍ଥ
ଅମୃତ ଲଡୁକୁ ଦେଲେ ଅର୍ଜ୍ଜୁନର ହସ୍ତ ।
ଭୁଞ୍ଜିଲେ ଯେ କ୍ଷୁଧା ତୃଷା ନ ଆସିବ କତି
ଏମନ୍ତ କହିଲେ ତାଙ୍କୁ ସେହି ମହାଯତି ।
ନନ୍ଦିକେଶ୍ୱର ସମ୍ବୋଧି ଗଲେ ବୀର ପାର୍ଥ
ଉଡ଼ଙ୍ଗ ଦେଶରେ ଯାଇ ପ୍ରବେଶ ତୁରିତ ।

ଅଶ୍ୱ ଚଳାଇ ଚଳାଇ ତହୁଁ ଧନଞ୍ଜୟ
କନ୍ଦର ନଗରେ ଯାଇ କରଇ ବିଜୟ ।
କନ୍ଦର୍ପ ରାଜାକୁ ତହିଁ କରଇ ବରଣ
ଅଶ୍ୱବଳ ଘେନି ତୋର ଚଳ ଏହିକ୍ଷଣ ।
କଳିଙ୍ଗ ଦେଶେ କଳିଙ୍ଗସେନ ଯେ ନୃପତି
ତାହାକୁ ବରଣ ଦେଇ ବାସବ ସନ୍ତତି ।
ଚୋଖାର ମଣ୍ଡଳ ଯାଇ ମିଳେ ଅଶ୍ୱ ଘେନି
ପାଣି ମଣ୍ଡଳ ଯା କାଞ୍ଚି ନଗ୍ର ଏହି ତିନି ।
ଲକ୍ଷ୍ମଣବନ୍ତ ଅଶ୍ୱକୁ ଧଇଲେ ନରେନ୍ଦ୍ର
ଅଶ୍ୱ ବୋଇଲା ମୋ ଲାଗି ହେବ ବଡ଼ ଦ୍ୱନ୍ଦ୍ୱ ।
ବୋଲେ ମହୀପତି ମୋତେ ତ୍ରୈଲୋକେ ସରି
ଲକ୍ଷ୍ମଣବନ୍ତ ତୁ ମୋତେ କାହୁଁ ତେଜିପାରି ।
ଏଣେ ବାଟ ଚାହିଁ ପାର୍ଥ ବିସ୍ମୟ ହୋଇଲା
ଏତେବେଳ ଯାଏ କିମ୍ପା ଅଶ୍ୱ ନ ଆସିଲା ।
ଧନୁଶର ଘେନି ତହୁଁ ବିଜେ ସବ୍ୟସାଚୀ
ରାଜ୍ୟ ଭିତରେ ତାହାର ପଶି ଯାଉଅଛି ।
ଅର୍ଜ୍ଜୁନ ବୋଇଲା ଶୁଣ ଆରେ ଦେଶାଉର
ଯାଇ ଜଣାଅ ତୋହର ରାଜାର ଛାମୁର ।
ପାଣ୍ଡବଙ୍କ ଅଶ୍ୱମେଧ ଯାଗ ବୋଲି କହ
ଆକାଶର ଅଶ୍ୱ ତୁହୋ ବେଗେ ଛାଡ଼ିଦିଅ ।
ରାଜା ଆଗରେ କହିଲେ ବେଗେ ଚାରଗଣ
ବୋଲେ ମହାକେଶରୀ ତା ଶିର ଛେଦି ଆଣ ।
ରାଜାର ଆଜ୍ଞାରେ ଯୋଦ୍ଧା ଗଲେ ବେନି କୋଟି
ଶତେପୁର କରି ଯାଇଁ ବେଢ଼ିଲେ କିରୀଟୀ ।
କାମ୍ୟକଶର ଅର୍ଜ୍ଜୁନ ତହୁଁ ବେଗେ ସନ୍ଧି
ବେନିକୋଟି ଯୋଦ୍ଧାଙ୍କର ଶିର ଦେଲା ଛେଦି ।
ଜଗତୀରେ ଥାଇ ତାହା ଦେଖେ ମହୀପାଳ
ଆପେ ବିଜେ କଲା ଘେନି ଚତୁରଙ୍ଗ ବଳ ।
ହସ୍ତୀଏ ଚଢ଼ି ଅର୍ଜ୍ଜୁନ ପାଶକୁ ସେ ଆସେ
କି ନିମନ୍ତେ ମୋର ସୈନ୍ୟ ମାଇଲୁ ନିର୍ଦ୍ଦୋଷେ ।
ଅର୍ଜ୍ଜୁନ ବୋଇଲେ କିମ୍ପା ଧଇଲୁ ତୁ ହୟ
ସେ ଅଶ୍ୱ ଧଇଲେ ମୋର ନ ସହଇ ଦେହ ।
ବୋଇଲା ମହୀକେଶରୀ ଅଶ୍ୱମେଧ କରି
ବେଳେକ ନ ସହି ସୈନ୍ୟ ମାଇଲୁ ମୋହରି ।
ତୁ ଯେ ସଇନ୍ୟ ମୋହର କଲୁ ପ୍ରାଣେ ନାଶ
ଏକା ଜନେ ସିନା ତୋର କାଟିବି ମାଉଁସ ।
ହାବୋଡ଼େ ଶରେକ ତହୁଁ ମାଇଲେ ଅର୍ଜ୍ଜୁନ
ଗଜରେ ଉତ୍ତାନଶାୟୀ ହେଲା ସେ ରାଜନ ।
ରାଜାର ପଡ଼ନ୍ତେ ଭୟେ ପଳାଇଲେ ଥାଟ
ରହ ରହ ବୋଲି ଡାକେ ଦ୍ରୋଣଗୁରୁ ଚାଟ ।

ଶ୍ରୀକରେ ପାଶେକ ଘେନି ସେ ବୀର ଅର୍ଜ୍ଜୁନ
ମହାକେଶରୀ ରାଜାକୁ କରିଣ ବନ୍ଧନ ।
ଶିର ଛେଦିବି ଇଚ୍ଛନ୍ତେ ଦେଖି ଅମାତ୍ୟେ
ରଖ ରଖ ପାର୍ଥ ବୋଲି ବୋଲନ୍ତି ସମସ୍ତେ ।
ବହୁ ପାପ ହେବ ରାଜା ଶିରଛେଦ ହେଲେ
ଏହା ବୋଲି ପାର୍ଥ ପାଦେ ସର୍ବେ ପ୍ରଣମିଲେ ।
ସମସ୍ତଙ୍କ କଥା ଶୁଣି ବୋଲନ୍ତି ଅର୍ଜ୍ଜୁନ
ବାନ୍ଧି ଏହାକୁ ଯଜ୍ଞକୁ କର ହେ ଗମନ ।
ରାଜାକୁ ତୁମ୍ଭର ଘେନିଯାଅ ଏହି ମତେ
ଯଜ୍ଞ ବରଣେ ଯାଅନ୍ତି ନୃପତି ସମସ୍ତେ ।
ଏମନ୍ତ ବନ୍ଧନ କରି ଘେନି ତୁମ୍ଭେ ଯିବ
ବାଟରେ ଫେଡ଼ିଲେ ଶିର ଛେଦନ ହୋଇବ ।
ବନ୍ଧନ କରି ନିଅନ୍ତେ ଦେଖି ରାଜାମାନେ
ଅନ୍ତରେ ଯେ ମହାଭୟ କଲେ ମନେ ମନେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଭୟରେ ସମସ୍ତ ରାଜା ବହନ ଚଳନ୍ତି ।
ଅନେକ ଧନ ରତ୍ନରେ ମଣ୍ଡୀହୟ ଯାନ
ଶ୍ୱେତ ଚାମର ଡାଳିମ୍ବ ନେତ ନାନାବର୍ଣ୍ଣ ।
ପାଟ ପତନୀ ସିନ୍ଧୁଆ ଆଦି ଦାସୀନେତ
ରାଜ ମୁକୁତା ମାଣିକ୍ୟ ମଣି ନାନାରତ୍ନ ।
ପଶ୍ଚିମରେ ଦୁଇଗୁଣା ପଞ୍ଚାଶ ସହସ୍ର
ସମସ୍ତ ପଠାଇ ଦେଇ ଗଲେ ଇନ୍ଦ୍ରଶିଷ୍ୟ ।
ଦକ୍ଷିଣରେ ଏକଗୁଣା ସାତସସ୍ର ନୃପ
ପୂର୍ବ ଦିଗରେ ତିରିଶ ସହସ୍ର ଯେ ଭୂପ ।
ଅଶ୍ୱ ଚଳାଇ ଏତେକ ଅର୍ଜ୍ଜୁନ ନିମନ୍ତି
ଉତ୍ତର ଦିଗକୁ ଗଲେ ଅଶ୍ୱ ଘେନି ଧାତି ।
ଗଗନପୁର ନଗରେ ବିରୁପାକ୍ଷ ରାୟ
ତାହାର ପୁରେ ପଶିଲା ଯାଇଁ ଦେବ ହୟ ।
ଦିବ୍ୟ ଅଳଙ୍କାର ଘେନି ପଶନ୍ତେ ରାଜ୍ୟରେ
ଲୋକେ ଧରିନେଇ ଦେଲେ ରାଜାର ଛାମୁରେ ।
ଅଶ୍ୱ ନେଇ ଚନ୍ଦ୍ରଶାଳା ପୁରେ ରାଜା ଥୋଇ
ଅଶ୍ୱ ବୋଇଲା ଆମ୍ଭଙ୍କୁ ଛାଡ଼ ନରସାଇଁ ।
ତିନିଦିଗ ନିମନ୍ତ୍ରଣ କଲେଣି ଯେ ପାର୍ଥ
ତିନିଗୁଣା ସତାଅଶୀ ସସ୍ର ନରନାଥ ।
ଏକାଳେ ଅର୍ଜ୍ଜୁନ ସେହି ରାଜ୍ୟରେ ପଶିଲେ
ଗୋଳ କରି ଯୋଦ୍ଧାମାନେ ଆସି ଓଗାଳିଲେ ।
ପାଞ୍ଚ ଅଇବ୍ରତ ଯୋଦ୍ଧା ଆବୋରିଲେ ଯହୁଁ
ହାବୋଡ଼ା ଶର ବିନ୍ଧିଲେ ଦେଖି ପାର୍ଥ ତହୁଁ ।
ପଡ଼ିଲେ ସମସ୍ତେ ତହିଁ ଯେ ଉତ୍ତାନଶାୟୀ
ଅଚେଷ୍ଟା ହୋଇଲେ କାହା ଦେହେ ଜ୍ଞାନ ନାହିଁ ।

ଧର୍ମ ଯଜ୍ଞ ଅର୍ଥେ ନ ମାଇଲେ ତାକୁ ପ୍ରାଣେ
ଏହା ଦେଖି ରାଜା ବିଜେ କଲେ ଯେ ଆପଣେ ।
ଦଶ ସହସ୍ର ଯୋଦ୍ଧାଙ୍କୁ ଘେନି ଦଣ୍ଡଧାରୀ
ଅର୍ଜୁନକୁ ବେଢ଼ିଲେ ସେ ଶତେପୁର କରି ।
ଅବିକ୍ଷଣେ ନାରାଚ ଯେ ବିନ୍ଧେ ଫାଲଗୁନୀ
ମୋହେ ପଡ଼ିଲେକ ବିରୂପାକ୍ଷର ସଇନୀ ।
ରାଜା ମଧ୍ୟ ପଡ଼ିଗଲା ଶସ୍ତ୍ର ବିଘାତରେ
ଅସାଷ୍ଟମ ହୋଇ ପଡ଼ିଗଲେ ସର୍ବ ବୀରେ ।
ରାଜାର ଶିର ଛେଦନ କରଣେ ଅର୍ଜୁନ
ଆକର୍ଷି କଟାରି କରେ କଲେକ ଧାରଣ ।
ବିନୟେ ବୋଇଲେ ତହୁଁ କୁବଳୟା ଅଶ୍ୱ
ଛାଡ଼ ଛାଡ଼ ପାର୍ଥ ତବ ଧର୍ମ ହେବ ନାଶ ।
ଅଶ୍ୱର ବଚନେ ତାକୁ ଛାଡ଼ିଲେ ଅର୍ଜୁନ
ଅଶ୍ୱମେଧ ଯାଗକୁ ଯେ କଲେ ନିମନ୍ତ୍ରଣ ।
ତହୁଁ ସେ ରାଜନ ନିଜ ଦଳବଳ ଘେନି
ହସ୍ତିନାପୁରକୁ ଚଳିଗଲେ ତତକ୍ଷଣି ।
ତହୁଁ ଉତ୍ତର ଦିଗରେ ଚଳଇ ଫାଲଗୁନି
ତ୍ରିଗର୍ତ୍ତ ରାଜ୍ୟେ ମିଳିଲା ଯାଇ ଅଶ୍ୱ ଘେନି ।
ତ୍ରିଗର୍ତ୍ତ ରାଜାର ପୁତ୍ର ବ୍ରହ୍ମସେନ ରାଜା
ଅଶ୍ୱକୁ ଦେଖି ଅନେକ କରି ତାର ପୂଜା ।
ନିମନ୍ତ୍ରଣ ଘେନି ଅଶ୍ୱମାନଙ୍କର ତୁଲେ
ଇନ୍ଦ୍ରପ୍ରସ୍ଥ ରାଜ୍ୟକୁ ସେ ବେଗେ ଚଳିଗଲେ ।
ପଞ୍ଚାଳ ଦେଶରେ ଯାଇ ବିଜେ ଧନଞ୍ଜୟ
ମଧୁକେଶର ଯେ ଧୃଷ୍ଟଦ୍ୟୁମ୍ନନ ତନୟ ।
ଅଶ୍ୱକୁ ଦେଖି ଉତ୍ସବ କରାଇ ରାଜ୍ୟରେ
ମଣୋହି କରଇ ସବ୍ୟସାଚୀ ସେ ପୁରରେ ।
ନିମନ୍ତ୍ରଣ ଦେଇ ତାଙ୍କୁ ଚଳିଗଲେ ପାର୍ଥ
ବାହାରିଲା ଦଳବଳ ଘେନି ସେ ସମସ୍ତ ।
ତହୁଁ ଶିବପୁର ନଗ୍ରେ ଚଳଇ ତଡ଼ତି
ବିଷ୍ଣୁକର ପଣ୍ଡା ତହିଁ ରାଜ୍ୟକୁ ପାଳନ୍ତି ।
ଅଶ୍ୱ ପଶନ୍ତେ ଧରେ ସେ ଯାଇଁ ତତକ୍ଷଣ
ରତ୍ନମାନଙ୍କୁ ଛଡ଼ାଇ ଘେନିଲା ବ୍ରାହ୍ମଣ ।
ଅଶ୍ୱ ହୋଇଲେକ ତୁ ହୋ ଶୁଣ ବିଷ୍ଣୁକର
ମୁହିଁ ଦେବୟଯ ମୋର ପଛେ ପାର୍ଥବୀର ।
ମତ୍ତଗର୍ବେ ତାହା କଥା ନ ଶୁଣଇ ଦ୍ୱିଜ
ଧନରତ୍ନ ଚାମରକୁ କରଇ ଗ୍ରାହିଯ୍ୟ ।
ଅଶ୍ୱର ବିଳମ୍ବ ଦେଖି ବୀରବର ପାର୍ଥ
ରାଜ୍ୟରେ ପ୍ରବେଶ ହେଲେ ଧନୁଶର ହସ୍ତ ।
ଦେଖିଣ ଧାମନ୍ତି ଯୋଦ୍ଧା ଉପାଧି ବ୍ରାହ୍ମଣ
ବେଢ଼ି ବିନ୍ଧିଲେ ପାର୍ଥକୁ ବଜ୍ର ସମ ବାଣ ।

ତିମିର ଶରେକ ପେଷିଦେଲେ ସବ୍ୟସାଚୀ
ମୋହ ଗଲେ ଦ୍ୱିଜବର ଚେତା ନାହିଁ କିଛି ।
ସଇନ୍ୟଙ୍କ ଅଚେତନ ଦେଖି ବିଷ୍ଣୁକର
ଆପେ ବିଜେ କଲା ଘେନି ପାଞ୍ଚଲକ୍ଷ ବୀର ।
ମକର କେତନ ଜିଣି ଦିଶେ ତାର କାୟ
ଦିଶଇ ସେହି ଅଳକାନାଥର ପରାୟ ।
ଉଚ୍ଚୈଶ୍ରବା ପ୍ରାୟ ଏକ ଆରୋହିଛି ଅଶ୍ୱ
ଅର୍ଜୁନ ଛାମୁରେ ମିଳେ ବିଷ୍ଣୁକର ଦାସ ।
ଦ୍ୱିଜ ବୋଲେ ନର ହୋଇ ପଶୁ ମୋ ରାଜ୍ୟକୁ
ସତେ କି ଆଶା କରୁଛୁ ତୁ ଅଶ୍ୱ ନେବାକୁ ।
ଦେଖି ମନେ ବିଚାରଇ ବୀର ଫାଲଗୁନି
ବିଷ୍ଣୁକର ପଣ୍ଡା ଏତ ନ ପାରଇ ଚିହ୍ନି ।
ଦରହସିତ ବଦନେ ବୋଲେ ଧନଞ୍ଜୟ
ଚିହ୍ନି ନ ପାରିଣ ପଣ୍ଡା ବାନ୍ଧିଣ ଆମ୍ଭ ହୟ ।
ତୁମ୍ଭେ ଯେ ଥିଲ ନଗର ବାହାରରେ ଯାଇ
ଭିକ୍ଷାପାତ୍ରେ ତୁମ୍ଭ ଘରେ ଥିଲୁ ପାଞ୍ଚଭାଇ ।
ଗଉତମୀ ତୀର୍ଥେ ଆମ୍ଭେ ଗଲୁ ସ୍ନାନ କରି
ଭୀମସେନ ଠାକୁର ଯେ ଚାଣ୍ଡାଳକୁ ମାରି ।
ଶୁଣି ବିଷ୍ଣୁକର ବେଗେ ତେଜି ତୁରଙ୍ଗମ
ପାଦ୍ୟ ଅର୍ଘ୍ୟ ଦେଇ କଲା ଅର୍ଜୁନେ ପ୍ରଣାମ ।
ଅନେକ ବିନୟ ଭକ୍ତିଭାବକୁ ଦେଖାଇ
ପାର୍ଥ ବୋଲେ ରହିବାକୁ ମୋତେ ବେଳ ନାହିଁ ।
ମକର ମାସେ ହୋଇବ ଅଶ୍ୱମେଧ ଯାଗ
ଏକା ଜଣେ ନିମନ୍ତ୍ରିବି ଯାଇ ଚାରିଦିଗ ।
ଅଶ୍ୱମେଧ ଅଶ୍ୱ ଘେନି ଚଳିଯା ବହନ
କଥାବାର୍ତ୍ତା ହୋଇଯିବା ଯାଇ ଯାଗସ୍ଥାନ ।
ବିଷ୍ଣୁକର ଚଳିଲା ଯେ ହସ୍ତିନାପୁରକୁ
ଅର୍ଜୁନ ଚଳିଲେ ତହୁଁ ଘେନିଣ ଅଶ୍ୱକୁ ।
ଉଜାଣ ଦେଶ ରାଜାକୁ ନିମନ୍ତ୍ରଣ ଦେଲେ
ସେ ରାଜା ଗମନ୍ତେ ତହୁଁ ପାର୍ଥ ଚଳିଗଲେ ।
ମହାରାଷ୍ଟ୍ର ଦେଶେ ମରହଟ୍ଟା ରାଜନକୁ
ନିମନ୍ତ୍ରି ଅର୍ଜୁନ ଘେନି ଚଳିଲେ ଅଶ୍ୱକୁ ।
ମହ୍ଲାର ଦେଶରେ ଯାଇଁ ପ୍ରବେଶ ଫାଲଗୁନି
ସେ ରାଜାକୁ ପେଷି ଚଳିଗଲେ ଅଶ୍ୱ ଘେନି ।
କାଶୀ ନଦୀକୂଳରେ ଯେ ଅଛି ମତ୍ସ୍ୟଈଶ
ଅଶ୍ୱ ଘେନି ପାର୍ଥ ତହିଁ ହୋଇଲେ ପ୍ରବେଶ ।
ଉତ୍ତର କୁମାର ପୁଣି ମୃଗସେନ ରାୟ
ମଣୋହି ବିଧି କଲାକ ତହିଁ ଧନଞ୍ଜୟ ।
ସେ ରାଜାକୁ ନିମନ୍ତ୍ରିଣ ବାସବୀ ଚଳିଲେ
ମାଳବ ଦେଶରେ ଯାଇ ପ୍ରବେଶ ହୋଇଲେ ।

ଚନ୍ଦ୍ରବ୍ରହ୍ମା ନାମେ ତହିଁ ଏକଇ ନୃପତି
ସକଳ ବୁଝାଇ କରି ତାହାଙ୍କୁ ନିମନ୍ତ୍ରି ।
ତହୁଁ ସେ ବନଗହନେ ଚଳଇ ଫାଲଗୁନି
ସେ ରାଜା ଚଳିଲା ତେଣେ ଅଶ୍ୱମାନ ଘେନି ।
ଏକଚକ୍ର ନଗ୍ରେ ପାର୍ଥ ପ୍ରବେଶ ବହନ
ଦେବଶର୍ମା ବ୍ରାହ୍ମଣ ସେ ତହିଁର ରାଜନ ।
ମହାସୁଖରେ ଅଛଇ ପାଇ ଅଇଶ୍ୱର୍ଯ୍ୟ
ଡଗର ମୁଖୁ ବାରତା ଶୁଣି ସେହି ଦ୍ୱିଜ ।
ଅର୍ଜ୍ଜୁନକୁ ଦରଶନ କଲା ନରନାଥ
ଦେଖିଣ ସାନନ୍ଦ ହେଲା ବୀରବର ପାର୍ଥ ।
ଅନେକ ପୂଜା କରଇ ଦେବର୍ଶମା ଦ୍ୱିଜ
ତା ପୁରେ ଭୋଜନ କଲେ ବାସବ ଆତ୍ମଜ ।
ନିମନ୍ତ୍ରଣ କରଇ ଯେ ବୀର ଫାଲଗୁନି
ଇନ୍ଦ୍ରପ୍ରସ୍ଥେ ଯାଅ ତୁ ତୁମ୍ଭ ଅଶ୍ୱ ଘେନି ।
ତହୁଁ ଅଶ୍ୱକୁ ଚଳାଇ ବୀରବଜ ପାର୍ଥ
କାଉଁରୀ ଦେଶେ ପ୍ରବେଶ ହୋଇଲା ତୁରିତ ।
ମାଳବସେନ ବୋଲିଣ ତହିଁ ଦଣ୍ଡଧାରୀ
ବାରତା ପାଇ ଅର୍ଜ୍ଜୁନେ ଦରଶନ କରି ।
ନିମନ୍ତ୍ରଣ ପାଇ ଚଳେ ଅଶ୍ୱବଳ ଘେନି
ଚଳନ୍ତେ ସେ ମହାରାଜା ଆସଇ ଫାଲଗୁନି ।
କର୍ଣ୍ଣାଟ ବୋଲିଣ ରାଜ୍ୟ ମର୍ତ୍ତ୍ୟେ ବାରସ୍ୱତୀ
ତହିଁ ପ୍ରବେଶ ବିଚିତ୍ରବୀର୍ଯ୍ୟଙ୍କର ନାତି ।
ଯଜ୍ଞ ଅଶ୍ୱକୁ ଦେଖି ରାଜା କୁତୂହଳେ
ଯତ୍ନେ ଧରି ଥୋଇଲା ସେ ରତ୍ନ ଥିବା ଭୋଳେ ।
ସେ ଅଶ୍ୱ ବୋଇଲା ରାଜା କିମ୍ପା ଧରୁ ମୋତେ
ବହୁ ରାଜା ନାଶଗଲେ ମୋ କଥା ଲଙ୍ଘନ୍ତେ ।
ମନ୍ତ୍ରୀ ଦେଖି ବୋଇଲା ହେ ଛାଡ଼ ନୃପମଣି
ଅଶ୍ୱ ହୋଇ କହଇ ଏ ମନୁଷ୍ୟର ବାଣୀ ।
ଶୁଣି ନରେନ୍ଦ୍ର ବହୁତ କଲା ତହିଁ ଆଣ୍ଟ
ଏହାର ପାଇଁ ଦେଖିବା ଆସୁ କେତେ ଥାଟ ।
ମନ୍ତ୍ରୀ ବୋଇଲା ନ କଲ ଯେବେ ମୋର ବୋଲ
କାଳେ ଜାଣିବା ହୋଇବ ମନ୍ଦ ଅବା ଭଲ ।
ଏସନ ସମୟେ ଯାଇଁ ବୀର ଧନଞ୍ଜୟ
ରାଜ୍ୟେ ପଶନ୍ତି ଓଗାଳି ପୁରି ଦଣ୍ଡଚୟ ।
ବାଟ ନ ଛାଡ଼ନ୍ତେ ଦେଖି ବୀର ଫାଲଗୁନୀ
ଗନ୍ଧର୍ବ ଶର ପେଶିଲା କୋପେ କରେ ଘେନି ।
ସେ ଶସ୍ତ୍ରକୁ ତିଆରଇ ବୀର ସବ୍ୟସାଚୀ
ସକଳ ପଦାତି ସୈନ୍ୟ ମାର ବାଛି ବାଛି ।
ଅଶ୍ୱମାନେ ଥାନ୍ତୁ ଏଣେ ଅଛି ଆମ୍ଭ କାର୍ଯ୍ୟ
ଏମନ୍ତ ତିଆରି ବିନ୍ଧି ଗନ୍ଧର୍ବ ନାରାଚ ।

ଆକାଶେ ରହି ବିନ୍ଧିଲା ଶର ତୀକ୍ଷ୍ଣ ମୁନା
ନିମିଷ ମଧ୍ୟେ ଛେଦିଲା ସେ ସବୁରି ସେହ୍ନା ।
ଏକା ନାରାଚେ ସବୁରି ସେହ୍ନା ଗଲା ଫୁଟି
ପଡ଼ିଲେ କାନ୍ତିରାଜାର ବଳ ମହୀଲୋଟି ।
ଯେ ଅବା ଡରି ପଳାଇଗଲେ ପ୍ରାଣ ଘେନି
ରାଜାର ଛାମୁରେ ଯାଇ କରନ୍ତି ଦଇନୀ ।
ଶୁଣି କୋପେ ପ୍ରଜ୍ୱଳିତ ହେଲା ମହାରାଜ
ଦଣ୍ଡ ସାଜଇ ଲକ୍ଷେର ମାହୁନ୍ତ ଯେ ଗଜ ।
ଗଜବଳ ଦେଖି କୋପେ ପାର୍ଥ ବୀରମଣି
ଖର୍ପ ନାରାଚ ବିନ୍ଧିଲା କର୍ମୁଳକୁ ଟାଣି ।
ଛେଦିଲା ସେ ଏକଲକ୍ଷ ଗଜ କୁମ୍ଭସ୍ଥଳ
ରାଜ୍ୟ ଛାଡ଼ି ପଳାଇଲା ଡରେ ମହୀପାଳ ।
ଯେନାବଳୀ ନଗ୍ରେ ଯାଇ ମିଳିଲା ତତ୍ପରେ
ପଳାଇ ପଶିଲା ରାଜା ଡରେ ସେହି ପୁରେ ।
ଯେନାବଳୀ ନଗ୍ରେ ବକ୍ରୁବାହନେ ଯେ ରାଜା
ବଡ଼ ଧାର୍ମିକ କରଇ ଯେ ହିଙ୍ଗୁଳା ପୂଜା ।
ଆଗ ହୋଇ ସେ କଟକେ ଅଶ୍ୱ ଯାଇ ପଶେ
ଗୋଡ଼ାଇ ଯାଇଁ ଅର୍ଜ୍ଜୁନ ପଶେ ତାର ଦେଶେ ।
ସୁଲକ୍ଷଣ ଅଶ୍ୱ ଦେଖି ରାଜା ନେଲା ଧରି
ଥୋଇଲା ଭଣ୍ଡାର ଘରେ ତାକୁ ଯତ୍ନ କରି ।
ଅଶ୍ୱ ବୋଇଲା ମୋତେ ତୁ ନ ଧର ହେ ବାବୁ
ସୁକୁମାର ତନୁ ତୋର ନାଶ କରାଇବୁ ।
ଶୁଣି ବୋଇଲା ସେ ବକ୍ରୁବାହନ ରାଜନ
ଏହି ତ୍ରିଇଲୋକ୍ୟେ ମୋତେ ନାହିଁ କେ ସମାନ ।
ଗଜ ଅଶ୍ୱ ପଦାତି ଯେ ମୋର ଅଛି ଦେଖ
ପାଟ ଅଶ୍ୱ ପାଇଁ ହେଉଥିଲି ମୁଁ ବିମୁଖ ।
ତୋ ପୃଷ୍ଠେ ବସି ହସ୍ତିନାପୁରକୁ ମୁଁ ଯିବି
ମରିଛନ୍ତି କୌରବେ ସେ ରାଜ୍ୟେ ରାଜା ହେବି ।
ଏତେ ବୋଲି ରାଜା ବହୁ ପ୍ରତିଜ୍ଞା କରନ୍ତେ
ରାଜ୍ୟ ଭିତରେ ପଶନ୍ତେ ଯାଇ ବୀର ପାର୍ଥେ ।
ଏକଲକ୍ଷ ଗଜ ପୁଣି ବେନି ଲକ୍ଷ ହୟ
ଅର୍ଜ୍ଜୁନକୁ ବେଢ଼ିଗଲେ ପାରଦଣ୍ଡଚୟ ।
ରାଗେ ନାରାଚ ବିନ୍ଧିଲା ପାର୍ଥ ମନଭେଦୀ
ଗଜ ଯୋଦ୍ଧାମାନ ସବୁ ପକାଇଲା ଛେଦି ।
ସୂଚିମୁନା ନାରାଚେକ ବିନ୍ଧେ ମହାବଳୀ
ଗଜ କୁମ୍ଭସ୍ଥଳେ ବାଜି ପଛରେ ନିକିଳି ।
ଗର୍ଜନ କରି ପଡ଼ିଲେ ଲକ୍ଷେ ମହାଗଜ
ଦେଖି ବାହାର ହୋଇଲା କୋପେ ମହାରାଜ ।
ଅଶ୍ୱମାନେ ତାର ନୋହିଥିଲେ କେହି କ୍ଷୟ
ଗଜ ପଦାତି ବିକୋତି ଥିଲା ଧନଞ୍ଜୟ ।

ଅନେକ ସଇନ୍ୟ ଘେନି ସେ ବବ୍ରୁବାହନ
ଆସନ୍ତେ ପାଶୁପତକୁ ପେଶିଲା ଅର୍ଜୁନ ।
ଅପାର ସୈନ୍ୟ ପଡ଼ିଲେକ ଯହୁଁ ମହୀ ଲୋଟି
ବବ୍ରୁବାହନ ନୃପତି କୋପଭରେ ଉଠି ।
ବବ୍ରୁବାହନ ହିଁ ଏକା ଅର୍ଜୁନ ହିଁ ଏକା
ସମରେ ସେ ବେନିଜନ ଅଟନ୍ତି ନିଃଶଙ୍କା ।
ବବ୍ରୁବାହନ ବିନ୍ଧିଲା ପନ୍ନଗ ନାରାଚ
ଗରୁଡ଼ ଶରେ କାଟିଲା ସେ ବାଣ ବିବସ୍ତ ।
ବବ୍ରୁବାହନ ବିନ୍ଧିଲା ଧନୁଶର ଧରି
କାମ୍ୟଶରେ ସେ ଶରକୁ ଅର୍ଜୁନ ନିବାରି ।
ପୁନରପି ବିନ୍ଧିଲା ସେ ଅମୋଘ ଶକତି
ବଜ୍ରଶରେ ସେ ଶରକୁ ଅର୍ଜୁନ ପଦାତି ।
ରାଗେ ଅର୍ଜୁନ ମାଇଲେ ଧରି ଅଗ୍ନିବାଣ
ମେଘାଶରେ ନିବାରିଲେ ତା ବବ୍ରୁବାହନ ।
ପବନାଶରେ ମେଘକୁ ନିବାରି ଅର୍ଜୁନ
ତାହା ଦେଖି କୋପ କଲା ସେ ବବ୍ରୁବାହନ ।
ବୁଲାଇ ହସ୍ତରେ ଧରି ମାଇଲାକ ଶୂଳେ
ଅର୍ଜୁନ ତା ନିବାରିଲେ ସହସ୍ର କୋଦାଳେ ।
କହନ୍ତି ଅଗସ୍ତି ତୁମ୍ଭେ ଶୁଣ ବୈବସ୍ୱତ
ରଣେ ମହାବୀର ପାର୍ଥ ନୋହିଲେ ନିବର୍ତ୍ତ ।
ଧଇଲେକ ନାରାୟଣ ଶର ସବ୍ୟସାଚୀ
ଦେଖି ସେ ବବ୍ରୁବାହନ ବ୍ରହ୍ମଶର ଯୋଚି ।
ସେ ବେନି ଶର ଅଟନ୍ତି ପୁଣି ଅପାଲଟ
ରୁଦ୍ର ଇନ୍ଦ୍ର ଚନ୍ଦ୍ର ହେଲେ ହେବ ଶିରକାଟ ।
ଅର୍ଜୁନ ତିଆରେ ଆହୋ ନର ନାରାୟଣ
ଏ ମୂଢ଼ର ଏହିକ୍ଷଣି ଘେନିବୁ ପରାଣ ।
ବବ୍ରୁବାହନ ବୋଇଲା ସେ ବ୍ରହ୍ମଶରକୁ
ସତ୍ୱର ଯାଇଣ ମାରି ପକାଅ ଏହାକୁ ।
ଏକାବେଳକେ ବିନ୍ଧିଲେ ସେହି ଶର ବେନି
ପଡ଼ିଲେକ ବ୍ରହ୍ମଶର ଘାଏ ଫାଲଗୁନି ।
ବବ୍ରୁବାହନ ପଡ଼ଇ ନାରାୟଣ ଶରେ
ଏକାବେଳକେ ଲୋଟିଲେ ଦୁହେଁ ମହୀପରେ ।
ଏ ବିଧି ହୋଇଲେ ତହିଁ ଦୁହେଁ ଯେ ବିନାଶ
ଧନୁ ଯାଇଣ ମକର ହୋଇଲା ପ୍ରବେଶ ।
ମହୀମଣ୍ଡଳେ ଥିଲେ ଯେ ଲକ୍ଷେକ ନୃପତି
ସମସ୍ତେ ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୁଅନ୍ତି ।
ଯାଗେ ବସିଲେ ଯୁଧିଷ୍ଠି ମୁନିପାଦେ ବରି
ବ୍ୟାସ ବଶିଷ୍ଠ ଅଗସ୍ତି ଋଷି ଆଦି କରି ।
ଯୁଧିଷ୍ଠି ବୋଇଲେ ଶୁଣ ଆରେ ସହଦେବ
ହୃଦୟ ବିକଳ ମୋର ବିହ୍ୱଳିତ ଭାବ ।

ଉତ୍ତରଦିଗ ଅନ୍ଧାରମୟ ମୋତେ ଦିଶେ
କିବା ବାବୁ କାଳ ଶେଷ ହୋଇ ମୋର ଆସେ ।
ସହଦେବ ବୋଲେ ଦେବ ହୋଇଲା ବିପଦ
ଅର୍ଜୁନ ଠାକୁରଙ୍କୁ ଯେ ପଡ଼ିଲା ପ୍ରମାଦ ।
ଯେନାବଳୀ ନଗ୍ରେ ବବ୍ରୁବାହନ ଯେ ରାୟ
ଦୁହେଁ ପଡ଼ିଲେ ସମରେ ଦୁହେଁ ଯେ କ୍ଷତ୍ରିୟ ।
ଶୁଣିଣ ବିସ୍ମୟ ଧର୍ମରାଜନ ଯୁଧିଷ୍ଠି
ପୃଥ୍ୱୀରେ ଜନମି ଏଡ଼େ ବଳବନ୍ତା ଗୋଟି ।
ସହଦେବ ବୋଇଲେ ଶୁଣ ହେ ଶୁଣ ଗତକଥା
ଯେତେବେଳେ ବନେ ଗଲେ ପାର୍ଥ ବଳବନ୍ତା ।
ଖାଣ୍ଡବ ଦହନ କଲେ ଯେଉଁ ବନବାସେ
ଶରଣ ପଶିଲା ଶତଧନୁ କୃଷ୍ଣ ତ୍ରାସେ ।
ସେ ଦିନ ଥିଲେ ସେ ପାର୍ଥ ତ୍ରିଅମ୍ବକ ବନେ
ତିନି ବରଷ ରହିଲେ ହିଙ୍ଗୁଳା ଦର୍ଶନେ ।
ଚିତ୍ରାଙ୍କୁର ବୋଲି ତହିଁ ଶବର ନୃପତି
ମଣିପୁର ଦେଶେ ସେହି ଅଟେ ଅଧିପତି ।
ଚିତ୍ରାଙ୍କୁର ରାଜ୍ୟ ବଳେ ଘେନି ମରହଟ୍ଟ
ପଞ୍ଚସରି ବେଳ ଆସି ଭାଙ୍ଗିଲା ତା ରାଷ୍ଟ୍ର ।
ଅର୍ଜୁନ ଯେ ରହିଅଛି ହିଙ୍ଗୁଳାର ପାଶେ
ଚିତ୍ରାଙ୍କୁର ରାଜା ଆସି ଶରଣ ଯେ ପଶେ ।
ଚିତ୍ରାଙ୍କୁରକୁ ଭେଟନ୍ତେ ଯାଇ ମରହଟ୍ଟ
ପାଞ୍ଚଘଡ଼ି ସମର ଯେ ପଡ଼ିଲା ତା ଥାଟ ।
ଚିତ୍ରାଙ୍କୁର କନ୍ୟାକୁ ସେ ଦେଲେ ସଦ୍‌ଗତି
ଦେଖିକରି ଆନନ୍ଦିତ ହେଲା ତାର ମତି ।
ହିଙ୍ଗୁଳାକ୍ଷୀ ବୋଲି ଜାଣ ତାହାର ପ୍ରମଦା
ତାର ଦୁହିତା ଉଲୁପା ପୁଣି ଚିତ୍ରାଙ୍ଗଦା ।
ଅନେକ ବିନୟୀ ହୋଇ ପାର୍ଥକୁ ସେ ନେଲା
ଉଲୁପୀ କନ୍ୟାକୁ ଆଣି ବିଭା କରାଇଲା ।
ଚିତ୍ରାଙ୍ଗଦା କନ୍ୟାକୁ ସେ ଯଉତୁକ ଦେଲା
ତିନିବରଷ ତା ରାଜ୍ୟେ ପାର୍ଥ ଯେ ରହିଲା ।
ସେ ଉଲୁପୀ କନ୍ୟା ଗର୍ଭେ ରହିଲା ସନ୍ତାନ
ବେନିମାସ ଗର୍ଭ ତାର ଅଇଲେ ଅର୍ଜୁନ ।
ସୁଭଦ୍ରାକୁ ଦ୍ୱାରକାରେ ପୁଣି ବିଭା ହେଲେ
ସେ ବେନି କନ୍ୟା ପିତାର ଘରେ ଯେ ରହିଲେ ।
ଉଲୁପୀ ଗର୍ଭରୁ ଜାତ ହେଲା ଯେ ନନ୍ଦନ
ସେ ପୁତ୍ରର ନାମ ଦେଲେ ଶ୍ରୀ ବବ୍ରୁବାହନ ।
ଯୁଧିଷ୍ଠିଙ୍କ ଆଗେ ସହଦେବ ଯେ କହଇ
ପିତା ପୁତ୍ର ବୋଲି ଦେବ ନ ଜାଣନ୍ତି କେହି ।
ସାମାନ୍ୟ ନୁହନ୍ତି ସେ ଯେ ବେନି ସମକକ୍ଷ
ତେଣୁ କରି ତା ସମରେ ପଡ଼ିଲା ବିବସ୍ତ ।

ବଡ଼ ବଳବନ୍ତ ଅଟେ ସେ ବବ୍ରୁବାହନ
ଲୋକାଲୋକ ପର୍ବତରେ ତାହାର ଆସ୍ଥାନ ।
କଟକର ନାମ ଯେନାବଳୀ ଯେ ଅଟଇ
ବଡ଼ ସମାରୋହେ ରାଜା ସେ ରାଜ୍ୟ ପାଳଇ ।
କର୍ଣ୍ଣାଟ ରାଜନ ପାର୍ଥ ସଙ୍ଗେ ହାରିଗଲା
ପଳାଇ ବବ୍ରୁବାହନେ ଶରଣ ପଶିଲା ।
ତାହାର ନିମନ୍ତେ ପିତା ପୁତ୍ର ଯୁଦ୍ଧ କଲେ
ଏକା ଏକା ଶରେ ଦୁହେଁଯାକ ଯେ ପଡ଼ିଲେ ।
ବ୍ୟାସ ବୋଇଲେ ଯେ ଯାଗ କରୁଥାଅ ତୁମ୍ଭେ
ସେ ରଣସ୍ଥାନକୁ ଏବେ ଯାଉଅଛୁ ଆମ୍ଭେ ।
ଯୁଧିଷ୍ଠି ବୋଇଲେ ଅଛି ଲକ୍ଷେକ ଯୋଜନେ
ତୁମ୍ଭେ ସେଠାରେ ମିଳିବ ଯାଇ କେତେ ଦିନେ ।
ଏହା ଭାଳି ଦୁଃଖ ଜାତ ହୁଏ ମୋର ମନେ
ସତେ କି ସୋଦର ଆଉ ଦେଖିବି ନୟନେ ।
ବ୍ୟାସ ବୋଇଲେ ତୁ ଆଉ ନ କର କାରୁଣ୍ୟ
ଆମ୍ଭେ ପ୍ରବେଶ ହୋଇବୁ ଯାଇଁ ଏହିକ୍ଷଣ ।
ଜୟ ବେଦବ୍ୟାସ ତବ ମହିମା ଅନନ୍ତ
ପିତା ପରାଶର ଋଷି କୈବର୍ତ୍ତୀ ତୋ ମାତ ।
ଅନୁବ୍ରତେ ଗାଅ ବିଷ୍ଣୁ ନାମର ମହିମା
ଜାଣି ନ ପାରନ୍ତି ଯାକୁ ଇନ୍ଦ୍ର ଆଦି ବ୍ରହ୍ମା ।
ମନ ଅନୁସାରେ ବଶ ଏ ତୁମ୍ଭର କାୟ
କୋଟି ବ୍ରହ୍ମାଣ୍ଡ କ୍ଷଣକେ ଭ୍ରମ ମହାଶୟ ।
ଜାଣି ନ ପାରୁ ଯେ ମନପବନ ଆକାଶ
ସ୍ୱର୍ଗ ପାତାଳ କେ ପୁଣି ରାତ୍ର କି ଦିବସ ।
ବିଧି ତୋ ମହିମା କରି ନ ପାରଇ ଶେଷ
କହିବି ମୁଁ ତାହା କେତେ କରିଣ ଅଭ୍ୟାସ ।
ସେ ବ୍ୟାସଦେବ ଚରଣେ ଜନ୍ମେ ଜନ୍ମେ ସେବି
ପ୍ରଣତି କରେ ଶାରଳା ଦାସ ନାମେ କବି ।
ଯୁଧିଷ୍ଠିଙ୍କ ସଙ୍ଗେ କଥା କହୁଥିଲେ ଶ୍ରଦ୍ଧେ
ଅଶୀ ସହସ୍ର ଯୋଜନ ଗଲେ ନିଶାଅର୍ଦ୍ଧେ ।
କ୍ଷଣକେ ପ୍ରବେଶ ଅଶୀ ସହସ୍ର ଯୋଜନ
ଦେଖିଲେ ଅଛନ୍ତି ବବ୍ରୁବାହନ ଅର୍ଜ୍ଜୁନ ।
ନାତି ଅଣନାତି ବେନି ଛନ୍ତି ଏକଠାବ
ଅର୍ଜ୍ଜୁନଙ୍କୁ କୋଳ କଲେ ଯାଇ ମୁନିଦେବ ।
ଶସ୍ତ୍ରର ଜ୍ୱାଳାରେ ପାର୍ଥ ମୋହେ ପଡ଼ିଥିଲେ
ବ୍ୟାସଙ୍କ ସ୍ପର୍ଶେ ଚେତନା ପାଇଣ ଉଠିଲେ ।
କମଣ୍ଡଳୁ ପାଣି ସିଞ୍ଚି ଦ୍ୟନ୍ତେ ବ୍ରହ୍ମପତି
ସଚେତ ହୋଇ ବସିଲେ ନାତି ଅଣନାତି ।
ବ୍ୟାସଙ୍କ ମୁଖକୁ ଚାହିଁ ବସିଲେ ସେ ଉଠି
ଚରଣ ଧରି ପ୍ରଣାମ କରଇ କିରୀଟୀ ।
ବ୍ୟାସ ବସାଇଲେ ପାଶେ ନେଇ କୋଳ କରି
କି କାରଣେ ଅଚେତନ ହୋଇଲୁ ପଚାରି ।
ପୁଣି ବୋଇଲେ ଯେ ତୋତେ ଜିଣିଲା ହୋ ପାର୍ଥ
ଦେଖ ଏ ବବ୍ରୁବାହନ ଅଟେ ତୋର ସୁତ ।
ଚିତ୍ରାଙ୍ଗୁର ରାଜାର ଯେ ବେନି କନ୍ୟା ଥିଲେ
ବନବାସ କରିଥିଲୁ ତୁହି ସେତେବେଳେ ।
ଚିତ୍ରାଙ୍ଗଦା ଉଲୁପୀକୁ ବିଭା ଯେ ହୋଇଲୁ
ଗର୍ଭର ଦ୍ୱିତୀୟମାସେ ଛାଡ଼ି ପଳାଇଲୁ ।
ତୋର ବୀର୍ଯ୍ୟେ ଉଲୁପୀର ଗର୍ଭୁ ହେଲା ଜାତ
ବବ୍ରୁବାହନ ତା ନାମ ଅଟେ ତୋର ସୁତ ।
ରାଜା ହୋଇ ପାଳୁଅଛି ହିଙ୍ଗୁଳା ପ୍ରସନ୍ନେ
ଏହାକୁ ଜିଣନ୍ତା କେହି ନାହିଁ ତ୍ରିଭୁବନେ ।
ଅର୍ଜ୍ଜୁନ ବୋଇଲେ ନିସ୍ତରିଲି ନିସ୍ତରିଲି
ଅନ୍ୟର ହାତରେ ମୁହିଁ ଦୂଷିତ ନୋହିଲି ।
ମୋହ ପୁତ୍ର ହାତେ ମୁହିଁ ପ୍ରାଭବ ପାଇଲି
ତହୁଁ ବ୍ୟାସ କୁମରକୁ ଧଇଲେ ଯେ ତୋଳି ।
ମୃତ ସଞ୍ଜୀବନୀ ମହାମନ୍ତ୍ର କର୍ଣ୍ଣେ ଦେଲେ
ତହୁଁ ସେ ବବ୍ରୁବାହନ ଉଠିଣ ବସିଲେ ।
ପୁତ୍ରକୁ ଅର୍ଜ୍ଜୁନ ନେଇ ବସାଇଲେ କୋଳେ
ଅନେକ ପୌରୁଷ କରି କହିଲେକ ଭୋଳେ ।
ଆଗହୁଁ ମୁଁ ଜାଣିଥାନ୍ତି ଯେବେ ଆରେ ପୁତ୍ର
ଏତେ କଟାଳ କିମ୍ପାଇଁ କରନ୍ତୁ ନା ତୁ ତ ।
ବ୍ୟାସ ବୋଇଲେ ତୁ ଯେବେ ଜାଣନ୍ତୁ ଆଗହୁଁ
ଏତେ କାଳ ରହି ପୁଣି ବର୍ତ୍ତିଥାନ୍ତା କାହୁଁ ।
ପୃଥ୍ୱୀର ଭିତରେ ଏହି ଶକତା ବକତା
ଶ୍ୱେତକୁମାର ତୁଲେ ଏ ପ୍ରଥମେ ପଡ଼ନ୍ତା ।
ରଥ ଅଶ୍ୱ ନଗ୍ର ଗଜ ସେନାପତି ପୁର
ହିଙ୍ଗୁଳା ପ୍ରସନ୍ନେ ଭୋଗ କରେ ତୋ କୁମର ।
ଶୁଣି ସାନନ୍ଦ ହୋଇଲା ସେ ବବ୍ରୁବାହନ
କରାଇଲା ଆଣି କାନ୍ତି ରାଜାକୁ ଦର୍ଶନ ।
ଶତସହସ୍ର ସେ ପାଦେ ଦଣ୍ଡବତ କରି
ବେନି ରାଜାଙ୍କୁ ଶୁତିଲେ ପାର୍ଥ ପାଦ ଧରି ।
ରୁହାଇଲା ପିତାକୁ ତା ରାଜ୍ୟେ ଦିନ ତିନି
ପୁତ୍ରକୁ ତା ରାଜ୍ୟ ଦେଇଗଲା ସୈନ୍ୟ ଘେନି ।
ବ୍ୟାସ ଅର୍ଜ୍ଜୁନ ଚଳିଲେ ସେଠାରୁ ବହନ
କୁବଳୟା ପିଠିରେ ଯେ ବିଜୟ ଅର୍ଜ୍ଜୁନ ।
ଘଡ଼ିକ ମଧ୍ୟେ ଅଇଲେ ସହସ୍ର ଯୋଜନ
ପ୍ରବେଶ ହୋଇଲେ ଇନ୍ଦ୍ରପ୍ରସ୍ଥ ରାଜ୍ୟେ ପୁଣ ।
ଅର୍ଜ୍ଜୁନ ଯେ ବିଜେ କଲେ ଦ୍ୱାରକା ଭୁବନେ
ନିମନ୍ତ୍ରଣ ଦେଲେ ରାମକୃଷ୍ଣ ସନ୍ନିଧାନେ ।

ଯୁଧିଷ୍ଠି ଦେବଙ୍କ ଅଶ୍ୱମେଧ ଯାଗ ଶୁଣି
ସାନନ୍ଦ ହୋଇଲେ ଚକ୍ରଧର ହଳପାଣି ।
ଉଗ୍ରସେନ ସହିତରେ ସାତବଂଶ ଘେନି
ରାମକୃଷ୍ଣ ସହିତରେ ଚଢ଼ି ରଥ ବେନି ।
ଦ୍ୱାରକାଭୁବନୁ ସର୍ବେ ହୋଇଗଲେ ସଜ
ଅର୍ଜ୍ଜୁନକୁ ଘେନି ମହାନନ୍ଦ ଦେବରାଜ ।
ଜୟ ତୁ ଜୟ ତୁ ଦେବ ଅନାଦି ନିଧାନ
ଜୟ ତୁ ଜୟ ତୁ ଦେବ କଂସ ନିସୂଦନ ।
ଜୟ ତୁ ଜୟ ତୁ ଦେବ ନନ୍ଦଘରେ ରହି
ଜୟ ତୁ ଜୟ ତୁ ଦେବ ଗୋପୀମନ ମୋହି ।
ଜୟ ତୁ ଜୟ ତୁ ଦେବ ଜରାସନ୍ଧ ଧାପେ
ମଥୁରା ଛାଡ଼ିଲୁ ପୁଣି ନ ରହିବୁ ଗୋପେ ।
ଦ୍ୱାରକାରେ ପୁର କରି ଦୁଷ୍ଟଙ୍କୁ ସଂହାରି
ଶାରଳା ଦାସ ଶରଣ ଚରଣେ ତୋହରି ।

—o—

## ମୃଡ଼ାସୁର ବଧ

ବଦନ୍ତି ଅଗସ୍ତି ଶୁଣି ବୈବସ୍ୱତ ମନୁ
ମୃଡ଼ାସୁର ବୋଲି ଜାଣ ବାଣାସୁରସୁନୁ ।
ମନ୍ତ୍ରୀ ଏକ ଅଛି ତାର ଶଙ୍ଖାସୁର ବୋଲି
ଦିନକେ ସେ ଜମ୍ବୁଦ୍ୱୀପ ପାରଇ ଯେ ବୁଲି ।
ମନ୍ତ୍ରୀ ଜଣାଇଲା ଶୁଣ ତୁହୋ ଦଣ୍ଡଧାରୀ
ଆମ୍ଭେ ଚାଲ ଯିବା ଏବେ ଶୋଣିତ ନଗରୀ ।
କୃଷ୍ଣଙ୍କର ତେଜ ଏବେ ହୋଇଲାଣି ହତ
ଅଷ୍ଟବକ୍ର ଶାପେ ସେହୁ ହେଲେ ବଡ଼ ଭୀତ ।
ମନ୍ତ୍ରୀ ବଚନେ ଚଳଇ ଦୈତ୍ୟ ଦଣ୍ଡଧାରୀ
ସରସ୍ୱତୀ ତୀରେ ଥାଟ ତାହାର ଉଭାରି ।
ଆସନ୍ତେ ମିଳିଲା ଯାଇଁ ଋଷ୍ୟମୁକ ବନେ
ଯାଗ ଗନ୍ଧ ଆମୋଦଇ ଆକାଶେ ଭୁବନେ ।
ଦୈତ୍ୟ ପଚାରଇ ମନ୍ତ୍ରୀ ଗନ୍ଧାଉଛି କିସ
ମନ୍ତ୍ରୀ ଉତ୍ତର ଦିଅଇ ଶୁଣ ନରଈଶ ।
ହତ୍ୟାଦୋଷ ନିବାରଣ ପାଇଁ ପାଣ୍ଡୁସୁତେ
ଅଶ୍ୱମେଧ ଯାଗ କରୁଛନ୍ତି ଶାସ୍ତ୍ରମତେ ।
କରିଛନ୍ତି ସମୁଦାୟ ରାଜାଙ୍କୁ ବରଣ
ଶୁଣି ମୃଡ଼ାସୁର ବୋଲେ ମୁଁ ଅଟେ ରାଜନ ।
ମୋତେ ବରଣ ନ କଲା କେବଣ କାରଣେ
ଅସୁର ବୋଲିଣ ସେହୁ କରିଛି ଏସନେ ।
ମୃଡ଼ାସୁର ବୋଇଲା ତୁ ବାହା ମୋର ବଳ
ମାରିବି ମୁଁ ପାଣ୍ଡବଙ୍କୁ ଭାଙ୍ଗି ଯାଗଶାଳ ।
କୋପେ ସେ ନର ଅଇରି ସାଜି ସମଦଣ୍ଡ
ମହୀରେ ଚଳନ୍ତେ ପାଦ କମ୍ପିଲା ବ୍ରହ୍ମାଣ୍ଡ ।
ବାହିଲାକ ଅଶ୍ୱମେଧ ଯାଗେ ମୃଡ଼ାସୁର
ଶୁଣି କରି ରାଜାମାନେ ହେଲେ ଥରହର ।
ଭୀମ ବୋଇଲେ ନକର ତୁମ୍ଭେ କେହି ଭୟ
ମୁହିଁ ସମରେ ମାରିବି ମୃଡ଼ାସୁର ରାୟ ।
ଏତେ ବୋଲି ସେ ପାଣ୍ଡବକୁଳ ବୀରମଣି
ନକୁଳ ସହଦେବଙ୍କୁ ସଙ୍ଗତରେ ଘେନି ।
ମୃଡ଼ାସୁର ରହିଥିଲା ଯମୁନାର କୂଳେ
ତିନି ପାଣ୍ଡବ ପ୍ରବେଶ ଜଟୀବଟ ତଳେ ।
ରନ୍ଧନ ଭୋଜନେ ଲାଗିଛନ୍ତି ଦୈତ୍ୟବଳ
ଭୋଜନ ଶେଷେ ବେଢ଼ିବେ ଆସି ଯାଗଶାଳ ।
ସର୍ବଙ୍କ ମନ୍ତ୍ରୀ ତାହାର ଜଣାଇଲେ ତାକୁ
ଏହିଠାରେ ତ ଦେଖିବା ଆମ୍ଭେ ପାଣ୍ଡବଙ୍କୁ ।
ଦୈତ୍ୟ ବୋଲେ ଶ୍ରୀକୃଷ୍ଣଙ୍କୁ ଭୟ କରୁ ସିନା
ପାଣ୍ଡବଙ୍କୁ ବିବାଦରେ କରିଦେବି ଚୂନା ।
ଏତେ ବୋଲିଣ ଦାନବେ ଉଚ୍ଚେ ରଡ଼ି ଛାଡ଼ି
ଅଶୀଲକ୍ଷ ଯୋଦ୍ଧା ଘେନି ଚଳିଲେ ସଜାଡ଼ି ।
ଦୈତ୍ୟଙ୍କର ରଡ଼ି ଶୁଣି ବୀରବର ଭୀମ
କାଳଦଣ୍ଡ ଘେନି ବିଜେ କଲା କିବା ଯମ ।
ମନ୍ଦର ପର୍ବତ ଜାଣି ଭୀମଙ୍କର କାୟ
ନୟନ ବେନି ଭ୍ରମଇ କାଳଚକ୍ର ପ୍ରାୟ ।
ରେରେକାର ଶବଦରେ ଉଠଇ ମାରୁତି
ନକୁଳ ଯେ ସହଦେବ ପାରୁଶେ ଅଛନ୍ତି ।
ପନ୍ଦର ଅର୍ବୁଦ ରଥୀ ଅସୁରଙ୍କ ସଙ୍ଗେ
ଆରମ୍ଭେ ପାଣ୍ଡବେ ଯୁଦ୍ଧ କଲେ ଯାଇଁ ଆଗେ ।
ଗଦା ମୁଦୁଗର ନେଇ ପିଟନ୍ତି କେ ବେଗେ
ବିନ୍ଧନ୍ତି ଯୋଦ୍ଧାଏ ଏକ ଆରେ କହିଁ ରାଗେ ।
ବଢ଼ିଲାକ ରଣରଙ୍ଗ ଅସୁର ସଇନେ
ଭୀମ ପ୍ରହାରେ ପଡ଼ିଲେ ପର୍ବତ ସମାନେ ।
ଲୋହ ପର୍ବତକୁ ବଳେ ଉପାଡ଼ିଣ ଭୀମ
ଧାମଇଁ ରାହୁର ପ୍ରାୟ ରଣରଙ୍କା ନାମ ।
ଗଦା କୁନ୍ତ ମୁଦୁଗର ଛେଲ ଚକ୍ର ଆଣି
ବିନ୍ଧନ୍ତେ ଯୋଦ୍ଧାଏ ଏକୁ ଆରେକ ଯେ ଟାଣି ।
ଦେବଶସ୍ତ୍ରକୁ ଯେ ଭୀମ ନ କରଇ ଭୟ
ବଜ୍ର ସମାନ ଅଟଇ ତାହାର ଯେ କାୟ ।
ଅନେକ ଅସୁର ସୈନ୍ୟ ପଡ଼ିଲେକ ରଣ
ସମରେ ନିଧନ ଏକା କଲା ଭୀମସେନ ।
ଭୀମର ବିଧାରେ ତହୁଁ ପଡ଼ିଲେ ସଇନି
ରାହୁର ପ୍ରାୟ ଉଠିଲେ ରଣେ ଜଣ ତିନି ।
ସୈନ୍ୟ ଭଗ୍ନ ଦେଖି ସେହି ମୃଡ଼ାସୁର ରାୟ
ଯମଦଣ୍ଡ କାଳଦଣ୍ଡ ନରଦଣ୍ଡ ତ୍ରୟ ।

ଦେବଦଳନକୁ ଘେନି ଚାରି ସେନାପତି
ଚାରିଙ୍କର ତୁଲେ ଚାରି ଅର୍ବୁଦେକ ରଥୀ ।
ଲୁହା ଧନୁ ଏକ ଏକ ଧରି ଶର ବିନ୍ଧି
ସଭାରେ ସେ ଅର୍ବୁଦେକ ଦୈତ୍ୟ ମହାଯୋଦ୍ଧୀ ।
କଟାଳିଲା ଆସି ଯମଦଣ୍ଡ ସେନାପତି
ଶତେକ ନୃପତି ସେହି ବିନ୍ଧିଲାକ ଧାତି ।
ତାହାର ହସ୍ତର ବେଗ ଦେଖି ତ ନ ପାରି
ଏମନ୍ତ ବିନ୍ଧିଲା ସେହି ପୁଣି ବେଳ ଚାରି ।
ବାମଅଙ୍ଗ ପାତି ତାହା ଭୀମସେନ ସହି
ଅଗ୍ନି ଝଲକଇ ପଡ଼ି ଭୀମସେନ ଦେହୀ ।
ବାମଅଙ୍ଗ ପାତି ସବୁ ସହିଲା ଗରଜି
ଯମଦଣ୍ଡ ଧନୁକୁ ସେ ପକାଇଲା ଭାଙ୍ଗି ।
ଗଦା ବୁଲାଇ ପିଟିଲା ଭୀମ ବେଗେ ଉଠି
ପଡ଼ିଲା ସେ ଯମଦଣ୍ଡ ମହୀତଳେ ଲୋଟି ।
କାଳଦଣ୍ଡକୁ ଧଇଲା କୋପେ ବେନି କରେ
ବୁଲାଇ ପିଟିଲା ନରଦଣ୍ଡର ଉପରେ ।
ଦୁରନ୍ତକ ଅସୁର ସେ ରଣେ ମହାବଳୀ
ବଜ୍ର ପରିତାଳ ପ୍ରାୟ ଉଠିଲେ ସେ ଜଳି ।
ଯମଦଣ୍ଡ କାଳଦଣ୍ଡ ନରଦଣ୍ଡ ତିନି
ପଡ଼ିଲେ ଭୀମ ପ୍ରହାରେ କାମୁଡ଼ି ମେଦିନୀ ।
ତିନିଙ୍କ ପଡ଼ିବା ଦେଖି ଭାଙ୍ଗିଲେ ସଇନି
ଧାମନ୍ତି ତିନି ପାଣ୍ଡବେ ପବନକୁ ଜିଣି ।
ଅସୁର ସଇନି ଯେତେ ପ୍ରହାରନ୍ତି ବାଣ
ଭୀମ ବଜ୍ର ଅଙ୍ଗେ ପଡ଼ି ହୋଇଗଲା ଚୂର୍ଣ୍ଣ ।
ନକୁଳ ସହଦେବଙ୍କୁ ବିନ୍ଧନ୍ତି ଯେ ବାଣ
ପର୍ବତ ସମାନ ତାହା ଓଗାଳନ୍ତେ ଜାଣ ।
ତିନିଦୈତ୍ୟଙ୍କ ସଙ୍ଗରେ ଯେତେ ଯୋଦ୍ଧା ଥିଲେ
ପଞ୍ଚକ୍ରୋଶ ଦଉଡ଼ିଣ ସମସ୍ତେ ପଡ଼ିଲେ ।
ସୈନ୍ୟ ହତ ଦେଖି ଦେବଦଳନ ଅସୁର
ବହୁ ସୈନ୍ୟ ଦେଖି ଓଗାଳିଲାକ ସତ୍ୱର ।
ନକୁଳ ସହଦେବ ଯେ ଭୀମସେନ ତିନି
ଦେଖିଲେ ସେ ଓଗାଳନ୍ତି ଅନେକ ସଇନି ।
ଅସୁର ବଳଙ୍କୁ ଧରି ଭୂମିରେ କଚାଡ଼ି
ପିଟନ୍ତି ସେ ଶାଳତରୁମାନଙ୍କୁ ଉପାଡ଼ି ।
ଅନେକ ସୈନ୍ୟ ବେଢ଼ିଲେ କୋପେ ପୁଣି ଆସି
ଛାଗଳଙ୍କୁ ବାଘ ପରି ଭୀମ ସବୁ ଧ୍ୱଂସି ।
ଭୀମ ବିଘାତେ ପଡ଼ିଲେ ରଣେ ଦୈତ୍ୟବଳ
ଦଣ୍ଡ ଭଗ୍ନ ହୋଇ ଧାଏଁ ରକ୍ଷ କାଳାନଳ ।
ଦୈତ୍ୟ ସେନାପତି ଅଟେ ଯେ ଦେବଦଳନ
ଭୀମର ସଙ୍ଗରେ ଆସି ଆରମ୍ଭିଲା ରଣ ।
ଲୁହା ବେନି ଗଦା ଶତ ଶତ ଭାର ତୁଲେ
ଭୀମ ଉପରେ ପ୍ରହାର କଲା ମହାମଲ୍ଲେ ।
ମାରୁତି ଆପଣା ଗଦା ଧଇଲାକ ଆଡ଼ି
ଚୂର୍ଣ୍ଣ ହୋଇଗଲା ଦୈତ୍ୟ ଗଦା ତହିଁ ପଡ଼ି ।
ପୁଣି ହିଁ ଗଦାଏ ମାରେ କୋପେ କଉଣପ
ଗଦା ବିଘାତେ ଭାଙ୍ଗିଲା ବୃକୋଦର ଦର୍ପ ।
ଭୀମ ପଡ଼ନ୍ତେ ନକୁଳ ସହଦେବ ବେନି
ସମର କରନ୍ତି ହାତେ କୁନ୍ତ ଗଦା ଘେନି ।
ପୁଣି ସେ ଦଇତ୍ୟ ଲୁହା ଗଦା ଘେନି ଉଠି
ନକୁଳ ଉପରେ ନେଇ କୋପେ ତାହା ପିଟି ।
ଅସୁର ବିଘାତ ପାଇ ପଡ଼ିଲା ନକୁଳ
ସହଦେବକୁ ପ୍ରହାର କଲା ମହାବଳ ।
ହୃଦେ ବାଜି ଗଦାବର ବହିଲା ଶୋଣିତ
ମନ୍ତ୍ରୀ ଚୂଡ଼ାମଣି ପଡ଼ି ହୋଇଲା ଅଚେତ ।
ତିନିଜଣ ଅଚେତନ ରଣ ମଧ୍ୟେ ପଡ଼ି
ଧାମନ୍ତି ଅସୁରେ ଯାଗଶାଳକୁ ଯେ ବେଢ଼ି ।
ଅନେକ ରାଜାଏ ଥିଲେ ସେହି ଇନ୍ଦ୍ରପ୍ରସ୍ଥେ
ପଳାଇଲେ ଅସୁରଙ୍କ ଭୟେ ଇତସ୍ତତେଃ ।
ଋଷିଗଣମାନେ ଭୟେ ଗଲେ ଅନ୍ତର୍ଦ୍ଧାନେ
ଯାଗଶାଳାରେ ପଶିଲେ କୋପେ ଦୈତ୍ୟମାନେ ।
ଅନେକ ଧନ ଭଣ୍ଡାର ନେଲେ ଲୁଟ କରି
ଖାଇଲେକ ବାଳଖିଲ୍ୟାମାନଙ୍କୁ ସେ ପୋଡ଼ି ।
ରାନ୍ଧଣା ଯୋଗାଡ଼ ଯେତେ ଥିଲା ଯାଗଶାଳେ
ସମସ୍ତ ଆହାର କଲେ ଦୈତ୍ୟ କୁତୂହଳେ ।
ପୋରୁହ ଛାଗଳ ନାନା ବିଧ ମାଂସମାନ
କେବଣ ଦ୍ରବ୍ୟ ନ ଥାଇ ଯାଗର ବିଧାନ ।
ସମସ୍ତ ଆହାର କଲେ ଅସୁର ନିର୍ଭୀକେ
ଯୁଧିଷ୍ଠିର ଧରନ୍ତେ ଯେ ଗଲେ ଯାଗନିକେ ।
ସବୁ ରାଜ୍ୟ ଭାଙ୍ଗି ଲୁଟ କଲେ କଉଣପେ
ଶୋଣିତ ପୁରକୁ ଚଳିଗଲେ ମହାକୋପେ ।
ଦ୍ୱାରକାରୁ ଆସୁଥିଲେ ରାମ ଭଗବାନ
ନିକଟେ ଦେଖିଲେ ଯିବା ଅସୁର ସଇନ୍ୟ ।
ଏକାଳେ ଆସି ବିଜୟେ ନାରଦ ମହର୍ଷି
ଶୁକ୍ରଦେବତା ତାହାଙ୍କୁ ଦେଲେ ବେଗେ ପେଷି ।
ନାରଦ ମହର୍ଷି ତହୁଁ ଗଲେକ ବହନ
ବାରତା କହିଲେ ଯାଇ କୃଷ୍ଣ ସନ୍ନିଧାନ ।
ବାସୁଦେବ କି ନ ଜାଣୁ ଯାଉ କେଉଁ କାର୍ଯ୍ୟେ
ମୂଢ଼ା ଅସୁର ବାହିଲା ଇନ୍ଦ୍ରପ୍ରସ୍ଥ ରାଜ୍ୟେ ।
ଭୀମସେନ ନକୁଳ ଯେ ସହଦେବ ତିନି
ପଡ଼ିଲେ ସମରେ ଘେନି ଅନେକ ସଇନି ।

ତିନିହେଁ ପଡ଼ିଲେ ରଣେ ଯମୁନାର କୂଳେ
ଧାଇଁ ଯାଇ ଦୈତ୍ୟବଳ ପଶି ଯାଗଶାଳେ ।
ଧନଭଣ୍ଡାର ଅନେକ ନେଲେ ଲୁଟ କରି
ଖାଇଲେ ସେ ବାଳଖିଲ୍ୟା ଋଷିମାନ ପୋଡ଼ି ।
ରାନ୍ଧଣା ଯୋଗାଡ଼ମାନ ଖାଇଲେ ସମସ୍ତ
ଧରି ନିଅନ୍ତି ଯୁଧିଷ୍ଠି ଯାଜ୍ଞିକ ସହିତ ।
ଡରେ ଆସି ନ ପାରିଲେ ଦେବ ସୁରପତି
ରାମ ଛାମୁରେ କହନ୍ତେ ସେ ନାରଦ ଯତି ।
ରୋହିଣୀ ନନ୍ଦନ ଅତି ବଳେ ମହାବଳୀ
ରଣଗୋଳ ଧନ୍ଦଳକୁ ବିଜେ କଲେ ହଳୀ ।
ତ୍ରଇଲୋକ୍ୟ ନ ବର୍ତ୍ତଇ ଯେଉଁ ରାମ କୋପେ
କାଳାନ୍ତକ ରୂପ ଦେଖି ଡରିଲେ କୌଣପେ ।
ବଜ୍ର ବିଘାତେ ଯେସନେ ଲୋଟନ୍ତି ପର୍ବତେ
ପଡ଼ିଲେ ଦାନବ ବଳରାମ ଅସ୍ତ୍ରାଘାତେ ।
ଦେବଦଳନ ନାମରେ ଯେବଣ ଅସୁର
ଅର୍ଜ୍ଜୁନ ସଙ୍ଗେ ସମର ତାର ଗୁରୁତର ।
ଅସୁର ଦୁରନ୍ତ ଯୁଦ୍ଧେ ନୁହନ୍ତି ତ ଊଣା
ଦେବଗନ୍ଧର୍ବେ ନ ଯାଇ ଯାହାଙ୍କ ଗଣନା ।
ପ୍ରବଳ ହୋଇ ଉଠିଲା ପୁଣି ରଣରଙ୍ଗ
ନାରାଚ ବିନ୍ଧୁ ଅଦୃଶ୍ୟ ଗଗନର ମାର୍ଗ ।
ଅର୍ଜ୍ଜୁନ ବିନ୍ଧିଲା କୋପେ ଅମୋଘ ଶକତି
କାଟି ପକାଇଲା ଦୈତ୍ୟ ମୁଣ୍ଡକୁ ବିକୋତି ।
ଦେବଦଳନ ହୋଇଲା ରଣେ ଯହୁଁ ବଧ
ସାଧୁ ସାଧୁ କଲେ ରହି ଆକାଶେ ବିବୁଧ ।
ସେନାପତି ପଡ଼ନ୍ତେ ଯେ ଭାଙ୍ଗିଲେ ସଇନି
ସମରେ ଘୋଟି ବିନ୍ଧଇ ବୀର ଫାଲଗୁନି ।
ନାରାଚ ଗୋଟିକେ କୋଟି ଅସୁର ଯେ ପଡ଼ି
ଯେସନେକ ବାତାଘାତେ ପକ୍ୱଫଳ ଝଡ଼ି ।
ସଇନ୍ୟଙ୍କୁ ନିଶୋଧନ କରି ଫାଲଗୁନି
ଯାଜ୍ଞିକମାନଙ୍କୁ ମୂଳେ ଯୁଧିଷ୍ଠିଙ୍କି ଘେନି ।
ଅସୁର ପଡ଼ନ୍ତେ ତାଙ୍କୁ ଆଣି ଧନଞ୍ଜୟ
ନନ୍ଦିଘୋଷରେ ବସାନ୍ତେ ବୋଇଲେକ ରାୟ ।
ମୂଢ଼ାସୁର କଲା ବାବୁ ଅନେକ ସମର
ଯାଗଶାଳମାନ ଭାଙ୍ଗି କଲା ନାରଖାର ।
ଲୌହ ଧନୁରେ ନାରାଚ ବିନ୍ଧଇ ଅସୁର
ଶସ୍ତ୍ରମାନ ପଡ଼େ ରାମ ରଥର ଉପର ।
ତୀକ୍ଷ୍ଣ ଶରକେ ଯୋଚିଲା ଅତି ତୀକ୍ଷ୍ଣମୁନା
ବଳରାମ ରଥେ ପଡ଼ି ଶର ହୁଏ ଚୂନା ।
ଶର ବୃଷ୍ଟିକରେ ଦୈତ୍ୟ ଶତବେଳଯାଏ
ବଳଦେବ ଦେହେ ପଡ଼ି ସବୁ ଚୂର୍ଣ୍ଣ ହୁଏ ।

କୋଟି ସିଂହ ପରାକ୍ରମ ପୁଣି ରୋଷଭରେ
ଅସୁରକୁ ପ୍ରହାରିଲେ ବଜ୍ର ମୂଷଳରେ ।
ଦୈତ୍ୟ ଅଙ୍ଗେ ସେ ମୂଷଳ ପଡ଼ି ଭାଙ୍ଗିଗଲା
ଲୁହା ଗଦା ଘେନି ପୁଣି ରାମଙ୍କୁ ପିଟିଲା ।
ଦୈତ୍ୟ ଗଦା ପଡ଼ିବାରୁ ରାମ ବକ୍ଷସ୍ଥଳ
ନିଚେଷ୍ଟ ହୋଇ ପଡ଼ିଲେ ସ୍ୱାମୀ କାମପାଳ ।
ବଳରାମଙ୍କ ନିଚେଷ୍ଟ ଦେଖି ଦେବ ହରି
ରଥୁ ଡେଇଁଗଲେ ଚକ୍ର ସୁଦର୍ଶନ ଧରି ।
ତାଳଧ୍ୱଜ ରଥେ ନେଇ ଶୁଆଇ ରାମଙ୍କୁ
ଦାରୁକ ରଥ ବାହିଲା ଦ୍ୱାରକା ପୁରକୁ ।
ଶ୍ରୀକୃଷ୍ଣ ସମର କଲେ ମୂଢ଼ାସୁର ସଙ୍ଗେ
କୌମୋଦକୀ ଗଦା ଦେବ ପ୍ରହାରିଲେ ବେଗେ ।
କୃଷ୍ଣର ଗଦା ପଡ଼ନ୍ତେ ପାତିଲା ସେ ଅଙ୍ଗ
ଅଧିକେ ନାରାଚ ଦୈତ୍ୟ କରି ରଣରଙ୍ଗ ।
ପାଞ୍ଚବେଳ ପରିଯନ୍ତେ ପିଟିଲେ ମୁରାରି
ଭୁଜ ପାତିଣ ସହଇ ସେ ନର ଅଇରି ।
କୌମୋଦକୀରେ ସେ ତହୁଁ ନୋହିଲାକ କ୍ଷୟ
ଦେଖଇ ବିସ୍ମୟ ହୋଇଲେ ପ୍ରଭୁ ଦେବରାୟ ।
ଲୁହାର ଗଦାକୁ କରେ ଘେନି କଉଣପ
କୃଷ୍ଣ ଉପରେ ପିଟିଲା କରି ମହାକୋପ ।
ବେଳେ ଉଞ୍ଚାଇଲେ ତାହା ଦେବ ଜନାର୍ଦ୍ଦନ
ଆରେକ ବେଳ ପ୍ରହାର କଲା ଯାତୁଧାନ ।
ଗଦାବର ଘାଏ କୃଷ୍ଣ ହେଲେ ଅଚେତନ
ଦେଖି ରଣ ଆବୋରିଲା ପାଣ୍ଡବ ଅର୍ଜ୍ଜୁନ ।
ନନ୍ଦିଘୋଷ ରଥେ ନେଇ କୃଷ୍ଣଙ୍କୁ ଶୁଆଇ
କଥା କହି ନ ପାରନ୍ତି ପ୍ରଭୁ ଯଦୁସାଇଁ ।
ଚଉଦଲକ୍ଷ ଯେ ତହିଁ ଥିଲେ ଯଦୁବଳ
କୃଷ୍ଣଙ୍କୁ ଅଚେଷ୍ଟା ଦେଖି ହୁଅନ୍ତି ବିକଳ ।
ପାର୍ଥ ଆସି ଓଗାଳିଲେ ଦୈତ୍ୟର ଆଗର
କହିଲେ ଜାଣିବା କେଡ଼େ କ୍ଷତ୍ରିପଣ ତୋର ।
ଅର୍ଜ୍ଜୁନ ସଙ୍ଗେ ପ୍ରଦ୍ୟୁମ୍ନ ଲକ୍ଷେ ଭ୍ରାତ ଘେନି
ରଣେ ଆବୋରିଲେ ଆସି ଦୈତ୍ୟକୁ ସେ ପୁଣି ।
ଭଗ୍ନବଳମାନେ ରାମ ଶ୍ରୀକୃଷ୍ଣଙ୍କୁ ଘେନି
ରୈବତ ପର୍ବତେ ଯାଇ ରହିଲେ ସଇନୀ ।
କୁବଳୟ ଅଶ୍ୱପୃଷ୍ଠେ ବସି ବୀରପାର୍ଥ
ଅସୁର ତୁଲେ ଯୁଝଇ ଦେଖାଇ ସମର୍ଥ ।
ଶାମ୍ବ ଗଦା ଆଦି ଶ୍ରୀକୃଷ୍ଣଙ୍କ ଲକ୍ଷେ ପୁତ୍ର
ପାର୍ଥ ରଣ ଦେଖି ସର୍ବେ ହୁଅନ୍ତି ଚକିତ ।
ବେନିଦଳ ମଧ୍ୟେ କିଛି ନୋହିଲେ ପ୍ରଭେଦ
ଅସୁର ନିଧନେ ପାର୍ଥ କରେ ଘୋର ଯୁଦ୍ଧ ।

ପଞ୍ଚ ଅର୍ବୁଦ ଅସୁର ସୈନ୍ୟ ସଙ୍ଗେ ଥିଲେ
ବେନି ଦିବସ ମଧ୍ୟରେ ସମସ୍ତେ ପଡ଼ିଲେ ।
ସମସ୍ତ ମରାଇ ମୂଢ଼ାସୁର ଅଛି ଏକା
ତଥାପି ସମର କରେ ହୋଇଣ ନିଶଙ୍କା ।
ନାରଦ ମିଳିଲେ ଯାଇ ଅସକନ୍ଦ ବନ
ବୋଇଲେ ଶୁଣରେ ବାବୁ ବୀର ହନୁମାନ ।
ଭୀମସେନ ସହଦେବ ଯୁଧିଷ୍ଠି ନକୁଳ
ରାମକୃଷ୍ଣ ସହିତରେ ଯେତେ ଯଦୁବଳ ।
ଅଚେତନ ହୋଇଲେଣି ମୂଢ଼ାସୁର ରଣେ
ନ ପାଇ ଲକ୍ଷେକ କୃଷ୍ଣ ପୁତ୍ର ଗଲେ କେଣେ ।
ଏହିକ୍ଷଣି ସଂଗ୍ରାମରେ ପଡ଼ିଲେ ଅର୍ଜୁନ
ଏକା ମୂଢ଼ାସୁର ଅଛି ନାହିଁ ତାର ସୈନ୍ୟ ।
ନାରଦ ମୁଖରୁ ସେହି ଏସନକ ଶୁଣି
ପବନ ନନ୍ଦନ ତ୍ରେତାଯୁଗ ବୀରମଣି ।
ଏକା ପାଦକେ ସେ ହନୁମାନ ଗଲା କ୍ଷେପି
ନବସହସ୍ର ଯୋଜନେ ଇନ୍ଦ୍ରପ୍ରସ୍ଥ ବ୍ୟାପି ।
ଅର୍ଜୁନକୁ ପଛ କରି ହନୁ ହୋଏ ଆଗ
ଲୁହାଗଦା ଘେନି ପିଟେ ଦୈତ୍ୟ କରି ରାଗ ।
ନିର୍ଘାତ ପ୍ରାୟେକ ସେହି ପିଟଇ ଗରଜି
ଲୁହାର ସେ ବେନି ଗଦା ପଡ଼ିଲାକ ଭାଜି ।
ଲୁହା ପରିଘେକ ପୁଣି ଅଟଇ ଦନୁଜ
ଭାଙ୍ଗି ପକାଇଲା ତାହା ପବନ ଆତ୍ମଜ ।
କୋପେ ମୂଢ଼ାସୁର ପୁଣି ଧଇଲାକ ଧନୁ
ଛଡ଼ାଇଣ ତାହା ଭାଙ୍ଗି ପକାଇଲା ହନୁ ।
ବାମକରେ ଧରି ବୀର ମୂଢ଼ାସୁର ହସ୍ତ
ମାଇଲାକ ବଜ୍ର ସମ କରି ଏକ ମୁଥ ।
ଭୁଜେ ଭୁଜ ଛନ୍ଦି ଭିଡ଼ି ଧଇଲା ନିଠାଇ
ପାଦେ ପାଦ ଛନ୍ଦି ତଳେ ଦେଲାକ ପକାଇ ।
ତର୍ଜନ୍ତି ଗର୍ଜନ୍ତି ଦୁହେଁ ପ୍ରହାରନ୍ତି ବିଧା
ଭୟେ କମ୍ପମାନ ହୋଇ କାନ୍ଦିଲା ବସୁଧା ।
ଶିରେ ଶିର ପରିତାଳ ଅଗ୍ନି ତହୁଁ ଉଠି
କାଳାନଳ ଜାଣି ବହ୍ନି ଚୌଦିଗେ ପ୍ରକଟି ।
ରଡ଼ିର ବିଘାତେ କମ୍ପିଗଲା ପୁର ତିନି
ଚରଣ ବିଘାତେ ଦଳ ଦଳ ତ ମେଦିନୀ ।
ଚଉଦ କୋଶ ଆୟତ୍ତ ସେ ହରିତ ବନ
ପର୍ବତ ଡିଙ୍ଗର ଖାଲ ହୋଇଲା ସମାନ ।
ହନୁକୁ ମାଡ଼ିବସିଲା ମୂଢ଼ାସୁର ବଳେ
ବେନି ଭୁଜ ଭିଡ଼ି ତାର ବସି ବକ୍ଷସ୍ଥଳେ ।
ଦୁଃସହ ପ୍ରତିଜ୍ଞା କୋପେ କରଇ ଚଣ୍ଡାଳ
ଆରେରେ ମର୍କଟ ଏବେ ପୂରିଲା ତୋ କାଳ ।
ଆରେ ରେ ମର୍କଟ କିଏ ତୋ ଇଷ୍ଟ ଦେବତା
ଆରେ ରେ ମର୍କଟ ତୋତେ ଛାଡ଼ିଲା ବିଧାତା ।
ହୁଁକାର ଶବଦ ଏକ ହନୁମନ୍ତ କରି
ଅସୁରକୁ ଲେଉଟାଇ ବସେ ବକ୍ଷୋପରି ।
ବଜ୍ର ମୁଥକେ ପ୍ରହାର କଲା କରି କୋପ
ମୁଥଘାତେ ଅଚେତନ ହେଲା କଉଣପ ।
ବେନି ଚରଣ ବୁଲାଇ ଆକର୍ଷି ଧଇଲା
ହରିମେଖଳା ପର୍ବତେ ନେଇ କଚାଡ଼ିଲା ।
ପାଞ୍ଚକୋଶ ଆୟତନ ଯେବଣ ହିଁ ଗିରି
ଅସୁରକୁ ପ୍ରହାରନ୍ତେ ଗିରି ହେଲା ଚୂରି ।
ଯହୁଁ ହନୁ ନେଇ ନୀଳ ପର୍ବତେ ପିଟଇ
ଭାଜିଲା ସେ ଗିରି ପୁଣ ମସୀଗୁଣ୍ଡା ହୋଇ ।
ଶତେବେଳ ପ୍ରହାରିଲା ଏପରି ମାରୁତି
ସବୁ ପର୍ବତ ଏପରି ଗୁଣ୍ଡା ହୋଇଯାନ୍ତି ।
ରଣେ ହନୁମାନ ତହୁଁ ହୋଇଲା ବିମୁଖ
ମୋହ ତେଜି ସହଦେବ ହନୁମାନ ଦେଖ ।
ସହଦେବ ବୋଇଲା ହୋ ଶୁଣ ହନୁମାନ
ପ୍ରତାପୀ ଦୈତ୍ୟର ଏବେ ମୃତ୍ୟୁ ବିବରଣ ।
ରଣେ ବିମୁଖ ତୁ ପୁଣି ନୁହଁ ବୀରମଣି
ଛାଡ଼ିଲେ ସଚରାଚର ଭକ୍ଷିବ ଏକ୍ଷଣି ।
ଅସୁରକୁ ତଳେ ମାଡ଼ିବସି ବକ୍ଷସ୍ଥଳେ
ତାର ମୃତ୍ୟୁଭେଦ ଶୁଣ କହୁଛି ନିଶ୍ଚଳେ ।
ବହୁ କ୍ଷେତ୍ରେ ଉପୁଜିଲା ଯେବଣ ଦଇତ
ତାହାର ନନ୍ଦନ ନାମ ଅଟେ ମଦମତ୍ତ ।
ତାର ବଂଶେ ଜାତ ଏହି ମୂଢ଼ାସୁର ଜାଣ
ରୁଦ୍ରସେବା କରି ପାଇଅଛି ବଡ଼ପଣ ।
ସୁଦର୍ଶନ କାଳଚକ୍ର ସୂର୍ଯ୍ୟା ବର୍ତ୍ତ ଶର
ଏମାନେ ହିଁ ନ ଭେଦିବେ ଶରୀରେ ଏହାର ।
ବ୍ରହ୍ମଶର ପାଶୁପତ ଶର ମନଭେଦୀ
ଏ ଶରମାନ ଏହାର ଶରୀରେ ନ ଭେଦି ।
ଯମ କାଳପାଶ ନାଗପାଶ କାଳପାଶ
ଏ ଶରମାନଙ୍କେ ଏହି ନୋହିବ ବିନାଶ ।
ନ କାଟିବ ନାନା ଶସ୍ତ୍ରମାନ ଯାର କାୟେ
ଏମନ୍ତ ବର ସେ ଦେଲେ ଦେବଦେବରାୟେ ।
ଦେବଲୋକ ନରଲୋକ ପବନ ବହନି
ଏଣେ ବଧ ନୋହିବ ଏ ଜାଣ କାଳ ତିନି ।
ଈଶ୍ୱର ଦେବତା ଦେଲେ ଏହିରୂପେ ବର
ସମସ୍ତ ପ୍ରାପତ ହୋଇ ହେଲା ବଳୀୟାର ।
ବର ଦେଇ ତ୍ରିପୁରାରି ବିଜେ କପିଳାସେ
ବ୍ରାହ୍ମଣ ରୂପେ ମିଳିଲେ ବ୍ରହ୍ମା ତାର ପାଶେ ।

ବ୍ରହ୍ମା ବୋଇଲେ ଅନେକ କାଳ କଲୁ ତପ
କିସ ବର ପାଇଲୁ ତୁ କହ କଉଣପ ।
ମୂଢ଼ା ବୋଇଲା ମାଗିଲି ଯାହା ଦେଲେ ମୋତେ
ବର ମାଗିଲି ମୁଁ ଉଦେ ଅସ୍ତ ପରିଯନ୍ତେ ।
ଦେବ ନର ନାଗ ଜଳ ଅନଳ ପବନ
ଏଣେ ଅବଧ୍ୟ ମୁଁ ବର ଦେଲେ ତ୍ରିଲୋଚନ ।
ବ୍ରହ୍ମା ବୋଇଲେ ତୁ ଏଡ଼େ ଜଣ କିମ୍ପା ହୁଡୁ
ଜାତ ହୋଇ କିମ୍ପାଇଁ ତୁ ମରଣ ନ ଲୋଡୁ ।
ଯେବଣ ଈଶ୍ୱର ତୋତେ ଦେଇଅଛି ବର
ସେହି ମରିବ ଅବଶ୍ୟ ଜାଣ କାଳାନ୍ତର ।
ଏବେ ତୁ ଯାଇ ପଚାର ପୁଣି ଈଶ୍ୱରଙ୍କୁ
ଶୁଣି ଦଇତ ଧାଇଁଲା ପୁଣି କୈଳାସକୁ ।
ମୃତ୍ୟୁଭେଦ ପଚାରନ୍ତେ ବୋଇଲେ କପାଳି
ବାମପାଦର ତୋର ଜ୍ୟେଷ୍ଠ ଯେ ଅଙ୍ଗୁଳି ।
ସେ ଅଙ୍ଗୁଳି ଯେବେ ଯାଇଁ ପଶିବ ତୋ ତୁଣ୍ଡେ
ତେବେ ତୋର ଜୀବ ଜାଣ ନ ରହିବ ପିଣ୍ଡେ ।
ପିଣ୍ଡ ଦାନବ ଅନଳ ପବନ କି ଜଳ
ଏଣେ ନାଶ ନୋହିବ ତୁ ଜାଣ ମହାମଲ୍ଲ ।
ମର୍କଟ ହାତରେ ମୃତ୍ୟୁ ହୋଇବ ତୋ ଜାଣ
ନିଜ ଭକ୍ଷ କପି ବୋଲି ମଣିବୁ ସେ ହୀନ ।
ବାବୁରେ ଯେତେ ପିଟିଲୁ ପର୍ବତ ଉପରେ
ଶରୀର ବଜ୍ର ତାହାର ଅସୁର ନାମରେ ।
ସହଦେବର ବଚନ ଶୁଣିଣ ମାରୁତି
ଅଙ୍ଗୁଷ୍ଠିକି ଧରେ ବୀର ହୋଇ ବିଶ୍ୱମୂର୍ତ୍ତି ।
ଆକର୍ଷଣ କରି ନେଇ ଭରିଲା ତା ତୁଣ୍ଡେ
ମୃତ୍ୟୁ ହେଲା ନ ରହିଲା ଜୀବ ତାର ପିଣ୍ଡେ ।
ଆକାଶେ ଶୁଭିଲା ତହୁଁ ସାଧୁ ସାଧୁ ବାଣୀ
ଜୟମାଳା ତା ଗଳାରେ ଦେଲେ ବଜ୍ରପାଣି ।
ରାମକୃଷ୍ଣ ଭୀମସେନ ଯୁଧିଷ୍ଠିର ତୁଲେ
ନକୁଳ ସହିତ ମୋହ ତେଜିଣ ଉଠିଲେ ।
ଇନ୍ଦ୍ରପ୍ରସ୍ଥ ରାଜ୍ୟକୁ ସେ ତହୁଁ ଚଳିଗଲେ
ଋଷିଙ୍କି ଘେନି ସେ ଅଶ୍ୱମେଧ ଯାଗ କଲେ ।
କୁବଳୟା ତୁଲ୍ୟ ଦେଲେ ପାଞ୍ଚଗୋଟି ଅଶ୍ୱ
ସର୍ବ ଆଭରଣ ଅଙ୍ଗେ ଦେବ ଅଙ୍ଗବାସ ।
ଅଶ୍ୱ ଗୋଟିକେ କୋଟିଏ ମାଢ଼ ଯେ ସୁବର୍ଣ୍ଣ
ଏକ ଅଶ୍ୱର ଦକ୍ଷିଣା ଲକ୍ଷେ ମାଢ଼ ସ୍ୱର୍ଣ୍ଣ ।
ଯାଗ ସମର୍ପିତ ହେଲା ପୁଣି ଯେତେବେଳେ
ଆକାଶୁ କନକ ବୃଷ୍ଟି କଲେ ଦିଗପାଳେ ।
ଆକାଶେ ଅଶ୍ୱ ନେଲେ ଅଶ୍ୱନୀ କୁମାର
ଦୋହରା କର୍ମ ସମାପ୍ତ କଲେ ନୃପବର ।

କୃଷ୍ଣ ବଳରାମ ରାଜାଗଣ ଦେବଗଣ
ମୁନି ଋଷିଗଣ ଗଲେ ମେଲାଣି ହୋଇଣ ।
ଶୁଣିମା ହେ ସାଧୁଜନେ ଅଶ୍ୱମେଧ କଥା
କହିବାକୁ ମୁହିଁ ପୁଣି କିସ ମହାରଥା ।
ପାଣ୍ଡବଙ୍କର ଯେତେକ ଥିଲା ହତ୍ୟା ଦୋଷ
ଅଶ୍ୱମେଧ ଯଜ୍ଞେ ସର୍ବ ହୋଇଗଲା ଧ୍ୱଂସ ।
ଶ୍ରଦ୍ଧାରେ ଏହା ପଠନ କରନ୍ତି ଯେ ଲୋକେ
ଲଭନ୍ତି ସେ ସଦ୍‌ଗତି ନ ପଡ଼ନ୍ତି ନର୍କେ ।
ଐଶ୍ୱର୍ଯ୍ୟ ଧନ ସମ୍ପତ୍ତି ପୁତ୍ର ଯଶଶିରୀ
ଅବଶ୍ୟ ପାଇବ ଯାହା ଯେହୁ ବାଞ୍ଛା କରି ।
ଯଦଦଣ୍ଡ ନ ଲଭି ସେ ନିଷ୍କଳଙ୍କ ହୋଇ
ନକ୍ଷତ୍ର ମଣ୍ଡଳେ ଯାଇ ନିଶ୍ଚେ ସ୍ଥାନ ପାଇ ।
ଯମଦଣ୍ଡ ରାଜଦଣ୍ଡ ଦୁସ୍ତରୁ ନିସ୍ତରି
ଅଶ୍ୱମେଧ ଫଳଶ୍ରୁତି ହୃଦେପଦ୍ମେ ଧରି ।
କୃପାଜଳ ନନ୍ଦିନୀ ଗୋ ଦେବୀ ସରସ୍ୱତୀ
କାଶୀକ୍ଷେତ୍ରେ ହିଁ ଯାହାର ଜନମ ଧରିତ୍ରୀ ।
ପ୍ରଳୟ ଉଦ୍ଧାରିଣୀ ଗୋ ପ୍ରସନ୍ନ ନର୍ମଦା
ସେ ଦେବୀ ଚରଣେ ମୋର ବିନୟ ସର୍ବଦା ।
କଳିମଳଧ୍ୱଂସିନୀ ଗୋ ପ୍ରସନ୍ନ ହିଙ୍ଗୁଳା
ସର୍ବଜନ ବନ୍ଦିନୀ ଗୋ ନାମ ଯେ ଶାରଳା ।
ପରମ ଆନନ୍ଦ ତୋର ପର ଦୁଃଖେ ଦୁଃଖୀ
ସର୍ବଜନ ବୋଧିନୀ ଗୋ ପ୍ରସନ୍ନ ତୋ ମୁଖ ।
ଜାତ ମଧ୍ୟ ଅନ୍ତ କରୁ ଯାର ସାଧୁ ବୁଦ୍ଧି
ବୁଧଜନମାନେ ଯାର ଚରଣ ଆରାଧି ।
ଓଡ଼ରାଷ୍ଟ୍ର ମଣ୍ଡଳରେ ଝଙ୍କଡ଼ ଯେ ପୁରୀ
ଯମଦଣ୍ଡ ବିଦାରିଣ ଶରଣ ତୋହରି ।
ଆଦି ଅନ୍ତ ମଧ୍ୟ ନାହିଁ ଯାର ଅବଶେଷ
ଭୁବି ଦିବି ଅନ୍ତରୀକ୍ଷ ଶୂନ୍ୟ ଯେ ଆକାଶ ।
ପାପ କର୍ମ ଯାହାଠାରେ ନାହିଁ ପୁଣ ଲେଶ
ଜଗତ ଜନମଣ୍ଡନୀ ହର ସର୍ବ ଦୋଷ ।
ଅବ୍ୟକତ ବ୍ୟକତ କି ନାହିଁ ତୋ ବିକାର
ବୃନ୍ଦାରକ ମଧ୍ୟେ ଯାର ମହିମା ଅପାର ।
ଦୂରନ୍ତ କଥା ନ ରହେ ଶୁଣି ଯାର ନାମ
କାଳଦୂତ ଅପସରେ ନ ପଶଇ ଯମ ।
ସର୍ବଦା ତ କାଳପ୍ରିୟ ନାନା ରସେ ଭୋଳ
ରୁଧିର ଦର୍ଶନ ତୋର ସଦା କୁତୂହଳ ।
ଶ୍ରୀଚଣ୍ଡୀ ଶାରଳାଙ୍କର ଚରଣାରବିନ୍ଦ
ପାନ କରେ ଭୃଙ୍ଗ ହୋଇ ତହୁଁ ମକରନ୍ଦ ।
ଅହର୍ନିଶି କରେ ମୁହିଁ ସେ ପାଦେ ଦଇନି
ବଦନ୍ତି ଶାରଳା ଦାସ କବି ଶୂଦ୍ରମୁନି ।

## ମହାଭାରତ ଅଶ୍ୱମେଧ ପର୍ବ ସମାପ୍ତ

# ମହାଭାରତ

## ଆଶ୍ରମିକ ପର୍ବ

### ବନ୍ଦନା

ନମସ୍ତେ ଶ୍ରୀ ଶାରଳା ଗୋ ଝଙ୍କଡ଼ବାସିନୀ
ଅଭୟ ବରଦାୟିନୀ ସଂକଟ ତାରିଣୀ ।
ତବ କୃପାବଳେ ମାଗୋ ଶ୍ରୀମହାଭାରତ
କିଞ୍ଚିତ ଲେଖନେ ମୁହିଁ ହୋଇଲି ସମର୍ଥ ।
ଅଶ୍ୱମେଧ ପର୍ବ ଅନ୍ତେ ଆଶ୍ରମିକ ପର୍ବ
ବର୍ଣ୍ଣନେ ଉଦ୍ୟତ ମାଗୋ ଦେଖାଅ ସେ ମାର୍ଗ ।
ସଂସାର ସାଗରେ ମାଗୋ ଭାସୁଅଛି ମୁହିଁ
ଶାରଳା ଦାସକୁ ରକ୍ଷାକର ମହାମାୟୀ ।

—o—

### ଯଦୁବଂଶ ଧ୍ୱଂସ ବିବରଣ

ଶୁଣ ହେ ରାଜନ ଶାମ୍ବକୁମାର ଚରିତ
ଶ୍ରୀ ମହାଭାରତ କଥା ଅତ୍ୟନ୍ତ ପବିତ୍ର ।
ଅମୃତରୁ ବଳି ଅଟେ ସେହି ରସବାଣୀ
ଶତବାର ଗଙ୍ଗାସ୍ନାନ ଫଳ ମିଳେ ପୁଣି ।
କଳି କଳୁଷରୁ ଲିପ୍ତ ହୁଅନ୍ତି ଯେ ପ୍ରାଣୀ
ତରନ୍ତି ମହାଭାରତ କଥାମୃତେ ଶୁଣି ।
ତହୁଁ ଶାମ୍ବ ଆସି ଦ୍ୱାରକାରେ ପ୍ରବେଶିଲା
ସୁନ୍ଦର ପଣରେ କନ୍ଦର୍ପକୁ ଧିକ୍କାରିଲା ।
ଦେଖି କୃଷ୍ଣ ବଳରାମ ଆନନ୍ଦିତ ହେଲେ
ଦ୍ୱାରକାରେ ନାନା ମହୋତ୍ସବ କରାଇଲେ ।
ପୁତ୍ରକୁ କୋଳରେ ଧରି ସ୍ୱୟଂ ବନମାଳି
ଅର୍ଘ୍ୟ ବନ୍ଦାପନା କଲେ ଧରି ସ୍ୱର୍ଣ୍ଣଥାଳି ।
ଶୁକ୍ଳପକ୍ଷ ତ୍ରୟୋଦଶୀ ସଉରୀ ବାସର
ଅଶ୍ୱନୀ ନକ୍ଷତ୍ରେ ଭୋଗ ଅଟେ ସେଦିନର ।
ସେଦିନ ବିଧାତା ଅଷ୍ଟବକ୍ରଙ୍କୁ ଯେ ରାଇ
ଆଜ୍ଞା ଦେଲେ ଦେଖ କୃଷ୍ଣ ମର୍ତ୍ତ୍ୟେ କି କରଇ ।
ଭାରା ନିବାରଣ ଏବେ ହୋଇଲାଣି ଶେଷ
କାହିଁପାଇଁ ନ ଆସନ୍ତି କୃଷ୍ଣ ସ୍ୱର୍ଗ ଦେଶ ।
କର ଯେଉଁ ପ୍ରକାରେ ସେ ବୈକୁଣ୍ଠକୁ ଆସେ
ସ୍ୱକୁଟୁମ୍ବ ନାଶ କରେ ପୁଣି ନିଜ ଦୋଷେ ।
ବିଧାତା ବଚନ ଶୁଣି ଅଷ୍ଟବକ୍ର ଋଷି
ଦ୍ୱାରାବତୀ ପୁରେ ତହୁଁ ମିଳିଲେକ ଆସି ।
ଯାଦବଙ୍କୁ ଦେଖି ମନେ ହେଲେ ବଡ଼ ତୋଷ
ବିଚାରିଲେ କିଛିଦିନେ ହୋଇବେ ଏ ନାଶ ।
ସ୍ୱଭାବେ ତାଙ୍କ ଶରୀର ଅଟେ ଅଷ୍ଟବାଙ୍କ
ଉପହାସ କରନ୍ତି ଯେ ତାକୁ ମନ୍ଦଲୋକ ।
ସଭା ମଧ୍ୟେ ବସିଥିଲେ ଅନେକ ଯାଦବେ
କାହାକୁ ସେ ଭୟ ନ କରନ୍ତି ମତ୍ତଗର୍ବେ ।
ଭୟ କରି ଯମ ତହିଁ ପଶି ନ ପାରନ୍ତି
ଶ୍ରୀକୃଷ୍ଣ ପ୍ରସାଦେ ସର୍ବେ ଗର୍ବିତ ଅଟନ୍ତି ।
ଋଷିଙ୍କି ଦେଖିଣ ସର୍ବ ପିଲାଯାକ ମିଳି
ଶାମ୍ବକୁ ସ୍ତ୍ରୀବେଶ କଲେ ହୋଇ କୁତୂହଳି ।
ଲୌହମୂଷଳେକ ତାର ପେଟେ ନେଇ ବାନ୍ଧି
ମିଛେ ଅଣକତ ପ୍ରାୟ ହୁଏ କାନ୍ଦି କାନ୍ଦି ।
ବିନୟରେ ଯାଇତ ମୁନିଙ୍କି ସେ ପ୍ରଣମିଲେ
ଯଥାବିଧି ମାନ୍ୟ ତାଙ୍କୁ ସମସ୍ତେ କରିଲେ ।
ପଚାରିଲେ କରଯୋଡ଼ି ମୁନିଙ୍କର ଆଗେ
ଏ କାମିନୀ ଗର୍ଭବାସ ହୋଇଲାକି ଯୋଗେ ।
ଦଶମାସ ପୂରିଲାଣି ନ କରେ ପ୍ରସବ
କି ଅଛି ଏହାର ଗର୍ଭେ ଫେଡ଼ିଣ କହିବ ।
ଧ୍ୟାନ କରି ମୁନିବର ସକଳ ଜାଣିଲେ
ଅତି କୋପଭର ହୋଇ ପିଲାଙ୍କୁ ବୋଇଲେ ।
ଶୁଣରେ ଏହାର ଗର୍ଭେ ଅଛି ଯେଉଁ ପୁତ୍ର
ତାହାଦ୍ୱାରା ନାଶଯିବ ଯାଦବ ସମସ୍ତ ।
ମୁହିଁ ତପୋବନ୍ତ ମୋତେ କଲ ଉପହାସ
କୃଷ୍ଣ ସହ ନାଶ ତୁମ୍ଭେ ଯାଅ ଯଦୁବଂଶ ।
ଏହିପରି ଶାପ ତାକୁ ଦେଲେ ମହାମୁନି
ଦ୍ୱାରକାକୁ ନ ଗଲେ ସେ ଅପମାନ ଘେନି ।
ମୁନିଙ୍କ ଶାପ ଲଭିଣ ସେହି ପିଲାମାନେ
କିସ କରିବା ଭାବନ୍ତି ତହିଁ ମନେ ମନେ ।
କଉତୁକେ ଆମ୍ଭେମାନେ କି କାର୍ଯ୍ୟ କରିଲୁ
ମହାଭୟଙ୍କର ବ୍ରହ୍ମଶାପକୁ ଲଭିଲୁ ।
ଚାଲ କୃଷ୍ଣଙ୍କୁ ଏକଥା କହିବା ସକଳ
ପ୍ରତିକାର ଥିଲେ କରିବେ ସେ ଆଦିମୂଳ ।

ପ୍ରଦ୍ୟୁମ୍ନ ସହିତେ ଯେତେ ପୁତ୍ର ତହିଁ ଥିଲେ
କି ବୋଲି କହିବା ବୋଲି ମନେ ବିଚାରିଲେ ।
ତହୁଁ ପ୍ରବେଶ ହୋଇଲେ ଶ୍ରୀକୃଷ୍ଣ ଛାମୁରେ
ଅତ୍ୟନ୍ତ ବିରସ ହୋଇ ବୋଲନ୍ତି କାତରେ ।
ପ୍ରଣାମ କରି ଶ୍ରୀକୃଷ୍ଣ ପାଦେ ସର୍ବେ ଭେଟି
ବୋଲନ୍ତି କ୍ରମରେ କରପତ୍ର ଯୋଡ଼ି ଉଠି ।
ହସିବା ନିମନ୍ତେ ଦେବ ଯେଉଁ କର୍ମ କଲୁ
ଅଷ୍ଟବକ୍ର ଋଷିଙ୍କର ଶାପ ଯେ ଲଭିଲୁ ।
କପଟେ ଶାମ୍ବକୁ ନାରୀବେଶ କରିଥିଲୁ
ଲୁହାର ମୂଷଳ ତାର ପେଟେ ପୂରାଇଲୁ ।
କଉତୁକ ପାଇଁ ଆମ୍ଭେ ଋଷିଙ୍କର ଆଗେ
କରଯୋଡ଼ି କରି କହିଲୁ ଯେ ଯାଇଁ ବେଗେ ।
ଏହି ସୁନ୍ଦରୀର ହେଉଅଛି ଗର୍ଭ ଭାରି
ଜନମ କରିବ ଏହୁ କିବା ନରନାରୀ ।
ଧ୍ୟାନ କରି ମୁନିବର ହୋଇଣ ନିଷ୍ଫଳ
କପଟ ଚରିତ ବୋଲି ଜାଣିଲେ ସକଳ ।
ବୋଇଲେ ଏ ନାରୀ ଯାହା ପ୍ରସବ କରିବ
ହରି ସହ ଯଦୁବଂଶ ତହିଁ ନାଶଯିବ ।
ପିଲାଙ୍କଠାରୁ ଶ୍ରୀକୃଷ୍ଣ ଏମନ୍ତ ଶୁଣିଲେ
ଗାନ୍ଧାରୀର ଅଭିଶାପ ତହୁଁ ସୁମରିଲେ ।
କୃଷ୍ଣ ବିଚାରିଲେ ପୂର୍ବୁ ଅଛି ତ ସ୍ୱରୂପ
ପଡ଼ିଯିବ କାହିଁପାଇଁ ଗାନ୍ଧାରୀର ଶାପ ।
ମାୟା କରି ତାର ବଂଶ ମରାଇଲି ମୁହିଁ
ଯାହା ଅର୍ଜିଛି ଅବଶ୍ୟ ତାହା ଭୁଞ୍ଜିବଇଁ ।
ତହୁଁ ଶ୍ରୀକୃଷ୍ଣ ଯେ ଅକ୍ରୂରକୁ ହକାରିଲେ
ପ୍ରବେଶନ୍ତେ ତାହାକୁ ଏପରି ଆଜ୍ଞା ଦେଲେ ।
ଯାଅ ଇନ୍ଦ୍ରପ୍ରସ୍ଥକୁ ଯେ ତୁମ୍ଭେ ଅତି ବେଗେ
ପାଣ୍ଡବଙ୍କ ନବରରେ ପ୍ରବେଶିବ ରଙ୍ଗେ ।
ପାଞ୍ଚଭାଇ ଥିବେ ତହିଁ ଯୁଧିଷ୍ଠି ସହିତେ
ମୋହର ବଚନ ବୋଲି କହିବୁ ତୁରିତେ ।
ମୋ ଆଜ୍ଞା କହି ଭୀମକୁ ଆସିବୁ ତୁ ଘେନି
କୃଷ୍ଣ ବାକ୍ୟେ ଚଳିଗଲା ଅକ୍ରୂର ତକ୍ଷଣି ।
ପ୍ରବେଶି ଶ୍ରୀକୃଷ୍ଣ ଆଜ୍ଞା କହିଲାକ ତହିଁ
ଭୀମସେନକୁ ସେଠାରୁ ଆଣିଲାକ ରାଇ ।
ଦ୍ୱାରକା ଭୁବନେ ଆସି ଭୀମ ପ୍ରବେଶିଲେ
କୋଳ କରି କୃଷ୍ଣ ତାଙ୍କୁ ଆଲିଙ୍ଗନ କଲେ ।
ଶ୍ରୀକୃଷ୍ଣ ପୁଚ୍ଛନ୍ତି ତାଙ୍କୁ ସମସ୍ତ କୁଶଳ
ଭୀମ ବୋଲେ ତବ ସୁଦୟାରୁ ସବୁ ଭଲ ।
କହନ୍ତି ବିନୟେ ଭୀମ ଆଗେ ହୃଷୀକେଶ
ଲୌହ ମୂଷଳଟି ଦେଖାଇଲେ ତାର ପାଶ ।
ଆରେ ବାବୁ ଏକ କାର୍ଯ୍ୟ କର ଏବେ ମୋର
ଏ ଲୁହକୁ ବିନାଶ ତୁ କର ଶୀଘ୍ରତର ।
କ୍ଷୀରସିନ୍ଧୁ ତୀରେ ଅଛି ପାଷାଣ ଯେ ଗିରି
ବିଶାଶତେ ଯୁଣ ପ୍ରସ୍ଥ ଅଟଇ ତାହାରି ।
ଏ ଲୁହାକୁ ସେ ପର୍ବତ ପରେ ନେଇ ଘୋର
ଯେପରି ଏ ଶେଷ ହେବ ତାହା ଶୀଘ୍ର କର ।
ସେ ଲୁହାକୁ ଘେନି ଭୀମ ଚଳିଲେ ତୁରିତେ
ଦ୍ୱାରକାପୁରୁ ଯୋଜନ ଅଟେ ବିଶାଶତେ ।
ସେ ପର୍ବତ ଉପରକୁ ଉଠି ଭୀମସେନ
ଜଳ ଦେଇ ସେ ଲୁହାକୁ ଘଷେ ପ୍ରତିଦିନ ।
ପବନ ଭୀମସେନକୁ ଦିଅଇ ଆହାର
ଦିବରାତ୍ରି ଘୋରିଲା ସେ ବରଷ ଏଗାର ।
ଧୂଳିପ୍ରାୟ କରି ତାକୁ ଛିଣ୍ଡାଇଣ ଦେଲା
କ୍ଷୁଦ୍ରହୋଇ ଖଣ୍ଡେ ମାତ୍ର ଶେଷକୁ ରହିଲା ।
ରେଣୁ ପ୍ରାୟ ହୋଇ ଯେଉଁ ଲୁହା ଛିଡ଼ିଗଲା
ଏରକାବନ ହୋଇ ସେ କୂଳରେ ଲାଗିଲା ।
ଏପରି ଘୋରିଣ ଲୁହାଖଣ୍ଡ କଲା କ୍ଷୟ
ମନେ ବିଚାରଇ ଭୀମ ପବନତନୟ ।
ଏହି କ୍ଷୁଦ୍ରଖଣ୍ଡ ଅବା କରିପାରେ କିସ
ଏଡ଼େ ଖଣ୍ଡ ଘୋରିକରି କଲି ଅବଶେଷ ।
ସମସ୍ତ ଛିଣ୍ଡାଇଣ ଯେ ଧୂଳି ପ୍ରାୟ କଲି
ପୁଣି ବୃକୋଦର ମନେ ବିଚାରଇ ଭାଳି ।
କ୍ଷୁଦ୍ରଖଣ୍ଡ ଅଛି ଯେ ସେ କରିପାରେ କିସ
ଅଷ୍ଟବକ୍ର ଦେଲା ଶାପ ହେଲା ଅବଶେଷ ।
ଏହା ଭାବି ସମୁଦ୍ରକୁ ପକାଇଣ ଦେଲା
ସେ ସିନ୍ଧୁପାଣିରେ ଏକ ମୀନ ଯେ ଗିଳିଲା ।
ଅଗାଧ ସମୁଦ୍ରେ ଯାଇ ପଡ଼ନ୍ତେ ଯେ ଲୁହା
ତକ୍ଷଣେ ଜଳଙ୍ଗ ମୀନ ଭକ୍ଷିଲା ଯେ ତାହା ।
ଗିଳନ୍ତେ ଦିଶିଲା ସେହି ସ୍ୱର୍ଣ୍ଣମତ୍ସ୍ୟ ପ୍ରାୟ
ନିଜ ତେଜେ ସିନ୍ଧୁ କଲା ସେ ଆଲୋକମୟ ।
ସେଠାବରୁ ଭୀମସେନ ବାହୁଡ଼ିଣ ଗଲା
ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଛାମୁରେ ମିଳିଲା ।
ବୋଇଲା ଭୋ ଦେବ ସେହି ମୂଷଳ ଘୋରିଲି
ଘୋରି ଘୋରି ସେ ଗିରିକି ଭୂମିସମ କଲି ।
ଶେଷକୁ ଅଳ୍ପ ରହିଲା ଘୋରି ନ ପାରିଣ
ସମୁଦ୍ର ଜଳରେ ତାହା ଦେଲି ପକାଇଣ ।
ଭୀମବାକ୍ୟ ଶୁଣି ପଚାରନ୍ତି ବାସୁଦେବ
ଅଷ୍ଟବକ୍ର ଋଷି ଶାପ ଅନ୍ୟଥା ନୋହିବ ।
ସେ ଲୁହା ଖପରା ରେଣୁ ଯହିଁ ପଡ଼ିଥିବ
କାଳେ ଯଦୁବଂଶ ତାହାଦ୍ୱାରା ନାଶଯିବ ।

ଶେଷଖଣ୍ଡ ରହିଲା ଯା ନ ପାରିଲା ଘୋରି
ସେହି ଖଣ୍ଡକରେ ପ୍ରାଣଯିବ ଯେ ମୋହରି ।
ଶ୍ରୀକୃଷ୍ଣ ଭୀମକୁ ତହୁଁ ଆଲିଙ୍ଗନ କଲେ
ଭୁଜେ ଭିଡ଼ି ଆନନ୍ଦରେ ବସାଇଲେ କୋଳେ ।
ସଦା ଅନୁରାଗ ମୋତେ ରଖିଥିବୁ ଭୀମ
ଦୋଷେ ଅଦୋଷେ ମୋଠାରେ ନ ବହିବୁ ତମ ।
ନାନାରତ୍ନ ଦେଇ ବିଦା କଲେ ସେ ଭୀମକୁ
ସେ ତହୁଁ ଆସି ନମିଲେ ଯୁଧିଷ୍ଠି ଦେବଙ୍କୁ ।
ଯୁଧିଷ୍ଠିଦେବ ବୋଇଲେ କେଉଁ କାର୍ଯ୍ୟ ପାଇଁ
ଶ୍ରୀକୃଷ୍ଣ ତୋତେ ଏଠାରୁ ଗୁପ୍ତ ଗଲେ ନେଇ ।
ଭୀମସେନ ବୋଲେ ଦେବ ଅଷ୍ଟବକ୍ର ଋଷି
ଏକଦିନେ ଦ୍ୱାରାବତୀ ପୁରେ ଥିଲେ ଆସି ।
ବକ୍ରେ ଚାଲିବାର ତାକୁ ଦେଖିଣ ଯାଦବେ
ଲୁହା ଖପରାଏ ନେଇ ଭରି ଶାମ୍ବଗର୍ଭେ ।
ନାରୀବେଶ କରି ନାନା ଆଭରଣ ଦେଲେ
ପ୍ରମାଣ କରାଇ ଋଷିଙ୍କୁ ଯେ ପଚାରିଲେ ।
ଦଶମାସ ହେଲା ହୋଇଛି ଏ ଗର୍ଭବତୀ
କୁହନ୍ତୁ ଯା ଗର୍ଭେ ଅଛି ପୁତ୍ର କି ଦୁହିତୀ ।
କିମ୍ବା ପ୍ରସବ ନ କରି ପାଏ ବଡ଼ ବ୍ୟଥା
କହି ପାରିବକି ମୁନି ଏଥିର ବାରତା ।
ଧ୍ୟାନେ ଜାଣିଲେ କହନ୍ତି ଏହା ଉପହାସ
ବୋଇଲେ ତଦ୍ୱାରା ତୁମ୍ଭ ବଂଶ ହେବ ନାଶ ।
ଶ୍ରୀକୃଷ୍ଣ ସହିତ ନାଶ ହେବ ତୁମ୍ଭେମାନେ
ଏ ବାରତା ଶୁଣି କୃଷ୍ଣ ଭୟ କଲେ ମନେ ।
ମୋତେ ଡାକି କରି କହିଲେ ଯେ ଯାକୁ ଘୋର
ଅବଶେଷ ନ ରଖିଣ ସବୁ ଶେଷ କର ।
କ୍ଷୀରସିନ୍ଧୁ ତଟେ ଏକ ନୀଳ ନାମେ ଗିରି
ବିଶାଶତେ ଯୋଜନ ଯେ ବିସ୍ତାର ତାହାରି ।
ତହିଁରେ ଲାଗଇ ଦେବ କଳ୍ପବଟ ଛାଇ
ତା ପରେ ମୁଁ ସେ ଲୁହାକୁ ଘୋରିଲି ନିଠାଇ ।
ଏଗାର ବରଷେ ସେହି ଲୁହା ଯେ ଛିଣ୍ଡିଲା
ସେ ନୀଳପର୍ବତ ଭୂମି ସମାନ ହୋଇଲା ।
ଟିକିଏ ମାତ୍ର ରହିଲା ନ ପାରିଲି ଘୋରି
ସମୁଦ୍ର ଜଳରେ ତାହା ଫୋପଡ଼ାଇ ଦେଲି ।
ଯୁଧିଷ୍ଠି ପୁଚ୍ଛିଲେ ଶୁଣ ଆହେ ସହଦେବ
ଋଷି ଶାପ ସତେ କି ଶ୍ରୀକୃଷ୍ଣଙ୍କୁ ଘଟିବ ।
ମନ୍ତ୍ରୀବର ବୋଇଲେ ତା ଅବଶ୍ୟ ଫଳିବ
ଅଷ୍ଟବକ୍ର ଋଷି କଥା ଅନ୍ୟଥା ନୋହିବ ।
ଭୋ ଦେବ ଲୁହା ଘୋରନ୍ତେ ଜନ୍ମିଲା ଯେ ଫେଣ
ତହୁଁ ଜାତ ହେଲା ବହୁ ଏରକାର ବନ ।

ତାହା ଧରିଣ ଯାଦବେ ହେଲେ ମରାମରି
ସକଳେ ପଡ଼ିଲେ ତହୁଁ ହୋଇ ଜ୍ଞାନ ହାରି ।
ସେ ସନ୍ତରାବନେ ଯଦୁବଂଶ ନାଶଯିବେ
ଶେଷକୁ କେବଳ ଏକା ଶ୍ରୀକୃଷ୍ଣ ରହିବେ ।
ଏହା ଶୁଣି ଯୁଧିଷ୍ଠିର ସନ୍ତାପିତ ହେଲେ
କି ହେବ କି ହେବ ବୋଲି ବହୁ ଶୋକ କଲେ ।
କୃଷ୍ଣ ବିନା ରାଜ୍ୟେ ଆମ୍ଭ କିସ ପ୍ରୟୋଜନ
କି ଆମ୍ଭର ସୁଖ ଭୋଗ ଅଇଶ୍ୱର୍ଯ୍ୟମାନ ।
ଶୁଣ ମନ୍ତ୍ରୀ ବୋଲେ ଭୀମ ଯାକୁ ଫିଙ୍ଗିଦେଲା
ତତକ୍ଷଣେ ତାକୁ ଏକ ମତ୍ସ୍ୟ ଯେ ଗିଳିଲା ।
ବେଣୁପୁର ଗ୍ରାମବାସୀ କୁଞ୍ଜାରୀ କୈବର୍ତ୍ତ
ଜାଲଯୋଗେ ଯେ ମାନକୁ ମାଇଲା ତୁରିତ ।
ଦୃଢ଼କରି ସେ ମୀନକୁ କୈବର୍ତ୍ତ ଆଣିଲା
ଭାର୍ଯ୍ୟା ହାତେ ତାହାଦେଇ ଏପରି କହିଲା ।
ଆମ୍ଭର ମିତ୍ର ଯେ ଜରାଶବର ଅଟନ୍ତି
ଏ ମୀନ ଗୋଟିକି ତାଙ୍କୁ ଦିଅ ହେ ଝଟତି ।
ସବୁ ମତ୍ସ୍ୟମାନଙ୍କରେ ଏ ସାର ଅଟଇ
ଦେଖିଲେ ଏହାକୁ ଖୁସି ହୋଇବ ଯେ ସେହି ।
ଅପୂର୍ବ ଯେ ପଦାର୍ଥ ତା ମିତ୍ରଙ୍କୁ ଦେବାର
ଏହା ଶୁଣି କେଉଟୁଣୀ ଗଲା ଯେ ସତ୍ୱର ।
ଶବରପୁରେ ପ୍ରବେଶି ସେ ମତ୍ସ୍ୟକୁ ଦେଲା
ବନ୍ଧୁଭାବ ନାନା ମିଷ୍ଟାଳାପ ତହିଁ କଲା ।
ମୀନ ଦେଖି ଶବର ଯେ ହେଲା ଆନନ୍ଦିତ
ମୃଗ ଗୋଟିଏକ ଆଣିଦେଲାକ ତୁରିତ ।
ବନ୍ଧୁ ସେହ୍ନେ ମିତ୍ର ଭାରିଯାକୁ ତାହା ଦେଲା
ଏଥୁଅନ୍ତେ ସେ ଶବର ମତ୍ସ୍ୟକୁ ଦେଖିଲା ।
ମତ୍ସ୍ୟ ହାତେ ଧରିଣ ସେ ଗୃହକୁ ଯେ ଗଲା
ଶବରିଣୀକି ହକାରି ବଚନ ବୋଇଲା ।
ଏ ମତ୍ସ୍ୟକୁ ଶୀଘ୍ର କରି କେଳାଅ ଯେ ତୁହି
ମଇତ୍ର ଆମ୍ଭର ଦେଇଛନ୍ତି ପଠିଆଇ ।
ପତିର ଏ ବାକ୍ୟ ଯହୁଁ ଶବରୀ ଶୁଣିଲା
ପନିକି ଘେନିଣ ତହୁଁ ମୀନକୁ ଚିରିଲା ।
ବେନିଖଣ୍ଡ କରିଣ ଯେ କାଟନ୍ତେ ତାହାକୁ
ଗର୍ଭ ଭିତରୁ ପାଇଲା ସେ କ୍ଷୁଦ୍ର ଲୁହାକୁ ।
ଦେଖି ତାହା ଶବରିଣୀ ଆଶ୍ଚର୍ଯ୍ୟ ହୋଇଲା
ହାତେ ଧରି ନିଜ ପତି ପାଶକୁ ଚଳିଲା ।
ବୋଲେ ମୀନ ପେଟେ ଥିଲା ଏ ଲୁହାଖଣ୍ଡିକ
ବଡ଼ ସୁନ୍ଦର ଏ ଅଟେ ଦିଶେ ଜକ ଜକ ।
ଦେଖି ତାକୁ ଶବର ତା ହାତୁ ଘେନିଗଲା
ତୀକ୍ଷ୍ମମୁନା ଦେଖି ତାକୁ ମନେ ବିଚାରିଲା ।

କେଡ଼େ ତେଜସ୍କର ଲୁହାଖଣ୍ଡିକ ଦିଶଇ
ନାରାଚ ଗୋଟିଏ ଗଢ଼ାଇବି ତାହା ନେଇ ।
ଅନ୍ୟଥା କରିବ କିଏ ଭବିଷ୍ୟତ ବାଣୀ
ଯାହା କରିବେ କରନ୍ତୁ ଦେବ ଚକ୍ରପାଣି ।
ସେ ଲୁହା ଘେନି କମାରଶାଳକୁ ଯେ ଗଲା
ଧନ ଦେଇଣ ନାରାଚ ଏକ ଗଢ଼ାଇଲା ।
ବେନିପାଶ କାନ ତାର ଧାର ଅତିଶୟ
ବାଣ ଦେଖି ଶବରର ଉଲ୍ଲସିଲା କାୟ ।
ସେ ବାଣକୁ ସଦା ଯତ୍ନ କରି ରଖିଥାଏ
ମୃଗୟାକୁ ଗଲେ ନିଜ ସଙ୍ଗତରେ ନିଏ ।
ଅଷ୍ଟବକ୍ର ଋଷି ଦେଲେ ଯେଉଁ ଅଭିଶାପ
ଅନ୍ୟଥା କରିବା ପାଇଁ ଅଛି କେଉଁ ଲୋକ ।
ତ୍ରିଭୁବନେ ହର୍ତ୍ତାକର୍ତ୍ତା ଯଦ୍ୟପି ଶ୍ରୀପତି
ଯେବେ ବ୍ରହ୍ମଶାପରୁ ସେ ନୋହିଲେ ମୁକତି ।
ସେ ଶରକୁ ଧରି ପୁଣି ସେ ଜରା କିରାତ
ମାୟାଧରଙ୍କ ଦେହକୁ ବିନ୍ଧିବ ନିୟତ ।
ଅଷ୍ଟବକ୍ରଙ୍କର ଶାପ ଅନ୍ୟଥା ନୋହିବ
ତଦ୍ଦ୍ୱାରା ସଂସାର ତ୍ୟାଗ କରିବେ ଯେ ଦେବ ।
ଯୁଧିଷ୍ଠି ବୋଇଲେରେ ତୁ ଛାର କହୁ କିସ
ଶବରଘାତେ ଶ୍ରୀକୃଷ୍ଣ ହୋଇବେ କି ନାଶ ।
ପୁଣି ଯୁଧିଷ୍ଠିଙ୍କୁ ସହଦେବ ଯେ କହଇ
ସେ ଜାରାଶବର ପୂର୍ବ ଅଙ୍ଗଦ ଅଟଇ ।
ଶ୍ରୀରାମ ସମ୍ବାଦ ନେଇ ଲଙ୍କାକୁ ଯେ ଗଲା
ରାବଣ ଶିର ମୁକୁଟ ଘେନିଣ ଅଇଲା ।
ସୁବର୍ଣ୍ଣ ଚାଳର ସ୍ତମ୍ଭ ମଣ୍ଡଣି ସହିତେ
ଭାଙ୍ଗିଆଣି ସମର୍ପିଲା ଶ୍ରୀରାମର ହାତେ ।
ଭୋଳ ହୋଇଣ ବୋଲିଣ ତାଙ୍କୁ ରଘୁନାଥ
ବର ମାଗ ଅଙ୍ଗଦରେ ଦେବଇ ମୁଁ ସତ୍ୟ ।
ଅଙ୍ଗଦ ବୋଇଲା ପିତା ଶତ୍ରୁ ଅଟ ଦେବ
ଏ ବର ଦିଅ ମୋ ହସ୍ତେ ତୁମ୍ଭ ପ୍ରାଣ ଯିବ ।
ଦାଶରଥି ବୋଇଲେ ଯେ ହେଲା ମୋର ସତ
ଦ୍ୱାପରେ ଶବର ରୂପେ କରିବୁ ଯେ ହତ ।
ଘଟିବ କୃଷ୍ଣଙ୍କୁ ନିଶ୍ଚେ ପୂର୍ବର ପ୍ରସ୍ତାବ
ଯୁଧିଷ୍ଠିରଙ୍କ ଅଗ୍ରତେ କହେ ସହଦେବ ।
ଶୁଣି ଯୁଧିଷ୍ଠି ବୋଇଲେ ଆମ୍ଭଙ୍କୁ ଛାଡ଼ିଣ
କିପରି ସଂସାର ତ୍ୟାଗୀ ହେବେ ନାରାୟଣ ।
ସହଦେବ ବୋଲେ ଆଗ ଯିବେ ଭଗବାନ
ତାଙ୍କ ପଛେ ପଛେ ଆମ୍ଭେ କରିବା ଗମନ
ଜୟ ଜୟ ରାମଚନ୍ଦ୍ର ଅନାଦି ଅଚ୍ୟୁତ
କୁତୂହଳେ ଜନ୍ମି ଦେବ କରୁ ସ୍ଥିତି ଅନ୍ତ ।
ତୁମ୍ଭ ନାମ ଶୁଣି ଭୟ ପାନ୍ତି ଯମଥାଟ
ତେବେ ନିଜ ମରଣକୁ ରଖିଅଛ ବାଟ ।
ମାୟାରୂପେ ଜାତ ହୋଇ ଦୁଷ୍କୃତ ସଂହାରୁ
ରକ୍ଷାକର ଦେବ ମୋତେ ଏ ମାୟା ସଂସାରୁ ।
ଜନ୍ମେ ଜନ୍ମେ ସୁଜ୍ଞଜନେ ଚିନ୍ତି ରାମପାଦ
ବିଷୟା ବିଷକୁ ଏକା ସେହି ଅଟ ଗଦ ।
ଶ୍ରୀକୃଷ୍ଣ ପାଦପଦ୍ମରେ କରିଣ ଭକତି
ଶୂଦ୍ରମୁନି ଶ୍ରୀ ଶାରଳା ଇଚ୍ଛଇ ମୁକତି ।

—o—

## ଧୃତରାଷ୍ଟ୍ରଙ୍କ ବନ ଗମନୋଦ୍‌ଯୋଗ

ଏଥୁଅନ୍ତେ ବୈବସ୍ୱତ ମନୁ କହେ ବାଣୀ
ବଡ଼ ଆଶ୍ଚର୍ଯ୍ୟ ହୋଇଲି ତୁମ୍ଭ କଥା ଶୁଣି ।
ପାଣ୍ଡବଙ୍କ ଅନ୍ନ ରାଜା ଧୃତରାଷ୍ଟ୍ର ଭୁଞ୍ଜି
ନିର୍ଲ୍ଲଜ ଆତ୍ମା ରଖିଲ କେହ୍ନେ ମନରଞ୍ଜି ।
ଯୁଧିଷ୍ଠିଙ୍କ ସମ୍ପଦକୁ ଦେଖଇ ନେତ୍ରରେ
ଶତପୁତ୍ର ଭୀମସେନ ମାଇଲା ସମରେ ।
ଭୀମଠାରୁ ଅପମାନ ପାଇ ପଦେ ପଦେ
ରହିବାର ନ ଯୋଗାଇ ତାହାଙ୍କ ସନ୍ନିଧେ ।
ପିତାଠାରୁ ଦଶଗୁଣ ଅଧିକ ଯେ ମାତା
ଆତ୍ମା କେସନେ ଧଇଲା ସୁବଳ ଦୁହିତା ।
ଭାଲେ ଯେ ଅନ୍ଧପଟଳ ବାନ୍ଧିଥିଲା ଆଖି
ଦୁଃଖ ସୁଖ ହିଁ ନ ଦେଖି ସ୍ୱାମୀ ଦୁଃଖେ ଦୁଃଖୀ ।
ପାଣ୍ଡବଙ୍କ ଅନ୍ନ ରୁଚେ ତାହାକୁ କେମନ୍ତେ
ତାହା ଶୁଣିବ ରୋମାଞ୍ଚ ଜାତ ମୋର ଗାତ୍ରେ ।
ଶୁଣିବାକୁ ଇଚ୍ଛା ମୋର ଆହେ ମହାଯତି
କହିବା ମହାଭାରତ କଥା ଦିବ୍ୟ ରୀତି ।
ଅଗସ୍ତି ମୁନି ବୋଇଲେ ଶୁଣ ହେ ମହତ
ଯାହା ପୁଚ୍ଛାକଲୁ ତୁ ଯେ ଅଟୁ ପୁଣ୍ୟବନ୍ତ ।
ଅନେକ ମତେ ବିନୟୀ ହୋଇଣ ଯୁଧିଷ୍ଠି
ଭୃତ୍ୟ ପ୍ରାୟେ ଦିବାରାତ୍ର ପାଶେ ଥାଏ ଖଟି ।
ପଣ୍ଡୁଠାରୁ ଶତଗୁଣେ ଯେବେ ଧୃତରାଷ୍ଟ୍ରେ
ମାତାଠାରୁ ଦଶଗୁଣେ ଗାନ୍ଧାରୀକି ଖଟେ ।
ଏ ବିଧିରେ ଗଲା ପଞ୍ଚଦଶ ଯେ ବରଷ
ଗାନ୍ଧାରୀ ଦେବୀ ମନରେ ନ ଥାଏ ହରଷ ।
ପତି ଅନ୍ଧ ଦେଖି ଅନ୍ଧପଟଳ ବାନ୍ଧିଲା
ଶତପୁତ୍ର ଉପୁଜାଇ କିଛି ନ ଦେଖିଲା ।
ଦିନେ ଆକାଶୁ ଗମନ କଲେ ବେଦବ୍ୟାସ
ତାଙ୍କ ପାଦେ ପ୍ରଣମିଲା ଅମ୍ବିକାର ଶିଷ୍ୟ ।
ବ୍ୟାସ ବୋଇଲେ ଏଠାରେ ନ ରହ ତୁ କ୍ଷଣେ
ପୁତ୍ର ସମ୍ପଦ ହରାଇ ରହୁ କି କାରଣେ ।

ପୁତ୍ର ବଇରୀ ଚରିତ ଦେଖ କେଉଁରୂପେ
ସକଳ ହରାଇ କିମ୍ପା ମଜ୍ଜିଅଛୁ ପାପେ ।
ଏଠାରେ ଥିଲେ ଅପାର ଦୁଃଖ ହେବ ମନେ
ମୋର କଥା ମାନି ବାବୁ ପଶ ଯାଇଁ ବନେ ।
ତୋର ପୁତ୍ର ପଉତ୍ରର ନାମ ନାହିଁ ଏଥେ
କିମ୍ପାଇଁ ଆଉ ରହିବୁ ବୟସ ଚତୁର୍ଥେ ।
ଅରଣ୍ୟରେ ରହି ବାବୁ କର ପୁଣ୍ୟ କର୍ମ
ପଥକୁ ସଙ୍ଗାଳି ଏକା ହୋଇବ ନା ଧର୍ମ ।
କେହି କାହାର ନୁହଇ ମିଛମାୟା ସିନା
ଯୁଧିଷ୍ଠି ଲୋଭକୁ ଛୁଡ଼ି ହୁଅ ତୁ ବିମନା ।
ଧନ ଜନ ବନ୍ଧୁ ପୁତ୍ର କେହି ତୋର ନାହିଁ
ଏ ବୟସେ ଧର୍ମ ଏକା ସାହାପକ୍ଷ ହୋଇ ।
ଏମନ୍ତ ସବୁ ବୁଝାଇ କହିଲେ ଯେ ମୁନି
ସେ କଥାକୁ ଧୃତରାଷ୍ଟ୍ର ମନେ ଥାଏ ଘେନି ।
ଧୃତରାଷ୍ଟ୍ରକୁ ଯୁଧିଷ୍ଠି ସଙ୍ଖୁଳଇ ନିତି
ନାନା ଉପଭୋଗ ଆଣି ପାଶେ ସମର୍ପନ୍ତି ।
ଦେବାର୍ଚ୍ଚନେ ଧୃତରାଷ୍ଟ୍ର ଗାନ୍ଧାରୀ ଯେ କୁନ୍ତୀ
ବଚନେ ଭୋଜନେ ତାଙ୍କୁ କରନ୍ତି ତୃପତି ।
ଧୃତରାଷ୍ଟ୍ର ଗାନ୍ଧାରୀକି ପାଶରେ ବସାଇ
ଯୁଧିଷ୍ଠି ଦେବ ପ୍ରଶଂସା ବହୁତ କରଇ ।
ଯୁଧିଷ୍ଠି ଭକ୍ତିରେ ଗାନ୍ଧାରୀ ଯେ ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ଥିବାଠାରୁ ଲଭିଲେ ସନ୍ତୁଷ୍ଟ ।
ପୁତ୍ରଙ୍କୁ ପାଶୋରିଲେ ଯେ ଯୁଧିଷ୍ଠିଙ୍କୁ ଦେଖି
ଦୂରନ୍ତ ଶୋକ ପାଶୋରି ହୋଇଥାନ୍ତି ସୁଖୀ ।
ଧୃତରାଷ୍ଟ୍ରକୁ ମାଗନ୍ତି ରାଜବିଧି ଆଜ୍ଞା
ଧର୍ମ ଯୁଧିଷ୍ଠି ତହିଁରେ ନ କଲେ ଅବଜ୍ଞା ।
ଏସନକ ଜାଣି ଭୀମ କୋପ ଯେ କରଇ
ଅନ୍ଧରାଜାକୁ ବହୁତ କଟୁ ସେ କହଇ ।
ଯୁଧିଷ୍ଠି ଦେବ ଭୀମକୁ ଦେଉଛନ୍ତି ଗାଳି
ଅନ୍ଧ ଅନ୍ଧୁଣୀ ଚରଣେ ହେଉ ନିଉଛାଳି ।
ଭୀମ ବୋଇଲା ତୁ ବନ୍ଧୁ ସୋଦର ମରାଇ
ପୁତ୍ର ନାତି ରାଜ୍ୟଧନ ସକଳ ହରାଇ ।
ଯୁଧିଷ୍ଠିର ରାଜ୍ୟଧନ କରୁଅଛୁ ଭୋଗ
ଅନ୍ଧ ହେଲୁ ଥିଲା ପୁଣି ତୋତେ ଏହି ଯୋଗ ।
ତୋ ଯୋଗୁ ଦୁଃଖ ପାଇଲୁ ଆମ୍ଭେ ସିନା ବନେ
ତେବେ ଦୟା ନ ବସିଲା ଦିନେ ତୋର ମନେ ।
ରାଜାର ଆଜ୍ଞା ମେଣ୍ଟିଣ କାହୁଁ ହୋଇପାରେ
ଆପଣା ଶିରୀକି ଦେଇ ପୋଷେ ବଇରୀରେ ।
କେମନ୍ତ ଧୃତରାଷ୍ଟ୍ର ତୁ ଖେଦ ହିଁ ନ କରୁ
ମହୁରା ନଭକ୍ଷି ଏବେ ଜୀବନ ତୁ ଧରୁ ।

ସଭାରେ ଭୀମ ପ୍ରତିଜ୍ଞା କରି ଏହା କହେ
ଏ ଭୁଜେ ନାଶିଲି ମୁହିଁ ତୋର ଶତପୋଏ ।
ଦୁଃଶାସନ ଭୁଜକୁ ମୁଁ ଉପାଡ଼ିଲି ହାଦେ
ଦୁର୍ଯ୍ୟୋଧନର ମୁକୁଟ ମର୍ଦ୍ଦିଲଇଁ ପାଦେ ।
ଏମନ୍ତ ଭୀମ ପ୍ରତିଜ୍ଞା କରେ ମହାରୋଷେ
ଶୁଣି ଧୃତରାଷ୍ଟ୍ର ରାଜା ରହେ ମହାତ୍ରାସେ ।
ଦେହ ଧରି ନ ପାରି ସେ ଆସ୍ଥାନରୁ ଉଠି
ସଭାରେ ଭୀମ କହିଲା ଯହୁଁ ସେ ଉକ୍ରଟି ।
ଗାନ୍ଧାରୀ ଆଗରେ ଯାଇ କହେ ଧୃତରାଷ୍ଟ୍ର
ପ୍ରାଣ କାହିଁକି ରଖିବା ପାଇ କହେ ଏତେ କଷ୍ଟ ।
ଭୀମର କଟୁ ବଚନ ହୃଦେ ମୋର ଭେଦି
ପ୍ରିୟେ ଗୋ ଆମ୍ଭେ କରିବା କହ କିସ ବୁଦ୍ଧି ।
ପ୍ରାଣ ଛାଡ଼ିବା କି ଆମ୍ଭେ ଖାଇକରି ବିଷ
ଆତ୍ମଘାତୀ ହୋଇ ମଲେ ଲାଗିବ ଯେ ଦୋଷ ।
ବୋଇଲେ ଗାନ୍ଧାରୀ ସବୁ ଅଟେ ତୁମ୍ଭ ଦୋଷ
ଆଗହୁଁ ଏକଥା ପରା କହିଥିଲେ ବ୍ୟାସ ।
ଶତେ ପୁତ୍ରଙ୍କୁ ତୋର ମାଇଲେକ ଯହୁଁ
ନିର୍ଲ୍ଲଜ ଆତ୍ମା ଘେନି ତୁ ତାଙ୍କ ମୁଖ ଚାହୁଁ ।
ସତ୍ୟକୁ ରକ୍ଷା କରିଣ ନ ପାରିଲ ତୁମ୍ଭେ
ପଶୁ ପରାୟ ନ ଜାଣି ପଡ଼ିଲେ ଯେ ଲୋଭେ ।
ଏବେ ବେଗେ ଚାଲ ନାଥ ଯିବା ବାନପ୍ରସ୍ଥେ
ପୁତ୍ରକଷ୍ଟ ହରାଇବା ପଶିଣ ବନସ୍ତେ ।
ଶତ୍ରୁ ଅନ୍ନ ଖାଇ ଯାହା ଧରିଥାଇଁ ପ୍ରାଣ
ଏହାଠାରୁ ବଳି ଆଉ ଅଛି କି କଷଣ ।
ବୋଲେ ଧୃତରାଷ୍ଟ୍ର ଯୁଧିଷ୍ଠିରରେ ମୁଁ ବଶ
କିପରି କହିବି ମୁହିଁ ଯିବି ବନବାସ ।
ବିନୟ ଭାବରେ ଯେବେ କହିବ ସେ ମୋତେ
କହି ନ ପାରଇ ଛାଡ଼ିଯିବଇଁ କେମନ୍ତେ ।
ଯୁଧିଷ୍ଠି ମୋଠାରେ କରେ ଅତ୍ୟନ୍ତ ଭକତି
ଶତେପୁତ୍ରଠାରୁ ବଳି ତାଠାରେ ମୋ ପ୍ରୀତି ।
ଗାନ୍ଧାରୀ ବୋଲେ ଯୁଧିଷ୍ଠି କରେ ଯେବେ ସ୍ନେହ
ଅନ୍ୟ ଉପାୟରେ ତାକୁ ଭଣ୍ଡାଇଣ କହ ।
ଯୁଧିଷ୍ଠିଙ୍କୁ ହକାରିଣ ଗୁପତେ କହିବୁ
ଶ୍ରାଦ୍ଧ ଦେଲେ ମୁକ୍ତ ହୋଇଯିବେ ପୁତ୍ର ସବୁ ।
ଯୁଧିଷ୍ଠିଙ୍କୁ ଅଧେ ଧନ ଏପରି ମାଗିବା
କେହି ଜାଣି ନ ପାରିବେ ବନସ୍ତକୁ ଯିବା ।
ଭାରିଯାର ନ ବଚନ ଧୃତରାଷ୍ଟ୍ର ଶୁଣି
ବିଦୂରଙ୍କୁ ଡାକିଲା ସେ ପାଶେ ତତକ୍ଷଣି ।
ବୋଇଲା ଯୁଧିଷ୍ଠି ଦେବଙ୍କୁ ତୁ ଯାଇ ବୋଲ
ବନ୍ଧୁ ସୁହୃଦ ଯେ ରଣେ ପଡ଼ିଲେ ସକଳ ।

ଭୁରିଶ୍ରବା ବାହ୍ଲିକ ଯେ ଦୁହେଁ ମୋର ଅଜା
ଜ୍ୟେଷ୍ଠ ପିତା ଅଟନ୍ତି ଯେ ଭୀଷ୍ମ ମହାରାଜା ।
ଘଟୋତ୍କଚ ଅଭିମନ୍ୟୁ ଦ୍ରୌପଦୀଙ୍କ ସୁତେ
ଦୁର୍ଯ୍ୟୋଧନ ଆଦି କରି ମୋର ପୁତ୍ର ଶତେ ।
ଏହାଙ୍କୁ ଶ୍ରାଦ୍ଧ ଦେବାକୁ କରେ ମୁହିଁ ଇଚ୍ଛା
ଧର୍ମ ପ୍ରାପତ ଯେ ପୂର୍ଣ୍ଣ ହେବ ମନୋବାଞ୍ଛା ।
କୁନ୍ତୀ ପୁତ୍ରମାନେ ତୋର ଅଟନ୍ତି ବିଶ୍ୱାସ
ଶ୍ରାଦ୍ଧ ପାଇଁ ଧନ କିଛି ମାଗି ଘେନିଆସ ।
ଶ୍ରାଦ୍ଧ କରିସାରି ପୁଣି ଯିବଇଁ ପ୍ରୟାଗ
ଏ ବାରତା କହ ଯାଇ ଯୁଧିଷ୍ଠିଙ୍କ ଆଗ ।
ବିଦୂର ବୋଇଲେ ଭଲ ନୁହେଁ ଏ ବ୍ୟବସ୍ଥା
କି ଅଭାବ ଅଛି ଏଥେ କି ଲଭୁଛ ଚିନ୍ତା ।
କାହିଁପାଇଁ ଏ କଥାରେ କରି ମନଯୋଗ
କୃଷି ଉପୁଜଇ ଫଳ ନ କରୁଛ ଭୋଗ ।
ଏହା କହି ସେଠାବରୁ ବିଦୂର ଯେ ଗଲେ
ଯୁଧିଷ୍ଠିରଙ୍କ ଛାମୁରେ ଯାଇ ପ୍ରବେଶିଲେ ।
ପାଣ୍ଡବେ ଦେଖି ତାହାଙ୍କୁ ପ୍ରଣାମ ବିହିଲେ
କୋଳରେ ଧରି ବିଦୂର ଆଲିଙ୍ଗନ କଲେ
ତଦନ୍ତେ ବୋଇଲେ ତୁମ୍ଭେ ଶୁଣ ପାର୍ଥ ଭାଇ
ଧୃତରାଷ୍ଟ୍ର ଏହି ଆଜ୍ଞା ଅଛନ୍ତି ଯେ ଦେଇ ।
ଭୀଷ୍ମ ଦ୍ରୋଣାଚାର୍ଯ୍ୟ କର୍ଣ୍ଣ ଶଲ୍ୟଙ୍କର ତୁଲେ
ଭୁରିଶ୍ରବା ବାହ୍ଲିକ ଯେ ସୋମଦତ୍ତ ମଲେ ।
ଗାନ୍ଧାରୀ ପୁତ୍ର ସହିତେ ତୁମ୍ଭ ପୁତ୍ରମାନେ
ଏ ଆଦି କେତେ ବିନଷ୍ଟ ହେଲେ ମହାରଣେ ।
ଏହାଙ୍କ ମୋକ୍ଷ ନିମିତ୍ତ ଅମ୍ବିକାର ସୁତ
ଗୟାରେ ପିଣ୍ଡଦେବେ ସେ ବରି ପଞ୍ଚତୀର୍ଥ ।
ସେ କାରଣେ କିଛି ଧନ ମାଗେ କୁରୁପତି
ନ ଦେଲେ ତୁମ୍ଭଙ୍କୁ ହେବ ବଡ଼ ଅପକୀର୍ତ୍ତି ।
ଏହି କାର୍ତ୍ତିକ ଶୁକଳ ପୂର୍ଣ୍ଣିମାର ଦିନ
ଗାନ୍ଧାରୀ ସହ ଗମନ କରିବେ ସେ ବନ ।
ମୋତେ ପେଶିଲେ ଅଇଲି ମୁହିଁ ଧନ ଅର୍ଥେ
ତୁମ୍ଭ ବିଚାରକୁ କିସ ଆସଇ ଯୁକତେ ।
ଯୁଧିଷ୍ଠି ଦେବ ବୋଇଲେ ଯେବେ ଯିବେ ବନ
ଆମ୍ଭଠାରୁ ସ୍ନେହ ତେବେ ଛାଡ଼ିଲେଣି ଜାଣ ।
ଧନ କିଛି ମାଗି ଯେବେ ଯିବେ ଆନ ପଥେ
କି ବୁଦ୍ଧି କରିବା କହ ପାର୍ଥ ତୁହୋ ଏଥେ ।
ଅର୍ଜ୍ଜୁନ ବୋଇଲେ ଯେବେ ନ ମାଗନ୍ତେ ଧନ
ତେବେ ଜାଣନ୍ତେ ରାଜାର ସିନା କୋପମନ ।
ଯେବେ କାରଣ କରିବେ ଏ ମୃତ୍ୟୁ ଲୋକଙ୍କୁ
ନିଅନ୍ତୁ ଭଣ୍ଡାରଯାକ ସମର୍ପିବା ତାଙ୍କୁ ।
ତାହାଙ୍କର ଧନ ସିନା କରନ୍ତେ ସେ ଦାନ
ଚତୁର୍ଥ ବୟସେ ଧର୍ମ କରନ୍ତୁ ରାଜନ ।
ଭୀମସେନ ବୋଇଲାକ ଏକି ଏ ବିଚାର
ସବୁ ନ ନେବାରେ କି ଉଚିତ ତାହାର ।
ଜୀବନ୍ତେ ସେ ବନ୍ଧୁଗୋତ୍ର ନ ବୋଲେ ଆମ୍ଭଙ୍କୁ
ଏବେ ଧନ ନେବାପାଇଁ ବୋଲୁଛି ତୁମ୍ଭଙ୍କୁ ।
କେବଣ କୃତ୍ୟ ନ କଲେ ପଶାୟତ ଖେଳେ
ଆମ୍ଭର ରାଜ୍ୟ ସମ୍ପଦ ଘେନିଲେ ସେ ହେଳେ ।
ପାଞ୍ଚଭାଇ ସଭାତଳେ ବସୁ ଭୃତ୍ୟମେଳେ
କାହିଁ ତାହାଙ୍କର ପ୍ରୀତି ଥିଲା ସେହିବେଳେ ।
ଧର୍ମକାର୍ଯ୍ୟରୁ କୌରବ ହେଲେ ଯେବେ ଭ୍ରଷ୍ଟ
ତେବେ ସେ ଆମ୍ଭର ପାର ଯିବ ସବୁ କଷ୍ଟ ।
ଯଦ୍ୟପି ଦୁର୍ଯ୍ୟୋଧନର ହେବ ନର୍କ ଗତି
ତାହା ଶୁଣିଲେ ଆନନ୍ଦ ହେବ ମୋର ମତି ।
ମରିଯିବା ପ୍ରାଣୀ କେହି କାହାର ନୁହନ୍ତି
କିମ୍ପାଇ ଧନ ଭଣ୍ଡାର କରିବାରେ କ୍ଷତି ।
ଭୀଷ୍ମ ଦ୍ରୋଣ ସେ କୁଳର ଅଟନ୍ତି ଯେ ଶ୍ରେଷ୍ଠ
କିମ୍ପାଇ ସଂଗ୍ରାମ କରି ହେଲେ ପ୍ରାଣଭ୍ରଷ୍ଟ ।
ଆମ୍ଭଙ୍କୁ କି ମାରିବାକୁ ନ କଲେ ସମର
ମଲା ଉତ୍ତାରେ ଉପ୍ରୋଧ କିସ ହୋ ଆମ୍ଭର ।
ଶ୍ରାଦ୍ଧ କରିବାର ଯେବେ ଯୁକତ ଅଟଇ
ଆମ୍ଭେ ନ କରିଣ ଧନଦେବା କାହିଁପାଇଁ ।
ଭୀଷ୍ମ ଭୁରିଶ୍ରବା ଦ୍ରୋଣାଚାର୍ଯ୍ୟ ସୋମଦତ୍ତ
ବିରାଟ ଦ୍ରୁପଦ ପୁଣି ଆମ୍ଭ ଶତେପୁତ୍ର ।
କୋନ୍ତଭୋଜ ଉତ୍ତର ଯେ ଆମ୍ଭର ସମସ୍ତେ
ଆଉ ଯେତେ ବୀରମାନେ ମଲେ ଆମ୍ଭ ହିତେ ।
ସେମାନଙ୍କ ଶ୍ରାଦ୍ଧ ଆମ୍ଭେମାନେ ଯେ କରିବା
ଅଶ୍ୱତ୍ଥାମା ହାତେ ଦ୍ରୋଣ ଶ୍ରାଦ୍ଧ କରାଇବା ।
କର୍ଣ୍ଣଙ୍କର ଶ୍ରାଦ୍ଧ ଏବେ କରୁ ତାର ମାତା
ଧୃତରାଷ୍ଟ୍ର କରନ୍ତୁ ଯେ ତାଙ୍କ ପୁତ୍ର ଚିନ୍ତା ।
ଆମ୍ଭ ଧନ କାହିଁପାଇଁ ତାହାଙ୍କୁ ଯେ ଦେବା
ସେ ମଲେ ତାହାର ଶ୍ରାଦ୍ଧ ଆମ୍ଭେ ଯେ କରିବା ।
ଯୁଧିଷ୍ଠି ବୋଇଲେ ଭୀମ ନ ବୋଲ ଏ ଗିର
ପାଣ୍ଡୁଙ୍କର ଜ୍ୟେଷ୍ଠ ସେହି ଗୁରୁ ଯେ ଆମ୍ଭର ।
ସେ ଥାଆନ୍ତେ ଆମ୍ଭର ଯେ କରି ନୁହେଁ ଧର୍ମ
କୁରୁବଳ ଶ୍ରେଷ୍ଠ କରିବେ ସେ ସବୁ କର୍ମ ।
ତୁ ଯାହା ବୋଲୁ ତହିଁରେ ତାଙ୍କ ଦୋଷ ନାହିଁ
ଦଇବ ବିପାକେ ଦୋଷୀ ହୋଇଛନ୍ତି ସେହି ।
ବହୁଦୂର ବିଦେଶୀକି ମରିବା ଦେଖିଲେ
ତା ପ୍ରେତକ୍ରିୟା କରିବା ପାଇଁ ଶାସ୍ତ୍ର ବୋଲେ ।

ତା କ୍ରିୟା ନୋହିଲେ ଆମ୍ଭଙ୍କୁ ଯେ ହେବ ଲଜ୍ଜା
ବାହୁଡ଼ି ଦୁର୍ଯ୍ୟୋଧନ କି ଏଥି ହେବ ରାଜା ।
ପାଷାଣରୁ ବଳି ଭୀମ ଅଟେ ତୋର କାୟା
ଏଡ଼େ ବିପତ୍ତିରେ ତୋର ନ ବସଇ ଦୟା ।
ଗୁରୁଜନ ଧର୍ମ କଥା ଯେ ଜନ ଏଡ଼ଇ
ସକଳ ଯଶ କୀରତି ତାର ନାଶ ଯାଇ ।
ବନ୍ଧୁ ସହୋଦର କାର୍ଯ୍ୟ ଯେ ଲୋକ କରଇ
ସେହି ମହାତ୍ମାଟି ଅଟେ ସର୍ବ ଗୁଣଗ୍ରାହୀ ।
ଦ୍ରୋଣଙ୍କର ଗୁଣ ବାବୁ କହିପାରେ କେହୁ
ବିଦ୍ୟାରେ ପାରଗ ତୁମ୍ଭେ ହୋଇଥାନ୍ତ କାହୁଁ ।
ଯେହୁ ବ୍ରହ୍ମଶର ତିନିଲୋକ ପାରେ ଦହି
ପୁତ୍ରେ ପଛ କରି ପାର୍ଥେ ଥିଲେ ସେ ଶିଖାଇ ।
ପିତୃହୀନ ଆମ୍ଭେମାନେ ଅଟୁ କାଳେ କାଳେ
ପ୍ରାଣୁ ବଳି ଭୀଷ୍ମଦେବ ଆମ୍ଭଙ୍କୁ ପାଳିଲେ ।
ଆମ୍ଭ ଅର୍ଥେ ଭୀଷ୍ମଦେବ କଲେ ଶରଶଯ୍ୟା
ମୃତ୍ୟୁଭେଦ ରହି ସବୁ କରିଥିଲେ ତେଜ୍ୟା ।
ଚାଲୁଣିର ଜଳପ୍ରାୟ ହେଲୁ ଭୀମସେନ
ଗୁଣ ଛାଡ଼ି କେବଳ ତୁ ବାଛୁ ଅବିଗୁଣ ।
ଅନେକ ବନ୍ଧୁ ସୁହୃଦ ମଲେ ଆମ୍ଭ ଅର୍ଥେ
ତାଙ୍କ ଶ୍ରାଦ୍ଧ ଆମ୍ଭଙ୍କୁ ଯେ ଲାଗଇ ଯୁକତେ ।
ଏକା ଧନ ଦେଇ ଦୁଇକାର୍ଯ୍ୟ ଯେ କରିବା
ଇହଲୋକ ଜିଣି ପରଲୋକ ଯେ ତାରିବା ।
ଧୃତରାଷ୍ଟ୍ର ଶତପୁତ୍ର ସମରେ ତୁ ମାରି
ତେବେ ପୁଣ ରାଗ ଶାନ୍ତ ନୋହିଲା ତୋହରି ।
ଭୀମ ବୋଇଲା ଏମନ୍ତ କିମ୍ପା ରାଜା କହୁ
ମୋର ସମ୍ମତି ନୋହିଲେ ଧନ ନେବ କେହୁ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ପୂଜ୍ୟପାଦ
ନ ଦେଖନ୍ତୁ ଭୀମ ପଛେ ନ ହେଉ ବିବାଦ ।
ଭଣ୍ଡାର ଧନେ ସେ ଯେବେ ହୋଇବ ବିବାଦୀ
ଆମ୍ଭ ଜିଣା ଧନ ଦେବା ଅଟଇ ସେ ବିଧି ।
ସୁବର୍ଣ୍ଣ ତଣ୍ଡୁଳ ରାଜ୍ୟରତ୍ନ ହାତୀ ଘୋଡ଼ା
ବସ୍ତ୍ର ଅଳଙ୍କାର ଦିଅ ଯେତେ ତାଙ୍କ ଲୋଡ଼ା ।
ଯାହା ସେ ଇଚ୍ଛନ୍ତି ଦେଇ ସନ୍ତୁଷ୍ଟ କରିବ
ମୁଁ ଯାହା ବୋଲୁଛି ତାହା ବିନୟେ କହିବ ।
କାର୍ତ୍ତିକ ପୂର୍ଣ୍ଣିମା ରହିଲା ଯେ ଦିନ ଦଶ
ବିଧିମତେ ଶ୍ରାଦ୍ଧ କଲେ ସର୍ବେ ହେବେ ତୋଷ ।
ଭୀମର ଏ କଟୁ କଥା କେବେ ନ କହିବ
ଯେପରି ସନ୍ତୁଷ୍ଟ ହେବେ ତାହା ବୁଝାଇବ ।
ଏ କଥା ସବୁ ଶୁଣିବେ ଯେବେ ଧୃତରାଷ୍ଟ୍ର
ଦ୍ୱିଗୁଣ ବାଧିବ ମନେ ତାଙ୍କ ପୁତ୍ର କଷ୍ଟ ।

ଧନ ଘେନିଣ ବିଦୂର ତତକ୍ଷଣେ ଗଲା
ଧୃତରାଷ୍ଟ୍ର ଅଗ୍ରତରେ ଯାଇଣ ମିଳିଲା ।
ତୋହର ଆଜ୍ଞାରେ ମୁହିଁ ଆଣିଲଇଁ ଧନ
ଦେବାକୁ ହିଁ ସନମତ ନ କଲାକ ଭୀମ ।
ଅନେକ ଝିଙ୍ଗାସି ଭୀମ ବୋଇଲାକ ତୋତେ
କେବେ ହେଁ ଶାନ୍ତ ନୋହିଲା କ୍ରୋଧ ତାର ଚିତ୍ତେ ।
ଅର୍ଜ୍ଜୁନର ଯୁଧିଷ୍ଠିର ଯେତେ ଅଙ୍ଗ ଧନ
ତାହା ମୁଁ ଆଣିଲି ବେଗ କରି ତୋ ସଦନ ।
ଯୁଧିଷ୍ଠି ଦେବ ବୋଇଲେ ପଛରେ ଗୋଡ଼ାଇ
ଭୀମ ଦୁର୍ବୁଦ୍ଧି ପିତାଙ୍କୁ ନ କହିବୁ ତୁହି ।
ଶୁଣିଲେ ଭାଳିବେ ମନେ ବ୍ୟଥା ପାଇ ତାତ
କହିବ ମୁଁ ତାହାଙ୍କର ବିନୟ ଭକତ ।
ଏପରି ଯେ କହିଛନ୍ତି ଯୁଧିଷ୍ଠି ରାଜନ
ଭୀମ କଥାରେ ନୋହିବେ କେବେ ହେଁ ବିମନ ।
ପୃଥ୍ୱୀରେ ଅଛନ୍ତି ଯେତେ କ୍ଷତ୍ରିୟ ଗରିଷ୍ଠ
ସମସ୍ତଙ୍କ ମଧ୍ୟେ ଭୀମସେନ ଅଟେ ଶ୍ରେଷ୍ଠ ।
କ୍ଷତ୍ରିୟ ଗୁଣ ପୂରିଣ ଅଛି ତାହାଠାରେ
ତା ଦୁଷ୍ଟପଣକୁ ନ ଭାଳିବ ଯେ ମନରେ ।
ନଦୀ ବଢ଼ିଲେ ହେ ଥୟ ହୋଇ ନ ରହଇ
ବ୍ରାହ୍ମଣର କ୍ରୋଧେ ସେହିକ୍ଷଣି ନାଶ ଯାଇ ।
କ୍ଷତ୍ରିଙ୍କ ଶରୀର ଜାଣ ପାଷାଣ ସଂଜାତ
ଶରୀରରୁ ନ ଛାଡ଼ଇ କୋପ କଦାଚିତ ।
ଅଗ୍ନି ସମୂଳେ ଲିଭିଲେ ତା ତେଜ ସରଇ
ତେଜ ଥିବାଯାଏ ସକଳ ଯେ ଦହୁଥାଇ ।
କ୍ଷତ୍ରିୟ ସ୍ୱଭାବ ଯେବେ ଖୋଜିବ ସଂସାରେ
ଭୀମସେନଠାରୁ ବଳି ନାହିଁ କାହାଠାରେ ।
ବିଦୂର ବୋଇଲେ ରାୟେ ଭୀମର କି ଦୋଷ
ଆପଣାର ମନ୍ଦପଣେ ଅର୍ଜ୍ଜିଲେ ଅଯଶ ।
କେବଣ ଚକ୍ର ନ କଲେ ଅବା ସେ ଭୀମକୁ
ବିଷଲଡ୍ଡୁ ଖୁଆଇଣ ମେଳିଲେ ଜଳକୁ ।
ନାଗୁଣୀ ଖାଉ ବୋଲିଣ ଭାବିଥିଲେ ହୃଦେ
ଜଉଘର କଲେ ପୁଣି ପୋଡ଼ିବେ ପ୍ରମାଦେ ।
କପଟ ପଶାରେ ପୁଣି ହାରିଲେ ସମୃଦ୍ଧି
ପାଞ୍ଚାଳୀକି ବିବସନ କଲେ ମନ୍ଦବୁଦ୍ଧି ।
କୂଟେ ବେଢ଼ିଣ ମାଇଲେ ପୁତ୍ର ଅଭିମନ୍ୟୁ
କିପାଇଁ ପାଶୋରିଯିବ ଗୁଣ କାର ମନୁ ।
ଯାହା ଯେ ଅର୍ଜ୍ଜଇ ତାହା ଅବଶ୍ୟ ଭୁଞ୍ଜଇ
ଦର୍ପଣର ପ୍ରତିବିମ୍ବ ପରି ରହିଥାଇ ।
ବିଦୂର ମୁଖୁଁ ଏସନ ବାକ୍ୟ ରାଜା ଶୁଣି
ଆପଣାର ଲଲାଟରେ ତାଡ଼େ ବେନି ପାଣି ।

ପୁରୋହିତ ମୁଖେ କରିଥିଲେ ଯେ ଅଭ୍ୟାସ
ସେହିରୂପେ ବାକୀ ଦଶଦିନ କଲେ ଶେଷ ।
କରମ ଆଦରି ପୁଣି ହୋଇଲା ସେ ଶାନ୍ତ
ଗାନ୍ଧାରୀକି ଘେନି ତହୁଁ ଚଳିଲା ତୁରିତ ।
ଯୁଧିଷ୍ଠିରଙ୍କ ଆସନେ ବିଜେ କୁରୁସାଇଁ
ପାତ୍ର ମନ୍ତ୍ରୀ ଅମତ୍ୟାଦି ବ୍ରାହ୍ମଣ ବସାଇ ।
ବୋଲଇ ସେ କଉରବ ଶୁଣିମା ସମସ୍ତେ
ଯିବାକୁ ମୁଁ ଉଦବେଗ ହୁଏ ବାନପ୍ରସ୍ତେ ।
ଯେଝା ଅନୁରୂପେ କରି ସମସ୍ତଙ୍କୁ ପୂଜା
ଯୁଧିଷ୍ଠିରଙ୍କୁ ଚାହିଁଣ ବୋଲେ କୁରୁରାଜା ।
ବାବୁ ତପତି ପବନ ଶୀତ ବୃଷ୍ଟି ସହି
ସେ ରାଜ୍ୟ ପାଳଇ ତାକୁ ଧନ୍ୟ ଧନ୍ୟ କହି ।
ଭୋଗର ଭାଜନ ଜାଣ ହୁଏ ସେହି ରାଜା
ମନ୍ତ୍ରୀ ଉତ୍ତମେ ନ ପାଳେ ଯେବେ ଜନ ପ୍ରଜା ।
ରାଜାଙ୍କର କାର୍ଯ୍ୟ ଜାଣ ହୁଏ ତହିଁ ନଷ୍ଟ
ତାର ନ ଜାଣିମାପଣ ମନ୍ତ୍ରୀ ବୁଦ୍ଧି ଭ୍ରଷ୍ଟ ।
ପର୍ଶୁରାମ ପରାକ୍ରମ ରାଜାର ଯେ ଆଜ୍ଞା
ଯାହା ବୋଲିବେ ତାହା ନ କରିବ ଅବଜ୍ଞା ।
ଜ୍ୟେଷ୍ଠଭ୍ରାତା ପୁତ୍ରକୁ ହିଁ ଜାଣ ମାତା ପିତା
ସ୍ତିରୀଙ୍କ ସ୍ୱାମୀ ଏମାନେ ଅଟନ୍ତି ଦେବତା ।
ଇନ୍ଦ୍ର ଯେଉଁପରି ପାଳେ କରିଣ ସୁବୃଷ୍ଟି
ରାଜା ଯେପରି ପାଳଇ ତାହାର ଯେ ସୃଷ୍ଟି ।
ଅଜ୍ଞାନେ ନୃପତି ଯେବେ ଦଣ୍ଡକୁ ବହିବ
ମନେ ନ ରଖି ତାହା ଯେ ଉପେକ୍ଷା କରିବ ।
ସତ୍ୟେ ପ୍ରଜା ପାଳି ମୃଗୟା କରିବ ନିତି
ଶତ୍ରୁ ଉପଗତେ ଦେଖାଇବ ବୀରମୂର୍ତ୍ତି ।
ତୀର୍ଥ ବ୍ରତଠାରୁ ବଳି ନାହିଁ ସଦ୍‌ଗତି
ନୀତି ଅଭ୍ୟାସ କରିବ ବ୍ରହ୍ମଜ୍ଞାନ ପୋଥି ।
କଲେ ପୃଥ୍ୱୀ ପାଳିବାକୁ ରାଜାଙ୍କର ଇଚ୍ଛା
ସନ୍ଦେହ ହେଲେ କରିବ ପଣ୍ଡିତଙ୍କ ପୁଚ୍ଛା ।
ରାଜା ହୋଇଣ ପାଳିବ ସତ୍ୟେ ରାଜଧର୍ମ
ଭୃତ୍ୟ ବଶ ହେଲେ ସାଧିହୁଏ ସର୍ବ କର୍ମ ।
ସୁଖେ ରାଜ୍ୟ କର ବାବୁ ହୋଇଣ କୁଶଳ
ନ୍ୟାୟପଥ ବିଚାରିଣ ସଦା ପ୍ରଜା ପାଳ ।
ପ୍ରଜା ମୁଖରେ ଯଦ୍ୟପି ଶୁଭେ ସାଧୁଧ୍ୱନି
ସେ ରାଜା ସ୍ୱର୍ଗରେ ବସେ ସ୍ୱଶରୀର ଘେନି ।
ପୁରୁରବା ମାନଧାତା ବଳି ଜାନୁଭାଣ୍ଟ
ବେଣୁ ଆଦି ପ୍ରଜାପାଳି ବୋଲାଇଲେ ଶ୍ରେଷ୍ଠ ।
ପ୍ରଜା ପାଳି ସୁଖେ ବାବୁ ଭୋଗ କର ରାଜ୍ୟ
ପ୍ରଜା କଲ୍ୟାଣେ ରାଜାର ବଢ଼ଇ ଐଶ୍ୱର୍ଯ୍ୟ ।

ତଣ୍ଡୁଳ ଘେନି କରିବ ପିତୃବ୍ରତ ଦାନ
ଦେବେ ଅଗ୍ନି ବ୍ରାହ୍ମଣର ପୂଜାରେ ସେ ଅନ୍ନ ।
କୃଷିକର୍ମ କରି ପ୍ରଜା ହୁଏ ଯେବେ ଦୁଃଖୀ
ସେମାନଙ୍କୁ ପାଳି ରାଜା କରିବ ଯେ ସୁଖୀ ।
ଧାର୍ମିକ ସୁଧୀର ବିଦ୍ୟାବନ୍ତ ପୁତ୍ର ଗୋଟି
ତିଆରିବ କିସ ତୁହି ନ ଜାଣୁ ଯୁଧିଷ୍ଠି ।
ଭୀମ ବୋଇଲଣ ସମସ୍ତ ବୁଦ୍ଧି ଯେବେ ଜାଣୁ
ତୋହର ପୁଅଙ୍କ ଆଗେ ତାହା ନ ବଖାଣୁ ।
ଲମ୍ପଟେ ପ୍ରବୃତ୍ତି ବୋଲାଉଛୁ ମହାଯୋଗୀ
ପରକୁ ହିଁ ବୈଦ୍ୟ ପୁଣି ଆପଣେ ଯେ ଭୋଗୀ ।
ଯୁଧିଷ୍ଠି ଦେବଙ୍କୁ ରାଜନୀତି କି ଅଜଣା
କେଉଁ ବିଷୟେ ତାହାକୁ ଦେଖିଲୁ ଯେ ଊଣା ।
ମନ୍ତ୍ରୀ ଯାଗ ସହଦେବ କହଇ ସମସ୍ତ
ଶତ୍ରୁ ଉପଦ୍ରବ ସେହୁ ସହିଲା ନିରତ ।
ବୃହସ୍ପତିଙ୍କ ସମାନ ଯାହାଙ୍କ ମହିମା
ଧରଣୀ ସମାନ ପୁଣି ଦୟା ଧର୍ମ କ୍ଷମା ।
ଭୀମ ଅର୍ଜ୍ଜୁନ ଯାହାର ଅଟନ୍ତି ହେ ଭାଇ
ତାହାସଙ୍ଗେ ମହୀରେ କେ ସମାନ ଅଟଇ ।
ତୁ ତାହାଙ୍କୁ କେଉଁ ନୀତି ଶିଖାଇବୁ ପୁଣ
ଅନୀତିରେ ତୋର ଦିନ କାଳ ଗଲା ଜାଣ ।
ଶୀଘ୍ର ହୋଇ କାହିଁପାଇଁ ବନକୁ ନ ଯାଉ
ତିଆରିଣ ରାଜାକୁ ଯେ କେତେ କଥା କହୁ ।
ତୁ ତାହାଙ୍କୁ କେଉଁ ନୀତି ଶିଖାଇବୁ ପୁଣି
ଅନୀତିରେ ତୋର ଦିନ କାଳ ଗଲା ଜାଣି ।
ଏହା ଶୁଣି ଧୃତରାଷ୍ଟ୍ର ହୋଇଲାକ ତୁନି
ହୃଦ ବ୍ୟାକୁଳ ଦହଇ ଯେସନେ ବହନି ।
ପୁଣି ଯୁଧିଷ୍ଠିରଙ୍କୁ ସେ କଲ୍ୟାଣ କରିଲା
ଚିରାୟୁ ହୁଅ ବୋଲିଣ ଆସ୍ଥାନୁ ଉଠିଲା ।
କଣ୍ଠରୁ ରୁଦ୍ରାକ୍ଷମାଳା ନାଭିଯାଏ ପଡ଼ି
କର୍ଣ୍ଣରେ ତାମ୍ର କୁଣ୍ଡଳ ରତ୍ନ ଅଛି ଜଡ଼ି ।
କାକେ ମୃଗଛାଲ କରେ କମଣ୍ଡଳୁ ଶୋହେ
ତପୋଧନ ରୂପଗୋଟି ଜଗଜ୍ଜନ ମୋହେ ।
ଭୀମସେନ ବୋଲେ ତାର ବୃହଦଶ୍ୱ ପ୍ରାୟେ
ବଂଶବର୍ଗ ପୋଛି ତପୋଧନ ପ୍ରାୟ ଯାଏ ।
ଧୃତରାଷ୍ଟ୍ର ଗାନ୍ଧାରୀର ଏ ଦେଶ ଦେଖିଣ
ଯୁଧିଷ୍ଠିଙ୍କୁ କୁନ୍ତୀଦେବୀ କହେ ଏ ବଚନ ।
ବାବୁ ଆମ୍ଭେ ତିନି ଯେ ଗାନ୍ଧାରୀ ମାଦ୍ରୀକୁନ୍ତୀ
ମାଦ୍ରୀ ସ୍ୱାମୀ କାର୍ଯ୍ୟ କରି ହେଲା ପୁଣ୍ୟବତୀ ।
ଗାନ୍ଧାରୀ ଯାଉଛି ବାନପ୍ରସ୍ଥେ ବଂଶ ତେଜି
ମୁହିଁ ଏଥି ଥାଇଁ କିମ୍ପା ପାପେ ଥିବି ମଜ୍ଜି ।

ବାଲୁତ କାଳରୁ ଆମ୍ଭେ ଅଟୁ ବେନି ସଖୀ
ସେ ଦୁଃଖ ପାଇଲେ ଆମ୍ଭେ କିମ୍ପା ହେବୁ ସୁଖୀ ।
ମୋତେ କିଛି ନ ବୋଲ ମୁଁ ଯିବଇଁ ଅବଶ୍ୟ
ଗାନ୍ଧାରୀଙ୍କ ତୁଳେ ମୋର ଜାଣ ବନବାସ ।
ମୋର ପୁତ୍ର ହୋଇ ତୁମ୍ଭେ ବଡ଼ ବିଚକ୍ଷଣ
ତୁମ୍ଭଙ୍କୁ ତିଆରିବାକୁ ମୁହିଁ କି ଭାଜନ ।
ବାବୁ ଯେତେକାଳଯାଏ ଥିବ ତୋର କାୟ
ସହଦେବ ନକୁଳକୁ ହୋଇବୁ ସଦୟ ।
ବ୍ୟାକୁଳ ହେଲେ ପାଣ୍ଡବ କୁନ୍ତୀ ସଜ ଦେଖି
ଅଶ୍ରୁ ଢଳ ଢଳ ପଞ୍ଚପାଣ୍ଡବଙ୍କ ଆଖି ।
ଆମ୍ଭଙ୍କୁ ଘେନି ମାତା ଗୋ ବନସ୍ତେ ବୁଲିଲୁ
କନ୍ଦମୂଳ ଖାଇ ମାଗୋ ଦୁଃଖେ ଦିନ ନେଲୁ ।
ଗାନ୍ଧାରୀ ଦେବୀ ଅନେକ କଲା ସୁଖ ଭୋଗ
ତୁମ୍ଭ ଦୁଃଖ ଦେଖି ସୁଖ ନ କଲା ସେ ତ୍ୟାଗ ।
କୁନ୍ତୀ ବୋଇଲେ ସେ ସିନା ନିର୍ଦ୍ଦୟ ହୋଇଲେ
ଶତପୁତ୍ର ଉପୁଜାଇ ଅପୁତ୍ରକ ହେଲେ ।
କୁନ୍ତୀକି ବୋଲନ୍ତି ପୁତ୍ରେ ବିନୟ ବଚନେ
ଆଗୋ ମାତ ଆମ୍ଭଙ୍କୁ ତୁ ଛାଡ଼ିଯିବୁ କେଣେ ।
ଆମ୍ଭ ସହିତରେ କେତେ ଲଭିଅଛୁ ଦୁଃଖ
ଭୋଗ କଲାବେଳେ କିମ୍ପା ଆମ୍ଭଙ୍କୁ ଉପେକ୍ଷ ।
ଶୁଝି ନ ପାରିବୁ ଯେତେ ପୋଷିଥିବା ଋଣ
ପୁତ୍ରରେ ଲେଖା ନୋହିଲୁ କରି ମନ୍ଦପଣ ।
ସମ୍ପଦ କାଳରେ କାହିଁପାଇଁକି ମୁରୁଛୁ
ଭିକ୍ଷା ଅନ୍ନେ କେତେ କଷ୍ଟେ ଆମ୍ଭଙ୍କୁ ପାଳିଛୁ ।
ବାଳକାଳେ ଆମ୍ଭର ଗୋ ତାତ ହେଲେ ନଷ୍ଟ
ତୋହର ପ୍ରସାଦେ ମାତ ପାଇନାହୁଁ କଷ୍ଟ ।
ଆମ୍ଭମାନଙ୍କ ନିମନ୍ତେ କରିବାକୁ ଚିନ୍ତା
କାହାଆଗେ ପ୍ରକାଶିବୁ ଦୁଃଖ ଆଗୋ ମାତା ।
ଆମ୍ଭଠାରୁ କାହିଁପାଇଁ ମନ ନେଲୁ କାଢ଼ି
କେହ୍ନେ ଦେହ ଧରିବୁ ତୁ ସହଦେବ ଛାଡ଼ି ।
କୁନ୍ତୀ ବୋଇଲେକ ବାବୁ ଶୁଣ ତୁ ଯୁଧିଷ୍ଠି
ଏକାନ୍ତେ କହିବି ତୋତେ ଆଗ କଥାଗୋଟି ।
ଅନ୍ଧ ଅନ୍ଧୁଣିଏ ବେନି ଚାଲିବେ କେମନ୍ତେ
କଷ୍ଟ ପାଇ ଶାପ ବାବୁ ପୁଣି ଦେବେ ତୋତେ ।
ଯେତେବେଳେ ପଥ ହୁଡ଼ି ଲଭିବେ ଏ କଷ୍ଟ
ୟାଙ୍କ ସଙ୍ଗେ ଥାଇ ମୁହିଁ କଢ଼ାଇବି ବାଟ ।
ମୁହିଁ ଜାଣ ଏହାଙ୍କର ତୁଳେ ଯାଉଥିଲେ
ଅପାର ମଙ୍ଗଳ ବାବୁ ହୋଇବ ନା ଭଲେ ।
ଯେତେବେଳେ ଲୋଡୁଥିବେ ଏହୁ ଅନ୍ନପାଣି
ମୁହିଁ ପୁଣ ଲୋଡ଼ିକରି ଦେଉଥିବି ଆଣି ।

ମାତାର ଏପରି ବାକ୍ୟ ଶୁଣିଣ ଯୁଧିଷ୍ଠି
ଛାଡ଼ିଲେକ ମନବ୍ୟଥା ଲଭିଲେକ ତୁଷ୍ଟି ।
ପିନ୍ଧି କଷାବସନ ଦେହେ ଭସ୍ମ ବୋଳି
ଶିରେ ଜଟା ବାନ୍ଧି କରେ ମୃଗଚର୍ମ ଧରି ।
ଧୃତରାଷ୍ଟ୍ର ଗାନ୍ଧାରୀର ସଙ୍ଗେ କୁନ୍ତୀ ଗଲେ
କଲ୍ୟାଣ କରିଣ ତହୁଁ କୁରୁରାଜ ଚଳେ ।
ଏମନ୍ତେ ସ୍ୱରୂପ ଯହୁଁ ଦେଖିଲେ ତାହାଙ୍କୁ
ଗାନ୍ଧାରୀ ଯେ କୋଳ କଲେ ସେ କୁନ୍ତୀଦେବୀଙ୍କୁ ।
ଆବର ବୋଇଲେ ତୁ ଗୋ କିମ୍ପା ଯିବୁ ବନ
ସୁଖକାଳେ ପୁତ୍ରଙ୍କୁ ତୁ ଛାଡ଼ିବୁ କେସନ ।
କୁନ୍ତୀଦେବୀ ବୋଇଲେ ମୁଁ ଅଟେ ବଡ଼ ଦୁଃଖୀ
ପୁଅଙ୍କର ଅବସ୍ଥା ମୁଁ ନ ପାରଇ ଦେଖି ।
କୁମାରୀକାଳେ କର୍ଣ୍ଣକୁ ମୁହିଁ ଜାତ କଲି
ଲଜ୍ଜାର ନିମନ୍ତେ ନେଇ ଜଳେ ମେଲିଦେଲି ।
କୃତାର୍ଥ ଜୀବନ ମୋର ହେଲା କର୍ଣ୍ଣ ଯୋଗେ
ସେ ପୁତ୍ରକୁ ନ ମାଇଲା ମୋର ଅନୁରାଗେ ।
ପର୍ଶୁରାମଙ୍କଠାରୁ ଶିଖିଥିଲା ଶସ୍ତ୍ର ଯେତେ
ଧନ୍ୟ ଧନ୍ୟ କର୍ଣ୍ଣକୁ ଯେ କରନ୍ତି ଜଗତେ ।
ଅର୍ଜ୍ଜୁନ ସମାନେ ବୀର କର୍ଣ୍ଣକୁ ଯେ ଲେଖି
ହୁଅଇ ଆନନ୍ଦ ହୃଦପଦ୍ମେ ମୋର ଦେଖି ।
ତାହାକୁ ବଜ୍ର ଛଉଭୀ ଅମୃତ କୁଣ୍ଡଳ
ମାଗନ୍ତେ ସେ ଦେଇଦେଲା ନେଲେ ଆଖଣ୍ଡଳ ।
ଏଡ଼େ ସତ୍ୟବନ୍ତ ମୋର ଅଟେ ଯେଉଁ ବଳା
ଅଗାଧ ସମୁଦ୍ରେ ବୁଡ଼ାଇଲା ମୋର ଭେଳା ।
ପାତାଳକୁ ଲାଗିଗଲା ତାର ରଥଗୋଟି
ଅନ୍ୟାୟେ ମାଇଲା ତାକୁ ପାପିଷ୍ଠ କିରୀଟୀ ।
ଏପରି ମୁଁ ପୁତ୍ରକଷ୍ଟ ଶୁଣିଅଛି ଯେତେ
ଶୋକ ସମ୍ଭାଳିଣ ବାବୁ କହିବି କେମନ୍ତେ ।
ଏହି ଦୁଃଖମାନ ମୁହିଁ ସହି ନ ପାରଇ
ଦିବାନିଶି କର୍ଣ୍ଣକୁ ମୁଁ ସ୍ୱପନେ ଦେଖଇ ।
କୃଷ୍ଣଚନ୍ଦ୍ର ପରି ଦିଶେ ତାର ମୁଖ ଗୋଟି
ସେ ପୁତ୍ର ବିହୀନେ ମୁହିଁ ହେବି କେହ୍ନେ ତୁଷ୍ଟି ।
ହିଡ଼ିମ୍ବିକୀ ନନ୍ଦନ ମୋ ଘଟୋତ୍କଚ ମଲା
ପାଞ୍ଚାଳୀ କୁମର ସହ ଅଭିମନ୍ୟୁ ଗଲା ।
କୁନ୍ତଭୋଜର ନନ୍ଦନ ପଡ଼ିଲା ମୋ ଭାଇ
ଏହାଙ୍କ ପାଇଁ ମୁଁ ତୀର୍ଥବାସ କରିବଇଁ ।
ଯୁଧିଷ୍ଠି ବୋଇଲେ ମାତ କିମ୍ପା ପାଅ ବ୍ୟଥା
ବେଳୁବେଳ କହୁଅଛ ଯେ ଅନୀତି କଥା ।
କୃଷ୍ଣ ମଧ୍ୟପାତ୍ର ପଣେ ଆସିବାର ବେଳେ
ବିଦୂର ଘରେ ଯେ ରହିଥିଲେ ରାତ୍ରକାଳେ ।

କୃଷ୍ଣଙ୍କୁ ବୁଝାଇ କେଭେ ନ କହିଲୁ ତୁହି
ଯୁଦ୍ଧ କରାଇ ଆମ୍ଭଙ୍କୁ କରୁ ଏବେ ଦ୍ରୋହୀ ।
ଆପେ ଭିଆଇ ପଛକୁ ଦେଉ ପୁଣି ଦୋଷ
ଅସମୟେ ମାତା ତୋତେ କହିବି ମୁଁ କିସ ।
କୁନ୍ତୀ ବୋଇଲେ ବାବୁ ତୁ ନ କହ ସେମାନ
ତୋର ତାତ ଶୋଚନାରେ ଶରୀର ମୋ କ୍ଷୀଣ ।
ବାବୁ ମାତା ପିତା କାହିଁ ସର୍ବଦା କି ଥାଇ
କଦଳୀ ବୃକ୍ଷ ପରାୟ ମନୁଷ୍ୟର ଦେହୀ ।
ମୁହିଁ ଜନନୀ ପୋଷନ୍ତ ମୋତେ ତୁମ୍ଭେ ଯାହା
ବଚନେକ ମାଗୁଅଛି ପ୍ରତିପାଳ ତାହା ।
ବାବୁରେ ପାଞ୍ଚାଳୀ ତୋର ଅଟଇ ଯୁବତୀ
ଛାଇ ପ୍ରାୟ ଖଟିଥାଏ ତୋତେ ଦିବାରାତି ।
ଅନେକ ଦୁଃଖ ତାହାକୁ ପଡ଼ିଲା ଯେ ବନେ
ପାଞ୍ଚଗୋଟି ପୁତ୍ର ନାଶଗଲେ ଏକଦିନେ ।
ଯେସନେ ପୁତ୍ରଙ୍କ କଥା ନ ପଡ଼େ ତା ମନେ
ତେସନ କରି ପାଳିବ ତାକୁ ପାଞ୍ଚ ଜଣେ ।
ପିତା ପୁତ୍ର ଭାଇ ତାର ପଡ଼ିଲେ ସମରେ
ଦୋଷ କଲେ ନ ଧରିବୁ କଦାପି ମନରେ ।
ପୁତ୍ରମାନଙ୍କୁ ଏପରି କହିଣ ଯେ କୁନ୍ତୀ
ଦ୍ରୌପଦୀଙ୍କୁ ପୁଣ ନାନାମତେ ତିଆରନ୍ତି ।
ଆଗୋ ମୋର ମାତା ନ କରିବୁ ଶୋକ ଚିନ୍ତା
ସମସ୍ତଙ୍କ ରାଣୀ ତୋର ନାହିଁ ତ ଅହନ୍ତା ।
ପାଞ୍ଚପତି ଅଟନ୍ତି ତୋ ଦିଗପାଳ ଜାଣି
ସୁଖେ ରାଜଶିରୀ ଭୋଗ କର ଗୋ ଦୁଲଣୀ ।
ପୃଥିବୀର ରାଜା ଅଟେ ଯୁଧିଷ୍ଠି ରାଜର୍ଷି
ତାର ପାଟରାଣୀ ତୁ ଗୋ ଅଟୁ ଚାରୁକେଶୀ ।
ଯେଡ଼େ ବଡ଼ ଖ୍ୟାତି ତୋର ହୋଇଲା ସ୍ତ୍ରୀ ଜନ୍ମେ
ଏଡ଼େ ମହିମା ପାଳିବ କେହୁ ନାରୀଧର୍ମେ ।
କୁଳବଧୂ ଅଟୁ କେବେ ନ କରିବୁ ଚିନ୍ତା
ଦଇବର ଗତି କିଏ କରିବ ଅନ୍ୟଥା ।
ପତିଙ୍କର ମନ ଜାଣି ସେବା କରିଥିବୁ
ପୁତ୍ରଶୋକ କେତେବେଳେ ମନେ ନ ଆଣିବୁ ।
ଆଉ ଏକଗୋଟି କଥା କହୁଅଛି ତୋତେ
ସହଦେବ ଯେଉଁପରି ନ ସୁମରେ ମୋତେ ।
ଏହିପରି କହିଣ ଯେ ପଣ୍ଡୁରାଜ ରାଣୀ
ଦ୍ରୌପଦୀଙ୍କୁ ଆଲିଙ୍ଗନ କଲେ ପୁଣି ପୁଣି ।
ଗାନ୍ଧାରୀ କୁନ୍ତୀ ବିଦୂର ଧୃତରାଷ୍ଟ୍ର ତୁଲେ
ସଞ୍ଜୟ ସହିତେ ପଞ୍ଚ ବନକୁ ଗମିଲେ ।
ସଞ୍ଜୟ ବିଦୂର ଆଗେ କଢ଼ାନ୍ତି ଯେ ବାଟ
ମନ୍ତ୍ରୀ କର ଧରି ଚାଲୁଥାଏ ଧୃତରାଷ୍ଟ୍ର ।
ଗାନ୍ଧାରୀ ଯେ କୁନ୍ତୀ କର ଧରି ଚାଲୁଥାଏ
ରାଜ୍ୟ ତେଜି ଚାଲନ୍ତି ସେ ବାନପ୍ରସ୍ଥ ପ୍ରାୟେ ।
ରାଜପଥ ତେଜି ଚଳିଗଲେ ବନମାର୍ଗେ
ଦେଖିବାକୁ ବହୁଜନ ଆସନ୍ତି ଉଦ୍‌ବେଗେ ।
ଶୋକେ ଅଶ୍ରୁପୂର୍ଣ୍ଣ ହୁଏ ସମସ୍ତଙ୍କ ଆଖି
ଧୈର୍ଯ୍ୟ ଧରି ନ ପାରନ୍ତି ନୟନରେ ଦେଖି ।
ଗାନ୍ଧାରୀର ମୁଖେ ସଦା ଅନ୍ଧ ଯେ ପଟଳ
ଚକ୍ଷୁକୁ ନ ଦିଶେ କେବେ ଧୃତରାଷ୍ଟ୍ରଙ୍କର ।
ଫଳମୂଳ ଜଳ ବନେ ପାଇବେ ଏ କାହିଁ
ଅତି ବୃଦ୍ଧ କାହାର ଯେ ତିଳେ ବଳ ନାହିଁ ।
ସର୍ବଦା ଏ ଶୋଇଥିଲେ ଦିବ୍ୟ ପଲଙ୍କରେ
କେଉଁପରି ଭୂମିଶଯ୍ୟା କରିବେ ବନରେ ।
କଣ୍ଟା ଡିପ ଖାଲ ବାଟ ନ ଜାଣିବେ କିଛି
ପୁଣି ଏ ବିଦୂର ଯାଙ୍କୁ ନ ପାରଇ ମୂର୍ଚ୍ଛି ।
ଧୃତରାଷ୍ଟ୍ର କେଉଁପରି ଏ ଦୁଃଖ ସହିବେ
ଦୁଃଶୀଳାକୁ ମୂର୍ଚ୍ଛି କେଉଁପରି ଦିନ ନେବେ ।
ଏହିପରି କହି ଲୋକେ ପୁରକୁ ଗମିଲେ
ପାଞ୍ଚଜଣଯାକ ମହାବନରେ ପଶିଲେ ।
ଜୟ ତୁ କେଶବ ହରି ଜୟ ନାରାୟଣ
ସର୍ବଭୂତନାଥ ତୁହି ଅନାଦି କାରଣ ।
ସତତ ଲୟ ମୋହର ତୋର ପାଦପଦ୍ମେ
ଯେବଣ ସ୍ୱାମୀ ବଳିକି ଚାପିଲେକ ଛଦ୍ମେ ।
ବିକଚକମଳ ଡୋଳା ଲଳିତ ବରନ
ଅଚଳ ମହିମା ମେରୁ ସୁନ୍ଦର ନୟନ ।
ଅକଳିତ ସାଗରେ ମୁଁ ପଶିଲି ନ ଜାଣି
ମହାଦୁସ୍ତରୁ ନିସ୍ତାର କର ଚକ୍ରପାଣି ।
ସ୍ନାନେ ଭୋଜନେ ଶୟନେ ମୁଁ ଅନୁବରତେ
ହରିହୁଁ ଆନ ନ ଭଜେ ମୋର ହୃଦଗତେ ।
ବୁଝିଲି ଏହି ସଂସାର ଚିତ୍ରପଟ ପ୍ରାୟ
ଜଳବିମ୍ବ ସମ ଏହି ମନୁଷ୍ୟର କାୟ ।
କୃଷ୍ଣ ଲୟେ ରହିଥାଉ ମୋର ସଦା ବୁଦ୍ଧି
ଶାରଳା ଦାସ ଭାବଇ କରୁଣା ବାରିଧି ।

—୦—

## କୁନ୍ତୀ ଗାନ୍ଧାରୀ ସହିତ ଧୃତରାଷ୍ଟ୍ର ସଞ୍ଜୟ ବିଦୂରର ବାନପ୍ରସ୍ଥାଶ୍ରମେ ଗମନ ଓ ତୀର୍ଥଯାତ୍ରା

ଅଗସ୍ତି ବୈବସ୍ୱତ ମନୁ ପୁଚ୍ଛାକଲେ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ବିପିନେ ପଶିଲେ ।
କାହିଁ ରହି ସେ କେମନ୍ତେ କୃତ୍ୟ କଲେ କହ
ସଙ୍ଗେ ଅଛନ୍ତି ତ କୁନ୍ତୀ ବିଦୂର ସଞ୍ଜୟ ।

ବଦନ୍ତି ଅଗସ୍ତି ମୁନି କୁମ୍ଭରଷି ବଳା
ଶୁଣ ତୁ ହୋ ମହାରାଜା ଧର୍ମେ ମତିଭୋଳା ।
କାର୍ତ୍ତିକମାସ ଶୁକ୍ଳପକ୍ଷ ଗୁରୁବାର
କୃତ୍ତିକାଅନ୍ତେ ରୋହିଣୀ ଭୋଗ ଦଣ୍ଡ ତେର ।
ବାଳବ ନାମେ କରଣ ଶୁଭ୍ର ନାମେ ଯୋଗ
ତେଇଶ ଦିନ ଯେ ତୁଳ ସଙ୍କରାନ୍ତି ଭୋଗ ।
ବେଳ ଚାରିଦଣ୍ଡେ ପଡ଼େ ବୃହସ୍ପତି ବେଳା
ବାନପ୍ରସ୍ଥକୁ ଗମିଲା ଅମ୍ବିକାର ବଳା ।
ଅନ୍ଧ ଅନ୍ଧୁଣୀ ସେ ବନେ କିଛି ନ ଚିହ୍ନନ୍ତି
ଯେଉଁ ଫଳ ଦେହେ ଲାଗେ ତାହା ସେ ଭୁଞ୍ଜନ୍ତି ।
ଆପେ ଯାହା ଅରଜିବ ଭୁଞ୍ଜିବ ଅବଶ୍ୟ
କଲାକର୍ମକୁ ଲଭିବ ଆନର କି ଦୋଷ ।
ଧୃତରାଷ୍ଟ୍ର କୂଟେ ଯୁଧିଷ୍ଠିର ଯାଇଥିଲେ
ଅନ୍ତେ ସେ ଫଳିଲା ଧୃତରାଷ୍ଟ୍ର ବନେ ଗଲେ ।
ତପସ୍ୱୀ ବେଶେ ରାଜ୍ୟରୁ ବାହାର ହୋଇଲେ
ବହୁ ଦେଶ ନାନା ଗିରି କନ୍ଦରେ ଭ୍ରମିଲେ ।
କନ୍ଦମୂଳ ପତ୍ର ଭକ୍ଷ ନିଅନ୍ତି ସେଦିନ
ଦିବସେ ଭ୍ରମଣ ରାତ୍ରେ ପତ୍ରରେ ଶୟନ ।
ପାଞ୍ଚମାସ ଯେ ପନ୍ଦରଦିନ ଗଲା ଚାଲି
ପ୍ରବେଶ ହେଲେ ଯାହାକୁ ଗୟାତୀର୍ଥ ବୋଲି ।
ପାତାଳଗାମିନୀ ଶୁଭଭଦ୍ର ନାମେ ନଈ
ବହଇ ସେଠାରେ ସର୍ବେ ସ୍ନାନ କଲେ ଯାଇ ।
ବୋଇଲେ ବ୍ରହ୍ମାନନ୍ଦିନୀ ଫଲ୍‌ଗୁ ତୁହେ ସାକ୍ଷୀ
ବନ୍ଧୁ କୁଟୁମ୍ବ ସୋଦର ପାଇଁ ମୁହିଁ ଦୁଃଖୀ ।
ପୁଣ୍ୟଭଦ୍ରା ତୀର୍ଥେ ଥିଲା ରାମଘାଟ କୁଣ୍ଡ
ଗୋତ୍ର ଉଚ୍ଚାରି ତହିଁରେ ଦେଲେ ବାଲିପିଣ୍ଡ ।
ଭୁରିଶ୍ରବା ବାହ୍ଲୀକ ଯେ ଭୀଷ୍ମ ସୋମଦତ୍ତ
ଶଲ୍ୟ କର୍ଣ୍ଣ ଶକୁନି ଯେ ସମ ପୁତ୍ରଶତ ।
ବିରାଟ ଦ୍ରୁପଦ ଅଭିମନ୍ୟୁ କୁନ୍ତଭୋଜ
ଏମାନଙ୍କ ତୁଲେ ଭ୍ରାତ ଗୋତ୍ର ଯେ ଆତ୍ମଜ ।
ଉଭୟଦଳେ ପଡ଼ିଲେ ଯେତେକ ସଇନି
ସବୁରି ନିମନ୍ତେ ଧୃତରାଷ୍ଟ୍ର ପିଣ୍ଡ ଘେନି ।
ଦିଅନ୍ତେ ପାତିଲେ ଆସି ସର୍ବେ କରତଳ
ବାଲିପିଣ୍ଡ ଭକ୍ଷି ମୋକ୍ଷ ହୋଇଲେ ସକଳ ।
ଗୟା ଶ୍ରାଦ୍ଧରେ ଉପର ବଂଶେ ଯେତେଲୋକ
ମୁକତି ଗତି ପାଇଣ ହୁଅନ୍ତି ସେ ମୋକ୍ଷ ।
ପିତୃକାର୍ଯ୍ୟ କଲେ ତହିଁ ବିଦୁର ସଞ୍ଜୟେ
ଗୟାଶ୍ରାଦ୍ଧ କଲେ କୁନ୍ତୀ ଗାନ୍ଧାରୀ ଏ ଦୁହେଁ ।
ସତ୍ୟ ଉଚ୍ଚାରିଲେ ଗଦାଧର ପରସନ୍ନେ
ତିରିଶ ଦିନ ରହିଲେ ଫଲ୍‌ଗୁତୀର୍ଥ ସ୍ଥାନେ ।

ପୁଣି ବିଛା ଧନୁ ବେନି ମାସର ଅନ୍ତରେ
ପ୍ରୟାଗ ତୀର୍ଥେ ପ୍ରବେଶ ହେଲେ ଗଙ୍ଗାତୀରେ ।
ଗଙ୍ଗା ଯମୁନା ସେ ସରସ୍ୱତୀ ତିନିଧାର
ବେଦ ଅନୁଯାୟୀ ସ୍ନାନ କଲେକ ସତ୍ୱର ।
ବେଦ ଅନୁଯାୟୀ ତହିଁ ପିଣ୍ଡ ଦାନ କଲେ
ମାଧବ ପ୍ରସନ୍ନେ ତହିଁ ମାସେକ ରହିଲେ ।
କଜ୍ୱା ନାମେ ରାଜା ଆସି ସେଠାରେ ପ୍ରବେଶି
ବୋଧେ ଧୃତରାଷ୍ଟ୍ର ତୁହି ଅଟୁ ପୁଣ୍ୟ ଅଂଶୀ ।
ଅମୋକ୍ଷ ପ୍ରେତକୁ ପିଣ୍ଡଦାନେ ମୁକ୍ତକର
ପୂର୍ଣ୍ଣ କରିବେ ଏ ମନୋବାଞ୍ଛା ତୀର୍ଥବର ।
ପୂର୍ବେ କେ ଶ୍ରବଣ ବୋଲି ରାଜା ଏକ ଥିଲା
ରାଜ୍ୟଭୋଗ ଛାଡ଼ି ସେହି ତୀର୍ଥ ସେବା କଲା ।
ଭାଗିରଥ ପୁରୁରବା ଭରତ ଯଯାତି
ତୀର୍ଥ ସେବା କରି ସେହୁ ପାଇଲେ ମୁକତି ।
ରାଜା ଭୋଗ କଲେ ନାନା ପାତକ ଘୋଟଇ
ଅଇଶ୍ୱର୍ଯ୍ୟ ପଣେ ସତ୍ୟ ଧର୍ମ ନ ଗଛଇ ।
ସେ ପାପକୁ ତୀର୍ଥ ବ୍ରତ ବିନା ଆନ ନାହିଁ
ତୀର୍ଥ ଦର୍ଶନେ କୃତାର୍ଥ କରି ନିଜ ଦେହୀ ।
ତହୁଁ ଧୃତଭଷ୍ଟ୍ର ପୁଣି ଆନବନେ ଗଲେ
ବାଟେ ନାରଦ ମୁନିଙ୍କୁ ପର୍ବତେ ଦେଖିଲେ ।
ଧୃତରାଷ୍ଟ୍ର ଗାନ୍ଧାରୀ ଯେ କୁନ୍ତୀ ଜଣ ତିନି
ସଞ୍ଜୟ ବିଦୂର କଲେ ଚରଣେ ଦଇନୀ ।
ନାରଦ ବୋଇଲେ ତୁହି ଯଶ ଅରଜିଲୁ
ତେଣୁ ଧୃତରାଷ୍ଟ୍ର ତପେ ବନକୁ ଅଇଲୁ ।
ସ୍ୱର୍ଗରେ ପଣ୍ଡୁକୁ ପୁଣି ଦେଖିବୁ ତୁ ଯାଇ
ତୋତେ ଯିବାକୁ ଅଛଇ ସେହି ବାଟ ଚାହିଁ ।
ଅସଂଖ୍ୟ ଯେ ଲୋକ ତହିଁ ଜାଣ ଠାବ ନାହିଁ
ଅନର୍ଗଳ ଦ୍ୱାର ବାବୁ ଯିବୁ ରହି ରହି ।
ପୁତ୍ର ପୌତ୍ର ଭାରିଯାଏ ନୁହନ୍ତି କାହାରି
ଦେଖୁ ଦେଖୁ ସମସ୍ତେ ତ ଗଲେ ପ୍ରାଣହାରି ।
ଏ ମର୍ତ୍ତ୍ୟମଣ୍ଡଳେ ରହି କିସ ଭୋଗ କଲୁ
ଲୋଭ ମୋହ ଅହଙ୍କାର ଶୋକରେ ବୁଡ଼ିଲୁ ।
ପାଞ୍ଚଇନ୍ଦ୍ରିୟ ଅଟନ୍ତି ଜାଣ ଭୋଗକାରୀ
ତେଣୁ ସଦ୍‌ଜ୍ଞାନ ବାବୁ ରହେ ଅପସରି ।
ସବୁ ତେଜି ଯେବେ ନାନା ତୀର୍ଥବ୍ରତ କରି
ତେବେ ଏଥେ ମୋହ ଜଳ ହୁଅଇ ସଂହାରି ।
ଅନେକ ଜ୍ଞାନ ତାହାକୁ କହିଲେକ ଋଷି
ପୁଣି ଯେ ବ୍ୟାସ ପ୍ରବେଶ ହୋଇଲେକ ଆସି ।
ବ୍ୟାସଙ୍କୁ ଦେଖି ପ୍ରଣାମ କଲେ ଧୃତରାଷ୍ଟ୍ର
ଭୋ ପିତା ତୁମ୍ଭେର ଥାଉ ମୋର ଏଡ଼େ କଷ୍ଟ ।

ବ୍ୟାସ ବୋଇଲେ ତୁ ବାବୁ ଭଲକାର୍ଯ୍ୟ କଲୁ
ଗୃହବାସ ତେଜି ଯାହା ବନକୁ ଅଇଲୁ ।
କ୍ଷତ୍ରିୟଙ୍କୁ ସଂଗ୍ରାମରେ ମୃତ୍ୟୁ ଏକ ଗତି
ଅନ୍ୟ ସମୟରେ ମଲେ ନୁହଇ ମୁକତି ।
ଜନ୍ମ ହିଁ ତୋହର ବାବୁ ପୁଣି ଚକ୍ଷୁ ନାହିଁ
ତେଣୁ ବାବୁ ରଣ-ଯଜ୍ଞ ପାଇବୁ ବା କାହିଁ ।
ଚିନ୍ତା ତୁ ଉପେକ୍ଷି ଏବେ ଥାଅ ବନବାସେ
ଏମନ୍ତ ବୋଲି କହିଲେ ଯହୁଁ ମୁନି ବ୍ୟାସେ ।
ନାରଦ ସେ ପର୍ବତରୁ ଗଲେ ପାଞ୍ଚଦିନେ
ଗଙ୍ଗାର କୂଳେ ପ୍ରବେଶ ହେଲେ ପାଞ୍ଚଜଣେ ।
ନାନା ତରୁମାନଙ୍କରେ ବନେ ଶୋଭାବନ
ମୃଦୁ ମନ୍ଦ ସମୀରଣ କରେ ସଞ୍ଚରଣ ।
ବକୁଳ ମାଧବୀ ନାଗକେଶ୍ୱର ରସାଳ
ମତ୍ତଭରେ ରାବ କରି ଭ୍ରମନ୍ତି ଭ୍ରମର ।
ଅତି ମନୋହର ତହିଁ କୋକିଳର ବାଣୀ
ତାହା ଶୁଣି ଉପେକ୍ଷିଲେ ଶୋକ ପଞ୍ଚପ୍ରାଣୀ ।
ବହୁ ଜୀବଜନ୍ତୁ ସୁଖେ କ୍ରୀଡ଼ନ୍ତି ସେ ବନେ
କରୀବର ମୃଗ ହୟ ବାହୁଟିଆମାନେ ।
ନାନା ସୁରମ୍ୟ ପଦାର୍ଥେ ହୋଇଣ ସନ୍ତୁଷ୍ଟ
ଗୃହ ବିସ୍ମରି ସେ ବନେ ରହି ଧୃତରାଷ୍ଟ୍ର ।
ଗଙ୍ଗା କୂଳରେ ସେ ପଞ୍ଚକୁଟୀ ନିର୍ମାଣିଲେ
ଫଳମୂଳ ଖାଇ ତହିଁ ଆନନ୍ଦେ ରହିଲେ ।
ସ୍ନାହାନ ତର୍ପଣ ନିତ୍ୟକର୍ମ ଯେ ସାରନ୍ତି
ଯାହା ମିଳେ ତା ଉତ୍ତାରେ ଆହାର କରନ୍ତି ।
ପୂର୍ବରୁ ସେ ଦେଖାଦେଇ ବ୍ୟାସ ଯାଇଥିଲେ
ଇନ୍ଦ୍ରପ୍ରସ୍ଥଠାରେ ଯାଇ ପ୍ରବେଶ ହୋଇଲେ ।
ଯୁଧିଷ୍ଠିଙ୍କ ସଭା ହୋଇଥିଲା ଯେ ଗହଳ
ବ୍ୟାସଙ୍କୁ ଦେଖି ତକ୍ଷଣେ ଉଠିଲେ ସକଳ ।
ସମସ୍ତଙ୍କ ସଙ୍ଗେ ଯୁଧିଷ୍ଠିର ଧର୍ମରାଜା
ବ୍ୟାସଙ୍କର ପାଦପଦ୍ମେ କଲେ ଦିବ୍ୟପୂଜା ।
ଯୁଧିଷ୍ଠିଙ୍କି ଡାକି ତହୁଁ ମହର୍ଷି ବୋଇଲେ
ଧୃତରାଷ୍ଟ୍ରେ ଅଇଲଇଁ ଦେଖି ଗଙ୍ଗାକୂଳେ ।
ଗାନ୍ଧାରୀ କୁନ୍ତୀ ବିଦୂର ସଞ୍ଜୟ ସହିତେ
ସେଠାରେ ଅଛନ୍ତି ଦେଖି ଅଇଲଇଁ ନେତ୍ରେ ।
ଶୁଣି ଯୁଧିଷ୍ଠି ବିନୟେ ବୋଇଲେ ବ୍ୟାସଙ୍କୁ
ଦୟା କରି ମୋତେ ବାରେ ଦେଖାଅ ତାହାଙ୍କୁ ।
ଜୟ ଜୟ ରାମଚନ୍ଦ୍ର ଅନାଦି ଅଚ୍ୟୁତ
କୁତୂହଳେ ଜନ୍ମ ଦେବ କରୁ ସ୍ଥିତି ଅନ୍ତ ।
ତୁମ୍ଭ ନାମ ଶୁଣି ଭୟ ପାନ୍ତି ଯମଥାଟ
ନିଜ ମରଣକୁ ନାଥ ରଖିଅଛୁ ବାଟ ।
ମାୟାରୂପେ ଜାତ ହୋଇ ଦୁଷ୍କୃତ ସଂହାରୁ
ରକ୍ଷାକର ମୋତେ ଦେବ ଏ ମାୟାସଂସାରୁ ।
ଜନ୍ମେ ଜନ୍ମେ ସୁଜ୍ଞଜନେ ଭଜ ରାମପାଦ
ବିଷୟା ବିଷକୁ ଏକା ସେହି ସିନା ଗଦ ।
ଶ୍ରୀକୃଷ୍ଣର ପଦ୍ମପାଦେ କରିଣ ଭକତି
ଶାରଳା ଦାସ ଇଚ୍ଛଇ ନିର୍ବାଣ ମୁକତି ।

—o—

## ଯୁଧିଷ୍ଠିରଙ୍କର ସସୈନ୍ୟେ ଧୃତରାଷ୍ଟ୍ରଙ୍କ ନିକଟକୁ ଗମନ ଓ ବିଧବା ନାରୀମାନଙ୍କର ସ୍ୱର୍ଗ ପ୍ରାପ୍ତ

ବଦନ୍ତି ଅଗସ୍ତି ଶୁଣ ମନୁ ବ୍ରହ୍ମବେତ୍ତା
ମହାଭାରତର ଏହି ଆଶ୍ରମିକ କଥା ।
ବ୍ୟାସ ବୋଇଲେ ହେଁ ତେବେ ଯିବା ଚାଲ ବନେ
ତହୁଁ ସସୈନ୍ୟ ପାଣ୍ଡବେ ଗଲେ ପାଞ୍ଚଜଣେ ।
ଶତେ ଭାଇଙ୍କର ପୁଣ ଯେତେକ ଯୁବତୀ
ଗୋଡ଼ାଇଲେ ବିଧବାଏ ତାଙ୍କ ପଛ କତି ।
ଚଳନ୍ତେ ସର୍ବେ ପ୍ରବେଶ ହେଲେ ଗଙ୍ଗାକୂଳେ
ବିଦୂର କହିଲେ ରାଜ୍ୟୁ ଅଇଲେ ସକଳେ ।
ଧୃତରାଷ୍ଟ୍ର କହିଲେ ସେ ବ୍ୟାସଙ୍କ ସହିତେ
ହେ ବିଦୂର ଆସନ୍ତି କି ନେବାର ନିମନ୍ତେ ।
ଗଙ୍ଗାକୂଳେ ଦେଖିଲେ ସେ ଏକ ପର୍ଣ୍ଣକୁଟୀ
ରମଣୀଏ ହାହା ନାଥ କହି ମହୀଲୋଟି ।
ଦୁଃଶୀଳା ଯାଇ ଗାନ୍ଧାରୀ ପାଦ ଦୁଇ ଧରି
ଉଚ୍ଚସ୍ୱରେ କାନ୍ଦେ ଜୟଦ୍ରଥକୁ ସୁମରି ।
ଯୁବତୀମାନେ କାନ୍ଦନ୍ତି ଶିରେ କର ଧରି
ପତି ସୁତ ବନ୍ଧୁ ଭ୍ରାତ ସୁଗୁଣ ସୁମରି ।
ଉଚ୍ଚସ୍ୱରେ ନାରୀମାନେ ରୋଦନ କରନ୍ତି
କିଛିକ୍ଷଣ ପୂର୍ବେ ସମସ୍ତେ କି ମରିଛନ୍ତି ।
ଅଶ୍ରୁଜଳେ ସମସ୍ତଙ୍କ ବକ୍ଷ ହେଲା ଧୋଇ
ସର୍ବେ କାନ୍ଦନ୍ତି କେ ଧୈର୍ଯ୍ୟ ଧରି ନ ପାରଇ ।
କେଉଁ ରମଣୀକି ଅବା ହୋଇ ନାହିଁ ବ୍ୟଥା
କାହାକୁ ପ୍ରବୋଧ କରି କହିବ କେ କଥା ।
କ୍ରମେ କ୍ରମେ ସେ ଦୁଃଖକୁ ଥିଲେ ସେ ଉପେକ୍ଷି
ଶୋକ ବୃଦ୍ଧି ହେଲା ଶାଶୁ ଶ୍ୱଶୁରଙ୍କୁ ଦେଖି ।
ଉଚ୍ଚେ ବୁଡ଼ିକରି ସର୍ବେ କରନ୍ତି ରୋଦନ
ସେ ଶବଦେ କିବା ଫାଟି ପଡ଼ଇ ଗଗନ ।
ବ୍ୟାସଙ୍କର ମୁଖ ଚାହିଁ କାନ୍ଦନ୍ତି ସୁନ୍ଦରୀ
ବୋଲନ୍ତି ଭୋ ଦେବ ଏହୁ ଦୁଃଖୁ କରି ପାରି ।

ସେ ବୋଇଲେ ଅଇଲେ ଯେ ଦେଖି ଧୃତରାଷ୍ଟ୍ର
ସୁଖ ହେବା ଥାଉ ପୁଣ ବଢ଼ିଲା ଯେ କଷ୍ଟ ।
ବ୍ୟାସଦେବ ତହୁଁ ଧୃତରାଷ୍ଟ୍ରଙ୍କୁ ବୋଇଲେ
ତୋତେ ଦେଖିବାକୁ ଏବେ ଏମାନେ ଅଇଲେ ।
ତୋତେ ଦେଖି ଶୋକ ବୃଦ୍ଧି ହେଲା ଏହାଙ୍କର
ସମ୍ବୋଧନ କରି ଯାଙ୍କୁ ପ୍ରବୋଧ ତୁ କର ।
ଧୃତରାଷ୍ଟ୍ରଙ୍କୁ ପ୍ରବୋଧ ଦେଇ ମହାରଷି
ବଧୂଜନମାନଙ୍କୁ ସେ ବୋଲନ୍ତି ବିଶ୍ୱାସି ।
ବୋଇଲେ ଗୋ ବଧୂମାନେ ଶୋକ ତ୍ୟାଗ କର
ପତି ସୁତମାନେ ମରିନାହାନ୍ତି ତୁମ୍ଭର ।
ତୁମ୍ଭେଗୋ ପ୍ରତୀତି ମନେ ନ କରିବ ନାରୀ
ଏହିକ୍ଷଣି ଯେଝା ସ୍ୱାମୀ ଦେବା ଆଣି କରି ।
ଶୁଣି କେ କରେ କାର୍ପଣ୍ୟ କେହୁ ପାଏ ପଡ଼ି
କେଶବାସ ଅସମ୍ଭାଳେ କେ କାନ୍ଦୁଛି ଗଡ଼ି ।
କେ ବୋଲଇ ଜନ୍ମେ ଜନ୍ମେ ଦାସୀ ହେବୁ ଯତି
ତୁମ୍ଭର ପ୍ରସାଦୁ ଯାଉ ଆମ୍ଭର ଦୁର୍ଗତି ।
ତୁମ୍ଭ ଅନୁଗ୍ରହେ ଯେବେ ସ୍ୱାମୀଙ୍କୁ ପାଇବୁ
ଏ ଘୋର ଦୁଃଖକୁ ଆମ୍ଭେମାନେ ପାଶୋରିବୁ ।
ବହୁ ବର୍ଷ ହେଲା ନ ଦେଖିଲୁ ଯେ ନୟନେ
ଏ କଷ୍ଟରୁ ପାର ହେବୁ ତୁମ୍ଭର ପ୍ରସନ୍ନେ ।
ସ୍ୱପନ ପରାୟେ ଲାଗୁଅଛି ତୁମ୍ଭ ବାଣୀ
ଆତ୍ମା ବିକଳ ହୁଅଇ ତୁମ୍ଭ ବାକ୍ୟ ଶୁଣି ।
ଆଶା ଦେଖାଇ ହେ ମୁନି ନ କର ନିରାଶ
ଆପଣ ଜାଣନ୍ତି ଏଥି ହେବ କେତେ ଦୋଷ ।
ଦେଖି ଆନନ୍ଦେ ରୋମାଞ୍ଚ ହେଉଅଛି ଦେହ
ଆରଥରେ ମହାମୁନି ସେହି କଥା କହ ।
କାକୁସ୍ଥ ବଚନେ ସତ୍ୟବତୀର ନନ୍ଦନ
ଗଙ୍ଗାଜଳେ ପଶି ମୁନି ତହୁଁ କଲେ ସ୍ନାନ ।
ଯୋଗଧ୍ୟାନେ ବସି ତହୁଁ ଚିନ୍ତିଲେ ମହର୍ଷି
ଦିବ୍ୟ ଅବତାର ହୋଇ ନିଜେ ଭୀଷ୍ମ ଆସି ।
ପୁଣି ସେ ଚିନ୍ତିଲେ ଆସି ମିଳିଲେକ ଦ୍ରୋଣ
ଭୁରିଶ୍ରବା ବାହ୍ଲିକ ଯେ ସୋମଦତ୍ତ ରାଣ ।
ପୁଣି ଧ୍ୟାନେ ଚିନ୍ତିଲେ ସେ ଶକଟିର ନାତି
କର୍ଣ୍ଣ ମିଳିଲେକ ଆସି ରାଧାର ସନ୍ତତି ।
ଦୁର୍ଯ୍ୟୋଧନ ଅଇଲାକ ଶତଭ୍ରାତ ମେଳେ
ଲକ୍ଷ୍ମଣ କୁମାର ଶଲ୍ୟ ଶକୁନିର ତୁଲେ ।
ଶିଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନ ଦ୍ରୁପଦ ନୃନାଥ
ଅଭିମନ୍ୟୁ ତୁଲେ ଶ୍ୱେତ ବିରାଟର ସୁତ ।
ବିରାଟ ସହିତେ ପୁଣି ପାଞ୍ଚାଳୀ କୁମରେ
ଅଳମ୍ବୁଷ ଘଟୋତ୍କଚ ଆଦି ଯେ ସମରେ ।
ଅଷ୍ଟାଦଶ ଦିନ ମଧ୍ୟେ ପଡ଼ିଲେ ଯେତେକ
ସଂକ୍ଷେପ କରି କହିବି ତାହା ବା କେତେକ ।
ସେ କାଳେ ଯେତେକ ଥିଲେ ଜାଣ ଯଥାରୂପେ
ଅଳଙ୍କାର ଆଭରଣ ଯେ ଯେଉଁ ସ୍ୱରୂପେ ।
ବ୍ୟାସ ବୋଇଲେ ଶୁଣ ଗୋ ତୁମ୍ଭେ ସର୍ବ ବାମା
ଯେ ଯାହାର ପତି ଚିହ୍ନ ବାଛିଣ ଘେନିମା ।
ରାତ୍ରକ ତୁମ୍ଭଙ୍କୁ ସିନା କ୍ଷଣକ ଅଟଇ
କର ସମ୍ଭୋଗ ତୁମ୍ଭର ଯାଉ ଏ କଷ୍ଟହିଁ ।
ଉଜାଗର ରହି ସୁଖେ ରାତି ପୁହାଇବ
ପ୍ରଭାତ ହୋଇଲେ ଜାଣ ନ ଥିବ ସେ ଭାବ ।
ଏତେକ ମୁନି କହନ୍ତେ ଧାଇଁଗଲେ ବାଳୀ
ଯେ ଯାହାର ଭର୍ତ୍ତାମାନ ଚିହ୍ନି କୋଳ କରି ।
ପୁଣି ଯୋଗକୁ ଅଭ୍ୟାସ କହେ ମହାରଷି
ସୁବର୍ଣ୍ଣର ପୁର ନଗ୍ର ହୋଇଲାକ ଆସି ।
ଦିବସ ଅନ୍ତରେ ପୁଣି ପ୍ରବେଶନ୍ତି ନିଶି
ଯେ ଯାହାର ଠାବେ ସର୍ବେ ବିଜେ କଲେ ଆସି ।
ନବେ କୋଟି ଯୋଦ୍ଧାଙ୍କର ନବକୋଟି ପୁର
ସୁଖେ ତହିଁ ବିଳସନ୍ତି ନାରୀରତ୍ନ ସାର ।
ହଂସୁଳୀର ତୂଳୀ ତହିଁ ମାଣିକ୍ୟର ଦୀପ
ଲମ୍ବନ୍ତି ସେ ଚଉସରା ଦିବ୍ୟ ଚନ୍ଦ୍ରତାପ ।
ନାନା ହସ କଉତୁକ କରନ୍ତି ବନିତା
ଅଧରମାନ ଚୁମ୍ବନ୍ତି ଉପେକ୍ଷିଣ ଚିନ୍ତା ।
କେବଣ ସ୍ତିରୀ କନ୍ଦଳ କରେ ସ୍ୱାମୀ ସଙ୍ଗେ
କେତେ ଅବସ୍ଥା ପାଇଲି ମୁଁ ତୁମ୍ଭର ଯୋଗେ ।
କେହୁ ରୁଷି ସ୍ୱାମୀକି ଯେ ହୃଦେ ଦିଏ ପେଲି
ପ୍ରେମ କୁତୂହଳେ ଚାଟୁପଟଳ କେ ବୋଲି ।
କେହି ନାରୀଏ ରୁଷନ୍ତି ଭାଷନ୍ତି ପୁରୁଷ
ବଚନ ଚାଟୁ କହନ୍ତି ବେଗେ ଆସ ଆସ ।
କେହି ପ୍ରେମେ ରୁଷି ପିଠି ଦେଇଣ ବସଇ
କେଉଁ ସ୍ତିରୀ ପୁଣି ଆଡ଼ ବାଙ୍କରେ ଚାହିଁଇ ।
କେ ବୋଲେ ତୁମ୍ଭେ ଆପଦ ମୋ ମଥାରେ ପଡୁ
ଭର୍ତ୍ତା ପାଇଲୁ ଆମ୍ଭର କଷ୍ଟମାନ ପୋଡୁ ।
କେ ରୁଷଇ କେ ହସଇ କେ ବସଇ ଦୂରେ
କେବଣ ନାରୀ ବିଳାପ କରେ ଉଚ୍ଚସ୍ୱରେ ।
ପ୍ରଭାତେ ଅରୁଣ ଉଦେ ପାହିଗଲା ରାତି
ସ୍ୱପନ ପୁରୁଷେ ଗଲେ ନାହାନ୍ତି ତ କତି ।
ତୃଣ ଘୃତ ପାଇ ଯଥା ବଢ଼ଇ ଅନଳ
ପୁଂସ ବିନା ସ୍ତିରୀ ତଥା ହୋଇଲେ ବିକଳ ।
ମଦନେ ଜର୍ଜ୍ଜର ହେଲା ସମସ୍ତଙ୍କ ଅଙ୍ଗ
ମିଛେ ମଣନ୍ତି ଅବଳା ଛନ୍ତି ପତି ସଙ୍ଗ ।

ଭୁଜ ବଢ଼ାଇ ଆକର୍ଷି ଧରନ୍ତି ଯୁବତୀ
ମିଛେ କୋଳ କରନ୍ତି ସେ ପୁଂସ ନାହିଁ କତି ।
କାମରେ ଅତି ବ୍ୟାକୁଳ ହୋଇ ସର୍ବବାଳୀ
ଆକାଶକୁ ଦୃଷ୍ଟି କରି ଛାଡ଼ନ୍ତି ବୋବାଳି ।
ଆମ୍ଭଙ୍କୁ ଛାଡ଼ିଣ ନାଥ କେଉଁଆଡ଼େ ଗଲ
ଶରୀର ଅଛି ଜୀବନ କେଣେ କାଢ଼ିନେଲ ।
ଅଧର ଅମୃତ ଆମ୍ଭ ମୁଖେ ପାନ ଦେଇ
ଆମ୍ଭଙ୍କୁ ଛାଡ଼ିଣ କେଣେ ଗଲ ଯେ ପଳାଇ ।
ପୂର୍ବର ଅନୁରାଗ କି ନ ଦେଖି ଆମ୍ଭର
ତେଣୁ ଆମ୍ଭଙ୍କୁ କି ଛାଡ଼ିଗଲ ପ୍ରାଣେଶ୍ୱର ।
ଛାଡ଼ିଯିବା ଥିଲା ଯେବେ କିମ୍ପାଇ ଅଇଲ
ଦୁଷ୍ଟପଣ ଦେଖି କିବା ଧଇର୍ଯ୍ୟ ଧ୍ୱଂସିଲ ।
ସ୍ୱାମୀ ଆଶା ଛାଡ଼ିଗଲୁ କଲ ଯେ କୃତାର୍ଥ
ଏବେ ତୁମ୍ଭ ଯୋଗୁ ପ୍ରାଣ ତେଜିବୁ ଯଥାର୍ଥ ।
ନଖ ଦନ୍ତ ଘାତ ଦେଇ ଆମ୍ଭର ବକ୍ଷରେ
ଏତେବେଳେ ଛାଡ଼ିଗଲ କି ଅପରାଧରେ ।
ଗଲା କଥା ଯାଇଥିଲା ଆସିଲ କି ହେତୁ
ଏଡ଼େ ପ୍ରପଞ୍ଚ କଥାରେ କିମ୍ପା ଆମ୍ଭେ ବର୍ତ୍ତୁ ।
ଏଡ଼େ ବଡ଼ ବ୍ୟଥା ନାଥ ଦେଲ ଯେ ନ ଜାଣି
ତେବେ ତହୁଁ କିମ୍ପା ପ୍ରାଣ ନ ନେଲ ଯେ ପୁଣି ।
ଆଲିଙ୍ଗନେ ନାନା ସୁଖ ଦେଇ ରାତ୍ରକାଳେ
ବିଶ୍ୱାସଘାତକ ଜାଣ କଲ ଏତେବେଳେ ।
କରନ୍ତେ ବିଳାପ ନାରୀମାନେ ସେହି ବାଣୀ
ପାଣ୍ଡବେ ସର୍ବେ ମଉନ ହେଲେ ତାହା ଶୁଣି ।
ସ୍ୱାମୀ ସ୍ୱାମୀ ବୋଲି ସର୍ବେ ରୋଦନ କରନ୍ତି
କୋଳ ଇଚ୍ଛି ଗଗନକୁ ହସ୍ତ ଯେ ବଢ଼ାନ୍ତି ।
ସଙ୍ଗେ ନିଅ ବୋଲି ଉଚ୍ଚେ ଡାକନ୍ତି ସେ ନାରୀ
କି ସୁଖ ଅର୍ଜିବ ନିଜ ଘରଣୀକୁ ମାରି ।
ଯେଉଁପରି ପଙ୍କଜକୁ ବିକାଶଇ ଅର୍କ
ଅନ୍ତରୀକ୍ଷେ ଥାଇ ତାହା ଦିଅ ପ୍ରତିବାକ୍ୟ ।
ବ୍ୟାସଙ୍କୁ ବୋଲନ୍ତି ପତିଦାନ ଦିଅ ଋଷି
ଶୁଣି ବ୍ୟାସ ବୋଇଲେ ଯେ ଅଳ୍ପ ଅଳ୍ପ ହସି ।
ସ୍ୱାମୀ ସଙ୍ଗେ ଯିବାକୁ କି ଇଚ୍ଛା ଆଗୋ ବାଳି
ଦେହି ଦେହି ବୋଲି ସର୍ବେ ଛାଡ଼ିଲେ ବୋବାଳି ।
ଏ ବିପଦୁ ତୁମ୍ଭେ ଦୟାକଲେ ହେବୁ ପାରି
ଭୋଗିବୁ ଯେ ମର୍ତ୍ତ୍ୟପୁରୀ ଛାଡ଼ି ସ୍ୱର୍ଗପୁରୀ ।
ବହୁକାଳ ହେଲା ଦେଖି ନ ଥିଲୁ ନୟନେ
ଦୟା କରି ଦେଖାଇଲ ଦେବ ପରସନ୍ନେ ।
କୃଷ୍ଣର ଦ୍ୱିତୀୟ ଆତ୍ମା ଋଷିକୁଳେ ଜାତ
ସୁବୁଦ୍ଧି ସୁଜ୍ଞାନୀ ପୁଣ ଅଇଶ୍ୱର୍ଯ୍ୟବନ୍ତ ।
ସର୍ବନାଶି ସାଧୁଙ୍କର କର ଦୋଷ କ୍ଷମା
ସକଳ ବ୍ରହ୍ମାଣ୍ଡେ ଖ୍ୟାତ ତୁମ୍ଭର ମହିମା ।
ଏପରି ବହୁ ବିନୟ ନାରୀଏ କରନ୍ତି
ମୁହିଁ ତାଙ୍କ ଶ୍ରୀଚରଣ ତଳେ କରି ସ୍ତୁତି ।
ନୁହଇ ପଣ୍ଡିତ ଉଚ୍ଚକୁଳେ ଜାତ ଜ୍ଞାନୀ
ମହାମଣ୍ଡଳରେ କରୁଅଛି ଶୂନ୍ୟଗାମୀ ।
ଅଗାଧ ସିନ୍ଧୁ ମଧ୍ୟରେ ମୁହିଁ ଅଛି ପଶି
କିଞ୍ଚିତ ଅପ୍ରାଧେ ହୋଇଅଛି ଏଡ଼େ ଦୋଷୀ ।
ତୁମ୍ଭେ ଦୟା କଲେ ନାଥ ତେଜି ମର୍ତ୍ତ୍ୟପୁରୀ
ସ୍ୱର୍ଗଭୋଗ କରିବି ଯେ ଦୁଃଖ ପରିହରି ।
ଯଦି ମନୁଷ୍ୟ ମଣ୍ଡଳେ ଜାତ କଲ ମୋତେ
ତେବେ ଠାବ ଦିଅ ମୋତେ ସଜ୍ଜନ ସହିତେ ।
ଆୟୁରାରୋଗ୍ୟ ବୁଦ୍ଧିର ଦାତା ମୁନିବର
ହେ ସୃଷ୍ଟି କରତା ମୋତେ ଦୁଃଖୁ କର ପାର ।
କୈବର୍ତ୍ତୀ ନନ୍ଦନ ଯାର ପରାଶର ତାତ
ଷଷ୍ଠଲକ୍ଷ ଗ୍ରନ୍ଥ ଅଟେ ଯାହାଙ୍କ ଚରିତ ।
ଶତଦଣ୍ଡ ପ୍ରଣାମ ଯେ ବ୍ୟାସଙ୍କର ପାଦେ
ଚିନ୍ତଇ ଯେ ଶୂଦ୍ରମୁନି ଶ୍ରୀ ଶାରଳା ହୃଦେ ।
କନ୍ୟାଙ୍କ ବ୍ୟାକୁଳ ଦେଖି ଚିନ୍ତିଲେ ମହର୍ଷି
ସେ ସବୁ ପୁରୁଷେ ପୁଣ ପ୍ରବେଶିଲେ ଆସି ।
ବ୍ୟାସ ବୋଇଲେ ଯେ ନିଅ ଯେ ଯାହା ଭାରିଯା
କାମଭୋଳେ ଉପେକ୍ଷି ଅଛନ୍ତି ସର୍ବେ ଲଜ୍ଜା ।
ତହୁଁ ପୁରୁଷେ କନ୍ୟାଙ୍କ ହସ୍ତମାନ ଧରି
ପିତୃଲୋକେ ବସିଲେ ସେ ଯାଇ ସ୍ୱର୍ଗପୁରୀ ।

—o—

## ବିଦୁରର ଯୁଧିଷ୍ଠି ଦେହେ ପ୍ରବେଶ ଓ ଦେହ ସଂସ୍କାର

ବଦନ୍ତି ଅଗସ୍ତି ତୁ ହୋ ଶୁଣ ମନୁରାଜା
ବଇକୁଣ୍ଠେ ବସିଲେ ଯେ ଘେନିଣ ଭାରିଯା ।
କିଞ୍ଚିତେ ବିଷ୍ଣୁଙ୍କୁ ଚିନ୍ତି ଛାଡ଼ି ଶୋକ ମୋହ
କୃତାନ୍ତକ ଭୟ ତେଜି ଗଲେ ସୁରାଳୟ ।
ଦେଖିଣ ଆଶ୍ଚର୍ଯ୍ୟ ଅନ୍ଧ ବିଦୂର ସଞ୍ଜୟ
ଆଶ୍ଚର୍ଯ୍ୟ ହୋଇଲେ ଦେଖି ପଣ୍ଡୁର ତନୟ ।
ଉଦ୍‌ବେଗ ଚକିତେ କହି ନ ପାରନ୍ତି କଥା
ନରଲୋକେ ଅସମ୍ଭବ ଏସନ ବାରତା ।
ବ୍ୟାସଙ୍କ ପାଦେ ନମିଲେ ସର୍ବେ ତୁଷ୍ଟମନେ
ମୃତ୍ୟୁ ଜିଣିଲେ ଏ ଦେବ ତବ ପରସନ୍ନେ ।
ଯୁଧିଷ୍ଠି ବୋଇଲେ କର୍ଣ୍ଣେ ଯେ ଶୁଣା ନ ଥିଲା
ତୁମ୍ଭ ମହିମାରେ ତାହା ଏବେ ଦେଖାଗଲା ।

ଏହି ଦୁଃଖ ସାଗରେ ଯେ ପଡ଼ିଅଛୁ ଆମ୍ଭେ
ଜଣାଗଲା ଏଥୁଁ ନିଶ୍ଚେ ତାରିବ ଯେ ତୁମ୍ଭେ ।
ଧୃତରାଷ୍ଟ୍ର ବୋଇଲେ ଯେ ଯୁଧିଷ୍ଠିଙ୍କ ଆଗେ
ତୋ ବିଳମ୍ବେ ଜନପ୍ରଜା ଥିବେ ଉଦ୍‌ବେଗେ ।
ରାଜ୍ୟେ ଯାଇ ପ୍ରଜାଙ୍କୁ ଯେ ସୁଖେ ପାଳ ଏବେ
ଅନ୍ଧ ପ୍ରାୟେ ଥିବେ ସର୍ବେ ତୁମ୍ଭର ଅଭାବେ ।
ବିନୟ ବଚନେ ଧୃତରାଷ୍ଟ୍ର ମନାଇଲେ
ନିଜ ଭୁବନକୁ ତହୁଁ ପାଣ୍ଡବେ ଗମିଲେ ।
ପ୍ରବେଶ ହେଲେ ହସ୍ତିନାପୁର ନଗ୍ରଠାବେ
ନିର୍ବାସି ଧୃତରାଷ୍ଟ୍ରଙ୍କୁ ସେହୁ ବନମାର୍ଗେ ।
ନବଦିନେ ସେ ହସ୍ତିନା ଭୁବନେ ପ୍ରବେଶ
ଯେ ଯାହା ଭବନେ ରହି କଲେ ଗୃହବାସ ।
ଅଗସ୍ତିଙ୍କି ବୈବସ୍ୱତ ମନୁ ଯେ ବୋଇଲେ
ବନେ ପୁଣି ଧୃତରାଷ୍ଟ୍ର କେଉଁ କୃତ୍ୟ କଲେ ।
ଯୁଧିଷ୍ଠି ଦେବ ପ୍ରଜାଙ୍କୁ ପାଳିଲେ କିପରି
ଏସନକ କଥା ଦେବ କହନ୍ତୁ ବିସ୍ତାରି ।
ବୋଲନ୍ତି ସ୍ୱଭାବେ ଯୁଧିଷ୍ଠିର ସତ୍ୟବାଦୀ
ସତ୍ୟ ସେ କହନ୍ତି ମିଥ୍ୟା ତେଜି ନିରବଧି ।
ଗ୍ରାମ ଦେଶମାନଙ୍କୁ ଯେ ବରଗିଲେ ଚାର
କାହା ତୁଣ୍ଡୁ ମିଥ୍ୟାବାକ୍ୟ ନୋହିଲା ବାହାର ।
କିଛି କଷ୍ଟ ନୋହିଲା ଯେ ପ୍ରଜାଙ୍କର ମନେ
ହରଷେ ଉପୁଜାଇଲେ କୃଷି ସର୍ବଜନେ ।
ପ୍ରଜାଗଣ ନାନା ଅଳଙ୍କାରେ ମଣ୍ଡି ହେଲେ
ସୁବର୍ଣ୍ଣର କଳସ ଯେ ସମସ୍ତଙ୍କ ଘରେ ।
ପୁତ୍ରମାନେ ପିତାଙ୍କର ହୋଇଥାନ୍ତି ବଶ
ଇନ୍ଦ୍ର ଜାଣ ବୃଷ୍ଟି କଲେ ଜନ୍ମେ ବହୁ ଶସ୍ୟ ।
ଅସଂଖ୍ୟ ଘୃତ ଆହୁତି ଦିଅନ୍ତି ବହ୍ନିରେ
ବେଦଧ୍ୱନି ଶୁଭେ ସର୍ବ ବ୍ରାହ୍ମଣର ପୁରେ ।
ଜରାବସ୍ଥା ନାହିଁ ଜନେ ସାକ୍ଷାତ କନ୍ଦର୍ପ
ବାରାଙ୍ଗନା ପ୍ରାୟେ ଜାଣ ସ୍ତିରୀଙ୍କ ସ୍ୱରୂପ ।
ଫଳ ପତ୍ରରେ ଶୋଭିତ ପାଦପର ପନ୍ତି
ଆବର ଫଳ ପୁଷ୍ପରେ ଶୋଭା ପାଉଥାନ୍ତି ।
ଗୀତ ଆଳାପ କରନ୍ତି ସର୍ବେ ହୋଇ ସଙ୍ଗ
ପବନର ଗତି ବାଜି ମଦେ ମତ୍ତ ନାଗ ।
ବିବିଧରୂପେ ରମଣୀ କରନ୍ତି ଯେ କେଳି
ସରୋଜ ଉପରେ ସୁଖେ ଖେଳୁଥାନ୍ତି ଅଳି ।
ପିକ ହଳନ୍ଦୀବସନ୍ତ ଶୁକ ନାରୀ ନାଦେ
ମଦନର ଉଦବେଗେ ସକଳେ ଆନନ୍ଦେ ।
ବ୍ରତ ଆଦି ଉପବାସ କରନ୍ତି ସରବେ
ଅମୃତ ତିରଣ ଖାଇ ପ୍ରସବନ୍ତି ଗାବେ ।
ରୋଗେ ଆପଦ ହିଁ କିଛି ନ ପଶଇ ପୁରେ
ପୁରାଣ ପଢ଼ା ହୁଅଇ ଜାଣ ଘରେ ଘରେ ।
କାମ ଅର୍ଥଦାଢ଼େ କେହି ନ ପଡ଼ନ୍ତି ମୋହେ
ଭଲ ନୋହିଲା ବୋଲିଣ କେହି ତ ନ କହେ ।
ଯେ ଯାହାର ଅଧିକାରେ ଥାଆନ୍ତି ପୁରୁଷେ
ଧନ ବସ୍ତ୍ର ନ ହରନ୍ତି କେହି ଲୋଭ ବଶେ ।
ପୁରୁଜନଙ୍କର ନାହିଁ ତହିଁ ପରଦାରା
ଦୁଃଖୀ ତସକର ନାହିଁ ପରଧନ ହରା ।
ସ୍ୱସ୍ଥାନେ ବିଷ୍ଣୁ ପୂଜନ୍ତି ସ୍ନାନେ ଯଜ୍ଞେ ସର୍ବେ
କୃଷି ଉପୁଜାଇ ବିପ୍ର ତୋଷି ଦାନଦ୍ରବ୍ୟେ ।
ମେଘ ଯଥାକାଳେ ବାରି ବର୍ଷନ୍ତି ସତତ
ଶୁଣୁଥାନ୍ତି ରାଜା ପରରାଷ୍ଟ୍ର ବାର୍ତ୍ତା ନିତ୍ୟ ।
ପାପକର୍ମ କଥାକୁ ସେ ନ କରନ୍ତି ଲୟେ
ସମସ୍ତେ ଦିଶନ୍ତି ରାଜାପୁତ୍ରର ପରାୟେ ।
ସମରାଜା ଅନୀତି ନ ଶୁଣନ୍ତି ଶ୍ରବଣେ
ମଙ୍ଗଳେ ଥାନ୍ତି ସର୍ବ ନରନାରୀଗଣେ ।
ଏ ବିଧିରେ ଯୁଧିଷ୍ଠିର ପ୍ରଜାଙ୍କୁ ପାଳନ୍ତି
ଧୃତରାଷ୍ଟ୍ରଙ୍କ ଦର୍ଶନେ ବଳିଲା ଯେ ମତି ।
ଭାଇମାନଙ୍କୁ ସଙ୍ଗତେ ଅଛନ୍ତି ସେ ଘେନି
ଧୃତରାଷ୍ଟ୍ର ସନ୍ନିଧିରେ ବିଜେ ନୃପମଣି ।
କୁନ୍ତୀ ଗାନ୍ଧାରୀ ଆବର ଧୃତରାଷ୍ଟ୍ର ରାଜା
ସମସ୍ତଙ୍କର ଯୁଧିଷ୍ଠି କଲେ ପାଦପୂଜା ।
ଯୁଧିଷ୍ଠି ପୁଚ୍ଛିଲେ ତାତ ବିଦୂର ତ ନାହିଁ
ଧୃତରାଷ୍ଟ୍ର ବୋଲେ ଉତ୍ତରକୁ ଅଛି ଯାଇ ।
ପ୍ରାଣେ ଥିଲା ପ୍ରାୟ ମୋତେ ପ୍ରତେ ହେଉ ନାହିଁ
ଏବେ ମାସେ ହେଲା ବାବୁ ତାକୁ ନ ଦେଖଇ ।
ସବୁଦିନେ ବିଦୂରକୁ ଦେଖିବାକୁ ଇଚ୍ଛା
ମରଣ କାଳେ ଜାଣିକି ନ କଲା ସେ ପୁଚ୍ଛା ।
ଅବୟବମାନ ବାବୁ ନ ଚଳଇ ମୋର
ଭକତି କରିଥାଇ ଯେ ଜନନୀ ତୋହର ।
ମୋହର ସଙ୍ଗେ ଯଦ୍ୟପି ନ ଥାନ୍ତେ ତୋ ମାୟେ
ଅଳପଦିନେ ଲୋଟନ୍ତା ଏ ମୋହର କାୟେ ।
ନ ଥାନ୍ତେ ମୋ ସଙ୍ଗେ ଯେବେ ତୋହର ଜନନୀ
ଆହାର ବିନା ମୋ ପ୍ରାଣ ଯାଇ ସାରନ୍ତାଣି ।
ଏତେକ ବୋଲନ୍ତେ ଆସି ବିଦୂର ମିଳିଲେ
କେହି ନ ଦେଖିଲେ ଏହା ଯୁଧିଷ୍ଠି ଦେଖିଲେ ।
ନିକଟେ ଆସି ଯୁଧିଷ୍ଠି ଦେବ ମୁଖ ଚାହିଁ
ପୁଣି ବାହୁଡ଼ିଲେ ସେହି ଆଖିଠାରି ଦେଇ ।
ଡାକିଲା ପ୍ରାୟ ଯୁଧିଷ୍ଠି ରାଜା ତାହା ବୁଝି
ପଛେ ପଛେ ଗୋଡ଼ାଇଣ ଗଲେ ବନମଝି ।

ଅନ୍ତର ହୋଇ ବିଦୂର ଯାଇ ଖଣ୍ଡେ ଦୂରେ
ବିଶ୍ରାମ କରି ରହିଲା ଯୁଧିଷ୍ଠି ଆଶାରେ ।
ନିମ୍ବବୃକ୍ଷମୂଳେ ବସିଅଛି ଶୂଦ୍ରଯୋନି
ନିରେଖଇ ଯୁଧିଷ୍ଠିର ମୁଖ ନେତ୍ର ଘେନି ।
ବସିଲେ ନିମ୍ବ ବୃକ୍ଷର ମୂଳେ ଶୂଦ୍ରସୁତ
ନିୟୋଜିଲେ ଯୁଧିଷ୍ଠିଙ୍କ ପରେ ବେନି ନେତ୍ର ।
ବିଷ୍ଣୁ ବୋଲଇ ସେ ମୁଖେ ହୃଦେ କୃଷ୍ଣ ପଢ଼ି
ଉର୍ଦ୍ଧ୍ୱଗତି ତାର ପ୍ରାଣଲିଙ୍ଗ ଗଲା ଛାଡ଼ି ।
ଯୁଧିଷ୍ଠି ଦେବ ଶରୀରେ ପଶିଲା ଯେ ପ୍ରାଣ
ବିଚାରିଲେ ଯୁଧିଷ୍ଠି ଏ କେବଣ କାରଣ ।
ଜାଣିଲି ବିଦୂର ଆତ୍ମା ମୋ ଦେହେ ପଶିଲା
କିମ୍ପୁତ କାରଣ ଏହା ଜଣା ତ ନ ଗଲା ।
ଏତେ ବିଚାରି ସନ୍ନିଧେ ମହୀପାଳ ଯାଇଁ
ବିଦୂର ଶରୀର ଭୁଜେ ଧରିଣ ଟୋଳଇ ।
ବୋଲନ୍ତି ଆତ୍ମା ଏହାର ଶରୀରେ ତ ନାହିଁ
ମୋହିତ ଯେ ଧର୍ମରାଜ କୋଳେ ଆଉଜାଇ ।
ଅଶ୍ରୁଜଳେ ବିଦୂରକୁ କରାଇଲେ ସ୍ନାନ
ଆଜ ପ୍ରାଣତ୍ୟାଗୀ ହେଲେ ପଣ୍ଡୁ ଯେ ରାଜନ ।
ହିତ କଥାମାନ କିସ ବୋଲିବ ବା ଆଉ
ଆଜହୁଁ ତୁଟିଲା ମୋର ଡାହାଣ ଯେ ବାହୁ ।
ସଙ୍କଟକାଳେ ସନ୍ନିଧେ ସଦା ମୋର ଥିଲେ
ଏତେଦିନେ ପୁତ୍ରବଧୂ ସମସ୍ତେ ପଡ଼ିଲେ ।
ବିଦୂରର ବେନିଭୁଜ ଧରି ମହାରାଜା
ଆଲିଙ୍ଗନ କରନ୍ତେ ସେ କଲା ଭୂମିଶଯ୍ୟା ।
ବନେ ଅଇଲି ଦେଖିବା ପାଇଁ ତାତ ତୋତେ
କେଉଁଆଡ଼େ ଗଲୁ ଏବେ ନ ଦେଖିଲୁ ନେତ୍ରେ ।
କଉରବ ମଧ୍ୟେ ତୋର ଏକା ଥାଏ ଦୟା
କେତେ ପ୍ରମାଦୁ ଉଦ୍ଧାରି ଛାଡ଼ିଲୁ ତୁ ମାୟା ।
ଧୃତରାଷ୍ଟ୍ର ଶୁଣି ହୃଦେ ପ୍ରାଣ କେହ୍ନେ ଧରି
କୁନ୍ତୀ କେମନ୍ତେ ଧରିବ ଆବର ଗାନ୍ଧାରୀ ।
ଏତେ ବୋଲି ଯୁଧିଷ୍ଠି ସେ ପିଣ୍ଡକୁ ଛାଡ଼ିଲେ
ସଂସ୍କାର କରିବା ପାଇଁ ଅଗ୍ନି ଆରୋପିଲେ ।
ଆକାଶବାଣୀ ଶୁଭିଲା ହୋଇ ଉର୍ଦ୍ଧ୍ୱଗତି
ବିଦୂରକୁ ଦହନ ତୁ ନ କର ନୃପତି ।
ବ୍ରହ୍ମଜ୍ଞାନ ଉପଦେଶ ଅଛଇ ସେ ପାଇ
ଜ୍ଞାନାସ୍ୱିତକୁ ଦହନ ରାଜା ନ ଯୋଗାଇ ।
ବ୍ରହ୍ମଜ୍ଞାନୀଙ୍କର ପିଣ୍ଡ ଅଟେ ଜ୍ଞାନମୟ
ବିଳମ୍ବ ନ କର ପୋତିପକା ତାର କାୟ ।
ଆକାଶବାଣୀ ଶୁଭିଲା ଯହୁଁ ଆସି ମଞ୍ଚେ
ଖାତେକ ଖୋଳିଲା ରାଜା ଘେନି କାଠଖୁଞ୍ଚେ ।
ଗଭୀର ବିବରେ ଶବ ପୋତି ମାଟି ଦେଇ
ତହୁଁ ଅଇଲେକ ରାଜା ବଇକୁଲ୍ୟ ପାଇ ।
ଧୃତରାଷ୍ଟ୍ର ଅଗ୍ରତରେ କହିଲେକ ନୃପ
ବ୍ୟାସ କହିଲେ ସେଠାରେ ବିଦୂର ସ୍ୱରୂପ ।
ପୁଣି ଧୃତରାଷ୍ଟ୍ର ଯୁଧିଷ୍ଠିଙ୍କି ଦେଲେ ଶିକ୍ଷା
ତୁ ଯାଅ ବାବୁ ଯୁଧିଷ୍ଠି ଦେଶ କର ରକ୍ଷା ।
ଆରେ ବାବୁ ଆମ୍ଭଠାରେ ପ୍ରୟୋଜନ କିସ
ଆଉ ମହାତ୍ମା ଆମ୍ଭଙ୍କୁ ନ କର ତୁ ଆଶ ।
ମୁଁ ଜୀବନେ ଥାଉଁ ଯେବେ ଚଳିଲା ବିଦୂର
କାଲି ପରି ଜାଣ ମୁହିଁ ତେଜିବି ଶରୀର ।
ଯହୁଁ ଧୃତରାଷ୍ଟ୍ର ମାୟା ତେଜିଣ କହିଲେ
କଷ୍ଟେ ଯୁଧିଷ୍ଠିର ତହୁଁ ରାଜ୍ୟେ ବାହୁଡ଼ିଲେ ।
ହସ୍ତିନା ନଗରେ ଆସି ହୋଇଲେ ପ୍ରବେଶ
ବିଦୂର କଥା କହିଲେ ଭାଇଙ୍କର ପାଶ ।
ଅତ୍ୟନ୍ତ ବିକଳ ହେଲେ ଭାଇମାନେ ଶୁଣି
ବହୁ ଶୋକ କଲେ ତାଙ୍କ ଗୁଣମାନ ଗୁଣି ।
ତଦନ୍ତେ ସତ୍ୟେ ପାଳିଲେ ଯୁଧିଷ୍ଠିର ମହୀ
କାହାର ମନରେ ଦୁଃଖ ହେତୁ ସୁଖ ନାହିଁ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଚତୁର୍ଭୁଜେ ଶଙ୍ଖ ଚକ୍ର ଆଦି ଶୋଭାବନ ।
ତାହାର ଚରଣେ ତଳେ ନିରନ୍ତର ସେବି
ନମଇଁ ଶାରଳା ଦାସ ଶୂଦ୍ରମୁନି କବି ।

—୦—

## ସଞ୍ଜୟର ପଳାୟନ, ଧୃତରାଷ୍ଟ୍ର ଗାନ୍ଧାରୀ ଓ କୁନ୍ତୀଙ୍କ ବନ ଦାହେ ଦଗ୍ଧ ଏବଂ ଅନ୍ତ୍ୟେଷ୍ଟିକ୍ରିୟା

କହନ୍ତି ଅଗସ୍ତି ବୈବସ୍ୱତର ଅଗ୍ରତେ
ବିଦୂର ମରିବା ପରେ ବରଷକ ଅନ୍ତେ ।
ଜ୍ୟେଷ୍ଠ କୃଷ୍ଣପକ୍ଷ ଅମାବାସ୍ୟା ରବିବାର
କୃତ୍ତିକା ନକ୍ଷତ୍ର ଭୋଗ ଅଟେ ସେ ଦିନର ।
ବିଷ୍ଟିକରଣ ଯେ ବଇଧୃତି ନାମେ ଯୋଗ
ଗଙ୍ଗାକୂଳେ ପର୍ବତ ଯା ନାମ ମଧ୍ୟସ୍ୱର୍ଗ ।
ତହିଁ ବୃକ୍ଷ ଦେହେ ବୃକ୍ଷମାନେ ହୋଇ ଘଷି
ଅଗ୍ନିଜାତ ହୋଇ ମହାତେଜ ଯେ ପ୍ରକାଶି ।
ଆକାଶରେ ବିକଶିଲା ସେ ଅଗ୍ନିର ତେଜ
ଆବର ସେ ଉଠି ଗିରି କଲାକ ଦହିର୍ଯ୍ୟ ।
ଦେଖିଣ ସଞ୍ଜୟ ତାହା ଅତି ଉଦ୍‌ବେଗେ
ଯାଇଣ କହିଲା ଧୃତରାଷ୍ଟ୍ରଙ୍କର ଆଗେ ।

ଭୋ ସ୍ୱାମୀ ଅନଳେ ଦହି ହେଉଛି ଏ ବନ
ମୋ ପିଠିରେ ବସ ପଳାଇବା ଯେ ବହନ ।
ଥୋଇବି ତୁମ୍ଭଙ୍କୁ ଏକେ ଏକେ ରୋଳବନେ
ନ କର ବିଳମ୍ବ ଚାଲ ଯିବା ହେ ବହନେ ।
ଧୃତରାଷ୍ଟ୍ର ବୋଇଲେ ମୋ ଦେହେ ବଳ ନାହିଁ
ପାରିବି ମୁଁ କାହୁଁ ଶୀଘ୍ର ହୋଇ ଏଥୁ ଯାଇଁ ।
ଅସ୍ଥି ଚର୍ମ ଅଛି ମାତ୍ର ପାଏ ବଡ଼ ଦୁଃଖ
ଅନଳ ଦହିଲେ ଦେହ ଲଭିବ ଯେ ସୁଖ ।
ଅନିତ୍ୟ ଶରୀର କାହିଁପାଇଁ ବଞ୍ଚିଥିବି
ଅବଶ୍ୟ ଏ ମୃତ୍ୟୁମଣ୍ଡଳକୁ କାଳେ ଯିବି ।
ତପତିତ ଆମ୍ଭ ଦେହେ ଆସି ଲାଗିଲାଣି
କହ କିପରି ଆମ୍ଭଙ୍କୁ ଏଥୁ ଯିବୁ ଘେନି ।
ଅଶକତ ଶରୀର ଯେ ଚାଲି ନ ପାରଇ
ପଳା ଯା ସଞ୍ଜୟ ଏଠାବରୁ ବେଗେ ତୁହି ।
ଦେଖ ଏହି ବହ୍ନି ପୁଣ ଆସୁଅଛି ଧାଇଁ
ଭୟରେ ସଞ୍ଜୟ ତହୁଁ ଗଲାକ ପଳାଇ ।
ପତ୍ରଦ୍ୱାରା ଶୀଘ୍ର ମାଡ଼ିଆସିଲା ଅନଳ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ହୁଅନ୍ତି ଚଞ୍ଚଳ ।
ଭୟେ କୁନ୍ତୀଦେବୀ ଦୈବ ଦୈବ ସୁମରନ୍ତି
ସବୁରି ଉପରେ ଅଗ୍ନି ପଡ଼ିଲା ତଡ଼ତି ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ
ତିନିଜଣଯାକ ତହିଁ ହୋଇଲେ ଦହନ ।
ତଦନ୍ତେ ନାରଦ ହସ୍ତିନାରେ ପ୍ରବେଶିଲେ
ଦେଖି ତାଙ୍କୁ ଯୁଧିଷ୍ଠିର ପୂଜିବା ଇଚ୍ଛିଲେ ।
ନାରଦ ବୋଇଲେ କାହିଁକି ତୁ କରୁ ପୂଜା
ମୃତାଶୌଚ ହୋଇଅଛି ତୋର ମହାରାଜା ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ଦିନ
କୁନ୍ତୀ ଧୃତରାଷ୍ଟ୍ର ଦାରା ସହିତ ଦହନ ।
ବନପୋଡ଼ିରେ ସେମାନେ ହୋଇଲେ ଦହିର୍ଯ୍ୟ
ଏହା ଶୁଣି ମୂର୍ଚ୍ଛାଗତ ହେଲେ ଧର୍ମରାଜ ।
ଅତି ଶୋକେ ବିକଳ ଯେ ହେଲେ ପଞ୍ଚଭ୍ରାତ
ଅଗ୍ନି ପ୍ରତି ଯୁଧିଷ୍ଠିର ହୋଇଲେ କୁପିତ ।
ମହାବ୍ରହ୍ମ ବୋଲି ଖ୍ୟାତ ଅଟଇ ସେ ବହ୍ନି
ସ୍ତିରୀଲିଙ୍ଗ ଦହିଲା ସେ ମୋହର ଜନନୀ ।
ନାରଦ ବୋଇଲେ ତୁ ହୋ ଶୁଣ ନୃପବର
କିଛି ହିଁ ଦୋଷ ଯେ ନାହିଁ ଅଗ୍ନି ଦେବତାର ।
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ଶରୀର ଦହିଲେ
ତୋ ଜନନୀ ସେଠାବରୁ କିଛିଦୂରେ ଗଲେ ।
ବେନି ଅଗ୍ନି ଯୋଗ ହେଉ ମଲା ପଣ୍ଡୁରାଣୀ
ତୁ କିମ୍ପା ବିଚାରୁ ଶାପ ଦେବୁ ନୃପମଣି ।
ପୂର୍ବେ ଭୃଗୁ ଅଗ୍ନିଙ୍କି ଯେ ଦେଇଛନ୍ତି ଶାପ
ସମସ୍ତ ଭକ୍ଷିବେ ତାଙ୍କୁ ନ ଲାଗିବ ପାପ ।
ଏ ମୃତ୍ୟୁପରେ ଅମର ଦେଖିଛୁ କାହାକୁ
ମୋ ଜନନୀ ବୋଲି କିମ୍ପା ଭଜୁଛ ମୋହକୁ ।
ଏତେ ବୋଲି ବ୍ରହ୍ମାପୁତ୍ର ଗଲେ ତହୁଁ ଶୂନ୍ୟେ
ପଠାଇଲେ ପୁରୋହିତ ଧୌମ୍ୟଙ୍କୁ ସେ ବନେ ।
ପ୍ରେତକ୍ରିୟା କାର୍ଯ୍ୟ କର ଶାସ୍ତ୍ରେ ଅଛି ଯଥା
ଯେମନ୍ତେ ପ୍ରେତରୁ ମୋହ ପାନ୍ତି ପିତାମାତା ।
ପୁରୋଧାଙ୍କୁ ସଙ୍ଗେ ଘେନିଗଲେ ପାଞ୍ଚଜଣେ
ଦଶଦିନେ ପ୍ରବେଶିଲେ ମୃତ୍ୟୁ ହେବା ସ୍ଥାନେ ।
ଦେଖନ୍ତି ଦହନସ୍ଥାନେ ନାହିଁ ଚର୍ମ ଅସ୍ଥି
ଗଙ୍ଗାକୂଳେ ରହି ପ୍ରେତକାର୍ଯ୍ୟ ସେ କରନ୍ତି ।
ଗଜ ତୁରଗ ଯେ ଧନ ଧାନ୍ୟ ପୃଥ୍ୱୀଦାନେ
ବିପ୍ରଙ୍କୁ ତୋଷି ବସନ ପ୍ରଚୁର ଭୋଜନେ ।
ଗଙ୍ଗାକୂଳରେ ପାଣ୍ଡବ କ୍ରିୟା ଶେଷ କରି
ବିଜେ ଧର୍ମନନ୍ଦନ ଯେ ଦଇବ ସୁମରି ।
ହସ୍ତିନାପୁରେ ଆସି ସେ ହୋଇଲେ ପ୍ରବେଶ
ରାଜା ସିଂହାସନେ ପୁଣି ବସିଲା ନରେଶ ।
ଆଶ୍ଚର୍ଯ୍ୟ ହୋଇଲେ ଏହା ଦେଖି ସ୍ୱର୍ଗଲୋକ
ଏହା ଦେଖି ଉପେକ୍ଷନ୍ତି ସର୍ବେ ସର୍ବ ଦୁଃଖ ।
ବିଷମ ସନ୍ଦେହ ତୁଟେ ଶୁଣିବା ମାତ୍ରକେ
ଏହା ଶୁଣି ନ ପଡ଼ନ୍ତି ରୋଗ ଭୟ ଶୋକେ ।
କୃଷ୍ଣର ମହିମା ଯେହୁ ଶ୍ରବଣେ ଶୁଣନ୍ତି
ସଂସାର ସାଗରୁ ସେହି ସୁଖେ ତରିଯାନ୍ତି ।
ପଞ୍ଚପାଣ୍ଡବ କୃଷ୍ଣର ଜାଣ ପଞ୍ଚପ୍ରାଣ
ଯେ କୃଷ୍ଣ ସେହି ପାଣ୍ଡବ ଏ କଥା ପ୍ରମାଣ ।
କୃଷ୍ଣ ଅନୁରାଗ ବିନା ବାକ୍ୟ ନାହିଁ ମୋର
ବାସୁଦେବ ଶ୍ରୀଚରଣେ ଲୋଟୁ ମୋର ଶିର ।
ବଦନ୍ତି ଶାରଳାଦାସ ଏ ମହାଭାରତେ
ଖଣ୍ଡଇ ମହାପାତକ ଏହାକୁ ଶୁଣନ୍ତେ ।
ଇତି ଶ୍ରୀ ମହାଭାରତ ଆଶ୍ରମିକ ବାଣୀ
ସଂସାରୁ ତର ନରେ ଏହା ପଢ଼ି ଶୁଣି ।
ପବନ ଯେ ତୃଣ ଆଣି ତହିଁ ପକାଇଲା
ତେଣୁ ସେଠାରେ ଦୋହରା ଅଗ୍ନି ଜାତ ହେଲା ।

—୦—

## ମହଭାରତ ଆଶ୍ରମିକ ପର୍ବ ସମାପ୍ତ

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚିତ




# ମୂଷଳୀପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ - ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ - ୨
ଦୂରଭାଷ : ୦୬୭୧-୨୬୦୮୨୯୬

# ମୂଷଳୀ ପର୍ବ

## ସୂଚୀପତ୍ର

**ବିଷୟ** | **ପୃଷ୍ଠାଙ୍କ**



**ମହାଭାରତ ମୂଷଳୀ ପର୍ବର ସୂଚୀପତ୍ର ସମାପ୍ତ**

# ମହାଭାରତ

## ମୂଷଳୀ ପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ,
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା,
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧ ବୁଦ୍ଧି,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯତ୍କର୍ଣ୍ଣଧାରୋ ହରି ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ,
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ,
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।

ତତ୍ରୈବ ଗଙ୍ଗା ଯମୁନା ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣୀ ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦରକଥାପ୍ରସଙ୍ଗଃ ।

## ବନ୍ଦନା

ନମସ୍ତେ ନମସ୍ତେ ମାଗୋ ଝଙ୍କଡ଼ବାସିନୀ
ତବ ପଦାମ୍ବୁଜେ ଶତସହସ୍ର ଦଇନୀ ।
ମୋ ପ୍ରତି କରୁଣା ବୃଷ୍ଟି ଦିଅ ବାରେ ମାତ
ଲେଖିବି ମୂଷଳୀପର୍ବ ଭାରତେ ବର୍ଣ୍ଣିତ ।
ତବ କୃପା ବିନା ମାଗୋ ଅଟେ ମୁଁ ଅକ୍ଷମ
ଆବର ଜନ୍ମରୁ ମୂର୍ଖ ନାହିଁ ବୁଦ୍ଧି ଜ୍ଞାନ ।
ପାଇ ତୋ କୃପାକଣିକା କବି ରତ୍ନାକର
ବର୍ଣ୍ଣିଥିଲେ ଚରିତ ଯେ ରାମଚନ୍ଦ୍ରଙ୍କର ।
ସେପରି କୃପାକଣିକା ଦିଅ ମାତ ମୋତେ
ଶାରଳା ଦାସ ନମଇ ତବ ପଦାଗ୍ରତେ ।



## ଶ୍ରୀକୃଷ୍ଣଙ୍କର ଭାବନା ଓ ଅକ୍ରୁରର ଜ୍ଞାନୋପଦେଶ ଏବଂ ଅକ୍ରୁରର ଏକାମ୍ର ବନକୁ ଗମନ

ଏଥୁଅନନ୍ତରେ ବିଲଙ୍କା ମହାରାଜ
ଅଗସ୍ତି ମହର୍ଷି ପାଦେ କରିଲେ ସେ ପୂଜା ।
ବସନ ଭୂଷଣ ଧୂପ ଦୀପ ନଇବେଦ୍ୟ
ଦେଇ ସେ ଲକ୍ଷେ ହିରଣ୍ୟ ଲକ୍ଷେକ ସମ୍ପଦ ।
ଭୋ ମୁନି ମହାଭାରତ ପୁଣି ତବ ମୁଖୁ
ତେଜିଣ ଏ ମାୟାମୋହ ତରିବି ଏ ଦୁଃଖୁ ।
ବିଷ୍ଣୁଙ୍କୁ କହି ଯେ ହରି ଅର୍ଜୁନ ଅଇଲେ
ସେ ପୁଣି କେମନ୍ତେ ବୁଦ୍ଧି ଚରିତ ଯେ କଲେ ।
ଶୁଣି ବୈବସ୍ୱତ ମନୁ କହନ୍ତି ଅଗସ୍ତି
ବ୍ରହ୍ମବେତ୍ତାମାନେ ଯାହା କହି ନ ପାରନ୍ତି ।
ଶ୍ରୀକୃଷ୍ଣ ଚରିତ ବଡ଼ ଅଗୋଚର କଥା
କହିବାକୁ କେଉଁ ଜନ ହେବ ସାମରଥା ।
ଫେରି ଅଇଲେ ଯେ ଦିନୁ ବୈକୁଣ୍ଠକୁ ଯାଇ
ସେ ମହାବିଷ୍ଣୁଙ୍କଠାରେ ଆଦେଶକୁ ପାଇ ।
ସେହିଦିନୁ ହରିଙ୍କର ମନରେ ବିରସ
ଭାଳନ୍ତି ଯାଦବ କେହ୍ନେ କରିବ ବିନାଶ ।
କେଉଁପରି ତେଜିଣ ଏ ମର୍ତ୍ତ୍ୟପୁରେ ଲୀଳା
କାହିଁ ରହିବେ ବତ୍ରିଶ ସହସ୍ର ଅବଳା ।
ଏ ପୃଥ୍ୱୀ ଲକ୍ଷେ ରାଜାଙ୍କ ଅଧୀନରେ ଥିଲା
ଏବେ ସମଗ୍ର ପୃଥିବୀ ଆମ୍ଭର ହୋଇଲା ।
ଏହିପରି ଭାଳୁ ଭାଳୁ କେତେକାଳ କ୍ଷୟେ
ଶ୍ରୀକୃଷ୍ଣଙ୍କ ମନ ବଡ଼ ଚିନ୍ତାଭର ହୁଏ ।
ଏହା ବିଚାରୁ ବିଚାରୁ ଦଶବର୍ଷ ଗଲା
ଅନୁଭବ ନାମେ ଏକ ସମ୍ବତ୍ସର ହେଲା ।
ଆଶ୍ୱିନୀ ଶୁକ୍ଳ ପୂର୍ଣ୍ଣିମା ରବିବାର ଦିନ
କୁମାରୋତ୍ସବ ହୋଇଛି ଦ୍ୱାରକା ଭୁବନ ।
ଆସ୍ଥାନେ ବିଜୟ କରି ଦେବ ଚକ୍ରଧାରୀ
ଅନେକ ରତନ ଦେଲେ କଉତୁକ କରି ।
କେ ରୁଷନ୍ତି କେ ହଷନ୍ତି ଘେନିଯାନ୍ତି ବଳେ
ସମରେ ଗର୍ଜନ ପ୍ରାୟ ଶୁଭଇ ଚହଳେ ।
ଆରିଶା କାକରା ପୁରି ଶାକରାଦିମାନ
ସୁବର୍ଣ୍ଣର ଉପହାର ଦେବାଙ୍ଗ ବସନ ।
କର୍ପୂର ତାମ୍ବୁଳ ଆଦି ହୋଇଣ ଉତ୍ସୁକ
ପାଟର ବସନ ବିତରନ୍ତି ଏକ ଏକ ।
କୋଟି କୋଟି ଭଣ୍ଡାର ଯେ ଥିଲା ଦ୍ୱାରକାୟେ
ବିତରିଲେ ତାହା ସବୁ ନିଜେ ଦେବରାୟେ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଯାଙ୍କ ରମଣୀ ଏତିକି ଜାଣୁ ହେ ରାଜନ ।
କେତେ ଛନ୍ତି ଅଣନାତି ଆଉ ପଣନାତି
ସଂଖ୍ୟା କରିଣ ଲେଖିବା କାହାର ଶକତି ।
ଯାଦବ ବୀର ଅଟନ୍ତି ଅଠାଇଶ କୋଟି
ଯଦୁବଂଶ ଭୋଜବଂଶ ରହିଛନ୍ତି ଘୋଟି ।
ଅନ୍ଧକ ଯେ ବୃଷ୍ଣିବଂଶ ଚୁହାଣ ବଂଶାଦି
ଯାଙ୍କ ତୁଲେ ରହିଛନ୍ତି ଦଶପଦ୍ମ ଯୋଦ୍ଧି ।
ପୁତ୍ରମାନଙ୍କର ବଳ କେ ଅନ୍ତ କରିବ
ଏସନକ ବଂଶ ଘେନି ଚଳନ୍ତି କେଶବ ।
ଅନେକ ସମ୍ପର୍କେ ବନ୍ଧୁ କୁଟୁମ୍ବଙ୍କୁ ଦେଖି
ଲୋତକରେ କୃଷ୍ଣଙ୍କର ପୂର୍ଣ୍ଣ ବେନି ଆଖି ।
ଗଳନ୍ତେ ଶୋକର ଜଳ ମୁକ୍ତାଫଳ ସମ
କୃଷ୍ଣ ତାହାକୁ ଧରନ୍ତେ କର ପ୍ରସାରିଣ ।
ଅତି ବିକଳେ ବୋଲନ୍ତି କି ବୁଦ୍ଧି କରିବି
କେଉଁପରି ଏତେ ବଂଶ କ୍ଷୟ କରାଇବି ।
ମୁହିଁ ଅରଜିଛି ଯାହା ନାଶିବି କେମନ୍ତେ
ବଡ଼ ସଙ୍କଟ ତ ଆସି ପଡ଼ିଲାକ ମୋତେ ।
ହୃଦଗତେ ଏହି କଥାମାନଙ୍କୁ ସୁମରି
ଆପଣେ ଏକାଳେ ଶୋକ କରନ୍ତି ମୁରାରି ।
ଅକ୍ରୁର ଚାମର ଧରିଥିଲା ସେ ସ୍ଥାନରେ
ଦେଖିଲା କୃଷ୍ଣଙ୍କ ମନ ଗଦ୍‌ଗଦ ଶୋକରେ ।
ବୋଇଲା ପ୍ରଭୁଙ୍କୁ ଚାହିଁ ଏ କେଉଁ ଚରିତ
କିସ ଅର୍ଥେ ଶୋକ କର ପ୍ରଭୁ ପଦ୍ମ ନେତ୍ର ।
କେଉଁ ଅଭାବ ତୁମ୍ଭଙ୍କୁ ହେଲା ଦେବରାଜ
କି ଅବା ଛାଡ଼ିବ ଏବେ ସକଳ ଐଶ୍ୱର୍ଯ୍ୟ ।
ଏତେ କହିଣ ଅକ୍ରୁର ଚାମରକୁ ଥୋଇ
କୃଷ୍ଣଙ୍କ ଚରଣ ଧରି କାନ୍ଦିଣ ଲୋଟଇ ।

ଅକ୍ରୂରକୁ ଆଶ୍ୱାସନା ଦେଇ ଚଉବାହା
ବୋଇଲେ କାହାକୁ ତୁହି ନ କହିବୁ ଏହା ।
ଅକ୍ରୂର ବୋଇଲା ପ୍ରଭୁ କେବଣ ଚରିତ
ବଡ଼ ଆଶ୍ଚର୍ଯ୍ୟ ଦେଖିଲା ଆଜି ମୋର ନେତ୍ର ।
ଅନାଥର ନାଥ ତୁମ୍ଭେ ପ୍ରଭୁ ଚକ୍ରଧାରୀ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ଅଟ ଅଧିକାରୀ ।
କାହାକୁ ଯେ ଏଡ଼େ ଭୟ ହୋଇଛି ତୋହରି
ଚଉଦ ଭୁବନେ ତୁହି ଅଟୁ ଅଧିକାରୀ ।
ଅବହେଳେ ନିବାରିଲେ ପୃଥିବୀର ଭାରା
ଯମ ଏଥି ନ ପଶଇ ନାହିଁ ରୋଗ ଜରା ।
ଭାରା ନିବାରଣ ଅର୍ଥେ ଜନମିଲ ମହୀ
ନିଜ ଭୁବନକୁ ଯାଇ ଲୋଡ଼ୁ କିନା ତୁହି ।
ମୁହିଁ ତୋର ଭୃତ୍ୟ ମୋର ଦୋଷ କର କ୍ଷମା
ଭୋ କୃଷ୍ଣ ତୋହର ମୃତ୍ୟୁ ନୋହୁ ମୋତେ ଜଣା ।
ସମସ୍ତ ଜନଙ୍କୁ ଆତ୍ମା ସ୍ୱରୂପେ ଯେ ଦେଖ
କେବଣ କାରଣେ ଦେବ ହୋଇଲୁ ବିମୁଖ ।
ବୋଲନ୍ତି ଶ୍ରୀକୃଷ୍ଣ ତହୁଁ ଅକ୍ରୂରକୁ ଚାହିଁ
କୁଟୁମ୍ବଙ୍କ ଭୋଗ ଛାଡ଼ି କାହିଁ ଯିବି ମୁହିଁ ।
ଏ ବଚନ ଅକ୍ରୂର ତୁ ମନେ ନ ଧରିବୁ
ଆବର ତୁ କାହା ଆଗେ ଏହା ନ କହିବୁ ।
କାରୁଣ୍ୟ ବଚନେ ତହୁଁ ବୋଇଲେ ଅକ୍ରୂର
ମୋତେ ଛାଡ଼ି କିପରି ତୁ ଯିବୁ ନିଜ ପୁର ।
ଶ୍ରୀକୃଷ୍ଣ ବୋଇଲେ ତୁହି ଗୋପ୍ୟ କରିଥିବୁ
ଗଲାବେଳେ ଆମ୍ଭେ ତୋତେ ସଙ୍ଗେ ନେଇଯିବୁ ।
ହେ ଅକ୍ରୂର ପୃଥିଭାରା ହେଲା ଯେତେବେଳେ
ବିଷ୍ଣୁଙ୍କୁ ପ୍ରାର୍ଥନା କଲେ ଯାଇ ଦିଗପାଳେ ।
ବିଷ୍ଣୁ ଜାନୁରୁ ଉପାଡ଼ି ବେନି ଗୋଟି ଲୋମ
ଆଜ୍ଞା ଦେଲେ କଳାଧଳା ହୋଇ ହୁଅ ଜନ୍ମ ।
ତାଙ୍କ ଆଜ୍ଞା ଅନୁସାରେ ମୁଁ ମୀନରୂପୀ ହେଲି
ଶଙ୍ଖାସୁର ମାରି ବେଦ ବିଧାତାକୁ ଦେଲି ।
ପୁଣି କୂର୍ମରୂପ ଧରି ହୋଇଲି ମୁଁ ଜାତ
ପିଠି ଉପରେ ଧଇଲି ମନ୍ଦର ପର୍ବତ ।
ହିରଣାକ୍ଷ୍ୟକୁ ବଧିଲି ବରାହ ରୂପରେ
ପୁଣି ଜାତ ହେଲି ନରସିଂହ ଅବତାରେ ।
ପ୍ରହଲାଦାର୍ଥେ ହିରଣ୍ୟକଶିପୁ ମାଇଲି
ବଳି ନିମନ୍ତେ ବାମନ ରୂପକୁ ଧଇଲି ।
ତିନ ପୁରକୁ ଘୋଟିଲି ନିନୋଟି ପାଦରେ
ବଳିକି ନେଇ ରଖିଲି ଅଧୋ ଭୁବନରେ ।
ପର୍ଶୁରାମ ଅବତାର ଯମଦଗ୍ନି ଘରେ
ସହସ୍ର ବାହୁ ବଧିଲି ପିତାଙ୍କ ହେତୁରେ ।
ପୃଥିବୀ ମଧ୍ୟରେ ଆଉ ନ ରଖିଲି କ୍ଷତ୍ରୀ
ଏକବିଂଶ ବାରେ କଲି କ୍ଷତ୍ରୀ ବିନଶ୍ୟତି ।
ରାମରୂପେ ଦଶରଥ ଘରେ ହୋଇ ଜାତ
ରାବଣ କୁମ୍ଭକର୍ଣ୍ଣାଦି ଦୈତ୍ୟ କରି ହତ ।
ଏବେ କାହ୍ନୁ ସଙ୍କର୍ଷଣ ବାସୁଦେବ ଘରେ
କଂସାଦି ଅସୁର ମାରି ରହିଲୁ ଏଠାରେ ।
ପୁଣ ପୁଣ ଆତଯାତ ହେଲି କୁତୂହଳେ
ଛାଡ଼ିଲି କୁଟୁମ୍ବ ମାୟା ଆଶା ଏତେବେଳେ ।
ମତ୍ତଗର୍ବ ହୋଇ ମୁହିଁ ବହୁ ରତି କଲି
କୁଟୁମ୍ବ ବଢ଼ନ୍ତେ ମାୟା ମୋହରେ ପଡ଼ିଲି ।
ଛାଡ଼ିଯିବା ପାଇଁ ଏବେ ନ ବଳଇ ଚିତ୍ତ
ତେଣୁ କରି ଶୋକଜଳ ବହୁଛି ନିରତ ।
କେମନ୍ତେ ଅକ୍ରୂର ମୁହିଁ ଏହା ଛାଡ଼ିଯିବି
ଦାରା ତନୟାଦି କାହାକୁ ମୁଁ ସମର୍ପିବି ।
ମୋର ପିତାମାତା ଶୋକ କରିବେ ବହୁତ
ବତିଶସସ୍ର ରମଣୀ ଝୁରିବେ ନିରତ ।
ପ୍ରଦ୍ୟୁମ୍ନ ପରା ପୁତ୍ରକୁ କେମ୍ନେ ଛାଡ଼ିବଇଁ
ତାହାଠାରେ ବଡ଼ ସ୍ନେହ ଥାଏ ମୋର ରହି ।
ଯେଦିନୁ ବିଷ୍ଣୁଙ୍କଠାରୁ ଅଇଲି ଅକ୍ରୂର
ସେହିଦିନଠାରୁ ଜାଣ ମୋ ମନ ଅସ୍ଥିର ।
ଏହା ଶୁଣି ପାଦେ ପଡ଼ି କହିଲା ଅକ୍ରୂର
ଯେବେ ତୁମ୍ଭେ ଯିବ ପ୍ରଭୁ ବଇକୁଣ୍ଠପୁର ।
ତୁମ୍ଭର ସଙ୍ଗରେ ମୋତେ ନେବ ଦୟାବହି
ଅନେକ କାଳରୁ ସେବା କରିଅଛି ମୁହିଁ ।
ଶ୍ରୀକୃଷ୍ଣ ବୋଇଲେ ତୋତେ ନେବିରେ ଅକ୍ରୂର
ଅସମ୍ଭବ ତୋର ଯିବା ବଇକୁଣ୍ଠ ପୁର ।
ପୁଣ୍ୟ ଥିଲେ ମୁଁ କଢ଼ାଇ ତୋତେ ନେଇପାରି
ପାପୀ ହୋଇଥିଲେ ଲୋକ ଯାଇ ଯେ ନ ପାରି ।
ଯେ ଯାହା ପୁଣ୍ୟ କଢ଼ାଇ ନିଏ ସିନା ବାଟ
ଯାଇ ନ ପାରିବ ପଥ ବଡ଼ଇ ନିରାଟ ।
ଶରୀର ଘେନିଣ ଯିବା ଲୋକ ଏଥି ନାହିଁ
ଅନେକ ପୁଣ୍ୟ ସେହୁ ବା କରେ ଏହି ମହୀ ।
ବ୍ରହ୍ମଜ୍ଞାନ ଯେବେ ସାଧି ପାରଇ କେ ଯୋଗୀ
ଶରୀର ଘେନିଣ ବଇକୁଣ୍ଠ ହୁଏ ଭୋଗୀ ।
ଆମ୍ଭେ ତୋତେ ବ୍ରହ୍ମଜ୍ଞାନ ବୁଝାଇ କହିବୁ
ତାହା ସାଧିଥାଅ ଯେବେ ବଇକୁଣ୍ଠେ ଯିବୁ ।
ଅନେକ କାଳରୁ ତୁହି କଲୁ ଆମ୍ଭ ସେବା
ତେଣୁ କରି ବ୍ରହ୍ମଜ୍ଞାନ ତୋତେ ଯେ କହିବା ।
ଅକ୍ରୂର ବୋଇଲା ତେବେ ବ୍ରହ୍ମଜ୍ଞାନ କହ
ରହିବା ସଦା ଯେପରି ଘେନି ଏହି ଦେହ ।

ଶ୍ରୀହରି ବୋଇଲେ ମୁହିଁ ହୋଇଲି ତ୍ରିଜୀବୀ
ନିବାରଣ କରିବାକୁ ଭାରା ଏହି ଭୁବି ।
ନିଶ୍ଚଳ ଆସନ ମୋର ଅବ୍ୟୟ ବୈକୁଣ୍ଠ
ସହ୍ୟ ନୁହଇ ଆମ୍ଭର ଦେବତାଙ୍କ କଷ୍ଟ ।
ପୃଥିବୀ ନିମନ୍ତେ ଆମ୍ଭେ ମର୍ତ୍ତ୍ୟେ ଜନ୍ମ ହେଉ
ମାୟାରେ ବନ୍ଧନ ହୋଇ ବହୁ କଷ୍ଟ ସହୁ ।
ଅନନ୍ତ ବିଷ୍ଣୁ ବୋଇଲେ ଶୀଘ୍ର ହୋଇ ଆସ
କେମନ୍ତ ମୁଁ ଛାଡ଼ିଯିବି ମନୋହର ବାସ ।
ମୋ ବୋଲେ କର ସଂଯମ ନିୟମ ଆହାର
ପ୍ରଳୟ ବିଧି ସମାଧି ଅଷ୍ଟ ପରକାର ।
ଗଗନ ମାର୍ଗକୁ ଯାଇ କରିବୁ ବସତି
ରୁନ୍ଧିବୁ ମନପବନ ଥୟ କରି ମତି ।
ଯୋଗାସନେ ବସି କର ଚଉଷଠି ମୁଦ୍ରା
ପଞ୍ଚମନ ଏକ କରି ତେଜି ମୋହ ନିଦ୍ରା ।
ମାୟାକୁ ବିନାଶି ଦଶଦ୍ୱାରକୁ ନିରୋଧି
ବ୍ରହ୍ମେ ଲୟ ରଖ ଅଣଚାଶ ବାୟୁ ରୁନ୍ଧି ।
ଇଅଁଳା ପିଅଁଳା ଶିଶୁମୁନା ତିନିନାଡ଼ି
ନିରୋଧି ପବନକୁ ଯେ ଏକଦ୍ୱାରେ ଛାଡ଼ି ।
ଘଣ୍ଟିକା ଲେଉଟି ଛନ୍ଦ ଖେଚରିର ମୁଦ୍ରା
ତେବେ ଯେ ତୋତେ ନୋହିବ ଆଉ ମହାନିଦ୍ରା ।
ଏପରି କରିପାରିଲେ ନ ଲାଗିବ ଭୋକ
ଭୋକକୁ ନିରୋଧି ନିଜ ଦେହ ସୁଖେ ରଖ ।
ଆହାର ଶୟନ ତୋର ହୋଇଲେ ଉପେକ୍ଷା
ତେବେ ନିଶ୍ଚିନ୍ତେ ଶରୀର ହୋଇବ ଯେ ରକ୍ଷା ।
ଆହାର ବିହୀନେ ପ୍ରାଣୀ ମରେ ହୋଇ ରୋଗ
ଏ କଥାର ଆରେ ଅକ୍ରୂର କର ଯାଇ ବେଗ ।
ତୁ ଆମ୍ଭର ପ୍ରିୟତମ ଯୋଗୁ ଏ ଜ୍ଞାନକୁ
କହିଲି ଯେ ନ କହ ତୁ କଦାପି ଅନ୍ୟକୁ ।
ୟା କହୁ ବୋଇଲେ ଯାଅ ନ ରହ ତୁ ଏଥ
ବିନ୍ଧ୍ୟଗିରି ପାଶେ ଅଛି ଏକାମ୍ବର ତୀର୍ଥ ।
ହାଟକେଶ ଲିଙ୍ଗ ଛନ୍ତି ଗହନ ବନରେ
ତହିଁ ଯାଇ ଯୋଗ ସାଧ ଆମ୍ଭର କଥାରେ ।
ଅକ୍ରୂର ବୋଇଲା ଏବେ ଯାଉଅଛି ମୁହିଁ
ପୁନରପି ଦର୍ଶନ ମୁଁ ପାଇବଇଁ କାହିଁ ।
ଶ୍ରୀକୃଷ୍ଣ ବୋଇଲେ ମହୋଦଧିର ଉତ୍ତରେ
ନୀଳ ପରବତ କଳ୍ପବଟର ତଳରେ ।
ଏ ପିଣ୍ଡ ଆମ୍ଭର ଯେବେ ଘେନିଯିବ ଯମ
ତହିଁ ନେଇ ସ୍ଥାପିବ ସେ ଶ୍ରୀପୁରୁଷୋତ୍ତମ ।
ଗାଲମାଧବ ବୋଲି ସେ ହୋଇବ ନୃପତି
ତହିଁ ମୋତେ ରଖିବ ସେ ତେବେ ତୋତେ ଭେଟି ।
ହେ ଅକ୍ରୂର ନ ଯା ଆଉ ତୁହି ଗୃହବାସ
ଗଲେ ଅବଶ୍ୟ ଲାଗିବ ତୋତେ ମୋହପାଶ ।
ଅର୍ଦ୍ଧରାତ୍ରେ ଦ୍ୱାରକାରୁ ବାହାର ଅକ୍ରୂର
ଭକତବତ୍ସଳ ନାଥ କର ମୋତେ ପାର ।
ହେ ପଣ୍ଡିତ ଜନେ ବୁଝ ଶ୍ରୀକୃଷ୍ଣଙ୍କ କଥା
ଭଗତଜନଙ୍କୁ ଏହା ଅଟେ ଉଦ୍ଧାରନ୍ତା ।
ପ୍ରଦ୍ୟୁମ୍ନ ପ୍ରାୟକ ପୁତ୍ର ସାତ୍ୟକି ଯେ ଭାଇ
ଏହାକୁ ମୁକ୍ତିପଥ ସେ ନ ଦେଲେ ଦେଖାଇ ।
ସେ ହରି ଚରିତ ସଦା ଥାଉ ମୋର ଚିତ୍ତେ
ଏ ଭବଜଳୁ ଉଦ୍ଧାର କରିବେ ସେ ମୋତେ ।
ଏପରି ଭକ୍ତବତ୍ସଳ ପାଦେ ମୋ ପ୍ରଣାମ
ଏ ମୋହପଟଳୁ ପ୍ରଭୁ ମୋତେ କର ତ୍ରାଣ ।
ମୁଁ ତୁମ୍ଭ ଦାସର ଦାସ ଭୃତ୍ୟଙ୍କର ଭୃତ୍ୟ
ତାହାର ଚରିତ ଗାଇ ହୋଇବି କୃତାର୍ଥ ।
ସୁଜ୍ଞାନୀ ପୁରୁଷ ଭକ୍ତଜନଙ୍କର ବନ୍ଧୁ
କହଇ ଶାରଳା ଦାସ ମୋ ଜୀବନ ସାଧୁ ।
ହେ ପଣ୍ଡିତଜନେ ଏବେ ସବୁ ଉପେକ୍ଷିବା
ମନବଚନ କର୍ତ୍ତବ୍ୟେ ହରିଙ୍କୁ ସେବିବା ।
ଅକ୍ରୂର ବୋଲିଣ ସେହୁ କଂସର ଅମାତ୍ୟ
ଧନୁଯାତେ ନେଲା ସଙ୍କର୍ଷଣ ଗୋପୀନାଥ ।
ଅନେକ ବିନୟ କରି ନନ୍ଦ ଯେ କହିଲା
ପୁତ୍ରେ ଛାଡ଼ିଯାଅ ବୋଲି ବହୁଧନ ଦେଲା ।
ପିଲା ବାଳକ ମୋହର କାହ୍ନୁ ସଙ୍କର୍ଷଣ
ଏହୁ ସେ କିସ ଜାଣିବେ ଯାହାର ବିଧାନ ।
ଅକ୍ରୂର ବୋଇଲା ନନ୍ଦ ହୋଇଲୁକି ବାଇ
କଂସ ଆଜ୍ଞା କେ ଲଙ୍ଘିବ ତାର ରାଜ୍ୟେ ରହି ।
ନିରାଶ କରି ଅକ୍ରୂର ତାଙ୍କୁ ଘେନିଗଲା
ଯମୁନା ଜଳରେ ସ୍ନାନ କାରଣେ ପଶିଲା ।
ସ୍ନାନ କରୁଁ କରୁଁ ଦେଖି ଚତୁର୍ଭୁଜ ତହିଁ
କୃଷ୍ଣେ ଆରାଧନା କଲା ଭକ୍ତିଭାବ ବହି ।
ଜଳ ଭିତରେ ଏପରି ରୂପକୁ ସେ ଦେଖି
କୃଷ୍ଣଙ୍କୁ ଭଜିଲା ତହୁଁ ଅଜ୍ଞାନ ଉପେକ୍ଷି ।
ଅକ୍ରୂର ବୋଇଲା ହରି ନ ନେବି ମୁଁ ତୋତେ
ନନ୍ଦ ଯେ ବୋଇଲା ମୋତେ ବୋଧି ନାନାମତେ ।
କୃଷ୍ଣ ବୋଇଲେ ମାମୁଁଙ୍କ ଏହି ଧନୁଯାତ
କିପରି ହୁଏ ଦେଖିବା ବଳିଅଛି ଚିତ୍ତ ।
ହେ ଜନେ ଅକ୍ରୂର ସେହି ଦିନୁ ଗୋଡ଼ାଇଲା
ଦ୍ୱାପର ଶେଷ ପର୍ଯ୍ୟନ୍ତେ ବିନୟେ ଖଟିଲା ।
କୃଷ୍ଣ ପ୍ରସନ୍ନେ ପାଇଲା ସେ ପରମ ଗତି
ଯୋଗପାଦ ଅଭ୍ୟାସିଣ ଯୁଗେ ଯୁଗେ ବର୍ତ୍ତି ।

ଅକ୍ରୁର ଠାବରେ ପରହିଂସା ପାପ ନାହିଁ
ତେଣୁ କରି ଦୟା ତାକୁ କଲେ ଭାବଗ୍ରାହୀ ।
ଭାରତ ଯୁଦ୍ଧୁଁ ରଖିଲେ କୃପ ଅଶ୍ୱତ୍ଥାମା
ଅକ୍ରୁର ଜାଣିଲା ଏଣେ କୃଷ୍ଣଙ୍କ ମହିମା ।
ଶ୍ରୀକୃଷ୍ଣଙ୍କ ପ୍ରସାଦରୁ ତରିଲି ଅକ୍ରୁର
ନିଶ୍ଚଳେ ରହିଲା ଯାଇ ବନ ଏକାମ୍ବର ।
ହିମ ପଡ଼ନ୍ତେ ଯେସନେ ପଦ୍ମ ହୁଏ କ୍ଷୟେ
ଦ୍ୱାରକା ଭୁବନ ତେହ୍ନେ ହେବ ଅପଚୟେ ।
ଶ୍ରୀକୃଷ୍ଣ ବଇକୁଣ୍ଠକୁ ଯିବା କରି ମନ
ଅସ୍ଥିର ହୋଇଲା ଦେହ ଚିତ୍ତ ଛନ୍ନ ଛନ୍ନ ।
ମାୟାଧର ପ୍ରଭୁଙ୍କର ଅଟେ ଯେଉଁ ମାୟା
ନର ହୋଇ କିଏ ଜାଣିପାରିବ ବା ତାହା ।
ସେ ପ୍ରଭୁଙ୍କ ଶ୍ରୀ ଚରଣେ ରଖିଲେ ମାନସ
ଭାରତେ କହଇ ଏହା ଶ୍ରୀ ଶାରଳା ଦାସ ।

—o—

## ଦ୍ୱାରକାରେ ନାନା ଉତ୍ପାତ ଦର୍ଶନ ଓ ଯଦୁବଂଶ ଧ୍ୱଂସ ଏବଂ ବଳରାମଙ୍କ ଦେହତ୍ୟାଗ

ଏଥୁଅନନ୍ତରେ କେତେଦିନ ତହିଁ ଯାଏ
ଯିବାପାଇଁ ଉଦବେଗ କୃଷ୍ଣ ଅତିଶୟେ ।
ଭାଳନ୍ତି ଶ୍ରୀକୃଷ୍ଣ କେଉଁ ଉପାୟ କରିବି
କେଉଁପରି ସମସ୍ତଙ୍କୁ କ୍ଷୟ କରାଇବି ।
ସୃଜିଅଛି ମୁହିଁ ଏବେ ନାଶିବି କେମନ୍ତେ
ବଡ଼ ଦୁରାପଦ ଏହା ଲାଗିଲାକ ମୋତେ ।
ଶୁଣ ହେ ରାଜନ କୃଷ୍ଣ କଲେ ଯେ ଉପାୟ
ଦ୍ୱାରକା ଭୁବନେ ହେଲା ନାନା ଅପଚୟ ।
ଭୟଙ୍କର ଭୂମିକମ୍ପ ହେଲା ଉଲ୍‌କାପାତ
ତାହା ସଙ୍ଗରେ ପଡ଼ିଲା ଅସୀମ ନିର୍ଘାତ ।
ଦିବସରେ ଧୂମକେତୁ ହୋଇଲା ଉଦୟ
ଅଗ୍ନି ବିନା ଗୃହସବୁ ହେଲା ଭସ୍ମମୟ ।
ଅକସ୍ମାତେ ଭାଙ୍ଗିଗଲା ଦେଉଳ ମନ୍ଦିର
ଉଚ୍ଚସ୍ୱରେ କାନ୍ଦିଲେକ ଶୃଗାଳ କୁକୁର ।
ପ୍ରିୟାପ୍ରିୟ ଦ୍ୱନ୍ଦ୍ୱହେଲା ନଗରେ ନଗରେ
ରବି ଶଶି ଉଦେହେଲା ନଭମଣ୍ଡଳରେ ।
ସଂହିକା ତନୟ ଆସି ତାହାଙ୍କୁ ଗ୍ରାସିଲା
ନଗରରେ ହାହାକାର ଚହଳ ପଡ଼ିଲା ।
ପୁଣି କେତେଦିନେ କୃଷ୍ଣ ପିଙ୍ଗଳ ବରନ
ସର୍ବାଙ୍ଗ ଶରୀରେ ଶିରା ଦିଶେ ଅପର୍ଚ୍ଛନ ।

ଭୟଙ୍କର ରୂପ କାଳ ପୁରୁଷ ଗୋଟିଏ
ଦ୍ୱାରକା ନଗର ମଧ୍ୟେ ପରବେଶ ହୁଏ ।
ସର୍ବଦା ବୁଲଇ ସେହୁ ସବୁଙ୍କୁ ମନ୍ଦିରେ
କେହି ଦେଖି ନ ପାରଇ ତାକୁ ନୟନରେ ।
ସେ କାଳପୁରୁଷ ଦେଖି ପ୍ରଭୁ ଭଗବାନ
ଭାବିଲେ ଏଥର କାଳ କଲା ଆଗମନ ।
ଏଥର ନିଶ୍ଚୟ ସର୍ବେ ବିନାଶ ହୋଇବେ
ଶୀଘ୍ର ବିନାଶ ଉପାୟ ଲଗାଇବା ଏବେ ।
ଏହା କହିଣ ଶ୍ରୀକୃଷ୍ଣ ଦୂତଙ୍କୁ ଡକାଇ
ବୋଇଲେ ବେଗେ ଘୋଷଣା ନଗ୍ରେ ଦିଅ ଯାଇ ।
ବୋଲିବ କୋକୁଆ ଏବେ ଭୟଙ୍କର ଜୀବ
ନଗ୍ରେ ପଶିଲାଣି ଏବେ ସବୁଙ୍କୁ ଖାଇବ ।
ତୁମ୍ଭେମାନେ ସତର୍କରେ ହୁଅ ସାବଧାନ
ଏପରି ଘୋଷଣା ନଗ୍ରେ ଦିଅରେ ବହନ ।
ଯେ ଆଜ୍ଞା କରିଣ ଦୂତେ ତହୁଁ ଚଳିଗଲେ
ନଗ୍ର ଚାରିଆଡ଼େ ବୁଲି ଏ ଘୋଷଣା ଦେଲେ ।
ବୋଇଲେ କୃଷ୍ଣ ଦେଖିଲେ ଆସୁଛି କୋକୁଆ
ଦାଣ୍ଡଘାଟେ କେହି ନାହିଁ ନ ହୋଇବ ଠିଆ ।
ଯେ ବୁଲିବ ଦାଣ୍ଡ ଘାଟେ ସେ କୋକୁଆ ଯିବ
ଗୋଡ଼ାଇ ନିଶ୍ଚେ ତାହାକୁ ଧରି ଯେ ଗିଳିବ ।
ଏ ବିଷୟେ ସତର୍କରେ ହେବ ସାବଧାନ
କୃଷ୍ଣଙ୍କ ଆଜ୍ଞା ତୁମ୍ଭଙ୍କୁ କରିଲି ଜ୍ଞାପନ ।
ଦୂତଙ୍କ ମୁଖରୁ ଯହୁଁ ଏମନ୍ତ ଶୁଣିଲେ
କୋକୁଆ କି କହି ସର୍ବେ ଭୟରେ ଥରିଲେ ।
ପିଲାମାନେ ଏହା ଶୁଣି ଲୁଚିଲେ ମନ୍ଦିରେ
ଛ'ମାସ ପିଲା ଲୁଚିଲେ ମାତାଙ୍କ କୋଳରେ ।
କୋକୁଆ କଥାରେ ଡରି ସର୍ବେ କଲେ ଭୀତି
ବାଳୁତ ପୋଏ ଭୟରେ କାହିଁ ନ କାନ୍ଦନ୍ତି ।
ପାଞ୍ଚ ସାତ ଦଶ ମିଳି ଲୁଚି ଲୁଚି ଭାଳି
କୋକୁଆ ବୋଲିଣ ସେହୁ କେଡ଼େ ମହାବଳି ।
ଘରେ ଦେବକୀ ପୁଚ୍ଛନ୍ତି କହ ବସୁଦେବ
କୋକୁଆ ବୋଲି କରି ସେ କେମନ୍ତଟି ଜୀବ ।
ଶ୍ରୀକୃଷ୍ଣ ବୋଇଲେ ମାତ ଆସେ ସେ କୋକୁଆ
ଅପାତ କାଳରୁ ମୁହିଁ ଶୁଣିଥିଲି ଏହା ।
ଚାରି ଯୁଗରେ ସେହି ଯେ ଥାଏ ସର୍ବଠାଏ
ଆମ୍ଭର ପୁରକୁ ଆସି ନ ପାରଇ ଭୟେ ।
କଳିଯୁଗ ଗୋଟି ଆସି ପ୍ରବେଶିଲା ଯହୁଁ
ତେଣୁକରି ଦ୍ୱାରକାକୁ ଅଇଲା ସେ ତହୁଁ ।
ସେ କୋକୁଆ ଦେହ କୃଷ୍ଣ ପିଙ୍ଗଳ ବଚନେ
ସର୍ବାଙ୍ଗ ଶରୀରେ ଶିରା ଦିଶେ ଅପର୍ଚ୍ଛନ ।

ଯୋଜନେ ଲମ୍ବ ତା ଭୁଜ ସାତଗୋଟି ଆଖି
ବ୍ରହ୍ମାଣ୍ଡ ବ୍ୟାପି ଉଡ଼ଇ ଅଛି ନବ ପକ୍ଷୀ ।
ଯୁଣେ ଲମ୍ବ ତୁଣ୍ଡ ତାର ପାଞ୍ଚଯୁଣ ଗର୍ଭ
ସ୍ତ୍ରୀ ପୁରୁଷ ଯେ ପଡ଼ଇ ଗିଳଇ ସେ ସର୍ବ ।
ଏପରି କହିଲେ ଯହୁଁ ଦେବ ମାୟାଧର
ଶୁଣି ଜନନୀଙ୍କ ମନେ ହେଲା ବଡ଼ ଡର ।
ନଗ୍ରଲୋକେ ଭୟେ ସର୍ବେ ଜଡ଼ବତ ହୋଇ
ଭାଳନ୍ତି କିସ କରିବା ବୁଦ୍ଧି ନ ଦିଶଇ ।
ଦିବାରାତ୍ରେ କୋକୁଆର ଦେଖନ୍ତି ସ୍ୱପନ
ଅଦ୍‌ଭୂତେ ଡରି ମୂର୍ଚ୍ଛା ହୁଏ କେଉଁ ଜନ ।
କେ ବୋଲେ କୋକୁଆ ଆଜି ମୋତେ ଖାଉଥିଲା
କେ ବୋଲେ ଦେଖିଲି ଆଜି ଚାରିଜଣ ନେଲା ।
ତାଙ୍କର ଅନ୍ତ ଗିଳିଲା ନଖଦ୍ୱାରା ଚିରି
ନ ପାରିଲେ କେହି ତାକୁ ନିବାରଣ କରି ।
ଦ୍ୱାରକାରେ ଏହିପରି ଲୋକେ କଲେ ଶଙ୍କା
କୋକୁଆ ବୋଇଲେ ଲୋକେ ହୁଅନ୍ତି ତାଟକା ।
ଦିନ ପ୍ରହରେକ ଥାଉ ପଡ଼ଇ କବାଟ
ରାତ୍ରରେ ଆଉ କେ ତହିଁ ନ ଚାଲିଲେ ବାଟ ।
ପୁର ଗୋଟିକ କି ଜାଣି ପଡୁଅଛି ମାଡ଼ି
ପଳାଇ ଯିବା କେ କହେ ଦ୍ୱାରକାକୁ ଛାଡ଼ି ।
ନ ମାରିବା ବୋଲି କେହୁ ନ କରନ୍ତି ବାଞ୍ଛା
ଭାଳି ସର୍ବଜନେ ମୃତ୍ୟୁ କରନ୍ତି ଯେ ପୁଚ୍ଛା ।
କେ ବୋଲେ କେଉଁଆଡ଼କୁ ଯିବା ହେ ପଳାଇ
କୋକୁଆ ଭୟେ ଯିବାକୁ ବାଟ କାହିଁ ନାହିଁ ।
ସମସ୍ତ ଯାଦବେ ଯାଇ କୃଷ୍ଣେ କଲେ ପୁଚ୍ଛା
ସେ ବୋଇଲେ ନ କରି ମୁଁ ପାରଇ ସେ ରକ୍ଷା ।
ଶ୍ରୀକୃଷ୍ଣ ବୋଇଲେ ସେଇ କୋକୁଆ ଭୟରୁ
ରଖି ନ ପାରିବି କେଭେ ତାହାର ଆଗରୁ ।
କି କହିବି ତୁମ୍ଭ ଆଗେ କୋକୁଆ ବିଷୟ
ତାର କଥା ଦେଖି ମୋତେ ଲାଗେ ବଡ଼ ଭୟ ।
ଏମନ୍ତ କହନ୍ତେ ତାଙ୍କୁ ଦେବ ଚକ୍ରପାଣି
ଅଧିକ ଭୟ କରିଲେ ପ୍ରଭୁ କଥା ଶୁଣି ।
ପଣ୍ଡିତଜନେ ଯେ ଶୁଣି ବୋଲନ୍ତି ସକଳେ
ଅରିଷ୍ଟ ପଡ଼େ ଦ୍ୱାରକା ନାଶ ହେବା କାଳେ ।
କୋକୁଆ ବୋଲି ଯେବଣ ଆସେ ଜୀବଗୋଟି
କେଉଁଠି ତାହାକୁ କାହିଁ ନ ଦେଖିଲେ ଦୃଷ୍ଟି ।
କାର୍ତ୍ତିକ କୃଷ୍ଣପକ୍ଷର ଅମାବାସ୍ୟା ଦିନ
ସୌରିବାର ସ୍ୱାତୀ ଆଉ ରକ୍ଷା ବିଦ୍ୟମାନ ।
ତୈତିଳ ନାମେ କରଣ ବିଷକୁମ୍ଭ ଯୋଗ
ତୁଳ ସଙ୍କରାନ୍ତିକୁ ଅଠର ଦିନ ଭୋଗ ।

ସେ ରାତ୍ରେ ଯାଦବେ ସର୍ବେ ନିଦେ ଶୋଇଛନ୍ତି
ଅଦ୍‌ଭୁତରେ କୋକୁଆ କୋକୁଆ ବୋଲନ୍ତି ।
ମାର ମାର ଧର ଧର ଡାକକୁ ଛାଡ଼ିଣ
ଯଷ୍ଟି ଖଣ୍ଡା ଅସ୍ତ୍ର ଧରି ଯୋଦ୍ଧାଏ ଉଠିଣ ।
ରେ ରେକାର କରି ସର୍ବେ ହୋଇଲେ ବାହାର
ଗୋଡ଼ାଇ ଖାଲି ବୋଲନ୍ତି ଧର ଧର ମାର ।
କୃଷ୍ଣ ବଳରାମ ତାଙ୍କ ସାଙ୍ଗରେ ଧାଇଁଲେ
ଯମୁନା ନଦୀର ଯାଏ ଗୋଡ଼ାଇଣ ଗଲେ ।
କାଳିନ୍ଦୀ କୂଳ କଦମ୍ବ କେଳି ବୃକ୍ଷତଳେ
ଲଉଡ଼ି ବୁଲାଇ କରି ଧାମନ୍ତି ଗୋପାଳେ ।
ସେହିଠାରେ ରହି ସର୍ବେ ବୁଲାଇଣ ଯଷ୍ଟି
ବାଡ଼ିରେ ବାଡ଼ିରେ ଖେଳି ହେଲେ ପିଟାପିଟି ।
କେତେ ଯଷ୍ଟି ଭାଙ୍ଗିପଡ଼ି ପ୍ରହାର ଘାତରେ
ମାର ମାର ଧର ଧର ବୋଲନ୍ତି ମୁଖରେ ।
ସାତ୍ୟକି ଆଗେ ପ୍ରଦ୍ୟୁମ୍ନ ଏମନ୍ତ କହଇ
କେଉଁଠି ଅଛି କୋକୁଆ କେମନ୍ତଟି ସେହି ।
ଶାମ୍ବ ବୋଲଇ କୋକୁଆ ଦେଖ ଗଲା ଗଲା
ଏହା କହି ଯଷ୍ଟି ଏକ ବୁଲାଇ ଫିଙ୍ଗିଲା ।
ସେହି ଯଷ୍ଟି ଏକ ବାଜିଥାନ୍ତା ସାତ୍ୟକି ଉପରେ
ଆଡ଼ ହୋଇଲେ ସାତ୍ୟକି ଘୁଞ୍ଚିଯାଇ ଦୂରେ ।
ସେ ଲଉଡ଼ି ଶାମ୍ବ ହସ୍ତୁ ଗଲା ଧାତିକାରେ
ଯାଇଣ ବାଜିଲା ସେହି କଦମ୍ବ ବୃକ୍ଷରେ ।
ଲଉଡ଼ି ଘାତେ ବୃକ୍ଷର ବକଳ ଫାଟିଲା
କୃଷ୍ଣଙ୍କର କାୟା ପୁଣି ସେଠାରେ ହୋଇଲା ।
ସେ ବୃକ୍ଷରୁ ଝରି କ୍ଷୀର ନଦୀ ଗଲା ବହି
ବେଳୁବେଳ ବେଶି ବହେ ନିବର୍ତ୍ତ ନୁହଇ ।
ଅପୂର୍ବ ଦେଖିଣ ଶାମ୍ବ କୃଷ୍ଣେ ଜଣାଇଲା
କଦମ୍ବ ବୃକ୍ଷରୁ ରସ ସେକ୍ଷଣି ବହିଲା ।
ଶ୍ରୀକୃଷ୍ଣ ବୋଇଲେ ବଳରାମଙ୍କ ଆଗର
କେଉଁ ପ୍ରକାରେ ଏ ବୃକ୍ଷୁଁ ବହିଲା ଯେ କ୍ଷୀର ।
ଶ୍ରୀକୃଷ୍ଣ ବୋଇଲେ ଏ ତ କେବଣ ମାୟା ହିଁ
ବହୁକାଳ ପରିଯନ୍ତେ କଦମ୍ବେ ବସାଇ ।
ଗୋପୀଙ୍କୁ ଦେଖିଣ ମୁହିଁ କ୍ରୀଡ଼ା ରଙ୍ଗକାଳେ
ଡାଳେ ଡାଳେ ବସି ମୁହିଁ ବୁଲେ ସବୁବେଳେ ।
ଏଥୁ କ୍ଷୀର ସେ କାଳରେ ବାହାର ନୋହିଲା
ସେ କାଳର ବୃକ୍ଷେ ଏହା ଦେଖା ତ ନ ଥିଲା ।
ଏ କିସ ଅଟଇ ଏହି କେବଣ ହିଁ ମତ
ଦେଖା ତ ନ ଥିଲା କେବେ ଏପରି ବିଚିତ୍ର ।
କୃଷ୍ଣ ଆଜ୍ଞା ପାଇ ତାହା ସମସ୍ତେ ଖାଇଲେ
ବଡ଼ାଇ ମଧୁର ବୋଲି ଶ୍ରୀକୃଷ୍ଣ କହିଲେ ।

ବିଶେଷରେ କ୍ଷୀର ସ୍ରବି ଲାଗେ ଯଥା ମଧୁ
ପାନ କରିଣ କହନ୍ତି ସର୍ବେ ସାଧୁ ସାଧୁ ।
ହେ ରାଜା ଏମନ୍ତ ମାୟା କଲେ ମାୟାଧର
ଅଞ୍ଚଘାତେ ବହେ କ୍ଷୀର ନଦୀ ପରକାର ।
ଅମୃତହୁଁ ଅଧିକ ସେ ସୁଆଦ ଅଟଇ
ସେ କ୍ଷୀର ସ୍ୱାଦର ତୁଲ୍ୟ ଆନ ନ ଘଟଇ ।
କୃଷ୍ଣଙ୍କ ବାକ୍ୟେ ପିଇଲେ ବଡ଼ାଇ ସରାଗେ
କୃଷ୍ଣ ବଳରାମ ତହୁଁ ପିଇଲେକ ବେଗେ ।
ହେ ରାଜା ଯାଦବ କ୍ଷୀର ପିଇଲେକ ଯହୁଁ
କାଦମ୍ବରୀ ପାନେ ଭୋଳ ହୋଇଲେକ ତହୁଁ ।
ତାହା ଖାଇଣ ଅଚେତ ହେଲେ କାମପାଳ
କୃଷ୍ଣ ସୁଦ୍ଧା ତାହା ଖାଇ ହୋଇଗଲେ ଭୋଳ ।
ନିଶାରେ ସବୁଙ୍କ ପାଦ ହେଲା ଟଳମଳ
ବାତୁଳ ପରାୟେ କେଶ ବାସ ଅସମ୍ଭାଳ ।
ଲଉଡ଼ି ଘେନି କେତେକ ରାଗେ ଅତିଶୟ
କଦମ୍ବ ବୃକ୍ଷରେ ଯାଇ ପକାଇଲେ ଡିହ ।
ଧବଳ କ୍ଷୀର ତହିଁରୁ ଝରିପଡ଼େ ବହି
ବହିବା ସଙ୍ଗେ ତାହାକୁ ଦେଉଥାନ୍ତି ପିଇ ।
ନିଶାରେ ଅଚେତ ହୋଇ ଭୂମିରେ ଲୋଟନ୍ତି
ତଥାପି କେ ଛାଡ଼େ ନାହିଁ ତହିଁରୁ ପିଅନ୍ତି ।
ନିଶାରେ ମତ୍ତ ହୋଇଣ ଉଚବାଚ କରି
ସାତ୍ୟକି ପ୍ରତିଜ୍ଞା କଲେ ନିଶ କରେ ଧରି ।
ମୁହିଁ ଯେ ମହାଭାରତ ଯୁଦ୍ଧେ ଯାଇଥିଲି
ଏହି ଭୁଜେ ଅନେକଙ୍କ ସଙ୍ଗେ ଯୁଦ୍ଧ କଲି ।
ଯେତେ ଯୋଦ୍ଧାଙ୍କୁ ମାଇଲି କେ କରିବ ଅନ୍ତ
ମୋହର ସମାନ କେହୁ ଅଛି ସାମରଥ ।
ମୋହର ପରାକର୍ମକୁ କେହୁ ହେବ ସରି
ବଳରେ ପାରିବେ ଅବା ପାର୍ଥ ଦେବହରି ।
ଶକଟେ ବ୍ୟୁହେକ ଦ୍ରୋଣ ଗୁରୁ ରଚିଥିଲା
କୃଷ୍ଣର ଦୟାରେ ପାର୍ଥ ତାହାକୁ ଭେଦିଲା ।
ଏକାକୀରେ ସେ ବ୍ୟୁହକୁ ଗଲି ମୁହିଁ ଭେଦି
ସାଧୁ ସାଧୁ ବୋଇଲାକ ମୋତେ ବିବୁଧାଦି ।
ପାର୍ଥହୁଁ ଅଧିକ ମୋର ବିକ୍ରମ ଅଟଇ
ତାହା ଶୁଣିକରି ଶାମ୍ବ ଉତ୍ତର କରଇ ।
ଭୁରିଶ୍ରବା ସେକ୍ଷଣି ତା କେଶକୁ ଧଇଲା
ଖଡ଼ଗ ପ୍ରହାରି ତୋର ଶିର କାଟୁଥିଲା ।
ଅର୍ଜୁନ ଯେବେ ତା ଶିର ଛେଦି ନ ଥାଆନ୍ତା
ତୋହର କନ୍ଧରେ ଶିର ରହିଣ କି ଥାନ୍ତା ।
ଏହା ଶୁଣିଣ ସାତ୍ୟକି ରାଗେ ଜଳିଉଠି
ଖଡ଼ଗ ପ୍ରହାରି ଶତ୍ରୁମୁଣ୍ଡ ଦେଲା କାଟି ।

ଦ୍ୱିଖଣ୍ଡ ହୋଇଣ ବେକମୂଳୁ କଟିଗଲା
ଗଣ୍ଡି ମୁଣ୍ଡ ଧରଣୀର ଉପରେ ପଡ଼ିଲା ।
ସାତ୍ୟକିର ଦୁଷ୍ଟପଣ ଦେଖି କୃଷ୍ଣପୁତ୍ରେ
ଯେ ଯାହାର ଅସ୍ତ୍ର ଗାଢ଼େ ଧଇଲେକ ହସ୍ତେ ।
ପ୍ରଦ୍ୟୁମ୍ନ ରାଗେ ଖଡ଼ଗ ଧରି ଶିରଝୁଣି
ସାତ୍ୟକିର ମୁଣ୍ଡ ବେଗେ ପକାଇଲେ ହାଣି ।
ସୋଦରେ ସୋଦର ତହୁଁ ହଣାହଣି ହେଲେ
ପର ଆପଣାର କିଏ ଚିହ୍ନି ନ ପାରିଲେ ।
ଯେ ଯାହାର ନିଜ ନିଜ ଅସ୍ତ୍ର ଧରି କରେ
ଏକେ ପ୍ରହାର କରନ୍ତି ଆରେକ ଉପରେ ।
ଗର୍ଜନ୍ତି ରଡ଼ି ଛାଡ଼ିଣ ଯୁଝାଇ ଯୁଝନ୍ତି
କାହାକୁ ଉପ୍ରୋଧ କରି ଛାଡ଼ି ନ ଦିଅନ୍ତି ।
ଏକ ଆଖଡ଼ାରେ ସର୍ବେ ଅସ୍ତ୍ରଶସ୍ତ୍ର ସାଧି
ଏକେ ଏକେ ବିକ୍ରମରେ ବୋଲନ୍ତି ଯେ ଯୋଧି ।
ମତୁଆଳ ହୋଇ ଅସ୍ତ୍ର ମରାମରି ହେଲେ
କେତେ ମତେ କେତେ ଘାଏ ଅଚେତେ ପଡ଼ିଲେ ।
ଏ ରୂପେ ହୋଇଲା ଯହୁଁ ଅସ୍ତ୍ରଶସ୍ତ୍ର ଘାତ
ଅନେକ ବୀର ମହୀରେ ହୋଇଲେ ପତିତ ।
ଯେ ଯାହା ସଙ୍ଗେ ଲାଗିଛି ତାକୁ କଲେ ନାଶ
କାଦମ୍ବରୀ ନିଶା ତାଙ୍କୁ ଘୋଟିଛି ବିଶେଷ ।
କେତେ ପଳାନ୍ତେ ତାହାଙ୍କୁ ମାରନ୍ତି ଗୋଡ଼ାଇ
ମରାମରି ହୋଇ କିଛିଦୂରେ ଯାନ୍ତେ ସେହି ।
ଦେଖିଲେ ସନ୍ତରାବଣ ତହିଁ ଅଛି ଘୋଟି
ତାର ବହୁ ଦାଢ଼ି ଦେଖି ପକାଇଲେ କାଟି ।
ଏକେ ଏକେ ଧରି ସର୍ବେ ସର୍ବେ ମରାମରି
ସେ ସନ୍ତରାବଣେ ବହୁତ ପଡ଼ିଲେକ ମରି ।
ରୁଧିରେ କାଦୁଅ ତହୁଁ ହୋଇଲାକ କ୍ଷିତି
ପାଞ୍ଚକ୍ରୋଶ ଯାଏ ମରିପଡ଼ିଲେ ସେ ଘାନ୍ତି ।
ହେ ରାଜା ମୁନିମାନଙ୍କ ଶାପ ଭୋଗ କଲେ
ଯେ ଲୌହ ମୂଷଳ ନେଇ ଭୀମ ଘଷୁଥିଲେ ।
ସେ ଲୌହ ଘଷନ୍ତେ ତହୁଁ ବହିଲା ଯେ ଫେଣ
ସେ ଉପୁଜି ହୋଇଗଲେ ସନ୍ତରା ଅରଣ୍ୟ ।
ଗଦା ମୁଦ୍‌ଗୁର ଅସିପତ୍ର ତୀକ୍ଷ୍ଣ ମୁନା
ଯେଉଁ ଶରୀରରେ ପଡ଼ି ହେଉଥିଲା ଚୂନା ।
ଦଇବର ବିପଦକୁ ଦେଖ ମହୀପାଳ
ସନ୍ତରା ଡାଳରେ ନାଶଗଲେ ଯଦୁବଳ ।
ଛପନ କୋଟି ଯାଦବ ସର୍ବେ ଗଲେ ମରି
ପ୍ରଦ୍ୟୁମ୍ନ ପୁତ୍ର ତହିଁରୁ ରହିଲା ଉବୁରି ।
ସେ ବଞ୍ଚିଣ ମହାଦୁଃଖେ ଆକୁଳି ହୋଇ
ଭାଲେ ହାତମାରି କାନ୍ଦେ ଲୋତକ ବୁହାଇ ।

ହାୟ ହାୟ କି ବିପତ୍ତି ଦେଲୁରେ ବିଧାତା
କେଉଁଆଡ଼େ ଗଲେ ମୋର ପିତା ଜ୍ୟେଷ୍ଠ ପିତା ।
କି କରିବି କାହିଁ ଯିବି କରିବି କି ବୁଦ୍ଧି
ମୋ ଜୀବନ କାହିଁପାଇଁ ରଖିଲୁ ତୁ ବିଧି ।
ଏହିପରି କହି କାନ୍ଦି ଦେଖି ଦେଖି ଯାଏ
କେଉଁଠାରେ ବଞ୍ଚି ଅବା ଜୀଇଁଥିବ କିଏ ।
ପୁଣି ଭାବେ ତାତ ଯେବେ ବର୍ତ୍ତି ରହିଥିବେ
ଏହିକ୍ଷଣି ଦେଖି ମୋତେ ଘେନି ପୁରେ ଯିବେ ।
ଏହିରୂପେ ଭାଳି ଭାଳି ଖୋଜି ଖୋଜି ଯାଏ
ବେନି ନୟନରୁ ଲୁହ ବହି ପଡୁଥାଏ ।
କାଦମ୍ବରୀ ପାନ କରି ହଳୀ ଭଗବାନ
ପୂର୍ବୁ ପଡ଼ିଅଛନ୍ତି ତ ହଜାଇଣ ଜ୍ଞାନ ।
ମରାମରି ହୋଇ ସର୍ବେ ନାଶଗଲେ ଯହୁଁ
ପ୍ରଭୁଙ୍କ ଦେହେ ଚେତନା ପଶିଲାକ ତହୁଁ ।
ଉଠି ଦେଖିଲେ ସମସ୍ତେ ମରିଛନ୍ତି ଶୋଇ
ଆପଣେ ଦେଖନ୍ତେ ପ୍ରଭୁ ନିଜେ ଉଭାହୋଇ ।
ଦେଖ ଦେଖ ବହୁଦୂରେ ପ୍ରଦ୍ୟୁମ୍ନେ ଦେଖିଲେ
ତାହାକୁ ଦେଖିଣ କୃଷ୍ଣ ମନେ ବିଚାରିଲେ ।
ଏପରି ବୀର ଯଦ୍ୟପି ମହୀରେ ରହିବ
ତିନି ଭୁବନରେ କେହି ଜିଣି ନ ପାରିବ ।
କିମ୍ପା ରଖିବ ଯା ଭାବି ଚକ୍ରେ ଆଜ୍ଞା ଦେଲେ
ପ୍ରଦ୍ୟୁମ୍ନ ଶିରକୁ ତୁହି କାଟ ଯା ବୋଇଲେ ।
ଆଜ୍ଞା ମାତ୍ରକେ ପ୍ରଦ୍ୟୁମ୍ନ ମୁଣ୍ଡ ଚକ୍ରେ କାଟି
ଗଲା କୃଷ୍ଣଠାରୁ ପୁଣି ନଇଲା ଲେଉଟି ।
ଦେଖି କୃଷ୍ଣ ବିଚାରିଲେ ସର୍ବେ ମଲେ ମୋର
ବସୁଧା ଉଶ୍ୱାସ ହେଲା ନିଶ୍ଚିନ୍ତ ଏଥର ।
ତହୁଁ ଭାଇଙ୍କୁ ନ ଦେଖି ପଶିଲେ ସେ ବନେ
ମନୁଷ୍ୟ ଯହିଁ ନ ପାନ୍ତି ରହିଲେ ସେ ସ୍ଥାନେ ।
ଏଥୁଅନନ୍ତରେ ଚେତି ରେବତୀଙ୍କ କାନ୍ତ
ଦେଖିଲେ ସକଳେ ତହିଁ ହୋଇଛନ୍ତି ହତ ।
ହରିଙ୍କୁ ବହୁତ ପ୍ରଭୁ ଖୋଜିଲେକ ତହିଁ
ନ ଦେଖିଣ ବଳରାମ ମନେ ବ୍ୟଥା ପାଇ ।
ଭାବିଲେ ମର୍ତ୍ତ୍ୟରେ ଆଉ କିମ୍ପାଇଁ ରହିବା
କଳିଯୁଗ ପ୍ରବେଶିଲା ବଇକୁଣ୍ଠେ ଯିବା ।
ଏହା ବିଚାରିଣ ପ୍ରଭୁ ତହୁଁ ଚଳିଗଲେ
କ୍ଷୀରସିନ୍ଧୁ ତୀରେ ଯାଇ ପ୍ରବେଶ ହୋଇଲେ ।
ଲକ୍ଷ୍ମୀ ନାରାୟଣ ଯହିଁ ଅନନ୍ତ ଶଯ୍ୟାରେ
ରହିଥାନ୍ତି ହଳୀ ମିଳି ସେହି ସିନ୍ଧୁତୀରେ ।
ହସ୍ତେ ଥିବା ଲଙ୍ଗଳକୁ ସମୁଦ୍ରେ ଫିଙ୍ଗିଲେ
ନିଶ୍ଚଳ ଆସନେ ବସି ଯୋଗଧ୍ୟାନ କଲେ ।
ଯୋଗବଳେ ସର୍ପରୂପେ ନାସାରୁ ବାହାରି
ସମୁଦ୍ର ଗର୍ଭେ ଚଳିଲେ ଦେହତ୍ୟାଗ କରି ।
ଜୟ ରୁଦ୍ର ଅବତାର ଜୟ ଦେବ ହଳୀ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁମ୍ଭେ ଏକା ବଳୀ ।
କୁରୁ ବିବାଦେ ଲଙ୍ଗଳେ ଟାଣିଲେ ହସ୍ତିନା
ବଳଭାବେ ରଖି ଭବେ ଉଡ଼ାଉଛ ବାନା ।
ରତନର ଆଭରଣ ଶିରେ ସପ୍ତଫଣୀ
ଲଲାଟେ ଶୋହେ ତିମିର ବିଦାରିଣ ମଣି ।
ଅନନ୍ତ ଯୋଗ ଆସନ ଅଟଇ ତୁମ୍ଭର
ତୁମ୍ଭର ଚରଣେ ଦେବ ଶତ ନମସ୍କାର ।
ଭାବେ ଭାବନ୍ତା ପୁରୁଷ ପୂର୍ଣ୍ଣ କରୁ ବାଞ୍ଛା
ଅନନ୍ତ କୋଟି ବ୍ରହ୍ମାଣ୍ଡ ତୁହି କରୁ ରକ୍ଷା ।
ଆଦି ଅନ୍ତ ମଧ୍ୟେ ଅବସାନ ଯାର ନାହିଁ
ସେ ନିରାକାର ପୁରୁଷେ ଦେଖିବାକ କାହିଁ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ବ୍ୟାପେ ତେଜ ଯାର
ମୁହିଁ ତାଙ୍କୁ କି ବର୍ଣ୍ଣିବି କି ଶକତି ମୋର ।
ସେ କାମଦେବଙ୍କ ପାଦେ ରହୁ ମୋର ମତି
ଶାରଳା ଦାସ ମାଗଇ ଅନ୍ତିମେ ମୁକତି ।

—୦—

## ଶ୍ରୀକୃଷ୍ଣଙ୍କୁ ଜାରାଶବର ଶରାଘାତ ଓ ଶବର ଶବରଣୀଙ୍କ ସ୍ତୁତି

ଏଥୁଅନନ୍ତରେ ବିଲଙ୍କ ଦେଶ ମନୁରାଜା
ଅଗସ୍ତି ମୁନିଙ୍କ ପାଦେ କଲେ ଦିବ୍ୟପୂଜା ।
ମନୁଦୁଃଖେ କର ଯୋଡ଼ି ବିନୟେ ପୁଚ୍ଛନ୍ତି
ସମସ୍ତଙ୍କ ନାଶ ଦେଖି ରେବତୀଙ୍କ ପତି ।
ହରିଙ୍କୁ ଖୋଜି ନ ପାଇ ଦେହତ୍ୟାଗ କଲେ
ଆଗରୁ ତ ହରି ଯାଇ ବନେ ରହିଥିଲେ ।
ତହିଁ ରହି କେଉଁ କଥା କଲେ ଯଦୁନାଥ
ସେ କଥା ବିସ୍ତାରି ମୋତେ କହ ତପୋବନ୍ତ ।
ଅଗସ୍ତି ବୋଇଲେ ରାଜା କର ଶରବଣ
ବନେ ରହି ପ୍ରଭୁଙ୍କର ମନ ଛନ୍ନ ଛନ୍ନ ।
ବିଚାରନ୍ତି ବାହୁଡ଼ି ମୁଁ ଦ୍ୱାରକାକୁ ଯିବି
ବଂଶ ନାଶହେବା କଥା ତାହାଙ୍କୁ କହିବି ।
ଯଦ୍ୟପି କହିବି ତାଙ୍କୁ ଏ ବିଷୟ ଯାଇ
କାନ୍ଦିବେ ନାୟିକାମାନେ ହୃଦୟ ଫଟାଇ ।
ତ୍ରୈଲୋକ୍ୟ ମୋହିନୀ ମୋର ଅଟନ୍ତି ବନିତା
ଏ ଚକ୍ଷୁରେ ଦେଖିବି କି ବିଧବା ଅବସ୍ଥା ।
ଏହିପରି ଭଲରୂପେ ବିଚାରି ମନରେ
ଧୀରେ ଧୀରେ ଚାଲିଗଲେ ଗହନ ବନରେ ।

କାଳିନ୍ଦୀ ବନରେ ଥିଲା କାଳିନ୍ଦୀର ଲତା
ତା ମଧ୍ୟେ ପଶିଲେ ହରି ମନେ କରି ଚିନ୍ତା ।
କାଳିନ୍ଦୀ ବନେ କାଳିନ୍ଦୀ ପର୍ବତେ ଅଛଇ
କାଳବର ଲତା ତହିଁ ଗହନ ଦିଶଇ ।
କଳିକାଳ ଆଗମନ ଜାଣି ପୀତବାସ
ତହିଁ ତଳେ ଯାଇ ପ୍ରଭୁ ହୋଇଲେ ପ୍ରବେଶ ।
ସୁବାସିତ ଲତାରେ ଯେ ପୁଷ୍ପ ବିକାଶଇ
ରାଜାଙ୍କ ମନ୍ଦିର ପରି ଶୋଭା ପ୍ରକାଶଇ ।
ସୁବାସ ଘେନି ପବନ ସଧୀରେ ବହଇ
ଶୋଇଲେ ଶ୍ରୀକୃଷ୍ଣ ନିରାଲମ୍ବେ ତହିଁ ଯାଇ ।
ଅଚେତନେ ଶୋଇଲେ ଉତ୍ତାନଶାୟୀ ହୋଇ
ଶ୍ରାବଣର ଧାରା ପ୍ରାୟ ଲୋତକ ବହଇ ।
ଭାବନ୍ତି ମୁଁ ଯେତେବେଳେ ମୀନରୂପ ହେଲି
ଏକା ବିହରିଣ ଶଙ୍ଖାସୁରକୁ ମାଇଲି ।
କଚ୍ଛପ ରୂପରେ ମୁହିଁ ଧଇଲି ମନ୍ଦର
ଏକା ବିହରିଲି କେହି ନ ଥିଲେ ସଙ୍ଗର ।
ବରାହ ରୂପରେ ମୁଁ ଯେ ଧଇଲି ମେଦିନୀ
କେ ଅବା ସପକ୍ଷ ଥିଲା ସେହିକାଳେ ପୁଣି ।
ବଡ଼ ଦୁଷ୍ଟ ହୋଇଲା ସେ ହିରଣ୍ୟକଶିପୁ
କେଶରୀ ରୂପ ଧରିଣ ବିଦାରିଲି ବୁକୁ ।
ବାମନ ରୂପ ଯେ ମୁହିଁ ପୂର୍ବେ ଧରିଥିଲି
ବଳିକି ଦାନ ମାଗିଣ ପାତାଳେ ଚାପିଲି ।
ମାଳତୀ ରୂପ ମୁଁ ଧରିଥିଲି ସ୍ତିରୀଲିଙ୍ଗେ
ବୈରୋଚନ ଅସୁରକୁ ମାଇଲି ସୁରଙ୍ଗେ ।
ଗରୁଡ଼ ବିଷ୍ଣୁଙ୍କ ରୂପେ ରକ୍ଷଓକ୍ଷ ମାରି
ଶ୍ରୀକୃଷ୍ଣାବତାରେ କଂସାସୁରକୁ ସଂହାରି ।
ପୁଣି ମୁହିଁ ଜନାର୍ଦ୍ଦନ ରୂପକୁ ବିକାଶି
ମାଳି ସୁମାଳିକି ମୁହିଁ ଥିଲି ଯେ ବିନାଶି ।
ପର୍ଶୁରାମ ଅବତାରେ ଯମଦଗ୍ନି ଘରେ
ମନୁଷ୍ୟ ରୂପକୁ ଧଇଲଇଁ ଯେତେବେଳେ ।
ଏକୋଇଶ ବାର ନିକ୍ଷତ୍ରିୟ କରି ମହୀ
ଏହିପରି ଅବସ୍ଥା ମୁଁ ନ ପାରଇ ସହି ।
ରାମ ଅବତାରେ ଜାତ ହେଲି ସୂର୍ଯ୍ୟବଂଶେ
ରାବଣାଦିଙ୍କୁ ମାଇଲି ଜାନକୀର ରୋଷେ ।
ସେ ମାଧବୀ ଜନକର ଅଟଇ ଦୁହିତା
ଆଗହୁଁ ବୈକୁଣ୍ଠଗାମୀ ହୋଇଥିଲା ସୀତା ।
ଦେହ ଘେନି ମୁହିଁ ସ୍ୱର୍ଗପୁରକୁ ଯେ ଗଲି
ଯେତେବେଳେ ଏ ଅବସ୍ଥା ମୁହିଁ ନ ପାଇଲି ।
କହ୍ନା ଅବତାରେ ମୁହିଁ ହେଲି କୁତୂହଳେ
କ୍ଷୀରପାନେ ବଢ଼ିଲି ମୁଁ ଗୋପାଳଙ୍କ ମେଳେ ।
ଦାରାରେ ମୁହିଁ ପ୍ରବୃତ୍ତ ହେଲି ବାଳକାଳେ
ପରଦାରେ ରସ ଆଦି ଗୋପ ଙ୍କର ମେଳେ ।
ଅନୁକ୍ଷଣେ ବଢ଼ିଲା ଯେ ଶୃଙ୍ଗାର ପ୍ରକୃତି
ବତ୍ରିଶ ସହସ୍ର କନ୍ୟା ଅଷ୍ଟ ଯେ ଯୁବତୀ ।
ଏମାନଙ୍କ ସଙ୍ଗେ ସଦା କରେ ମୁଁ ବିହାର
ଏ ବିଧି ବତ୍ରିଶସସ୍ର ଅଷ୍ଟରାଣୀ ମୋର ।
ଲକ୍ଷେ ଷାଠିଏ ସହସ୍ର ଅଶୀ ଯେ ନନ୍ଦନ
ଦୁହିତାମାକେ ଅସଂଖ୍ୟ ହେଲେ ବିଦ୍ୟମାନ ।
ଏହାଙ୍କର ପୁତ୍ରପୌତ୍ରୀ କେହୁ ପାରେ କଳି
ଚୌବିଂଶଯୁଣ ଦ୍ୱାରକା ନ ପାରେ ସମ୍ଭାଳି ।
ଏମାନଙ୍କ ମମତାରେ ହେବାରୁ ମୁଁ ବଶ
ମାୟାମୋହେ ପଡ଼ି ଲଭିଲଇଁ ଏତେ କ୍ଳେଶ ।
ହେ ପଣ୍ଡିତଜନେ ଦେଖ ବହୁତ କୁଟୁମ୍ବ
ବହୁତର ଶୋକୀ ହୋଇଲେ ସେ ବାସୁଦେବ ।
ପୁଣି ନିଜ ମନେ ମନେ ଭାଳନ୍ତି ମାଧୋଇ
ଅନ୍ୟେ ଅନ୍ୟେ କୁଟୁମ୍ବ ଯେ ମରାଇଲି ମୁହିଁ ।
ସବୁ ହିଁ ମରାଇ ମୁହିଁ ହୋଇଲି ଯେ ଏକା
ଦଶଦିଗ ଅନ୍ଧାର ଯେ ହେଲି ମୁଁ ଟଟକା ।
ବନେ କାର୍ଯ୍ୟ ନାହିଁ ମୋର ମରଣ ଇଚ୍ଛଇ
ଏକଥା ସୁମରନ୍ତେ ମୋ ଶରୀର କମ୍ପଇ ।
ଏହିମତେ ବିକଳରେ ଭାଳନ୍ତି ଶ୍ରୀପତି
ଅରୁଣ ପ୍ରକାଶ ହୋଇ ଶେଷ ହେଲା ରାତି ।
ଶୁଣ ବୈବସ୍ୱତ ମନୁ କହେ ବ୍ରହ୍ମବେତ୍ତା
କାଳନିଦ୍ରା ଘୋଟି କୃଷ୍ଣେ ହେଲା ବହୁ ଚିନ୍ତା ।
କାଳିନ୍ଦୀ କୂଳରେ କାଳେ କର ଯେ ପର୍ବତ
କଳିକାଳ ହେତୁ କୃଷ୍ଣ ନିଦ୍ରା ଉପଗତ ।
ଶରୀର ଆଳସ୍ୟ ହୋଇ ନୟନରେ ଘୁମ
ପାଦର ଉପରେ ପାଦ ଦେଇ ମହାଶ୍ରମ ।
ହେ ପୁଣି ଭବିଷ୍ୟ ଅଛି ମୁନିଙ୍କର ଶାପ
ଶ୍ରୀକୃଷ୍ଣ ଜାଣନ୍ତି ତାହା ନ ହୋଇବ ଲୋପ ।
ମୂଷଳ ଶେଷ ଯା ତୀର ଗଢ଼ା ହୋଇଥିଲା
ତା ଘେନି ବ୍ୟାଧି ପାରିଧି ଉଦ୍ଦେଶ୍ୟ ଗମିଲା ।
ହେ ରାଜା ଦେଖ ଦଇବ କୃତ୍ୟ କି ପ୍ରକାର
ବନେ ବୁଲି ବୁଲି ଆସେ ସେ ଜାରାଶବର ।
ଅଜ ନାମରେ ଗୋଟିଏ ଥିଲା ଯେ ଶବର
ଅଜପତି ନାମେ ପୁତ୍ର ହୋଇଲା ତାହାର ।
ଅଜପତିର ନନ୍ଦନ ହେଲା ଗଜରାଜ
ଏହାର କୁମର ନାମ ଅଟଇ ବିରାଜ ।
ବିରାଜ ନନ୍ଦନ ନାମ ହେଲା କାଳକୁନ୍ତ
କାଳକୁନ୍ତର ହୋଇଲା ଜାରା ନାମେ ସୁତ ।

ମନୋହର ବନ ମଧ୍ୟେ ଅଟେ ତାର ପଲ୍ଲୀ
ସେ ଜାରା ଆସେ କାଳିନ୍ଦୀ ନଦୀତୀରେ ବୁଲି ।
ଶବର ହାତେ ଢାମଣା କାଠ ଧନୁ ଅଛି
କାଳିନ୍ଦୀ ବନକୁ ଜୀବ ଖୋଜି ସେ ଆସୁଛି ।
ଧରିଅଛି ନଳକାଠ ବାଗୁରାରେ ବାନ୍ଧି
ନିରୀକ୍ଷି ଖୋଜଇ ଲତା ବୃକ୍ଷ ବୃକ୍ଷସନ୍ଧି ।
ତହୁଁ ଯାଇ ଲୁଚିବସେ ଏକାନ୍ତ ସ୍ଥାନରେ
ପୁନର୍ପି ଉଠଇ ଯାଇ ପ୍ରସ୍ତର ଉପରେ ।
ଏପରି ଅନେକ ଖୋଜି ଖୋଜି ସେ ଶବର
ନ ପାଇଲା କାହିଁ ଜୀବଜନ୍ତୁଙ୍କ ଖବର ।
ଯେଉଁ ଦିନ ଆସେ ଜୀବ ଅବଶ୍ୟ ଭେଟଇ
ସେଦିନ ସେ ବନେ ଜୀବ ନ ପାଇଲା କାହିଁ ।
ବେଳ ଉଚ୍ଛୁର ହେଲାଣି ନ ପାଇଲା ଜୀବ
ଶ୍ରମେଣ ଖୋଜି ବୁଲଇ ଜୀବ ଠାବ ଠାବ ।
ନ ପାଇ ତୃଷାରେ ଜାରା ମହାଶ୍ରମ ପାଇ
ଆସୁ ଆସୁ ପ୍ରବେଶିଲା କୃଷ୍ଣ ଥିଲେ ଯହିଁ ।
ଶ୍ରୀକୃଷ୍ଣ ଶୋଇଅଛନ୍ତି ଉତ୍ତାନଶାୟୀରେ
ଏକ ପାଦ ରଖିଛନ୍ତି ଆରପାଦ ପରେ ।
ପାଦପଦ୍ମ ଲାଲ ଦିଶେ ତଳିପା ତଳର
ବୃକ୍ଷ ଉହାଡ଼େ ଥାଇଣ ଦେଖିଲା ଶବର ।
ବୃକ୍ଷ ଉହାଡ଼ରେ ଥାଇ ନିରୋପିଣ ଚାହିଁ
ମୃଗକର୍ଣ୍ଣ ପ୍ରାୟ ତାହା ବିଚାରିଲା ସେହି ।
ଲୁଚି ଢାମଣା ଧନୁରେ ନାରାଚ ଯୋଖିଲା
କର୍ଣ୍ଣଯାଏ ଗୁଣ ଟାଣି ଶୀଘ୍ର ଛାଡ଼ିଦେଲା ।
ସେ ଶରକୁ ତିଆରିଣ ଛାଡ଼ିଦେଲା ବେଗେ
ଯେଣେ ସେ ବିପତ୍ତି ଅଛି ଦଇବର ଯୋଗେ ।
ସେ ଶର ଛାଡ଼ିଦିଅନ୍ତେ ଚଳିଗଲା ହାଦେ
ପଡ଼ିଲା ଯାଇକରି ସେ ବାସୁଦେବ ପାଦେ ।
ବାମ ପାଦରେ ପଡ଼ିଣ ମୁନ ଗଳିଗଲା
କୃଷ୍ଣଙ୍କର କାଳନିଦ୍ରା ସେକ୍ଷଣି ଭାଙ୍ଗିଲା ।
ଉଠି ଦେଖିଲେ ପାଦରୁ ରକ୍ତ ବହିଯାଏ
ଭାବିଲେ ଏ କଷ୍ଟ ମୋତେ ଦେଲା ଆଜ କିଏ ।
ଏକାଳେ ଧନୁକୁ ଧରି ସେହି ବେଣ୍ଟକାର
ଫାରସା ଉଞ୍ଚାଇ ମିଳେ ଶ୍ରୀକୃଷ୍ଣ ଛାମୁର ।
ଦେଖିଲା ସାକ୍ଷାତେ ପ୍ରଭୁ ଶଙ୍ଖ ଚକ୍ରପାଣି
ଚିହ୍ନି ତକ୍ଷଣେ କିରାତ ଲୋଟିଲା ଧରଣୀ ।
ଉଠି କରଯୋଡ଼ି ବୋଲେ ସ୍ୱାମୀ କଲି ଦ୍ରୋହ
ତୋହର କୋପକୁ ସ୍ୱାମୀ ମୁହିଁ କୀଟ ପ୍ରାୟ ।
ସ୍ୱାମୀ ହୀନଜାତି ମୁହିଁ ଜାତିରେ ଶବର
ବ୍ରହ୍ମା ରୁଦ୍ର ଜପୁଛନ୍ତି ନାମକୁ ତୋହର ।

ସେବା ଭକତି ମୁଁ ଛାର ନ ପାରିଲି କରି
ନାରାଚଘାତ କରିଲି ଶ୍ରୀପଦେ ତୋହରି ।
ମୁହିଁ ମୂଢ଼ ନୁହେଁ କେବେ ଭବିଷ୍ୟତ ଜ୍ଞାତା
ତୁମ୍ଭେ କିମ୍ପା ନ ଜାଣିଲ ଶରାଘାତ କଥା ।
ହେ ପ୍ରଭୁ ଦେଖାଅ ପାଦ ନାରାଚ କାଢ଼ିବି
ଜାଣେ ଔଷଧ ଏକ୍ଷଣି ଭଲ କରିଦେବି ।
ଶ୍ରୀକୃଷ୍ଣ ବୋଇଲେ ଯେବେ କାଢ଼ିବୁ ତୁ ଶର
ଏହିକ୍ଷଣି ଜାଣ ନାଶ ହୋଇବ ମୋହର ।
କାନ୍ଦଇ ଶବର ତହୁଁ ଅତି ଶୋକଭରେ
ନମସ୍କାର କରେ ପୁଣି ଶ୍ରୀକୃଷ୍ଣ ପୟରେ ।
ଶୋକେ ବୋଲେ ଦେବ ତବ ପାଦ ପଦ୍ମତଳେ
ଶିର ଲଗାଇ ଲୋଟନ୍ତି ସବୁ ଦିଗପାଳେ ।
ଲୁଚିଲା ସେ ପଦ୍ମପାଦେ ମେରୁ ପରବତ
ସେ ପାଦପଦ୍ମର ଧୂଳି ପଡୁ ମୋର ମାଥ ।
ସ୍ୱାମୀ ତବ ପାଦରୁ ହେ ବହଇ ଶୋଣିତ
ମୋହର ମସ୍ତକେ ପଡୁ ତହିଁର ଦୁଷ୍କୃତ ।
ସର୍ବ ଦେବଙ୍କ ଲଲାଟ ଅଟ ବନମାଳୀ
ଚନ୍ଦ୍ର ପ୍ରାୟ ମୁଖ ଗୋଟି ହୋଇଗଲା କାଳି ।
ଉରେ କର ତାଡ଼ି ବୋଲେ ଆତ୍ମା ମୋର ପୋଡୁ
ରେ ନିର୍ଲ୍ଲଜ ପ୍ରାଣ ମୋର କିମ୍ପାଇ ନ ଛାଡୁ ।
ଶ୍ରୀକୃଷ୍ଣ ବୋଇଲେ ଏବେ ଶୁଣରେ ଶବର
ମୁଖେ ସିଞ୍ଚ ଶୀଘ୍ର ଆଣି ଯମୁନାର ନୀର ।
ସଲୀଳ ଆଣି ଶବର ଧାତିକାରେ ସିଞ୍ଚି
ମୟୁରପୁଚ୍ଛ ଆଲଟ କରେ ଧରି ବିଞ୍ଚି ।
ଜଳ ପଡ଼ିବାରୁ ଦେବ ହୋଇଲେ ସାଷ୍ଟାମ
ଶବରକୁ ପ୍ରତିବାକ୍ୟ ଦେଲେ ଭଗବାନ ।
ଏ ଶରଗୋଟି ଶବର ପାଇଲୁ ତୁ କାହିଁ
ଅସୁରେ ଗନ୍ଧର୍ବ ଶରେ ମୋର ମୃତ୍ୟୁ ନାହିଁ ।
ଶୁଣି ଶବର ବୋଇଲା ଯୋଡ଼ି ବେନି କର
ଶୁଣ ସିଦ୍ଧାନ୍ତ ସ୍ୱରୂପ ତ୍ରୈଲୋକ୍ୟ ଈଶ୍ୱର ।
ମୋହର ମିତ୍ରେକ ଦେବ କଇବର୍ତ୍ତ ଥିଲା
ସେ ଗୋଟିଏ ମୀନ ଧରି ମୋତେ ଦେଇଥିଲା ।
ସେ ମୀନଗୋଟି କାଟନ୍ତେ ମୋହର ଘରଣୀ
ତା ଗର୍ଭୁ ଏ ଲୁହା ପାଇ ଦେଲା ମୋତେ ଆଣି ।
ତାକୁ ଶର ଗଢ଼ାଇଲି କମାର ଶାଳରେ
କେଉଁଦିନ ଏହି ଶର କାହାକୁ ନ ମାରେ ।
ଭୋ ଦେବ ଜୀବେ ନ ଦେଖି ଆଜି ଶ୍ରମ ପାଇ
ବିନ୍ଧିଲି ମୃଗ ଯେ ରୂପେ ନ ଯାଏ ପଳାଇ ।
ଏହା ବିଚାରିଣ ପ୍ରଭୁ ଏହି ତୀକ୍ଷ୍ଣ ଶର
ବିନ୍ଧିଥିଲେ ମୃଗ ନିଶ୍ଚେ କରନ୍ତି ସଂହାର ।

ତୁମ୍ଭରେ ଦ୍ରୋହ ଅଜିଲି ହେ ମଧୁସୂଦନ
ଧିକ ଧିକ ମୋର ବୁଦ୍ଧି ଧିକ ମୋ ଜୀବନ ।
ବୋଲନ୍ତି ଶବର ବାଣୀ ଶୁଣି ଚକ୍ରପାଣି
ସେ ଲୁହାର କଥା ତେବେ ଆମ୍ଭେ ଅଛୁ ଜାଣି ।
ଅଷ୍ଟବକ୍ର ମୁନିଙ୍କର ଶାପ ଭୋଗ କଲୁ
ତାଙ୍କ ଶାପ ଯୋଗୁ ତୁହି ଏ ଶର ବିନ୍ଧିଲୁ ।
ହେ କିରାତ ଏବେ ତୁହି କଥାଏ କରିବୁ
ମୋର ବୋଲେ ଇନ୍ଦ୍ରପ୍ରସ୍ଥଯାଏ ତୁହି ଯିବୁ ।
ଯୁଧିଷ୍ଠିରଙ୍କ ଅନୁଜ ଅଟେ ଭୀମସେନ
ତାଙ୍କର ଅନୁଜ ସେହୁ ଅଟଇ ଅର୍ଜୁନ ।
ଏ ମୋହର ଅବସ୍ଥାକୁ ପାଣ୍ଡବେ ନ କହ
ଏକା ଅର୍ଜୁନକୁ ଆଣ ତୁହି ବେଗେ ଯାଅ ।
ଦ୍ୱାରକାର ପଥ ଦେଇ ଆଣିବୁ ପାର୍ଥକୁ
ଏପରି ତିଆରି କୃଷ୍ଣ ପେଷିଲେ ବ୍ୟାଧକୁ ।
କିରାତ ରମଣୀ ତାଙ୍କ ସଙ୍ଗେ ସଙ୍ଗେ ଥିଲା
କୃଷ୍ଣଙ୍କ ପାଶେ ଥିବାରୁ ତାହାକୁ ବୋଇଲା ।
ବ୍ରଣସ୍ଥାନେ ମାଛି ବସି କାଳେ ପଡ଼େ କୃମି
ନିକଟରେ ବିଞ୍ଚୁଥାଅ କଲେ ପତ୍ର ଘେନି ।
ଧନୁଶର ଦେଇ ପୁଣି ବୋଲଇ ଭାରତୀ
ବାଘ ଭାଲୁ ନ ଆସିବେ ଆଉ ତୋର କତି ।
ହେ ବିଶ୍ୱଚନ୍ଦନ ହରି ବିପଦ ନାଶନ
ତୁମ୍ଭଙ୍କୁ ବିପତ୍ତି ଦେବାପାଇଁ କେ ଭାଜନ ।
ମହୀ ତେଜି ଯିବ ବୋଲି ନାନା ମାୟା କର
ତୁମ୍ଭର ମାୟା ଯେ ପ୍ରଭୁ ଦେବେ ଅଗୋଚର ।
ମନୁଷ୍ୟ ଜାଣିବ ତାର କି ସାଧ୍ୟ ଅଟଇ
ଯାହା ଆପଣ କର ତା ସୁନ୍ଦର ଦିଶଇ ।
ବାରମ୍ବାର ଏ ପୃଥ୍ୱୀରେ ଅବତାର ହୁଅ
ଭବେ ଅପୂର୍ବ ଚରିତଟିଏ ରଖିଯାଅ ।
ଭକ୍ତଜନମାନେ ସେହୁ ଚରିତ ପଢ଼ନ୍ତି
ଆପଣଙ୍କ ପ୍ରେମେ ମଜ୍ଜି ମୁକତି ଲଭନ୍ତି ।
ସେ ପାଦରେ ଦିବାନିଶି ରହୁ ମୋ ମାନସ
ଏହା ପ୍ରାର୍ଥନା କରଇ ଶ୍ରୀ ଶାରଳା ଦାସ ।

—0—

## ଜାରାଶବର ଇନ୍ଦ୍ରପ୍ରସ୍ଥେ ପାର୍ଥଙ୍କୁ ଶ୍ରୀକୃଷ୍ଣଙ୍କରସମ୍ବାଦ ଦେବା ଓ ପାର୍ଥଙ୍କୁ ସଙ୍ଗରେ ଆଣିବା

ପୁନରପି ପଚାରିଲେ ମନୁ ନରନାଥ
ଇନ୍ଦ୍ରପ୍ରସ୍ଥେ ଯାଇ ଜାରା କଲା କେଉଁ କୃତ୍ୟ ।
କୃଷ୍ଣଙ୍କ ଅବସ୍ଥା ଶୁଣି ପାଣ୍ଡବେ କି ହେଲେ
ସେସବୁ କଥା ବୁଝାଇ କହ ମୋତେ ଭଲେ ।
ଅଗସ୍ତି ବୋଇଲେ ରାଜା ଶୁଣ ଦେଇ ଚିତ୍ତ
ଭାର୍ଯ୍ୟାକୁ ଜଗାଇ ଜାରା ଚଳିଲା ତୁରିତ ।
ଇନ୍ଦ୍ରପ୍ରସ୍ଥେ ଅର୍ଜୁନକୁ ଏକାନ୍ତେ କହଇ
କାଳିନ୍ଦୀ କୂଳର ଯାଏ ଆସନ୍ତୁ ଗୋସାଇଁ ।
କୃଷ୍ଣ ବିଜେ କରିଛନ୍ତି ଶିଆଳୀ ଲତାଏ
ବୋଇଲେ ଏକ୍ଷଣି ଘେନିଆସ ଧନଞ୍ଜୟେ ।
ଏ ଉତ୍ସବକାଳେ ପାର୍ଥ ବହନ ଆସିବ
ନ ଆସିଲେ ଆଉ କେବେ ଦେଖି ନ ପାରିବ ।
ଯା ଶୁଣି ପାର୍ଥ ଜାରାକୁ ସଙ୍ଗତରେ ଘେନି
ଯୁଧିଷ୍ଠିରଙ୍କ ଚରଣେ ସତ୍ୱର ପ୍ରଣମି ।
ବୋଇଲେ ଶ୍ରୀକୃଷ୍ଣ ବିଜେ କାଳିନ୍ଦୀର ବନେ
ଶବର ହାତେ ଡକାଇଛନ୍ତି ଯିବି ତେଣେ ।
ବଡ଼ ତରତରେ ମୋତେ କହେ ଏ କିରାତ
ଯିବି କି ନ ଯିବି ଶୀଘ୍ର ଆଜ୍ଞା ଦିଅ ଭ୍ରାତ ।
ପାର୍ଥ ମୁଖୁଁ ଏହା ଶୁଣି ଧର୍ମଙ୍କ ନନ୍ଦନ
ସହଦେବଙ୍କୁ ପୁଛନ୍ତି କହ କି କାରଣ ।
ସହଦେବ ବୋଲେ ଦେବ ଏ ଯେ ବେନ୍ତକାର
ମନୋହର ବନ ମଧ୍ୟେ ଅଟେ ଏହା ଘର ।
କାଳିନ୍ଦୀ ବନକୁ ଏହୁ ଶିକାରକୁ ଗଲା
ବୁଲି ବୁଲି ସେହି ବନେ ମୃଗ ଖୋଜୁଥିଲା ।
ଗତ ରାତିରେ କୋକୁଆ ଭୟେ ଯଦୁବୀରେ
କାଦମ୍ବରୀ ପାନେ ମତ୍ତହୋଇ ସେ ରାତ୍ରିରେ ।
ଉଚ୍ଚବାଚ ହୋଇ ସର୍ବେ ପିଟାପିଟି ହେଲେ
ସନ୍ତରାବଣରେ ମରି ସମସ୍ତେ ପଡ଼ିଲେ ।
ବଳରାମ ଦେହ ତେଜି ବୈକୁଣ୍ଠେ ଗଲେଣି
ସବୁଙ୍କ ବିନାଶ ଦେଖି ଦେବ ଚକ୍ରପାଣି ।
କାଳିନ୍ଦୀ ବନକୁ ଆସି ଶିଆଳୀ ଲତାରେ
ଶୋଇଥିଲେ ପଥଚଲା ଶ୍ରମରେ ସେଠାରେ ।
ଏ ଶବର ସେହିଠାରେ ହୋଇଲା ପ୍ରବେଶ
କୃଷ୍ଣ ଶୋଇଥିବାର ଏ ନ ଜାଣେ ଅବଶ୍ୟ ।
ଜୀବ ମାରିବାକୁ ଏହି ବୁଲେ ଧନୁ ଧରି
ଶିଆଳୀ ଲତାରେ ଯହିଁ ଶୋଇଛନ୍ତି ହରି ।
ସେଠାରେ ମିଳି ଚାହାନ୍ତେ ଲତା ଅଭ୍ୟନ୍ତରେ
ପ୍ରଭୁ ପାଦପଦ୍ମ ଯାକୁ ଦିଶିଲା ନେତ୍ରରେ ।
ମୃଗେକ ଶୋଇଛି ବୋଲି ବିନ୍ଧିଲା ଏ ବାଣ
ଯେ ଶରେ ବ୍ୟଥା ପାଆନ୍ତି ଦେବ ନାରାୟଣ ।
ତେଣୁ ଏଥକୁ ବ୍ୟାଧ ପେଶିଲେ ଗୋସାଇଁ
ଆଜ୍ଞା ଦେଇ ଶୀଘ୍ର ପାର୍ଥେ ଦିଅନ୍ତୁ ପଠାଇ ।
ଯାଙ୍କ ଯିବାଯାଏ ତାଙ୍କ ଦେହେ ଥିବ ପ୍ରାଣ
ଦେଖିଲା ମାତ୍ରକେ ଯାଙ୍କୁ ତେଜିବେ ପରାଣ ।

ଏହା ଶୁଣି ମୂର୍ଚ୍ଛାଗତ ହୋଇଲେ ଯୁଧିଷ୍ଠି
ଚାଲ ଦେଖିବା ପ୍ରଭୁଙ୍କ ପାଦେ ପଦ୍ମଗୋଟି ।
ସହଦେବ ବୋଲେ ଯିବାପାଇଁ ଭାବ ନାହିଁ
ତାହାଙ୍କ ବିକଳ ଆମ୍ଭେ ନ ପାରିବା ସହି ।
ଅର୍ଜ୍ଜୁନକୁ ବେଗେ ପେଷି ଯାନ୍ତୁ ଏ ତୁରିତ
ଫେରି ଆସିଲେ ଯାଙ୍କଠୁ ବୁଝିବ ତଦନ୍ତ ।
ଅର୍ଜ୍ଜୁନକୁ କହେ ମନ୍ତ୍ରୀ ତୁମ୍ଭେ ଘର ଯିବ
କେତେବେଳେ ପ୍ରଭୁଙ୍କର ଦେହ ନ ଛୁଇଁବ ।
ସହଦେବ ତିଆରିଣ କହନ୍ତେ ଏ ବାଣୀ
ଅର୍ଜ୍ଜୁନ ଚଳିଲେ ସଙ୍ଗେ କିରାତକୁ ଘେନି ।
ରାଜମାର୍ଗକୁ ଲଙ୍ଘିଣ ଚଳିଲେ ତୁରିତ
ପ୍ରବେଶ ହୋଇଲେ ଯାଇ ଗହନ ବନସ୍ତ ।
ଅର୍ଜ୍ଜୁନ ପୁଚ୍ଛନ୍ତି ତୁହି ଶୁଣ ହେ କିରାତ
ଏ ବନମଧ୍ୟେ କଢ଼ାଇ ନିଅ ବେଗେ ପଥ ।
ଏ ବଡ଼ ଗହନ ବନ ଲତା ଆବୃତ୍ତରେ
ଏହା କହି ଧନଞ୍ଜୟ ତରକି ମନରେ ।
କ୍ଷଣେ କ୍ଷଣେ ଆମଞ୍ଚିଣ ଗାଣ୍ଡିବ ଧନୁକୁ
ପୁଣି ଅର୍ଜ୍ଜୁନ ବୋଇଲେ ସେହି ଶବରକୁ ।
ତୋହର କଥାକୁ ଦେଖି ଆଶ୍ଚର୍ଯ୍ୟ ମଣଇ
ରାଜପଥ ଛାଡ଼ି ଛାମୁ ଏ ବନେ କିମ୍ପାଇଁ ।
ଶୁଣି ଶବର ପାର୍ଥକୁ ଏମନ୍ତ କହଇ
ଦ୍ୱାରକାକୁ ଯାଆନ୍ତି କି ରାଜପଥ ଦେଇ ।
ଶ୍ରୀକୃଷ୍ଣ ତ ଦ୍ୱାରକାରେ ନାହାନ୍ତି ହେ ପାର୍ଥ
କାଳିନ୍ଦୀ ବନରେ ଛନ୍ତି ପ୍ରଭୁ ଯଦୁନାଥ ।
ଯେଉଁପରି ନାରାୟଣ କହିଥିଲେ ମୋତେ
ସେହିପରି କହିଲି ମୁଁ ତୁମ୍ଭର ଅଗ୍ରତେ ।
ଏହା ଶୁଣି ମନେ ମନେ ଭାଳେ ବୀର ପାର୍ଥ
ଭଲା ସହଦେବ ଭାଳି କହିଲା ସମସ୍ତ ।
ଯେଉଁ ଯେଉଁ କଥା କହିଥିଲେ ଦଇତ୍ୟାରି
ବ୍ୟାଧକୁ ପୁଚ୍ଛିଲେ କହିବାକୁ ଧନୁର୍ଦ୍ଧାରୀ ।
ମୋଠାରେ ଶବର କିଛି ଗୁପତ ନ କର
କେବଣ ଚରିତ କହିଛନ୍ତି ଚକ୍ରଧର ।
ଶବର ବୋଲେ ନ ଜାଣେ ମୁହିଁ ତଥ୍ୟବାଣୀ
ଶ୍ରୀମୁଖରେ ଆଜ୍ଞା ମୋତେ ଦେଲେ ଚକ୍ରପାଣି ।
ପାର୍ଥକୁ ମୋଠାକୁ ତୁହି ବେଗେ ଆଣ ଯାଇ
ତାଙ୍କ ଆଜ୍ଞାରେ ତୁମ୍ଭଙ୍କୁ ଯାଉଅଛି ନେଇ ।
ଏହା କହିଣ ଶବର ହେଲା ନିରୁତ୍ତର
ସେ ବନ ମଧ୍ୟେ ଚାଲନ୍ତି ହୋଇ ତତପର ।
ହେ ରାଜା ବିଞ୍ଚଣା ଘେନି ବିଞ୍ଚେ ଶବରୁଣୀ
ତାହାକୁ ଚାହିଁ ଶ୍ରୀକୃଷ୍ଣ ବୋଲନ୍ତି ଏ ବାଣୀ ।
ତୋହର ପତିକି ଶୀଘ୍ର ପେଷିଲି ସେ ଗଲା
ଏତେବେଳଯାଏ ସେହି କିମ୍ପାଇ ନଇଲା ।
ପ୍ରଭୁଙ୍କ କରୁଣ ବାକ୍ୟେ ପର୍ବତେ କିରାତୀ
ଉଠିଣ ନିରୀକ୍ଷିଣ ସେ ଚାହେଁ ଚଉକତି ।
ଦେଖି ପର୍ବତରୁ ଓହ୍ଲାଇ କହେ ଅଇଲେଣି
ଏକାଳେ କିରାତ ମିଳେ ଅର୍ଜ୍ଜୁନଙ୍କୁ ଘେନି ।
ଶିଆଳୀ ଦୋଳିରେ ଶୋଇଛନ୍ତି ବନମାଳୀ
ପ୍ରସନ୍ନ ଚନ୍ଦ୍ରମା ମୁଖେ ପଡ଼ିଅଛି କାଳି ।
ନିରୋପିଣ ପ୍ରଭୁମୁଖ ଚାହାନ୍ତି ଅର୍ଜ୍ଜୁନ
ପାର୍ଥକୁ ଦେଖିଣ ପ୍ରଭୁ କରନ୍ତି କ୍ରନ୍ଦନ ।
ଅରୁଣନୟନୁ ଲୁହ ଯାଉଅଛି ବହି
ଉଠି ନ ପାରନ୍ତି ପ୍ରଭୁ ବ୍ୟସ୍ତେ ଛନ୍ତି ଶୋଇ ।
ଶୋକେ ଅସମ୍ଭାଳ ପ୍ରଭୁ ପାର୍ଥ ମୁଖ ଦେଖି
ମୁଖକୁ ଦେଖି ପିଛାଡ଼ି ନ ପାରନ୍ତି ଆଖି ।
ସନ୍ନିଧିକୁ ଯାଇ ପୁଚ୍ଛା କଲେ ଧନଞ୍ଜୟ
ସର୍ବତେଜ୍ୟା କରିଲ କି ପ୍ରଭୁ ଦୟାମୟ ।
ଶ୍ରୀକୃଷ୍ଣ ବୋଲନ୍ତି ଶୋକେ ଶୁଣ ସବ୍ୟସାଚୀ
ଦଇବର ଘଟସୂତ୍ର ଏସନ ଯେ ଅଛି ।
ଅଷ୍ଟବକ୍ର ଋଷି ମୋହଠାରେ କୋପ କରି
ଶାପ ଦେଇଥିବାରୁ ମୁଁ ହେଲି ଏତେ ସରି ।
ପାର୍ଥ ବୋଲେ ତୁମ୍ଭେ ପ୍ରଭୁ ଭବିଷ୍ୟତଜ୍ଞାତା
ତୁମ୍ଭଙ୍କୁ କେ ଅଛି ଶାପ ପୃଥ୍ୱୀରେ ଦିଅନ୍ତା ।
କଳିର ଆଗମ ଜାଣି ତୁମ୍ଭେ ଭାବଗ୍ରାହୀ
ବିଚାରିଅଛ ମନରେ ଛାଡ଼ିଯିବ ମହୀ ।
ମୁଁ ତୁମ୍ଭ ସଙ୍ଗରେ ଥାଇ ସବୁ ଅଛି ଜାଣି
ଭୁଲାଇ ଭଣ୍ଡୁଛ କିମ୍ପା ମୋତେ ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ଯାହା ହେବାର ତ ହେଲା
ବିଧାତା ଲିଖନ କେଭେ ଅନ୍ୟଥା ନୋହିଲା ।
ଯାହାହେଉ ଆରେ ପାର୍ଥ ମୋ ମୃତ୍ୟୁବାରତା
ଦ୍ୱାରକାରେ କହିଯିବୁ ଯା ମନେ ରଖିଥା ।
ମୋହର ସ୍ତିରୀମାନଙ୍କୁ ବାଲୁଙ୍କା ନଦୀକୁ
ପାରିକରି ସେହିଠାରେ ରଖିବୁ ତାହାଙ୍କୁ ।
ଆରେ ପାର୍ଥ ବ୍ୟସ୍ତ କରେ ମୋତେ ଶରାଘାତ
ଆସ କୋଳ କର ବାରେ ଧର କିନା ପାର୍ଥ ।
ଅର୍ଜ୍ଜୁନ ବୋଇଲେ ତାଙ୍କୁ ଶୁଣ ଦେବରାୟେ
ଶରୀର ଦିଶେ ତୁମ୍ଭର ଅବଶେଷ ପ୍ରାୟେ ।
ଆବର ଅନାଦି ନାଥ ତୁମ୍ଭେ ନାରାୟଣ
ମନୁଷ୍ୟ ଦେହେ ଛୁଇଁବ କେହ୍ନେ ତୋ ଚରଣ ।
ଏ ରୂପେ କହିଲେ ପାର୍ଥ କୃତାଞ୍ଜଳି ହୋଇ
ଏ ବଚନ ଆଉ ମୋତେ ନ କହ ଗୋସାଇଁ ।

ଶ୍ରୀକୃଷ୍ଣ ବୋଇଲେ ପାର୍ଥ ହେଉଛୁ ନିର୍ଦ୍ଦୟେ
ମୁହିଁ ତୋତେ ଅନୁଗ୍ରହ କରେ ସର୍ବଦାଏ ।
ତୋହଠାରେ ମୋହ ଛନ୍ଦ ନ ଥାଏ ଯେ କିଛି
ତୁ ତ ଜାଣିଅଛୁ ମୋର କପଟ କି ଅଛି ।
ଦ୍ୱାରକାରେ ପଶି ଯେବେ ହରିଲୁ ଭଦ୍ରାକୁ
ତୋହର ପାଇଁ ଛାଡ଼ିଲି ମୁଁ ବଳଦେବଙ୍କୁ ।
ତୁହି ଅଟୁ ଆରେ ପାର୍ଥ ମୋର ପ୍ରାଣସଖା
ତୋ ତହୁଁ କେ ଆନ ନାହିଁ ତୁ ସହାୟ ଏକା ।
ଗୋସିଂହ ଦୈତ୍ୟ ସହିତେ ତା ସୈନ୍ୟ ମାଇଲୁ
ଦ୍ୱାରକାପୁରେ ଆବର ଆମ୍ଭଙ୍କୁ ରଖିଲୁ ।
ପୁଣି ରଖିଲୁ କଦମ୍ବା ରାକ୍ଷସ ବିବାଦେ
ନିଶ୍ଚିନ୍ତରେ ଥିଲୁ ଆମ୍ଭେ ତୋର ପରସାଦେ ।
ଅର୍ଜ୍ଜୁନ ବୋଇଲେ ପ୍ରଭୁ ମ୍ଳେଚ୍ଛ ଅଙ୍ଗ ମୋର
କିପରି ଛୁଇଁବି ମୁହିଁ ତୁମ୍ଭର ଶରୀର ।
ଅର୍ଜ୍ଜୁନ କଥାରୁ ସବୁ ଜାଣିଲେ କେଶବ
ନିଶ୍ଚେଁ ଶିକ୍ଷା ଦେଇଅଛି ଯାଙ୍କୁ ସହଦେବ ।
ତେଣୁ କରି ଧନଞ୍ଜୟ ମୋତେ ଛୁଉଁ ନାହିଁ
ଆସ ଆସ ଆରେ ପାର୍ଥ ମୋତେ କର ଗ୍ରାହି ।
ଶୁଣ ବୁଧଜନେ ଶେଷ ଶ୍ରୀଭାରତ କଥା
ଶ୍ରୀକୃଷ୍ଣଙ୍କ ଅବସାନ ଲୀଳାର ବାରତା ।
ଯାହା ପୂର୍ବେ କହିଥିଲେ ଧାର୍ମିକ ଅଗସ୍ତି
ମୁଁ ତାହା ଭାଷିଲି ମାତ୍ର କରି ଦ୍ୱାରାବୃତ୍ତି ।
ଏହା ପଢ଼ନ୍ତି ଶୁଣନ୍ତି ଯେହୁ ଏକମନେ
ଯମଦଣ୍ଡ ନ ଲଭନ୍ତି ପ୍ରାଣ ଅବସାନେ ।
ବହୁତ ବିନୟେ ପୁଣି କହେ ଫାଲଗୁନି
କିପରି ଛୁଇଁବି ପ୍ରଭୁ ନରଦେହ ଘେନି ।
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ତୁ ମୋ ପଞ୍ଚପ୍ରାଣ
ଏତେବେଳେ ନ କରିଲୁ ମୋତେ ଉଦ୍ଧାରଣ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ସୃଷ୍ଟିକର୍ତ୍ତା ସ୍ୱୟଂ
ନରଦେହେ ଛୁଇଁବାକୁ ମୁହିଁ କରେ ଭୟ ।
ଶ୍ରୀକୃଷ୍ଣ ବୋଇଲେ ମୋତେ ଛାଡ଼ିଲୁ କିରୀଟୀ
ଏ ଜନମେ ଆଉ ମର୍ତ୍ତ୍ୟେ ନାହିଁ ମୋର ଗୋଷ୍ଠି ।
ଦୂରେ ଥାଇ ମୋ ଦେହକୁ ବଢ଼ାଇ ତୁ ହସ୍ତ
ତୋ କର ଲାଗିଲେ ମୋର ଦେହ ହେବ ସୁସ୍ଥ ।
ପାର୍ଥ ବୋଇଲେ ଭାଇଙ୍କ ଆଜ୍ଞା ମୋତେ ନାହିଁ
କିପରି ଛୁଇଁବି ଆଜ୍ଞା ଲଘିଂଣ ଗୋସାଇଁ ।
କୃଷ୍ଣ ବୋଲନ୍ତି ଯେବେରେ ନ ଛୁଇଁବୁ ତନୁ
ଦୂରେ ଥାଇଣ ବଢ଼ାଇ ଦିଅ ତୋର ଧନୁ ।
ଭାଳଇ ଅର୍ଜ୍ଜୁନ ମନେ ପ୍ରଭୁକଥା ଶୁଣି
ଧନୁରେ ଛୁଇଁଲେ ଦୋଷ ହେବ କିସ ପୁଣି ।
କି କରିବି ହାୟ ହାୟ ଯେଉଁ ଦୟାମୟ
ଭାବେ ଜାଣନ୍ତି ପାଣ୍ଡବେ ସର୍ବଦା ସହାୟ ।
ଯାହାଙ୍କ କୃପାରୁ ଆମ୍ଭେ ତିନିପୁର ଜୟୀ
ସେ ପ୍ରଭୁ ଡାକନ୍ତି ବ୍ୟସ୍ତେ କି ବିନୟୀ ହୋଇ ।
ଯା ଭାବି ପ୍ରଭୁ ବିକଳ ନ ପାରିଲେ ସହି
ଗାଣ୍ଡୀବ ଧନୁକୁ ଶୀଘ୍ର ଦେଲେ ସେ ବଢ଼ାଇ ।
ଏକାଳେ ଜରା ପାଦରୁ ଶର କାଢ଼ିଦେଲା
ପ୍ରଭୁଙ୍କ ଜୀବନ ବଡ଼ ବ୍ୟାକୁଳ ହୋଇଲା ।
ଦକ୍ଷିଣ କରେ ଶ୍ରୀକୃଷ୍ଣ ଧରି ବେଗେ ଧନୁ
ଅର୍ଜ୍ଜୁନଙ୍କ ମୁଖ ଚାହିଁ ଛାଡ଼ିଲେକ ତନୁ ।
ପାର୍ଥଙ୍କ ଅଙ୍ଗରେ ପ୍ରଭୁ ହୋଇଲେକ ଲୀନ
କହ୍ନା ଅବତାର ହେଲା ଏଠାରୁ ସମ୍ପୂର୍ଣ୍ଣ ।
ପାର୍ଥ ଦେଖୁ ପୁଷ୍ପଯାନେ ଗଲେ କୃଷ୍ଣ ବସି
ପୁଷ୍ପବୃଷ୍ଟି କରିଲେକ ବଇକୁଣ୍ଠ ବାସୀ ।
ଅର୍ଘ୍ୟ ବନ୍ଦାପନା କଲେ ଆସି ବିଦ୍ୟାଧର
ଜୟ ଜୟ ସୁମଙ୍ଗଳ ଶବଦ ଉଚ୍ଚାର ।
ଯହୁଁ ଆସିଥିଲେ ପ୍ରଭୁ ସେହିଠାକୁ ଗଲେ
ସଂସାରଜନଙ୍କୁ ମୁକ୍ତିପଥ ଦେଖାଇଲେ ।
ଅନିତ୍ୟ ସଂସାରେ ଜନେ ଏହା ଚକ୍ରକାୟ
ଯେ ସତେକି ଜଳବିନ୍ଦୁ ଫୋଟକା ପରାୟ ।
ବୁଡ଼ିଲି ସଂସାର ମଧ୍ୟେ ସ୍ତିରୀଙ୍କର ବଶେ
ମୋହ ପାଶରେ ବନ୍ଧନ କୁଟୁମ୍ବର ଆଶେ ।
ଏହା ସବୁ ବୃଥା ଏଥେ ସୁଖ ନାହିଁ କିଛି
ବହୁମତେ ଦ୍ୱନ୍ଦ୍ୱ ଆଉ ପ୍ରମାଦ ପଡ଼ିଛି ।
ଜଗତକର୍ତ୍ତା ଶ୍ରୀହରି ନ ପାରିଲେ ତରି
ମନୁଷ୍ୟ ଜନମ କେହୁ ପାରିବ ଉଦ୍ଧରି ।
କୃଷ୍ଣଙ୍କ କୁଟୁମ୍ବ କାର ହୋଇବ ବା ବୃଦ୍ଧି
କେଉଁପୁରେ ନ ପଶଇ କାଳ ଆଉ ବ୍ୟାଧି ।
ଯାହାଙ୍କୁ ବଧନ୍ତା ନାହିଁ ଏହିସବୁ ଚିନ୍ତା
କାଳେ ପୁଣି ବଶ କଲା ତାହାକୁ ବିଧାତା ।
ହେ ଦୟାଳୁ ବୁଧଜନେ ହୁଅ ଏକଗୋଷ୍ଠୀ
ଶାସ୍ତ୍ରେ ଦୃଢ଼େ ମନରଖି ଖଣ୍ଡାଅ ଅରିଷ୍ଟି ।
ଭବଜଳ ସାଗରକୁ ଏକଇ କାରଣ
ଏକଲୟେ ସର୍ବନରେ କୃଷ୍ଣ ନାମ ଗୁଣ ।
ମର୍ତ୍ତ୍ୟପୁରେ ଜାତ ହେଲେ ନିଶ୍ଚେଁ ଘଟେ ମୃତ୍ୟୁ
ଭବସିନ୍ଧୁ ତ୍ରାଣେ କୃଷ୍ଣନାମ କରି ସେତୁ ।
ବାସୁଦେବଙ୍କ ଚରଣେ ଭଜେ ଶୁଦ୍ରମୁନି
ଶାରଳା ଦାସ ନିଶ୍ଚୟ ହୋଇବ କାରେଣୀ ।

—୦—

## ଜାରାଶବର ସଙ୍ଗେ ପାର୍ଥର ଯୁଦ୍ଧ ଓ ପରାସ୍ତ

ଏଥୁଅନନ୍ତରେ ଦୁଃଖେ ମନୁ ନରପତି
ଅଗସ୍ତି ମୁନିଙ୍କ ପାଦେ କରିଣ ପ୍ରଣତି ।
ଅଶ୍ରୁପୂର୍ଣ୍ଣ ନୟନରେ ବୋଇଲେ ଏସନ
ମହାବାହୁ ଅରିନ୍ଦମ ଶ୍ରୀମଧୁସୂଦନ ।
ସଂସାର ଅସାର କରି ବଇକୁଣ୍ଠ ଗଲେ
ପାର୍ଥ ଜାରା ଥିଲେ ତହିଁ କେଉଁ କୃତ୍ୟ କଲେ ।
ଅଗସ୍ତି କହିଲେ ରାଜା କଲେ ଶରବଣ
ପାର୍ଥ ତହିଁ ଦେଖିକରି ଶ୍ରୀକୃଷ୍ଣ ଚରଣ ।
ବଡ଼ବ୍ୟସ୍ତ ହେଲେ ନେତ୍ରୁ ବହେ ଲୁହଧାର
କୃଷ୍ଣଗୁଣ ବାହୁନିଣ କାନ୍ଦିଲେ ଅପାର ।
ଆହା ପ୍ରଭୁ କେଉଁଆଡ଼େ ଗଲ ମୋତେ ଛାଡ଼ି
ଏ ରୂପେ ବହୁ କାନ୍ଦିଲେ ଶିରେ କର ତାଡ଼ି ।
କାନ୍ଦୁ କାନ୍ଦୁ ପୁଣି ତାଙ୍କ ମନେ ରାଗ ହେଲା
ଶୋକ ବନ୍ଦ ହୋଇଗଲା ସର୍ବାଙ୍ଗ କମ୍ପିଲା ।
ରକ୍ତସମ ଚକ୍ଷୁ କରି ଧନୁଶର ଘେନି
ଜାରାଶବରେ ବୋଇଲେ ବୀର ଫାଲଗୁନି ।
ଆରେ ରେ ଶବର ତୁହି କଲୁ ଏଡ଼େ କୃତ୍ୟ
ଜଗତନାଥଙ୍କୁ ଶର ବିନ୍ଧି କଲୁ ହତ ।
ତୋହର ଜୀବନେ ଆଉ ନାହିଁ କିଛି ଆଶ
ଟିକି ଟିକି କାଟିକି ମୁଁ ଆଜି ତୋର ମାଂସ ।
ଏହା କହି ଗାଣ୍ଡିବରେ ଶର ବସାଇଲେ
ବିନ୍ଧିବା ବୋଲିଣ ଯହୁଁ ଉଦ୍‌ଯୋଗୀ ହେଲେ ।
ଏକାଳେ ଶବର ବୋଲେ ଶୁଣ ସବ୍ୟସାଚୀ
ବିଚାରି କୋପ କର ମୋ ଦୋଷ ନାହିଁ କିଛି ।
ନ ଜାଣେ ତୋ କୃଷ୍ଣ ଏଥେ ଶୋଇଛନ୍ତି ବୋଲି
ମୃଗେକ ଶୋଇଛି ବୋଲି ଶରାଘାତ କଲି ।
ତୁ ବୃଥାରେ କିମ୍ପା କୋପ କରୁ ଧନଞ୍ଜୟ
କରିନାହାନ୍ତି ମୋପରେ କୋପ ଦେବରାୟ ।
ଜାରାର ବଚନ କିଛି କର୍ଣ୍ଣରେ ନ ଶୁଣି
ମହାକୋପାନଳ ହୋଇ ବୀର ଫାଲଗୁନି ।
ତୀକ୍ଷ୍ଣ ଶର ବସାଇଣ ବିନ୍ଧିଲେ ତୁରିତ
ସେ ଶର ଗର୍ଜି ଚଳିଲା ଯେସନେ ନିର୍ଘାତ ।
ସେ ଶରକୁ ନିବାରଣ କରାଳ କରିଲା
ପୁଣି ଅର୍ଜୁନଙ୍କୁ ସେହି ଏପରି କହିଲା ।
ମୋର ବୋଲ ଶୁଣ ତୁମ୍ଭେ ଆହେ ସୋମବଂଶୀ
ପାମର ଶରେ ତୁ କେବେ ନ ହୁଅଇ ଝିଙ୍ଗାସି ।
ଦେଖ ଦେଖ ମୁହିଁ ପାପୀ ବିଷ୍ଣୁ ଦ୍ରୋହ କଲି
ବିଷ୍ଣୁ ପ୍ରାଣ ବିନାଶିଣ ମୁଁ ମୂଢ଼ ଜୀଇଁଲି ।
ବନଚର ଛାର ମୁହିଁ ମଲେ ଗଲେ ଯିବି
ସଂସାର ଭବସାଗରୁ ସୁଖରେ ତରିବି ।
ମୋହର ବିଘାତେ ଆହେ ତୁହି ନାଶ ଗଲେ
ତ୍ରୈଲୋକ୍ୟଟି ନାଶଯିବ ତୋର ଲସିଲେ ।
ପାର୍ଥ ବୋଲେ ଯେବେ କୃଷ୍ଣପ୍ରାଣ କଲେ ତେଜ୍ୟା
ମୁହିଁ ଥାଇ କରି କିସ କରିବି ନିର୍ଲ୍ଲଜା ।
ଏହାକହି ପାଞ୍ଚଶର ବିନ୍ଧିଲେ ବ୍ୟାଧକୁ
ପ୍ରତିଶର କରି ଜାରା କାଟି ସେ ଶରକୁ ।
କିରାତ ବୋଲେ ହେ ଦିଗପାଳେ ହୁଅ ସାକ୍ଷୀ
ରାଜ୍ୟଧର ହୋଇ ଏହି ହେଲା ନିରିମାଖୀ ।
ଢମଣା କାଠର ଧନୁ କଣ୍ଟାବଂଶ ଗୁଣ
ଆମଞ୍ଜି ବିନ୍ଧି ଫିରିକ ନାମେ ପଞ୍ଚବାଣ ।
ଅର୍ଜୁନ ପରେ ବିନ୍ଧନ୍ତେ ଜାରା ଏହି ଶର
ବିନାଅସ୍ତ୍ରେ ନିବାରିଲେ ତାହା ପାର୍ଥ ବୀର ।
ପୁଣି ପୁଣି ଦୁହେଁ ଶର ବିନ୍ଧା ବିନ୍ଧି ହେଲେ
ପ୍ରୀତି ଉପରୋଧ ସବୁ ତ୍ୟକତ କରିଲେ ।
କିରାତ ସମରେ ପାର୍ଥ ନୁହେଁ କେହ୍ନେ ସରି
ଯେଣୁ କୃଷ୍ଣ ଚାଲିଗଲେ ପାର୍ଥ କଳା ହରି ।
କୃଷ୍ଣ ନିଧନେ ଅର୍ଜୁନ କରିଲେକ ବାଞ୍ଛା
ଜନମୁଖେ ନ ଚାହିଁବି ମରଣକୁ ଇଚ୍ଛା ।
ଦୁହେଁ ଯୋଦ୍ଧା ଶରେ ଶର ପରିତାଳ କରି
ଦ୍ରୋଣାଚାର୍ଯ୍ୟ ଅଟନ୍ତି ତ ଗୁରୁ ଦୁହିଁଙ୍କର ।
ଅନଳ ଅସ୍ତ୍ର ପେଷିଲେ ପୁଣି ବୀର ପାର୍ଥ
ମେଘା ଶରରେ ତାହାକୁ ନିବାରେ କିରାତ
ଅର୍ଜୁନ ମାଇଲେ ପୁଣି ଭଇରବୀ ବାଣ
ତ୍ରିଅମ୍ବକ ଶରେ ଜରା କଲା ନିବାରଣ ।
ପୁଣି ପାର୍ଥ ମାଇଲେକ ଶତଧାରା ଶକ୍ତି
ସସ୍ରଧାରା ଶକ୍ତିରେ ତା ଛେଦେ ଅଜ ନାତି ।
କୋପେ ଅର୍ଜୁନ ବିନ୍ଧିଲେ ମନଭେଦୀ ଶର
ବୋଲନ୍ତି ବେଗେ କୁ କାଟ କିରାତର ଶିର ।
ଜାରା ବିନ୍ଧିଲାକ ପ୍ରାଣହରଣର ବାଣ
ବୋଇଲା ଯାଇ ତୁ ଘେନ ପାଣ୍ଡବର ପ୍ରାଣ ।
ଦୁହିଁଙ୍କର ଅପାଳଟ ସେ ଶର ଅଟଇ
ଦୁହିଁଙ୍କ ପରେ ପଡ଼ିଲେ କେ ବଞ୍ଚିବ ନାହିଁ ।
ତାହା ଦେଖି ଆକାଶରେ ଦେବତା ସକଳ
ବୋଲନ୍ତି ଏ ବାଣ ଦୁହେଁ ସଂହର ଚଞ୍ଚଳ ।
ସ୍ୱର୍ଗବାଣୀ ଶୁଣି ଦୁହେଁ ଅସ୍ତ୍ର ସଂହାରିଲେ
ପୁଣି ଦେବଗଣ ଡାକି ଏମନ୍ତ କହିଲେ ।
ଏକଆତ୍ମା ତୁମ୍ଭେ ଦୁହେଁ ନ କର ବିବାଦ
ତୁମ୍ଭ ଦୁହିଁଙ୍କର ଶୁଣ ଅପୂର୍ବ ସମ୍ବାଦ ।

ହେ ଅର୍ଜ୍ଜୁନ ତୁମ୍ଭ ସଙ୍ଗେ ଏ ଜାରାଶବର
ଜନ୍ମେ ଜନ୍ମେ ରହିଥାଏ ନ କରି ଅନ୍ତର ।
ତ୍ରେତୟାରେ ଜନ୍ମି ଥିଲେ ଯେବେ ରାମଚନ୍ଦ୍ର
ତୁମ୍ଭେ ସୁଗ୍ରୀ ବାଳିପୁତ୍ର ଏ ଜରା ଅଙ୍ଗଦ ।
ବିଷ୍ଣୁକଳା ଘେନି ହେଲ ତୁମ୍ଭେ ରାମମିତ୍ର
ବିଷ୍ଣୁ କଳାରେ ଅଙ୍ଗଦ ହୋଇଥିଲା ଜାତ ।
ପିତୃଋଣ ଶୁଝିବାକୁ ଜାରା ହୋଇଥିଲା
ତେଣୁ କୃଷ୍ଣ ବଧି ପିତୃଋଣ ଏ ଶୁଝିଲା ।
ହେ ଅର୍ଜ୍ଜୁନ ଏବେ ତୁମ୍ଭେ ଜାରା ସଙ୍ଗେ ଯାଅ
ନୀଳସୁନ୍ଦର ପର୍ବତେ କୃଷ୍ଣ କର ଦାହ ।
ଶୁଣି ଆନନ୍ଦ ହୋଇଲେ ଦହେ ଏକ ଆତ୍ମା
ଅର୍ଜ୍ଜୁନ ବୋଇଲେ ପିଣ୍ଡ ଦହିବା ମହାତ୍ମା ।
ଏହା କହି ପାର୍ଥ ପୁଣି ବସି ଶୋକ କଲେ
ଆହା ପ୍ରଭୁ ମୋତେ ଛାଡ଼ି କେଉଁଆଡ଼େ ଗଲେ ।
ସ୍ବାମୀ ମୁଁ ଛୁଇଁଲେ ପ୍ରାଣ ବିସର୍ଜିବ ବୋଲି
ତେଣୁ କରି ଦେବ ମୁହିଁ ଛୁଇଁଣ ନ ଥିଲି ।
ମୁଁ ପାମର ଧନୁଅଗ୍ରେ ଛୁଇଁଲି କିମ୍ପାଇଁ
ତୁମ ଚନ୍ଦ୍ରମୁଖ ଆଉ ଦେଖିବି ମୁଁ କାହିଁ ।
ହେ ଦେବ ଦେଖୁ ଆମ୍ଭଙ୍କୁ ପଞ୍ଚଭୂତେ ନିତ୍ୟ
ତୁମ୍ଭ ଅଭାବରେ ଆମ୍ଭେ ହେଲୁ ଅରକ୍ଷିତ ।
ସ୍ୱାମୀ ତୁମ୍ଭର ଆଶ୍ରିତେ ପାଣ୍ଡବଙ୍କ ନାମ
ସଂସାରରେ ଶୁଭୁଥିଲା ସିନା ଧନ୍ୟ ଧନ୍ୟ ।
ତୁମ୍ଭେ ପାଣ୍ଡବମାନଙ୍କ ବାରବ୍ରତ ହେତୁ
ତୁମ୍ଭେ ହୁଡ଼ିଗଲେ ଆମ୍ଭେ କେଉଁପରି ବର୍ତ୍ତୁ ।
ଆମ୍ଭର ଜୀବନେ ଆଉ ଅଛି ଯେଉଁ ସୁଖ
ତୁମ୍ଭର ଅଭାବେ ଦେବ ହୋଇଲୁ ନିରେଖ ।
ଏମନ୍ତ ପ୍ରଭୁଙ୍କ ଗୁଣ ବାହୁନି ଅର୍ଜ୍ଜୁନ
ବଡ଼ ବ୍ୟାକୁଳେ ବସିଣ କରନ୍ତେ କ୍ରନ୍ଦନ ।
ଜାରାଶବର ତାହାର ଶୋକ କଲେ ଶାନ୍ତି
ରୋଦନ କରନ୍ତି ଶେଷ ହେଲା ଆସି ରାତି ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ଜୟ ନୀଳଗିରିବାସୀ ଭକତ ଜୀବନ ।
ଭକ୍ତଙ୍କ ପାଇଁ ହସ୍ତରେ ଚକ୍ର ଧରି ଗଦା
ତାଙ୍କର ଅରିଷ୍ଟ ପ୍ରଭୁ କରିଦିଅ ପଦା ।
ତୁମ୍ଭେ କରୁଣା ନ କଲେ ହେ କରୁଣାସିନ୍ଧୁ
ତରି ନପାରନ୍ତି ନରେ ଏହି ଭବସିନ୍ଧୁ ।
ଆହା ପ୍ରଭୁ ଆପଣଙ୍କ କି ଦୟା ଭକତେ
ସର୍ବଦା ଅନାଇ ଥାଅ ତାଙ୍କୁ କୃପାନେତ୍ରେ ।
ମୁଁ ତୁମ୍ଭ ପଦକିଙ୍କର ହେ ନୀଳାଦ୍ରିନାଥ
ତୁମ୍ଭ ଛଡ଼ା ଆଶ୍ରା କେହି ନାହିଁ ମୁଁ ଅର୍କ୍ଷିତ ।

ଶାରଳା ଦାସ ମୋ ନାମ ତବ ନାମ ଭାବି
ଭାରତ ରଚନା କରି ବୋଲାଉଛି କବି ।
ସାଧୁ ସୁଜ୍ଞଜନମାନେ ପଢ଼ି ହୁଅ ତୋଷ
ନିରନ୍ତର ପାନ କରି ହରି ସୁଧାରସ ।
ଭବ ଉଦ୍ଧାରଣ ଏକା ଅଟେ ହରିନାମ
ସେ ନାମ ଭଜନ କର ପୁରୁ ମନସ୍କାମ ।



## ଶ୍ରୀକୃଷ୍ଣଙ୍କ ପିଣ୍ଡଦହନ ଓ ଶବରର ନାରାୟଣ ପୂଜା

ଏଥୁ ଅନନ୍ତରେ ପୁଣି ମନୁ ଦଣ୍ଡଧର
ଅଗସ୍ତିଙ୍କୁ ପୁଚ୍ଛାକଲେ ଯୋଡ଼ି ବେନିକର ।
କୃଷ୍ଣଙ୍କର ପିଣ୍ଡ ନେଇ ପାର୍ଥ କିସ କଲେ
ଏକଥା ବିସ୍ତାର କରି କହ ମୁନି ଭଲେ ।
ଅଗସ୍ତି ବୋଇଲେ ରାଜା ଏକମନେ ଶୁଣ
ଏ ପରେ ଯା ହେଲା କହେ ତହିଁର ବିଧାନ ।
ଜାରାଶବର ପାର୍ଥଙ୍କୁ ଯହୁଁ କଲା ଶାନ୍ତ
ତାହାର ବାକ୍ୟେ ପାର୍ଥଙ୍କୁ ଭୁଲିଗଲା ଚିତ୍ତ ।
ବ୍ୟସ୍ତେ ବୋଲନ୍ତି ଜରାକୁ ହେ କିରାତ ଭାଇ
ଅଗୁରୁ ବୃକ୍ଷେକ ଖୋଜି ଲଗାଇବା ଜୁଇ ।
ପ୍ରଭୁଙ୍କର ଶରୀରକୁ କରିବା ଦହନ
ତାଙ୍କ ପିଣ୍ଡ କେଉଁପରି ହେବ ଭସ୍ମାଚ୍ଛନ୍ନ ।
କୃଷ୍ଣ ପ୍ରାଣତ୍ୟାଗ ବୋଲି ହେଲା ସ୍ୱର୍ଗବାସ
ନ ପାଇବା ଭବେ ଯେଉଁପରି ଉପହାସ ।
ଅର୍ଜ୍ଜୁନଙ୍କ ବାକ୍ୟେ ଜାରା ଧରିଣ କୁଠାର
ସେହିକ୍ଷଣି କାଠ ଆଣି ଚଳିଲେ ସତ୍ୱର ।
ବନସ୍ତେ ଅଗୁରୁ ବୃକ୍ଷ ହୋଇଛି ଅନେକ
ସେଦିନ ଖୋଜି ଖୋଜିଣ ହୋଇଲା ବିମୁଖ ।
ଅନେକ ଗହନବନ ଖୋଜି ନ ପାଇଲା
ଅର୍ଜ୍ଜୁନଙ୍କ ନିକଟରେ ଯାଇଣ କହିଲା ।
ବନସ୍ତେ ଅଗୁରୁ ବୃକ୍ଷ ଅନେକ ଦେଖିଛି
ଆଜି ନ ପାଇଲି କିମ୍ପା ଆହେ ସବ୍ୟସାଚୀ ।
ଏହି ନିକଟରେ ରହିଥିଲା ଏକ ବୃକ୍ଷ
ତାହା ଦେଖିଥିଲି ମୁହିଁ ଏଠାରେ ପ୍ରତ୍ୟକ୍ଷ ।
ପାର୍ଥ ବୋଲେ ନ ଆଣିଲେ ତୁମ୍ଭେ ଖୋଜି କରି
ପ୍ରଭୁଙ୍କ ପିଣ୍ଡ ଦହନ କରିବା କିପରି ।
କିରାତ ବୋଇଲେ ବଡ଼ ଆଶ୍ଚର୍ଯ୍ୟ ବିଷୟ
ଏହିଠାରେ ବୃକ୍ଷ ଥିଲା ଆହେ ଧନଞ୍ଜୟ ।
ଶୁଣିଛି ସେ ବୃକ୍ଷ କଥା ମନଦେଇ ଶୁଣ
ଏକଥା ଆମ୍ଭ ଉପର ବଂଶ ବିବରଣ ।

ଏହି କାଳିନ୍ଦୀର ପଥେ କଳେବର ବନେ
ଅଗୁରୁ ବୃକ୍ଷଟି ଥାଏ ରହେ ଏହି ସ୍ଥାନେ ।
ବସୁ ନାମେ ଶବର ଯେ ଅଟେ ମୋର ଅଜା
ହେଲେ ତାର ବହୁତ ଯେ ସନ୍ତତି ପରଜା ।
ଧନୁ ଧରି ପାରିଧିରେ ବୁଲେ ନିଶାକାଳେ
ରହିଲା ଦିନେ ଅଗୁରୁ ବୃକ୍ଷର ଯେ ତଳେ ।
ଦେଖେ ତହିଁ ଶଙ୍ଖ ଚକ୍ର ଗଦା ପଦ୍ମକର
ନୀଳଉତ୍ପଳ ଶରୀରେ ରଙ୍ଗିମା ଅଧର ।
ଦେଖିଣ କିରାତ ହେଲା ଦଣ୍ଡ ପରଣାମି
ଉଠି ବୋଇଲେ କେବଣ ଦେବ ତୁମ୍ଭେ ସ୍ୱାମୀ ।
ବୋଇଲେ ମାଧବ ତାକୁ ଶୁଣରେ କିରାତ
ମୁହିଁ ଯେ ଅନାଦି ନାଥ ସ୍ୱରୂପ ଏମନ୍ତ ।
କଳିକାଳ ଜାଣି ମୁହିଁ ହୋଇଅଛି ଗୋପ୍ୟ
ଏଠାରେ ହୋଇବି ମୁହିଁ ପାଷାଣ ସ୍ୱରୂପ ।
ପାଣି ପତ୍ର ଦେଇ ମୋତେ କରିବୁ ତୁ ପୂଜା
ଜାଣି ନ ପାରିବେ ଯେହ୍ନେ ତୋ ପୁତ୍ର ଭାରିଯା ।
ଯେବେ ତୁ ଏହି କଥାକୁ ପ୍ରଘଟ କରିବୁ
ତୋ ବଂଶ ଲୋପ ହେବ ତୁ ଅବଶ୍ୟ ମରିବୁ ।
ଏତେ କହି ଦେବ ତହୁଁ ହେଲେ ଅନ୍ତର୍ଦ୍ଧାନ
ପାଷାଣ ରୂପ ଧଇଲେ ପ୍ରଭୁ ତତକ୍ଷଣ ।
ଅଗୁରୁ ବୃକ୍ଷ ଆବୋରି ରହି ନାରାୟଣ
ଶବରଠାରୁ ସେ ପୂଜା ପାଇବେ ବୋଲିଣ ।
ନିତ୍ୟ ଅଜପତି ତାଙ୍କୁ ଦେଲା ପତ୍ର ପାଣି
ଦିନେ ବ୍ୟାଧ ପୁଛେ ଆହେ ଦେବ ଶିରୋମଣି ।
ଦେବପୂଜା ଆସେ ନାହିଁ ମୋତେ ନାରାୟଣ
ଏଥିକି ଅପାର ଦୋଷ ଅଟେ ବିଦ୍ୟମାନ ।
ପୁଣି ପ୍ରତିବାକ୍ୟ ତାକୁ ଦେଲେ ଲକ୍ଷ୍ମୀପତି
ତୋହର ପୂଜାରେ ଆମ୍ଭେ ହୋଇଛୁ ତୃପତି ।
ଶୁଣି ଶବର ମନରୁ ତୁଟିଲାକ ଭ୍ରାନ୍ତି
ପୂଜା ସାରି ଅନ୍ନ ନେଇ ପାଶେ ଦିଏ ନିତି ।
ଛାମୁରେ ଥୋଇଣ ତହୁଁ ଯାଏ ଆଡ଼ ହୋଇ
ଆପଣେ ଭୁଞ୍ଜନ୍ତି ତାହା ଜଗତ ଗୋସାଇଁ ।
ଯାହା ଅବଶିଷ୍ଟ ଥାଏ ତାହା ଖାଏ ନେଇ
ଏ ବିଷୟ ଆନ ଜାଣ ନ ଜାଣଇ କେହି ।
ଏ ରୂପେ ପୂଜା କରଇ ସେହୁ ନିତି ନିତି
ଶ୍ରୀଶରୀର ନାରାୟଣ ରୂପେ ପୂଜା ପାନ୍ତି ।
ଏ ରୂପେ ବହୁତ କାଳ ପ୍ରଭୁଙ୍କୁ ପୂଜିଲା
ଦଇବେ ଆସିଣ ଜ୍ୱର ତାହାକୁ ଗ୍ରାସିଲା ।
ଅଶକତ ହୋଇ ଯାଇ ନ ପାରିଣ କତି
ବିଚାରେ କି ଦୋଷ କଲି ହେ ଦେବ ଶ୍ରୀପତି ।

ମୁଁ ଗଲେ ଆପଣ ପୂଜା ପାନ୍ତ ଦେବହରି
ସେ କାର୍ଯ୍ୟ ଚଳିବ ଏବେ ଆଉ କେଉଁପରି ।
ବଡ଼ଇ ସଂକଟ ମୋତେ ପଡ଼ିଲାକ ଆସି
କି ବୁଦ୍ଧି କରିବି ଏବେ ଭାଳଇ ଯେ ବସି ।
ନିଜେ ବିଷ୍ଣୁ ଦେଇଛନ୍ତି ମୋତେ ଏ ଆଦେଶ
ଏକଥା ତୁ ନ କରିବୁ କା ଆଗେ ପ୍ରକାଶ ।
ତୁ ପୂଜା ନ କଲେ ମୋର ନୋହିବ ଭୋଜନ
କି ବୁଦ୍ଧି କରିବି ଏବେ ନ ଦିଶଇ ଆନ ।
ଆନେ ନ କହିଲେ ପୂଜି ନ ପାରିବି ଯାଇ
ପରେ କହିଲେ ତ ବଂଶସହ ମରିବଇଁ ।
ଏମନ୍ତ ଭାବି କହରେ ମୋହର ନନ୍ଦନ
ମୋର ଔରସୁଁ ଜନ୍ମିଛି ସେ ମୋ ଆତ୍ମା ସମାନ ।
ତାର ପୁତ୍ର ନାମ ଗଜରାଜ ବେଣ୍ଟକାର
ସେ ପୁତ୍ରକୁ ଡିଆରଇ ଗୁପତେ ଶବର ।
ଆରେ ପୁତ୍ର କହିବି ଯା କରିବୁ ତା ଗୋପ୍ୟ
ପ୍ରକାଶ କଲେ ସମସ୍ତେ ମରିବାରେ ବାପ ।
ବୋଲଇ କୁମର ପିତା କହ ମୋ ସମୀପ
ନିଶ୍ଚୟ କହୁଛି ତାହା କରିବଇଁ ଗୋପ୍ୟ ।
କି କଥା କହିବୁ କହ ତାହା ମୁହିଁ ଶୁଣେ
ତୋହର କଥା ଅନ୍ୟଥା ନ କରିବି କ୍ଷଣେ ।
କହଇ ଶବର ତାକୁ ଅତି ଗୁପତରେ
ଯତନେ କରିବୁ ଗୋପ୍ୟ ରଖୁ ଯା ମନରେ ।
ବନମଧ୍ୟେ ଅଛି ଶୁଣ ଗୋଟିଏକ ସ୍ଥାନ
ସେଠାରେ ଅଗୁରୁ ବୃକ୍ଷେ ଅଛଇ ରହିଣ ।
ତହିଁ ତଳେ ବିଜେ କରିଅଛନ୍ତି ମାଧବ
ତାହାର ଚରଣେ ବାବୁ ତୁହି ଯାଇ ସେବ ।
ଆରେ ବାବୁ ପାଣିପତ୍ର ଘେନିଯିବୁ
ଅନ୍ନ ପୁଡ଼ାଏ ବିଷ୍ଣୁଙ୍କୁ ଭୋଗ ସମର୍ପିବୁ ।
ପାଣି ଢାଳି ତାଙ୍କ ଶିରେ ଚଢ଼ାଇବୁ ଫୁଲ
କହିବୁ ମୋ ପିତା ଜ୍ୱରେ ହୁଏ କଲବଲ ।
ଅନ୍ନପୁଡ଼ାଟି ନେଇଣ ଛାମୁରେ ଥୋଇବୁ
ଭୁଞ୍ଜ ବୋଲି କହି ବାବୁ ଅନ୍ତର ହୋଇବୁ ।
ପିତାର ବଚନ ଶୁଣି ଚଳିଲା ନନ୍ଦନ
ସେ ଅଗୁରୁ ବୃକ୍ଷ ପାଶେ ମିଳିଲା ବହନ ।
ଦେଖିଣ ମାଧବ ତାକୁ ମାନସରେ ଭାଳି
ଏବେ ଯେ ଲୋକରେ ମୁହିଁ ବିଦିତ ହୋଇଲି ।
ଦେଖି ଗଜରାଜ ତହିଁ ପ୍ରଭୁଙ୍କ ସ୍ୱରୂପ
ଭାଳଇ ମୋର ଖଣ୍ଡିଲା ଥିଲା ଯେତେ ପାପ ।
ଶିରେ ପାଣି ଢାଳି ଖରେ ଫୁଲ ଚଢ଼ାଇଲା
ବାପର ଦେହ ଅସୁସ୍ଥ ଥିବାର କହିଲା ।

ଅନ୍ନ ଯାଚନ୍ତେ ସେ ଯହୁଁ ନ କଲେ ଆହାର
ବ୍ୟାଧ ବୋଲେ ମୋର ଦୋଷ ନାହିଁ ଭୋକେ ମର ।
ଏତେ କହି ଅନ୍ନପୁଡ଼ା ବାହୁଡ଼ାଇ ନେଲା
ପିତାର ଛାମୁରେ ରଖି ବଚନ କହିଲା ।
ପାଣି ଢାଳି ପତ୍ର ଫୁଲେ କରିଲି ସୁବେଶ
ଅନ୍ନ ଦିଅନ୍ତେ ମୋ ବୋଲେ ନ କରିଲେ ଗ୍ରାସ ।
ଶୁଣି ମନେ ବିଷାଦିତ ହୋଇଲା କିରାତ
କୋପ କଲେ ମାଧବ ମୁଁ କରିବି କେମନ୍ତେ ।
ମନରେ ଭାବନା କରି ସେ ବସୁ ଶବର
ପୂଜିବାକୁ ଚଳିଲା ସେ ଦେବ ଚକ୍ରଧର ।
ଯଥାବିଧି ପ୍ରତିଦିନ ପୂଜିଲା କିରାତ
ପୂଜା ନ ଘେନନ୍ତି ସେହୁ ନ ଭୁଞ୍ଜନ୍ତି ଭାତ ।
ଏହା ଦେଖି ଶବର ଯେ ତିନିପୁରେ ଗଲା
ଈଶ୍ୱରଙ୍କ ଆଗେ ଯାଇ ସମସ୍ତ କହିଲା ।
ସ୍ୱାମୀ ପ୍ରତ୍ୟକ୍ଷେ ଦେଖିଲି ନାରାୟଣ ମୂର୍ତ୍ତି
ଅଗୁରୁ ବୃକ୍ଷମୂଳେ ମୁଁ ପୂଜେ ନିତ୍ୟ ପ୍ରତି ।
ଏ ଶୁଣି ବିଚାରିଲେ ରୁଦ୍ରପୁର ଲିଙ୍ଗ
ଦ୍ୱାପର ଶେଷେ ପ୍ରବେଶ ହେଲା କଳିଯୁଗ ।
ଶ୍ରୀକୃଷ୍ଣ କିପରି ଏଥେ ହେଲା ଅବତାର
ତାଙ୍କୁ ଦେଖି ବୈକୁଣ୍ଠକୁ ଯିବେ ସର୍ବନର ।
ଯମଦେବତା ତାହାକୁ ଆଉ ଦେବ ଶାସ୍ତି
ଯମଦଣ୍ଡ ଗଲା ସର୍ବେ ପାଇବେ ସଦ୍‌ଗତି ।
ଏତେ ଭାଳି ହର ଶୀଘ୍ର ଡକାଇଲେ ଯମ
ପାଷାଣ ରୂପରେ ବିଜେ ଶ୍ରୀପୁରୁଷୋତ୍ତମ ।
ଅଗୁରୁ ବୃକ୍ଷ ମୂଳରୁ ଘେନିଆସ ବେଗେ
ନ ଆଣିଲେ ଦୁଃଖ ଭୋଗ ନାହିଁ କଳିଯୁଗେ ।
ତୋ ପୁରକୁ ନ ଯିବେ କେ ଆଉ ପାପୀ ଲୋକ
ପାଷାଣ ବିଷ୍ଣୁଙ୍କୁ ଦେଖି ଖଣ୍ଡିବେ ପାତକ ।
ଗୋହତ୍ୟା ସ୍ତ୍ରୀହତ୍ୟା ଆଉ ବ୍ରହ୍ମହତ୍ୟା ଦୋଷ
ମାତୃହରଣ ବୃଷଳୀପତି ଏ ବିଶେଷ ।
ଏ ମହାପାତକମାନ ଦେଖିଣ ଖଣ୍ଡିବେ
ନରକ ଭୋଗିବେ ନାହିଁ ସ୍ୱର୍ଗରେ ବସିବେ ।
ଏମନ୍ତ ଶୁଣି ଶମନ ସେଠାରୁ ଚଳିଲେ
ଅଗୁରୁ ବୃକ୍ଷର ତଳେ ମାଧବେ ଭେଟିଲେ ।
ଶିବଙ୍କ କହିବା କଥା ଜଣାଇଲେ ଫେଡ଼ି
ବହୁ ବିନୟେ ପ୍ରଭୁଙ୍କ ପାଦତଳେ ପଡ଼ି ।
ତହୁଁ ମର୍କତ ବିମାନେ ବସାଇଲେ ନେଇ
ବୋଇଲେ ଏ କଳିଯୁଗେ ନ ଥାଅ ଗୋସାଇଁ ।
ଏହା କହି ଜନ୍ତୁନାଥ ମାଧବେ ଘେନିଣ
ସଂଯମନୀ ଭୁବନକୁ ଚଳିଲେ ବହନ ।

ନିଜ ସଭାଗୃହ ମଧ୍ୟେ ରଖିଲେ ସେ ପୁଣି
ଭକତ ଭାବକୁ ବିଜେ ତହୁଁ ଚକ୍ରପାଣି ।
ଯମ ଧର୍ମ ସଭାରେ ଯେ ନେଇ କଲେ ପୂଜା
ଭକତଙ୍କ ଭାବ ଘେନି ବିଜେ ଦେବ୍‌ରାଜା ।
ସେ ସଂଯମନୀ ପୁରକୁ ଯେତେ ଲୋକ ଯାନ୍ତି
ସେ ବିଷ୍ଣୁ ପାଷାଣ ଦେଖି ମୁକତି ଲଭନ୍ତି ।
ଗୋ ବ୍ରାହ୍ମଣ ମାତୃହନ୍ତା ବୃଷଳୀର ପତି
ଏ ଚାରି ମହାପାତକ ନ ପଶଇ କତି ।
ନରକର ଲୋକ ସ୍ୱର୍ଗେ ବସନ୍ତିତ ଯାଇ
ଯମ ବୋଲେ ଏଥୁ ବିଜେ ଜାତ ହେ ଗୋସାଇଁ ।
ଏମନ୍ତ ଅଛି ଅଗୁରୁ ବୃକ୍ଷର ମହିମା
ଶୁଣିଛି ମୁଁ ପିତାଠାରୁ ଜାଣ ହେ ମହାତ୍ମା ।
କାଲି ସେ ବୃକ୍ଷକୁ ମୁହିଁ ପ୍ରତ୍ୟକ୍ଷେ ଦେଖିଛି
ଆଜି ନ ଦେଖିଣ ବଡ଼ ଆଶ୍ଚର୍ଯ୍ୟ ମଣୁଛି ।
ଏହା କହନ୍ତେ କିରାତ ଅର୍ଜ୍ଜୁନ ଆଗରେ
ପୁଣି ପୁଣି କାନ୍ଦିଲେକ ପାର୍ଥ ଆକୁଳରେ ।
ଆହେ ପ୍ରଭୁ ଏବେ ମୁହିଁ କି ବୁଦ୍ଧି କରିବି
ତୁମ୍ଭର ଏ ପିଣ୍ଡଗୋଟି କାହିଁରେ ଦହିବି ।
ଏଡ଼େ ଅରଣ୍ୟେ ଅଗୁରୁ ବୃକ୍ଷ ନ ମିଳଇ
ଏମନ୍ତ ମାୟା କେ କଲା ଆଜି କାହିଁପାଇଁ ।
କିରାତ ବୋଲେ ଦେଖିଛି କାଲି ମୁଁ ପ୍ରତ୍ୟକ୍ଷ
ଆଜି ଅଦୃଶ୍ୟ ହୋଇଲା କିମ୍ପାଇଁ ସେ ବୃକ୍ଷ ।
ଯହିଁ ଥିଲା ତହିଁ ବୃକ୍ଷ ଗୋପ୍ୟ ହୋଇଥିଲା
ଅର୍ଜ୍ଜୁନ କାନ୍ଦନ୍ତେ ବୃକ୍ଷ ତହିଁ ଦୃଶ୍ୟ ହେଲା ।
ପାର୍ଥ ବୋଇଲେ ସେ ବୃକ୍ଷ ଦିଶିଲାଣି ଦେଖ
କିରାତ ଦେଖିଣ ସେହି ବୃକ୍ଷଟି ପ୍ରତ୍ୟକ୍ଷ ।
ତହୁଁ ଯାଇ ତାକୁ ଜାରା ପକାଇଲା ହାଣି
ଚିରି ସବୁ ରୁଣ୍ଡ କଲା ସେହିଠାରେ ପୁଣି ।
ପାର୍ଥ କାଠ ସଜାଡ଼ିଣ ଯତନେ ଥୋଇଲେ
ପ୍ରଭୁଙ୍କୁ ଉଠାଇ ଗଳେ ପୁଷ୍ପମାନ ଦେଲେ ।
ଅଗୁରୁ ପର୍ବତଠାରୁ ପାର୍ଥ ବହିନେଲେ
ସେଠାରୁ ପ୍ରଭୁ ପିଣ୍ଡକୁ ନିରୀକ୍ଷି ଚାହିଁଲେ ।
ଦେଖନ୍ତି ନୟନ ଭରି ପ୍ରଭୁଙ୍କର କାୟ
ଦିଶନ୍ତି ସେ ପ୍ରଭୁ ଦିବ୍ୟ ଅବତାର ପ୍ରାୟ ।
ତାହା ଦେଖି ମନଦୁଃଖ କରଇ ବିବସ୍ତ
ମୋ ବିନତି ଘେନି ଉଠ କିନା ଶିରୀବସ୍ତ ।
ମୁହିଁ ପଛେ ମୃତ୍ୟୁପିଣ୍ଡ ହେଉଛି ଗୋସାଇଁ
ଚନ୍ଦ୍ର ପରି ମୁଖ ତୋର ପରି ମୁଣ୍ଡା ଯାଇ ।
ମୁହିଁ ମୂଢ଼ ସହଦେବ ବୋଲ ନ ବୁଝିଲି
ଏ ତୁମ୍ଭ ଅବସ୍ଥା ଦେବ ନୟନେ ଦେଖିଲି ।

ଯେ ରୂପ ଦେଖି ଅଶେଷ ପାପ ହୁଏ କ୍ଷୟ
କେଉଁପରି ଅଗ୍ନିରେ ମୁଁ ଦହିବି ସେ ଦେହ ।
ଏମନ୍ତେ ବହୁ ବିକଳ ହୋଇକରି ପୁଣି
କାଠପରେ ଶୁଆଇଲେ କୃଷ୍ଣେ ଫାଲଗୁନି ।
ଅଗୁରୁ କାଠରେ ନେଇ ଲଗାନ୍ତେ ଅନଳ
ଜଳି ଉଠିଲା ସେକ୍ଷଣି ହୋଇଣ ପ୍ରବଳ ।
ନବତାଳ ଉପରକୁ ଉଠେ ନିଆଁ ଶିଖା
ଏକମାତ୍ର ଜାରା ତହିଁ ପାର୍ଥଙ୍କର ସଖା ।
ପାର୍ଥ ବୋଲେ ସ୍ୱାମୀ ଭୃଙ୍ଗତୁଲ୍ୟ ଯେ ଶରୀର
ତା ଦହନ କରୁଅଛି ଆଜି ମୁଁ ପାମର ।
ଅନଳ ଯେ ଦିବାରାତି ପ୍ରବଳେ ଜଳିଲା
ପ୍ରଭୁଙ୍କ ପିଣ୍ଡରେ ଅଗ୍ନି ଲାଗି ନ ପାରିଲା ।
ତାହା ଦେଖିଣ ଅର୍ଜ୍ଜୁନ ହୋଇଲେ ବିମୁଖ
ଜଳି ଜଳି ଶେଷ ହେଲା ଯେ ଅଗୁରୁ ବୃକ୍ଷ ।
ଭାଳଇ ଅର୍ଜ୍ଜୁନ ଏହା ହୋଇଲା କେସନ
ପାପୀଲୋକ ପିଣ୍ଡ ସିନା ନୁହଇ ଦହନ ।
ଗୋରୁ ବ୍ରହ୍ମହତ୍ୟା ପାପ ଯାହାଠାରେ ଥାଇ
ସେ ଲୋକମାନଙ୍କ ପିଣ୍ଡ ଅଗ୍ନି ନ ଭକ୍ଷଇ ।
ପୁଣି ଭାବନ୍ତି ଏ ଗୋପେ ଷଣ୍ଢା ବଧ କଲେ
ବାଳକାଳେ ପୁତନାର ଜୀବନ ଘେନିଲେ ।
ଗୋଷ୍ଠେ ଥିଲାବେଳେ ପୁଣି ବକା ଛନ୍ତି ମାରି
ବଳାତ୍କାରେ ହରି ଥିଲେ ଗୋପୀଗଣ ଧରି ।
ଜୀବ ଥିବାଯାଏ ଯାଙ୍କୁ ପାପ ନ ଲାଗିଲା
ମରଣ ପରେ ଏ ପିଣ୍ଡେ କଳଙ୍କ ରହିଲା ।
ପୁଣି ଭାବିଲି ମୁହିଁ ତ ଅଟଇ ମନୁଷ୍ୟ
ମୁହିଁ ଛୁଇଁବାରୁ କିବା ଘଟେ ଏ ଭବିଷ୍ୟ ।
ଏମନ୍ତ ଭାବି ବିକଳ ହୁନ୍ତେ ଫାଲଗୁନି
ସେଠାରେ ଶୁଭିଲା ତହିଁ ଆକାଶରୁ ବାଣୀ ।
ଏ ପିଣ୍ଡକୁ ଭକ୍ଷି ନ ପାରିବ ଯେ ଅନଳ
କାହିଁପାଇଁ ତୁମ୍ଭେ ଏତେ ହେଉଛ ବିକଳ ।
ଏ ପିଣ୍ଡ ରହିବ ନୀଳସୁନ୍ଦର ପର୍ବତେ
ପୂଜା ସେ ପାଇବ ବହୁଦିନ ପରିଯନ୍ତେ ।
ଅନଳ ଲିଭାଇ ତୁହି କର ଆମ୍ଭ ବୋଲ
କାଢ଼ିଆଣି ସେ ପିଣ୍ଡକୁ ସମୁଦ୍ରରେ ମେଲ ।
ଦେବବାକ୍ୟ ଶୁଣି ଶୀଘ୍ର ଲିଭାଇଲେ ବହ୍ନି
ସେ ପିଣ୍ଡ କାଢ଼ି ଆଣିଲେ କରେ ଯଷ୍ଟି ଘେନି ।
ନେଇ ତାକୁ ଭସାଇଲେ ସମୁଦ୍ର ଜଳରେ
ପ୍ରେତକାର୍ଯ୍ୟ ଶେଷ କଲେ ଯଥା ନିମୟରେ ।
ଜାରାଶବରକୁ ପୁଣି ବୋଇଲେ କିରୀଟୀ
ସନ୍ଧାନେ ଯିବୁ ଏ ପିଣ୍ଡ ଲାଗିବ କେଉଁଠି ।
କେଉଁଠାରେ ଲାଗି ଏହା ହୋଇବେ ବିଖ୍ୟାତ
ଭଲରୂପେ ବୁଝୁଥିବୁ ଏଥିର ତଦନ୍ତ ।
ଜାରାଶବର ବୋଇଲା ରହିଲି ସନ୍ଧାନେ
ଏଥିରେ ହେଳା ମୋହର ନ ବୁଝିବ ମନେ ।
ଏହା କହି ପ୍ରଭୁଙ୍କୁ ସେ ହୃଦେ ସୁମରିଲା
ଭାର୍ଯ୍ୟାସହ ଜାରା ତହୁଁ ବାହୁଡ଼ିଣ ଗଲା ।
ଜାରାଶବରକୁ ବହୁ ତିଆରିଣ ପାର୍ଥ
ଗାଣ୍ଡିବ ଧନୁ ଧାରଣେ ହେଲେ ଅଶକତ ।
ମହୋଦଧି ତୀରେ ତୀରେ ଚଳିଲେ ବହନ
ପ୍ରବେଶ ହୋଇଲେ ଯହିଁ ଦ୍ୱାରକା ଭୁବନ ।
ରୈବତ ପର୍ବତେ ଯାଇ ବସି ଫାଲଗୁନି
ଧ୍ୟାନେ ସୁମରଣା କଲେ ବ୍ୟାସ ମହାମୁନି ।
ପାର୍ଥ ଚିନ୍ତନ୍ତେ ବ୍ୟାସଙ୍କ କମ୍ପିଲା ଆସନ
ଧ୍ୟାନେ ବ୍ୟାସେ ଜାଣିଲେକ ଚିନ୍ତଇ ଅର୍ଜ୍ଜୁନ ।
ତହିଁ ବେଗେ ପାର୍ଥ ପାଶେ ମିଳିଲେ ସେ ଆସି
ବିନୟେ ପ୍ରଣମି ପାର୍ଥ ବଚନ ପ୍ରକାଶି ।
ପ୍ରଭୁ ଆମ୍ଭଙ୍କୁ ଛାଡ଼ିଣ ଗଲେ ଏକା କରି
କାହୁଁ କାଳ ଆସି ତାଙ୍କ ପ୍ରାଣ ନେଲା ହରି ।
ଶୁଣି ବ୍ୟାସ ବୋଇଲେ ତୁ କେଉଁ କୃତ୍ୟ କଲୁ
କେଉଁଠାରେ ଶ୍ରୀକୃଷ୍ଣଙ୍କୁ ଛାଡ଼ିଣ ଅଇଲୁ ।
ପାର୍ଥ ବୋଇଲେକ ପୋଡୁଥିଲୁ ଚକ୍ରପାଣି
ଅଦ୍‌ଭୁତେ ଆକାଶରୁ ଶୁଭିଲାକ ବାଣୀ ।
ନ ପୋଡ଼ କୃଷ୍ଣଙ୍କୁ ଜଳେ ଭସାଇଣ ଦିଅ
ଦେବବାକ୍ୟେ କଲି ମୁହିଁ ତେମନ୍ତ ଉପାୟ ।
ଅଗ୍ନିରୁ କାଢ଼ି ଦେବଙ୍କୁ ମେଲିଦେଲି ଜଳେ
ଏବେ ଦ୍ୱାରକା ଯାଇ ନ ପାରଇ ବିକଳେ ।
ଯା ଶୁଣି କହିଲେ ବ୍ୟାସ ଶୁଣ ସବ୍ୟସାଚୀ
ସେ ପିଣ୍ଡ କଥା ତୋ ଆଗେ ପ୍ରକାଶ କରୁଛି ।
କଳିଯୁଗେ ଚାରିଲକ୍ଷ ବତିଶ ହଜାର
ବର୍ଷପୂଜା ପାଇବ ସେ ପିଣ୍ଡ ପୃଥିବୀର ।
ପାର୍ଥ ବୋଇଲେ ଶୁଣନ୍ତୁ ଆହେ ପିତୃପିତା
ମୁହିଁ ଅଇଲି କୃଷ୍ଣଙ୍କ ଘେନିଣ ବାରତା ।
କୃଷ୍ଣ କହିଥିଲେ ଏହା ମୋ ନାରୀଗଣଙ୍କୁ
ବାଲୁକା ନଦୀରେ ପାରେ ରଖିବ ତାହାଙ୍କୁ ।
ଏ ବିଷୟେ ହେଳା କେବେ ନ କରିବୁ ତୁହି
ବାର ବାର କହିଛନ୍ତି ପ୍ରଭୁ ଚେତୁଆଇ ।
ମୁଁ କେମ୍ନେ ଦେବି କୃଷ୍ଣଙ୍କ ମୃତ୍ୟୁର ସମ୍ବାଦ
ଶୁଣି ସ୍ତିରୀଏ କାନ୍ଦିବେ ସହିବ କା ହୃଦ ।
ଏଣୁ ଚିନ୍ତିଲି ତୁମ୍ଭଙ୍କୁ ସଙ୍ଗେ ଯିବି ନେଇ
ସେମାନଙ୍କୁ ବୋଧ ଦେବ ତୁମ୍ଭେ ବାକ୍ୟ କହି ।

ଯା ଶୁଣି ବ୍ୟାସ ବୋଇଲେ ଚାଲ ହେ ବହନ
ପାର୍ଥ ବ୍ୟାସ ତହୁଁ ଦୁହେଁ କରିଲେ ଗମନ ।
କୃଷ୍ଣଙ୍କୁ ନ ଦେଖି ସର୍ବେ ଆର୍ତ୍ତ ହେଉଛନ୍ତି
ଏକାଳେ ତହିଁ ମିଳିଲେ ବ୍ୟାସ ମହାଯତି ।
ପୁର ମଧ୍ୟେ ଯାନ୍ତେ ପାର୍ଥ ଦେଖି ବେନି ମାଏ
ଧାଇଁ ଅଇଲେ ପାଶକୁ ପୁଲକିତ କାୟେ ।
ଛପନକୋଟି ଯାଦବେ ତ୍ରିପୁରେ ନିଃଶଙ୍କା
ସର୍ବେ ମଲେ ବସୁଦେବ ରହିଥିଲେ ଏକା ।
କୃଷ୍ଣଙ୍କ ଭୁବନେ ଥିଲେ ତିନିପଦ୍ମ ନାରୀ
ଅର୍ଜ୍ଜୁନ ସମୀପେ ସର୍ବେ ଆସିଣ ପଚାରି ।
ସେମାନଙ୍କ କଥା ଶୁଣି ଅର୍ଜ୍ଜୁନ ବୋଇଲେ
ଯେଉଁ ଶାପ ଅଷ୍ଟବକ୍ର ଋଷି ଦେଇଥିଲେ ।
ସେ ଶାପରୁ ଶାମ୍ବ ଗର୍ଭୁ ଜନ୍ମିଥିଲା ଲୁହା
ସମୁଦ୍ରତୀରେ ନେଇଣ ଭସାଇଲେ ତାହା ।
ଘର୍ଷଣେ ସେ ଲୁହା ଛିଣ୍ଡି ବହିଯାଇ ଫେଣ
ତହିଁରୁ ଜନ୍ମିଣ ଥିଲା ସନ୍ତରାର ବଣ ।
କୋକୁଆ ମାରିବା ପାଇଁ ଯେଉଁ ରାତ୍ରେ ଗଲେ
ଏଥୁ ଯାଇ କାଦମ୍ବରୀ ପାନ ସର୍ବେ କଲେ ।
କାଦମ୍ବରୀ ପାନେ ସର୍ବେ ହୋଇଲେ ବାତୁଳ
ଯମୁନା ନଦୀର ତୀରେ ଲଗାଇଲେ ଗୋଳ ।
ରାମକୃଷ୍ଣ ତାହା ଖାଇ ଅଚେତନ ହୋଇ
ଭୂତଳେ ଶୋଇଲେ ଗୋଳ ନ ଜାଣନ୍ତି ସେହି ।
ଏ ସମୟେ ଦ୍ୱନ୍ଦ୍ୱ କରି ମରାମରି ହେଲେ
ସନ୍ତରା ବଣରୁ ଡାଳ ଭାଙ୍ଗିଣ ପିଟିଲେ ।
ଯାହାଙ୍କ ଦେହେ ନ ଭେଦେ ପାଶୁପତ କାଣ୍ଡ
ସେ ସନ୍ତରା ଡାଙ୍ଗେ ହେଲେ ସର୍ବ ଖଣ୍ଡ ଖଣ୍ଡ ।
ଛପନକୋଟି ଯାଦବେ ସମସ୍ତେ ମରିଲେ
ଚେତିଣ ଯା ଦେଖି ହଳୀ ଦେହ ତ୍ୟାଗ କଲେ ।
ଶେଷରେ କୃଷ୍ଣଙ୍କୁ ଜାରା ବିନ୍ଧିଲା ନାରାଚ
ସେ ଘାତେ ପ୍ରାଣ ତେଜିଲେ ପ୍ରଭୁ ଦେବରାଜ ।
ମୋତେ ରାଇଣ ଶ୍ରୀହରି ପ୍ରାଣତ୍ୟାଗ କଲେ
ବୋଇଲେ ଦ୍ୱାରକାକୁ ତୁ ଯିବୁ ରାତ୍ରକାଳେ ।
ସମସ୍ତ କନ୍ୟାମାନଙ୍କୁ ଆଣିବୁ ଯେ ରାତି
ବାଲୁକା ନଦୀର ପାରେ ଥୋଇବୁ ସବୁନ୍ତି ।
ତୁମ୍ଭ ସହିତରେ ଥିବେ ସର୍ବ କନ୍ୟାମାନେ
ତୁମ୍ଭ ପାଶକୁ ଆସିବେ ପ୍ରଭୁ ପ୍ରତିଦିନେ ।
ଏହା ଶୁଣି ସ୍ତମ୍ଭୀଭୂତ ସକଳ କାମିନୀ
ଶୋକଭରେ କିଛି କହି ନ ପାରନ୍ତି ବାଣୀ ।
ବେନି ନୟନରୁ ଲୁହ ବହେ ଝର ଝର
କି ହେଲା ବୋଲି ମାରନ୍ତି କପାଳରେ କର ।
ବ୍ୟାସ ବୋଇଲେ ବିଧବା ନୁହ କେହି ମାୟେ
ଗଲେ କୃଷ୍ଣଙ୍କୁ ଭେଟିବ ବାଲୁକାର ଯାଏ ।
ବ୍ୟାସ ପାର୍ଥ ଯା କହନ୍ତେ ବାସୁଦେବ ଶୁଣି
ସେ ରାତ୍ରେ ବିଜେ କରିଲେ ସମସ୍ତଙ୍କୁ ଘେନି ।
ବାଲୁକା ନଦୀକୁ ସର୍ବେ ପାରିହୋଇ ଗଲେ
ଘର ତୋଳାଇ ସେଠାରେ ସମସ୍ତେ ରହିଲେ ।
କାନ୍ଦି ସକଳ ବାଳୀଏ ବିକଳେ ବ୍ୟାସଙ୍କୁ
କହିଲେ କାହିଁ ଅଛନ୍ତି ଦେଖାଅ ନାଥଙ୍କୁ ।
କନ୍ୟାଙ୍କ ଆକୁଳେ ବ୍ୟାସ ମନ୍ତ୍ରେ ଆମନ୍ତ୍ରିଲେ
ଦିବ୍ୟ ଅବତାରେ କୃଷ୍ଣ ତହିଁ ବିଜେ କଲେ ।
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ସମସ୍ତଙ୍କ ପୁରେ କୃଷ୍ଣ ବିଜେ କଲେ ଆସି ।
ଲକ୍ଷେ ଷାଠିଏ ହଜାର ଅଶୀଏ କୁମର
ଏମାନେ ଆସି ମିଳିଲେ ଯେଝା ନାରୀ ପୁର ।
ଛପନକୋଟି ଯାଦବ ଆଉ ବୀର ଯେତେ
ଯେଝା ନାରୀ ସଙ୍ଗତରେ ମିଳିଲେ ସମସ୍ତେ ।
ହାସ୍ୟ ରସ କଉତୁକ କଲେ ସର୍ବେ ମିଳି
ବ୍ୟାସଦେବ ଧନ୍ୟ ଧନ୍ୟ କଲେ ସର୍ବବାଳୀ ।
ପୁଣି ବୋଇଲେ ତୁମ୍ଭଙ୍କୁ କି ଦେବୁ ହେ ବ୍ୟାସ
ଦୀର୍ଘାୟୁ ହୋଇଣ ତୁମ୍ଭେ ଦଶକଳ୍ପ ବସ ।
ଅଗସ୍ତି ବୋଇଲେ ରାଜା ଶୁଣ ଦେଇ ମନ
ଏହି ମୂଷଳୀ ପର୍ବରେ ହରିଙ୍କ ଆଖ୍ୟାନ ।
ପ୍ରତିଦିନ ଏହା ଯେହୁ କରିବ ପଠନ
ଅବଶ୍ୟ ଲଭିବ ସେହୁ ପୁତ୍ରପୌତ୍ରୀ ଧନ ।
ଯେଉଁମାନେ ଶ୍ରଦ୍ଧାଭରେ ଏହାକୁ ଶୁଣିବେ
ସର୍ବଦା କୃଷ୍ଣଙ୍କ ସେହୁ ଭକତ ହୋଇବେ ।
ସଂସାର ମାୟା ବନ୍ଧନୁ ଅବଶ୍ୟ ତରିବେ
ଲକ୍ଷ୍ମୀ କେବେ ସେମାନଙ୍କ ଗୃହ ନ ଛାଡ଼ିବେ ।
ଅର୍ଜିଥିବା ପାପମାନ ହୋଇବ ଖଣ୍ଡନ
ମହାଭାରତ ବିଷୟ ଶୁଣ ସୁଜ୍ଞଜନ ।
ପଣ୍ଡିତଜନ ମୋହର ନ ଧରିବ ଦୋଷ
ଶ୍ରୀହରିଙ୍କୁ ଚିନ୍ତି କହେ ଶ୍ରୀ ଶାରଳା ଦାସ ।

—০—

## ବାଲୁକାନଦୀ ପାରେ ଯଦୁବଂଶ ସ୍ତ୍ରୀଙ୍କ ବାସ ଓ ଅର୍ଜ୍ଜୁନଙ୍କ ଇନ୍ଦ୍ରପ୍ରସ୍ଥେ ଗମନ

ପୁଣି ପଚାରଇ ରାଜା ଆହେ ମହାମୁନି
ପବିତ୍ର ହୋଇଲି ବାସୁଦେବ କଥା ଶୁଣି ।
ଆହେ ମହାମୁନି ମୁହିଁ ପଚାରଇ ଭଲେ
ଯଦୁବଂଶ ସ୍ତିରୀମାନେ ତହୁଁ କିସ କଲେ ।

କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଯଦୁବଂଶ ନାରୀମାନଙ୍କର ବିବରଣ ।
ସ୍ତିରୀଜନମାନଙ୍କୁ ସେ ଅର୍ଜୁନ ପ୍ରବୋଧି
ରଖାଇଲେ ସେହିଠାରେ ଯାକୁ ଯଥାବିଧି ।
ପ୍ରଭାତ ହୁଅନ୍ତେ ବ୍ୟାସଦେବ ଏହା କଲେ
ସେଠାରେ ନଗର ପୁର ଯତ୍ନେ ବସାଇଲେ ।
ତୋଟା କୂପ ବାମ୍ପୀ ଆଦି ପୁଷ୍କରିଣୀ ମାନ
ଦେଖି ସକଳ ରମଣୀ ହେଲେ ତୋଷମନ ।
ସର୍ବ ଭିଆଇ ରଖିଲେ ତହିଁ ସ୍ଥାନେ ସ୍ଥାନେ
ଯେମନ୍ତ ବିଧିରେ ଥିଲା ଦ୍ୱାରକା ଭୁବନେ ।
ତେମନ୍ତ ପ୍ରାୟ ବୁଝିଣ ରହିଲେ ସମସ୍ତ
ସବୁକଥା ପାଶୋରିଲେ ପାଇ ତହିଁ ସୁସ୍ଥ ।
କଦଳୀ ପଣସ ଆତ ଆମ୍ବ ନାରୀକେଳ
ଟଭା ନାରଙ୍ଗ ବିବିଧ ସ୍ୱାଦୁ ସ୍ୱାଦୁ ଫଳ ।
ସକଳ ସଞ୍ଚିତ କରି ତହୁଁ ବେଦବ୍ୟାସ
ଅନ୍ତର୍ଦ୍ଧାନ ହୋଇ କରି ଗମିଲେ ଆକାଶ ।
ଅମର ପୁରକୁ ଯାନ୍ତେ ବ୍ୟାସ ମହାମୁନି
ତାହାଙ୍କୁ ଦେଖିଣ ପୂଜା କରି ସସ୍ତ୍ରଯୋନି ।
କୁଶଳ ବାରତା ପୁଚ୍ଛାକଲେ ସହସ୍ରାକ୍ଷ
କେଉଁସ୍ଥାନୁ ବିଜେ କଲେ ପରାଶର ବତ୍ସ ।
ବ୍ୟାସ ବୋଇଲେକ ତୁମ୍ଭେ ଶୁଣ ହେ ଦେବେଶ
କୃଷ୍ଣସହ ତାଙ୍କ ବଂଶ ହୋଇଲେ ବିନାଶ ।
ତାହାଙ୍କର ସ୍ତିରୀମାନେ ଦ୍ୱାରକାରେ ଥିଲେ
କୃଷ୍ଣ ଅବସାନବେଳେ ପାର୍ଥକୁ କହିଲେ ।
ବାଲୁକା ନଦୀର ପାରେ ମୋ ସ୍ତିରୀମାନଙ୍କୁ
ରଖିବୁ ନେଇଣ ତୁହି ସେଠାରେ ତାହାଙ୍କୁ ।
କୃଷ୍ଣଙ୍କ ପିଣ୍ଡକୁ ପାର୍ଥ ଜଳେ ମେଲିଦେଲା
ଶୋକେ ରୈବତରେ ଆସି ଆମ୍ଭଙ୍କୁ ଚିନ୍ତିଲା ।
ଚିନ୍ତିବା ମାତ୍ରକେ ଆମ୍ଭେ ଗଲୁ ତା ପାଶକୁ
ସମସ୍ତ ବିଷୟ ଫେଡ଼ି କହିଲା ଆମ୍ଭଙ୍କୁ ।
ତାହାକୁ ଘେନି ଆମ୍ଭେ ଦ୍ୱାରକାକୁ ଗଲୁ
କନ୍ୟାଙ୍କୁ ନେଇ ବାଲୁକା ପରେ ରଖାଇଲୁ ।
ସର୍ବ ସଞ୍ଚୟ କରିଛୁ ଆମ୍ଭେ ସେହିସ୍ଥାନେ
ସେଠାରେ ଶସ୍ୟ ଉତ୍ପତ୍ତି ହୋଇବ ଯେସନେ ।
ଦେଖି ଯଥାକାଳେ ତୁମ୍ଭେ ବରଷିବ ଜଳ
ଯେପରିକି ତହିଁ ଶସ୍ୟ ହୋଇବ ବହୁଳ ।
ଏମନ୍ତ କହିଣ ତହୁଁ ବ୍ୟାସ ତପୋଧନ
ବ୍ରହ୍ମାଙ୍କ ସଭାରେ ଯାଇ ମିଳିଲେ ବହନ ।
ଏ ଉତ୍ତାରୁ ଶୁଣ ରାଜା ପାର୍ଥ ତହିଁ ଥିଲେ
ତହୁଁ ଆସିବା ପାଇଁକି ଉଦ୍‌ବେଗ ହେଲେ ।

ରାତ୍ରକାଳେ ସେହିଠାରୁ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇଁ ଇନ୍ଦ୍ରପ୍ରସ୍ଥ ପୁର ।
ଯେବଣ ସ୍ଥାନରେ ଥିଲେ ଧରମ ଯୁଧିଷ୍ଠି
ସନ୍ନିଧିରେ ପ୍ରବେଶିଲେ ଯାଇଣ କିରୀଟୀ ।
ଦେଖି ଯୁଧିଷ୍ଠିଙ୍କୁ ପାର୍ଥ କଲେ ନମସ୍କାର
ବେନି ନୟନୁ ତାଙ୍କର ବହିପଡ଼େ ନୀର ।
ଦେଖିଣ ଅର୍ଜୁନ ମନ ଅତ୍ୟନ୍ତ ବିଷାଦ
ଭାଳନ୍ତି ଯୁଧିଷ୍ଠି କିସ ପଡ଼ିଲା ପ୍ରମାଦ ।
ଆସ ଆସ ଆରେ ପାର୍ଥ ପୁଚ୍ଛଇ ମୁଁ ତୋତେ
ଶ୍ରୀକୃଷ୍ଣଙ୍କର ବାରତା କହ ବାବୁ ମୋତେ ।
ତୋତେ ହକାରଇ କିସ କହିଲେ ଶ୍ରୀହରି
ସ୍ୱରୂପ ବଚନ ମୋତେ କହ ବେଗ କରି ।
ଶରୀର କମ୍ପଇ ତୋର ମନ ଦୁଃଖ ହୋଇ
କେବଣ ଆଶ୍ଚର୍ଯ୍ୟ ହେଲା କହ ଆରେ ଭାଇ ।
କେବଣ କାରଣେ ଗଲୁ ଆରେ ବାବୁ ପାର୍ଥ
କାହିଁପାଇଁ ଡକାଇଲେ ପ୍ରଭୁ ଜଗନ୍ନାଥ ।
ବୋଇଲେ ଅର୍ଜୁନ ତହୁଁ ଗଦ ଗଦେ ବାଣୀ
ଶୋକରେ ଶରୀର ଦେହ ଦାବାନଳ ଜିଣି ।
ବଡ଼ ଆକୁଳେ କହନ୍ତି ଶୁଣ ଆହେ ଦେବ
ସନ୍ତରା ବଣରେ ମଲେ ସମସ୍ତ ଯାଦବ ।
ମୁଁ ଯାଇ ମିଳେ ଯେ କାଳେ କୃଷ୍ଣ ସନ୍ନିଧାନେ
ପ୍ରଭୁ କଣ୍ଠାଗ୍ରତ ପ୍ରାଣେ ଥିଲେ ଅଚେତନେ ।
ଶ୍ରୀକୃଷ୍ଣ ଅନେକ କଥା କହିଲେ ଆମ୍ଭଙ୍କୁ
ପରିଶେଷେ କହିଲେ ସେ ଆସ ମୋ ପାଶକୁ ।
ବହୁତ କହିଲେ ମୋତେ ହୋଇଣ ବିନୟୀ
କେଉଁପରି ଛୁଇଁବି ମୁଁ ତୁମ୍ଭ ଆଜ୍ଞା ନାହିଁ ।
ଯେତେ ଡାକିଲେ ନ ଯାନ୍ତେ ତାହାଙ୍କର କତି
ଧନୁକୁ ବଢ଼ାଇ ଦିଅ ବୋଇଲେ ଶ୍ରୀପତି ।
ଏହା କହନ୍ତେ ବଢ଼ାଇ ଦେଲି ମୁଁ ଗାଣ୍ଡିବ
ଧନୁକୁ ଛୁଅନ୍ତେ ପ୍ରାଣ ତେଜିଲେ ମାଧବ ।
ଜାରା ଆଣିଲା ଅଗୁରୁ ବୃକ୍ଷୁ କାଠ ଚିରି
ମୁହିଁ କାଠ ସଜାଡ଼ିଲି ତିନିତାଳ ସରି ।
ତା ପରେ ଶୁଆଇ ଦେଲି ପ୍ରଭୁପିଣ୍ଡ ନେଇ
ତହିଁପରେ ସେ କାଠରେ ଲଗାଇଲେ ଜୁଇ ।
ରାତ୍ର ଦିବସରେ ତହିଁ ଜଳିଲା ବହନି
ପିଣ୍ଡ ନ ପୋଡ଼ି ପୋଡ଼ିଲା ହସ୍ତପଦ ବେନି ।
ନାକ କାନ ଆଖି ପାଟି ଦହନ ହୋଇଲା
କେବଳ ସେ ପିଣ୍ଡ ଗୋଟି ଦଗଧ ନ ହେଲା ।
ରାତ୍ର ଦିବା ଜଳି ପିଣ୍ଡ ଯେଣୁ ନ ପୋଡ଼ିଲା
ଆକାଶରୁ ଏହିପରି ଦୈବବାଣୀ ହେଲା ।

ଏ ପିଣ୍ଡ ଭସ୍ମ ନୋହିବ ବୁଝ ଫାଲଗୁନି
ସମୁଦ୍ରରେ ମେଲିଦିଅ ଯାଅ ଶୀଘ୍ର ଘେନି ।
ଏହା ଶୁଣି ତହୁଁ ମୁହିଁ କନ୍ଧ କରି ନେଲି
ସମୁଦ୍ର ଜଳରେ ନେଇ ଭସାଇଣ ଦେଲି ।
ସେଠାରୁ ବାହୁଡ଼ି ମୁହିଁ ଅଇଲି ତୁରିତେ
କୃଷ୍ଣଙ୍କ ଆଜ୍ଞାରେ ନେଲି ତାଙ୍କ ନାରୀ ଯେତେ ।
ବାଲୁକା ନଦୀର ପାରେ ସବୁଙ୍କୁ ରଖିଲି
ତୁମ୍ଭଙ୍କୁ କହିବା ପାଇଁ ଏଥକୁ ଅଇଲି ।
ସକଳ ବୃତ୍ତାନ୍ତ ଯହୁଁ କହିଲେ ଅର୍ଜୁନ
ଶୁଣି ଯୁଧିଷ୍ଠିର ଦେବ ହେଲେ ଅଚେତନ ।
ମୁଖେ ନୀର ସିଞ୍ଚି ପାର୍ଥ କଲେକ ସଚେତ
ଚାରିଭାଇ କାନ୍ଦିଲେ ଯେ ହୋଇଣ ଦୁଃଖିତ ।
ଚେତି ଯୁଧିଷ୍ଠି ବୋଲନ୍ତି ହୋଇଣ ତାଟକା
ଆମ୍ଭଙ୍କୁ ଛାଡ଼ିଣ କୃଷ୍ଣ କାହିଁଗଲୁ ଏକା ।
ଏହା କହି ଯୁଧିଷ୍ଠିର ରୋଦନ କରନ୍ତି
ଭାଇମାନେ ବୁଝାଇଲେ କେବେ ନ ବୁଝନ୍ତି ।
ତୋର ଅଭାବେ ଆମ୍ଭର ରାଜ୍ୟେ କିସ କାର୍ଯ୍ୟ
ତୋତେ ଦେଖି ଭୁଲିଥିଲି ସବୁ ଦେବରାଜ ।
ବନ୍ଧୁ ସୋଦରଗଣେ ମୋ ନାଶ ଗଲେ ସବୁ
କାହା ଆଗେ ଯାଇ ଆଉ ଏ ଦୁଃଖ କହିବୁ ।
ଶୋକରେ ଧର୍ମନନ୍ଦନ ହୋଇଲେ ଅଜ୍ଞାନ
କୋଳ କରି ଧଇଲେ ସେ ପଣ୍ଡୁବୀର ଭୀମ ।
ଶୁଣି ଦ୍ରୌପଦୀ କରନ୍ତି ଅନିର୍ବାର ଶୋକ
ତାଙ୍କ ଶୋକକୁ ନିବାରି ନ ପାରନ୍ତି ଲୋକ ।
କାନ୍ଦି କୃଷ୍ଣା ବାହୁନନ୍ତି ଆହେ ଚକ୍ରଧାରୀ
କେଣିକି ଆମ୍ଭମାନଙ୍କୁ ଗଲ ଛାଡ଼ିକରି ।
ପାଣ୍ଡବେ ସହାୟ ହୋଇ ପ୍ରତିଜ୍ଞା କରିଲ
ପାଣ୍ଡବଙ୍କ ହାତେ ପୃଥ୍ୱୀ ଭାରା ନିବାରିଲ ।
ଆବର ଜୀବନ୍ତେ କିସ ଅଛି ଅବା ଲେଖା
କେଉଁ କାରଣରୁ ଛାଡ଼ିଗଲ ପ୍ରାଣସଖା ।
ଶୋଷକ ନାଶକ ଅଟ ଜଗତାଧିକାରୀ
କି ଚରିତ କଲୁ ଆମ୍ଭଙ୍କୁ ତୁ ଛାଡ଼ିକରି ।
ପାଣ୍ଡବଙ୍କ ସବୁବେଳେ ତୁମ୍ଭେ ହିତକାରୀ
କିପରି ମୂର୍ଚ୍ଛିଣ ପ୍ରଭୁ ଗଲ ଛାଡ଼ିକରି ।
ସୁଭଦ୍ରା ଦେବୀ ଭିତରେ ଏ ବାରତା ପାଇ
ଭାଇଙ୍କ ଗୁଣ ସୁମରି କାନ୍ଦେ ଏହା କହି ।
ତୁମ୍ଭେ ଜଗତର ନାଥ ଅଟ ପରା ଭ୍ରାତ
ଏସନକ କେଉଁପରି ହେଲା ବିପରୀତ ।
ବସୁଦେବ ଦେବକୀ ଯେ ଯଦ୍ୟପି ଶୁଣିବେ
କିପରି ସେମାନେ ଆଉ ଜୀବନ ଧରିବେ ।

ମୋତେ କହୁଥିଲ ସଦା ଭଉଣୀ ଭଉଣୀ
କେଉଁଆଡ଼େ ଗଲ ପଦେ ନ କହିଣ ବାଣୀ ।
ଅଭିମନ୍ୟୁ ବୋଲି ମୋର ପୁତ୍ରେକ ଯେ ଥିଲା
ପଦ୍ମବ୍ୟୂହ ମଧ୍ୟେ ସେହି କୁମର ପଡ଼ିଲା ।
ପୁତ୍ରଶୋକ ଉପେକ୍ଷିଲି ତୁମ୍ଭ ମୁଖ ଦେଖି
ଏବେ ଭାଇ କାହିଁଗଲ ହେଲି ନିରିମାଖି ।
ପାର୍ଥେ ଭଦ୍ରା ବୋଲେ ନାଥ କୃଷ୍ଣ ଆମ୍ଭ ଆତ୍ମା
ତାହାଙ୍କୁ ଛାଡ଼ି ଅଇଲି କିପରି ମହାତ୍ମା ।
ମୋତେ ହରି ନେବାବେଳେ କି ନ କଲେ ଭାଇ
ବଳରାମେ ପର କଲେ ତୁମ୍ଭ ପକ୍ଷ ହୋଇ ।
ସବୁବେଳେ କୃଷ୍ଣ ତୋର ରଥରେ ସାରଥି
ତାଙ୍କ ମରଣରେ ତୋର ନୁହିଁଇ ବିପତ୍ତି ।
କେମନ୍ତେ ଛାଡ଼ିଲ ତୁମ୍ଭେ ବଳିଲାକ ସତ
କିପରି ଦହନ କଲ ଆହେ ପ୍ରାଣନାଥ ।
ଏ ସମୟେ ବ୍ୟାସଦେବ ଇନ୍ଦ୍ରପ୍ରସ୍ଥେ ଆସି
ଯୁଧିଷ୍ଠିଙ୍କି ବୁଝାଇଲେ ସନ୍ନିଧିରେ ବସି ।
ପୁଣି ବ୍ୟାସ ବୋଇଲେ ହେ ଶୁଣ ଯୁଧିଷ୍ଠିର
ପରୀକ୍ଷିତେ ରାଜ୍ୟ ଦେଇ ତୁମ୍ଭେ ତୀର୍ଥ କର ।
ବହୁତ ଧର୍ମେ ପାଳିଲ ତୁମ୍ଭେ ବସୁନ୍ଧରା
ଏବେ କଳିକାଳ ହେଲା ହେବ ପାପଭରା ।
କୋଟିଏ ତୀର୍ଥ କରିଣ ଯାଅ ହିମବନ୍ତ
ସେଠାରେ ଫିଟିଛି ସ୍ୱର୍ଗେ ଯିବାପାଇଁ ପଥ ।
ଶୁଣି ଯୁଧିଷ୍ଠିର ବ୍ୟାସଦେବ ପୁଚ୍ଛାକଲେ
କୃଷ୍ଣଙ୍କ ପିଣ୍ଡକୁ ପାର୍ଥ ପୋଡ଼ିଲା ଅନଳେ ।
ନ ପୋଡ଼ନ୍ତେ ସ୍ୱର୍ଗବାଣୀ ହେଲା ମେଲି ଜଳେ
ସେ ପିଣ୍ଡ କିସ ହୋଇବ ଏହି କଳିକାଳେ ।
ବ୍ୟାସ ବୋଇଲେ ତହୁଁ ଶୁଣ ଧର୍ମରାୟ
କୃଷ୍ଣଙ୍କର ଶରୀରଟି ଅଟଇ ଅକ୍ଷୟ ।
ଯେବଣ ଜାରାଶବର କଲା ଶରାଘାତ
ତାହାକୁ ପ୍ରସନ୍ନ ହୋଇଛନ୍ତି ଜଗନ୍ନାଥ ।
ଦିନେ ସ୍ୱପନେ କହିଲେ ତାକୁ ଦେବରାଜ
ମୋ ପିଣ୍ଡକୁ ନେଇ ବ୍ୟାଧ ତୁହି କର ପୂଜା ।
ଯା ଶୁଣି ସ୍ୱପନୁ ଚେତି ଉଠଇ ଶବର
ପାଶରେ ବସି କହନ୍ତି ଶଙ୍ଖ ଚକ୍ରଧର ।
ଉଠି ବସି ଧଡ଼ପଡ଼େ ଦେଖି ସାକ୍ଷାତରେ
ଦଣ୍ଡ ପ୍ରଣାମ କରିଣ ତାହାଙ୍କ ପାଶରେ ।
ସେ ପ୍ରତିମାକୁ ଘେନିଣ ଚଳିଲା ବହନ
ରୁଦ୍ରନଦୀ ତୀରେ ଯହିଁ ତ୍ରିଅମ୍ବକ ସ୍ଥାନ ।
ଧବଳ ପର୍ବତେ ଅଛି ଅଗୁରୁ ତରୁଏ
ସେ ବୃକ୍ଷତଳେ ସ୍ଥାପିଲା ପ୍ରଭୁ ଦେବରାୟେ ।

ପାଣି ପତ୍ର ନେଇ ନିତି ପୂଜା ସେ କରଇ
ବନୁ ପକ୍ୱଫଳ ଆଣି ଭୋଜନ ଦିଅଇ ।
ପୁତ୍ର ଭାରିଯା ତାହାର କେହି ନ ଜାଣନ୍ତି
ଏମନ୍ତ ଗୋପ୍ୟେ ସେ ପୂଜା କରୁଥାଇ ନିତି ।
ଜୟ ଜୟ ଜଗନ୍ନାଥ ଶଙ୍ଖଚକ୍ରଧାରୀ
ଜୟ ଜୟ ଦୀନବନ୍ଧୁ ଭକ୍ତ ହିତକାରୀ ।
ଭକତ ବାନ୍ଧବ ତୁମ୍ଭେ କମଳା ବଲ୍ଲଭ
ବଇକୁଣ୍ଠପତି ତୁମ୍ଭେ ଜୟ ବାସୁଦେବ ।
ତୁମ୍ଭ ନାମ ସୁଧାରସ ସଦା ପିଉ ମନ
ତବ ନାମ ଭାବି ଭାବି ଯାଉ ଏ ଜୀବନ ।
ଏହା ମାଗେ ନିରନ୍ତରେ ଶ୍ରୀ ଶାରଳା ଦାସ
ଶୁଣ ସାଧୁ ସୁଜ୍ଞଜନେ ମନ କର ତୋଷ ।

—0—

## ଶ୍ରୀକୃଷ୍ଣଙ୍କ ପିଣ୍ଡ ଅନ୍ୱେଷଣାର୍ଥେ ଚତୁର୍ଦ୍ଦିଗେ ଦୂତ ପ୍ରେରଣ ଓ ବାସୁ ବ୍ରାହ୍ମଣର ମାଧବ ଦର୍ଶନ

ପୁନରପି ଭକ୍ତିଭରେ ମନୁ ନରନାଥ
ଆସନରୁ ଉଠିକରି ଯୋଡ଼ି କରପତ୍ର ।
ଅଗସ୍ତି ମୁନିଙ୍କ ପାଦେ ନମସ୍କାର କଲେ
ଧୂପ ଦୀପ ନଇବେଦ୍ୟ ଦେଇଣ ପୂଜିଲେ ।
ବୋଇଲେ ଭୋ ମୁନି ଦୟା ରଖି ମୋହଠାରେ
ଭାରତ ସୁଧା ଆଖ୍ୟାନ କହ ଶ୍ରୀ ମୁଖରେ ।
ସେ ମୂର୍ତ୍ତିକୁ ଆଣି ବ୍ୟାଧ ସେଠାରେ ପୂଜିଲେ
ତାହାର ଭାରିଯା ପୁତ୍ର କେହି ନ ଜାଣିଲେ ।
ତାହାଠାରେ ମହାପ୍ରଭୁ ହୋଇଲେ ସନ୍ତୋଷ
ଏଥୁ ଅନନ୍ତରେ କଥା ପୁଣି ହେଲା କିସ ।
ସେ ବିଷୟ ସର୍ବ ଫେଡ଼ି କହନ୍ତୁ ଗୋସାଇଁ
ତାହା ଶୁଣିଲେ ସନ୍ତୋଷ ହୋଇବଇଁ ମୁହିଁ ।
ମୋ ମାନସ ତୃଷାର୍ତ୍ତକୁ ଆହେ ମୁନିବର
ଭାରତ ଚରିତ ନୀର ଦେଇ ତୃପ୍ତି କର ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମନୁରାଜା
ଏମନ୍ତ କେତେ ବରଷ ବ୍ୟାଧ କଲା ପୂଜା ।
ହରିବଂଶେ ଋତୁପର୍ଣ୍ଣ ବୋଲି ଥିଲେ ରାଜା
ଜାନୁଘଣ୍ଟ ନାମେ ହେଲା ତାହାର ଆତ୍ମଜା ।
ତାହାର କୁମର ନାମ ଅଟେ ଅଶ୍ୱମାଳି
ତା ଠହୁଁ ପୁତ୍ର ହୋଇଲା ତା ନାମ ଗୋପାଳି ।
ତାହାର ନନ୍ଦନ ନାମ ଅଟେ ପଶୁପତ୍ର
ଜୟନ୍ତ ବୋଲିଣ ସୁତ ତାର ହେଲା ଜାତ ।
ଜୟନ୍ତର ସୁତ ନାମ ହେଲା ସଦାଶିବ
ତାହାର ନନ୍ଦନ ନାମ ନୃପତି ଗାଲବ୍ୟ ।
ଗାଲବ୍ୟ ରାଜାର ପୁତ୍ର ଦୁହିତା ନ ଥିଲା
ପ୍ରଭୁଙ୍କ ପାଦରେ ରାଜା ଯହୁଁ ସେବା କଲା ।
ତାହାର ବୀର୍ଯ୍ୟେ ଗୋଟିଏ ହୋଇଲା ସନ୍ତତି
ତାହା ନାମ ଦେଲେ ଗାଲମାଧବ ନୃପତି ।
ବଡ଼ାଇ ପ୍ରତାପୀ ସେହି ହେଲା ମହାରାଜା
ଦିବାରାତ୍ର କରିଲା ସେ ବିଷ୍ଣୁଙ୍କର ପୂଜା ।
କୃଷ୍ଣ ଅବତାର ଯହୁଁ ହୋଇଲାକ ଲୀନ
କୃଷ୍ଣଙ୍କୁ ନ ଦେଖି ରାଜା ନ ଭୁଞ୍ଜିଲା ଅନ୍ନ ।
ମଦନ ବିତ୍ତ ବୋଲିଣ ତାହାଙ୍କର ମନ୍ତ୍ରୀ
ସେ ରାଜାଙ୍କୁ ଜଣାଇଲା ଶୁଣ ହୋ ନୃପତି ।
ମନଃଦୁଖେ ଆଉ ଅବା ମିଳିବ କି ଫଳ
ମାଧବ ଯେ ବିଜେ କଲେ ରୁଦ୍ରନଦୀ କୂଳ ।
ଶୁଣିଲି ମୁଁ ଜାରା ଘରେ ପ୍ରଭୁ ଭଗବାନ
କାଳିନ୍ଦୀ ହ୍ରଦରେ ସେହୁ ତେଜିଲେ ଜୀବନ ।
ତାଙ୍କୁ ପୋଡ଼ନ୍ତେ ପୋଡ଼ିଲେ ନାହିଁ ସେ ଅନଳେ
ପାର୍ଥ ତାଙ୍କୁ ନେଇ କରି ମେଲିଦେଲେ ଜଳେ ।
ଶୁଣି କରି ନରଇନ୍ଦ୍ର ଦୂତଙ୍କୁ ରାଇଲେ
ଚାରିଦିଗେ ଚାରିଦୂତ ଶୀଘ୍ର ପଠାଇଲେ ।
ପୂର୍ବଦିଗେ ବିଷ୍ଣୁ ଦାସ ଚଳିଲେ ତୁରିତ
ଉତ୍ତର ଦିଗକୁ ଗଲେ ହରିଦାସ ଦୂତ ।
ପଶ୍ଚିମେ ଗଲେ ସୁଦେବ ନାମେ ଦ୍ୱିଜବର
ବାସୁଦେବ ଦାସ ଗଲା ଦକ୍ଷିଣ ଦିଗର ।
କାଳିନ୍ଦୀର ତୀରେ ଅଛି ମନୋହର ବନ
ସେଠାରେ ଖୋଜଇ ଦ୍ୱିଜ ମାଧବଙ୍କ ଚିହ୍ନ ।
ତହୁଁ ଯାଇଣ ପ୍ରବେଶ ବୃନ୍ଦଅର୍କ ବନେ
ଭ୍ରମଇ ସେ ବାସୁଦେବ ବଡ଼ଇ ଗହନେ ।
ଛିଦ୍ରେକ ନ ଛାଡ଼ି ବୁଲେ ଖୋଜି ସବୁସ୍ଥାନ
ଭେଟିଲା ଯହିଁ ଶବରମାନଙ୍କ ସଦନ ।
ଜାରାଶବରର ଅଛି ସେହିଠାରେ ବାସ
କୃଷ୍ଣଙ୍କ ପିଣ୍ଡ ପୂଜଇ ସେ ରାତ୍ର ଦିବସ ।
ବାସୁଦେବ ନାମେ ଏକ ଜରାର ସନ୍ତତି
ବାସୁଦେବ ଦ୍ୱିଜ ଯାଇ ମିଳେ ତାର କତି ।
ଆଜାନୁଲମ୍ବିତ ଜୁଡ଼ା ତ୍ରିକଚ୍ଛ ବସନ
ଉତ୍ତରୀ ପଇତା କନ୍ଧେ ଶ୍ରୀମନ୍ତ ଲକ୍ଷଣ ।
ଗୁପତ କରି ରଖିଛି ସେହୁ ବେଦକାଣ୍ଡି
ପୋଥି ଛତ୍ର ଧରିଅଛି ଆଉ କୁଶବିଡ଼ି ।
ଗଡୁପତ୍ରୀ ରୁଦ୍ରାକ୍ଷ ଯେ କରେ ଜପାମାଳୀ
ଦ୍ୱିଜବର ପ୍ରବେଶିଲେ ସେ ଶବରପଲ୍ଲୀ ।

ଦେଖିଣ ବାସୁ ଶବର କଲା ବହୁ ପୂଜା
ଭକତ ଦେଖିଣ ତହିଁ ରହିଲା ସେ ଦ୍ୱିଜା ।
ବ୍ରାହ୍ମଣ ବୋଇଲା ନାମ ବାସୁଦେବ ମୋର
କିରାତ ବୋଇଲା ମିତ୍ର ହୋଇଲ ମୋହର ।
ଶବର ବୋଇଲ ମିତ୍ର ଶବରୀ ମିତଣୀ
ଉପୁଜିଲା ବହୁ ପ୍ରୀତି ଅଭେଦ ମୁଁ ଜାଣି ।
ଏ ରୂପେ ରହିଲେ ଦ୍ୱିଜ ତହିଁ କିଛିଦିନ
ଜାରାର ଶିରେ ପ୍ରସାଦ ଲାଗିବା ଦେଖିଣ ।
ବ୍ରାହ୍ମଣ ଗୁପ୍ତେ କହଇ ଶବରଣୀ ପାଶ
କଥାଏ ପୁଛିବି ମନେ ନ କରିବ ରୋଷ ।
ଶବରୁଣୀ ବୋଲେ ତୁମ୍ଭ ଜନ୍ମ ଅଟେ ଶ୍ରେଷ୍ଠ
କି କଥା ପୁଛିବ ପୁଛ ନ ରଖି କପଟ ।
ପ୍ରତିଦିନ ପାଣି ପତ୍ର ଘେନିଯାନ୍ତି ମିତେ
କେଉଁ ଦେବତାଙ୍କୁ ପୂଜି ଆସନ୍ତି ସେ ନିତ୍ୟେ ।
ଶବରୀ ବୋଇଲା ତାହା ମୁହିଁ ଜାଣେ ନାହିଁ
ଶ୍ୱଶୁର କି ଦେବପୂଜା କରନ୍ତି ସେ ଯାଇଁ ।
ତୁମ୍ଭର ମିତ ଆସନ୍ତୁ ପଚାରେ ତାହାଙ୍କୁ
ସେ ଜାଣିଥିବେ ନିଶ୍ଚୟ କହିବେ ଆମ୍ଭଙ୍କୁ ।
ଏକାଳେ ମିତ ଆସିଣ ସେଠାରେ ମିଳିଲା
ଶବରୀ ଶ୍ୱଶୁର ଦେବପୂଜା ପଚାରିଲା ।
ବାସୁଦେବ ବ୍ୟାଧ ବୋଲେ ମୁଁ ତା ଜାଣେ ନାହିଁ
ପିତା କି ଦେବ ପୂଜନ୍ତି କାହିଁ କିସ ଯାଇ ।
ତାହାଠାରୁ ବାସୁ ଦ୍ୱିଜ ଜାରା ପାଶେ ଗଲା
ପୁତ୍ର ମିତ୍ର ଦ୍ୱିଜେ ଦେଖି ବ୍ୟାଧ ପୁଚ୍ଛାକଲା ।
କେଉଁଠାରୁ ଆସିଥିଲ କାହିଁ ପୁଣ ଯିବ
ଏହା ଶୁଣି ବୋଇଲେ ସେ ଦ୍ୱିଜ ବାସୁଦେବ ।
ଆସିଥିଲି ତୀର୍ଥଭ୍ରମି ଏଠାରେ ମିଳିଲି
ତୁମ୍ଭମାନଙ୍କ ପ୍ରେମରେ ଭୁଲି ରହିଗଲି ।
ତୁମ୍ଭର ଭକ୍ତି ମୁଁ ଯାହା ଦେଖୁଛି ନେତ୍ରରେ
ତୁମ୍ଭ ପରି ଦେଖି ନାହିଁ ଜଣେ କେଉଁଠାରେ ।
ବଡ଼ ଶୁଦ୍ଧାଚାର ଅଟେ ତୁମ୍ଭର ଚରିତ
ନିତି ତୁମ୍ଭେ କାହିଁ ଯାଅ ଘେନି ଫୁଲ ପତ୍ର ।
ଜଣାଯାଏ କେଉଁ ଦେବେ ପୂଜ ନିତି ଯାଇ
ଥରେ ମୋତେ ସଙ୍ଗେ ନିଅ ଦେଖିବଇଁ ମୁହିଁ ।
ଶବର ବୋଇଲା ଯହିଁ ପୂଜଇ ମୁଁ ଦେବ
ସେଠାକୁ ହେ ଦ୍ୱିଜ ତୁମ୍ଭେ ଯାଇ ନ ପାରିବ ।
ବ୍ୟାଘ୍ର ଭାଲୁ ଆଦି ଜୀବେ ତହିଁ ବଡ଼ ଭୟ
କିପରି ନେବି ତୁମ୍ଭଙ୍କୁ ହେ ବିପ୍ର ତନୟ ।
ଯଦି ତୁମ୍ଭେ ନଷ୍ଟ ହୁଅ ପାଇବି ମୁଁ ଦୋଷ
ଆରବେଳେ ଏହିକଥା ମୋ ଆଗେ ନ ଭାଷ ।

ଜାରା ବଧୂ ବୋଲେ ପିତା ନ କର ଅନ୍ତର
ପ୍ରାଣୁ ଅଧିକ ଏ ମିତ୍ର ତୁମ୍ଭ ପୁତ୍ରଙ୍କର ।
ଜାରା ବୋଲେ ତେବେ କାଲି ଗଲେ ମୁଁ ପୂଜାକୁ
ସଙ୍ଗତରେ ନେଇଯିବି ଡାକିଣ ତୁମ୍ଭଙ୍କୁ ।
ଏହା ଶୁଣି ଦ୍ୱିଜବର ବାସକୁ ଫେରିଲେ
ରାତ୍ର ହୁଅନ୍ତେ ଖାଇପିଇ ସମସ୍ତେ ଶୋଇଲେ ।
ନିଶି ଶେଷ ହେଲା ଯହୁଁ ହୋଇଲା ପ୍ରଭାତ
ବ୍ୟାଧ ଦ୍ୱିଜ ସ୍ନାନ ଆଦି ସାରିଲେ ତୁରିତ ।
ତହୁଁ ବ୍ୟାଧ ବୋଲେ ଦ୍ୱିଜ ଚାଲ ମୋ ସଙ୍ଗରେ
ଅନ୍ଧପଟଳ ବାନ୍ଧିବି ମୁଁ ତୁମ୍ଭ ନେତ୍ରରେ ।
ଦ୍ୱିଜ ବୋଲେ ହେଉ ତେବେ ବାନ୍ଧ ହେ ସତ୍ୱରେ
ଅନ୍ଧପଟଳ ବାନ୍ଧିଣ ଦ୍ୱିଜ ନୟନରେ ।
ତହୁଁ ସଙ୍ଗେ ହାତ ଧରି ବାହାର ହୋଇଲା
ସେ ମହାବନସ୍ତ ମଧ୍ୟେ ଧୀରେ ଧୀରେ ଗଲା ।
କମଣ୍ଡଳେ ଜଳ ଦ୍ୱିଜ ଧରିଛନ୍ତି ହାତେ
ଯବଧାନ ତିଳ ବୁଣି ଯାନ୍ତି ଯିବା ପଥେ ।
ଶବର ପ୍ରବେଶ ହେଲା ରୁଦ୍ରନଦୀ ତୀର
ଘରଠାରୁ ଅଟଇ ଯେ ଦୁଇକ୍ରୋଶ ଦୂର ।
ଯେଉଁଠାରେ ବିଜେ କରିଛନ୍ତି ଚକ୍ରଧର
ସେହିଠାରେ ପ୍ରବେଶିଲା ଶବର କୁମର ।
ଦ୍ୱିଜର ଅନ୍ଧପଟଳ ସେଠାରେ ଫେଡ଼ିଲା
ପଟଳ ଫେଡ଼ନ୍ତେ ଦ୍ୱିଜ ପ୍ରଭୁଙ୍କୁ ଦେଖିଲା ।
ଅଗୁରୁ ବୃକ୍ଷର ତଳେ ପ୍ରଭୁ ଜଗନ୍ନାଥ
ବିଜୟ କରି ଅଛନ୍ତି ଲକ୍ଷ୍ମୀଦେବୀକାନ୍ତ ।
ଦେଖି ବିନୟେ ବ୍ରାହ୍ମଣେ କରେ ତହିଁ ସ୍ତୁତି
ଜୟ ହେ ମାଧବ ତୁମ୍ଭେ ବୈକୁଣ୍ଠାଧିପତି ।
ସଂସାର ସଂହାରକାରୀ ହେ ପରମ ଯୋଗୀ
କି ହେତୁରୁ ନାଥ ତୁମ୍ଭେ ହୋଇଲ ଅଭୋଗୀ ।
ସ୍ୱାମୀ ମୁଁ ଗାଲମାଧବ ନୃପତିର ଚାର
ଖୋଜି ଆସିଥିଲି ଭେଟ ପାଇଲି ତୁମ୍ଭର ।
ଗାଲମାଧବେ କହିକି ଏଠାରୁ ମୁଁ ଗଲେ
କୋଟି ପୂଜା ଦିଆଇବି ଆପଣଙ୍କୁ ଭଲେ ।
ଜୟ ଜୟ ଦୀନବନ୍ଧୁ ଅନାଦି ପୁରୁଷ
ଜୟ ଜୟ ଯୋଗେଶ୍ୱର ଜୟ ରମାଈଶ ।
ହେ ପ୍ରଭୁ କରୁଣାକର ଶରଣ ବତ୍ସଳ
ବହୁରୂପ ଧରି ତୁହି କାମିନୀଙ୍କ ମେଳ ।
ବେଦଶାସ୍ତ୍ରମାନଙ୍କେ ମୁଁ ଭଲେ ଅଛି ଜାଣି
କେମନ୍ତେ ଏଣେ ରହିଲ ଏ ଦୁର୍ଗମ ଭୂମି ।
ଶବର ଛାର କରଇ ତୋର ପାଦପୂଜା
ଅନୁଗ୍ରହ କଲେ ତୋତେ ପୂଜିବ ଯେ ରାଜା ।

ତୋ ଭକତ ହେବା ପାଇଁ ତାର ବଡ଼ ଆଶ
ତା ଆଜ୍ଞାରେ ବୁଲେ ବନେ ହେଲା ପାଞ୍ଚମାସ ।
ଜୟ ମାଧବ ପ୍ରସନ୍ନ ହୁଅ ଦେବରାଜା
ଜାମନିକ ତୀର୍ଥେ ଯାଇ ଘେନ ପ୍ରଭୁ ପୂଜା ।
କମଳାର ବଲ୍ଲଭ ତୁ ମୈତ୍ର ଯୁଧିଷ୍ଠିର
ବିକାଶୁ ତୋହର ନାମଗୋଟି ହୃଦେ ମୋର ।
ତୁଳସୀର ବଲ୍ଲଭ ତୁ ଜଗତର ଈଶ
କହଇ ଶ୍ରୀ ଶୂଦ୍ରମୁନି ଜନ୍ମେ ଜନ୍ମେ ଦାସ ।

—o—

## ଗାଲମାଧବ ରାଜାଙ୍କୁ ବାସ ବ୍ରାହ୍ମଣ ମାଧବ ଦର୍ଶନ ସମ୍ବାଦ ଦେବା ଓ ରାଜାଙ୍କର ତହିଁ ସୈନ୍ୟ ପ୍ରବେଶ

ଏଥୁଅନ୍ତେ ବିଲଙ୍କାରେ ମନୁ ମହାରାଜା
ଅଗସ୍ତିଙ୍କ ପାଦତଳେ କରି ଦିବ୍ୟପୂଜା ।
ବୋଇଲେ ହେ ମୁନି ଏହି ଭାରତ ଚରିତ
ତବ ମୁଖୁ ଶୁଣି ମୁହିଁ ହୋଇଲି ପବିତ୍ର ।
କୃଷ୍ଣଙ୍କ ନାମ ଶ୍ରବଣେ ଯେଣୁ ମୁଁ ଶୁଣିଲି
ଯମଦଣ୍ଡରୁ ନିଶ୍ଚୟ ଏଥର ବଞ୍ଚିଲି ।
ସେ ମହାଗୁରୁ ମାଧବ ଦର୍ଶନେ ବ୍ରାହ୍ମଣ
ବହୁମତେ ପ୍ରଭୁଙ୍କୁ ସେ କରିଲେ ଜଣାଣ ।
ଏ ପରେ ହୋଇଲା କହ କେବଣ ବିଷୟ
ତାହା ଶୁଣିଲେ ତୁଟିବ ମନରୁ ସଂଶୟ ।
ରାଜା ବାକ୍ୟ ଶୁଣି ତହୁଁ କହନ୍ତି ଅଗସ୍ତି
ଶୁଣ ମନଦେଇ ରାଜା ମୋହର ଭାରତୀ ।
ସେ ବ୍ରାହ୍ମଣ ଯହୁଁ ମାଧବଙ୍କୁ ଠାବ କଲା
ଶବରକୁ ଅନେକ ସେ ସମ୍ଭାଷି କହିଲା ।
ଏ ଦେବତା ତୁମ୍ଭଙ୍କୁ ଯେ ନ ଯୋଗାଇ ମିତେ
ନାରାୟଣ ଦେବ ଏହୁ ପୂଜୁ ତୁ କେମନ୍ତେ ।
କିରାତ ବୋଲେ ହେ ଦ୍ୱିଜ ପ୍ରଭୁ ଅନୁଗ୍ରହେ
ଜନ୍ମେ ଜନ୍ମେ ମୋହଠାରେ ଶ୍ରୀକୃଷ୍ଣ ସଦୟେ ।
ଏଥୁଅନ୍ତେ ସେ ଶବର ଦ୍ୱିଜକୁ କହଇ
ଚାଲ ମିତ୍ରେ ଯିବା ଏ ବନରୁ ବେଗହୋଇ ।
ଦିବସେ ଦିଶଇ ମହାଘୋର ଅନ୍ଧକାର
ସେଥିଲାଗି ମୋ ମନରେ ଲାଗେ ବଡ଼ ଡର ।
ଯା କହି ଦ୍ୱିଜ ନେତ୍ରରେ ପଟଳ ବାନ୍ଧିଲା
ଚାଲ ଯିବା କହି ଜରା ଆଗରେ ଚଳିଲା ।
କମଣ୍ଡଳ ମଧ୍ୟୁ କାଢ଼ି ତିଳ ଯବଧାନ
ଦ୍ୱିପାଶେ ବୁଣି ଚାଲଇ ପଛରେ ବ୍ରାହ୍ମଣ ।

ଶବର ପଲ୍ଲୀରେ ଆସି ପ୍ରବେଶ ହୋଇଲେ
ଏକମାସ ପରେ ଦ୍ୱିଜ ଶବରକୁ ବୋଲେ ।
ହେ ମଇତ୍ର ତାତ ଏବେ ଯିବି ମୋ ଘରକୁ
ପିଲାମାନେ କି କରନ୍ତି ଦେଖିବି ତାହାଙ୍କୁ ।
ଭଲା ପ୍ରୀତି ଉପୁଜିଲା ତୁମ୍ଭର ଏଠାରେ
ଛାଡ଼ି ଯିବାକୁ ତୁମ୍ଭଙ୍କୁ ନ ହୁଏ ମନରେ ।
ଯା କହି ଦ୍ୱିଜ ଶବର କଲା କୋଳାଗ୍ରତ
ପୁତ୍ରବଧୂ ତାର ଭକ୍ତି କରିଲେ ବହୁତ ।
ଆସିଲେ ଦ୍ୱିଜ ତାହାଙ୍କୁ ସୁକଲ୍ୟାଣ କରି
ପ୍ରବେଶ ହୋଇଲେ ଯାଇ କାଞ୍ଚନଗ୍ରପୁରୀ ।
ତେଣେ ତିନିଦିଗୁଁ ଦୂତେ ବାହୁଡ଼ି ଅଇଲେ
ରାଜାଙ୍କ ଛାମୁରେ ଆସି ବାରତା କହିଲେ ।
ଲୋଡ଼ି ସବୁଠି ଖୋଜିଲୁ ଆହେ ନୃପରାଣ
ଦେଖି ନ ପାରିଲୁ କାହିଁ ବିଷ୍ଣୁଙ୍କର ସ୍ଥାନ ।
ସେମାନଙ୍କଠାରୁ ଶୁଣି ଗାଲବ୍ୟ ସନ୍ତତି
ଆପଣା ମନ ମଧ୍ୟରେ ଚିନ୍ତା କଲେ ଅତି ।
ପାତ୍ର ମିତ୍ରଙ୍କୁ ଅନାଇ ଏମନ୍ତ ବୋଇଲେ
ଦକ୍ଷିଣ ଦିଗୁ କିମ୍ପାଇ ବାସୁ ନ ଅଇଲେ ।
କି ଅବା ଗହନ ବନେ ପଡ଼ିଲା ପ୍ରମାଦ
ଏହା ଭାଳି ରାଜା ମନେ ହୋଇଲେ ବିଷାଦ ।
ମନ୍ତ୍ରୀ ବୋଲେ ତୁମ୍ଭେ ରାଜା ଜାଣ ନାହିଁ ବିଧି
ଦୂତର ବିଳମ୍ବେ ନିଶ୍ଚେ କାର୍ଯ୍ୟ ହୁଏ ସିଦ୍ଧି ।
ତହିଁପରେ କିଛିଦିନେ ବାସୁ ବିପ୍ରବର
ପ୍ରବେଶ ହୋଇଲା ଯାଇ ରାଜାଙ୍କ ଛାମୁର ।
ତାଙ୍କୁ ଦେଖି ନରପତି ହରଷ ହୋଇଲେ
କାର୍ଯ୍ୟସିଦ୍ଧି ହୋଇଅଛି ବୋଲି ମନେ କଲେ ।
ସ୍ନାନ ଆଚମନ ତହୁଁ ମହାରାଜା ସାରି
ଯଥାବିଧି ବିପ୍ରର ସେ ପାଦପୂଜା କରି ।
ସେ ବିପ୍ରକୁ ନିକଟରେ ବସାଇ ରାଜନ
କଥାଛଳେ ପଚାରିଲେ ପ୍ରଭୁଙ୍କ ଆଖ୍ୟାନ ।
ତୁମ୍ଭ ବଚନକୁ ମୁହିଁ କରିଅଛି ଆଶ
ବିଷ୍ଣୁଙ୍କ ବିହୀନେ ମୁହିଁ ଯିବି ବନବାସ ।
ତହୁଁ ଦ୍ୱିଜ ବୋଲେ ରାଜା ସେଦିନ ମୁଁ ଗଲି
ବହୁତ ଗହନ ବନ ଲୋଡ଼ି ନ ପାରିଲି ।
ମନଦୁଃଖେ ଖୋଜି ଖୋଜି ବୁଲୁଥାଏ ବନେ
କିପରି କାହିଁ ପାଇବି ଭାଳୁଥାଏ ମନେ ।
ମାଧବୀ ନଦୀର ତୀରେ ଯାଇ ଠାବ କଲି
ଅପୂର୍ବ ବିଷ୍ଣୁ ପାଷାଣ ପ୍ରତିମା ଦେଖିଲି ।
କିରାତ କୁଳରେ ଜନ୍ମ ଅଜ ନାମେ ରାଜ
ଅଜପତି ବୋଲି କରି ତାହାର ତନୁଜ ।

ଅଜପତିର ନନ୍ଦନ ଅଟେ ରାଜରାଜ
ତାହାର କୁମର ନାମ ଅଟଇ ବିରାଜ ।
ବିରାଜ ନନ୍ଦନ ନାମ ଜରାଜ ଅଟଇ
ଜରାଜ ନନ୍ଦନ ନାମ ଜାରା ବୋଲି କହି ।
ଶୀତଳାଙ୍ଗ ଏ ନଦୀ ତୀରେ ଅଟେ ତାର ପଲ୍ଲୀ
ତା କୃପାରୁ ବିଷ୍ଣୁ ମୂର୍ତ୍ତି ମୁଁ ଯାଇଁ ଦେଖିଲି ।
ସେ ଶବରକୁ ପ୍ରସନ୍ନ ଛନ୍ତି ନାରାୟଣ
ମହାବିପିନେ ପୂଜେ ସେ ପ୍ରତିମା ପାଷାଣ ।
ବେଳେକ ଯମ ସଭାରେ ଥିଲେ ସେ ପ୍ରତିମା
ତାଙ୍କ ପାଦେ ସେବୁ ଥିଲେ ଯମ ମହାତମା ।
ମୃତ୍ୟୁଲୋକେ ଯାଇ ତାଙ୍କୁ ଦେଖିଗଲେ ତରି
ନକ୍ଷତ୍ର ହୋଇ ବସିଲେ ଦରଶନ କରି ।
ଯମ ଦେବତାର ଯହୁଁ ନ ଲାଗିଲା ଦଣ୍ଡ
ମହାପାପୀଏ ବସିଲେ ସ୍ୱର୍ଗେ ହୋଇ ରୁଣ୍ଡ ।
ଅନେକ ବିମୁଖ ହେଲେ ଏହା ଦେଖି ଯମ
ପୁଣି ବନେ ଥୋଇଲା ସେ ମାଧବ ପ୍ରତିମ ।
ଋଷିକୁଲ୍ୟା ନଦୀତୀରେ ଉତ୍ତର ଭାଗରେ
ଯାଉଁ ଯାଉଁ ପ୍ରବେଶିଲେ ସେହି ବ୍ୟାଧ ଘରେ ।
ଯେ ଜାରାର ପୁତ୍ର ଥିଲା ବାସୁଦେବ ବୋଲି
ଆଗ ତାହାଙ୍କ ସଙ୍ଗରେ ମଇତ୍ର ହୋଇଲି ।
କେତେକ ଦିନେ ତା ପିତା ଦେଖିଗଲା ମୋତେ
ଠାବ କରି ଆସିଅଛି ମିଥ୍ୟା ନାହିଁ ଏଥେ ।
ଶୁଣିଣ ଗାଲମାଧବ ସୈନ୍ୟବଳ ସାଜେ
ପାତ୍ର ଅମାତ୍ୟ ଘେନିଣ ରାଜା କଲେ ବିଜେ ।
ଆଗେ ବାସୁ ଦ୍ୱିଜ ପଛେ ରାଜାଦି ସଇନୀ
ସମଦଣ୍ଡରେ ଚଳିଲେ ଦିବସ ରଜନୀ ।
ତୁଳମାସ ଚୌଠି ଦିନ ଦ୍ୱିଜ ଦେଖିଗଲା
ମକର ଶୁକ୍ଳକ ଚୌଠି ଦିନ ଭେଟାଇଲା ।
ଶବର ପଲ୍ଲୀରେ ଯାଇ ଭେଟିଲେ ନୃପତି
ଶବର ଶବରୀ ତହିଁ କରନ୍ତି ବସତି ।
ସେହିଠାରୁ ନାରାୟଣ ଥିବା ସ୍ଥାନଯାଏ
ରାଜା ଯିବାପାଇଁ ବାଟ ଖୋଜିଣ ନ ପାଏ ।
ବାତସେନ ମନ୍ତ୍ରୀ ଆଉ ପାତ୍ର ଇନ୍ଦ୍ରସେନ
ବାସୁଦେବ ଏହି ତିନି ଗମନ୍ତି ଆଗେଣ ।
ରାଜା ବୋଲେ କେଉଁଠାରେ ରଖିଥିଲ ଦ୍ୱିଜ
ଚିହ୍ନ କିଛି ରଖିଥିଲେ ତାହା ବେଗେ ଖୋଜ ।
ଦ୍ୱିଜ ବୋଲେ ଯବଧାନ ବୁଣି ଯାଇଅଛି
ତହୁଁ କିଛି ଦୂର ଯାନ୍ତେ ଦେଖିଲେ ଉଠିଛି ।
ତାହାକୁ ଗୋଡ଼ାଇ ଯହୁଁ ଗଲା ଦଣ୍ଡଧାରୀ
ଅନ୍ତର୍ଦ୍ଧାନ ହୋଇଗଲେ ତହୁଁ ଦେବହରି ।
ଅଗୁରୁ ବୃକ୍ଷର ମୂଳେ ଦେଖେ ଦଣ୍ଡଧାରୀ
ପୂଜିବାର ଫୁଲ ସଞ୍ଚାମାନ ଅଛି ପୁରି ।
ବ୍ରାହ୍ମଣ ବୋଇଲା ଦେବ ଥିଲେ ଏହିଠାବେ
ଏଥୁ ଗୋପ୍ୟ ହୋଇଗଲେ ଅନ୍ୟ କେଉଁଠାବେ ।
ଶବରମାନଙ୍କୁ ରାଜା ଚାଣ୍ଡେ ପଚାରିଲେ
କାହିଁ ଠାରେ ଯେଉଁ ଦେବ ଥିଲେ କାହିଁ ଗଲେ ।
ତାହା ଶୁଣି ସେ ଶବର କରନ୍ତି ଉତ୍ତର
କେଉଁ ଦେବ ଖୋଜୁଅଛ ନ ଜାଣୁ ଆବର ।
ଏହା ଶୁଣି ନରନାଥ ମହାକୋପ କଲେ
ସେ ଶବରମାନଙ୍କର ମସ୍ତକ ଛେଦିଲେ ।
ଶବର ଶହେ ଛତିଶ ଜଣ ଘରେ ଥିଲେ
ବିଷ୍ଣୁ ଆଶ୍ରେ କରି ଏବେ ସର୍ବେ ନାଶ ଗଲେ ।
ବଂଶ ନାଶ ହେବା ଦେଖି ଅଇଲା ସେ ଜାର
ମହାଶସ୍ତ୍ର ଧରିଣ ସେ ଅଟେ ମହାବୀର ।
ରାଜା ମୁଖ ଚାହିଁଣ ସେ କରଇ ସେ ରାଗ
କି ଦୋଷରେ ରାଜା ମୋର ନାଶ ବଂଶବର୍ଗ ।
ଆମ୍ଭେମାନେ ବନେ ବଞ୍ଚୁ ଫଳମୂଳ ଖାଇ
ତୋହର କି ଦୋଷ କଲୁ କହ ତୁ ବୁଝାଇ ।
ନିଜ ବଂଶ ନାଶେ ଜରା ମହାକୋପ କଲା
ଧନୁରେ ନାରାଚ ସେହୁ ବେଗେ ପୂରାଇଲା ।
ବିନ୍ଧନ୍ତେ ନାରାଚ ନ ଯାଇ ସେ ଅନ୍ୟସ୍ଥାନ
ଅଶ୍ୱ ଗଜ ପଦାତି ଯେ ହୋଇଲେ ନିଧନ ।
ଚୋଖା ଚୋଖା ଶର କାଢ଼ି ଶବର ବିନ୍ଧଇ
ରାଜା ସୈନ୍ୟ ପଳାବନ୍ତି ଭୟଭୀତ ହୋଇ ।
ରାଜା ପ୍ରତିଶରେ ତାହା ନିବାରି ନ ପାରି
ସୈନ୍ୟ ସହିତେ ପଛକୁ ଗଲେ ଅପସରି ।
ଏକାଳେ ଆଦିତ୍ୟ ଅସ୍ତ ଗଲେ ହେଲା ରାତି
ଫେରି ଆସି କିଛି ଦୂରେ ଶୋଇଲେ ନୃପତି ।
ଶବର ସେଠାରୁ ଆସି ପୁରେ ପହଞ୍ଚିଲା
କୁଟୁମ୍ବ ନିଧନେ ଦୁଃଖେ ବହୁ ଚିନ୍ତା କଲା ।
ଭାଳଇ ଗାଲବ ରାଜା ହୋଇଣ ବିମୁଖ
ସ୍ୱାମୀ ତୋତେ ଲୋଡ଼ି ମୋର ହେଲା ଏତେ ଦୁଃଖ ।
ତୋତେ ଆଶ୍ରେ କରିଆସିଲି ଶବର ପଲ୍ଲୀ
ଅପନ୍ତରୀ ହୋଇଣ ମୁଁ ସବୁ ମରାଇଲି ।
ଏକାଶରେ ମାଇଲା ସେ ମୋହର ଯେ ବଳ
ରାତି ଶେଷ ହେଲେ ପୁଣି ମାରିବ ସକଳ ।
ପଶିଲି ଗହନ ବନ ଏ ଅରଣ୍ୟ ଭୂମି
ଦୁଃସହ ସଙ୍କଟୁ ମୋତେ ଉଦ୍ଧାର ହେ ସ୍ୱାମୀ ।
କିରାତର ବଂଶ ସୁଖେ ମାଇଲେ ମାରିବି
ସଖା ସୈନ୍ୟ ନାଶଗଲେ ମୁଁ କିସ କରିବି ।

ଏମନ୍ତ ବୋଲିଣ ତହିଁ ଭାଳେ ନରନାଥ
ନିଶାକାଳେ ଦେଖାଇଲେ ତାକୁ ଜଗନ୍ନାଥ ।
ଦେଖିଣ ଗାଲମାଧବ ହେଲା ପରଣାମି
ବୋଇଲାକ ଏବେ ଦେଲି ଶଙ୍ଖ ଚକ୍ରପାଣି ।
ମାଧବ ବୋଇଲେ ରାଜା ମନ୍ଦକୃତ୍ୟ କଲୁ
ଶବର ଯେ ମୋର ପୁତ୍ର ତାକୁ ତ ମାଇଲୁ ।
ତାହାର ଉପର ବଂଶ ମୋତେ କଲେ ପୂଜା
ତେଣୁ କରି ଭୟ କଲା ତାକୁ ଜନ୍ତୁରାଜା ।
ଏ ମର୍ତ୍ତ୍ୟ ଭୁବନେ ଥିଲି ମାଧବ ପ୍ରତିମା
ସର୍ବେ ମୋକ୍ଷ ହୋଇଗଲେ ମୁହିଁ ଦେଉଁ କ୍ଷମା ।
ଏତେକ ବିଚାର କରି ଯମ ଧର୍ମ ବେନି
ସଂଯମନୀ ପୁରକୁ ଯେ ମୋତେ ଗଲେ ଘେନି ।
ବହୁ ପ୍ରାଣୀ ମୋତେ ଦେଖି ହେଲେ ତହିଁ ମୋକ୍ଷ
ଯମ ଧର୍ମ ତାହା ଦେଖି ହୋଇଲେ ବିମୁଖ ।
ମୋତେ ଆଣି ଛାଡ଼ିଗଲେ ପୁଣି ବ୍ୟାଧ ପାଶେ
ସେ ଶବର ଶୁଣି ମୋତେ ଖଟିଲା ହରଷେ ।
ମୁଁ ଶବରୀ ନାରାୟଣ ରୂପେ ସତ୍ୟଯୁଗେ
ଶବର ସଙ୍ଗେ ମିଳିଲେ ଆନନ୍ଦ ସଂଯୋଗେ ।
ବିଧିପତି ବୋଲି ଥିଲା ଏକଇ ଶବର
ଶ୍ରୀୟା ନାମ୍ନୀ ବୋଲି କରି ଦୁହିତା ତାହାର ।
ସେହି ଶବରୀକୁ ମୁହିଁ ହୋଇକରି ବିଭା
ଶ୍ରୀଶବରୀ ନାରାୟଣ ରୂପେ ହେଲି ଶୋଭା ।
ହେ ରାଜା ଶବରୀଠାରୁ ଯେବେ ଭୋଗ ପାଉ
କେତେ ପ୍ରକାର ବୁଝାଇ ତାହା ତୋତେ କହୁ ।
ଗଣ୍ଡା ମୃଗ ମାଂସ ଶାଳପତ୍ର ଠୋଲା କରି
ଲବଣ କେଶର ତହିଁ ସଙ୍ଗତରେ ଭରି ।
ଏ ବିଧି ଯୋଗାଡ଼ମାନ ସମସ୍ତ ଭିଆଇ
ଜଳନ୍ତା ଅନଳେ ତାହା ବସାଏ ଯେ ନେଇ ।
ସୁପକ୍ୱ ମାଉଁସ ଯହୁଁ ତାପେ ହୁଏ ସିଦ୍ଧି
ଏହି ରାନ୍ଧଣାକୁ ବୋଲି ଶୌରୀଯୋଗ ବିଧି ।
ତଣ୍ଡୁଳ ଗୁଡ଼ିଏ ବାଟି ପତ୍ରେ ବାନ୍ଧିକରି
ପ୍ରବଳ ଅନଳେ ତାହା ପୋଡ଼ି ପାକ ସାରି ।
ସେହି ସେ ମହା ସୁଆଦ ଏକବର୍ଣ୍ଣ ପିଠା
ଦେହକୁ ବଡ଼ ହିତ ସେ ଲାଗେ ବଡ଼ ମିଠା ।
ଲୁହାଚଟୁରେ ପିଠାଉ ଲୁଚିଏ ସେ ଦେଇ
ଅଗ୍ନି ଭିତରେ ତାହାକୁ ବସାଏ ସେ ନେଇ ।
ତାହାର ନାମ ଚିତାଉ ତହିଁ ମୋର ଶ୍ରଦ୍ଧା
ତା ଖାଇଲେ ହିତ ହୁଏ ନୁହେଁ ରୋଗବାଧା ।
ଏମନ୍ତ କରି ଭୁଞ୍ଜାଏ ମୋତେ ଶବରୁଣୀ
ମାତାଠାରୁ ଅଧିକ ମୁଁ ତାକୁ ଅଛି ଜାଣି ।

ଏତେ ବାଗରେ ଆମ୍ଭଙ୍କୁ କରଇ ସେ ଭକ୍ତି
କି ହେତୁ ଶବର ବଂଶ ନାଶିଲୁ ନୃପତି ।
ମମ ଭକତ ଲୋକଙ୍କୁ କଲୁ ତୁ ବିନାଶ
ହେ ଗାଲବ ରାଜା ତୋର ନ ରହିବ ବଂଶ ।
ଗୋଟିଏ ମାତ୍ର ବଞ୍ଚିଣ ରହିଛି କିରାତ
ଏକୁ ଅନେକ ତା ବଂଶ ହୋଇବ ବର୍ଦ୍ଧିତ ।
ହେ ରାଜା ଆସ ଶବର ପାଶରେ ସମର୍ପୁ
ତାର ତୋର ଯେଉଁପରି ନୋହିବଟି ରିପୁ ।
ଏତକ ବୋଲିଣ ଦେବ ଗାଲବକୁ ନେଇ
ଜାରାଶବରର ତୁଲେ ପୀରତି କରାଇ ।
ତହିଁପରେ ମହାପ୍ରଭୁ ଜାରାକୁ କହିଲେ
ଆମ୍ଭର ଏକଥା ତୁହି ଶୁଣ ଜାରା ଭଲେ ।
ଦ୍ୱାପର ଅନ୍ତେ ପ୍ରବେଶ ହେବ କଳିଯୁଗ
ଆମ୍ଭର ଯେ ଇଚ୍ଛା ନାହିଁ ସର୍ବବାସ ଭୋଗ ।
ଆମ୍ଭର ଇଚ୍ଛାରେ ଆମ୍ଭେ ହୋଇବୁ ପାଷାଣ
ଯାମନିକ ତୀର୍ଥେ କର ପାଷାଣ ରୋପଣ ।
ଏ ଶବରବଂଶ ଏକ ଥିବ ମୋର କତି
ତାହାକୁ ଦେଖିଲେ ଆମ୍ଭେ ହୋଇବୁ ତୃପତି ।
ନଉକା ବାହନେ ମୋତେ ଘେନିଯାଅ ନୃପ
ନୀଳଗିରି ଶିଖେ ନେଇ ଆମ୍ଭଙ୍କୁ ଯେ ସ୍ଥାପ ।
ଏତେ ବୋଲି ଅନ୍ତର୍ଦ୍ଧାନ ହେଲେ ଦେବରାୟ
ପାଷାଣ ରୂପରେ ଦେବ ବିକାଶିଲେ କାୟ ।
ହରିହର ବଂଶୀ ଗାଲମାଧବ ଯେ ରାଜା
ସେହି ଯେ ମାଧବେ ଆଣି କରାଇଲେ ପୂଜା ।
ଯମେଶ୍ୱର ବୋଲି ତହିଁ ଅଛଇ ଦେବତା
ପ୍ରଳୟ ମହାପ୍ରଳୟେ ସେ ବିଜେ କରନ୍ତା ।
ଶ୍ରୀମାଧବ ପାଦପଦ୍ମେ ଚିନ୍ତନ୍ତେ ମୋ ହୃଦେ
ପରମ ଗତି ଲଭିବି ତାଙ୍କରି ପ୍ରସାଦେ ।
ଦଧିବର୍ଣ୍ଣ ପରି ଶ୍ୱେତ ଯାହାଙ୍କର କାୟ
ଶୁଦ୍ଧ ସ୍ଫଟିକ ବରନ ଶିଳା ତାର ଦେହ ।
ମାଧବ ସ୍ମରଣେ ନରେ ଅନୁକୂଳ ସିଦ୍ଧି
ମାଧବ ସ୍ମରଣ କଲେ ପ୍ରାପ୍ତ ହୁଏ ନିଧି ।
ମାଧବ ସୁମର ନରେ ସିଦ୍ଧହେବ କାମ
ମାଧବ ସ୍ମରଣେ ପ୍ରାପ୍ତ ହୁଏ ସର୍ବଧର୍ମ ।
ମାଧବ ସୁମରେ ନରେ ଦୁଷ୍କୃତ ଫାଟିବ
ମାଧବଙ୍କ ସ୍ମରଣରେ ପ୍ରମାଦ ନୋହିବ ।
ମାଧବ ସ୍ମରଣ କଲେ ଦିନର ସୁଫଳ
ମାଧବ ସୁମରେ ନରେ ଫିଟୁ ଯେ ବିକାର ।
ମାଧବ ସୁମର ନରେ ଜ୍ୱର ରୋଗ ତୁଟୁ
ମାଧବ ସୁମର ନରେ କୋଟିତୀର୍ଥ ଦିଶୁ ।

ମାଧବ ସୁମର ନରେ କୋଟିତୀର୍ଥ ଦିଶୁ
ମାଧବ ସୁମର ନରେ କ୍ରୋଧବନ୍ଧ ମେଣ୍ଟୁ ।
ଯୁଗାନ୍ତର ନାଥ ଏହି ଯମେଶ୍ୱର ଲିଙ୍ଗ
ଦ୍ୱିତୀୟେ ଦର୍ଶନ କରି ଶ୍ରୀ ଗାଲମାଧବ ।
ନିରନ୍ତରେ ଭାବ ମନେ ଶ୍ରୀପୁରୁଷୋତ୍ତମ
ତୁଳସୀ ବଲ୍ଲଭ ନାଥ ଅଟନ୍ତି ଉତ୍ତମ ।
ଜୟ ଜୟ ଶ୍ରୀମାଧବ ତବ ନାମଗୋଟି
କବି ଶ୍ରୀ ଶାରଳାଦାସ ତବ ପାଦେ ଲୋଟି ।
ହେ ବୁଧଜନେ ମୋହର ନ ଘେନିବ ଦୋଷ
ଜନ୍ମରୁ ମୂରୁଖ ଜ୍ଞାନ ନାହିଁ ମୋର ଲେଶ ।
ଜ୍ଞାନ ଅଜ୍ଞାନରେ ମୋର୍ ଅଛି ଏହି ଭାବ
ସର୍ବଦା ମୁଁ ଭାବୁଥିବି ପ୍ରଭୁ ବାସୁଦେବ ।
ଜୟ ତୁ ଜୟଦେବ ହେ ମୁନିଙ୍କ ଅଗସ୍ତି
ସାତ ସମୁଦ୍ରକୁ ଗଣ୍ଡୁଷରେ ପିଇଛନ୍ତି ।
ସେ ଅଗସ୍ତି ବକ୍ତା ବୈବସ୍ୱତ ମନୁ ଶ୍ରୋତା
ତାହା ବର୍ଣ୍ଣନେ କି ଶୂଦ୍ରମୁନି ସାମରଥା ।
ଅଗସ୍ତି ମହାମୁନିଙ୍କ ଚରଣ ପଙ୍କଜେ
ରହି ଶ୍ରୀ ଶାରଳାଦାସ ହୃଦୟରେ ଭଜେ ।

—୦—

## ନୀଳସୁନ୍ଦର ବର୍ଣ୍ଣନ ଓ ବଡ଼ଦେଉଳ ତୋଳା କଥା

ଏଥୁଅନନ୍ତରେ ବିଲଙ୍କ ଦେଶ ମନୁରାଜା
ଅଗସ୍ତି ମୁନିଙ୍କ ପାଦପଦ୍ମେ କଲେ ପୂଜା ।
ବୋଇଲେ ତୁମ୍ଭ ମୁଖରୁ ବିଷ୍ଣୁଙ୍କ ପୁରାଣ
ଶୁଣି ଅନେକ କଳୁଷ କରିଲି ଖଣ୍ଡନ ।
ଏଥୁଅନନ୍ତରେ କଥା କହ ତପୋବନ୍ତ
କୃଷ୍ଣଙ୍କୁ ଜଳରେ ମେଲିଦେଲେ ଯେବେ ପାର୍ଥ ।
ସେ ପିଣ୍ଡକୁ ଶବର ଯେ କରୁଥାଇ ରକ୍ଷା
ଆଉ କିବା ହେଲା ତାହା କେ କଲା ଅପେକ୍ଷା ।
ହେ ରାଜା ଶ୍ରବଣ ଡେରି ଶୁଣ କରି ଲୟ
ବିଷ୍ଣୁ ଆଜ୍ଞାରେ ମାଧବ ବଂଶ ଗଲା କ୍ଷୟ ।
ବିରାଟ ବଂଶରେ ଜାତ ଶ୍ରୀ ମଧୁକେଶ୍ୱର
ତାର ପୁତ୍ର ଇନ୍ଦ୍ରଦ୍ୟୁମ୍ନ ନାମେ ମହାବୀର ।
ସେ ରାଜା ଦିଗବିଜୟେ ଯାମନିକ ତୀର୍ଥେ
ପ୍ରବେଶିଲା ସଙ୍ଗେ ଘେନି ମନ୍ତ୍ରୀ ଅମାନାତ୍ୟେ ।
ପୁରାଣର ବାଣୀ ତହିଁ ଶୁକମୁନି ଭଣି
କହିଲେ ଗାଲମାଧବ ନୃପର କାହାଣୀ ।
ଏ ନୀଳସୁନ୍ଦର ନାମ ଯାମନିକ ତୀର୍ଥ
ଏଥି ବିଜୟ କରିବେ ଆସି ଜଗନ୍ନାଥ ।
ଶୁଣି ପର୍ବତ ଉପରେ ଉଠି ସେହି ନୃପ
ଦେଉଳ ତୋଳିବି ଏଥେ କରିଲେ ସଂକଳ୍ପ ।
ମନ୍ତ୍ରୀ କହିଲେ ସିଦ୍ଧାନ୍ତ ଶୁଣ ନୃପନାଥ
ଲକ୍ଷେକ ଯୋଜନ ଉଚ୍ଚ ଅଟେ ଏ ପର୍ବତ ।
ସୂର୍ଯ୍ୟଙ୍କର ରଥ ଏହି ପଥରେ ଗମନ୍ତେ
ଟାପୁ ବାଜି ଅଶ୍ୱ ଝୁଣ୍ଟି ପଡ଼ିଲାକ ଏଥେ ।
ସୂର୍ଯ୍ୟ ବୋଇଲେ ହେ ନୀଳସୁନ୍ଦର ପର୍ବତ
ଗିରିମେଳ ଛାଡ଼ି କିମ୍ପା ରହିଅଛ ଏଥ ।
ତହୁଁ ସୁନ୍ଦର ପର୍ବତ କହେ ସୂର୍ଯ୍ୟ ଆଗେ
ମୁନିବ୍ରତ ବୋଲି ଏକ ରାଜା ସତ୍ୟଯୁଗେ ।
ତାର ଶାପେ ଭୀମ ଯେ ବିଇଞ୍ଚ୍ ନାରାୟଣ
ହୋଇ କରି ପଳାଇଲେ ଛାଡ଼ି ଏହି ସ୍ଥାନ ।
ସେହିଦିନୁ ଏହିସ୍ଥାନେ ମୁହିଁ ପଡ଼ିଅଛି
ଆହେ ସୂର୍ଯ୍ୟଦେବ ସତ୍ୟ ମୁହିଁ ଯେ କହୁଛି ।
ସତ୍ୟଯୁଗକୁ ସୁଖେ ସେ ରାଜା ଭୋଗ କଲା
ତ୍ରେତୟାଯୁଗେ ସେ ରାଜା ରାଜ୍ୟ କରୁଥିଲା ।
କାଳେ ସେ ରାକ୍ଷସରୂପେ ହରିଲା ଯେ ସୀତା
ବିଧିରେ ରାମର ସେ ତ ଅଟଇ ବନିତା ।
କିଷ୍କିନ୍ଧ୍ୟା ବନରେ ରହି ପ୍ରଭୁ ରଘୁନାନ
ହରିବଳ ସଙ୍ଗେ କଲେ ଲଙ୍କାକୁ ଗମନ ।
ପର୍ବତ ପକାଇ ବନ୍ଧ ବାନ୍ଧିଲେ ଲଙ୍କାକୁ
ବନରେ ପର୍ବତ ବହି ଆଣିଲେ ସେଠାକୁ ।
ଅପାର ପର୍ବତ ଆଣି ତହିଁ ରୁଣ୍ଡ କଲେ
ରାମ ସେ ପର୍ବତ ମଧ୍ୟୁ ଦୁଇଟି ବାଛିଲେ ।
ନୀଳସୁନ୍ଦର ଆବର ନୀଳଗିରି ଦୁଇ
ପର୍ବତକୁ ବାଛି ରାମ ସେଠାବରେ ଥୋଇ ।
ବଇକୁଣ୍ଠ ସମାନରେ ତୁଳନା କରିଲେ
ଶରଧା କରିଣ ବେନି ପର୍ବତ ରଖିଲେ ।
ସେତୁବନ୍ଧ ବନ୍ଧାଇଣ ନୀଳକପି କରେ
ସେ ବନ୍ଧେ ଯାଇ ସମର କରିଲେ ଲଙ୍କାରେ ।
ମୋହର ଉପରେ ରାମଚନ୍ଦ୍ର ଥିଲେ ବସି
ହନୁମନ୍ତର କନ୍ଧରେ ବସିଲା ଆକର୍ଷି ।
ନୀଳପର୍ବତ ମୋହର ସଙ୍ଗତରେ ଥିଲା
ତାହା ଉପରକୁ ହନୁମନ୍ତ ଯେ ଡେଇଁଲା ।
ହନୁ ପାଦଭାରା ସେହି ସହି ନ ପାରିଣ
ପାତାଳରେ ପଶି ସେହୁ ହୋଇଲା ଗୋପନ ।
ଏହା ଶୁଣି ସୂର୍ଯ୍ୟଦେବ ସଂଶୟ ଛାଡ଼ିଲେ
ଏହିପରି ସେ ସୁନ୍ଦର ପର୍ବତେ କହିଲେ ।
ମନ୍ଦ କର୍ମ କଲୁ ତୁହି ହେ ଗିରି ସୁନ୍ଦର
ଭୀମର ହାତରେ ତୁହି ହେବୁ ଛାରଖାର ।

ଅନ୍ତର ହୋଇଲେ ଏହା ସୂର୍ଯ୍ୟଦେବ କହି
ସୁନ୍ଦର ପର୍ବତ ତହିଁ ମନରେ ଭାଳଇ ।
ତହିଁପରେ ରାଜା ନିଜ ମନ୍ତ୍ରୀକୁ କହଇ
ଶୁଣ ଆହେ ମନ୍ତ୍ରୀ ତାହା ବର୍ଣ୍ଣୁଅଛି ମୁହିଁ ।
ସତ୍ୟଯୁଗେ ଏ ପର୍ବତ ଲକ୍ଷେକ ଯୋଜନ
ଆଦିତ୍ୟର ଭୟରୁ ସେ ବପୁ କଲା କ୍ଷୀଣ ।
ତ୍ରେତୟା ଯୁଗରେ ସେହୁ ଅୟୁତ ଯୋଜନ
ଦ୍ୱାପରେ ଅଷ୍ଟୋତ୍ତରଶତ ଅଟେ ଯୁଣ ।
ଅଷ୍ଟବକ୍ର ଋଷି ଶାପେ ଲୁହାର ମୂଷଳ
ଏ ପର୍ବତେ ଘଷିଥିଲେ ଭୀମ ମହାବଳ ।
ଘୋରନ୍ତେ ଛାଡ଼ିଲା ପରବତ ଆୟତନ
ଛୋଟ ହେଉ ଫିଙ୍ଗିଦେଲା ତାହା ଭୀମସେନ ।
ମୀନ ଗିଳିଥିଲା ତାକୁ କୈବର୍ତ୍ତ ଆଣିଲା
ପ୍ରୀତି ହେତୁ ସେହି ମାଛ ଜରାକୁ ସେ ଦେଲା ।
ମୀନକୁ କାଟନ୍ତେ ଲୁହାଖଣ୍ଡ ବାହାରିଲା
ସେ ଲୁହାକୁ ଜାରା ଏକ ଶର ଗଢ଼ାଇଲା ।
ସେହି ନାରାଚେ ବଧିଲା ଶ୍ରୀକୃଷ୍ଣ ଦେବଙ୍କୁ
ଅର୍ଜ୍ଜୁନ ଦହନ କଲେ ନେଇ ସେ ପିଣ୍ଡକୁ ।
ନ ପୋଡ଼େ ଅର୍ଜ୍ଜୁନ ବୋଲି ହେଲା ସ୍ୱର୍ଗବାଣୀ
ଶୁଣି ପାର୍ଥ ସାଗରରେ ଭସାଇଲେ ଆଣି ।
ସେ ପିଣ୍ଡ କଳିଯୁଗରେ ହୋଇବ ଯେ ପୂଜା
ଶୁଣିଣ ସନ୍ତୋଷ ହେଲେ ଇନ୍ଦ୍ରଦ୍ୟୁମ୍ନ ରାଜା ।
ବୋଇଲେ ତାହାଙ୍କୁ ମୁହିଁ କେଉଁଠି ପାଇବି
ଦେଉଳେ ବସାଇ ତାଙ୍କୁ ସେବା ମୁଁ କରିବି ।
ମନ୍ତ୍ରୀ ବୋଇଲେ ଲୋଡ଼ିଲେ ପାଇବାକୁ ପିଣ୍ଡ
ଦେଉଳ ତୋଳିବା ପାଇଁ ରାଜା ଲଣ୍ଡଭଣ୍ଡ ।
ମନ୍ତ୍ରୀ ବାକ୍ୟ ଶୁଣି ରାଜା ନୀଳବଟ ତଳେ
କେଉଁପରି ହେବ କାର୍ଯ୍ୟ ମନେ ମନେ ଭାଳେ ।
ନୀଳକଳ୍ପବଟ ତଳେ ରାଜା ଭାଳେ ବସି
ଅଦ୍‌ଭୂତେ ଶିଳ୍ପକାର ପ୍ରବେଶିଲା ଆସି ।
କରପତ୍ର ଯୋଡ଼ି କରି କହିଲା ବିନ୍ଧାଣୀ
କିଛି ଚିନ୍ତା କର ନାହିଁ ଆହେ ନରମଣି ।
ଆପଣଙ୍କ କୀର୍ତ୍ତି ମୁହିଁ ସ୍ଥାପନ କରିବି
ଏଥିକି ମନରେ କିଛି ନ ବସନ୍ତୁ ଭାବି ।
ତୁଳମାସ କୃଷ୍ଣପକ୍ଷ ଚଉଠିର ତିଥି
ରୋହିଣୀ ନକ୍ଷତ୍ର ଗୁରୁବାର ଯେ ପାହାନ୍ତି ।
ବିଶ୍ୱାବସୁ ବୋଲି କରି ଏକ ଦ୍ୱିଜବାଳ
ସେ ଯାଇଣ ଦେଉଳକୁ କଲା ଅନୁକୂଳ ।
ଦେଉଳକୁ ମାପ କଲା ନେଇ ମାପକାଠି
ତିନିତାଳ ଆୟତନ କଲା ସେହୁ ବାଣ୍ଟି ।
ଆବର ଯେ ତିନିତାଳ ଉସର୍ଗ ଯେ କଲା
ପାଷାଣର ମନ୍ଦିର ଯେ ନିର୍ମିତ ହୋଇଲା ।
ଏ ବିଧିରେ ଦେଉଳର କାର୍ଯ୍ୟ ରାଜା ସାରି
ଯମେଶ୍ୱର ଦେଉଳରେ ଶୁଏ କାଷ୍ଠା କରି ।
ଚଉଦ ଦିବସ ନିରାହାର ଉପବାସେ
ଇନ୍ଦ୍ରଦ୍ୟୁମ୍ନ ରହିଲା ଯେ ଦେଉଳ ପାରୁଶେ ।
କଠୋର ଦେଖିଣ ତାର ସେହି ମହାଲିଙ୍ଗ
ପଚାରିଲେ ରାଜା କିମ୍ପା ପଡ଼ି ନିଜ ଅଙ୍ଗ ।
ପୁଣି ଇନ୍ଦ୍ରଦ୍ୟୁମ୍ନ ରାଜା ଉଠି ପରଣାମି
ବୋଇଲେ ମୋତେ ତାରନ୍ତୁ ଆହେ ଦେବସ୍ୱାମୀ ।
ଯମେଶ୍ୱର ବୋଇଲେ ଏ ଯାମନିକ ତୀର୍ଥ
ଜନ୍ତୁହତ୍ୟା ଦୋଷ ସବୁ ଏଥି ହୁଏ ହତ ।
ଚୌରାଅଶୀ କୋଟି ଜୀବ ଯେ ନାମ ନିନ୍ଦଇ
ଯମେଶ୍ୱର ଦରଶନେ ତାର ପାପ ଯାଇ ।
ପ୍ରତିବର୍ଷ ମକର ମାସର ଆଦ୍ୟ ଦିନ
ଯେଉଁମାନେ ଯାମନିକେ କରନ୍ତି ଯେ ସ୍ନାନ ।
ସେହିଠାରେ ଯମେଶ୍ୱର କରନ୍ତି ଦର୍ଶନ
ମୁକତି ଲଭନ୍ତି ସେହୁ ଶୁଣ ହେ ରାଜନ ।
ଯାମନିକେ ସ୍ନାନ ସାରି ଦୋଷ ହରେ ଆସି
ଯେ ଏଥେ ସ୍ନାନ କରିବେ ପାପ ଯିବେ ନାଶି ।
ଯମର ଲେଖନକାରୀ ଏଥେ ରହିଥାଏ
ଯେଉଁ ଲୋକ ଏହି ତୀର୍ଥେ ତୀର୍ଥ କରିଥାଏ ।
ଲେଖନକାରୀ ସକଳ ଦେଖୁଥାଏ ରହି
ତୀର୍ଥବାସୀଙ୍କର କଥା ଯମକୁ କହଇ ।
ନାନା ପାପ କରିଥାଏ ଯେ ଜ୍ଞାନ ଅଜ୍ଞାନେ
ଯମ ତାକୁ ଶାସ୍ତି ଦେଇ ନ ପାରଇ ଆନେ ।
ଆମେ ଯମେଶ୍ୱର ନିଜ ତୀର୍ଥ ଅଧିପତି
ନିସ୍ତାରିଲୁ ଏବେ ତୁହି ଉଠ ନରପତି ।
ପୁଣି ଇନ୍ଦ୍ରଦ୍ୟୁମ୍ନ ରାଜା ଉଠି ପ୍ରଣମିଲା
ଛିଡ଼ାହୋଇ କରଯୋଡ଼ି ଏମନ୍ତ କହିଲା ।
ହେ ଦେବ ତବ ଦର୍ଶନେ ନିସ୍ତରିଲି ମୁହିଁ
କିନ୍ତୁ ମୋ ବାସନା ଯାହା ପଚାରେ ଗୋସାଇଁ ।
ନିର୍ମାଣ କରିଛି ମୁହିଁ ଦେଉଳ ଗୋଟିଏ
କି ଦେବତା କରିବଇଁ ତହିଁରେ ବିଜୟେ ।
ତୁମ୍ଭ ଚରଣେ ଶରଣ ଅଟେ ମୁଁ ନିରତେ
ଦୟାକରି ସୁବିଚାର ଦିଅ ପ୍ରଭୁ ମୋତେ ।
ସୁବିଜ୍ଞ ପୁରୁଷ ତୁମ୍ଭେ ଅଟ ଦେବ ଦେବ
ଅଗତିର ଗତି ନାଥ ଅଯୋନି ସମ୍ଭବ ।
ସୃଷ୍ଟି ସ୍ଥିତି ପ୍ରଳୟ ଯେ କଲେ ନିରନ୍ତର
ଦୀନପତି ଦୟାବାନ ହୋଇ କୃପା କର ।

ଯେ ଦେବ ପୂଜିଲେ ମୋର ହେବ ସଦ୍‌ଗତି
ସୃଷ୍ଟି ପ୍ରଳୟଯାଏ ଯେ ରହିଥିବେ ଏଥି ।
ଯମେଶ୍ୱର ବୋଇଲେ ତୋ ଉତ୍ତମ ମହିମା
ଉତ୍ତର ଦିଗରେ ଅଛି ମାରକଣ୍ଡ ବ୍ରହ୍ମା ।
ଆମ୍ଭର ଆଜ୍ଞାରେ ସେହି କ୍ଷେତ୍ରରେ ବିହରି
ସୃଷ୍ଟିକର୍ତ୍ତା ସେହି ଅଟେ କାଳ ଅଧିକାରୀ ।
ତାକୁ ଇନ୍ଦ୍ରଦ୍ୟୁମ୍ନ ତୁହି ଯାଇ କର ପୁଚ୍ଛା
ଯେ ତୋତେ କହିଣ ପୂର୍ଣ୍ଣ କରିବ ତୋ ବାଞ୍ଛା ।
ସେ ଯମେଶ୍ୱର ଶିବଙ୍କ ଚରଣ କମଳେ
ଶାରଳା ଦାସର ମନ ରହୁ ସବୁବେଳେ ।

—o—

## ମାରକଣ୍ଡ ବ୍ରହ୍ମାଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ଓ ଗୋମୁଖୀ ହରିଙ୍କ କଥା

ଅଗସ୍ତିଙ୍କ ପାଦେ ପଡ଼ି ମନୁ ନରନାଥ
ମାର୍କଣ୍ଡର କଥା ପୁଚ୍ଛେ କହ ତପୋବନ୍ତ ।
ଅଗସ୍ତି କହିଲେ ରାଜା ଯମେଶ୍ୱର କାଶୀ
ମାର୍କଣ୍ଡ ସେ ବନ ଯହୁଁ କହିଲେ ବିଶେଷି ।
ଇନ୍ଦ୍ରଦ୍ୟୁମ୍ନ ପୁଚ୍ଛାକଲେ ସେ ଯେଉଁ ମହାତ୍ମା
ଏ ମୃତ୍ୟୁଭବନ ନାମ ବୋଇଲାରେ ବ୍ରହ୍ମା ।
ପୂର୍ବର ଚରିତ ତୋତେ କହୁଅଛି ଶୁଣ
ଭାବ ନିବାରଣେ କୃଷ୍ଣ ସଂସାରେ ଜନମ ।
ଆଦ୍ୟ ଅବତାରେ ଯଦୁ ନାମେ ଋଷି ଥିଲେ
ବସୁଦେବ ବୋଲି ତାର ଶିଷ୍ୟ ଯେ ହୋଇଲେ ।
ବସୁଙ୍କ ସୁତ ଅନନ୍ତ ନାମେ ମହାଯତି
ସୁଦେବ ବୋଲିଣ ହେଲେ ତାହାଙ୍କ ସନ୍ତତି ।
ସୁଦେବର ପୁତ୍ର ଏହି ମାରକଣ୍ଡ ନାମ
ସାତକଳ୍ପ କଲେ ବିଷ୍ଣୁ ଗର୍ଭରେ ବିଶ୍ରାମ ।
ତୋଷେ ନାରାୟଣ ତାକୁ ଦେଲେ ଏହି ଦୀକ୍ଷା
ବିହନ୍ତା ପୁରୁଷ ତୋର ପୂର୍ଣ୍ଣ ହେଉ ବାଞ୍ଛା ।
ସେହି ମାରକଣ୍ଡ ଋଷି ବ୍ରହ୍ମାରୂପ ଧରି
ନବ ସୃଷ୍ଟି ଏ କରିଣ ଆତଯାତ କରି ।
ମାରକଣ୍ଡଙ୍କ କୁମର ସୁରଥ ଯେ ଋଷି
ସୁଷେଣ ନାମରେ ହେଲେ ଏହାଙ୍କର ଶିଷି ।
ସୁଷେଣର ପୁତ୍ର ବଇଷ୍ଣବ ନାମେ ଦ୍ୱିଜ
ତାହାର ନନ୍ଦନ ନାମେ ଯେ ତରୁଣ ତେଜ ।
ତରୁଣ ତେଜର ପୁତ୍ର ନାମ ବାସୁଦେବ
ତାହାର ଘରେ ଜନମ ହୋଇଲେ ମାଧବ ।
କୃଷ୍ଣଙ୍କର ଅବତାର ବସୁଦେବ ଘରେ
ଯଶୋଦାକୁ ସମର୍ପିଲା କଂସରାଜା ଡ଼ରେ ।

ସତ୍ୟଯୁଗେ ଦଶାନନ ସ୍ୱର୍ଗେ ଧାଡ଼ି ଦେଲା
ବତିଶସସ୍ର କନ୍ୟାକୁ ତହିଁ ହରି ନେଲା ।
ଲଙ୍କା ଭୁବନେ ରଖିଲେ ତାଙ୍କୁ ରକ୍ଷପତି
ସେ କନ୍ୟାଏ କେବେ ଯେ ହେଲେ ରଜୋବତୀ ।
ରାବଣର ହାସ ପରିହାସର ନିମନ୍ତେ
ରଜୋବତୀ ନୋହିଲେ ସେ ବହୁଯୁଗ ଅନ୍ତେ ।
ରାବଣ ତେପନଯୁଗ ଅନ୍ତେ ନାଶଗଲା
ବିଭୀଷଣ ସେ କନ୍ୟାଙ୍କୁ ନେଇ ସ୍ୱର୍ଗେ ହେଲା ।
ବୋଇଲା ଯାଙ୍କୁ ରାବଣ ନେଇଥିଲା ହରି
ଭୋଗ କରି ନ ପାରି ସେ ଏବେ ଗଲା ମରି ।
ଅସୁରେ ଦୂଷିତ ଏହି ନୁହନ୍ତି ଯୁବତୀ
ସମ୍ଭାଳ ଏବେ କନ୍ୟାଙ୍କୁ ଆହେ ଶଚୀପତି ।
ଶୁକ୍ର ବୋଇଲେ ଏଥିରେ ଷୋଳସସ୍ର ବାଳୀ
ଗୋପରେ ବଢ଼ି ହୁଅନ୍ତୁ କୃଷ୍ଣେ କୁତୂହଳୀ ।
ଦଶାନନ ହରି ନେଲା ଶ୍ରୀରାମ ଘରଣୀ
ଏ ରାବଣ ଭାର୍ଯ୍ୟା ଯାଙ୍କୁ ହରୁ ଚକ୍ରପାଣି ।
ଆଉ ଷୋଳସସ୍ର କନ୍ୟା ଥାଉ ତୋର ତହିଁ
ନାରଦ ଧାଡ଼ିରେ ତୋଷ କରିବଇଁ ଦେଇ ।
ନାରକାସୁରେ ବଧିବେ ଦେବ ଚକ୍ରପାଣି
ତାର ତହୁଁ ନବେ ଷୋଳସହସ୍ର ରମଣୀ ।
ଗୋପପୁରେ ଥାଅ ଷୋଳସହସ୍ର କୁମାରୀ
କୃଷ୍ଣ ଅଙ୍ଗସଙ୍ଗେ ତୁମ୍ଭେ ଦୋଷୁ ହେବ ପାରି ।
ରାବଣ ଯେ ହରିନେଲା ରାମଙ୍କ ଘରଣୀ
ହରଣ ଦୋଷରୁ ଫଳ ପାଇବ ସେ ପୁଣି ।
ତୁମ୍ଭ ପାପ ନାଶଯିବ କୃଷ୍ଣଦେହ ଲାଗି
ଅମର ସ୍ୱର୍ଗେ ବସିବ କୃଷ୍ଣେ ସଉଭାଗୀ ।
ଯମେଶ୍ୱର ବୋଇଲେ ହେ ଶୁଣ ଇନ୍ଦ୍ରଦ୍ୟୁମ୍ନ
କନ୍ୟାମାନେ ଥାଆନ୍ତି ଯେ ନନ୍ଦନାମେ ବନ ।
ଯାବତ କାଳ ନୁହନ୍ତି ସେହୁ ରଜୋବତୀ
ଅସୁର କହିଲେ ଯାଙ୍କୁ ଦିଅ ସୁରପତି ।
ଦେବତାଙ୍କ ସ୍ତିରୀ ବୋଲି ନିଅନ୍ତି ଉଷତେ
ନ ଦେଲେକ ଅଙ୍ଗ ଅସୁରଙ୍କୁ କଦାଚିତେ ।
ଦେବ ଦାନବେ ନୁହନ୍ତି ଯାଙ୍କ ରଜୋକାରୀ
ଥାଆନ୍ତି ଏ ରଙ୍ଗାବତାରତୁ ଦେହ ଧରି ।
କୃଷ୍ଣ ବିନା ଏହାଙ୍କର ଆନେ ନାହିଁ ରତି
ଏହାଙ୍କୁ ହରଣ କଲେ ଦୈତ୍ୟ ନାଶଯାନ୍ତି ।
ଏହିପରି କେତେ କଥା ରାଜାକୁ ସେ କହି
ତହିଁପରେ ଅନ୍ୟ କଥା କହନ୍ତି ବୁଝାଇ ।
ଆହେ ଇନ୍ଦ୍ରଦ୍ୟୁମ୍ନ ଆମ୍ଭେ ଏଥି ବିଜେ କଲୁ
ମହାଶୟ ହୋଇ ବହୁ ପ୍ରଳୟ ଦେଖିଲୁ ।

ଯୁଗକେ ହୁଅନ୍ତି କୃଷ୍ଣ ରଙ୍ଗ ଅବତାର
ଯୁବତୀଙ୍କ ସଙ୍ଗେ ଏହି ଛାଡ଼ନ୍ତି ଶରୀର ।
ସେ ପିଣ୍ଡ ହୁଅଇ ନୀଳଶିଖରରେ ପୂଜା
ପ୍ରଳୟ ସେ ହେଉଥାଇ ଶୁଣ ଆହେ ରାଜା ।
ବସୁଦେବ ସୁତ କୃଷ୍ଣ ଗୋପପୁରେ ଭ୍ରମି
ଗୋପପୁର ନାୟିକାଙ୍କ ସଙ୍ଗେ ସୁଖେ ରମି ।
ବଇଶାଖ ଶୁକ୍ଳପକ୍ଷ ଦ୍ୱିତୀୟାର ତିଥି
ରୋହିଣୀ ନକ୍ଷତ୍ର ବାର ଅଟେ ବୃହସ୍ପତି ।
କୁଞ୍ଜଲତା ମଧ୍ୟେ ହରି ଛାଡ଼ିଣ ବାଛୁରୀ
ଜଳକ୍ରୀଡ଼ା କଲେ ହରି ଘେନି ଗୋପନାରୀ ।
ଗୋପୀ ଘେନି ହରି ଯହୁଁ ପଶିଲେ ଜଳରେ
ମାରକଣ୍ଡ ବ୍ରହ୍ମା ତହୁଁ କୃଷ୍ଣେ ଗୋଡ଼ାଇଲେ ।
କଂସ ଡରେ କହିବାକୁ ମନେ ବିଚାରିଲେ
ବନ ଚଉପାଶେ ବୁଲି ଭେଟ ନ ପାଇଲେ ।
ଦେଖି ବ୍ରହ୍ମା ମନେ ମନେ କଲେ ଏ ବିଚାର
ଭାରା ଉଶ୍ୱାସିଣ ପ୍ରଭୁ ଯିବେ ସ୍ୱର୍ଗପୁର ।
ତା ନ କରି ଏହିଠାରେ କିମ୍ପା ମାତିଛନ୍ତି
କି ଅବା ଏହିକି ସତେ ଶ୍ରୀକୃଷ୍ଣ ନୁହନ୍ତି ।
ଏମନ୍ତ ବିଚାର କରି ମାରକଣ୍ଡ ବ୍ରହ୍ମା
ବତ୍ସା ସବୁଙ୍କୁ ହରିଣ ନେଲେକ ମହାତ୍ମା ।
ଯହୁଁ ସୂର୍ଯ୍ୟ ଅସ୍ତାଚଳେ କଲେକ ଗମନ
ଜଳକ୍ରୀଡ଼ା ଛାଡ଼ିଗଲେ ଗୋପସ୍ତିରୀମାନ ।
ତହୁଁ କୃଷ୍ଣ ବନେ ପଶି ଖୋଜନ୍ତି ବାଛୁରୀ
ଗୋରୁ ଗାଈ ଆଦି ସବୁ ସେ ହରାଇ କରି ।
ବୋଇଲେରେ ମୂଢ଼ ମୁହିଁ କେଉଁ କର୍ମ କଲି
ଗୋରୁ ଗାଈ ଆଦି ସବୁ ହରାଇ ବସିଲି ।
ବେଳ ଉଛୁର ହେଲାଣି ଯିବେଣି ବା ଗୋଷ୍ଠୀ
ଗାଈ ବାଛୁରୀ ସରବେ ହେବେଣି ବା ଭେଟ ।
ନ ପୁଣ ପିବନ୍ତି କ୍ଷୀର ସବୁ ବତ୍ସା ପାଳି
କଂସ ନିୟୋଗକୁ ନନ୍ଦ କିସ ଦେବ କାଲି ।
ଏତେ ବୋଲି କୃଷ୍ଣଚନ୍ଦ୍ର ଧାଇଁଲେ ଗୋଗୋଷ୍ଠେ
ଗାଈମାନେ ରାବୁଛନ୍ତି ନ ଯାଇ ବତ୍ସାନ୍ତେ ।
ନନ୍ଦ ମହାଖୁଡ଼ ଡାକେ ଚଉପାଶେ ଚାହିଁ
ଉଚ୍ଚସ୍ୱରେ ଡାକଇ ସେ କହ୍ନାଇ କହ୍ନାଇ ।
ନନ୍ଦ ଡାକନ୍ତେ ଶୁଣିଣ ଧାମନ୍ତେ ଶ୍ରୀହରି
ଭାଳନ୍ତି ପିତା ମୋର କି ପାଇଲେ ବାଛୁରୀ ।
ଏ ସମୟେ କୃଷ୍ଣଚନ୍ଦ୍ର ପ୍ରବେଶିଲେ ଯାଇ
ନନ୍ଦ ମହାଖୁଡ଼ ତାଙ୍କୁ ଏପରି ପୁଛଇ ।
ତୁମ୍ଭେ ତ ଅଇଲ ବତ୍ସାମାନେ ଗଲେ କାହିଁ
ଉଛୁର ହେଲାଣି ବେଳ ତାଙ୍କ ଦେଖା ନାହିଁ ।
ଉତ୍ତର ନ ଦେଇ କୃଷ୍ଣ କାନ୍ଦିଲେ ଦୁଃଖରେ
କୃଷ୍ଣଙ୍କର ଚୂଳ ନନ୍ଦ ଧଇଲା ରାଗରେ ।
ଛାଟ ଏକ ଧରିଥିଲା ସତ୍ୱରେ ପିଟିଲା
ପ୍ରଭୁଙ୍କ ଶରୀର ଫାଟି ରକତ ବହିଲା ।
କାନ୍ଦନ୍ତି ଶ୍ରୀକୃଷ୍ଣଚନ୍ଦ୍ର ଉଚ୍ଚେ ଛାଡ଼ି ରଡ଼ି
କୃଷ୍ଣଙ୍କୁ ଛାଡ଼ିଣ ନନ୍ଦ ଗଲେ ବତ୍ସା ଲୋଡ଼ି ।
ଛାଟ ମାଡ଼ ଖାଇ କୃଷ୍ଣ ହୋଇ ମହାରାଗୀ
ଧ୍ୟାନେ ଜାଣିଲେ ବାଳକ ବୁଦ୍ଧି ପରିତ୍ୟାଗୀ ।
କରି ଏ କର୍ମ ଆକାଶେ ଅଛି ମାରକଣ୍ଡ
ରାଗେ ଦେହ କମ୍ପାଇଲେ କମ୍ପିଲା ବ୍ରହ୍ମାଣ୍ଡ ।
ବୋଇଲେ ତାହାକୁ ଚାହିଁ ଏଡ଼େ ଅଟୁ ମନ୍ଦ
ତୋହର ଯୋଗରୁ ସିନା ମାଇଲାକ ନନ୍ଦ ।
ତୁହି ଏ ପ୍ରହାର କଷ୍ଟ ଦିଆଇଲୁ ମୋତେ
ଅପୂଜ୍ୟ ହୁଅ ତୁ ଆଜିଠାରୁ ଏ ଜଗତେ ।
ଶୁଣି ମାରକଣ୍ଡ ବତ୍ସା ସମର୍ପି ବିନୟେ
ଅପାର ଭକତି କଲା ପଡ଼ି ପ୍ରଭୁ ପାୟେ ।
କାଳେ ପୁଣି ତାହା ଜାଣି ସେ ପ୍ରଭୁ ଅଚ୍ୟୁତ
ମାର୍କଣ୍ଡେ ବୋଇଲେ ତୁ ମୋର ଜ୍ୟେଷ୍ଠଭ୍ରାତ ।
ଯାଦବ ବଂଶରେ ଅଟୁ ତୁ ପରମ ଗୁରୁ
ଶାପକୁ ଭୟ କରିଣ ମୋତେ ଏଡ଼େ ଡରୁ ।
ଏବେ ଯାମନିକ ତୀର୍ଥେ ନୀଳ କଳ୍ପବଟେ
ସୁନ୍ଦର ପର୍ବତେ ମହୋଦଧିର ନିକଟେ ।
ମାରକଣ୍ଡେଶ୍ୱର ନାମେ ହୁଅ ଲିଙ୍ଗ ଗୋଟି
ତହିଁ ତୋହପରେ ପୂଜା ମିଳୁ କୋଟି କୋଟି ।
ଦକ୍ଷିଣରେ ଯମେଶ୍ୱର ଉତ୍ତରେ ମାର୍କଣ୍ଡ
ମଧ୍ୟରେ ପୂଜା ପାଇବ ଏ ମୋହର ପିଣ୍ଡ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ କହନ୍ତି ଯମେଶ୍ୱର ସ୍ୱାମୀ
ସେହି ମାର୍କଣ୍ଡେଶ୍ୱରଙ୍କ ଏକ କ୍ଷେତ୍ର ଭୂମି ।
ଦ୍ୱାପର ଯୁଗରେ ସେହୁ ମନୁମହାଯତି
ଏବେ ପ୍ରଭୁଙ୍କ କୃପାରୁ କ୍ଷେତ୍ରେ ଅଧିପତି ।
ତୁ ଯାଇ ପଚାର ରାଜା ମାର୍କଣ୍ଡେ ଏ କଥା
ସେ ଜାଣନ୍ତି କିଏ ଏଥି ହୋଇବ ଦେବତା ।
ଯମେଶ୍ୱର ଏହିପରି ଯହୁଁ ଆଜ୍ଞା ଦେଲେ
ଇନ୍ଦ୍ରଦ୍ୟୁମ୍ନ ମାର୍କଣ୍ଡଙ୍କୁ ପୁଛିବାକୁ ଗଲେ ।
ବେଗେ ପ୍ରବେଶି ଖୋଜିଲେ ଗୟା ନାଭିକୁଣ୍ଡ
ସେହିଠାରେ ନ ଦେଖିଲେ ଲିଙ୍ଗ ମାରକଣ୍ଡ ।
ଖୋଜି ଖୋଜି ବ୍ରହ୍ମାଙ୍କୁ ନ ପାଇଣ ସେ ନୃପ
ଭାବିଲେ କେଉଁଠି ସ୍ୱାମୀ ହୋଇଛନ୍ତି ଗୋପ୍ୟ ।
ଏହା କହି ନୃପବର ବସିଲା ଯେ ଧ୍ୟାନେ
ପ୍ରସନ୍ନ ହୋଇଲେ ଦେବ ପଞ୍ଚଷଠି ଦିନେ ।

ମୀନ କୃଷ୍ଣପକ୍ଷ ଅଟେ ଦଶମୀର ତିଥି
ଅଦ୍ଭୂତରେ ସ୍ୱପନ ଦେଖିଲେ ସେ ରାତି ।
ଶୁକ୍ଳାମ୍ବର ଶରୀର ଯେ ଶିରେ ଶୋହେ ଜଟା
କରେ ଦଣ୍ଡ କମଣ୍ଡଳୁ ତମ୍ବାର କାଛଟା ।
ବିଭୂତି ଲେପନ କନ୍ଧେ ଅନନ୍ତ ପଇତା
ତ୍ରିଅମ୍ବକ ମୁଦ୍ରା ଗୋପୀଚନ୍ଦନର ଚିତା ।
ଏମନ୍ତ ରୂପରେ ତହିଁ ମିଳି ମାରକଣ୍ଡେ
ଇନ୍ଦ୍ରଦ୍ୟୁମନେ କହିଲେ ଉଠ ତୁରେ ଚାଣ୍ଡେ ।
ରୂପ ଦେଖିକରି ଉଠିବସି ମହାରାଜା
ତାହାଙ୍କର ଶ୍ରୀଚରଣେ କଲା ବହୁ ପୂଜା ।
ତହିଁ ପରେ ଇନ୍ଦ୍ରଦ୍ୟୁମ୍ନ ଏପରି କହଇ
ମୁଁ ଯାଇ ପଚାରେ ଆଜ୍ଞା ଦେବେ ହେ ଗୋସାଇଁ ।
ବୋଇଲା ସେ କ୍ଷେତ୍ରେ ଏକ ତୋଳିଲି ପ୍ରାସାଦ
କେଉଁ ଦେବ ପୂଜିବ ମୁଁ କହିବି ସମ୍ବାଦ ।
ତହୁଁ ମାରକଣ୍ଡେଶ୍ୱର ଏମନ୍ତ କହନ୍ତି
ଯାହା ଆମ୍ଭେ କହୁଅଛୁ ଶୁଣ ହୋ ନୃପତି ।
ଆହୋ ଇନ୍ଦ୍ରଦ୍ୟୁମ୍ନ ଆମ୍ଭେ ପାଇ କୃଷ୍ଣ ଶାପ
ଏହି ତୀର୍ଥରେ ଆସିଣ ହୋଇଲୁ ଯେ ଗୋପ୍ୟ ।
ଏ ତୀର୍ଥରେ ପୁଷ୍କର ଯେ ଗୋପ୍ୟ ହୋଇଥିଲା
ଆମ୍ଭଙ୍କୁ ଦେଖିଣ ଭୟେ ପାତାଳେ ପଶିଲା ।
ମୁହିଁ ତହୁଁ ଗୋଡ଼ାଇଲି ପୁଷ୍କର ଦେବଙ୍କୁ
ଅଭିଷେକ ହୋଇବୁଟି ଶାପୁ ତରିବାକୁ ।
ଶ୍ରୀକୃଷ୍ଣ ବିନା ଆଜ୍ଞାରେ ଦେଖା ହିଁ ନ ଦେଲା
କୋଟି ତୀର୍ଥ ଘେନିଣ ସେ ପାତାଳେ ପଶିଲା ।
ତିନିସହସ୍ର ଯୋଜନ ପଳାଇଲା ସେଟି
ଗୋଡ଼ାବନ୍ତେ ଏହିଠାରେ ବାହାରିଲା ଫୁଟି ।
ଏହା ନାମ ମାରକଣ୍ଡ ପାତାଳକୁ ବାଟ
ନବକୋଟି ତୀର୍ଥ ଘେନି ପୁଷ୍କର ଏ ଥାଟ ।
ନୀଳଗିରି ପର୍ବତେ ଯେ ହୋଇଅଛି ଗୋପ୍ୟ
ଯେତେବେଳେ କୃଷ୍ଣ ଆସି ହୋଇବ ସମୀପ ।
ନବକୋଟି ତୀର୍ଥସହ କୃଷ୍ଣ ପଦ୍ମପାଦେ
ପୁଷ୍କର ପୂଜା କରିବ ମନର ସାନନ୍ଦେ ।
ଶୁଣି ଇନ୍ଦ୍ରଦ୍ୟୁମ୍ନ ମାରକଣ୍ଡ ପାଦେ ପଡ଼ି
ପଚାରେ କାହିଁ ପାଇବି ସେ ପ୍ରଭୁଙ୍କୁ ଲୋଡ଼ି ।
ମାର୍କଣ୍ଡ ବୋଇଲେ ଜାରାକୁ ଯାଅ ତୁହି
ତାହାକୁ ପୁଛିବୁ ଭାବେ ପ୍ରୀତି ଉପୁଜାଇ ।
ବିଦାୟ ମାଗିଣ ରାଜା ଖୋଜିଣ ଚଳିଲେ
ସିଦ୍ଧ ନକୁଳ ସଚିବ ତାଙ୍କ ସଙ୍ଗେ ଗଲେ ।
ଅର୍କତୀର୍ଥରେ ଯାଇଣ ହୋଇଲେ ପ୍ରବେଶ
ଜାରା ମଇତ୍ରକୁ ତହିଁ ଭେଟିଲେ ନରେଶ ।
ତାହାକୁ ପଚାରି ଠିକଣାକୁ ତହିଁ ଗଲେ
ଗୋ ସାଗର ତୀର୍ଥେ ଯାଇ ପ୍ରବେଶ ହୋଇଲେ ।
ସେଠାରେ ଦେଖିଲେ କିଛି କିରାତର ପଲ୍ଲୀ
ଜରାକୁ ଦେଖିଣ ରାଜା ବୋଲେ ନିସ୍ତରିଲି ।
ତପସ୍ୱୀ କିରାତ ଜରା ଅଟଇ ସେ ରାଜ
ଇନ୍ଦ୍ରଦ୍ୟୁମ୍ନ କହେ ମନ୍ତ୍ରୀ ଏ ଅଙ୍ଗଦ ବୁଝ ।
ପିତୃଋଣ ଶୁଝିବାକୁ ମନେ କରିଥିଲା
ପୂର୍ବ ମନାଇ କୃଷ୍ଣେ ଏ ଶରାଘାତ କଲା ।
ଅର୍ଜୁନ ପୋଡ଼ନ୍ତେ ନେଇ କୃଷ୍ଣ କଳେବର
ଶୂନ୍ୟବାଣୀ ହେଲା ପିଣ୍ଡ ଦଗଧ ନ କର ।
କଳିଯୁଗ ପରବେଶ ହୋଇଲାକ ଆସି
ନରଲୋକ ବ୍ୟାଧି ହେବ କାଳକୂଟ ଫାଶୀ ।
ଧର୍ମବାଟ ଛାଡ଼ି କରାଇବ ଏ ଅଧର୍ମ
ତେଣୁ କରି ନରଗଣେ ଶାସ୍ତି ଦେବ ଯମ ।
ଏହି ପିଣ୍ଡ ଯେ ବସିବ ଯାଇ ନୀଳଗିରି
ଦରଶନ କରି ନରେ ପାପୁଁ ଯିବେ ତରି ।
କଳିଯୁଗ ଚାରିଲକ୍ଷ ବତିଶ ସହସ୍ର
ବର୍ଷଯାଏ ପିଣ୍ଡ ପୂଜା ପାଇବ ଅବଶ୍ୟ ।
ଏ ପିଣ୍ଡ ନେଇ ସାଗରେ ଭସାଇଣ ଦିଅ
ଏହି ଶୂନ୍ୟବାଣୀ ଶୁଣି ବୀର ଧନଞ୍ଜୟ ।
ଅନଳ ମଧ୍ୟୁ ସେ ପିଣ୍ଡ କାଢ଼ି କରି ନେଲେ
ସମୁଦ୍ର ମଧ୍ୟରେ ନେଇ ତାହା ଭସାଇଲେ ।
ଜାରାବ୍ୟାଧ ରକ୍ଷା କରି ପ୍ରଭୁଙ୍କର କାୟ
ଏହାକୁ ସଦ୍‌ଗତି ଦେଲେ ପ୍ରଭୁ ଦୟାମୟ ।
ଏମନ୍ତ ଶୁଣିଣ ସେହି ରାଜା ଇନ୍ଦ୍ରଦ୍ୟୁମ୍ନ
ଜାରାକୁ ପ୍ରଦାନ କଲେ ଲକ୍ଷେକ ସୁବର୍ଣ୍ଣ ।
ବୋଇଲେ ତୁ ବନେ ରାଜା ମୁଁ ଦେଶର ରାଜା
ଦୁହେଁ ମିଶି କୃଷ୍ଣପିଣ୍ଡ କରିବାକୁ ପୂଜା ।
ଜାରା ବୋଇଲେକ ଶୁଣ ଆହେ ନରେଶ୍ୱର
ପ୍ରସନ୍ନ ହୋଇ ଅଛନ୍ତି ମୋତେ ଚକ୍ରଧର ।
ଏ ଗୋମୁଖୀ କେଶବ ଯେ ମର୍ତ୍ତ୍ୟେ ରହି ଶିକ୍ଷା
ଦେଇଛନ୍ତି ମାଗନ୍ତେ ମୁଁ ତପସ୍ୱୀର ଦୀକ୍ଷା ।
ଗୋମୁଖୀ କେଶବ ସତ୍ୟଯୁଗର ଦେବତା
ଶୁଣ ଇନ୍ଦ୍ରଦ୍ୟୁମ୍ନ ରାଜା କହେ ତଥ୍ୟକଥା ।
ରତ୍ନମନ୍ତ ସତ୍ୟଯୁଗେ ସୋମେଙ୍କ ଯେ କାଶୀ
ସ୍ୱର୍ଗ ଗଙ୍ଗାତୀରେ ତପ କରୁଥିଲେ ବସି ।
ମିଥୁନ ଶୁକଳପକ୍ଷ ଅଟେ ଏକାଦଶୀ
ଅର୍କବାର ସେଦିନର ସ୍ୱାତୀ ତୁଳରାଶି ।
ସେହିଦିନ ଈଶ୍ୱର ଯେ କାଟି ଗଲେ କୁଶ
କାଟିଲେକ କୁଶ ଯାଇ ବିଡ଼ା ଯେ ଦ୍ୱାଦଶ ।

ବିଡ଼ି ବିଡ଼ିକରେ ନେଇ ଧୋଇ ଗଙ୍ଗାଜଳେ
ଶୁଖାଇଣ ଥିଲେ ଶିବ ସେହି ଗଙ୍ଗାକୂଳେ ।
ହେ ରାଜା ଆଦି ମାତାର ନାମ ଯେ ସୁରଭୀ
ସୁରଭୀର ସୁତା ଅଟେ ନନ୍ଦିନୀ ଯେ ଦେବୀ ।
ଗଙ୍ଗାକୂଳକୁ ନନ୍ଦିନୀ ଗଲା ପିଇ ବାରି
ତୀରେ ତୀରେ ଦୁବ ଦେଖି ଯାଉଥାଏ ଚରି ।
ଚରିଯାଉଁ ଖାଇଲା ଯେ ଶିବ କୁଶ ବିଡ଼ି
ଦେଖି ଶଙ୍କର ଧାଇଁଲେ ତହୁଁ ତପ ଛାଡ଼ି ।
କୁଶ ନ ଦେଖିଣ ଗଲେ ତହୁଁ କୋପାନଳେ
ନନ୍ଦିନୀର ବେକେ ନେଇ ମାଇଲେକ ଶୂଳେ ।
କ୍ଷୁଧାରେ ତ ଆଦିମାତା ନଇଁ ଚରୁଥିଲା
ଶୂଳ ପଡ଼ନ୍ତେ ଦା ଶିର ଛିଡ଼ିଣ ପଡ଼ିଲା ।
ଦେଖିଣ ଈଶ୍ୱର ମନେ ମହାଭୟ କଲେ
ଋଷିରୂପ ଛାଡ଼ି ଭଇରବ ରୂପ ହେଲେ ।
ଖପର ଖଣ୍ଡାଏ ପୁଣି ଡମ୍ବରୁ ତ୍ରିଶୂଳ
ଏହା ଧରି ହେଲେ ଶିବ ମହା କୋପାନଳ ।
କିଂଶୁକ ମନ୍ଦାରମାଳ ରକ୍ତବସ୍ତ୍ର ଲାଭ
ମହାଖଳା ଖେଚରୀର ରୂପେ ମତ୍ତହୋଇ ।
ନ ମାନିଲେ ଗୁରୁ ଦ୍ୱିଜ ଆବର ଦେବତା
ଚନ୍ଦ୍ର ସୂର୍ଯ୍ୟ ଦେଖି ଏହା ହୋଇ ମହାଭୀତା ।
ଭାଙ୍ଗିଦେଲେ ବେଦଶାସ୍ତ୍ର ହୋଇ ମହାରାଗୀ
ଅବାଟେ ଗଲେ ଅଖାଦ୍ୟମାନ ସୁଖେ ଭୋଗୀ ।
ମହାମତ୍ତେ ମତ୍ତହୋଇ ନାଚିଲେକ ନାଟେ
ବିହରିଲେ ଭଇରବ ମେରୁର ନିକଟେ ।
ନୟନ ବୁଲାଇ ଯହୁଁ ଚାହିଁଲେ ଭୈରବ
ଦେଖି ପଳାଇଲେ ଭୟେ ସର୍ବ ଦେବୀଦେବ ।
ଆସ୍ଥାନ ତେଜି ପଳାଇଗଲେ ସୁରପତି
ନାସିକାରେ ହସ୍ତଦେଇ ହସିଣ ଶ୍ରୀପତି ।
ଧୀରେ ବୋଇଲେକ ମତୁଆଳଙ୍କ କି ଜ୍ଞାନ
ଗୋମାତାଙ୍କ ଶିର ନିଜେ କରିଲେ ଛେଦନ ।
ଶିବ ବୋଇଲେ ନ ମାନେ ମୁଁ ଗୋରୁବ୍ରାହ୍ମଣ
ମାଂସ ସୁରା ଏବେ ମୁହିଁ କରିବି ଭକ୍ଷଣ ।
ହରି ବୋଇଲେ ତୁ ସୁରା ମାଂସକୁ ଖାଇବୁ
ସଦ୍‌ମାର୍ଗ ଛାଡ଼ିକରି ପାପରେ ବୁଡ଼ିବୁ ।
ବ୍ରହ୍ମା ଶୁଣି କରି ଶାପ ଦେଲେ ଭଇରବ
ଏକ୍ଷଣି ହୁଅ ତୁ ହର ଗୋମୁଖ କେଶବ ।
ଏମନ୍ତ ଶାପ ଦିଅନ୍ତେ ଭୈରବ ମୂରତି
ଶୁଣି ବୋଇଲେ ଶ୍ରୀକୃଷ୍ଣ ମୋର ନାହିଁ ଭୀତି ।
ଏହା ଶୁଣି ଭଇରବ କୁଠାରେ ମାଇଲେ
କେଶବ ଅବତାରରେ ଶିର ଛିଣ୍ଡାଇଲେ ।

ଯେ କେଶବ ଶରଗୋଟି ଘେନିଲେ ଧୂର୍ଜଟି
ଭୈରବ ଖର୍ପରୁ କାଢ଼ି ଗୋରୁ ମୁଣ୍ଡ ଗୋଟି ।
କେଶବ ଶିରେ ଲଗାଇ ପଢ଼ି ମହାମନ୍ତ୍ର
ଫୁଙ୍କି ଦ୍ୟନ୍ତେ ଉଡ଼ିଲେ ସେ କେଶବ ତ୍ୱରିତ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ
ଗୋମୁଖୀ କେଶବ ହେଲେ ତହିଁ ଦେବରାଜ ।
ସେ ଗୋମୁଖୀ କେଶବଙ୍କ ଚରଣେ ଶରଣ
ହେ ପ୍ରଭୁ ଅନ୍ତିମେ ମୋତେ କରିବା କାରଣ ।
ତୁମ୍ଭ ଛଡ଼ା ପ୍ରଭୁ ମୋର ଆଉ କେହି ନାହିଁ
ଶାରଳା ଦାସକୁ ତାର ଆହେ ଭାବଗ୍ରାହୀ ।

—୦—

## ସାଗରାସୁର ବଧ ଓ ଅଷ୍ଟଶମ୍ଭୁଙ୍କ ଉତ୍ପତ୍ତି

ପୁନରପି କରଯୋଡ଼ି ମନୁ ଦଣ୍ଡଧର
ଅଗସ୍ତି ମୁନିଙ୍କ ପାଦେ କରି ନମସ୍କାର ।
ପୁଚ୍ଛା କଲେ ଗୋମୁଖୀଙ୍କ କଥା ମହାଶୟ
କହନ୍ତୁ ପୁଣି କି କଲେ ପ୍ରଭୁ ଦେବରାୟ ।
ଶୁଣିବାକୁ ଅଛି ମୁହିଁ ବଡ଼ ଆଶା କରି
କହିଲେ ପିଇବି ତାହା ଆଶା ପାତ୍ର ଭରି ।
ରାଜାର ଭକତି ଦେଖି ବୋଲନ୍ତି ଅଗସ୍ତି
ଶୁଣ ଏବେ ତୋର ମନ କରାଇବା ତୃପ୍ତି ।
ବଜ୍ରସିଂହ ବୋଲି କରି ଏକଇ ଦଇତ
ମୟସିଂହ ନାମେ ହେଲା ତାର ଏକ ପୁତ୍ର ।
ମୟସିଂହ ପୁତ୍ର ନାମ କାଳସିଂହ ବୀର
ଅଭୟସିଂହ ହୋଇଲା ତାହାର କୁମର ।
ଅଭୟ ପୁତ୍ର କଶ୍ୟପ ସିଂହ ବୋଲି କରି
କଶ୍ୟପ ପୁତ୍ର କପିଳା ନାମ ଯେ ତାହାରି ।
କପିଳସିଂହ ନନ୍ଦନ ନାମ ସିଂହନାଦ
ସିଂହନାଦ ପୁତ୍ର ଯେହୁ ତା ନାମ ପ୍ରହ୍ଲାଦ ।
ତାହାର ନନ୍ଦନ ନାମ ଯେ ସିଂହବୀର
ଏହାର ନନ୍ଦନ ନାମ ଯେ ସିଂହସାଗର ।
ସାଗରସିଂହ ଦଇତ୍ୟ ଏକ ରାଜ୍ୟ କରି
ପୃଥ୍ୱୀରୁ ଗୋ ନର ଆଦି ଖାଇଲା ସେ ଧରି ।
ତାହା ଦେଖି ଦେବଗଣ ଆକୁଳ ହୋଇଲେ
ଗୋମୁଖୀ ପ୍ରଭୁଙ୍କ ପାଖେ ଧ୍ୟାନେ ଜଣାଇଲେ
ବ୍ରହ୍ମା ଯାଇ କହିଲେକ ହେ ଦେବ କେଶବ
ସାଗରାସୁରକୁ ମାର ନ କର ବିଳମ୍ବ ।
ପରମେଷ୍ଠୀଙ୍କ ବିନୟ ଶୁଣି ଏହିପରି
ସେଠାରୁ ଚଳିଲେ ଶୀଘ୍ରେ ଗୋମୁଖୀ ଶ୍ରୀହରି ।

ବିଜେ କଲେ ନାରାୟଣ ସେ ଦଇତ୍ୟ ଦ୍ୱାରେ
ସାମାନ୍ୟ ରୂପ ଧଇଲେ ଗୁପତ ଭାବରେ ।
ଗୋମୁଖ ଦେଖିଣ ସେହି ଦୁଷ୍ଟ ନିଶାଚର
ଆହାର ନିମନ୍ତେ ଧାଇଁ ଅଇଲା ସତ୍ୱର ।
ଆକର୍ଷିଣ ବେନି ଭୁଜେ ପ୍ରଭୁଙ୍କୁ ଧଇଲା
ଗର୍ଭ ବିସ୍ତାରିଣ ତୁଣ୍ଡେ ଭରି ଗିଳିଦେଲା ।
ଗିଳିଦ୍ୟନ୍ତେ ତା ଦେହକୁ ହେଲା ମହାଜ୍ୱାଳା
ସାଗରେ ପଶିଲା ଯାଇ ଦୈତ୍ୟ ଅନର୍ଗଳା ।
ତାହାର ଗର୍ଭ ମଧ୍ୟରେ କେଶବ ପଶିଣ
ବିକାଶିଲେ ବିଶ୍ୱରୂପ ଶୂନ୍ୟ ପର୍ଯ୍ୟନ୍ତେଣ ।
ଶୃଙ୍ଗମାରି ବିଦାରିଲେ ଦଇତ୍ୟ ପେଟକୁ
ବେନିଫାଳ କରି ଚିରିଦେଲେ ତାର ବୁକୁ ।
ଧନୁ ଶୁକ୍ଳପକ୍ଷ ତ୍ରୟୋଦଶୀ ଶୁକ୍ରବାର
ପୁନର୍ବସୁ ନକ୍ଷତ୍ର ଯେ ବେଳ ଦ୍ୱିପ୍ରହର ।
ବିଷ୍କୁମ୍ଭ ଯୋଗ ଯେ ବିଷ୍ଟି ନାମରେ କରଣ
ହୋଇଥିଲା ପୁଣି ମକରର ସଂକ୍ରମଣ ।
ସେଦିନ ସାଗରାସୁର ପ୍ରାଣ ସଂହାରିଲେ
ମହୋଦଧି ମଧ୍ୟେ ପଶି ଜଳକ୍ରୀଡ଼ା କଲେ ।
ସେ ଅସୁର ବଧ ଦେଖି ଅମର ନିଚୟ
ଆନନ୍ଦରେ ବିଜେ କଲେ ହୋଇଣ ନିର୍ଭୟ ।
ଛପନକୋଟି ଜୀବଙ୍କୁ ରଖିଥିଲେ ଧାତା
ଗୋସାଗରେ ସମସ୍ତଙ୍କୁ ଛାଡ଼ିଲେକ ପିତା ।
ଗୋସାଗରେ ଯହୁଁ ପୂର୍ଣ୍ଣ ହେଲେ ଜଳଜୀବ
ଗୋମୁଖୀ କେଶବଙ୍କର ହୋଇଲା ଉତ୍ସବ ।
ଦେବତା ମାନବେ ସର୍ବେ ଆନନ୍ଦିତ ହେଲେ
କେଶବଙ୍କ ପରସନ୍ନେ ନିଃଶଙ୍କ ହୋଇଲେ ।
ଧାତାଙ୍କୁ ଶମନ ଦେଖି ଏମନ୍ତ ବୋଇଲା
ଅଠାଇଶ କୋଟି ଜୀବେ ସାଗର ଖାଇଲା ।
ସେ ପୁଣି କେମନ୍ତେ ଜାତ ହେବେ ହେ ବିଧାତା
ଧାତା ବିଶ୍ୱାମିତ୍ରେ ଡାକି କହିଲେ ସେ କଥା ।
ଅଠାଇଶ କୋଟି ଜୀବେ ଦୈତ୍ୟ କଲା ଭୋଗ
ଆମ୍ଭ ବୋଲେ ଏ ଜୀବଙ୍କୁ ସୃଜ ତୁମ୍ଭେ ବେଗ ।
ବ୍ରହ୍ମା ବାକ୍ୟେ ଭିଆଇଲେ ଜୀବ ବିଶ୍ୱାମିତ୍ର
ଅଠାଇଶ କୋଟି ଜୀବ ସୃଜିଲେ ତ୍ୱରିତ ।
ଏ ବିଧିରେ ଚଉରାଶୀ କୋଟି ଜୀବ ହେଲେ
ଜଳସ୍ଥଳେ ପୂରିଣ ସେ ସବୁଠି ରହିଲେ ।
ପୁନରପି ବୋଇଲେକ ସେ ଜାରାଶବର
ମନଦେଇ ଶୁଣ ଇନ୍ଦ୍ରଦ୍ୟୁମ୍ନ ନରବର ।
ଗୋମୁଖୀ କେଶବ ଯେହୁ ଆଦି ନିରଞ୍ଜନ
ସାଗରାସୁର ସାଗରେ କରିଲେ ନିଧନ ।

ଏଣୁ ମକର ସାଗରେ ଯେ କରଇ ସ୍ନାନ
ତାହାଠାରୁ ସଂସାର କେ ନାହିଁ ଧର୍ମଜନ ।
ସ୍ନାନ କରି ନିରାହାରେ ରାତ୍ରିରେ ଜାଗର
ଜାଳି ଯେହୁ ଭକ୍ତିଭରେ ହୋଇ ଉଜାଗର ।
ଗୋମୁଖୀ କେଶବଙ୍କୁ ଯେ ମନେ ସୁମରଇ
ଶମନ ଦେବତା ତାକୁ ଛୁଇଁ ନ ପାରଇ ।
ଶମ୍ଭୁ ଗୋମୁଖୀ ପ୍ରଭୁ ଲାଞ୍ଜ ପଶ୍ଚିମ ମୂରତି
ତହୁଁ ପ୍ରାଚୀ ନାମେ ନଦୀ ହେଲେ ଉତପତି ।
ଅଶୀ ସହସ୍ର ଗନ୍ଧର୍ବ ଭୂମି ଖୋଳି ଖୋଳି
କେଶବ ଲାଞ୍ଜ ଛିଣ୍ଡିଲା କୋଦାଳ ଯେ ବାଜି ।
ପୃଷ୍ଠଭାଗ ହୋଇକରି ଛିଣ୍ଡିଲା ଲାଙ୍ଗୁଳ
ଅଷ୍ଟଶମ୍ଭୁ ହୋଇଲେ ସେ ପ୍ରାଚୀ ନଦୀକୂଳ ।
ଗୋକୁଳେଶ୍ୱର ପିଙ୍ଗଳେଶ୍ୱର ଦୂରେଶ୍ୱର
ଗ୍ରାମେଶ୍ୱର ମନେଶ୍ୱର ସେ ନାଟକେଶ୍ୱର ।
ସ୍ୱପ୍ନେଶ୍ୱର ରୁଦ୍ରେଶ୍ୱର ଏହି ଅଷ୍ଟଶିବ
ଯାଙ୍କ ଦର୍ଶନେ ମିଳଇ ବହୁ ଫଳ ଶୁଭ ।
ଭକ୍ତିଭରେ ସମୁଦ୍ରରେ କରିସାରି ସ୍ନାନ
ଉପବାସେ ରହି ଶମ୍ଭୁ କରିବେ ଦର୍ଶନ ।
ତହିଁ କୋଟି ତୀର୍ଥ ଘେନି ରହିଛି ପୁଷ୍କର
ରାତ୍ରି ଦିବା ବହୁଥାଏ ପ୍ରାଚୀନଦୀ ନୀର ।
ଅଷ୍ଟଶମ୍ଭୁ ଦର୍ଶନେ ଯେ ଗୋମୁଖେ ପଶଇ
ନକ୍ଷତ୍ର ହୋଇଣ ସେହୁ ସ୍ୱର୍ଗରେ ବସଇ ।
ନାଟକେଶ୍ୱର ଠାବରେ ଭକ୍ତି ଯେ ଲଗାନ୍ତି
ଶତେବର୍ଷଯାଏ ସେହୁ ସ୍ୱର୍ଗେ ସ୍ଥାନ ପାନ୍ତି ।
ଗୟା ବାରଣାସୀ ଆଉ ପ୍ରୟାଗ ତୀର୍ଥରେ
ସେ ସ୍ନାନ କରଇ କୋଟି ଜନ୍ମ ପାପ ହରେ ।
ଜାରାଶବର କହିଲା ଏହି ତୀର୍ଥ ଧର୍ମ
ଇନ୍ଦ୍ରଦ୍ୟୁମ୍ନ ରାଜା ଶୁଣି ଚିତ୍ତ କଲେ ସମ ।
ତହିଁପରେ ଇନ୍ଦ୍ରଦ୍ୟୁମ୍ନ ରାଜାକୁ କହନ୍ତି
ଅନେକ ଜନ୍ମର ଫଳ ହୋଇଲା ପ୍ରାପତି ।
ସାଧୁ ଅଟେ ମହାତ୍ମା ହୋ ଜୀବନ ତୁମ୍ଭର
ଅନେକ କଷ୍ଟର ଫଳ ହୋଇଲା ମୋହର ।
ସାଗରରେ ସ୍ନାନ କରି ଦେଖିଲି ଗୋମୁଖ
ମନୁଷ୍ୟ ଜନ୍ମରେ ଏହା ଅଇଶ୍ୱର୍ଯ୍ୟ ସୁଖ ।
ସେ ପ୍ରଭୁଙ୍କ ପାଦପଦ୍ମ ହୃଦୟରେ ଧ୍ୟାୟୀ
ଶାରଳା ଦାସ ଭାରତେ ଏମନ୍ତ କହଇ ।
ହେ ପ୍ରଭୁ ତୁମ୍ଭର ଲୀଳା ଦିଶୁଅଛି ମୋତେ
ସରିବ ନାହିଁ ଶତେକ ବରଷ କହନ୍ତେ ।
ସବୁ ଦିଶୁଅଛି ମୋତେ ଦେଖନ୍ତା କେ ନାହିଁ
ଜାଗି ବ୍ରହ୍ମ ସାଧନା ଯେ କରୁଅଛି ମୁହିଁ ।

ମୁହିଁ ତାଙ୍କ ଦ୍ୱାରପାଳ ଜନ୍ମ ହେଲି କବି
ଜନ୍ମେ ଜନ୍ମେ ସୁପ୍ରସନ୍ନ ମୋତେ ବାକ୍ୟଦେବୀ ।
ନୀଳଗିରି ଆଖ୍ୟାନ ଏ କଉତୁକ କଥା
ଠିକ ଠିକ କରି କହେ ତହିଁର ବାରତା ।
ଜନ୍ମରୁ ମୂରୁଖ ମୁହିଁ ମୋ ଗାରିମା କିସ
ପଣ୍ଡିତଜନେ ମୋହର ନ ଧରିବ ଦୋଷ ।
ଅଭୟ ବରଦାୟିନୀ ପ୍ରସନ୍ନ ଶାରଳା
ସେ ମୋର ଗଳେ ଲମ୍ବାଇଦେଲେ ପୁଷ୍ପମାଳା ।
ବୋଲେ ଗ୍ରନ୍ଥକାର କବି ଶ୍ରୀ ଶାରଳା ଦାସ
ଏ ଭବସାଗରୁ ତାର ମୋତେ ରମାଈଶ ।

—୦—

## ଜାରାଶବରକୁ ଇନ୍ଦ୍ରଦ୍ୟୁମ୍ନର ବିନତି ଓ ରୋହିଣୀ କୁଣ୍ଡେ ଶ୍ରୀକୃଷ୍ଣଙ୍କର ଶିବ ପିଣ୍ଡ ଆବିର୍ଭାବ

ଏଥୁଅନନ୍ତରେ ଶୁଣ ବିଲଙ୍କାର ନାଥ
ଅଗସ୍ତି ମୁନିଙ୍କ ପାଦେ କଲେ ଦଣ୍ଡବତ ।
ଭକ୍ତିଭରେ ପୁଚ୍ଛାକଲେ ଯୋଡ଼ି ବେନିକର
ଯାପରେ କି କଥା ହେଲା କହ ମୁନିବର ।
ମୁନି ବୋଇଲେ ସୁଚିତ୍ତେ ଶୁଣ ନରପତି
ଏ ବିଷୟ ଶୁଣିଲେ ତୁ ଲଭିବୁ ମୁକତି ।
ଜାରାଠାରୁ ସବୁକଥା ଶୁଣି ଇନ୍ଦ୍ରଦ୍ୟୁମ୍ନ
କି ଉପାୟ କରିବଇଁ ଭାବେ ମନେ ମନ ।
ଆହେ ପ୍ରଭୁ ଦୟାମୟ ଅଛ କେଉଁଠାରେ
ଦୟାକରି ଏ ଦାସକୁ ଦେଖାଦିଅ ଥରେ ।
ଏହିପରି ଭଜି ରାଜା ବ୍ୟାଧକୁ କହଇ
ହେ ରାଜା ତୁମ୍ଭଙ୍କୁ ଏକ କଥା ମାଗିବଇଁ ।
ଜାରା ବୋଲେ କି ମାଗିବ ମାଗ ନରନାଥ
ଯାହା ମାଗିବ ତା ଦେବି ତ୍ରିବାର ମୋ ସତ ।
ଜାରା ବୋଲେ ସେ ପିଣ୍ଡକୁ ଦହୁଥିଲେ ପାର୍ଥ
ଦେବବାକ୍ୟେ ସିନ୍ଧଜଳେ ମେଲିଲେ ତୁରିତ ।
ସେ ପିଣ୍ଡ ଦେଖିଛ କେବେ ଚାଲ ଭାଇ ଘେନି
ନୀଳଗିରିରେ ପୂଜିବା ସ୍ଥାପି ତାଙ୍କୁ ବେନି ।
ରାଜା ବୋଲେ ଭାସିଗଲେ ସେ ଅଗାଧ ଜଳେ
ସେଦିନୁ ବସିଛି ତାଙ୍କୁ ଅନାଇଁ ମୁଁ କୂଳେ ।
ଏ ମର୍ତ୍ତ୍ୟମଣ୍ଡଳେ ପୂଜା ଘେନିବାକୁ ଇଚ୍ଛା
ଅଛି କି ନା ଲୟ କରି କରଇ ମୁଁ ପୃଚ୍ଛା ।
ତୁମ୍ଭେ ଯାଅ ରହିଥିବ ଚନ୍ଦ୍ରଭାଗା ତୀର୍ଥେ
ଏକରାତ୍ରହୁଁ ରହିବ ନାହିଁ ଅନ୍ୟରାତ୍ରେ ।
କୃଷ୍ଣଙ୍କୁ ତହୁଁ ଯେବେ ମୁଁ ସମସ୍ୟା ପାଇବି
ତୁମ୍ଭ ପାଶକୁ ଯାଇଣ ନିଶ୍ଚୟ କହିବି ।

ଜାରାର ବଚନ ଶୁଣି ଗଲେ ମହୀପାଳ
ସଙ୍ଗତରେ ଥିଲେ ମନ୍ତ୍ରୀ ସିଦ୍ଧ ଯେ ନକୁଳ ।
ନିଜେ କୋଣାର୍କ ବିରଞ୍ଚି ନାରାୟଣ ଯହିଁ
ଇନ୍ଦ୍ରଦ୍ୟୁମ୍ନ ଦରଶନ କଲେ ତାଙ୍କୁ ଯାଇ ।
ସେହିଠାରେ ରାତ୍ରଗୋଟି କରିଲେ ଯାପନ
ଏଥୁଅନନ୍ତରେ କଥା ଶୁଣ ହେ ରାଜନ ।
ତେଣେ ରାତ୍ରେ ସିନ୍ଧୁକୂଳେ ବସିଣ କିରାତ
ପ୍ରଭୁଙ୍କୁ ସ୍ମରଣ କଲା ଧ୍ୟାନେ ହୋଇ ରତ ।
ଜାରାଶବର ସ୍ମରଣ ଶ୍ରୀକୃଷ୍ଣ ଜାଣିଲେ
ସିନ୍ଧୁ ମଧ୍ୟେ ଆସି ବ୍ୟାଧ ପାଶେ ଉଭାହେଲେ ।
ଦେଖିଣ ପ୍ରଭୁଙ୍କୁ ଜାରା ହୋଇ ପ୍ରଣାମି
ବୋଇଲା ନୀଳଗିରିକୁ ବିଜେ କର ସ୍ୱାମୀ ।
ଶ୍ରୀକୃଷ୍ଣ ବୋଇଲେ ଏହା ବ୍ରହ୍ମାଙ୍କର ବାଞ୍ଛା
କଳିଯୁଗେ ରହିବାକୁ କିଛିଦିନ ଇଚ୍ଛା ।
ବଉଦ୍ଧ ଅବତାରରେ ନିଶ୍ଚେ ବିହରିବୁ
ଦୁଷ୍ଟଜନ ମାରି ସନ୍ଥଜନଙ୍କୁ ପାଳିବୁ ।
କ୍ଷୀରସିନ୍ଧୁ ତୀରେ ତାହା ଦେବେ ଛନ୍ତି କହି
ଯିବି ନୀଳଗିରିକୁ ମୁଁ ଏବେ ମିଥ୍ୟା ନାହିଁ ।
ଏହା ଶୁଣି ଜାରାବ୍ୟାଧ କହେ ସବିଶେଷି
ତୁମ୍ଭ ପ୍ରତିମା ପୂଜନେ ରାଜା ଅଭିଳାଷୀ ।
ହେ ଦେବ ବହୁ ଆନନ୍ଦେ ଇନ୍ଦ୍ରଦ୍ୟୁମ୍ନ ରାଜା
ଦେଉଳ କରିଛି ତୋତେ କରିବ ସେ ପୂଜା ।
ଶ୍ରୀକୃଷ୍ଣ ବୋଇଲେ ତାକୁ ଘେନିଯାଅ ବେଗି
ରୋହିଣୀକୁଣ୍ଡ ପାଖରେ କାଲି ଥିବ ଜଗି ।
ରୋହିଣୀ କୁଣ୍ଡରେ ଆମ୍ଭେ କାୟା ବଦଳିବୁ
ବଉଦ୍ଧ ଅବତାରରେ କାୟା ଦେଖାଇବୁ ।
ଏ ପିଣ୍ଡ ଗୋଟିଏ ମୋର ତହିଁ ଦାରୁ ହେବ
ରାଜାକୁ କହିଣ ମୋତେ ଯତ୍ନେ ଗଢ଼ାଇବ ।
ଜାରାକୁ ଯା କହି ପ୍ରଭୁ ହୋଇଲେ ଅନ୍ତର
କୋଣାର୍କ ତୀର୍ଥକୁ ଜାରା ଚଳିଲା ସତ୍ୱର ।
ବାଟେ କୈବର୍ତ୍ତକୁ ଡାକେ ଆସ ଯିବା ମିତ
କୈବର୍ତ୍ତ ବୋଲେ ହେ ଯାଅ ମୁଁ ଅଛି ଏ ତୀର୍ଥ ।
ରହିଛି କୈବର୍ତ୍ତ ସୁଖେ ଗୋମୁଖା ଆଶ୍ରିତେ
ଅନେକ କୁଟୁମ୍ବ ସହ ସେ ଆନନ୍ଦ ଚିତ୍ତେ ।
ତେଣେ ଜାରାଶବରକୁ ଚାହିଁ ଇନ୍ଦ୍ରଦ୍ୟୁମ୍ନ
ଭାଳଇ ସତେକି ଜାରା ଆସିବ ଏ ସ୍ଥାନ ।
ସତେ ତାକୁ ଦେଖି ନେତ୍ର ହୋଇବ ନିର୍ମଳ
ଏହା ଭାବି ଚନ୍ଦ୍ରଭାଗା ତୀର୍ଥେ ନରପାଳ ।
ସ୍ନାନ ଶୁଚି ହୋଇ ରାଜା ତୀରକୁ ଉଠିଲେ
ଜାରା ଆସୁଅଛି ତାକୁ ଦୂରରୁ ଦେଖିଲେ ।

ବେଗେ ଧାଇଁଯାଇ ରାଜା ତାକୁ କଲେ କୋଳ
ନିଶ୍ଚେ ଜାଣିଲି ମୋ କାର୍ଯ୍ୟ ହୋଇଲା ସଫଳ ।
ଜାରା ବୋଲେ ପୂର୍ଣ୍ଣହେଲା ତୋର ମନୋରଥ
ଚାଲ ନୀଳଗିରି ଯିବା ହେ ରାଜା ତୁରିତ ।
ଜାରା ବ୍ୟାଧ ରାଜା ସିଦ୍ଧ ନକୁଳ ଯେ ମନ୍ତ୍ରୀ
ଏ ତିନିହେଁ ପ୍ରବେଶିଲେ ନୀଳଗିରି କତି ।
ଇନ୍ଦ୍ରଦ୍ୟୁମନ ବୋଇଲା ଶୁଣ ହେ ମଇତ୍ର
ଦେଖ ଦେଖ ଏ ପ୍ରସାଦ ଗୋଟି ମୋର କୃତ୍ୟ ।
ଦେଖ ଏ ନୀଳସୁନ୍ଦର ଗିରିର ବିସ୍ତାର
ଦେଖଇ ଚୌପାଶେ ବୁଲି ସେ ଜାରାଶବର ।
ଦେଉଳ କାରୁକାର୍ଯ୍ୟରେ ହୋଇଛି ଚିତ୍ରିତ
ଦେଖି ଜାରା ପ୍ରଶଂସଇ ରାଜାକୁ ବହୁତ ।
ଇନ୍ଦ୍ରଦ୍ୟୁମ୍ନ ବୋଲେ ଏହି ଦେଉଳଟି କଲି
ଯମେଶ୍ୱରଙ୍କ ନିକଟେ ଧାରଣା ପଡ଼ିଲି ।
ସେ ପ୍ରସନ୍ନ ହେଲେ ଯହୁଁ କହିଲି ଏକଥା
ଏ ଦେଉଳେ ବସାଇବି କେବଣ ଦେବତା ।
ସେ ବୋଇଲେ ଏଥେ ପୂଜା କର ଜଗନ୍ନାଥ
ତାଙ୍କ ବୋଲେ ତୋର ତହିଁ ଆସିଅଛି ମିତ ।
ତାହାଙ୍କର ବଚନରେ ଆସି ଜଣାଇଲି
ବିଷ୍ଣୁଭକ୍ତ ଜାଣି ତୋତେ ମୁହିଁ ଆଶ୍ରା କଲି ।
ପାରିଲେ କାରଣ ତୁହି କର ଭୋ ମଇତ୍ର
ବିଜୟ କରାଅ ଏତେ ପ୍ରଭୁ ଜଗନ୍ନାଥ ।
ବିଷ୍ଣୁ ପ୍ରତିମା ଯେବେ କି ଏଥେ ବିଜେ ହେବେ
ବ୍ରହ୍ମାସହ ସୁରପତି ଏଥକୁ ଆସିବେ ।
ତୋର ଯୋଗେ ଏହି କୀର୍ତ୍ତି ହୋଇବ ଶୋଭନ
ତୁମ୍ଭେ ମିତ୍ର ପ୍ରଭୁ ପିଣ୍ଡ କରାଅ ସ୍ଥାପନ ।
ରାଜା ବଚନେ କହଇ ସେ ଜାରାଶବର
ଦୁଃଖିତ ମନେ ନ ଭାଳ ଆହେ ନରବର ।
ତୁମ୍ଭ କଥା ଶୁଣି ଧ୍ୟାନ କଲି ମୁଁ ପ୍ରଭୁଙ୍କୁ
କୃଷ୍ଣ କହିଲେ ଯା କହ ସେ ଇନ୍ଦ୍ରଦ୍ୟୁମ୍ନଙ୍କୁ ।
ରୋହିଣୀ କୁଣ୍ଡରେ ଆମ୍ଭେ ବିଜୟ କରିବୁ
ନୀଳସୁନ୍ଦର କଳପ ବଟମୂଳେ ଥିବୁ ।
ହେ ରାଜା ଏବେ ତୁ ମନେ ନ ହୁଅ ତରସ୍ତ
ଦେଖିବା ଏହି ରୋହିଣୀକୁଣ୍ଡେ ଜଗନ୍ନାଥ ।
ଦିବାରାତ୍ରି ଜଗିଥିବ ରହି ଏହି ଠାବ
ଏଥେଁ ଆସି ଦେଖା ଦେବେ ପ୍ରଭୁ ବାସୁଦେବ ।
ରାଜା ଆଗରେ ଶବର କହୁଁ ଏହି ବାଣୀ
ଦିବା ଶେଷ ହେଲା ଆସି ହୋଇଲା ରଜନୀ ।
ଏଥୁଅନନ୍ତରେ ଶୁଣ ଆହେ ନରନାଥ
ନୀଳଗିରିକି ବିଜୟ ହେବେ ଜଗନ୍ନାଥ ।

ବ୍ରହ୍ମାଦି ଦେବେ ସ୍ୱର୍ଗରେ କଲେ ଏ ଭାଳେଣୀ
କଳିଯୁଗେ ବିଜେ ହେବେ ଏବେ ଚକ୍ରପାଣି ।
କଳିଯୁଗେ ପାପୀଜନେ କଲେ ଦରଶନ
ନିଶ୍ଚୟ ତାହାଙ୍କ ପାପ ହୋଇବ ମୋଚନ ।
ନାରଦ ଋଷି ବୋଇଲେ ଏବେ କି ବିଚାର
ଏ ସମୟେ ପ୍ରବେଶିଲେ ପ୍ରଭୁ ଚକ୍ରଧର ।
ଦେବଗଣଙ୍କ ମଧ୍ୟରେ ଯାଇଣ ବସିଲେ
ସମସ୍ତଙ୍କୁ ଚାହିଁ ପ୍ରଭୁ ଏମନ୍ତ କହିଲେ ।
ଯାଉଅଛୁ ଆଣ ଆମ୍ଭେ ଶ୍ରୀ ନୀଳକନ୍ଦରେ
ପୂଜା ଘେନିବୁଁ ସେଠାରେ ଏ କଳିଯୁଗରେ ।
ଈଶ୍ୱର ବୋଇଲେ ମୁହିଁ ତୁମ୍ଭ ସଙ୍ଗେ ଯିବି
ବଳଭଦ୍ର ରୂପରେ ମୁଁ ପୂଜାକୁ ପାଇବି ।
ବ୍ରହ୍ମା ବୋଇଲେ ମୁଁ କିମ୍ପା ରହିଥିବି ଏକା
ତୁମ୍ଭେ ଗଲ ରହି ମୁହିଁ ଲଭିବି କି ସୁଖ ।
କୃଷ୍ଣ ବୋଇଲେ ତୁମ୍ଭେ ତ ମୋର ସଙ୍ଗେ ଥିବ
ଯାଅ କେବେ ଏବେ ତୁମ୍ଭେ ଦର୍ଶନକୁ ଯିବ ।
କୃଷ୍ଣଙ୍କଠାରୁ ଏମନ୍ତ ଶୁଣି ଦିଗପାଳେ
ପ୍ରଭୁଙ୍କୁ ନମିଣ ସର୍ବେ ଗଲେ ଯେଝା ଆଳେ ।
ଏଥୁଅନନ୍ତରେ କଥା ଶୁଣ ହେ ରାଜନ
ରୋହିଣୀକୁଣ୍ଡ ପାଖରେ ଥିଲା ଇନ୍ଦ୍ରଦ୍ୟୁମ୍ନ ।
ରୋହିଣୀ କୁଣ୍ଡକୁ ରାଜା ଚାହିଁଦ୍ୟନ୍ତେ ବସି
କୁଣ୍ଡତଳେ ଫୁଟି କୃଷ୍ଣ କଳେବର ଦିଶି ।
ଝଳମଳ ହୋଇ ଦିଶେ ପ୍ରଭୁଙ୍କର କାୟ
ଦିଶଇ ରକ୍ତଚନ୍ଦନ ଦାରୁର ପରାୟ ।
ଚାହିଁଣ ଇନ୍ଦ୍ରଦ୍ୟୁମନ ହୋଇ ମହାସୁଖୀ
ରାଜାକୁ ବୋଇଲେ ମିତ ଦେଖ ଏ ଦିଶେ କି ।
ଶବର ବୋଇଲା ରାଜା ଏ ପିଣ୍ଡ ପ୍ରତ୍ୟକ୍ଷ
ଏବେ ଦରଶନ କରି ହେଲୁ ତୁହି ମୋକ୍ଷ ।
ଏହା ଶୁଣି ରାଜା ନଗ୍ରୁ ସୈନ୍ୟଙ୍କୁ ଅଣାଇ
ଆଜ୍ଞା ଦେଲେ ସେମାନଙ୍କୁ ଉଠାଇବା ପାଇଁ ।
ବ୍ରାହ୍ମଣ ସାମନ୍ତ ଅଷ୍ଟାଦଶ ପାତ୍ରମୂଳେ
ଅଇବ୍ରତେ ବୀର ତାଙ୍କୁ ତୋଳୁ ବାହୁବଳେ ।
ଦୃମନ ପର୍ବତଠାରୁ ସେହି ହେଲା ଗରୁ
କାହାରି ହିଁ ବଳେ ସେହୁ ନ ଉଠିଲା ଦାରୁ ।
ଉଠାଇ ନ ପାରି ସର୍ବେ ହୋଇଲେ ଛକିତ
ଏଥୁଅନ୍ତେ ଦିବା ଶେଷେ ସୂର୍ଯ୍ୟ ଗଲେ ଅସ୍ତ ।
କିପରି ପିଣ୍ଡ ଉଠିବ ଭାଳେ ରାଜା ଧ୍ୟାନେ
ଶ୍ରୀକୃଷ୍ଣ କହିଲେ ତାକୁ ନିଶିରେ ସ୍ୱପନେ ।
ହେ ଇନ୍ଦ୍ରଦ୍ୟୁମନ ନୁହେ ସେ ଚନ୍ଦନ ଦାରୁ
ଆମ୍ଭର ସେ ପିଣ୍ଡଗୋଟି ଅଟେ ମହାମେରୁ ।

ରାଜ୍ୟଲୋକ ଲଗାଇଲେ ନ ପାରିବୁ ଚାଳି
ଜାରାବ୍ୟାଧ ବାସୁ ଦ୍ୱିଜ ଏ ପାରନ୍ତି ତୋଳି ।
ସ୍ୱପନ ତେଜିଣ ଇନ୍ଦ୍ରଦ୍ୟୁମନ ଉଠିଣ
ବାସୁ ଦ୍ୱିଜେ ଜାରାବ୍ୟାଧେ ଡକାଇ ରାଜନ ।
କହିଲା ଶ୍ରୀକୃଷ୍ଣ ଯେଉଁ ଆଜ୍ଞା ଦେଲେ ମୋତେ
ଦାରୁ ବୋଲି କରି ଯାକୁ କରୁଥିଲି ପ୍ରତେ ।
ଏବେ ମୁଁ ଜାଣିଲି ସେହି କୃଷ୍ଣପିଣ୍ଡ ଗୋଟି
କେହି ତୋଳି ନ ପାରିବେ ତୁମ୍ଭରେ ଯେଉଁଠି ।
ରାଜା ବାକ୍ୟେ ବାସୁ ଦ୍ୱିଜ ସେ ଜାରାଶବର
ଯାଇ ଉଠାନ୍ତେ ଉଠିଲା ପ୍ରଭୁ କଳେବର ।
ଦୁଇପାଖେ ଦୁଇହାତେ ଦୁହେଁ ତୋଳିଛନ୍ତି
ବ୍ୟାଧ ଦ୍ୱିଜ ମଧ୍ୟେ ହେଲା ପ୍ରୀତିରେ ଅପ୍ରୀତି ।
ଦ୍ୱିଜଆଡ଼ ପଡ଼େ ବ୍ୟାଧ ପାଖ ଯେ ଉଠଇ
ଶ୍ରୀକୃଷ୍ଣ କୃପାରୁ ବ୍ୟାଧ ଟାଣ ଯେ ଅଟଇ ।
କୁଣ୍ଡ ଭିତରୁ କୃଷ୍ଣଙ୍କୁ ତୋଳି ଅବହେଳେ
ଦେଉଳ ଦୁଆର ମୁହେଁ ନେଇଣ ଥୋଇଲେ ।
ସେ ଦାରୁକୁ ଦେଖି ମନେ ଭାଳେ ନରନାଥ
ପ୍ରାସାଦେ ନ ଉଠିବ ଏ ଉତ୍ସର୍ଗ ବହୁତ ।
ଇନ୍ଦ୍ରଦ୍ୟୁମ୍ନ ରାଜା ଦେଖି ଧ୍ୟାନେ ଜଣାଇଲେ
ରାତ୍ରେ ସ୍ୱପନେ ତାହାଙ୍କୁ ପ୍ରଭୁ ଆଜ୍ଞା ଦେଲେ ।
ହେ ଇନ୍ଦ୍ରଦ୍ୟୁମନ ରାଜା ନ କର ଚିନ୍ତନ
ଜାରାକୁ କହ ସେ ମୂର୍ତ୍ତି କରିବ ଗଠନ ।
ସ୍ୱପନ ଦେଖି ବେଗରେ ଉଠି ନରପତି
ଜାରାପାଶେ ମିଳି କହେ ଏସନ ଭାରତୀ ।
ଯେବେ କି ତୋଳାଇଅଛି ମୁହିଁ ଏ ଦେଉଳ
ପ୍ରଭୁ ବୋଇଲେ ତୁହି ଭାଇ ଏଥେ ଅଟୁ ମୂଳ ।
ପ୍ରତିମା ନିର୍ମାଣ କର ପ୍ରଭୁ ଆଜ୍ଞା ଦେଲେ
କେଉଁ ରୂପରେ ଗଢ଼ିବୁଁ ତୁହି ଜାଣୁ ଭଲେ ।
ଯା କହି ଅନେକ ରତ୍ନ ଦେବ ନରପାଳ
ଜାରାଶବରକୁ କୁଣ୍ଢିଆଇ କଲା କୋଳ ।
ରାଜାର ଭକତି ଦେଖି ସେ ଜାରାଶବର
ବୋଲେ ଗଢ଼ିବି ପ୍ରତିମା ଚିନ୍ତା ତୁ ନ କର ।
ଯା କହି କବାଟ ପାଡ଼ି ଭିତରେ ପଶିଲା
ଅଦ୍‌ଭୁତେ ବ୍ରାହ୍ମଣେକ ସଙ୍ଗକୁ ମିଳିଲା ।
ତିନିଗଡ଼ କରି ସେହୁ ଦାରୁକୁ କାଟିଲେ
ଉଚ୍ଚ ମଧ୍ୟମ କନିଷ୍ଠ ତିନିମୂର୍ତ୍ତି କଲେ ।
ମିଥୁନ ପଞ୍ଚମୀ ଅନ୍ତେ ଦିନ ଗୁରୁବାର
ଶ୍ରବଣା ନକ୍ଷତ୍ର ଗୋଟି ଅଟେ ସେ ଦିନର ।
ଗର ନାମରେ କରଣ ଶୁଭ ନାମ ଯୋଗ
ସେଦିନ ସ୍ୱାମୀ ପ୍ରତିମା ସଞ୍ଚ ପ୍ରତି ଦୀର୍ଘ ।
ପଞ୍ଚମୀ ଷଷ୍ଠୀର ଶେଷେ ହୋଇଲା ନବମୀ
ଦଶମୀ ଉତ୍ତାରୁ ଏକାଦଶୀ ଗଲା ଗମି ।
ରୋହିଣୀ ନକ୍ଷତ୍ର ଆଉ ଅଟେ ଗୁରୁବାର
ସେଦିନ ନୃପତି ମନେ କରଇ ବିଚାର ।
ଦେଉଳର ଚାରିଆଡ଼େ ବୁଲିଣ ଆସିଲା
ଦେଉଳ ଦୁଆର ମୁହେଁ କାନକୁ ପାରିଲା ।
ଠୁକୁଠାକ ଦେଉଳର ଭିତର ନ ଶୁଣି
ଦକ୍ଷିଣଦ୍ୱାରେ କର୍ଣ୍ଣକୁ ପାତେ ନରମଣି ।
ତହିଁ ଠୁକୁଠାକ କିଛି ଯହୁଁ ନ ଶୁଭିଲା
ଉତ୍ତରଦ୍ୱାରେ ରାଜନ କର୍ଣ୍ଣକୁ ଡେରିଲା ।
ସେ ଦ୍ୱାରେ କିଛି ନ ଶୁଣି ତହୁଁ ରାଜା ଗଲା
ପୂର୍ବଦ୍ୱାରେ ମିଳି ତହିଁ କିଛି ନ ଶୁଣିଲା ।
କେଉଁ ସଙ୍କେତ ନ ପାଇ ଭାଳେ ନୃପବର
କି ଅବା ପଳାଇଗଲି ସେ ଜାରାଶବର ।
ଏହିରୂପେ ପରା ମନେ ଯହୁଁ ବିଚାରିଲା
ଅସମ୍ଭାଳ ହୋଇ ବେଗେ ଦ୍ୱାର ଫିଟାଇଲା ।
ମିଥୁନ ତ୍ରୟୋଦଶୀ ଗୁରୁବାର ରୋହିଣୀ
ବୁଧବାର ବେଳେ ପାଞ୍ଚଦଣ୍ଡ ଯେ ରଜନୀ ।
ଦିହୁଡ଼ି ଲଗାଇ ରାଜା ପଶିଲା ଭିତରେ
ଦେଖିଲା ଜଗମୋହନ ସିଂହାସନ ପରେ ।
ଶ୍ୱେତ ପୀତ କୃଷ୍ଣବର୍ଣ୍ଣ ତନୋଟି ମୂରତି
ଦେଖି ରାଜା ଶୋଇ କଲା ସହସ୍ର ପ୍ରଣତି ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଅଦ୍ଭୁତେ ବ୍ରାହ୍ମଣ କାହୁଁ ଅଇଲା ତହିଁକି ।
କେଉଁ କାର୍ଯ୍ୟ କରିଣ ସେ ପୁଣି କାହିଁ ଗଲା
ଆହେ ମୁନି ମୋତେ ତାହା ଗୋଚର ନୋହିଲା ।
ଅଗସ୍ତି ବୋଇଲେ ତାହା ଶୁଣ ହେ ନରେଶ
ବିଶ୍ୱକର୍ମା ଦ୍ୱିଜବେଶେ ମନ୍ଦିରେ ପ୍ରବେଶ ।
ଜାରାବ୍ୟାଧ ନ ଜାଣଇ ଥିଲେ ଅଦୃଶ୍ୟରେ
ଯେତେବେଳେ ସେ କିରାତ ଭାଳିଣ ଚିତ୍ତରେ ।
ନ ଜାଣେ ନିର୍ମାଣ ଜାଣେ ନାହିଁ ଚିତ୍ରକାମ
କି ରୂପେ ଦେଉଳେ ପିଣ୍ଡ ହୋଇବ ନିର୍ମାଣ ।
ସେ ଉତ୍ସର୍ଗ ଦେବତାଙ୍କୁ କେ କରିବ ପୂଜା
ମାନବ ହୋଇଣ କେହୁ ଦେବ ଯାଙ୍କୁ ଭୋଜା ।
ଏହିପରି ମନେ ମନେ ଭାଳଇ କିରାତ
ମୋହର ଦ୍ୱାରା ହୋଇ ନ ପାରେ ଏହି କୃତ୍ୟ ।
ଏପରି ଭାଳନ୍ତେ ବସି ଜାରା ମହାତମା
ତା ପାଶେ ଉଭା ହେଲେ ସେ ଦ୍ୱିଜ ବିଶ୍ୱକର୍ମା ।
ଜାରାଙ୍କୁ ବୋଇଲେ ଚିତ୍ତେ ନ କର ଚିନ୍ତାକୁ
ଯା କହି ତ୍ରିମୂର୍ତ୍ତି କଲେ କାଟି ସେ ଦାରୁକୁ ।

ଏ ପରେ କୃଷ୍ଣ କହିଲେ ହେ ଜାରାଶବର
ନିଜ ପିଣ୍ଡକୁ ମୋହର ଗୁପତ ତୁ କର ।
କଳିଯୁଗ ନରେ ମୋର ନ ଦେଖନ୍ତୁ ବର୍ଣ୍ଣ
ଶରୀରେ ମୋହର ସର୍ବେ ହୋଇବ ଯେ ଲୀନ ।
ଶାଳବୃକ୍ଷ ଝୁଣା ଆଣ ବାହାର କରିଣ
ମୋହର ପିଣ୍ଡରେ ତାହା କରାଅ ଲେପନ ।
ଶୁଣି ଜାରା ପ୍ରଭୁବାକ୍ୟ ପିଣ୍ଡ ଗୁପ୍ତେ ନେଇ
ନ ଜାଣଇ କେହି ବ୍ୟାଧ ରଖିଲା ଲୁଚାଇ ।
ରାତ୍ରେ ଶାଳବୃକ୍ଷୁଁ ଅଠା କାଢ଼ିଣ ଆଣିଲା
ବାଟିଣ କୃଷ୍ଣଙ୍କ ଅଙ୍ଗେ ଲେପନ କରିଲା ।
ଅଗସ୍ତି ବୋଇଲେ ଯାହା ପୁଚ୍ଛାକଲୁ ମନୁ
ଦାରୁପିଣ୍ଡ ମଧ୍ୟେ ଲୀନ ହେଲା ପ୍ରଭୁ ତନୁ ।
ଏ ପରେ ଇନ୍ଦ୍ରଦ୍ୟୁମ୍ନ ପୁଚ୍ଛଇ ବାସୁକୁ
କହ ଦ୍ୱିଜ ଏ ତ୍ରିମୂର୍ତ୍ତି କେ କିଏ ଆମ୍ଭଙ୍କୁ ।
ଏହି ତିନି ମୂର୍ତ୍ତିଙ୍କର କି କି ଅଟେ ନାମ
ଦ୍ୱିଜ ବୋଲେ ଏ ଧବଳରୂପୀ ବଳରାମ ।
ଦକ୍ଷିଣେ ଛନ୍ତି ସୌନକ ଦକ୍ଷ ହସ୍ତ ଧରି
କୃଷ୍ଣଙ୍କର ଭ୍ରାତ ଏହି ଦେବ ହଳଧାରୀ ।
ମଧ୍ୟ ପ୍ରତିମା କୁଙ୍କୁମ ବର୍ଣ୍ଣ ଯେଉଁ ରୂପ
ବ୍ରହ୍ମ ଅବତାର ହୋଇଛନ୍ତି ଘେନି ଶାପ ।
କଳା ବରନ ରୁଚିର ଯାହାଙ୍କର ଗାତ୍ର
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଜଗନ୍ନାଥ ।
ରାମ କୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହରିହର ବ୍ରହ୍ମା ।
ଶ୍ରୀପୁରୁଷୋତ୍ତମେ ଏବେ ହୋଇଲେ ପ୍ରକାଶ
ଦର୍ଶନେ ପ୍ରାଣୀଙ୍କ ପାପ ହୋଇବ ବିନାଶ ।
କଳିଯୁଗେ ନରଙ୍କର ଭକ୍ତି ନାହିଁ ଲବେ
ତେଣୁ ପଦ୍ମ ପାଦ କେହି ଦେଖି ନ ପାରିବେ ।
ହରିହର ଏକ ଆତ୍ମା ଅଟନ୍ତି ଯେ ବେନି
ଏକାବେଳେ ପୂଜନ୍ତେ ସନ୍ତୋଷ ସେ ପୁଣି ।
ଚାରିଲକ୍ଷ ବତିଶସସ୍ର କଳିଯୁଗ
ଭୋଗ କରିବାକୁ ପ୍ରଭୁ କଲେ ଉଦ୍‌ଯୋଗ ।
ଶୁଣି କରି ଆନନ୍ଦିତ ହେଲା ମହାରାଜା
ବାସୁ ବ୍ରାହ୍ମଣର ସଙ୍ଗେ କଲା କୋଟି ପୂଜା ।
ଯାହା ସେ ସର୍ଜନା କରି ଅଛନ୍ତି ବିଧାତା
ଜାରାଶବରର ବଂଶ ହୋଇଲେ ଦଇତା ।
ବିଷ୍ଣୁର ଆଜ୍ଞାରେ ସେଇ ନିର୍ମାତା ଅଟଇ
ମିଥୁନ କୃଷ୍ଣପକ୍ଷେ ସେ ଔଷଧ କରଇ ।
ବାସୁ ବ୍ରାହ୍ମଣର ବଂଶ କରିବେ ସେ ପୂଜା
ଏହି ବର ମାଗିଲେ ସେ ଇନ୍ଦ୍ରଦ୍ୟୁମ୍ନ ରାଜା ।

ଜୟ ହେ ନୀଳସୁନ୍ଦର ଦେବ ବ୍ରହ୍ମରାଶି
ପୁରୁଷ ଅନନ୍ତ ନାଥ କ୍ଷୀର ସିନ୍ଧୁ ବାସୀ ।
ଲୀଳାଭାବେ ନୀଳାଚଳେ କରନ୍ତେ ବିଜୟେ
ସେଠାରେ ଆସି ମିଳିଲେ ସର୍ବ ଦେବତାଏ ।
ପୁଷ୍କର କୋଟିଏ ତୀର୍ଥ ଘେନି ଲୁଚିଥିଲା
ଶ୍ରୀକୃଷ୍ଣ ଚରଣେ ଆସି ନମସ୍କାର କଲା ।
କ୍ଷେତ୍ରର ଐଶାନ୍ୟ ଦିଗେ ଅଛି ଯେଉଁ କୁଣ୍ଡ
ତହିଁ ବିକାଶଇ ଇନ୍ଦ୍ର ଦେବତାର ପିଣ୍ଡ ।
ଯମ କୁବେର ସେଠାରେ ଯାଇ ପ୍ରବେଶିଲେ
କ୍ଷେତ୍ରେ ମଧ୍ୟେ ସ୍ଥାନେ ସ୍ଥାନେ ଦର୍ଶନେ ରହିଲେ ।
କଳିକାଳ ଧ୍ୱଂସିବାକୁ କଳିକାଳ ଛାଡ଼ି
ପ୍ରଭୁ ଆଶ୍ରୟେ ରହିଲେ ତୀର୍ଥସ୍ଥାନ ମାଡ଼ି ।
ଧର୍ମଦେବତା ଦେଖିଣ ମାଧବଙ୍କ ରୂପ
ଧର୍ମ ଦୁଆରେ ରହିଲେ ହୋଇକରି ଗୋପ୍ୟ ।
ସପତ ସମୁଦ୍ର ସଙ୍ଗେ ଆସି ରତ୍ନାକର
ଆରାଧନା କରିଲେକ ସେ ନୀଳସୁନ୍ଦର ।
ମୂର୍ତ୍ତିମାନ ହୋଇ ଦେବେ ସେଠାରେ ରହିଲେ
ପ୍ରଭୁଙ୍କୁ ଚରଣ ନିତି ଦର୍ଶନ କରିଲେ ।

—୦—

## ବାସୁ ବ୍ରାହ୍ମଣର ମୃତ ପୁତ୍ର ବଳଦେବଙ୍କଦ୍ୱାରା ପୁନର୍ଜ୍ଜୀବିତ

ଏଥୁଅନନ୍ତରେ କଥା ଶୁଣ ନରନାଥ
ବାସୁ ବ୍ରାହ୍ମଣର ହେଲା ଏକ ଗୋଟି ସୁତ ।
ତିନିମାସ ତେରଦିନେ ଯମ ତାକୁ ନେଲା
ବାସୁ ବ୍ରାହ୍ମଣର ଘରେ ବ୍ରାହ୍ମଣୀ କାନ୍ଦିଲା ।
କାନ୍ଦିଲେ ଦ୍ୱିଜ ବ୍ରାହ୍ମଣୀ ଉଚ୍ଚେ ଡାକ ପାଡ଼ି
କେଉଁଆଡ଼େ ଗଲୁ ପୁତ୍ର ଆମ୍ଭଙ୍କୁରେ ଛାଡ଼ି ।
କେଉଁ ଦୋଷେ ନେଲା ତୋତେ ଯମଦଣ୍ଡଧର
କାହିଁ ଲୁଚିଗଲା ଚନ୍ଦ୍ରମୁଖ ଗୋଟି ତୋର ।
ଏହିରୂପେ ଡକାପାଡ଼ି କରନ୍ତେ ରୋଦନ
ତାହା ଦେଉଳେ ଶୁଣିଲେ ଦେବ ବଳରାମ ।
ଜାଣିଲେ ବ୍ରାହ୍ମଣସୁତ ଯମ ଘେନିଗଲା
ଆମ୍ଭ ଦାସ ପୁତ୍ର ମାରି ଅନ୍ୟାୟ କରିଲା ।
ଏହା ବିଚାରିଣ ଜାରାଶବରେ ଡାକିଲେ
ତାହାକୁ ଅନାଇ ମୁଖେ ଏହି ଆଜ୍ଞା ଦେଲେ ।
ଏହିଠାରୁ ତଡ଼ିଦିଅ ଯମ ଦେବତାକୁ
ଅନ୍ୟାୟ କରିଲା ମାରି ସେବକ ପୁତ୍ରକୁ ।
କହିଦେବୁ ମୋତେ ଆଶ୍ରା କରି ଯେତେ ଜନ
ସେବା ଭକ୍ତିରେ ସର୍ବଦା କାଟୁଛନ୍ତି ଦିନ ।

ସେମାନଙ୍କୁ ନ ଛୁଇଁବ କଦାପି ଶମନ
ଏ କଥାକୁ କହ ଏବେ ହୋଇ ସାବଧାନ ।
ଏହା ଜାଣି ଯମ ଆସି କହଇ ବିନୟେ
ମୋର ଏକ କଥା ଶୁଣ ତୁମ୍ଭେ ଦେବରାୟେ ।
ଏ କଳିଯୁଗରେ ନର ସର୍ବେ ଜ୍ଞାନଭ୍ରଷ୍ଟ
ବହୁ ପାପ କରି ଯିବେ ତୀର୍ଥର ନିକଟ ।
ସବୁ ନର ମୋକ୍ଷ ଯେବେ ହେବେ ଦେବ ହଳୀ
ମୁହିଁ ଆଉ କେଉଁ ଧର୍ମ ଥିବି ପ୍ରତିପାଳି ।
ଶ୍ରୀମୁଖେ ବିଚାରି ମୋତେ କହନ୍ତୁ ଆପଣ
କି ରୂପେ ପାପୀଙ୍କି ବାନ୍ଧି ଦେବି ଦଣ୍ଡ ମାନ ।
ଏହା ଶୁଣି ମହାପ୍ରଭୁ ଯମକୁ କହନ୍ତି
ଶୁଣ ତୁମ୍ଭେ ପାଶହସ୍ତ ମୋହର ଭକତି ।
ଏହି ଏହି ସ୍ଥାନେ ପ୍ରାଣୀ ରହିଥିବେ ଯେତେ
ଯମେଶ୍ୱରଠାରୁ ମାରକଣ୍ଡ ପରିଯନ୍ତେ ।
ଅସଂଖ୍ୟ ପାପ ସେମାନେ ଯେବେ କରିଥିବେ
ତୋହର ଦଣ୍ଡକୁ କେବେ ଯୋଗ୍ୟ ହି ନୋହିବେ ।
ଶୁଣି ଯମ ବୋଲେ ପ୍ରଭୁ ହେଲା ମୋର ସତ୍ୟ
ଏ ସ୍ଥାନକୁ ନ ଆସିବି ମୁହିଁ କଦାଚିତ ।
ମହାପାପ କଲେ ସୁଦ୍ଧା ନ ଯିବି ମୁଁ ତହିଁ
ଏହା କହି ଦ୍ୱିଜପୁତ୍ରେ ଦେଲେକ ଜୀଆଇ ।
ସେହିକ୍ଷଣି ପ୍ରାଣ ପାଇ ଉଠନ୍ତେ ଆତ୍ମଜ
ପୁରୁଷୋତ୍ତମ ତା ନାମ ରଖିଲା ସେ ଦ୍ୱିଜ ।
ଜାରାଶବରର ଏକ ପୁତ୍ର ଜନ୍ମିଥିଲା
ବଳରାମଙ୍କ କଲ୍ୟାଣୁ ଦୀର୍ଘାୟୁ ସେ ହେଲା ।
ଜୟ ହେ ନୀଳସୁନ୍ଦର ପୁରୁଷଉତ୍ତମ
ବ୍ରହ୍ମା ରୁଦ୍ର ଅବତାର ତୁମ୍ଭେ ପୂର୍ଣ୍ଣ ବ୍ରହ୍ମ ।
କଳିକାଳେ ନିବାରଣେ ନୀଳାଚଳେ ବିଜେ
ନବକୋଟି ତୀର୍ଥ ଘେନି ପୁଷ୍କର ଯେ ପୂଜେ ।
ପରମ ପୁରୁଷ ନାଥ ଅଟ ମହାଯୋଗୀ
ଜନ୍ମେ ଜନ୍ମେ ଭାବଇ ମୁଁ ତବ ପଦ ଲାଗି ।
ଶ୍ୱେତ ପୀତ କୃଷ୍ଣବର୍ଣ୍ଣ ତିନୋଟି ମୂରତି
ସତ୍ତ୍ୱ ରଜ ତମ ଗୁଣ ହୋଇ ବିରାଜନ୍ତି ।
ମଧ୍ୟରେ ବ୍ରହ୍ମା ଧରିଣ ସୁଭଦ୍ରାର ରୂପ
ରଜୋଗୁଣେ ଜଗନ୍ନାଥ ସୁନ୍ଦର ସ୍ୱରୂପ ।
ଦୟାଭାବ ଆପଣଙ୍କ ସାଗର ସମାନ
ଶାନ୍ତଭାବେ ଭକ୍ତେ ତାରି ଖଣ୍ଡେ ପାପମାନ ।
କ୍ଷମାଗୁଣରେ ଆପଣ ସହିଷ୍ଣୁ ଅଟନ୍ତି
ଭକତଙ୍କ ପାଇଁ ପ୍ରଭୁଙ୍କର ନାନା ମୂର୍ତ୍ତି ।
ତୁମ୍ଭର ଚରଣେ ଦେବ ନିତ୍ୟ ମନ ରହୁ
ତୁମ୍ଭ ନାମ ଘୋଷି ଘୋଷି ପିଣ୍ଡୁ ପ୍ରାଣ ଯାଉ ।
ନୀଳଗିରିର ମହିମା ବର୍ଣ୍ଣନେ କି ଶକ୍ତି
ସବୁ ଦେବ ତୀର୍ଥ ଆଦି ଯହିଁ ବିରାଜନ୍ତି ।
ନିଜକନ୍ୟା ସମର୍ପଣ କରି ବାରାନିଧି
ସପତ ସମୁଦ୍ରେ ଘେନି ଖଟେ ନିରବଧି ।
ବାସୁକି ସହିତେ ଅଷ୍ଟକୁଳ ନାଗେ ଛନ୍ତି
ସଦା ପୂର୍ଣ୍ଣ ରହି କ୍ଷୀରସିନ୍ଧୁ ନ ଲଙ୍ଘନ୍ତି ।
ବାଳବାଳେ ତୁମ୍ଭ ବତ୍ସା ହରିଥିଲେ ବ୍ରହ୍ମା
ତାହାଙ୍କର ଦୋଷ ପ୍ରଭୁ କରିଥିଲ କ୍ଷମା ।
ଜନ୍ମେ ଜନ୍ମେ ଦାସ ମୁହିଁ ତୁମ୍ଭର ଅଟଇ
ତେଣୁ କରି ଶ୍ରୀଚରଣେ ସର୍ବଦା ଖଟଇ ।
ମାର ତାର ଯାହା କର ତୁମ୍ଭ ପାଶେ ଆଶ୍ରା
ତୁମ୍ଭେ ହିଁ ମୋହର ପ୍ରଭୁ ସକଳ ଭରସା ।
ଅମୃତ ସମାନ ଅଟେ ଏ ମହାଭାରତ
ମୂଷଳୀପର୍ବ ଏଠାରେ କରିଲି ସମାପ୍ତ ।
ସାଧୁ ସୁଜ୍ଞଜନମାନେ ଶୁଣି ହୁଅ ତୋଷ
ବଦନ୍ତି ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।



**ଇତି ଶ୍ରୀ ମହାଭାରତ ମୂଷଳୀ ପର୍ବ ସମାପ୍ତ**

ଶୂଦ୍ରମୁନି ୰ ଶାରଳା ଦାଶଙ୍କ ବିରଚିତ




# ସ୍ୱର୍ଗାରୋହଣପର୍ବ

ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର

(ନୂତନ ମୁଦ୍ରଣ)

ପ୍ରାପ୍ତିସ୍ଥାନ - ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ - ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ - ୨
ଦୂରଭାଷ : ୦୬୭୧-୨୬୦୮୨୯୬

# ମହାଭାରତ ସ୍ୱର୍ଗାରୋହଣ ପର୍ବର

## ସୂଚୀପତ୍ର





ସ୍ୱର୍ଗାରୋହଣ ପର୍ବର ସୂଚୀପତ୍ର ସମାପ୍ତ

# ମହାଭାରତ

## ସ୍ୱର୍ଗାରୋହଣ ପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧ ବୁଦ୍ଧି,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ସ୍ତ୍ରୀ ହରଣଂ ବନେ ବିଚରଣଂ ମସ୍ୟାଳୟେ ଗୋପନଂ ।
ଲୀଳା ଗୋହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତଂ ।

ଭୀଷ୍ମ ଦ୍ରୋଣତଥାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯକ୍ରର୍ଣ୍ଣଧାରୋ ହରି ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ,
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ।
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ,
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।

ତତ୍ରୈବ ଗଙ୍ଗା ଯମୁନା ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣୀ ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦରକଥାପ୍ରସଙ୍ଗଃ ।

## ପ୍ରଜାଙ୍କଠାରୁ ଯୁଧିଷ୍ଠିରଙ୍କ ବିଦାୟ, ପରୀକ୍ଷିତଙ୍କ ରାଜନୀତି ଶିକ୍ଷା, ସୁବର୍ଣ୍ଣଚୁଡ଼ୀ ଓ କଳିଯୁଗ ବିବରଣ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ପାଣ୍ଡବମାନେ ରହିଲେ ଯେ ଅମରାବତୀ ।
ସୁହାଣୀ କନ୍ୟାଙ୍କୁ ବିଭା ହେଲେ ଧର୍ମସୁତ
ରହିଲେ ଯେ ପଞ୍ଚସ୍ତରୀ ବର୍ଷ ପରିଯନ୍ତ ।
ପରୀକ୍ଷିତେ ରାଜ୍ୟ ଦେଲେ ଯଜନ ନଗରୀ
ପଞ୍ଚକଟକର ମଧ୍ୟେ ଏକା ଅଧିକାରୀ ।
ପାତ୍ର ବୃଷ୍ଟି କେଶବ ଯେ ମନ୍ତ୍ରୀ ସୋମଦାସ
ସୁଖେ ରାଜ୍ୟ ଶାସିଲେ ସେ ପାଇ ସର୍ବ ଯଶ ।
ପରୀକ୍ଷିତଙ୍କୁ ଯେ ତିଆରନ୍ତି ଧର୍ମସାଇଁ
ବାବୁ ପ୍ରଜା ପାଳିଲେ ଯେ ଆୟ ଶ୍ରୀ ବଢ଼ଇ ।
ପରଜାଙ୍କୁ ରାଜା ଯେବେ ପାଳୁଥାଇ ଭଲେ
ଇନ୍ଦ୍ରଦେବ ତହିଁ ବୃଷ୍ଟି କରୁଥାନ୍ତି ତୁଲେ ।
ବାବୁ ରାଜ୍ୟ ପାଳିଲେ ଯେ ପ୍ରଜା ହୋନ୍ତି ସୁସ୍ଥ
ପ୍ରଜା ସୁସ୍ଥହେଲେ କୃଷି ଉପୁଜେ ବହୁତ ।
କୃଷି ହେଲେ ଭଣ୍ଡାରରେ ହୁଏ ବହୁ ବିତ୍ତ
ଜୀବଜନ୍ତୁଙ୍କର କଷ୍ଟ ନ ହୁଏ ସତତ ।
ଏହା କହି ଯୁଧିଷ୍ଠିର ମନେ ବିଚାରିଲେ
ଭଲ ହେବ ଯେଉଁପରି ସେହିପରି କଲେ ।
ଆପଣାର ଶ୍ରୀକରରେ ମାପିଲେ ଯୁଧିଷ୍ଠି
ବାରଦଣ୍ଡ ହୋଇଲା ଯେ ସେହି ନଳକାଠି ।
ଦୀର୍ଘ ପଚିଶ ହୋଇବ ପ୍ରତି ହେବ ବିଂଶ
ଏତେକ ହୋଇଲେ ହେବ ଏକବାଟି ଚାଷ ।
ଏହିପରି ମାପ କରି ଯୁଧିଷ୍ଠି ରାଜନ
ପରୀକ୍ଷିତଙ୍କୁ ବୋଇଲେ ଶୁଣରେ ନନ୍ଦନ ।
ପଞ୍ଚଶତ ଦଣ୍ଡ ଯେବେ ହେଲା ଏକବାଟି
ଏଥିରୁ ଘେନିବୁ ସଞ୍ଜା ପାଞ୍ଚ ଯେ ପଉଟି ।
ଚାରି ପଉଟି ଆଣିବୁ ଆପଣା ଭଣ୍ଡାରେ
ପଉଟିଏ ବୀଜ ଥିବ ପୁଣି ସେ ଗ୍ରାମରେ ।
ଯେ ଚଷା ବାଟିଏ ଜମି କରିଣ କର୍ଷଣ
ତାହାକୁ ଏକ ପଉଟି ଦେବୁ ତୁ ବିହନ ।
ଯୁଧିଷ୍ଠିଦେବ କହନ୍ତି ଯେବଣ ବିଧାନ
ପରୀକ୍ଷିତ ଶୁଣନ୍ତି ତା ହୋଇ ସାବଧାନ ।
ସୁଜନ ଦେଖିଲେ ତାକୁ ନିଯୋଗ ତୁ ଦେବୁ
ଜୀବ ଥିବାଯାଏ ଆଉ ତାକୁ ନ ଛାଡ଼ିବୁ ।
ତାର ଅନ୍ତେ ତା ପୁଅକୁ ଦେବୁ ଅଧିକାର
ଏହିରୂପେ ତିଆରିଲେ ଧର୍ମ ଯୁଧିଷ୍ଠିର ।
ସଂକ୍ଷେପି କହିଲେ ସେହୁ ସକଳ ବିଧାନ
ଅନ୍ତ କରି ପାରିବିକି ମୁହିଁ ତା ଲେଖିଣ ।
ଏଥୁଅନ୍ତେ ବୈତରଣୀ ନାମେ ନଦୀକୂଳେ
ବେଦପୁର ବୋଲି ନଗ୍ର ଅଛି ସେହି ସ୍ଥଳେ ।
ସେ ନଗ୍ରରେ ସୁରେଶ୍ୱର ବୋଲିଣ ବ୍ରାହ୍ମଣ
କୃଷିକର୍ମ କରି କରେ ଜୀବିକା ପୋଷଣ ।
ତୃପତି ନାମରେ ଥିଲା ତାହାର କୃଷାଣ
ଲଙ୍ଗଳ ଘେନିଣ ଭୂମି କରଇ କର୍ଷଣ ।
ଲଙ୍ଗଳ ଫିଟାନ୍ତେ ପଣ୍ଡା ଦେଲେକ କୋଦାଳ
ବୋଇଲେ କ୍ଷେତ୍ରର ତଟ କର ସମତୁଲ ।
ତୁଳମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ
ଭୃଗୁବାର କୃତ୍ତିକା ନକ୍ଷତ୍ର ବିଦ୍ୟମାନ ।
ସେ କୃଷାଣ ହସ୍ତେ ଦେଲେ କୋଦାଳ ଖଣ୍ଡିଏ
କ୍ଷେତ ପାଶେ ଦେଖାଇଲେ ଅର୍କବୁଦାଟିଏ ।
ଏ ବୁଦାକୁ ଖୋଳି ତୁରେ ପକାଅ ତେଣିକି
କ୍ଷେତ୍ରବୃତ୍ତି ହେବ ଜମି ଯିବ ସେ ସଳଖି ।
ଆଜ୍ଞା ଦେଇ ସୁରେଶ୍ୱର ଗଲା ନିଜପୁରେ
କୃଷାଣ ସେ ବୁଦା ଖୋଳି ପକାଇଲେ ଦୂରେ ।
ହାଣନ୍ତେ ପାଷାଣେ ଯାଇ ଲାଗିଲାକ କୋଡ଼ି
ପାଷାଣ କାଢ଼ି ଦିଅନ୍ତେ ପାଏ ରତ୍ନଚୁଡ଼ୀ ।
ସେ ଦନ ଦେଖିଣ ସେହି ମହାବଳବନ୍ତ
ମଥାରେ ଘେନି ବାହାର ହୋଇଲା ତୁରିତ ।
ମୁଣ୍ଡାଇଣ ନେଇ ଯାଇ ଦେଲା ସେ ପଣ୍ଡାକୁ
ପଣ୍ଡାଏ ବୋଇଲେ ନିଅ ତୋହର ଘରକୁ ।
କୃଷିମୂଲ୍ୟ ସିନା ଅଟେ ଆମ୍ଭର ଯୁକତେ
ତୋ କର୍ମକୁ ଏ ପଦାର୍ଥ ମିଳିଲାକ ତୋତେ ।
ତୃପତି ବୋଇଲେ ଗୋସାଇଁ କହିଲ ଅନୀତି
ତୁମ୍ଭ ତୋଟାବାଟି ଏହୁ ଅଟେ ତୁମ୍ଭ ବୃତ୍ତି
ତୁମ୍ଭର ଉପରବଂଶେ କେବଣ ସାଧବ
ଗୁପତରେ ରଖିଥିବ କିଏ ସେ ହରିବ ।
ମୁହିଁ କୃଷି କରି ସିନା ଜନ୍ମାଇବି କ୍ଷେତ
ଏ ଧନ ନେବାରେ ମୋର ନୁହଇ ଉଚିତ ।
ଅନ୍ନ ବସ୍ତ୍ର ବରତନ ବିନା ଆଉ ଯେତେ
ତୁମ୍ଭର ସେ ବିତ୍ତ ମୁହିଁ ନେବଇଁ କେମନ୍ତେ ।
ବ୍ରାହ୍ମଣ ବୋଇଲେ ତୁହି ଶୁଣରେ ନିର୍ବୋଧ
କୃଷାଣ ହୋ ମୋ ସଙ୍ଗେ କରୁଅଛ ବାଦ ।
ତୋହର କର୍ମରେ ସେହି ଉପୁଜିଲା ବିତ୍ତ
ଏହାକୁ ମୁହିଁ କେମନ୍ତେ ନେବାକୁ ବହୁତ ।
କୃଷାଣ ବୋଇଲେ ସ୍ୱାମୀ ତୁମ୍ଭେ ପୁଣ୍ୟଜନ
ଏଡ଼ିକି ଛନ୍ଦ କଲେ କି ରହେ ବଡ଼ପଣ ।

ବାର ଚିନା ବରତନେ ମୁଁ ସିନା କାରେଣୀ
ରାଜା ଛାମୁରେ ଗୁହାରି କରିବି ଏକ୍ଷଣି ।
ବ୍ରାହ୍ମଣ ବୋଇଲା ତେବେ ମୁଣ୍ଡେ ଘେନ ଏହା
ରାଜାର ଛାମୁକୁ ଯିବା ଚାଲରେ ଦୋରେହା ।
ବ୍ରାହ୍ମଣ କୃଷାଣ ଦୁହେଁ ଉଛେ କରି କଳି
ରତ୍ନଚୁଡ଼ି ଘେନିଯାଇ ସିଂହଦ୍ୱାରେ ମିଳି ।
ସେହି ଦ୍ୱାରରେ ଥୋଇଲେ ନେଇଣ ସେ ନିଧି
ରାଜାଙ୍କୁ ବୋଲେ କୃଷାଣ କଲେ ଏ ଅବିଧି ।
ସାଧବ ବୋଇଲା ଦେବ ଏ ମୋର କୃଷାଣ
କୋଦାଳ ଦେଇ ବୋଇଲି ଏ ବୁଦାକୁ ହାଣ ।
ହାଣନ୍ତେ ପାଇଲା ଏହୁ ଏ ଅମୂଲ୍ୟ ବିତ୍ତ
ଦେଖୁ ଦେଖୁ ହରିବି ମୁଁ ଏହାକୁ କେମନ୍ତ ।
ମୋର କୃଷାଣ ହୋଇଣ ଏଡ଼େ ଆଣ୍ଟପଣ
ଏ ମୋତେ ବୋଇଲା ମୋର ଛନ୍ଦୁଆଳଗୁଣ ।
ତାହା ଶୁଣିଣ ଆଶ୍ଚର୍ଯ୍ୟ ହୋଇଲେ ଯୁଧିଷ୍ଠି
ଦେଖିଲେ ସିଂହଦ୍ୱାରରେ ରତ୍ନଚୁଡ଼ୀ ଗୋଟି ।
ସୁରେଶ୍ୱର ବୋଲେ ଦେବ ଏ ମୋର କୃଷାଣ
କୋଦାଳ ଦେଇ ବୋଇଲି ଅର୍କବୁଦା ହାଣ ।
ହାଣନ୍ତେ ପାଇଲା ଏହୁ ଏ ଅମୂଲ୍ୟ ନିଧି
ତେଣୁ ଏ ରତ୍ନ ଏହାର ହୋଇଲାକ ବିଧି ।
ଏଡ଼େ ଛନ୍ଦୁଆଳ ଏ ତ ସାନଲୋକ ହୋଇ
ଏହାର ଅର୍ଜିଲା ବିତ୍ତ ମୋତେ ଯେ ଦିଅଇ ।
ଯୁଧିଷ୍ଠି ବୋଇଲେ ଯେବେ ପାଇଲୁ ତୁ ଖୋଳି
ଏ ଧନକୁ ନିଅ ଦ୍ୱିଜ ସଙ୍ଗେ କିମ୍ପା କଳି ।
କୃଷାଣ ବୋଇଲା କରି ପାରିବି କି ପାର
ଅନ୍ନବସ୍ତ୍ର ବରତନେ ସିନା ଅଧିକାର ।
ସେ ଭୂମିରୁ ଯେଉଁସବୁ ଉପଜାତ ହୁଏ
ଏହାଙ୍କର ସିନା ସେହି ବିତ୍ତ ନରରାୟେ ।
ଯୁଧିଷ୍ଠି ବୋଇଲେ ତେବେ ଅଧେ ଅଧେ କର
ବାଣ୍ଟିନିଅ ଦୁହେଁଯାକ ଆମ୍ଭର ବିଚାର ।
କୃଷାଣ ବୋଇଲା ଦେବ ତୁମ୍ଭେ ଧର୍ମରାୟେ
ମୋହର ଯୋଗାଏ ନାହିଁ ନେବାକୁ ଚିନାଏ ।
ବ୍ରାହ୍ମଣ ବୋଇଲେ ମୁହିଁ କିଛି ହିଁ ନ ନେବି
ଏହାର ଦୁଃଖେ ଅର୍ଜିଲା ଧନ ନ ଛୁଇଁବି ।
ଏମନ୍ତ ଶୁଣି ଆଶ୍ଚର୍ଯ୍ୟ ହେଲେ ଯୁଧିଷ୍ଠିର
ସହଦେବଙ୍କୁ ବୋଇଲେ ଏ କେଉଁ ବେଭାର ।
ସହଦେବ ବୋଲେ ଦେବ ଜାଣିବ ଏ କ୍ଷଣି
ଏଥିର ତଦନ୍ତ ସବୁ ପୂର୍ବୁ ଅଛି ଜାଣି ।
ଶୁଣ ଦେବ ଯୁଧିଷ୍ଠିର ଏସନ ବାରତା
କଳିଯୁଗର ପ୍ରବେଶ ଜାଣିବ ଯେ କଥା ।

ଉଦ୍‌ଯୋଗ ପର୍ବେ କୃଷ୍ଣ ହୋଇଗଲେ ଦୂତ
ସେହିଦିନୁ କଳିଯୁଗ ହୋଇଲା ଉଦିତ ।
ହରି ଅର୍ଜୁନର ଭୟେ ପଶି ନ ପାରିଲା
ମହାଭାରତର ଯୁଦ୍ଧ କଳିଯୁଗେ ହେଲା ।
ଆମ୍ଭର ସମୟେ ସୁଖ ଭୋଗର ନିମନ୍ତେ
କଳିକୁ ପଶି ନ ଦେଲେ ପାର୍ଥ ଜଗନ୍ନାଥେ ।
କଳିକି ମୁଁ ବାନ୍ଧିଅଛି ଦେଇ କାଳପାଶ
ହୋଇଗଲାଣି ଆଜକୁ ଦ୍ୱାଦଶ ବରଷ ।
ଏହିକାଳେ ଶୂନ୍ୟବାଣୀ ଶୁଭେ ଅକସ୍ମାତେ
ଛାଡ଼ି କଳିଯୁଗେ ଏବେ ନ ଥାଅ ଜଗତେ ।
ଶ୍ରୀକୃଷ୍ଣ ଅଇଲେ ପାର୍ଥ ନାହିଁ ତାଙ୍କ ସଙ୍ଗେ
ପୁଣି ହିଁ ଜାତ ହୋଇବେ କଳି ଅନ୍ତଭାଗେ ।
ଯୁଧିଷ୍ଠି ନ ନେଇ ସ୍ୱର୍ଗ ଶୋଭା ନ ଦିଶଇ
ଧର୍ମ ନ ଥିବାରୁ କିଛି ସୁଖ ଭୋଗ ନାହିଁ ।
ଆକାଶର ବାଣୀ ଶୁଣି ମନ୍ତ୍ରୀ ଉଦ୍‌ବେଗ
ଫାଶରୁ ଫିଟାଇଦେଲା ବେଗେ କଳିଯୁଗ ।
ତହୁଁ ଏକ ନିମିଷରେ ପୃଥ୍ୱୀ ଗଲା ଘୋଟି
ଲାଗିଗଲା ମାୟାମୋହ ଲାଗିଲାକ ସୃଷ୍ଟି ।
ବ୍ରାହ୍ମଣ ବୋଲେ ଏ ଧନ ମୋ ଅଜାର ବୋଲି
ପଳା ଯା କହି କୃଷାଣ ତାକୁ ଦେଲେ ପେଲି ।
ବ୍ରାହ୍ମଣ କହିଲା ରଖ ଧର୍ମଙ୍କ ନନ୍ଦନ
ଏ କୃଷାଣ ମୋହଠାରୁ ଅଟେ ବଳବାବ ।
ଏହା କହି କୋଳ କରି ଧରେ ରତ୍ନଚୁଡ଼ୀ
ବଳେ କୃଷାଣ ନିଅଇ ତାହାଠୁ ଉଛୁଡ଼ି ।
ଦେଖି ଯୁଧିଷ୍ଠିର ଦେବ ନାକେ ଦେଲେ ହସ୍ତ
ଏହିକ୍ଷଣି ସହଦେବ ହୋଇଲା ଏମନ୍ତ ।
ସହଦେବ ବୋଲେ କୃଷ୍ଣ ଦୂତପଣେ ଗଲେ
ସେହିଦିନୁ କଳିଯୁଗ ପ୍ରବେଶ ହୋଇଲେ ।
ମହାଭାରତ ସମର ଯହୁଁ ହେଲା ଶେଷ
ମୋତେ ହକାରି ବୋଇଲେ ତହୁଁ ହୃଷୀକେଶ ।
କାଳକ ଯୁଧିଷ୍ଠି ବନେ ପାଇଛନ୍ତି ଦୁଃଖ
ରାଜପୁତ୍ର ହୋଇ କିଛି ନ ଲଭିଲେ ସୁଖ ।
ଏହା କହି ଆଜ୍ଞାଦେଲେ କଳିଯୁଗ ବାନ୍ଧ
କଳିକି ବାନ୍ଧିଲି ଯହୁଁ କହନ୍ତେ ଗୋବିନ୍ଦ ।
ଦ୍ୱାଦଶ ବରଷ ଆସି ହୋଇଗଲା ଗତ
ଦେବ ତୁମ୍ଭେ ସୁଖଭୋଗ କରିଲ ବହୁତ ।
ଏବେ କୃଷାଣ ଦ୍ୱିଜ କଳି ଆରମ୍ଭିଲେ
ରତ୍ନଚୁଡ଼ି ପାଇଁ ଦୁହେଁ ଉଚ୍ଚବାଚ ହେଲେ ।
କେହୁ ଯହୁଁ ନ ଘେନିଲେ ସେହି ରତ୍ନଚୁଡ଼ୀ
ସେହି ହେତୁ କଳିଯୁଗ ଦେଖି ମୁହିଁ ଛାଡ଼ି ।

ଏବେ ଦୁହେଁ ବଳାତ୍କାରେ ଲୋଡୁଛନ୍ତି ଧନ
ଦୁହେଁ ଏକା ନେବାପାଇଁ କରୁଛନ୍ତି ମନ ।
ଏହା ଶୁଣି ଯୁଧିଷ୍ଠିର ହୋଇଲେ ମଉନ
କଳିକାଳ କଥା ଭାବି ଆପଣାର ମନ ।
ଏ ସମୟେ କିଛିକ୍ଷଣ ଦ୍ୱିଜ ସହିତରେ
ଗୁହାରି କରିଲେ ପରୀକ୍ଷିତ ରାଜାଠାରେ ।
ପରୀକ୍ଷିତ ସବୁ ଶୁଣି ଏପରି କହିଲା
ଏହି ରତ୍ନଚୁଡ଼ୀ ମୋର ପୃଥିବୀରେ ଥିଲା ।
ଏହା କହି ପରୀକ୍ଷିତ ରତ୍ନଚୁଡ଼ୀ ନେଲା
ଆପଣା ଭଣ୍ଡାର ଘରେ ନେଇ ରଖାଇଲା । -
ତହିଁପରେ ଆଜ୍ଞା ଦେଲା ଆପଣା ଚାକର
ଏ ଦୁହିଁଙ୍କୁ ଏହିଠାରୁ ଶୀଘ୍ର ବିଦା କର ।
ପୁଣି ଯୁଧିଷ୍ଠିର ସହଦେବ ପଚାରନ୍ତି
କହ ଭାଇ ଏହି କଳିଯୁଗର ଯେ ରୀତି ।
କହ ତୁ ସଂକ୍ଷେପି କଳିଯୁଗର ବାରତା
ମୋତେ ବଡ଼ ଅଗୋଚର ଲାଗେ ବଡ଼ ବ୍ୟଥା ।
ଶୂଦ୍ରଙ୍କୁ ଦ୍ୱିଜ ମାଗିବେ କରି ତଳହସ୍ତ
ନିତ୍ୟକର୍ମକୁ ତେଜିବେ ହେବେ ଅଭକତ ।
ସହଦେବ ବୋଲେ ଦେବ ଶୁଣ ସାବଧାନେ
କଳିଯୁଗର ଚରିତ ହେବ ଯେ ବିଧାନେ ।
ଅନେକ କଷ୍ଟରେ ପ୍ରଜା ଜନ୍ମାଇବେ କୃଷି
ନାନା ଫାନ୍ଦ ପାତି ରାଜା ହେବେ ମିଥ୍ୟାଭାଷୀ ।
ପ୍ରଜାଠାରୁ ଡଣ୍ଡ ନେବେ ସର୍ବ ରାଜାମାନେ
ମନ ଦୁଃଖ ପାଇ କଷ୍ଟୀ ହେବେ ପ୍ରଜାଗଣେ ।
ଯହୁଁ ସେ ଅବିଧି କରି ନେବେ ମହୀପାଳ
ସୁବୃଷ୍ଟି ନୋହିବ ପୁଣି ନ ଜନ୍ମିବ ଫଳ ।
ପ୍ରଜାଠାରୁ ଯେଉଁ କର ରାଜା ଡଣ୍ଡିନେବ
ତାହାକୁ ସେ ସବୁବେଳେ ନିଅଣ୍ଟ ହୋଇବ ।
ବ୍ରାହ୍ମଣ ଦେବତା ଆଦି ଯେ ପୂଜ୍ୟ ପଦାର୍ଥ
ରାଜା ଦୋଷ ହେତୁ ସର୍ବେ ହୋଇବେ ଅନାଥ ।
ରାଜାମାନେ ଶାରଗୁଣା ପରଜା ଗୋମଡ଼ା
ଠାବେ ଠାବେ ପଡ଼ିବେ ଯେ ହୋଇଣ ଯେ ମଡ଼ା ।
ଆଚାର ତେଜି ବ୍ରାହ୍ମଣେ ହେବେ ଅନାଚାରୀ
ରାଜାଙ୍କ ସେବା କରିବେ ଦଣ୍ଡପାଟ ଧରି ।
କୃଷିକର୍ମକୁ କରିଣ ମଛିଦେବେ ମହୀ
ଅସ୍ତ୍ର ଧରି ପଶୁ ଶିର ଛେଦିବେକ ସେହି ।
ଏହିପରି ଅତ୍ୟାଚାର ବ୍ରାହ୍ମଣ କରିବେ
ବ୍ରାହ୍ମଣେ ମାଇଲେ ହତ୍ୟା କେହି ନ ଘେନିବେ ।
ବେଦମତେ ଯେଉଁପରି ଦୋଷ ନ ଲାଗିବ
ଅକସ୍ମାତେ କେହି ତାହା ଗ୍ରହଣ କରିବ ।
ବେଦମନ୍ତ୍ର ଆଦି ସଭା କରିବେ ଅଗ୍ରାହ୍ୟ
ସୁହୃଦେ ଚାଳକ କାର୍ଯ୍ୟ କରିବେ ଅଗ୍ରାହ୍ୟ ।
ବିଧବା ବ୍ରାହ୍ମଣୀଯାକ ହେବେ ଅନାଚାରୀ
କୁଳର ରମଣୀମାନେ ହେବେ ଅଭିସାରୀ ।
ବିବାହୀ କନ୍ୟା କରିବେ ପତିକୁ ହିଁ ତେଜ୍ୟା
ବିଧବା କୁଳ ରଖିବେ ତ୍ୟାଗ କରି ଲଜ୍ଜା ।
ସେ ବିଧବାଠାରୁ ଯେଉଁ ପୁତ୍ର ହେବ ଜାତ
ପିତାମାତାର ନୋହିବ କଦାଚ ଭକତ ।
ଶାସ୍ତ୍ରକୁ ନିନ୍ଦା କରିବେ କଳିଯୁଗ ଲୋକେ
କିଞ୍ଚିତ କଥାରେ କଳି କରିବେ ଅନେକେ ।
ବ୍ରାହ୍ମଣ ଚାଣ୍ଡାଳ ଦୁହେଁ ଏକତ୍ର ହୋଇବେ
ଗୁରୁ ମାନିତ ଜନଙ୍କ କଥା ନ ଶୁଣିବେ ।
ପଥୁକୀ ଲୋକଙ୍କ ସଙ୍ଗେ କରି ଛନ୍ଦ ମନ୍ଦ
ଅଦ୍‌ଭୁତେ ଧନ ନେବେ କରି କଳି ଦ୍ୱନ୍ଦ୍ୱ ।
ପରଧନ ଦ୍ରବ୍ୟ ହରି ମରିବେ ସେ ପ୍ରାଣୀ
କୁବିଚାର କରି ରାଜା ଶିର ଦେବେ ହାଣି ।
ବାରବ୍ରତ ତେଜି ହେବ ଅନ୍ୟାଚାର ଭୋଗୀ
ସଦା ନାରୀ ରତ ହୋଇ ହେବେ ଜନ୍ମରୋଗୀ ।
ନିତ୍ୟାଚାର ତେଜି ନରେ ହେବେ ନୀଚମନ
ସଂକ୍ରାନ୍ତି ଅମାବାସ୍ୟାରେ କରିବେ ଭୋଜନ ।
ଜୁଡ କ୍ରୀଡ଼ା କରି ନରେ କୁଟୁମ୍ବ ପୋଷିବେ
ନିଜ ଆୟୁଷ ଘେନିଣ କେହି ନ ବର୍ତ୍ତିବେ ।
ସନ୍ତାନ ପାଇଁ ବ୍ରାହ୍ମଣୀ କରାଇବେ ଜାର
ସେ ଜାରସୁତ କରିବେ ବେଦର ବିଚାର ।
ରାଜାଙ୍କ ଅନିଷ୍ଟ ଚିନ୍ତା କରିବେ ମନରେ
ବ୍ରାହ୍ମଣେ ଘେନିବେ ତିଳଦାନକୁ ଲୋଭରେ ।
ଏହି ପରକାରେ ସବୁ ହେବ କଳିଯୁଗେ
ସହଦେବ ଜଣାଇଲେ ଯୁଧିଷ୍ଠିଙ୍କ ଆଗେ ।
ଅଧର୍ମ ମାର୍ଗରେ ଯେହୁ ବଳାଇବ ମନ
ତାଙ୍କୁ ନ ମିଳିବ ଧନ ବସନ ଭୋଜନ ।
ଯୁଧିଷ୍ଠିର ଶୁଣି କଳିଯୁଗର ପ୍ରତାପ
ବୋଇଲେ ଥାଇ କିମ୍ପାଇ ବଢ଼ାଇବ ପାପ ।
ହରେ ରାମ କୃଷ୍ଣ ବୋଲି ସଦା ରଟନରେ
ଏ କଳିକଳୁଷ ବାଧା ନ ଥିବ ଶେଷରେ ।
ଏ କୁଟିଳ କଳିଯୁଗେ ହରିଙ୍କର ମୂଳ
ଯେ କରିଛି ସେ ତରିଛି ନୋହିଲେ ଜଞ୍ଜାଳ ।
ଆହେ ଦୟାର ସାଗର ପ୍ରଭୁ ନାରାୟଣ
ଶାରଳା ଦାସକୁ ରଖ ପଶିଲା ଶରଣ ।

—o—

## ଯୁଧିଷ୍ଠିରଙ୍କର ରାଜ୍ୟ ତ୍ୟାଗ ଓ ସୁହାଣୀ କନ୍ୟା ସହିତ ବିବାହ ଏବଂ କାଳବିକାଳ ଯମଙ୍କର ବନ୍ଧନ

ଏଥୁଅନନ୍ତରେ ବିଳଙ୍କ ଦେଶ ମହାରାଜ
ଅଗସ୍ତିଙ୍କ ଚରଣେ କଲେ ବହୁ ପୂଜା ।
ଯଦୁବଂଶ କ୍ଷୟ ଅନ୍ତେ ହେଲା କି କି କଥା
କହ ହେ ମହାତ୍ମା ତୁମ୍ଭେ ପାଣ୍ଡବ ବାରତା ।
ଅଗସ୍ତି ବୋଲନ୍ତି ରାଜା ସାବଧାନେ ଶୁଣ
ମହାଭାରତ ଉତ୍ତାରେ ସ୍ୱର୍ଗ ଆରୋହଣ ।
ଯୁଧିଷ୍ଠିର ଦେବ ଏକଯୁଗ ରାଜ୍ୟ କରି
ଚିତ୍ରୋତ୍ପଳା ପାଶେ ହେଲେ ଯଜନ ନଗରୀ ।
ଅଶ୍ୱିନୀ ଶୁକଳପକ୍ଷ ତିଥି ଯେ ନବମୀ
ରେବତୀ ନକ୍ଷତ୍ର ଅନ୍ତେ ହେଲା ଯେ ଅଶ୍ୱିନୀ ।
ସୋମବାରେ ହୋଇଥିବ ବାଳବ କରଣ
ପ୍ରୀତିଯୋଗେ ଘଟିଲା ଯେ ପୁଣ ସେହିଦିନ ।
ଏମନ୍ତ ସମୟେ ତାକୁ ହେଲା ଶୁଭଯୋଗ
ରୋହିଣୀର ଘରେ ଚନ୍ଦ୍ର ରେବତୀର ଭୋଗ ।
ଯୁଧିଷ୍ଠିର ବିଜେ କଲେ ନଗରୀ ଯଜନ
ଚିତ୍ରୋତ୍ପଳା ପାରି ହୋଇ ରହିଲେ ସେ ସ୍ଥାନ ।
ଅନ୍ୟନାମ ସେ ସ୍ଥାନର ଧର୍ମପୁର ଜାଣ
ସେହିଦିନ ପାଞ୍ଚଭାଇ ରହିଲେ ସେ ସ୍ଥାନ ।
ଦ୍ରଉପଦୀ ସୁଭଦ୍ରା ଯେ ଅଛନ୍ତି ସଙ୍ଗରେ
ସେମାନେ କଟାନ୍ତି କାଳ ଏପରି ଭାବରେ ।
ଅମରାବତୀରେ ହରିସାହୁ ବୈଶ୍ୟ ଜାତି
ସୁହାଣୀ ନାମରେ ତାର ଅଛଇ ଦୁହିତୀ ।
ମାଘ ଶୁକଳ ତୃତୀୟା ତିଥି ବୁଧବାର
ବାଳବ ନାମେ କରଣ ଅଟଇ ଆବର ।
ରୋହିଣୀ ନକ୍ଷତ୍ର ଆଉ ଚନ୍ଦ୍ରନାମେ ଯୋଗ
ସେହିଦିନ କନ୍ୟା ଜନ୍ମ ହୋଇଥିଲା ଭୋଗ ।
ସେହି ଗ୍ରାମର ଗଣକ ନାମ ଉଦ୍ଦାଳକ
ଜ୍ୟୋତିଷ ବିଦ୍ୟାରେ ସେହି ଅତ୍ୟନ୍ତ ବିକକ ।
ତାହାକୁ ଆଣି ଗଣାଏ ବୈଶ୍ୟ ହରିସାହୁ
ସେହୁ କୋଷ୍ଠି କାଟି ଗ୍ରହ ବସାଇଲା ତହୁଁ ।
ବୋଇଲା ସେ ଜଉତିଷ ଶୁଣ ଆହେ ବୈଶ୍ୟ
ଏହି କନ୍ୟା ଭାଗ୍ୟବତୀ ତୋତେ ଦେବ ଯଶ ।
ମାତ୍ର କଥାଏ କହିବି କରିତୁ ବିଶ୍ୱାସ
ବିଭା ହୋଇବା କାଳରେ ମରିବ ଅବଶ୍ୟ ।
ଶୁଣି ବିବାହ ନ ଦେଲେ ସେହି ହରି ସାହୁ
ପଞ୍ଚଦଶ ବର୍ଷ କନ୍ୟା ହୋଇଲାକ ଯହୁଁ ।
ଯୁଧିଷ୍ଠି ଦେବ ବିଜୟ ତ କଲେ ଯେତେବେଳେ
ହରି ସାହୁ ପାଣ୍ଡବଙ୍କ ନିକଟରେ ମିଳେ ।
ପିତାର ପଛେ ଗୋଡ଼ାଇ ଗଲା ସେ ଦୁହିତା
ଚନ୍ଦ୍ରୋଦୟ ପ୍ରାୟ ଦିଶେ ଯେ ବାଳବନିତା ।
ଯୁଧିଷ୍ଠି ପୁଚ୍ଛିଲେ ଶୁଣ ହରି ସାହୁ ବୈଶ୍ୟ
ଏ କୁମାରୀ ଗୋଟିକର କାହିଁ ଅଟେ ବାସ ।
ଶୁଣି ହରି ସାହୁ ତହୁଁ କରିଣ ପ୍ରଣତି
ବୋଇଲେ ଏ ଅବିବାହୀ ମୋହର ଦୁହିତୀ ।
ଶୁଣିଣ ହସିଲେ ଦେବ ଯୁଧିଷ୍ଠି ନୃପତି
କେଉଁପରି ହୋଇଲୁ ତୁ ହରି ବୈଶ୍ୟ ଜାତି ।
କନ୍ୟା ଯେବେ ପିତ୍ରାଳୟେ ହୁଏ ରଜୋବତୀ
ତାହା ପାକାସ୍ୱର୍ଶ ଶ୍ରେଣି ପିତୃଲୋକେ ପାନ୍ତି ।
ଆବର ହୁଅନ୍ତି ସେହୁ ନରକେ ପତନ
ଏ କଥା ନିଶ୍ଚୟ ଅଟେ ବେଦର ବିଧାନ ।
ହରି ସାହୁ ବୋଲେ ଦେବ ମୋର ମନ୍ଦକର୍ମ
ସେହି ହେତୁ ଏହି କନ୍ୟା ମୋର ଘରେ ଜନ୍ମ ।
ବିବାହ କାଳରେ ଏହୁ ନିଶ୍ଚୟ ମରିବ
ତେଣୁ ଏହାକୁ ବିବାହ ନ ଦେଲି ଭୋ ଦେବ ।
ଯୁଧିଷ୍ଠି ଚାହିଁଲେ ମନ୍ତ୍ରୀ ସହଦେବ ମୁଖ
ଏ କଥା ସତ କି ମିଛ ବୁଝ ହୋ ପ୍ରତ୍ୟକ୍ଷ ।
ମନ୍ତ୍ରୀ ବୋଇଲେ ହେ ଦେବ ନିଶ୍ଚୟ ଅଟଇ
ହସ୍ତଗ୍ରନ୍ଥି ବେଳେ ଯମ ନିଶ୍ଚେ ଯିବ ନେଇ ।
ସହଦେବ ବଚନରେ ଦେବ ହେଲେ ତୁନି
ବୈଶ୍ୟ ହରି ସାହୁ କରେ ଚରଣେ ଦଇନୀ ।
ଅନ୍ୟରେ ପ୍ରଦାନ କଲେ ନାହିଁ କି କାରଣ
ଦୁହିତା ଘେନି ତୁମ୍ଭରେ ପଶିଲି ଶରଣ ।
ତୁମ୍ଭଙ୍କୁ ପ୍ରଦାନ କରି ଇଚ୍ଛଇ ଦୁହିତା
ଯାବତ ଚନ୍ଦ୍ରାର୍କେ ରହିଥାଉ ଏହି କଥା ।
ସ୍ୱାମୀ ସତ୍ୟବାକ୍ୟ କହି ପାଳିବ ହେ ଧର୍ମ
କାଳେ କାଳେ କଥା ଥିବ ନିଶ୍ଚୟ ଜାଣିମ ।
ତାହା ଶୁଣି ଯୁଧିଷ୍ଠିଙ୍କି ନମି ଚାରିଭାଇ
ଏ କଥାରେ ସ୍ୱାମୀ ତୁମ୍ଭେ ନ କର ହେ ନାହିଁ ।
ଯୁଧିଷ୍ଠିର ବୋଇଲେ ହେ ଆମ୍ଭ ଏ ବୟସ
ଭୋଗ ଇଚ୍ଛା ଏବେ ଆସି ହୋଇଲାଣି ଶେଷ ।
ରାଜ୍ୟ ସମ୍ପଦ ଛାଡ଼ିଲୁଁ ତୀର୍ଥ କଲୁ ସାର
ଅସମୟ କାଳେ ବିଭା କି ସୁଖ ଆବର ।
ସହଦେବ ବୋଲେ ଦେବ ନ କରଟି ନାହିଁ
ଯାଚି କନ୍ୟା ଦାନ ଦେବା ଭାଗ୍ୟେ ନ ମିଳଇ ।
ଯାଚିଲାର କନ୍ୟା କିବା ଯାଚିଲାର ଅନ୍ନ
ଏହା ଉପେକ୍ଷା କରିଲେ କୁଳକୁ ଦୂଷଣ ।

ଯୁଧିଷ୍ଠି ବୋଇଲେ ଯେବେ କରିବୁ ଗ୍ରହଣ
ଯମଠାରୁ ରଖିବାକୁ କେ ଅଛି ଭାଜନ ।
ଶୁଣି କରପତ୍ର ଯୋଡ଼ି ବୋଲେ ଧନଞ୍ଜୟ
ଯମର ଭୟରୁ ମୁହିଁ ରଖିବି ନିଶ୍ଚୟ ।
ରାଜସୂୟରେ ଆମନ୍ତ୍ରି ଗଲି ଯମାଳୟେ
ଅନେକ ବିନୟ ମୋତେ ହେଲେ ଜନ୍ତୁରାୟେ ।
ତାହାର ମୋହର ଦେବ ଅନେକ ପୀରତି
ତେଣୁ ରଖିବି କନ୍ୟାକୁ ନ କର ହେ ଭୀତି ।
ତୁ ଯେବେ ନାଶି ପାରିବୁ ଯମର ଭୟକୁ
ଆମ୍ଭେ ବିବାହ ହୋଇବା ତେବେ ଏ କନ୍ୟାକୁ ।
ଯାଚିଦେଲା ଯେବେ ସର୍ବସୁଲକ୍ଷଣୀ ବାଳୀ
ଜାତି ମଧ୍ୟ ଉତ୍ତମରେ ଅଛି ବାବୁ ମିଳି ।
ଅର୍ଜୁନ ପ୍ରତିଜ୍ଞା ଶୁଣି ଯୁଧିଷ୍ଠି ନରେନ୍ଦ୍ର
ବିଭା ଉଦ୍‌ଯୋଗ କଲେ ହୋଇଣ ସାନନ୍ଦ ।
ବନ୍ଧୁବାନ୍ଧବଙ୍କୁ ରୁଣ୍ଡ କରି ହରି ସାହୁ
ବୋଲେ ମୋ ଜୁଆଇଁ ହେବେ ଧର୍ମ ମହାବାହୁ ।
ଜୀଇଁଲେ ଜୀଉଁ ମରିଲେ ମରୁ ପଛେ ବାଳୀ
ଚିରକାଳକୁ କଥା ଯେ ଥିବ ମହାସ୍ଥଳୀ ।
ଧୌମ୍ୟ ପୁରୋଧାକୁ ଦେବେ କଲେ ସୁମରଣ
ମିଳିଲେ ପୁରୋଧା ଲକ୍ଷେ ଘେନିଣ ବ୍ରାହ୍ମଣ ।
ଆପଣେ ଯେ ବେଦବ୍ୟାସ ପ୍ରବେଶିଲେ ଆସି
ଷାଠିଏ ସହସ୍ର ତୁଲେ ବାଳଖିଲ୍ୟା ଋଷି ।
ସୀଉକାର ବରଣକୁ ହରି ସାହୁ କଲା
ଯଥାବିଧି ବାକ୍ୟ କରି କନ୍ୟାକୁ ଆଣିଲା ।
କୁମ୍ଭ ମାସ କୃଷ୍ଣପକ୍ଷ ସପତମୀ ତିଥି
ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।
ବାଣିଜ୍ୟ ନାମେ କରଣ ପ୍ରୀତି ନାମେ ଯୋଗ
ଧର୍ମପାଳ ନଗରରେ ବଡ଼ାଇ ସୁଯୋଗ ।
ପ୍ରଥମେ ବେନି ଘଡ଼ି ସେ ବୃହସ୍ପତି ବେଳେ
ବିବାହ ସଂଯୋଗ ହେଲା ସେ ନବୀର କୂଳେ ।
ଛାୟାମଣ୍ଡପର ତଳେ କନକର ବେଦୀ
ସ୍ଫଟିକର ସ୍ତମ୍ଭ ରୂପ ରୁଅ ମାନ ଛନ୍ଦି ।
ସୁବର୍ଣ୍ଣ କଳସେ ନେତ ପତାକା ଉଡ଼ାନ୍ତି
ଛାୟା ମଣ୍ଡପରେ ଦିବ୍ୟବସନ ମଣ୍ଡାନ୍ତି ।
ସେହିଠାରେ ମେଳି ହୋଇଥିଲେ ଯେତେ ଲୋକ
ତାହାଙ୍କ ଆନନ୍ଦ ଅବା କେ କରିବ ଲେଖ ।
ଯୁକତିରେ ହରି ସାହୁ ବଇଶ୍ୟ ବଣିଆ
କସ୍ତୁରୀର ପିଚକାରୀ ମାରେ ଛାମୁଣ୍ଡିଆ ।
ଗନ୍ଧରାଜ ଚୂଆ ଆଦି କୁଙ୍କୁମରେ ଗୋଳି
ଲେପନ କରିଲେ କନ୍ୟା ସଙ୍ଗେ ସର୍ବବାଳୀ ।

ଗନ୍ଧ ପୁଷ୍ପ ଚନ୍ଦନ ଯେ ଚନ୍ଦନର ଦାନୀ
କୁଙ୍କୁମ ସହିତେ ଚନ୍ଦନର ଗୁଣ୍ଡି ଘେନି ।
ସଭା ମଧ୍ୟେ ପ୍ରବେଶିଲେ ହରି ଆନନ୍ଦରେ
ଯେପରି ସେ ବୁଡ଼ିଅଛି ଆନନ୍ଦ ସାଗରେ ।
ତହିଁପରେ ପୁରୋହିତ ଯଥା ନିୟମରେ
ମଙ୍ଗଳସୂଚକ ବାକ୍ୟ ପଢ଼ିଲେ ଉଚ୍ଚରେ ।
ମଙ୍ଗଳ ଉଚ୍ଚାରଣକୁ ସାରିଲେ ଯେ କାଳେ
ଯୁଧିଷ୍ଠି ବିଜେ କରିଲେ ବ୍ୟାସଙ୍କର କୋଳେ ।
ହରି ସାହୁ ବଣିଆର କୋଳରେ ସୁହାଣୀ
ବେଦୀରେ ବସିଲେ ହସ୍ତେ ଘେନି କୁଶପାଣି ।
ବେଦ ଉଚ୍ଚାରଣ ତହିଁ କଲେ ପୁରୋହିତେ
କନ୍ୟାକୁ ଘେନାଇଗଲେ ହାନ୍ଦୋଳା ଯୁକତେ ।
କନକର ହାନ୍ଦୋଳାରେ ବିଜୟ ସୁହାଣୀ
ବାଜଇ ଯେ ବୀର ତୁର ଟମକ ନିଶାଣି ।
ସଧବା କାମିନୀ କରେ ଘେନି ଦିପାବଳୀ
ମଙ୍ଗଳ ଗୀତ ଗାଇଣ ଦ୍ୟନ୍ତି ହୁଳହୁଳି ।
ଗାଣ୍ଡିବ ଧନୁକୁ ଧରି ବୀର ଅରଜୁନ
କନ୍ୟା ପଛେ ପଛେ ଯାଏ ହୋଇଣ ମଉନ ।
ଦିବ୍ୟ ଚକ୍ଷୁରେ ଚାହାନ୍ତି ବୀର ସବ୍ୟସାଚୀ
ଯମର ଭୁବନ ଯାଏ ନିର୍ମଳ ଦିଶୁଛି ।
ଦେବୀଙ୍କ ଆଗେ ବିଜୟ କରାଇ ସୁହାଣୀ
କଲ୍ୟାଣ ବାଞ୍ଛାକୁ ସାରି କନ୍ୟା ବେଗେ ଆଣି ।
ପିତା କୋଳେ ବସାଇଲେ ନେଇଣ ଦୁହିତୀ
ଯଥାବିଧି ପୁରୋହିତ ମନ୍ତ୍ର ଉଚ୍ଚାରନ୍ତି ।
ଦେଶକାଳ ବାକ୍ୟ ଆଦି ସାରି ପୁରୋହିତ
ଏକ ଯୋଗ କଲେ ବର କନ୍ୟାଙ୍କର ହାତ ।
ଯହୁଁ କୁଶକୁ ବାନ୍ଧିଲେ ନେଇ ବେନିହସ୍ତେ
ଶୂନ୍ୟେ ଅଇଲେ ବିକାଳ କାଳ ବେନି ଦୂତେ ।
ପ୍ରତ୍ୟକ୍ଷେ ମିଳିଲେ ଆସି ଅର୍ଜୁନ ଆଗରେ
ଦେଖିଣ ଅର୍ଜୁନ କୋପ କରିଲେ ମନରେ ।
ଖାଣ୍ଡବ ଦହନ କାଳେ ଇନ୍ଦ୍ରଙ୍କର ଶିଷ୍ୟ
ଅଗ୍ନିଠାରୁ ପାଇଥିଲେ ଯେଉଁ କାଳପାଶ ।
ସେହି କାଳପାଶ ଘେନି ପେଶିଲେ ଅର୍ଜୁନ
କାଳବିକାଳ ଦୁହିଁଙ୍କୁ କରିଲେ ବନ୍ଧନ ।
କାଳ ବିକାଳ ବନ୍ଧନ ଦେଖି ଚିତ୍ରଗୁପ୍ତ
ଜଣାଇଲେ ଯାଇ ସେହୁ ଯମଙ୍କ ଅଗ୍ରତ ।
ଦେବ ହରି ସାହୁ ଝିଅ ନାମ ତା ସୁହାଣୀ
ପ୍ରଜାପତି ଘଟସୂତ୍ରେ ତାକୁ ଗଲେ ଆଣି ।
ସେ କନ୍ୟାକୁ ବିଭା କଲେ ଯୁଧିଷ୍ଠିର ବୀର
ଶର ଗେନି ବସିଥିଲା ଇନ୍ଦ୍ରଙ୍କ କୁମର ।

ସେହି ଶର ପେଷିଲା ଯେ କାଳପାଶ ଜାଣ
କାଳବିକାଳକୁ ସେହୁ କରିଲା ବନ୍ଧନ ।
ତାହା ଶୁଣି କୋପ କଲେ ଜନ୍ତୁ ନାଶ କର
ମହିଷ ଆରୋହୀ ବିଜେ କଲେ ମର୍ତ୍ତ୍ୟପୁର ।
ଶ୍ରୀହସ୍ତରେ କାଳଦଣ୍ଡ ଘେନି କାଳପାଶୀ
ଆସନ୍ତେ ଦିବ୍ୟଚକ୍ଷୁରେ ଅର୍ଜ୍ଜୁନକୁ ଦିଶି ।
ସର୍ବଜ୍ଞ ଥିବାରୁ ସହଦେବ ବୀରବର
ବିନୟରେ ସେହୁ ଯୁଧିଷ୍ଠି ଆଗର ।
ତୁମ୍ଭ ବିଭା ଦେଖି ଯମ କାଳବିକାଳକୁ
ପେଷିଥିଲା ହରି ସାହୁ ଝିଅକୁ ନେବାକୁ ।
ତାହା ଦେଖି ଅରଜୁନ କାଳପାଶ ପେଷି
କାଳବିକାଳକୁ ସେହୁ ବାନ୍ଧିଲେ ଆକର୍ଷି ।
ସେହି କଥା ଚିତ୍ରଗୁପ୍ତ ଯମକୁ କହନ୍ତେ
କୋପ ବହି ଯମରାଜା ଆସୁଅଛି ପଥେ ।
ତାହା ଶୁଣି ହରି ସାହୁ ହୋଇଲେ ତାଟକା
ଯୁଧିଷ୍ଠିର ଦେବକୁ ହିଁ ଲାଗେ ବଡ଼ ଦକା ।
ତା ଦେଖି ବ୍ୟାସଙ୍କ ସହ ଧୌମ୍ୟ ପୁରୋହିତେ
ନିଶ୍ଚଳ ଆସନ କରି ବସିଲେ ସମସ୍ତେ ।
ତାହା ଦେଖି ଅରଜୁନ ଯୁଧିଷ୍ଠିରେ କହେ
ବିଭାହୁଅ ଆହେ ପ୍ରଭୁ ହୋଇଣ ନିର୍ଭୟେ ।
ଅର୍ଜ୍ଜୁନ ବଚନ ଶୁଣି ଫିଟେ ମନଭ୍ରାନ୍ତି
ହୁଳହୁଳି ଶବଦରେ ପୂରିଲା ଜଗତୀ ।
ବଦନ୍ତି ଅଗସ୍ତି ମୁନି ଶୁଣ ବ୍ରହ୍ମଜ୍ଞାନୀ
ଯମଦେବତାଙ୍କୁ ସ୍ତୁତି କଲେ ଫାଲଗୁନୀ ।
ସଂସାର ନାଶ କରତା ହେ ଯମଦେବତା
ତୋହର ସଞ୍ଚିତ ହରି ସାହୁର ଦୁହିତା ।
ଯୁଧିଷ୍ଠିର ତାହାକୁ ଯେ ବିଭା ହେଉଛନ୍ତି
ଏବେ ତୁମ୍ଭେ ଯମରାଜା ଶୁଣ ମୋ ଭାରତୀ ।
କନ୍ୟାଟି ଦେଇ ଆମ୍ଭରେ ପଶିଲା ଶରଣ
ଏଥକୁ ବିରୋଧି ତୁହି ନୁହ ଜନ୍ତୁରାଣ ।
ପୃଥିବୀରେ ଜୀବ ସବୁ ତୁମ୍ଭେ କର ନାଶ
ସଂଯମନୀପୁରେ ଦେବ ଅଟେ ତୁମ୍ଭ ବାସ ।
ତୁହି ଦେବ ନାଶ କର ମହାଅନର୍ଗଳ
ବୀର ପ୍ରଚଣ୍ଡ ଅଟନ୍ତି ତୋ କାଳ ବିକାଳ ।
ତୁହି ଦେବ ଅବାରିତ ଅଟୁ ବିଶ୍ୱରୂପୀ
ତୁହି ଦେବ କାଳାନଳ ଅଶାନ୍ତି ଅରୂପୀ ।
ଅବତାର ପୁରୁଷ ତୁ ଅତ୍ୟନ୍ତ ନିର୍ଦ୍ଦୟ
ପୃଥ୍ୱୀ ଆପ ତେଜ ତୋର ନ ଥାଇ ଯେ ଭୟ ।
ଭାବ ଅଭାବ ତୋହର ନାହିଁ ନାଶକର
ଅଶେଷ କୋଟି ବ୍ରହ୍ମାଣ୍ଡ ଅଛି ତୋ ଉଦର ।

କାଳି କରାଳୀ ତୁମ୍ଭର ବିନତା ଅଟନ୍ତି
ବିକରାଳ କରାଳ ସେ ତୁମ୍ଭର ସନ୍ତତି ।
ମାତାଙ୍କ ଶାପେ ତୁମ୍ଭର ହେଲା କୁଷ୍ଠବ୍ୟାଧି
ପଣ୍ଡୁ ହରଣେ ହୋଇଲା ତାହାର ସଂଶୋଧି ।
ଭୂତ ପ୍ରେତ ପିଶାଚ ଯେ ତୁମ୍ଭ ଚରଗଣ
ବିହନ୍ତା ପୁରୁଷ ତୁମ୍ଭ ପାଦରେ ଶରଣ ।
ସ୍ୱାମୀ ବାମନେତ୍ର ସୋମ ଦକ୍ଷିଣ ଅନଳ
ଚତୁର୍ଭୁଜନାଥ ତୁହି ତାରଣ ଶୟଳ ।
ଅନଙ୍ଗ ପୁରୁଷ ଅଟେ ତୁମ୍ଭର ଯେ କଳା
ଧର ତୁମ୍ଭେ ତିନିବର୍ଣ୍ଣ ଗୌର ଶ୍ୟାମ ଧଳା ।
ମେଦମେଦା ମାଏଁସରେ କର୍ଦ୍ଦନ ଯା ପିଣ୍ଡ
ସର୍ବ ସହିତ ହେ ନାଥ ଉଦେ ମାରଚଣ୍ଡ ।
ଏକା ଶରୀରେ ତୋହର ସତ୍ତ୍ୱ ରଜ ତମ
ସୋମ ସୂର୍ଯ୍ୟ ବ୍ରହ୍ମା ଏକାବର୍ଣ୍ଣ ତୁମ୍ଭେ ସମ ।
ରଜବୀର୍ଯ୍ୟ ଏକତ୍ରରେ ମାତା ଗର୍ଭେ ରହୁ
ଅଢ଼ାଇ ଧାଡ଼ି ଅକ୍ଷର କପାଳରେ ଲିହୁ ।
ଜନ୍ମ କର୍ମ ଆଦାନ ଯେ ଆୟ ବଳରାଶି
ଚଉରାଶୀ କୋଟି ଜନ୍ତୁ ଏକା କାଳପାଶୀ ।
ଏକା ପାଶେକ ତୁମ୍ଭର ସମସ୍ତେ ବନ୍ଧନ
ଭାବଗ୍ରାହୀ ଜନ୍ତୁନାଥ କର ଯା ଯତନ ।
ଊର୍ଦ୍ଧ୍ୱ ନୟନ ତୁମ୍ଭର ଅଟେ ଊର୍ଦ୍ଧ୍ୱହନ୍ତା ।
କାୟରୁଂ ଉଦ୍ଭବ ଯେଣୁ ଅଟୁ ଊର୍ଦ୍ଧ୍ୱରେତା
ସବୁ ଦେବତାଙ୍କ ତେଜ ତୁମ୍ଭଠାରେ ରୁଣ୍ଡ
ଦୁଷ୍ଟ ପ୍ରକୃତିଙ୍କି ନାଶ ତୁମ୍ଭେ ଏ ବ୍ରହ୍ମାଣ୍ଡ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କାହି ତୁମ୍ଭ ସୀମା
ମୁଁ କାହୁଁ କହିବି ପ୍ରଭୁ ତୁମ୍ଭର ମହିମା ।
ଯେ ଯାହା କର୍ମକୁ ନାଶ ଯାଉଛନ୍ତି ପ୍ରାଣୀ
ଅପଖ୍ୟାତିର ପୁରୁଷ ତୁହି ସିନା ଜାଣି ।
ବ୍ୟାକୁଳ ଆନନ୍ଦ ଆଉ ରୋଦନର ପିତା
ଅପାର ଅକ୍ରୋଧୀ ତୁହି ବିଧାତା ବିହନ୍ତା ।
ଏମନ୍ତ ଅନେକ ସ୍ତୁତି କଲେ ଫାଲଗୁନି
ଯମଦେବ ନ ଘେନିଲେ ତାହାଙ୍କ ଦଇନୀ ।
ମହିଷରୁ ଓହ୍ଲାଇଲେ ନାଶକର ଖରେ
ଅଦୃଶେ ବିଜୟେ କଲେ ଛାୟା ମଣ୍ଡପରେ ।
ଅର୍ଜ୍ଜୁନ ବୋଇଲେ ମୁହିଁ ନୁହଇଟି ଦୋଷୀ
କୋପ କରିଣ ଧଇଲେ ଯାଇ କାଳପାଶୀ ।
କାଳପାଶୀ ସଙ୍ଗତରେ ଯୋଚି ମନଭେଦୀ
ସସ୍ତ୍ରପୁର କରି ଯମଦେବତାଙ୍କୁ ବାନ୍ଧି ।
ବଡ଼ ସୁମେରୁ ବୋଲିଣ ଏକଇ ପର୍ବତ
ତହିଁ ବନ୍ଧନ କରିଲେ ଯମ ଦଇବତ ।

ବିଭାର ଯାବତ କର୍ମ ସାରିବେ ଯୁଧିଷ୍ଠି
ଧର୍ମ ଯେ ରହିଲେ ଧର୍ମପୁର ନାମ ଯେଚି ।
ସୁହାଣୀ କନ୍ୟାକୁ ଦେଇ ହରିସାହୁ ବୈଶ୍ୟ
ଜ୍ଞାତି କୁଟୁମ୍ବ ସମସ୍ତେ ହୋଇଲେ ହରଷ ।
ଯମର ଦର୍ପ ଭାଙ୍ଗିଲା ଯେଉଁ ରାଜଦେବ
ଯମଦଣ୍ଡ ଶାସ୍ତି ନାହିଁ ମୋହର କୁଟୁମ୍ବ ।
ହରି ସାହୁ ଯୁଧିଷ୍ଠିଙ୍କୁ କରିଲା ଯେ ପୁଚ୍ଛା
ଯମଦଣ୍ଡ କେଉଁରୂପେ ହୋଇଲାକ ରକ୍ଷା ।
ସହଦେବ ବୋଲେ ଶୁଣ ଆହେ ହରି ସାହୁ
ଯମ କେମନ୍ତେ ଛାଡ଼ିଲା ଶୁଣ ତାହା କହୁ ।
ଯମ ଦେବତାର କୁଷ୍ଟବ୍ୟାଧି ଥିଲା ପାଦେ
ତାହାର ଯେ ବ୍ୟାଧିଗଲା ଅର୍ଜ୍ଜୁନ ପ୍ରସାଦେ ।
ନିର୍ଦ୍ଦୟ ନିଉପରାଧୀ ଯେଉଁ ନାଶକର
ଗାଢ଼େ ପଶିଲା ସେ ଆସି ତୋର ଭୁବନରେ ।
ତୋହର ଦୁହିତାକୁ ସେ ନେବ ବୋଲି ବାନ୍ଧି
କୋପେ ଅର୍ଜ୍ଜୁନ ଠାକୁର ତାକୁ କଲେ ବନ୍ଦି ।
ବିଭାଘର କ୍ରିୟା ଶେଷ ହେବା ପରିଯନ୍ତେ
ବନ୍ଧନେ ରହିଛି ଏବେ ସୁମେରୁ ପର୍ବତେ ।
ତାହା ଶୁଣି ହରି ସାହୁ ସତ୍ୱରେ ଚଳିଲା
ଅର୍ଜ୍ଜୁନର ପାଦତଳେ ଯାଇଣ ମିଳିଲା ।
ପ୍ରଣାମ କରିଣ ହରି କହେ ଅର୍ଜ୍ଜୁନକୁ
ସ୍ୱାମୀ ମୋତେ ଦେଖାଇବ ଯମ ଦେବତାଙ୍କୁ ।
ତହୁଁ ଅରଜୁନ ସହଦେବ ସଙ୍ଗତରେ
ହରି ସାହୁଙ୍କୁ ନେଇଣ ଯମ ଦେଖାଇଲେ ।
ହରି ସାହୁ ଯମଙ୍କର ବନ୍ଧନ ଦେଖିଲା
ତାହାଙ୍କର ପାଦତଳେ ପ୍ରଣିପାତ କଲା ।
ବୈଶ୍ୟ ହରି ସାହୁ ପୁଣି କହେ ଅର୍ଜ୍ଜୁନଙ୍କୁ
ହେ ସ୍ୱାମୀ ବନ୍ଧନ ଫେଡ଼ କୃତାନ୍ତ ଦେବଙ୍କୁ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଆମ୍ଭର ଶ୍ୱଶୁର
ସେହି ହେତୁ ଛାଡ଼ିଦେବି ମାନି ତୁମ୍ଭ ଗିର ।
ଏହା କହି ଅରଜୁନ ଯମକୁ ଫେଡ଼ିଲେ
ହରି ସାହୁ ବୋଲେ ଛାଡ଼ିଦେଲେ ସେ ବୋଇଲେ ।
ଯେତେଦିନ ଯାଏ ଆମ୍ଭେ ଥିବା ଜାଣ ଏଥ
ଏ ଭୁବନରେ ତୁମ୍ଭର ନ ପଶିବ ଦୂତ ।
ଯମ ଦେବତା ବୋଇଲେ ମୋର ସତ୍ୟ ସତ
ଅନ୍ୟଥା ନୋହିବ ତୁମ୍ଭ ବାକ୍ୟ କଦାଚିତ ।
ଆବର ଆହେ ଶୁଣିବା ଇନ୍ଦ୍ରର ସନ୍ତତି
ମୃତ୍ୟୁମଣ୍ଡଳେ ହୋଇଲା ଏ ଅମରାବତୀ ।
ଶୁଣ ଆହେ ବୁଧଜନେ ମୁଁ ଯାହା କହିଲି
ତେଣୁ ଧର୍ମ ନଗର ଯେ ଅକ୍ରାମର ବୋଲି ।

ବନ୍ଧନ ମୁକତ ଯହୁଁ କରିଲେ ଯମର
ହରି ସାହୁକୁ ସେ ବୋଲେ ମାଗି ଘେନ ବର ।
ହରି ସାହୁ ବୋଲେ ମୋର ସବୁ ବୈଶ୍ୟ ଜାତି
ତୋର ଯମଦଣ୍ଡ କେହି ନ ପାଇବେ ଶାସ୍ତି ।
ଅଷ୍ଟୋତ୍ତର ଶତବର୍ଷ ହୋଇବ ଆୟୁଷ
ଏତେକ ପୂରିଲେ ତେବେ ଯିବେ କପିଳାସ ।
ଯମ ବୋଇଲେ ମୁହିଁ ଯେ ସତ୍ୟକଲି ଯେବେ
ଏହି କଥାରୁ ଅନ୍ୟଥା ନ ହୋଇବ କେଭେ ।
ତୁହି ତିଆର ଅଛନ୍ତି ତୋର ଯେତେ ଜାତି
ସ୍ୱଜାତିରେ ରହିଥିବେ ନ କରି ଅନୀତି ।
ତାହା ଶୁଣି ହରି ବୋଲେ ଶୁଣ କାଳନୃପ
କେବଣ ଆଚାରେ ଥିଲେ ନୋହିବ ଯେ ପାପ ।
ତାହା ଶୁଣି ଯମ ବୋଲେ ଶୁଣ ବୈଶ୍ୟ ଜାତି
କେଉଁପରି କର୍ମ କଲେ ନୋହିବ ବିକୃତି ।
ବାଣିଜ୍ୟର ସ୍ୱରୂପ ମୁଁ କହୁଅଛି ଯଥା
ଲାଭ ପାଇଁକି କଦାଚ ନ କହିବ ମିଥ୍ୟା ।
ଗଣ୍ଡାକେ କଡ଼ା ବୋଡ଼ିକେ ଘେନିବ ଗଣ୍ଡାଏ
ପଣକେ ବୋଡ଼ି କାହାଣେ ଲାଭ ପଦିକାଏ ।
ଯେତେ ଲାଭ ହେଲେ ମିଥ୍ୟା ନ କହିବ ବାରେ
ଚାରିପାଦେ କିଣିନେଇ ବିକି ପାଞ୍ଚପାଦେ ।
ଯମ ବୁଝାଇଣ ଦେଲେ ବାଣିଜ୍ୟ ସ୍ୱରୂପ
ଏ ରୂପ କଥାରେ ଆଉ ନ ହୁଅଇ ପାପ ।
ଯମ ରାଜା ବୋଇଲେ ଏ ମୃତ୍ୟୁମଣ୍ଡଳରେ
ମରହଟ୍ଟା ବୋଲି ଏକ ଅଛଇ ନଗରେ ।
ସେ ନଗ୍ର ଭିତରେ ବସେ ମାଉଁସର ବାଣ୍ଟି
ସେଠା ବାଣିଜ୍ୟରେ କିଛି ନ ଥାଏ କପଟ ।
ସୁଜାଣେଶ୍ୱର ବୋଲିଣ ତହିଁ ଏକ ଯତି
ସୁଜାଣ ପୁରୁଷ ସେହୁ ସଦାଚାର ଅତି ।
କଷା କଉପୁନୀ ଧ୍ୱଜା ତୁଳସୀର ମାଳ
ଭସ୍ମ ବିଲେପନ ଅଙ୍ଗେ ହାତେ କମଣ୍ଡଳ ।
ସେ ବାଟେ ଶବର ମାଂସ ବ୍ୟବସ୍ଥା କରଇ
ଗଣ୍ଡାକ ମାଂସକୁ ପାଞ୍ଚକଡ଼ାରେ ବିକଇ ।
ବେଶି ଲାଭ ପାଇଁ କେଭେ ମିଛ ନ କହଇ
ସତ କହି ଚାରିପଣ ସୁଖେ ଅରଜଇ ।
ଆପେ ଭାର୍ଯ୍ୟା ପୁତ୍ରସହ ସେହୁ ତିନିପ୍ରାଣୀ
ସତ ଛଡ଼ା ମିଛ କେବେ ନ କହନ୍ତି ବାଣୀ ।
ଏହିପରି ସେ ଶବର ମାଂସ ବିକୁଥାଇ
ଚାରିଗଣ୍ଡା ଲାଭ କରି ଜୀବନ ପୋଷଇ ।
ଏ ସମୟେ ପ୍ରାଣତ୍ୟାଗ କଲେ ସେହୁ ଯତି
ପୁଣ୍ୟମାସ କାର୍ତ୍ତିକରେ ସେ ରାତି ପାହାନ୍ତି ।

ସେହିଦିନ ସେ ଶବର ପ୍ରାଣକୁ ଛାଡ଼ିଲା
ଅନ୍ତେ ଯତି ସଙ୍ଗେ ଯାଇ ବୈକୁଣ୍ଠେ ବସିଲା ।
ଅତଏବ ତୋ ଜାତିକୁ ତୁହି ତିଆରିବୁ
ପରସ୍ତିରୀ ରମିବାକୁ ତାଙ୍କୁ ନିବାରିବୁ ।
ଅନ୍ୟ ଜାତି ସ୍ତିରୀଙ୍କର ନ ଛୁଇଁବେ ଅଙ୍ଗ
କଦାପି ସେ ନ କରିବେ କୁଜନଙ୍କ ସଙ୍ଗ ।
ତ୍ରିକାଳ ସନ୍ଧ୍ୟା କରିବେ ନିତି ତିନିବେଳ
ଅବସର କ୍ରମେ ସର୍ବେ ଯିବେ ଦେବଆଳ ।
ବିଷ୍ଣୁ ଅର୍ଚ୍ଚନା କରିବେ ଶାସ୍ତ୍ରର ବିଧାନେ
ବିଷ୍ଣୁ ପୁରାଣ ପଢ଼ିଲେ ସଦା ଶୁଚିମନେ ।
ହତ୍ୟା ବିବାଦକୁ କେଭେ ନ ଯିବେକ ଦେଖି
ବେନିଜନ କଳହରେ ନ ହୋଇବ ସାକ୍ଷୀ ।
ବହୁତ ଲାଭକୁ ଦେଖି ନ ଯିବେ ବିଦେଶେ
ଷାଠିଏ ବରଷ ହେଲେ ଯିବେ ତୀର୍ଥବାସେ ।
ଆପଣା ଭାରିଯା ଯାହା କରିବ ରନ୍ଧନ
ତାକୁ ଖାଇ ଦୁଃଖେ ସୁଖେ କାଟୁଥିବ ଦିନ ।
ଯମ ବୋଇଲେ ଏ ସବୁ ତୋ ଜାତିଙ୍କୁ ବୁଝା
ଏତେକ କରିଲେ ତେବେ ମୁଁ କରିବି ତେଜ୍ୟା ।
ଏହା କହି ଯମରାଜା କରିଲେ ଗମନ
ବୈଶ୍ୟ ହରି ସାହୁ କଲା ଚରଣ ବନ୍ଦନ ।
ଆହେ ବୁଧଜନେ ମୁହିଁ ଶାସ୍ତ୍ରର ବିଧାନେ
କହିଲି ବୈଶ୍ୟଙ୍କ ଜାତି ଶାରଳା ପ୍ରସନ୍ନେ ।
ଏବେ ଆନ କଥା ମୁହିଁ କହୁଅଛି ଶୁଣ
ଯାହା ଶୁଣି ତରିଯିବେ ନିତାନ୍ତ ଅଜ୍ଞାନ ।
ବ୍ରାହ୍ମଣ ତରିବେ ପାପ କଲେ ଯାଗଯଜ୍ଞ
କ୍ଷତ୍ରିୟ ପାପ କରିଲେ କରୁ ରଣଯୋଗ ।
ଶୂଦ୍ର ପାପ କଲେ ପୁଣି କରିବେ ସେ କୃଷି
ବୈଶ୍ୟ ପାପ କଲେ ମୁକ୍ତିବାଟ ତ ନ ଦିଶି ।
ଯାହା ସେ ଯମଦେବତା କହିଲେ ସ୍ୱରୂପ
ଆପଣା କ୍ରିୟା ରଖିଲେ ନ ଲାଗଇ ପାପ ।
ଆହେ ବୁଧଜନେ ଯମ ସ୍ତୁତି ପଢ଼ି ଶୁଣ
ନିତ୍ୟେ ଏହାକୁ ପଢ଼ିଲେ ରହେ ପିଣ୍ଡେ ପ୍ରାଣ ।
ହେ ସ୍ୱାମୀ ପ୍ରାର୍ଥନା ମୁହିଁ କରୁଅଛି ତୋତେ
ମୋହର ଭକତି ସ୍ୱାମୀ ଘେନିବୁ ଯୁକତେ ।
ଅଭୟା ପିଙ୍ଗଳାଙ୍କର ବାକ୍ୟେ ମୁହିଁ ଅଛି
ମୋହର କଥାକୁ ନାଥ ତୁହି ଅଟୁ ସାକ୍ଷୀ ।
ଗତ ଆଗତ ନାଥ ମୁଁ ତୋର ଅନୁଗାମୀ
ମୋର ଭକତି ଘେନିବା ଆହେ ଦେବସ୍ୱାମୀ ।
ହରଣ ତାରଣ ନାଥ ତୁହି ଅଟୁ ଏକା
ହତାହତ ପାଞ୍ଜିରୁ ମୋ ନାମ କିଳିପକା ।
କଳିଯୁଗେ ଉଦେ କିଛି ନ କର ତୁ କୋପ
ଆପଣେ କିଳିପକାଅ ମୋତେ ନ ଦେ ତାପ ।
ଜ୍ଞାନେ ଅଜ୍ଞାନେ ମୋହର ଯେଉଁ ସବୁ ପାପ
ଗୋପ୍ୟ ନ କରି ସକଳ କହିଲି ସ୍ୱରୂପ ।
ମାନବ ଜନ୍ମରେ ମୁହିଁ ମାଗି ନୁହେଁ କ୍ଷମ
ତୁମ୍ଭର ଦଣ୍ଡରୁ ମୋତେ ଉଦ୍ଧାରିବ ଯମ ।
କିଞ୍ଚିତ ମହାଭାରତ ବେଦବାକ୍ୟ ଅର୍ଥ
ମୁଁ ସଂକ୍ଷେପି କହିବାକୁ ଅଟେ କି ସମର୍ଥ ।
ସ୍ୱାମୀ ମୁଁ ଶ୍ରବଣେ ଶୁଣେ ତୁ ଅଣ ଉପ୍ରୋଧୀ
ତୋହର ଆଜ୍ଞାରେ ପ୍ରାପ୍ତ ହେଉ ମୋତେ ସିଦ୍ଧି ।
ମାୟାରେ ପଟଳ ଏହି ଆହେ ଦେବକାଳ
କଳିକାଳ ଦୁରାନ୍ତକ ତୁମ୍ଭ ଦ୍ୱାରପାଳ ।
ତବ ଚରଣେ ଶରଣ ମୋର ନାଶକର
ଶ୍ରୀକୃଷ୍ଣ ଦାସର ଦାସ ମୁନି ଅବତାର ।
ନିତ୍ୟ ତୁଳସୀ-ବଲ୍ଲଭ ଭାଳେ ହୃଦଗତେ
ଶାରଳା ଦାସ ଶରଣ ଯମଦେବ ତୋତେ ।
କଇଳାସ ଦ୍ୱାରପାଳ ନାମ ମୋର ନନ୍ଦି
ଶାସ୍ତ୍ରର ଆଗମେ ହର ଗଉରୀଙ୍କୁ ବନ୍ଦି ।
ଯେଉଁରୂପେ ସ୍ତ୍ରୀ ପୁରୁଷ କ୍ରୀଡ଼ାର ବିଧାନ
ମାତା ପିତାଙ୍କ ସଙ୍ଗମ କରନ୍ତେ ବର୍ଣ୍ଣନ ।
ଶୁଣି ବିଘ୍ନରାଜ ମୋତେ ହୋଇ ଅତି କୋପ
ନିଷ୍ଠୁର ଭାବରେ ତହୁଁ ଦେଲେ ଗୁରୁ ଶାପ ।
କଠୋର ପାପ ଦିଅନ୍ତେ ମୋତେ ଗଜାନନ
ତହୁଁ ମୁଁ ପାଇଲି ଆସି ଏ ମାନବ ଜନ୍ମ ।
ପ୍ରଥମ ଜନ୍ମରେ ମୁହିଁ ହେଲି କାଳିଦାସ
ଦ୍ୱିତୀୟ ଜନ୍ମରେ ମୁହିଁ ମହାକାଳ ଧ୍ୱଂସ ।
ତୃତୀୟ ଜନ୍ମେ ଶାରଳା ଦାସ ମହାକବି
ଆଉ ଏକ ଜନ୍ମ ପୁଣି ମର୍ତ୍ତ୍ୟରେ ଜନ୍ମିବି ।
ପ୍ରତି ଜନ୍ମ ପଞ୍ଚଦଶ ଲକ୍ଷ କଥା ଜାତ
ଚାରିଜନ୍ମେ ଷାଠିଲକ୍ଷ ତହିଁ ହେବ ଗ୍ରନ୍ଥ ।
ଷାଠିଲକ୍ଷ ଗ୍ରନ୍ଥ କରି ଏ ମୃତ୍ୟୁମଣ୍ଡଳ
ତେବେ ମୁଁ ପାଇବି ଯାଇଁ ଶିବଙ୍କର ପାଳ ।
ଜାତି ସ୍ମର ମୁଁ ନୁହଇ ନ ଜାଣଇ ତାହା
ପ୍ରସିଦ୍ଧ ଚଣ୍ଡୀ ଶାରଳା କହିଦେଲେ ଯାହା ।
ମହାଭାରତେ କହଇ ଶ୍ରୀ ଶାରଳା ଦାସ-
ଆହେ ବୁଧଜନେ ମୋର ନ ଧରିବ ଦୋଷ ।

—o—

## ସୁହାଣୀ କନ୍ୟାର ଶିଖରେଶ୍ୱର ଶିବ ସେବାରେ ନିଯୁକ୍ତି, ଗୌରୀ ଗୋପାଳୁଣୀ ବେଶେ କୃତ୍ତିବାସ ଓ କୀର୍ତ୍ତିବାସ ଦୈତ୍ୟଙ୍କ ସଂହାର

ଶୁଣ ବିଲଙ୍କେଶ ପୁଣି ବଦନ୍ତି ଅଗସ୍ତି
ଯୁଧିଷ୍ଠି ଶୁଣିଲେ କଳିଯୁଗର ଯେ ରୀତି ।
ତହୁଁ ସେ ବୋଇଲେ ଏହିପରି ଶାପ ଦେଲେ
ଏ ଭୂମିରେ ପାପମାନ ଘୋଟିଯିବ ଭଲେ ।
ଏହା ବିଚାରିଣ ଦେବ ଲୋମଶ ଡକାଇ
ପଚାରିଲେ ତାଙ୍କୁ ଆମ୍ଭେ ଯିବୁ କେଉଁଠାଇଁ ।
ଏ ଭୁବନ ପାପମୟ ହୋଇବ ଲୋମଶ
କେଉଁ ତୀର୍ଥେ ଆମ୍ଭେମାନେ କରିବୁ ଯେ ବାସ ।
ଲୋମଶ ବୋଇଲେ ତହୁଁ ମୋର ସଙ୍ଗେ ଆସ
ବ୍ରହ୍ମାଣ୍ଡ ଭିତରେ ଅଛି ଭୁବନ କୈଳାସ ।
ସାତ ପର୍ବତର ତଳେ ବହେ ଧବଳାଙ୍ଗୀ
ଊର୍ଦ୍ଧ୍ୱରେ ତାହା ବହେ ନଦୀ ସୁରଭୋଗୀ ।
ସେହି ସ୍ଥାନ କଥା ମୁହିଁ କରୁଛି ବର୍ଣ୍ଣନ
ଆହେ ଯୁଧିଷ୍ଠିର ତୁମ୍ଭେ ସାବଧାନେ ଶୁଣ ।
ଗନ୍ଧର୍ବ ନରପତିର ନାମ ବିଶ୍ୱାବସୁ
ତାହାରି ଭାରିଯା ନାମ ଅଟେ ରଷି ପର୍ଶୁ ।
କାଳକାମ ଅଧାମ ଯେ ଗୋତ୍ର ସୌମ୍ୟସୋମ
ପ୍ରିୟ ଆଦି କରି ତା ସାତ ପୁତ୍ର ନାମ ।
କଟୁଆଳ ହୋଇ କରି ଧାମନ୍ତି ସମସ୍ତେ
ରାତ୍ରକାଳେ ଜଗିଥାନ୍ତି କୈଳାସ ପର୍ବତେ ।
ଅପସରାର ସଙ୍ଗରେ କରନ୍ତି ପୀରତି
ଧନ ଦେଇ ତାଙ୍କୁ ତୃପ୍ତ କରି ନ ପାରନ୍ତି ।
ଏହିରୂପେ କେତେ କାଳ ହୋଇଲା ଅତୀତ
ସବୁ ସରିଗଲା ଯାହା ଥିଲା ତାଙ୍କ ବିତ୍ତ ।
କ୍ରମେ କ୍ରମେ ଶିରୀ ଆୟୁ ସମସ୍ତ ତୁଟିଲା
ପିନ୍ଧିଲା ବସନ ଆଦି ଅପସରା ନେଲା ।
ତହୁଁ କୁବେରର ଭଣ୍ଡାର ଧନ ଚୋରି କଲେ
ଅମୂଲ୍ୟ ରତନ ନେଇ ବେଶ୍ୟା ଘରେ ଦେଲେ ।
ଏସନ କୃତ୍ୟ ଜାଣି ଅଇଲେ କୁବେର
ସାତପୁତ୍ର ଧରିନେଲେ ଶିବଙ୍କ ଆଗର ।
ଅନୀତି ଦେଖିଣ ଶାପ ଦେଲେ ଦେବରାୟେ
ଯାଅରେ ସାତଙ୍କ ହେଉ ପାଷାଣର କାୟେ ।
ତାହା ଶୁଣି ସାତଭାଇ କରି ବହୁ ସ୍ତବ
ବୋଇଲେ ଭୋ ଦେବ ତୁମ୍ଭ ପୁରେ ଠାବ ଦେବ ।
ଶିବ ବୋଇଲେ ଇଚ୍ଛିଲ ଯେବେ ତୁମ୍ଭେ ଏହା
କପିଳାସର ପାବଚ୍ଛ ହୁଅରେ ଦୋରେହା ।
ମୋତେ ଦରଶନ କରି ଆସିବେ ଯେ ନର
ତାଙ୍କ ପାଦରଜ ପଡୁ ତୁମର ଶରୀର ।
ଏହିପରି ଋଷି ଶ୍ରେଷ୍ଠ ଯୁଧିଷ୍ଠିଙ୍କି କହି
ବନସ୍ତ ମଧ୍ୟରେ ସବୁ ଦେଖାଇଲେ ନେଇ ।
ଲୋମଶ ବୋଇଲେ ବାବୁ ଶୁଣ ହେ ଯୁଧିଷ୍ଠି
ବିଶ୍ୱାବସୁ ପୁତ୍ର ଏହି ଗିରି ସାତଗୋଟି ।
ସାତ ପର୍ବତ ଉପରେ ତହୁଁ ଉଠି ଆସି
ଦେଖିଲେ ତଥି ଉପରେ କପିଳାସବାସୀ ।
ବୃଷମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି
ଶତଭିଷା ନକ୍ଷତ୍ର ଯେ ସୌରୀବାର ରାତି ।
ଏହିପରି ଉଠିଆସି ଦେଖି କପିଳାସ
ସ୍ନାହାନ କରିବ ଏହି ତୀର୍ଥେ ଯେ ପୁରୁଷ ।
ତାହାର ସକଳ ପାପ ନିଃଶେଷ ହୋଇବ
ଅବଶେଷେ କଇଳାସେ ସେ ଲୋକ ବସିବ ।
ଏଥୁଅନ୍ତେ ଆନକଥା କହିବା ବୁଝାଇ
ଶୁଣ ହେ ରାଜନ ତୁମ୍ଭେ ତାହା ମନ ଦେଇ ।
ଭୀମକୁ ଯୁଧିଷ୍ଠି ଏହିପରି ଆଜ୍ଞା ଦେଲେ
ତଣ୍ଡୁଳ ପୁଡ଼ିଏ ଭୀମ ଆଣ ଯାଇଁ ଭଲେ ।
ତାହା ଶୁଣି ଭୀମସେନ ବାହାର ହୋଇଲେ
ଧର୍ମ ପୁରୁ ଧାନହଳା ଆଣିଣ ମିଳିଲେ ।
ଯୁଧିଷ୍ଠି ବୋଇଲେ ଏହା କିସ ତୁ କରିବୁ
ବଳଦ ନାହିଁ ଏହାକୁ କେମନ୍ତ ମଳିବୁ ।
ତହୁଁ ବନ ବୁଲି ବୁଲି ଭୀମ ବଳବନ୍ତ
ସାତଗୋଟି ବ୍ୟାଘ୍ର ଧରି କଲା ଏକତ୍ରିତ ।
ସେମାନଙ୍କୁ ଯୋଚି କରି ମଳିଦେଲା ଧାନ
ତୃଣକୁ ପକାଇ ଧାନ ଘେନେ ଭୀମସେନ ।
ଶିଳାରେ ପକାଇ ପୁଣି ମୁଥମାନ ମାରି
ସହସ୍ରେ ମାଣ ତଣ୍ଡୁଳ ସମ୍ପାଦନ କରି ।
ଆପଣେ ରନ୍ଧନ କଲା ନେଇ ଅତି ବେଗେ
ସେ ଭାତ ଢାଳେ ଶିଖରେଶ୍ୱରଙ୍କର ଆଗେ ।
ଯୁଧିଷ୍ଠିର ଦେବଙ୍କର ଭାରିଯା ସୁହାଣୀ
ସେହି ପର୍ବତ ଗୋଟିରେ ରଖାଇଲେ ଆଣି ।
ବୋଇଲେ ତୁ ଏଥି ଥାଇ ଶିବେ କର ସେବା
ବାହୁଡ଼ା ବେଳରେ ତୋତେ ବରାଣସୀ ନେବା ।
ସୋମବଂଶ ମଧ୍ୟେ ସେହି କନ୍ୟା ଯେ ନାୟିକା
ସେହି ହେତୁ ଜଗିଲା ସେ ସ୍ଥାନେ ରହି ଏକା ।
ସେ ସ୍ଥାନରୁ ପଣ୍ଡୁ ପୁତ୍ରେ ବାହାରିଲା ବେଳେ
ଯମକୁ ଡାକିଣ ଏହିପରି ଆଜ୍ଞା ଦେଲେ ।

ଯମକୁ ବୋଲନ୍ତି ଯହୁଁ ଧର୍ମ ଯୁଧିଷ୍ଠିର
ଲେଖନ କରିଣ ରଖ ତୋହର ପାଞ୍ଜିର ।
ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ଯେ ଜାଗନ୍ତି
ତାର ପାପ ଥିଲେ ମଧ୍ୟ ନ ଦେବଟି ଶାସ୍ତି ।
ତାହା ଶୁଣି ଯମଦେବ ସତ୍ୟ ସତ୍ୟ କଲେ
ତହୁଁ ଯୁଧିଷ୍ଠି ଦକ୍ଷିଣ ଦିଗେ ବିଜେ କଲେ ।
କଳିଯୁଗ ବାନ୍ଧିଥିଲେ ଯେଉଁ ବନସ୍ତରେ
କଳକଳା ଗଡ଼ ବୋଲି ହୋଇଲା ସେଠାରେ ।
ତହୁଁ ଚଳିଲେ ପାଣ୍ଡବେ ହୋଇ ଦୁଷ୍ଟମତି
ଚିତ୍ରୋତ୍ପଳା ନଦୀପାର ହୋଇଣ ଯାଆନ୍ତି ।
ଚିତ୍ରୋତ୍ପଳା ନଦୀ ତୀରେ ବିଶ୍ୱେଶ୍ୱର ପୂଜି
ଅମର ଲିଙ୍ଗ ଦର୍ଶନେ ବହୁ ତୋଷ ଭଜି ।
ପ୍ରବେଶ ହୋଇଲେ ଯାଇଁ ଏକାମ୍ରର ତୀର୍ଥେ
ବିନ୍ଦୁ ହ୍ରଦେ ସ୍ନାନ କରି ଦେଖି ବିଶ୍ୱନାଥେ ।
ଏକାମ୍ରର ଦେବଙ୍କୁ ସେ ସେଠାରେ ପୂଜିଲେ
ଶ୍ରୀଲିଙ୍ଗରାଜ ଦେବଙ୍କୁ ଦରଶନ କଲେ ।
ତହୁଁ ଚଳିଲେ ଆଗ୍ନେୟ କୋଣକୁ ପାଣ୍ଡବେ
ପ୍ରାଚୀ ନଦୀକୂଳେ ଯାଇଁ ପ୍ରବେଶିଲେ ଜବେ ।
ଲୋମଶ ବୋଇଲେ ଗୋପ୍ୟାନ ତୀର୍ଥ ଏହୁ ପ୍ରାଚୀ
ସତ୍ୟଯୁଗେ ସ୍ନାନ ଏଥେ କରୁଥିଲେ ଶଚୀ ।
ଅମର ସ୍ୱର୍ଗଭୁବନୁ ଆସନ୍ତି ଓହ୍ଲାଇ
ଏ ନଦୀରେ ସ୍ନାନ ଆଉ ଶମ୍ଭୁପୂଜା ପାଇଁ ।
ତତକ୍ଷଣେ ପୂଜା କରି ଅମରେ ଚଳନ୍ତି
ଅସୁରଙ୍କ ଭୟ ହେତୁ ଏଥୁ ନ ରହନ୍ତି ।
ଲୋମଶ ମୁନିଙ୍କଠାରୁ ଏହି କଥା ଶୁଣି
କହନ୍ତି ଯୁଧିଷ୍ଠିଦେବ ହୋଇଣ ଦଇନୀ ।
ଏ ଭୂମିରେ ସତ୍ୟଯୁଗେ ଥିଲେ ଯେ ରାକ୍ଷସେ
ତାହାଙ୍କ ଭୟରେ କେହି ନ ରହିଲେ ପାଶେ ।
ସେ ରାକ୍ଷସମାନେ ଏଥୁ କେଉଁପରି ଗଲେ
ଭୋ ମୁନି କହିବା ମୋତେ ନିଶ୍ଚଳ ମନରେ ।
ଲୋମଶ ବୋଇଲେ ଶୁଣ ଆହେ ମହାରାଜ
ରକ୍ଷ ଭକ୍ଷ ବୋଲି ଥିଲେ ଦୁଇଟି ଦନୁଜ ।
ରକ୍ଷ ଭକ୍ଷଙ୍କର ପୁତ୍ର ହେତି ଯେ ପ୍ରହେତି
ବଜ୍ରାଙ୍ଗ କାଳ ଅନଳ ଏହାଙ୍କ ସନ୍ତତି ।
ତାଙ୍କର ମାଳି ସୁମାଳି ମାଲ୍ୟବନ୍ତ ସୁତ
କେତୁମାଳି ବୋଲି ମାଲ୍ୟବନ୍ତର ଯେ ପୁତ୍ର ।
କେତୁମାଳିର ନନ୍ଦନ ହେଲା ଅଂଶୁମାଳି
ଏହାଙ୍କ ନନ୍ଦନ ହେଲା ମାଳି ଯେ ଗୋପାଳି ।
ଗୋପାଳିର ପୁତ୍ର ହେଲା ଉଦେ ଭାନୁମନ୍ତ
ଭାନୁମନ୍ତର ହୋଇଲା ପୁଣି ତିନି ପୁତ୍ର ।
କୀର୍ତ୍ତି କୃତ୍ତିବାସ ଆଉ ଏରଣ୍ଡକ ତିନି
ଏକାମ୍ରେ ରହିଲେ କୀର୍ତ୍ତି କୃତି ଭାଇ ତିନି ।
ଏରଣ୍ଡକ ରହେ ପ୍ରାଚୀ ନଦୀକୂଳ ମାଡ଼ି
ମୃତ୍ତିକା ଗିରିକି ସେହୁ ନ ଗଲାକ ଛାଡ଼ି ।
ଗୁପତ ହୋଇଣ ସେହୁ ବନେ ଥାଏ ଲୁଚି
ସ୍ନାନ କରି ଅଇଲେ ସେ ହରିନେବ ଶଚୀ ।
ନାରଦ କହିଲେ ଯାଇ ଇନ୍ଦ୍ର ସନ୍ନିଧାନେ
ଶଚୀକୁ ପଠାଅ ନାହିଁ ନଦୀ ସ୍ନାନେ ।
ଏରଣ୍ଡକ ଜଗିଅଛି ପ୍ରାଚୀ ନଦୀ କୂଳେ
ଶଚୀଙ୍କୁ ଦେଖିଲାକ୍ଷଣି ଧରିନେବ ବଳେ ।
ସେହିଦିନୁ ଶଚୀଦେବୀ ହୋଇଗଲେ ଗୋପ୍ୟ
ଏହିରୂପେ ଜଗିଅଛି ଦର୍ପିଷ୍ଟ କୌଣପ ।
ଏରଣ୍ଡକ ଦୈତ୍ୟ ସତ୍ୟଯୁଗରୁ ରହିଛି
ତାହାର କିଞ୍ଚିତ ଭୟ ଭ୍ରାନ୍ତି ନାହିଁ କିଛି ।
ଯୁଧିଷ୍ଠି ବୋଇଲେ କୀର୍ତ୍ତି କୃତ୍ତିବାସ ବେନି
ତାଙ୍କୁ କିଏ ବଧ କଲା କୁହ ଆହେ ମୁନି ।
ଲୋମଶ ବୋଇଲେ ଯେଉଁ ଏକାମ୍ରର ତୀର୍ଥ
ଅସୁର ଭୟରେ କେହି ନ ଗମନ୍ତି ସେଥ ।
ଦିନେକ ହର ବୋଇଲେ ଶୁଣ ଗୋ ଈଶାନୀ
କେମନ୍ତେ ବଧ କରିବା ସେ ଅସୁର ବେନି ।
ପାର୍ବତୀ ବୋଇଲେ ମୋତେ ତୁମ୍ଭ ଆଜ୍ଞା ହେଲେ
ମୁଁ ତାକୁ ବଧ କରିବି କୋପ ନ କରିଲେ ।
ମାର ବୋଲି ଆଜ୍ଞା ଦେଲେ ତାଙ୍କୁ ପଶୁପତି
ତହୁଁ ଗୋପାଳୁଣୀ ବେଶ ଧଇଲେ ପାର୍ବତୀ ।
କପଟେ ଦଧିନଉତି ମଥାରେ ମୁଣ୍ଡାଇ
ବିନ୍ଧ୍ୟ ପରବତ ପାଶେ ପ୍ରବେଶିଲେ ଯାଇଁ ।
ବିନ୍ଧ୍ୟପରବତେ ଥିଲେ ସେହି ଦୈତ୍ୟ ବେନି
ଦେଖିଲେ ଗୋପାଳୁଣୀ କି ଜଗତ ମୋହିନୀ ।
ଦରିଦ୍ର ନିଧି ପାଇଲେ ହୁଏ ଯେଉଁପରି
ଗୋପାଳୁଣୀ ଦେଖି ଦୈତ୍ୟ ହେଲେ ସେହିପରି ।
ବୋଇଲେ ଆମ୍ଭର ପୂର୍ବ ଅତି ପୁଣ୍ୟବଳେ
ଏ କାମିନୀକି ଭେଟିଲୁ ବସି ଏହି ସ୍ଥଳେ ।
ଭାଣ୍ଡ ଓହ୍ଲାଇ ବସିଲେ ଦେବୀ ଯାଇ କତି
ଅସୁର ବୋଇଲେ ଦିଅ ଏ ଦଧିନଉତି ।
ତହୁଁ ଦେବୀ ବୋଇଲେ ମୁଁ କୁଳଭୁଆସୁଣୀ
ଧାନ ପୁଡ଼ାଏ ପାଇଲେ ବଞ୍ଚୁ ପଞ୍ଚପ୍ରାଣୀ ।
ଶୁଣି ଦାନବେ ବୋଇଲେ ଛାର ଧାନ ଦେବୁ
ହୀରା ନଉତିଏ ଆଣି ତୋ ଭାଣ୍ଡକେ ଦେବୁ ।
ଏହା କହି ଠୋଲା ଘେନି ବସିଲେ ସେ ବେନି
ପରଖନ୍ତି ମାହେଶ୍ୱରୀ ଦଧିଭାଣ୍ଡ ଘେନି ।

ହାସ ହରିପାସ କରି ଦଧି ଯେ ପିଅନ୍ତି
ଉଛୁର ଦେଖିଣ ଦେବୀ ତାହାଙ୍କୁ କହନ୍ତି ।
ବେଗ କରି ଭୁଞ୍ଜ ତୁମ୍ଭେ ଆହେ ବାବୁମାନେ
ତୁମ୍ଭ କାର୍ଯ୍ୟ ଶେଷହେଲେ ଯିବୁ ନିକେତନେ ।
ଏକା ଦଧି ନଉତିରୁ ପରଷନ୍ତି ସତୀ
ଯଥେଷ୍ଟ ପିଇଣ ଦୈତ୍ୟ ସନ୍ତୋଷ ଲଭନ୍ତି ।
ସମୁଦ୍ର ଶୋଷି ପାରନ୍ତି ଯେବଣ ଦଇତ
ଏକା ଦଧି ଭାଣ୍ଡକରେ ହୋଇଣ ତୃପତ ।
ଭୁଞ୍ଜି ସାରିଣ ଦଇତ ଆଚମନ କଲେ
ସୁବର୍ଣ୍ଣର ନଉତିଏ ଭାଣ୍ଡେ ଆଣିଦେଲେ ।
କାଲି ନଉତିଏ ଦଧି ଦେବୁଟି ଆମ୍ଭଙ୍କୁ
ଦରିଦ୍ରାବସ୍ଥାରୁ ଆମ୍ଭେ ତାରିବା ତୁମ୍ଭଙ୍କୁ ।
ଶୁଣି ଗୋସାମଣି ତହୁଁ ଚଳିଲେ କୈଳାସେ
ସମସ୍ତ କହିଲେ ଯାଇ ସଦାଶିବ ପାଶେ ।
ଭାଳନ୍ତି ଅସୁରେ ଆମ୍ଭେ ମନ୍ଦକୃତ୍ୟ କଲୁ
ହସ୍ତଗତ ରତନକୁ କିପାଇଁ ଛାଡ଼ିଲୁ ।
କାଲି ଯଦ୍ୟପି ସେ ପୁଣି ଆସେ ଗଉଡୁଣୀ
ନ ଛାଡ଼ି ତାକୁ କରିବା ଆମ୍ଭର ଘରଣୀ ।
କାମ ଭୋଳେ ଭାଳୁ ଭାଳୁ ପାହିଲାକ ରାତି
ବିନ୍ଧ୍ୟଗିରି ଶିଖେ ଉଠି ତାହାଙ୍କୁ ଚାହାନ୍ତି ।
ଦେବାଙ୍ଗ ଦିବ୍ୟ ବସନ ପିନ୍ଧିଲେ ପାର୍ବତୀ
ଭଲ ଅଳଙ୍କାର ଅଙ୍ଗେ ମଣ୍ଡଣି ହୁଅନ୍ତି ।
ଦଧିନଉତିକୁ ତହିଁ ମସ୍ତକେ ମୁଣ୍ଡାଇ
ଧୀରେ ଧୀରେ କଇଳାସୁ ବିଜେ ମହାଦେଈ ।
ଦଇବେ ତାହାଙ୍କୁ କିସ ପଟାନ୍ତର ଅଛି
ମୁନି ମନମୋହିନୀ ସେ ଦୈତ୍ୟ କାହିଁ ମୂର୍ଚ୍ଛି ।
କ୍ରମେ ପ୍ରବେଶ ହୋଇଲେ ଯାଇ ବିନ୍ଧ୍ୟଗିରି
ମସ୍ତକୁ ଦଧିନଉତି ରଖିଲେ ଉତ୍ତାରି ।
ତାହା ଦେଖି ଦୁଇଭାଇ କହନ୍ତି ଗୋ ସହି
ବେଗହୋଇ ଆସ ତୁମ୍ଭେ ଅନୁକମ୍ପା ବହି ।
ତହୁଁ ମହାମାୟୀ ତାଙ୍କ ନିକଟେ ମିଳିଲେ
ଆବର ଦଧି ଭାଣ୍ଡକୁ ନିକଟେ ରଖିଲେ ।
ନିଶା ହୁଏ ଯେଉଁ ଦ୍ରବ୍ୟ କରିଲେ ଭକ୍ଷଣ
ତାହାକୁ ଧରି ଦଧିରେ ଛନ୍ତି ମିଶାଇଣ ।
ଭୁଞ୍ଜନ୍ତି ସେ ଦୁଇଭାଇ ପରଷନ୍ତି ଉମା
ଦଇତେ ବୋଇଲେ ତୁମ୍ଭେ ହୁଅ ଆମ୍ଭ ବାମା ।
ବହୁତ ଧନ ରତନ ଆମ୍ଭେ ତୋତେ ଦେବୁ
ତୋ ସଙ୍ଗେ ରମି ମନୋଜ ତାପରୁ ତରିବୁ ।
ଗୋପାଳୁଣୀ ବୋଇଲା ମୁଁ ତୁମ୍ଭଙ୍କୁ ଭଜିଲି
ରାତ୍ରିରେ ଭାଳିଲି କିମ୍ପା ଛାଡ଼ି ମୁଁ ଅଇଲି ।
କିନ୍ତୁ ମୁଁ କହୁଛି ମୋର ଏକ ବ୍ରତ ଅଛି
ତାହା ପାଳିଲେ ତୁମ୍ଭର ହୋଇବି କହୁଛି ।
ଦୈତ୍ୟ ପଚାରିଲେ କହ ତୋର କେଉଁ ଓଷା
ଦେବ ଦୁର୍ଲ୍ଲଭ ହେଲେ ହେଁ ପୂରାଇବୁ ଆଶା ।
ଗୋପାଳୁଣୀ ବୋଲନ୍ତି ଯେ ଧନ ନୁହେଁ ବ୍ୟାଜ
କିଞ୍ଚିତ ସେ କହିବାକୁ ଲାଗେ ବଡ଼ ଲାଜ ।
ଦୈତ୍ୟ ବୋଇଲେ ତୁ ଭାର୍ଯ୍ୟା ଆମ୍ଭେ ତୋର ପ୍ରଭୁ
ସେ କଥାରେ ଲଜ୍ଜା ବୋଲି କିସ ପାଇଁ ଭାବୁ ।
ପୁଣି ଗୋପାଳୁଣୀ ତହୁଁ କରନ୍ତି ଉତ୍ତର
ଦୁହିଁଙ୍କ କାନ୍ଧରେ ପାଦେ ପାଦେ ଥିବ ମୋର ।
ହାତେ ହାତେ ଦୁହିଁଙ୍କର ମୁଣ୍ଡ ଥିବି ଧରି
ବୁଲାଇବ ମୋତେ ନେଇ ଏହିପରି କରି ।
ବୁଲିବି ମୁଁ ତିନିକ୍ରୋଶ କରି ଆୟତନ
ତେବେ ଯାଇ ଓଷା ମୋର ହୋଇବ ସମ୍ପୂର୍ଣ୍ଣ ।
ବଚନରେ ଭଣ୍ଡି ତାଙ୍କ ମନକୁ ମୋହିଲେ
ଦୁଇଭାଇ ତାଙ୍କୁ ନେଇ କନ୍ଧେ ଉଭାକଲେ ।
ମତୁଆଳ ପାଦ ଯେହ୍ନେ ନ ହୁଅଇ ସ୍ଥିର
ସେହିପରି ବୁଲିଲେ ଯେ ସେ ବେନି ଅସୁର ।
କନ୍ଧେ ଠିଆ କରାଇଲେ ବୁଲି କ୍ଷେତ୍ରସ୍ଥଳୀ
ଏକାମ୍ର ଈଶ୍ୱର ପାଶେ ଯାଇକରି ମିଳି ।
ଦନୁଜ ନାଶିନୀ ଦେବୀ ବିଶ୍ୱରୂପ ବ୍ୟାପି
ସେ ଦୈତ୍ୟ ମହାବଳୀଙ୍କୁ ଦୃଢ଼େ ଦେଲେ ଚାପି ।
ଏକାମ୍ରେଶ୍ୱର ପଶ୍ଚିମେ ଶ୍ରୀ ଭୁବନେଶ୍ୱର
ତାର ଉତ୍ତର ଦିଗରେ ଚାପିଲେ ଅସୁର ।
ଚାପନ୍ତେ ଅସୁରଙ୍କର ଦିଶେ ମାତ୍ର ଶିର
ବୋଇଲେ କପଟ କଲୁ ତୁହି ଗୋ ଅପାର ।
ଶୁଣିଣ ଦେବୀ ବୋଲନ୍ତି ମୁଁ ଅଟେ ପାର୍ବତୀ
ଚିହ୍ନି ନ ପାରିଲ ମୋତେ ଆରେ ଦୁଷ୍ଟମତି ।
ଏହିପରି ଭାବେ ମୁହିଁ ତୁମ୍ଭଙ୍କୁ ରଖିବି
ସବୁବେଳେ ତୁମ୍ଭ ମୁଣ୍ଡ ଏଥି ଦେଖୁଥିବି ।
ତହୁଁ ବିନୟେ ବୋଇଲେ ସେ ବେନି ଦଇତେ
ଏତିକିରେ ରଖ ମାଗୋ ଦେଖନ୍ତୁ ସମସ୍ତେ ।
ମହାକ୍ଷେତ୍ରେ କରାଇଲେ ଆମ୍ଭଙ୍କୁ ବିନାଶି
ଆମ୍ଭର ପ୍ରାର୍ଥନା ଦେବୀ ବାରେକ ଘେନସି ।
କୀର୍ତ୍ତି କୃତିବାସ କ୍ଷେତ୍ର ନାମ ଏ ବୋଲାଉ
ଏହି କୀର୍ତ୍ତିଗୋଟି ମାଗୋ ଯୁଗେ ଯୁଗେ ଥାଉ ।
ତୁମ୍ଭଙ୍କୁ ଦର୍ଶନ ଯେହୁ କରିବେକ ଆସି
ସେହି ଧର୍ମରୁ ଅର୍ଦ୍ଧେକ ଆମ୍ଭଙ୍କୁ ଦିଅସି ।
ତଥାସ୍ତୁ ବୋଲିଣ ଦେବୀ ଅନ୍ତର ହୋଇଲେ
ଯାଇଣ ବିନ୍ଦୁସାଗର କୂଳରେ ଶୋଇଲେ ।

ମହେଶ୍ୱର ଚଉକତି ଲୋଡ଼ିଣ ଆସନ୍ତି
ଯହିଁ ଉମା ଶୋଇଥିଲେ ସେଠାରେ ବସନ୍ତି ।
ଜୟ ଜୟ ଜଗନ୍ନାଥ ଜଗତ ତାରଣ
ଲୀଳା ଲଗାଇଛ ନୀଳାଚଳରେ ବସିଣ ।
ଆହା ସେ ମୁଖ ମାଧୁରୀ ନାହିଁ ଉପମେୟ
ତୁମ୍ଭର ଉପମା ତୁମ୍ଭେ ସିନା ଦୟାମୟ ।
ମହା ମହା ପାପୀମାନେ କରନ୍ତି ଦର୍ଶନ
କୋଟିଏ ଜନ୍ମର ପାପୁ ହୁଅନ୍ତି ମୋଚନ ।
ଆହେ ଦୟାମୟ ହରି ଘେନ ମୋ ଆରତ
ଏ କଳି କଳ୍ମଷ ବାଧା ନ ଲାଗୁ ଯେମନ୍ତ ।
ସର୍ବଦା ଶାରଳା ଦାସ ହୃଦେ କର ଖେଳା
ଭବସାଗରକୁ ତୁମ୍ଭ ନାମ ହେଉ ଭେଳା ।

—o—

## ଏରଣ୍ଡକ ଦୈତ୍ୟ ବଧ ଓ ଯୁଧିଷ୍ଠିଙ୍କର ମାଧବ ମୂର୍ତ୍ତି ସ୍ଥାପନ

ପଚାରନ୍ତି ଅଗସ୍ତିଙ୍କୁ ମନୁ ନୃପବର
ଏଥୁଅନ୍ତେ କେଉଁ କଥା କଲେ ଯୁଧିଷ୍ଠିର ।
ସେହି କଥା ଶୁଣିବାକୁ ବଡ଼ ଅଭିଳାଷ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
କୀର୍ତ୍ତିବାସ କୃତ୍ତିବାସ ବଧ କଥା ଶୁଣି
ଦୁରିତ ଅଙ୍ଗ ବିନାଶ କଲ ନୃପମଣି ।
ଶୁଣ ଆନ ସମାଚାର ବୋଲନ୍ତି ଲୋମଶ
ଏକାମ୍ରବନେ ମରିଲେ ସେ ବେନି ରାକ୍ଷସ ।
ଏରଣ୍ଡକ ଅଟେ ତାର କନିଷ୍ଠ ସୋଦର
ମୃତ୍ତିକା ଗିରି ଶିଖରେ କରିଅଛି ଘର ।
ନାରଦ କହନ୍ତି ଆଉ ନ ଅଇଲେ ଶଚୀ
ଏରଣ୍ଡକ ଦୈତ୍ୟ ସତ୍ୟଯୁଗରୁ ରହିଛି ।
ଯୁଧିଷ୍ଠି ବୋଇଲେ ଏଥେ କରିବାକ ତୀର୍ଥ
ଦେଖିଲେ ମାରିବା ଯାଇ ଏରଣ୍ଡକ ଦୈତ୍ୟ ।
ଲୋମଶ ଘେନି ସ୍ନାହାନ କଲେ ପଞ୍ଚଭ୍ରାତ
ତହୁଁ ସେ ସ୍ଥାନ ହୋଇଲା ପାଣ୍ଡବଙ୍କ ତୀର୍ଥ ।
ନଦୀରେ ପଶି ସ୍ନାହାନ କଲେ ପଞ୍ଚଭ୍ରାତେ
ଦେଖିଲେ ଯେ କୃଷ୍ଣବର୍ଣ୍ଣ ମାଧବ ସାକ୍ଷାତେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଅଭୟ ଯେ ବସ୍ତ
ଦେଖି ଯୁଧିଷ୍ଠିର ଦେବ କଲେ କୋଳାଗ୍ରତ ।
ପାଣ୍ଡବ ତାକୁ ତୁଠରେ ଥୋଇଲେକ ଆଣି
ପ୍ରତ୍ୟକ୍ଷେ ଏ ନାରାୟଣ ଶୁଭେ ଶୂନ୍ୟବାଣୀ ।
କଥାବାର୍ତ୍ତା ଶୁଣି ସେହୁ ଏରଣ୍ଡକ ଦୈତ୍ୟ
ଧାଇଁଲା ସେ କୁଠାରକୁ ଧରି ନିଜ ହସ୍ତ ।
ପାଣ୍ଡବମାନଙ୍କୁ ଏରଣ୍ଡକ ଦେଖି ତହିଁ
ମହା ଘୋର ନାଦ କରି ପ୍ରବେଶିଲା ଯାଇ ।
ତାକୁ ଦେଖି ଭୀମସେନ ମୁଥେକ ମାଇଲା
ଏରଣ୍ଡକ ଶରୀରରୁ ରକ୍ତ ବାହାରିଲା ।
ତହୁଁ ଭୀମ ଏରଣ୍ଡକ ଯୁଦ୍ଧ ଆରମ୍ଭିଲେ
କେହି କାହାକୁ ରଣେ ଜିଣି ନ ପାରିଲେ ।
ଭୀମସେନ ବୋଲେ ଦେବ ମାଧବଙ୍କୁ ପୂଜ
ମୁହିଁ ବଧ କରେ ଯାଇ ଏରଣ୍ଡ ଦନୁଜ ।
ନଳବଳି ଦେଖି ଦୈତ୍ୟ କରିଲା କଟାଳ
ଗଦା ବୁଲାଇ ଧାମଇଁ ଭୀମ ମହାବଳ ।
ଏରଣ୍ଡକ ପିଟିଲା ଯେ କୁଠାରକୁ ଘେନି
ଭୀମ ବାମଅଙ୍ଗ ବାଜି ଝଲକେ ବହନି ।
ଭୀମ ପିଟିଲା ଦୈତ୍ୟକୁ ଘେନି ବେନି ଗଦା
ଅଙ୍ଗରେ ପଡ଼ି ଭାଜିଲା ରହିଲାକ ଅଧା ।
ଖଣ୍ଡିତ ଗଦା ପକାଇ ବୀର ବୃକୋଦର
ଦୈତ୍ୟ ସଙ୍ଗେ କଲା ମଲ୍ଲବନ୍ଧେର ସମର ।
ତିନିକ୍ରୋଶ ଆୟତନ ବନଚର ହେଲା
ଗିରିର ଶିଖେ ଭୀମକୁ ମାଡ଼ିଣ ବସିଲା ।
ବଜ୍ରମୁଥକୁ ପ୍ରହାର କରେ ଦୈତ୍ୟ ତମେ
ଶୋଣିତ ଗଳି ପଡ଼ିଲା ଭୀମ ଲୋମେ ଲୋମେ ।
କିରୀଟୀ ବୋଲିଣ ଯହୁଁ ବୋଇଲା ପାବନୀ
ଛାଡ଼ିଣ ଏରଣ୍ଡ ମାଲ ବିନ୍ଧାଣକୁ ଘେନି ।
ଦ୍ୱନ୍ଦ୍ୱଯୁଦ୍ଧେ ଭୀମସେନ ଅଟେ ବଳବନ୍ତା
ଶତସିଂହର ପ୍ରସନ୍ନେ ତ୍ରୈଲୋକ୍ୟର ଜିତା ।
ଏରଣ୍ଡକ ଦୈତ୍ୟେ ଧରି ପଡ଼ିଲା ମାରୁତି
ମନ୍ଦରଗିରିକୁ ମାଡ଼ି ବସିଲା ନିଭ୍ରାନ୍ତି ।
ଅଚଳ ହେଲା ଦଇତ ନ ପାରିଲା ଚଳି
ବିନ୍ଧାଣେ ହରି କିରୀଟୀ କିରୀଟୀ ଯେ ବୋଲି ।
ଭୀମସେନ ବୋଲେ ବୀର ହୋଇଲୁ କି ବାଇ
ଜଣେ ସିନାରେ କିରୀଟୀ ବୋଲିଣ କହଇ ।
ଗଦା ନ ଥିବାରୁ ତହିଁ ମାରେ ବଜ୍ରମୁଥେ
ଅଗ୍ନି ଝଲକି ଉଠିଲା ଅସୁରର ଗାତ୍ରେ ।
ପାଦ ଧରି ବୁଲାଇଲା ନେଇ ଅନ୍ତରୀକ୍ଷେ
ମୃତ୍ତିକା ଗିରି ଉପରେ ପଡ଼ିଲା ପ୍ରତ୍ୟକ୍ଷେ ।
ଅଶୀତାଳର ଉତ୍ସର୍ଗ ଯେଉଁ ଗିରିବର
ଅସୁରକୁ ପିଟନ୍ତେ ସେ ହୋଇଗଲା ଚୂର ।
ଆକାଶବାଣୀ ଶୁଭିଲା ନ ମରିବ ଦୈତ୍ୟ
ତୁହୋ ବୃକୋଦର ମାଡ଼ିବସ ଦୈତ୍ୟ ଗାତ୍ର ।
ଏହା ଶୁଣି ବୃକୋଦର ବସିଲା ଯେ ମାଡ଼ି
ଦଳାଦଳି କରି ଦୈତ୍ୟ ପ୍ରାଣ ଗଲା ଛାଡ଼ି ।

ଭାଇଙ୍କ ନିକଟେ ଭୀମ ମିଳିଲା ସେ ପୁଣି
ଏ ସମୟେ ଆକାଶରୁ ଶୁଭିଲା ଏ ବାଣୀ ।
ଆହେ ଯୁଧିଷ୍ଠିର ତୁମ୍ଭେ ଆମ୍ଭ ବାକ୍ୟ ଶୁଣ
ଏ ସ୍ଥାନରୁ ଯାଅ ତୁମ୍ଭେ ମାଧବ ଘେନିଣ ।
ପ୍ରାଚୀକୂଳେ ଅଛି ଯେଉଁ ମୃତ୍ତିକା ଶିଖର
ପୂଜିବ ତାହାକୁ ତୁମ୍ଭେ ରଖି ସେହିଠାର ।
ସେ ମାଧବ ତୁମ୍ଭ ହାତେ ପୂଜା ପାଇ କରି
ଯୁଧିଷ୍ଠି ମାଧବ ନାମ ହୋଇବ ତାଙ୍କରି ।
ଆକାଶରୁ ବାଣୀ ଶୁଣି ତହୁଁ ଧର୍ମଦେବ
ନିଜ କରେ ତୋଳିଣ ସେ ଧଇଲେ ମାଧବ ।
ତାଙ୍କୁ ନେଇ ସେ ଗିରି ଊର୍ଦ୍ଧ୍ୱେ ବସାଇଲେ
ଯେଉଁଠାରେ ଭୀମ ଏରଣ୍ଡକୁ ଚାପିଥିଲେ ।
ଯୁଧିଷ୍ଠି କହନ୍ତି ତହୁଁ ପଡ଼ି ପାଦତଳେ
ମହାଶମ୍ଭୁ ତୁମ୍ଭେ ପ୍ରଭୁ ଅଟ ସର୍ବକାଳେ ।
ବାଳକ ବୃଦ୍ଧ ତରୁଣ ହେବୁ ତିନିରୂପ
ଗାରିଡ଼ି ସର୍ପର ତୁମ୍ଭେ ଚୂର୍ଣ୍ଣକର ଦର୍ପ ।
ହେ ପଣ୍ଡିତ ଜନେ ମୁହିଁ ନୁହଇଁ ଯେ ଜ୍ଞାତା
ବୁଧଜନ ମୁଖୁଁ ଶୁଣି କହିଲି ଏ କଥା ।
ସେହିଠାରେ ପାଣ୍ଡବେ ଯେ ଘାଟ ଏକା କଲେ
କହୁଛି ଯା ଫଳ ହୁଏ ତହିଁ ସ୍ନାନ କଲେ ।
ସେ ପାଣ୍ଡବ ଘାଟେ ଯେହୁ ସ୍ନାହାନ କରିଣ
ପ୍ରାଚୀକୂଳେ ମାଧବଙ୍କୁ କରଇ ଦର୍ଶନ ।
ମାଧବଙ୍କ ଅନୁଗ୍ରହେ ସର୍ବସିଦ୍ଧି ହୁଏ
ଯେତେ ପାପ ଥିଲେ ସୁଦ୍ଧା ସର୍ବକ୍ଷୟ ଯାଏ ।
ଯଶସ୍କରୀ ବନେ ଅଟେ ଏହି ତୀର୍ଥସ୍ଥାନ
ଯୁଧିଷ୍ଠି ମାଧବ ମୂର୍ତ୍ତି ଯେ କରେ ଦର୍ଶନ ।
ଧର୍ମ ଅର୍ଥ କାମ ମୋକ୍ଷ ଚଉବର୍ଗ ପାଇ
ଅନ୍ତିମ କାଳରେ ବସେ ବଇକୁଣ୍ଠେ ଯାଇ ।
ମାଧବ ସୁମର ନରେ ରୋଗାଦି ନ ପୀଡୁ
ମାଧବ ସୁମର ନରେ କାଳଦଣ୍ଡ ଛାଡୁ ।
ମାଧବ ସୁମର ନରେ ଶ୍ରୀ ସମ୍ପଦ ହେଉ
ମାଧବ ସୁମର ନରେ ନାନା ଦୁଃଖ ଯାଉ ।
ମାଧବ ସୁମର ନରେ ବନ୍ଧନ ଯେ ଫିଟୁ
ମାଧବ ସୁମର ନରେ ଶ୍ରୀଆୟୁ ନ ତୁଟୁ ।
ମାଧବ ସୁମର ନରେ ଧନବୃଦ୍ଧି ହେଉ
ମାଧବ ସୁମର ନରେ ଶତ୍ରୁକ୍ଷୟ ଯାଉ ।
ଅନନ୍ତ ମହିମା ଯେଉଁ ଯୁଧିଷ୍ଠି ମାଧବ
ପଞ୍ଚଆତ୍ମା ଲୟ କରି ମାଧବଙ୍କୁ ସେବ ।
ବାଳ ବୃଦ୍ଧ ତରୁଣ ଯେ ତିନିମୂର୍ତ୍ତି ଦେଖ
ପରଲୋକର ବାନ୍ଧବ ତୁହି ଅଟୁ ସାକ୍ଷ୍ୟ ।
ପ୍ରତ୍ୟକ୍ଷ ନାରାୟଣ ଏ ସନ୍ଦେହ ଗାରିଡ଼ି
ସେହି ପ୍ରଭୁ କାଳିସର୍ପ ବସିଲାକ ମାଡ଼ି ।
ଅଶେଷ ମହିମା ଯାର ନ ସରେ କହନ୍ତେ
ମୁଁ କିସ କହିବି ଅବା ତାହାକୁ ଲେଖନ୍ତେ ।
ଅପଣ୍ଡିତ ହେଲେ ମୁହିଁ କିସ ମୋର ବୁଦ୍ଧି
ଯୁଧିଷ୍ଠି ମାଧବ ପାଦେ ସର୍ବକାଳେ ବନ୍ଦି ।
ମନ ବଚନ କର୍ମବ୍ୟେ ଭାଳେ ତବ ନାମ
ସର୍ବଜନର ସୋଦର ପୁରୁଷ ଉତ୍ତମ ।
ଶ୍ରୀମହାଭାରତ ରହୁ ମନ ଅର୍ଥବାକ୍ୟେ
ତାହା ମୁଁ ଘଟଣା କଲି ଯଥା ମୋର ଶକ୍ୟେ ।
ଶ୍ରୀଯୁଧିଷ୍ଠି ମାଧବଙ୍କ ଚରଣାର ବିନ୍ଦେ
କହନ୍ତି ଶାରଳାଦାସ କବି ରଖି ହୃଦେ ।

—୦—

## ଯୁଧିଷ୍ଠିରଙ୍କ ଉତ୍ତର ଦିଗ ତୀର୍ଥେ ଗମନ, ଅପ୍ରତିଷ୍ଠା ଡାକେଶ୍ୱରୀ ବିବରଣ ଓ ଅସ୍ତ୍ରଶସ୍ତ୍ରାଦି ତ୍ୟାଗ

ମାଧବ ଦର୍ଶନ କରି ରାଜା ଯୁଧିଷ୍ଠିର
ଚଳନ୍ତି ପାଣ୍ଡବେ ଲତା ଗହନ କନ୍ଦର ।
ପର୍ଶ୍ଚିମକୁ ମୁଖ କରି ଗମନ କରିଲେ
ମନ୍ଦର ବନ ରାଜନ ନବରେ ମିଳିଲେ ।
ଶବରୀ ନାରାୟଣ ଯେ ପରମ ଦେବତା
ତାହାଙ୍କୁ ଦର୍ଶନ କଲେ ପଞ୍ଚମହାରଥା ।
ଦେଖିଲେ ସେ କୋଠରୀଏ ରୁଦ୍ରନଦୀ ତୀରେ
ପର୍ଶୁରାମଙ୍କ କଟାରୀ ବିରାଜେ ତହିଁରେ ।
ଯେଉଁ କଟାରୀରେ ପ୍ରଭୁ ପର୍ଶୁରାମ ବୀର
ନିକ୍ଷତ୍ରୀ କଲେ ପୃଥିବୀ ଏକବିଂଶ ବାର ।
ସେ ରକ୍ତେ ତର୍ପଣ କରି ପୂଜି ଭୈରବୀକି
ସେ ପ୍ରତିମା ହସ୍ତେ ଦେଲେ କର୍ଣ୍ଣ କଟାରୀକି ।
ପାଣ୍ଡବେ ବିଜୟେ ତାଙ୍କୁ କରିଲେ ଭକତି
ଜୟ ଜୟ କୋଠରୀ ଗୋ ଖଣ୍ଡସି ଦୁର୍ଗତି ।
ଯୁଗେ ଯୁଗେ ତହିଁ ମାଗୋ ଅନୁବ୍ରତେ ଯୁବା
ତୁମ୍ଭ ପାଦେ ଜନ୍ମେ ଜନ୍ମେ କରୁ ଆମ୍ଭେ ସେବା ।
ଜଗତ ତାରିଣୀ ଅସୁରଙ୍କ ମାଂସ ଭୁଞ୍ଜି
ମୁଣ୍ଡମାଳ ତୁମ୍ଭର ଯେ ଅଟଇ ଐଶ୍ୱର୍ଯ୍ୟ ।
ନମୁଅଛୁ ଆମ୍ଭେମାନେ ତୁମ୍ଭଙ୍କୁ କରାଳୀ
ଅସୁରଙ୍କ ରକ୍ତେ ମାତା କରୁଥାଅ କେଳି ।
ଜାତ ଅନ୍ତେ ମଧ୍ୟେ ଅନ୍ତେ ଅବିକାର କାୟେ
କୁଠାରଧାରିଣୀ ମାଗୋ ରଖ ମହାମାୟେ ।

ଜୟ ଜୟ ଚଣ୍ଡିକା ଗୋ ଅଭୟ ତ୍ରିଶୂଳୀ
ଯଜ୍ଞଭୋଜୀ ତବ ନାମ ସଦା ମୁହିଁ ଭାଳି ।
ସିଦ୍ଧ କୋଠରୀ ଚରଣେ ସେବେ ଅନୁବ୍ରତେ
କବି ଶ୍ରୀ ଶାରଳାଦାସ ଭକ୍ତି ମାର୍ଗେ ନିତ୍ୟେ ।
ଅଗସ୍ତିଙ୍କି ପଚାରିଲେ ବୈବସ୍ୱତ ମନୁ
ସ୍ୱର୍ଗଆରୋହଣ କଥା କହ ବ୍ରହ୍ମାସୁନୁ ।
କୋଠରୀ ଦର୍ଶନ କରି ଧର୍ମ ନୃପମଣି
ଭ୍ରାତା ଭାରିଯା ସହିତେ କେଣେ ଗଲେ ପୁଣି ।
ଶୁଣ ଆହେ ନୃପବର ବଦନ୍ତି ଅଗସ୍ତି
ରହିଲେ ସେ ରୁଦ୍ରନଦୀ ତୀରରେ ନୃପତି ।
ଯୁଧିଷ୍ଠିର ବୋଲନ୍ତି ତୁ ଶୁଣ ବୃକୋଦର
ନଦୀପାର ହୋଇଯିବା କେମନ୍ତ ପ୍ରକାର ।
ସ୍ୱାମୀଙ୍କ ଆଜ୍ଞାରେ ବୃକୋଦର ହେଲା ପାରି
ସେ ସମୟେ କେ ଡାକିଲା ରେରେକାର କରି ।
ତାହା ଶୁଣି ଯୁଧିଷ୍ଠିର କାତର ହୋଇଲେ
ବୃକୋଦର ଡାକ ଅର୍ଜୁନକୁ ଆଜ୍ଞା ଦେଲେ ।
ଅର୍ଜୁନ ଡାକିଲେ ଦେବ ଆସ ହୋ ବାହୁଡ଼ି
ନ ଆସିଣ ଭୀମସେନ ଦେଲା ଏକ ରଡ଼ି ।
ପୁଣି କେ ଡାକିଲା ଉଚ୍ଚେ ଆରେରେ ପାଣ୍ଡବେ
ଯୁଧିଷ୍ଠି ଅର୍ଜୁନ ନକୁଳ ଯେ ସହଦେବେ ।
ନୟନ ବୁଲାଇ କହେ ତୁମ୍ଭେମାନେ କେରେ
ଜାଣିବ ତୁମ୍ଭର ଗର୍ବ ଏଣିକି ଆସରେ ।
ସହଦେବ ମୁଖ ଚାହିଁ ବୋଲନ୍ତି ଯୁଧିଷ୍ଠି
କେବଣ ଚରିତ ବାବୁ ଏ ବଡ଼ ଅରିଷ୍ଟି ।
ସହଦେବ ବୋଲେ ଯାଗ ମାନଧାତା କଲା
ମହୀମଣ୍ଡଳ ରାଜାଙ୍କୁ ନିମନ୍ତ୍ରି ଆଣିଲା ।
ତପସ୍ୱୀଗଣଙ୍କୁ ମଧ୍ୟ ଆଣିଲା ଡକାଇ
ଏ ଅମୋକ୍ଷ ଭୂମି ବୋଲି ନ ପଶିଲେ କେହି ।
ରେ ରେ କାର ଶବ୍ଦେ ଏଥେ ରହେ ଡାକେଶ୍ୱରୀ
ଅମୋକ୍ଷ ଭୂମି ତେଣିକି ନୁହନ୍ତି କେ ପାରି ।
ଶଉଚ ବା ଅଶଉଚ ନ ଜାଣନ୍ତି ପ୍ରାଣୀ
ବହିର୍ଭୂମି ବସି କେହି ନ ଘେନନ୍ତି ପାଣି ।
ମାନ୍ୟ ଗଉରବ ନାହିଁ ସବୁ ଏକାକାର
ବିପ୍ର ଚାଣ୍ଡାଳେ ଏକତ୍ର ନ ଥାଏ ବିଚାର ।
ଭୋଜନ କଲେ ଅଇଁଠା ବୋଲି ତ ନ ଜାଣି
ମଦ ମାଂସ ଖାଇ ସଦା ମତୁଆଳ ପୁଣି ।
ବେଳ କାଳ ନାହିଁ ସ୍ତିରୀସେବା ମନ ଇଚ୍ଛା
ଜାନୁହସ୍ତ ଆଭରଣ କାହିଁ କାରକୁଚ୍ଛା ।
ସେଥିପାଇଁ ଏ ସ୍ଥାନରେ ନ ହୋଇଲା ଯାଗ
ତେଣୁ ଅମୋକ୍ଷ ପଡ଼ିଛି ଆହେ ମହାଭାଗ ।
ଯୁଧିଷ୍ଠି ଦେବ ବୋଇଲେ ନ ଶୁଣ ଏ ବାଣୀ
ଏ ବାଟକୁ ଛାଡ଼ିଯିବା ଭାଳ ଏହିକ୍ଷଣି ।
ତେଣିକି ଚାହିଁଲେ ଦେବ ଜାଣ ବଡ଼ ଦୋଷ
ଭୀମକୁ ଡାକିଲେ ବାବୁ ବାହୁଡ଼ିଣ ଆସ ।
ନିଶ ଫୁଲାଇଣ ଭୀମ ବୁଲାଏ ଲଉଡ଼ି
ବୋଲଇ ଆସିଲେ ଏଣେ ଦେବି ମୁଁ କଚାଡ଼ି ।
ପାର୍ଥ ସହଦେବ ଆଜ୍ଞା କଲେ ଧର୍ମମଣି
ଗାଢ଼େ ଭୀମକୁ ଧରିଣ ବେଗେ ଆସ ଘେନି ।
ଶୁଣି ସହଦେବେ ପାର୍ଥ ଚଳିଗଲେ ବେନି
କୋଳ କରିଣ ଅର୍ଜୁ ଆଣିଲେ ପାବନି ।
ଭୀମସେନ କୋଳେ ଦେବ ଏ ସ୍ଥାନେ ନ ରହି
ଏହା ପାରି ହେଲେ ପିତା ପୁତ୍ରେ ଦେଖ କାହିଁ ।
ଦେବୀ କଥା ଶୁଣି ନ ଯାଆନ୍ତି ଶାସ୍ତ୍ରବାଟ
ରନ୍ଧ ଶାଳେ ଭୁଞ୍ଜି କେହୁ ନିଅନ୍ତି ଉଚ୍ଛିଷ୍ଟ ।
ଗୋ ବ୍ରାହ୍ମଣ ମାରନ୍ତି ସେ ନ ଜାଣନ୍ତି ହତ୍ୟା
ନ ଜାଣନ୍ତି ତହିଁ ବେଦ ହରିହର କଥା ।
ଏହି ନଦୀ ପାର ହୋଇ ନ ଗମନ୍ତି ଜନ୍ତୁ
ଶ୍ରବଣରେ ହସ୍ତ ଦେଇ ଏଥୁ ବାହୁଡ଼ନ୍ତୁ ।
ତହୁଁ ସର୍ବେ ଫେରିଆସି ଏକାମ୍ରର ବନେ
କୃତ୍ତିବାସ ଦକ୍ଷିଣରେ ରହିଲେକ ଦିନେ ।
ଭୀମସେନ ସେହି ସ୍ଥାନେ କରିଲେ ରନ୍ଧନ
ବିନ୍ଦୁ ହ୍ରଦେ ସ୍ନାନ କରି କରିଲେ ଭୋଜନ ।
ଚିତ୍ରୋତ୍ପଳା ପାରିହୋଇ ଉତ୍ତରକୁ ଗଲେ
ବୈତରଣୀ କୂଳେ ପାଞ୍ଚ ରଜନୀ ରହିଲେ ।
ତହୁଁ ପାଣ୍ଡବେ ଚଳିଲେ ପଶ୍ଚିମ ଉଦନେ
ପୁଲକୀର ଦରଶନ ପାଇଲେ ସେ ସ୍ଥାନେ ।
ରାମଗୟାରେ ରହିଲେ ପୁଣି ପାଞ୍ଚଦିନ
ସାରିଲେ ସେ ପିତାଙ୍କର ସର୍ବ କାର୍ଯ୍ୟମାନ ।
ଯଥାବିଧି କରି ତହି ବାଲିପିଣ୍ଡ ଦେଲେ
ଶ୍ରୀ ଗଦାଧରଙ୍କୁ ପୂଜି ପିତୃ କାର୍ଯ୍ୟ କଲେ ।
ସେହିଠାରେ ସମସ୍ତଙ୍କ ଗୟା ଶ୍ରାଦ୍ଧ କଲେ
ପାପ ନାଶି ପିତୃଲୋକ ସ୍ୱର୍ଗେ ବସାଇଲେ ।
ସେଠାରୁ ପାଣ୍ଡବମାନେ ଗମିକରି ଆସି
ମଣିକର୍ଣ୍ଣିକାର ତୀର୍ଥେ ଦିଶି ବାରାଣସୀ ।
ମଣିହଜାଇ ଖୋଜିଲେ ସେ ସ୍ଥାନେ ସୁଢଳ
ଯହିଁ ଛାଡ଼େ ଶିବ ହସ୍ତୁ ବ୍ରହ୍ମାଙ୍କ କପାଳ ।
ସେ ତୀର୍ଥରେ ସ୍ନାନ କରି ଦେବ ବିଶ୍ୱନାଥ
କାଶୀପୁରରେ ରହିଲେ ତହୁଁ ଦିନ ସାତ ।
ସେଠାରୁ ଯାନ୍ତି ମକର ପ୍ରତିପଦା ଦିନ
ସେ ଦିନ ପୁଷ୍ୟା ନକ୍ଷତ୍ର ଥିଲା ବିଦ୍ୟମାନ ।

ପାଣ୍ଡବେ ବିଜୟ କଲେ କାଶୀଧାମ ପୁର
ଦ୍ରୌପଦୀ ଦେବୀ ସଙ୍ଗରେ ଅଛନ୍ତି ତାଙ୍କର ।
ବ୍ୟାସ ମାରକଣ୍ଡ ଋଷି ପ୍ରବେଶିଲେ ଆସି
ଦେଖିଣ ଧର୍ମନନ୍ଦନ ବଚନ ସମ୍ଭାଷି ।
ମାର୍କଣ୍ଡ ବୋଇଲେ ତୁମ୍ଭେ ତପୀଗଣେ ଆସି
ପ୍ରବେଶ ହୋଇଲେ ଏହି କ୍ଷେତ୍ର ବାରାଣସୀ ।
ରାଜ୍ୟଭାର କେଉଁଠାରେ କାହାକୁ ଯେ ଦେଲ
ପ୍ରଜାଙ୍କର କିବା ଅବା କରିବଟି ଭଲ ।
ଶୁଣି ଉତ୍ତର ଦିଅନ୍ତି ତାଙ୍କୁ ଧର୍ମ ସୁତ
ପାଞ୍ଚରାଜ୍ୟ ପାଳୁଅଛି ପୁତ୍ର ପରୀକ୍ଷିତ ।
ଅନେକ ବନ୍ଧୁ ସୋଦର ଆମ୍ଭେ ବଧ କଲୁ
ପାପ ବିମୋଚନ ପାଇଁ ତୀର୍ଥକୁ ଅଇଲୁ ।
ମାର୍କଣ୍ଡ ବୋଇଲେ ଯେବେ ହେଲ ତୀର୍ଥବାସୀ
ଶସ୍ତ୍ରଧାରୀ ହେଲେ ତହିଁ କିସ ଧର୍ମ ଅଛି ।
ପଞ୍ଚଧନୁ ଦଶଦ୍ରୋଣ ଦେବ ଭଣ୍ଡାରର
ଭାରାଭର ହରଣେ ସେ ଅଟଇ ତୁମ୍ଭର ।
ତୀର୍ଥ ସେବା ପାଇଁ ପଥେ ହେବ ଅଶକତ
ଅସୁର ହରିଣ ନେବେ ଦେବାସ୍ତ୍ର ସମସ୍ତ ।
ବ୍ରହ୍ମା ପେଷିଦେଲେ ତେଣୁ ଦୁର୍ବାସା ଋଷିଙ୍କୁ
ଏ ଅସ୍ତ୍ରମାନଙ୍କୁ ନେବ ସେ କପିଳାସକୁ ।
ତାହା ଶୁଣି ଯୁଧିଷ୍ଠିର କଲେ ସନମତ
ଚାରି ଧନୁ ଆଠ ଦ୍ରୋଣ ଦେଲେ ମୁନି ହସ୍ତ ।
ଅର୍ଜୁନ ନ ଦେଲେ ଦ୍ରୋଣ ଗାଣ୍ଡିବ ଧନୁକୁ
ବୋଇଲେ ହେ ମୁନି ଏହା ନ ଦେବି କାହାକୁ ।
ଆତ୍ମାରୁ ଅଧିକ ସ୍ନେହ ଗାଣ୍ଡିବକୁ ମୋର
ପ୍ରାଣ ଥାଉଁ ଏହାକୁ ମୁଁ ଦେବି କି ପ୍ରକାର ।
ଚାରିଧନୁ ଅଷ୍ଟଦ୍ରୋଣ ଦୁର୍ବସାଏ ନେଲେ
କୁବେର ଭଣ୍ଡାରେ ନେଇ ତାହାକୁ ଥୋଇଲେ ।
ଅଗ୍ନିଦେବତା କପଟେ ଦ୍ୱିଜରୂପ ହୋଇ
ପାଣ୍ଡବଙ୍କ ସନ୍ନିଧିରେ ପ୍ରବେଶିଲେ ଯାଇଁ ।
ପ୍ରତିଗ୍ରହକୁ କରିଣ ମାଗିଲେ ଗାଣ୍ଡିବ
ବୋଇଲେ ତା ତହିଁ ଥିଲେ ଧର୍ମନାଶ ଯିବ ।
ଯୁଧିଷ୍ଠି ବୋଇଲେ ଆଶ୍ରାକଲୁ ଅନ୍ୟ ପଥ
ଧନୁ ଅସ୍ତ୍ର ରହିବାର ନୁହଇ ଯୁକତ ।
ଧନୁ ଅସ୍ତ୍ର ଯେବେ ବାବୁ ନ କରିବୁ ତ୍ୟକ୍ତ
ବାହୁଡ଼ି ଯାଅ ଯା ଯହିଁ ଅଛି ପରୀକ୍ଷିତ ।
ପାର୍ଥ ବୋଲେ ସ୍ୱାମୀ ନାହିଁ ଦେଖିବି ମୁଁ ତୋତେ
କୃଷ୍ଣ ଗଲେ ଅରଜୁନ ବର୍ତ୍ତିବ କେମନ୍ତେ ।
ଆହେ ସ୍ୱାମୀ ଅଗ୍ନି ସିନା ମୋତେ ଥିଲେ ଦେଇ
ତାଙ୍କ ବ୍ୟତିରେକେ ଆନେ ନ ଦେବଇଁ ମୁହିଁ ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଦିଅ ମୋର ହସ୍ତେ
ଅଗ୍ନିଦେବତା ସନ୍ତୋଷ ହୋଇବେ ଯୁକତେ ।
ଅର୍ଜୁନ ବୋଲେ ଅଗ୍ନିଙ୍କୁ ନ ଦେଖି ନୟନେ
ଏ ଧନୁ ତୂଣ କେମନ୍ତେ ଦେବଇଁ ବ୍ରାହ୍ମଣେ ।
ବୋଲନ୍ତି ସେ ଦ୍ୱିଜବର ମୁହିଁ ବୈଶ୍ୱାନର
ଦିଅ ତୁମ୍ଭେ ଧନୁ ତୂଣ ଏହି ମୋର କର ।
ତକ୍ଷଣେ ଦ୍ୱିଜ ସେ ସ୍ଥାନେ ବିକଶିଲେ ରେଖା
ପଞ୍ଚସ୍ତରୀ ତାଳ ଉଚ୍ଚ ହୋଇଲାକ ଶିଖା ।
ଅର୍ଜୁନ ବେନି ନୟନୁ ବହେ ଅଶ୍ରୁଜଳ
ପାଣ୍ଡବ ଧନୁତୂଣକୁ ଫିଙ୍ଗିଲେ ଅନଳ ।
ଝଟକିତ ହୋଇଲା ତହିଁ ସେ ଶିଖା ପ୍ରଖର
ଗଗନକୁ ଗତିକଲେ ତହିଁ ବୈଶ୍ୱାନର ।
ଅନ୍ତରୀକ୍ଷରେ ଥାଇଣ ବୋଲନ୍ତି ବହନ
ତୁହୋ ଏଥକୁ ବିମନ ନୁହ ଫାଲଗୁନ ।
ଭାରା ନିବାରଣ ପାଇଁ ପୁଣ ହେଲେ ଜାତ
ପୁଣି ଏ ଧନୁ ତୋହର ହେବ ହସ୍ତଗତ ।
ଏତେ କହି ଆକାଶେ ଚଳିଲେ ଝଟତି
ଶୁଣିଣ ଅର୍ଜୁନ ତହୁଁ ହୋଇଲେ ତୃପତି ।
ଆହେ ଜଗତର ନାଥ ଶୁଣ ମୋ ଗୁହାରି
ବ୍ରହ୍ମାଣ୍ଡ ଅର୍ଣ୍ଣବେ ଏବେ ବୁଡ଼ିଯାଏ ମରି ।
ସଂସାର ମାୟା ଜଟିଳେ ସର୍ବଦା ମୁଁ ପଡ଼ି
ବିଷପାନ କଲି ତୁମ୍ଭ ନାମ ସୁଧା ଛାଡ଼ି ।
ଆୟୁ ସୂର୍ଯ୍ୟ କ୍ରମେ କ୍ରମେ ହେଉଅଛି ଅସ୍ତ
କିଛି ଅର୍ଜି ନ ପାରିଲେ ତୁମ୍ଭ ନାମ ବିତ୍ତ ।
ଆହେ ଶରଣ ରକ୍ଷଣ ନାଥ ଚଉବାହା
ଶାରଳା ଦାସକୁ ଶେଷେ ହୋଇବକ ସାହା ।

—୦—

## ଯୁଧିଷ୍ଠିରଙ୍କର ଗୟାଦି ତୀର୍ଥଭ୍ରମଣ ଓ ହେଙ୍ଗୁଳା ଦେବୀ ବିବରଣ

ପଚାରିଲେ ବୈବସ୍ୱତ ମନୁ ମହୀପାଳ
ପାଣ୍ଡବେ ତ ଅସ୍ତ୍ରଶସ୍ତ୍ର ତେଜିଲେ ସକଳ ।
ଚଦୁତ୍ତାରେ କିସ କଲେ ଧର୍ମ ଯୁଧିଷ୍ଠିର
ସେହି କଥା କହ ମୋତେ ଆହେ ମୁନିବର ।
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ
ମାରକେଣ୍ଡ ମୁନି ଥିଲେ ଯୁଧିଷ୍ଠିର ପାଶ ।
ସେ ମୁନି ବୋଇଲେ ତୁମ୍ଭେ ଶୁଣ ଧର୍ମରାୟ
ଏହି ବାରାଣସୀ ତୀର୍ଥେ ପାପ କର କ୍ଷୟ ।
ମଣିକୁଣ୍ଡେ ସ୍ନାନ ବିଶ୍ୱେଶ୍ୱର ଦରଶନ
ମାର୍କଣ୍ଡ ଲୋମଶ ଦୁହେଁ କହନ୍ତି ଏମାନ ।

ମାର୍କଣ୍ଡ ବୋଇଲେ ଏଥୁ ଯାଅ ଯା ବହନ
ବହୁତ ଦିନ ରହିବା ନୁହଇ ଏ ସ୍ଥାନ ।
ସମସ୍ତ ହିଁ ଲିଙ୍ଗମୟ ଆନ ନାହିଁ କିଛି
ଏହିଠାରେ ଲକ୍ଷେ ନବଶତ ଲିଙ୍ଗ ଅଛି ।
କରତଳେ ରହିଅଛି ପଞ୍ଚସ୍ତରି ଲିଙ୍ଗ
ସେହି ପରମାଣେ ପୁଣି ଛନ୍ତି ଧବଳାଙ୍ଗ ।
ପାଦ ପଡ଼ନ୍ତେଣ ତହିଁ ଲିଙ୍ଗେକ ଅଛଇ
ଏ ବିଧିରେ ପାଞ୍ଚକ୍ରୋଶ ଥିବା ନ ଯୋଗାଇ ।
ଯଦି ଅବା ଏକଦିନ ଏଠାରେ ରହିବ
ମଳ ମୂତ୍ର ତ୍ୟାଗପାଇଁ ସ୍ଥାନ ନ ପାଇବ ।
ଅଇଲେ ଅନେକ ଧର୍ମ ରହିଲେ ଯେ ଦୋଷ
ବହୁଦିନ ରହି ଏଥେ ପ୍ରୟୋଜନ କିସ ।
ଅନ୍ୟସ୍ଥାନେ ଶୌଚ ହୋଇ ଏଥକୁ ଆସନ୍ତି
କ୍ଷଣେ ଥାଇ ବିଶ୍ୱେଶ୍ୱର ଦର୍ଶନ କରନ୍ତି ।
ରନ୍ଧାବଢ଼ା ନ ଯୋଗାଏ ଜାଣ ଏ ତୀର୍ଥର
ତୁହୋ ଯୁଧିଷ୍ଠିର ଏବେ ବିଳମ୍ବ ନ କର ।
ଭୋଜନାଦି ସାରି ଏଥେ ଆଚମନ କଲେ
କଳା ଧର୍ମ ନାଶଯାଏ ଉଚ୍ଛିଷ୍ଟ ଫିଙ୍ଗିଲେ ।
ମାର୍କଣ୍ଡ ବଚନ ଶୁଣି ପଞ୍ଚମହାବୀରେ
ଚଳିଗଲେ ନ ରହିଲେ ଆଉ ସେ ତୀର୍ଥରେ ।
ତହୁଁ ସେ ପାଣ୍ଡବେ ରାତ୍ର ଦିବସରେ ଯାଇ
ଗୟାତୀର୍ଥେ ପ୍ରବେଶିଲେ କୁତୂହଳ ହୋଇ ।
ତ୍ରିବେଣୀ ଗଙ୍ଗା ଯମୁନା ବହେ ସରସ୍ୱତୀ
ତିନିଧାର ଏକ ସଙ୍ଗ ଭିନ୍ନ ଭିନ୍ନ ମୂର୍ତ୍ତି ।
ପଶ୍ଚିମକୁ ମୁଖ କରି ଆସନ୍ତି ସେ ବହି
କଳା ଧଳା ଶ୍ୟାମଳ ଯେ ତିନିବର୍ଣ୍ଣ ହୋଇ ।
ବିଜୟ ଗଙ୍ଗା ମାଧବ ନଦୀର ନିକଟେ
ବଇକୁଣ୍ଠ ତେଜିଛନ୍ତି ତହିଁ ବାଞ୍ଛା ବଟେ ।
ପର୍ଶୁରାମ ଅଶ୍ୱତ୍ଥାମା କୃପାଚାର୍ଯ୍ୟ ଛନ୍ତି
ତ୍ରିବେଣୀ ଗଙ୍ଗାରେ ନିତ୍ୟ ସ୍ନାନ ନ କରନ୍ତି ।
କୃପା ଅଶ୍ୱତ୍ଥାମାଙ୍କୁ ଯେ ଦେଖି ଯୁଧିଷ୍ଠିର
ବିନୟଭାବେ ତାହାଙ୍କୁ କଲେ ନମସ୍କାର ।
ପୁଣି ହିଁ ପର୍ଶୁରାମଙ୍କୁ କରିଲେ ପ୍ରଣତି
ତାଙ୍କ ପାଦଦେଶେ କଲେ ବହୁତ ବିନତି ।
କୃପବର୍ମା ଅଶ୍ୱତ୍ଥାମା ଯୁଧିଷ୍ଠିଙ୍କୁ କହି
ପର୍ଶୁରାମ ମହାକ୍ଷତ୍ରୀ ଅଟନ୍ତି ଯେ ଏହି ।
ପର୍ଶୁରାମ ବୋଇଲେକ ସତ୍ୟଯୁଗ କଥା
ମନ ନିଶ୍ଚଳେ ଶୁଣିଲେ ଧର୍ମ ମହାରଥା ।
ଦ୍ରୋଣୀ କହିଲେ ଭାରତ ଯୁଦ୍ଧ ବିବରଣ
ପାଣ୍ଡବ ପ୍ରତିଜ୍ଞା ଶତ ଭାଇଙ୍କ ମରଣ ।

ସକଳେ ମିଶି ସ୍ନାହାନ କଲେ ସେହି ତୀର୍ଥେ
ଅଶ୍ୱତ୍ଥାମା କହିଲେକ ରହ ତୁମ୍ଭେ ଏଥେ ।
ବୋଇଲେ ଯୁଧିଷ୍ଠି କଳିକାଳ ଏ ଅନୀତି
ସେଥିପାଇଁ ତ୍ୟାଗ କରି ଅଇଲୁ ସବୁନ୍ତି ।
ହେଙ୍ଗୁଳା ଦେବୀଙ୍କୁ ଆମ୍ଭେ ଦେଖିବାକୁ ଇଚ୍ଛୁ
ତୁମ୍ଭର ସଙ୍ଗତେ ଏହି ସମୟେକ ଅଛୁ ।
ଏତେକ ବୋଲିଣ ତହୁଁ ଗଲେ ଷଡ଼ଜନେ
ହରିଲେ ଦୁଷ୍କୃତ ସବୁ ମାଧବ ଦର୍ଶନେ ।
ସେଠାରେ ଦେଖିଲେ ବାଞ୍ଛାବଟ ତରୁବର
ତାହାଙ୍କୁ ଯୁଧିଷ୍ଠିଦେବ କଲେ ନମସ୍କାର ।
ବୋଇଲେ ବାଞ୍ଛାବଟ ତୋ ସିଦ୍ଧ ଯେବେ ନାମ
ହିମବନ୍ତରେ ଆମ୍ଭର ହେଉ ସିଦ୍ଧ କାମ ।
ଏତେକ ବାଞ୍ଛା କରିଣ ଦେବ ଧର୍ମରାୟେ
ପଶୁପତିଙ୍କ ନିକଟେ ଲଗାଇଲେ ଲୟେ ।
ବହଇ ଗଣ୍ଡୁକୀ ନଦୀ ଉତ୍ତର ବାହିନୀ
ତହିଁ ସ୍ନାନ କରି ପଶୁପତି ଚିହ୍ନ ଘେନି ।
ଭୋଜନ କରି ଗମନ କଲେ ଷଡ଼ମୂର୍ତ୍ତି
ଦେଖିଲେ ନଦୀ ଗୋଟିଏ ବହୁଛି ମାଳତୀ ।
ସେହି ସ୍ଥାନେ ଅଛି ବିଶ୍ୱାମିତ୍ରାଙ୍କ ଆଶ୍ରମ
ଶ୍ୱେତବନ ବୋଲି କରି ଅଟେ ତାର ନାମ ।
ସେ ସ୍ଥାନେ ବୃକ୍ଷେକ ଅଛି ବିସ୍ତାର ତା ଶାଖା
ଫୁଲ ଫଳ ନାହିଁ ତାର ଗଗନକୁ ଶିଖା ।
ସେହି ସ୍ଥାନରେ ଭେଟିଲେ ବିଶ୍ୱାମିତ୍ର ଋଷି
ସ୍ତମ୍ଭନ ଗଡ଼ରେ ଥାନ୍ତି ଦେବୀ ହେଙ୍ଗୁଳାକ୍ଷୀ ।
ଦେଖିଲେ ହିଙ୍ଗୁଳା ଦେବୀ ଦୁଇ ଅସ୍ତ୍ରଧାରୀ
କାମସେଣା ରୂପ ରସେ ଅଟେ ଯୋଗେଶ୍ୱରୀ ।
ଲୋହିତବର୍ଣ୍ଣ ଶରୀର ସର୍ବେ ବେନି ଭୁଜ
ଲୋଚନ ବିରାଜଇ କି ଅନଳର ତେଜ ।
ଯୁଧିଷ୍ଠି ଦେବ ପୁଛିଲେ ଶୁଣ ମନ୍ତ୍ରୀମଣି
ସିଦ୍ଧନାରୀ ଅଟେ ଏହୁ ନୁହେ ନାରାୟଣୀ ।
ତାହା ଶୁଣି ବିଶ୍ୱାମିତ୍ର ବୋଇଲେ ବଚନ
ହେଙ୍ଗୁଳାଙ୍କ ପୂର୍ବକଥା ଶୁଣ ହୋ ରାଜନ ।
ତ୍ରେତ୍ରାଯୁଗେ ଧନପାଳ ନାମେ ଥିଲା ସାଧୁ
ହେଙ୍ଗୁଳା ନାମେ ତାହାର ଅଟେ କୁଳବଧୂ ।
ଏକଦିନେ ସେହି ସାଧୁ କଲା ପିତୃଶ୍ରାଦ୍ଧ
ଗଣ୍ଡା ମାରି ଆଣିଦେଲା ବୋଲେ ବେଗେ ରାନ୍ଧ ।
ପୁତ୍ରବଧୂ ପାଗଯୋଗେ କରିଲା ରନ୍ଧନ
ଦେବରଷିମାନେ ତାହା କରିଲେ ଭୋଜନ ।
ପାକସିଦ୍ଧ ମାଂସ ଖାଇ ହୋଇଲେ ତୃପତି
ପିତୃଲୋକ ଆଘ୍ରାଣରେ ହେଲେ ଶାନ୍ତିମୂର୍ତ୍ତି ।

ସନ୍ତୋଷରେ ସେ କନ୍ୟାକୁ କଲେ ସାଧୁସାଧୁ
ବଂଶ ରହୁ ଯାହାର ତୁ ଅଟୁ କୁଳବଧୂ ।
ହେଙ୍ଗୁଳା ନାମ ତୋହର ହେଉ ମଧ୍ୟପୁରେ
ସିଦ୍ଧ ହୋଇଥାଅ ତୁହି ସ୍ତମ୍ଭନ ଗଡ଼ରେ ।
ନରଜନ୍ମେ ତୋର ପାଦେ ଜନ ନମି
ବଂଶ ଅତୁଟ ପ୍ରସନ୍ନ ହୋଇଥିବେ ଲକ୍ଷ୍ମୀ ।
ତୋ ନାମ ଧରି ଯେ ସତୀ କରିବଟି ପାକ
ମୋକ୍ଷ ହୋଇବ ତାହାର ନିଶ୍ଚେଁ ପିତୃଲୋକ ।
ହିଙ୍ଗୁଳା ସୁମର ନର ଦରିଦ୍ରତା ଯାଉ
ହିଙ୍ଗୁଳା ସୁମର ନରେ ଆପଦ ନ ଥାଉ ।
ହିଙ୍ଗୁଳା ସୁମର ପିତୃଲୋକେ ପାନ୍ତୁ ଗତି
ହିଙ୍ଗୁଳା ସୁମର ହେଉ ଭୋଜନରେ ତୃପ୍ତି ।
ଗଳାରେ ବିରାଜେ ଯାର ରକ୍ତବର୍ଣ୍ଣ ମାଳା
କୃପାଜଳ ନନ୍ଦିନୀ ଯେ ପ୍ରତ୍ୟକ୍ଷେ ହିଙ୍ଗୁଳା ।
ଖଣ୍ଡନ କରନ୍ତି ଭକ୍ତଜନଙ୍କର ଚିନ୍ତା
ଶ୍ରୀ ଆୟୁ ସମ୍ପଦ ଦେଇ ଭବୁ ଉଦ୍ଧାରନ୍ତା ।
ଏକାଦଶ ବର୍ଣ୍ଣ ଆଉ ପଚିଶ ଯେ ମୁଦ୍ରା
ଜୀବଜନ୍ତୁଙ୍କର ମୁଖେ ଦିଅନ୍ତି ସେ ରୁଦ୍ରା ।
ଅମୃତଲୋଚନ ମାଗୋ ଦୁରିତାଦି ହରା
ତାରେଣୀ ନିସ୍ତାରିଣୀ ଗୋ ଦେବୀ ଉଗ୍ରତାରା ।
କଣୟ ବିଳାସିନୀ ଗୋ ମୁକ୍ତିକାଳ ବାଞ୍ଛା
ପୂଜନ ବୋଧିନୀ ନାମ ମମ ହୃଦେ ବାଞ୍ଛା ।
ଅବ୍ୟକ୍ତ ଅପର୍ଣ୍ଣା ଚଣ୍ଡୀ ମା ଶାରଳା ଦେବୀ
ତୋହର ଚରଣ ସେବେ ଶ୍ରୀ ଶାରଳା କବି ।

—o—

## ହିମବନ୍ତ ପର୍ବତେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମଙ୍କର ତନୁତ୍ୟାଗ

ଏଥୁଅନନ୍ତରେ ପୁଣି ବିଲଙ୍କାର ରାଜା
ଅଗସ୍ତି ଋଷି ଚରଣେ କରି ଦିବ୍ୟପୂଜା ।
ବସନ କୁଣ୍ଡଳ ରତ୍ନମାଳା ପୁଷ୍ପ ନେଇ
ଶତବାର ପ୍ରଣମିତ ପାଦପଦ୍ମେ ହୋଇ ।
ହେ ମୁନି କହିବ ମୋତେ ପାଣ୍ଡବଙ୍କ କଥା
କେଉଁପରି ସ୍ୱର୍ଗେ ଗଲେ ପଞ୍ଚମହାରଥା ।
ଅଗସ୍ତି କହନ୍ତି ଶୁଣ ମନୁ ନୃପବର
ହିମବନ୍ତେ ଯେଉଁରୂପେ ହେଲା ସମାଚାର ।
ହିଙ୍ଗୁଳା ଦେଖି ବୋଲନ୍ତି ଋଷି ବିଶ୍ୱାମିତ୍ରେ
କର୍ଣ୍ଣ ଋଷି ଛନ୍ତି କର୍ଣ୍ଣତଟ ପରବତେ ।
କର୍ଣ୍ଣକୂଟ ପରବତେ ବସିଛନ୍ତି କର୍ଣ୍ଣ
ଗଙ୍ଗାଋଷି ଆସନ୍ତି ସେ ଋଷି ସନ୍ନିଧାନ ।
ଗଙ୍ଗା ଯମୁନା ସେ ସରସ୍ୱତୀ ତିନିଧାର
ତିନିହେଁ ପଶୁଅଛନ୍ତି ଦେବଙ୍କ ଗର୍ଭର ।
ଦୁଇକର୍ଣ୍ଣେ ଦୁଇଧାର କଣ୍ଠେ ସରସ୍ୱତୀ
ଡାହାଣ ଜାନୁକୁ ଚିରି ବାହାର ହୁଅନ୍ତି ।
ନେତ୍ରରେ ଗଙ୍ଗା ଆଣନ୍ତେ ଯାଇ ଭାଗୀରଥି
କର୍ଣ୍ଣଋଷି ଗଣ୍ଡୁଷକେ ତିନିଙ୍କୁ ପିଅନ୍ତି ।
ସେ ପର୍ବତକୁ ଭେଦିଣ ବହେ ସତ୍ୟଯୁଗେ
ସହଦେବ କହିଲେ ଯେ ଯୁଧିଷ୍ଠିଙ୍କ ଆଗେ ।
ତ୍ରିବେଣୀରୁ ହିମବନ୍ତ ବିଶାଶତେ ଯୁଣ
ମହାହିମ ପଡ଼େ ତହିଁ ଶତେକ ଯୋଜନ ।
ତହିଁରେ ପଞ୍ଚପାଣ୍ଡବେ କରନ୍ତି ଗମନ
ଚାଲୁ ଚରଣୁ ମିଳାଇ ପଡ଼େ ମାଂସମାନ ।
ଅଧାର୍ମିକ ଚାଲିବାକୁ ନୁହନ୍ତି ଭାଜନ
ଏ ସମୟେ ଦ୍ରଉପଦୀ କହନ୍ତି ବଚନ ।
ଦ୍ରୌପଦୀ ବୋଇଲେ ଦେବ ଏଣେ କିସ କାର୍ଯ୍ୟ
ଯୁଧିଷ୍ଠି ବୋଇଲେ ଏହି ବାଟେ ଯିବା ସ୍ୱର୍ଗ ।
ତାହା ଶୁଣିଣ ଦ୍ରୌପଦୀ କରନ୍ତି ଉତ୍ତର
ଏତେ କଷ୍ଟେ ସ୍ୱର୍ଗେ ଯିବା ହେବ କି ପ୍ରକାର ।
ଯୁଧିଷ୍ଠି ବୋଲନ୍ତି ଆମ୍ଭ ପ୍ରାଣ ବାସୁଦେବ
ସେ ଯେବେ ଛାଡ଼ିଲେ ମର୍ତ୍ତ୍ୟ ଆଉ କିସ ଲାଭ ।
ଆମ୍ଭର ଜୀବନେ ଆଉ କିସ ପ୍ରୟୋଜନ
ଏଥେ ରହିଲେ ଅର୍ଜିବା ବହୁ ପାପମାନ ।
ଏହା କହି ଦ୍ରୁତବେଗେ ଚଳିଲେ ଯୁଧିଷ୍ଠି
ମହତ ପର୍ବତ ଶିଖ ଦେଶେ ଗଲେ ଉଠି ।
ସୁମରଣା କରିଲେ ଯେ ଶ୍ରୀକୃଷ୍ଣ ଦେବତା
ବୋଇଲେ ତୁମ୍ଭେ ହେ ପ୍ରଭୁ ଉଦ୍ଧାର କରତା ।
କ୍ଷୁଧାରେ ଦ୍ରୌପଦୀ ଦେବୀ ଉଠି ନ ପାରିଲେ
ଯୁଧିଷ୍ଠି ଦେବଙ୍କୁ ତହୁଁ ଡାକିଣ ବୋଇଲେ ।
କ୍ଷୁଧା ବ୍ୟାକୁଳରେ ମୁହିଁ କି ପାରଇ ଯାଇ
ଆଜକ ରହିବା ଏଥେ କାଲି ଯିବା ବାହି ।
ଯୁଧିଷ୍ଠି ବୋଇଲେ ପ୍ରାଣେ ଆଉ କିସ ଆଶ
ଏ ପୁଣ୍ୟଭୂମିରେ ତେବେ କରି ଉପବାସ ।
ତୀର୍ଥେ ପ୍ରାଣବାୟୁ ଯେବେ କରିବାକୁ ତ୍ୟାଗ
ଆବର ଏ ଶରୀରକୁ କିସ ଦେବା ଭୋଗ ।
ଆସ ବୋଲି ଦ୍ରୌପଦୀଙ୍କୁ ରାୟେ ଗଲେ ଛାଡ଼ି
ପାଦ ଖସି ପଡ଼ିଗଲା ଦେବୀ ମୁହିଁ ମାଡ଼ି ।
ସ୍ୱାମୀ ରଖ ରଖ ବୋଲି ପଡ଼ିଯାନ୍ତେ ସତୀ
କୋଳ କରିଣ ତାହାକୁ ଧଇଲେ ମାରୁତି ।

ଭୀମ ଡାକଦେଲେ ରାୟେ ବାହୁଡ଼ିଣ ଆସ
ପ୍ରାଣର ଭାବିନୀ ତବ ହେଉଛି ବିନାଶ ।
ବୋଲନ୍ତି ଯୁଧିଷ୍ଠି ତାଙ୍କୁ ଛାଡ଼ିଆସ ଭୀମ
ଯେଝା ଅନୀତି ପ୍ରକାରେ ଫଳ ଫଳେ କର୍ମ ।
ଆସ ଆସ ଭୀମ ଛାଡ଼ି ଆସରେ ଚଞ୍ଚଳ
ମାୟାମୋହ ବନ୍ଧନର ନୁହେଁ ଏହୁ ବେଳ ।
ଶୁଣି ଭୀମସେନ ବୋଲେ ହୋଇ ଖେଦ ମନ
ଏଡ଼େ ନିଷ୍ଠୁର କିମ୍ପାଇ ହୋଇଲେ ରାଜନ ।
ଦାସୀ ପ୍ରାୟ ଏହୁ ତୋତେ କରିଥିଲା ସେବା
ନିଷ୍କଳଙ୍କ ନିର୍ଦ୍ଦୋଷୀ ଏ କେଉଁ ଦୋଷ ଦେବା ।
ଅମରବଟ ତୀର୍ଥରେ ଘେନି କୋଟି ଋଷି
ମହାଅନଳେ ଆହୁତି ଦ୍ୟନ୍ତେ ବ୍ୟାସ ଋଷି ।
ଯେ ଯଜ୍ଞ ଅନଳୁ ଏହୁ ହୋଇଛନ୍ତି ଜାତ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଯାହାଙ୍କର ଭ୍ରାତ ।
ବହୁ ସମ୍ଭର୍ବେ ଏହାକୁ ଅର୍ପିଲା ଦ୍ରୁପଦ
ଶେଷକାଳକୁ ହେଉଛି କିମ୍ପା ତୁଚ୍ଛା ବାଦ ।
ଏକା ସ୍ତ୍ରୀ ହୋଇ ସହିଲା ପାଞ୍ଚଙ୍କ ଅର୍ଦ୍ଧୋଳୀ
ଏହାକୁ ଛାଡ଼ିବାକୁ କାର ସତ ବଳି ।
କୃଷ୍ଣ ଚାମରକୁ ଜିଣି ଅଟେ ଏହା କେଶ
ଲୁବୁଧରେ ମଧୁକର ନ ଛାଡ଼ଇ ପାଶ ।
କୁସୁମ ନ ଘେନେ ଶିରେ ହେବ ବୋଲି ଭାରି
ଭାର ଭୟେ ଅଳଙ୍କାର ନ ପିନ୍ଧେ ସୁନ୍ଦରୀ ।
ଭ୍ରୂଲତାର ଶୋଭା ଜିଣେ ମଦନର ଚାପ
ଯାହାର ବଦନ ଦେଖି କମ୍ପଇ କନ୍ଦର୍ପ ।
ନୀଳେନ୍ଦ୍ରି ଦଳକୁ ଜିଣି ବିକାଶଇ ଆଖି
ମୁନିଏ ଧ୍ୟାନ ଛାଡ଼ନ୍ତି ସେ ରୂପକୁ ଦେଖି ।
ତାମ୍ବୁଳ ବିନା ଅଧର ବିମ୍ବକୁ ଜିଣଇ
ନାସା ତିଳପୁଷ୍ପ ପ୍ରାୟ ମୁକ୍ତା ଦନ୍ତି ସେହି ।
ଚମ୍ପାକଢ଼ି ଜିଣି ଯାର ଅଟଇ ଅଙ୍ଗୁଷ୍ଠି
କୁନ୍ଦ ପାଖୁଡ଼ାକୁ ଜିଣି ଦଶ ନଖଗୋଟି ।
ସ୍ୱାମୀ ଚାଲନ୍ତେ ଯାହାର ହସ୍ତିନାର ଠାଣି
ବଚନ ଯା ସୁଲଳିତ କୋକିଳକୁ ଜିଣି ।
ଏମନ୍ତ ଲକ୍ଷଣ ଘେନି ଯେହୁ ହେଲା ଜାତ
ତାକୁ କେମ୍ନେ ଛାଡ଼ିବାକୁ ବଳିଲା ତୋ ଚିତ୍ତ ।
ସ୍ୱାମୀ ସୋମବଂଶେ ଏହୁ ଅଟେ ଚାରୁହଂସୀ
ଭୋଦେବ ସଦା ସଦାଏ ଅଟେ ତୋର ପାଟବଂଶୀ ।
ସ୍ୱାମୀ ପୁତ୍ରବତୀ ଭାର୍ଯ୍ୟା ଦୋଷ ତ ନ ଘେନି
ବହୁ ଯାଗ ଯଜ୍ଞ କଲୁ ଯାକୁ ସଙ୍ଗେ ଘେନି ।
ପ୍ରିୟାବତୀ ଭାରିଯାକୁ କିମ୍ପାଇଁ ନିର୍ଦ୍ଦୟେ
ଧର୍ମରାଜା ହୋଇ ହେଲ ପାଷାଣର କାୟେ ।
ଯୁଧିଷ୍ଠି ବୋଇଲେ ଯା ତୁ କହିଲୁ ତୁ ଶୁଣ
ଅବଶ୍ୟ ଏହାର ଅଛି କିଛି ଅବିଗୁଣ ।
ଶୋକ ନ କର ତୁ ଭୀମ ତାକୁ ଆସ ଛାଡ଼ି
ଶୋଚନା ନ କର ବୃଥା ମାୟା ମୋହେ ପଡ଼ି ।
ବାବୁ ମଧ୍ୟ ଭୁବନରେ ଯାକୁ କଲ ଧନ୍ୟ
ଏବେ ଜାଣିବା ଏହାର କେତେ ପାପ ପୁଣ୍ୟ ।
ଯେ ଯାହାର ପାପ ପୁଣ୍ୟେ ଯାଇ ସ୍ୱର୍ଗବାସ
ଆସ ଆରେ ଭୀମସେନ ନ କର ତୁ ଆଶ ।
ଭୀମସେନ ବୋଲେ ଦେବ ତୁହି ଭଲେ ଜାଣୁ
କିସ ପାତକ ଏହାର କହ ଆମ୍ଭେ ଶୁଣୁ ।
ଯୁଧିଷ୍ଠି ବୋଇଲେ ଏହୁ ଅଟେ ବଡ଼ ଦୋଷୀ
ଅଜ୍ଞାନପଣେ ଏହାକୁ କୌରବ ଝିଙ୍ଗାସି ।
ପଞ୍ଚଦଶ ବର୍ଷ କେଶ କରିଲା ମୁକୁଳା
ଅନେଶ୍ୱତ ଭାଇ ମୋର ସମସ୍ତ ଖାଇଲା ।
ବାବୁରେ ଦ୍ରୌପଦୀ ପାଇଁ ଘୋଟିଲା ଅନର୍ଥ
ଏହା ପାଇଁ ନାଶଗଲେ କୁଟୁମ୍ବ ସମସ୍ତ ।
ଶୁଣି ଭୀମସେନ ତହୁଁ ପଳାଇଣ ଆସି
ବୋଲେ ସ୍ୱାମୀ ତୋ ବିଚାରେ ଏହୁ ହେଲା ଦୋଷୀ ।
ଏହା ଶୁଣି ପବନହୁଁ ଚଳିଲେ ସେ ବେଗେ
ଚାରିଭ୍ରାତା ଚାଲୁଛନ୍ତି ଆବର ଯେ ସଙ୍ଗେ ।
ଏକା କୃଷ୍ଣ ନାମଗୋଟି ଧରିଛନ୍ତି ହୃଦେ
କୃଷ୍ଣ କୃଷ୍ଣ ବୋଲି ଚାଲିଯାଆନ୍ତି ଆନନ୍ଦେ ।
ଶୁଣି ଆହେ ମନୁ ନୃପ ପୁଣ୍ୟବନ୍ତ କଥା
ଯେ ଯାହା କରଇ ତାହା ନୁହଇ ଅନ୍ୟଥା ।
ପୁଣ୍ୟବଳେ ଚାଲିଯାଉଛନ୍ତି ବେଗ ବେଗ
କେତେ ଦୂର ଯାଇ ପଡ଼ିଗଲେ ସହଦେବ ।
ଭୀମସେନ କୋଳ କରି ଧଇଲେକ ତାହା
ବୋଲେ ସ୍ୱାମୀ କ୍ଷଣେ ରହ ଧର୍ମ ନରନାହା ।
ମନ୍ତ୍ରୀ ଚୂଡ଼ାମଣି ସହଦେବ ଅଶକତ
ଆହେ ପ୍ରଭୁ ଉପକାରୀ ଅଟନ୍ତି ସେ ଭ୍ରାତ ।
ଯାର ବୁଦ୍ଧିବଳେ ଆମ୍ଭେ ଜିଣିଲଇ କ୍ଷତ୍ରୀ
ପଡ଼ିଗଲା ଏବେ ସେହି ଗୁଣବନ୍ତ ମନ୍ତ୍ରୀ ।
ଯୁଧିଷ୍ଠି ବୋଇଲେ ଛାଡ଼ ସେ ସହଦେବକୁ
ତାର ପୁଣ୍ୟେ ଅଇଲା ସେ ଏତେକ ଦୂରକୁ ।
ସ୍ୱାମୀ ଏ ସହଦେବକୁ ଛାଡ଼ିଲ କି ଅର୍ଥେ
ଏ ତ ବଡ଼ ଅସମ୍ଭବ ଲାଗିଲାକ ମୋତେ ।
ଯୁଧିଷ୍ଠି ବୋଇଲେ ବାବୁ ଏତେ ବଡ଼ ଦୋଷୀ
ଜାଣୁ ଯାହା ନ କହେ ଏ ମୌନେ ଥାଏ ବସି ।
ଏହାପାଇଁ ଭୀମସେନ ନାହିଁ ମୋର ବ୍ୟଥା
ଛାଡ଼ି ବେଗେ ଚାଲିଆସ ନ କହି ତା କଥା ।

ଯେବେ କହିଥାନ୍ତା ଏହୁ ଅଭିମନ୍ୟୁ ବଧ
କିମ୍ପାଇଁ କରନ୍ତୁ ଆମେ ଭାରତର ଯୁଦ୍ଧ ।
ସହଦେବ ଭୀମସେନ ଛାଡ଼ିଣ ଆସନ୍ତେ
ଚାଲନ୍ତି ସେ ଚାରିଭାଇ ପବନୁ ତ୍ୱରିତେ ।
ଧର୍ମ ନନ୍ଦନ ଅମାର୍ଗେ ଡାକନ୍ତି ଯେ ବଡ଼ି
ଝାଡ଼ ଡିଙ୍ଗର ଅମଡ଼ା ଯାଉଛନ୍ତି ମାଡ଼ି ।
ଚାଲନ୍ତେ ଗଗନ କିବା ପଡୁଅଛି ଭାଜି
ନକୁଳ ଝୁଣ୍ଟି ପଡ଼ିଲେ ହୋଇ ଗଳଗାଜି ।
ଆରେରେ ନକୁଳ ବୋଲି ଭୀମ କୋଳ କରି
ସ୍ୱାମୀ ଅଚେଷ୍ଟା ହୋଇଲା ନକୁଳ ତୋହରି ।
କୁନ୍ତମୁନେ ବସାଇଲେ ଯେହୁ ବସୁନ୍ଧରା
ଛତ୍ରାକାରେ ହରିଲା ଯେ ପୃଥିବୀର ଭାରା ।
ଅତି ସୁକୁମାର ଅଟେ ଏହାର ଯେ ଅଙ୍ଗ
ଲକ୍ଷେ ରାଜା ମଧ୍ୟରେ ଏ ଅଟଇ ଭୁଜଙ୍ଗ ।
ବଂଶରେ ଧାର୍ମିକ ପୁଣ ବୋଲାଇ ବଳିଷ୍ଠ
କୁମାର ନାମେ ଆକାଶେ ଅଛି ଏହା ପାଟ ।
ବୈମାତୃ ଭାଇ ବୋଲିଣ ନ ବିଚାରି ଚିତ୍ତେ
ଆମ୍ଭଠାରୁ ସ୍ନେହ କରୁ ମାଦ୍ରୀ ଦୁଇସୁତେ ।
ଚନ୍ଦନ ଲେପନ କ୍ଷଣେ କ୍ଷଣେ ଯାର ଗାତ୍ର
ସାତସସ୍ର ରାଜାକୁ ସେ ପ୍ରାଣେ କଲା ହତ ।
ସରବର ସୁନ୍ଦର ସେ ସୁକୁମାର ଦେହ
ତାର ପ୍ରାଣ ଗଲା ତୁମ୍ଭେ ହେଉଛ ନିର୍ଦ୍ଦୟ ।
ସାନ ଦୁଇଭାଇ ଗଲେ ଅଛୁ ଆମ୍ଭେ ବେନି
ଆମ୍ଭ ନିଧନରେ ତୁମ୍ଭେ ଯିବ ଦେହ ଘେନି ।
କାହାକୁ ନ ଛାଡ଼ ତୁମ୍ଭେ କର ଗଳାଗଣ୍ଠି
ବୋଲ ସେହି ଦୁଇଭାଇ ମୋହର ପ୍ରାଣଟି ।
ସ୍ୱାମୀ କେଉଁ ମହାତମ ପଶିଲା ତୋ ମନେ
ଏଡ଼େ ନିର୍ମୋହ ହୋଇଲେ କେବଣ ବିଧାନେ ।
ସ୍ୱାମୀ ମାଛିଟିଏ ଯେବେ ବସେ ତାର ଗାତ୍ର
ଚନ୍ଦନ ବୋଳା ହୁଅଇ ତହିଁ ପଳ ସାତ ।
ବ୍ୟାକୁଳ ହୋଇଣ ପୁଣି ବୋଲେ ବୃକୋଦର
ନକୁଳ ଅବସ୍ଥା ଦେଖି ଚିତ୍ତ ମୋ ଅସ୍ଥିର ।
ଯୁଧିଷ୍ଠି ବୋଇଲେ ଦୁଃଖ ନ କର ମନରେ
କି ସୁନ୍ଦର କି ସବଳ ମୃତ୍ୟୁର ଆଗରେ ।
ତହୁଁ ବୃକୋଦର ବୋଲେ ଶୁଣ ଧର୍ମଦେବ
ନକୁଳର ଅବିଗୁଣମାନ ଯେ କହିବ ।
ବୋଲନ୍ତି ସେ ଧର୍ମସୁତ ଶୁଣ ହୋ ମାରୁତି
କହନ୍ତେଣ ନ ସରଇ ତାହାର ଆଖ୍ୟାତି ।
ବୋଲେ ମୋଠାରୁ ସୁନ୍ଦର କେହି ନାହିଁ ଜଣେ
ଯୁଧିଷ୍ଠିଙ୍କି ରାଜ୍ୟ ବୋଲି ମୁହିଁ ବୀରପଣେ ।

ଚାଳିଶ ସହସ୍ର ରାଜା ମାଇଲି ମୁଁ ରଣେ
ମୋହ ତହୁଁ ସମର୍ଥ ଯେ ନାହିଁ କେହି ଜଣେ ।
ବୀରବର ସୁନ୍ଦର ଯେ କହଇ ଆପଣେ
ତାହାକୁ ସେ ପୃଥ୍ୱୀ କିମ୍ପା ସହିବ ସେ କ୍ଷଣେ ।
ଯୁଧିଷ୍ଠି ବୋଇଲେ ଭୀମ ନ ଲଗା ମୁହାସ
ନକୁଳକୁ ଥୋଇକରି ବେଗେ ଉଠିଆସ ।
ତହୁଁ ନକୁଳେ ଶୁଆଇ କରନ୍ତେ ଗମନ
କେତେହେଁ କ ଦୂରେ ଯାଇ ପଡ଼ିଲା ଅର୍ଜ୍ଜୁନ ।
ଆରେରେ ଅର୍ଜ୍ଜୁନ ବୋଲି ଭୀମସେନ ତୋଳି
କାନ୍ଦନ୍ତେ ଯୁଧିଷ୍ଠିଦେବ ଯାନ୍ତି ଭୀମ ପେଲି ।
ଭୀମ ଯାଇଁ ଅର୍ଜ୍ଜୁନକୁ ଧରେ କୋଳ କରି
ରୋଦନ କରେ ମାରୁତି ପାର୍ଥ ଗୁଣ ସ୍ମରି ।
ଦେଖ ଦେଖ ରାଜନ ହେ ପଡ଼େ ଫାଲଗୁନି
ଯାହା ବଳେ ଏକଛତ୍ର କରିଲୁ ମେଦିନୀ ।
ସ୍ୱାମୀ ଜଗତ ସୋଦର ପୃଥ୍ୱୀ ହିତକାରୀ
ସେ ଅଗ୍ନିତୋଷ ଖାଣ୍ଡବ ବନ ଦହି କରି ।
ନିବାତ କବଚ ମାରେ ଯେହୁ କୋପ କରି
ସୁରରାଜାଙ୍କୁ ବସାଏ ନେଇ ସ୍ୱର୍ଗପୁରୀ ।
ସ୍ୱାମୀ ଗୋସିଂହ ମାରିଣ ରଖିଲେ ଦ୍ୱାରକା
କୁମ୍ଭକ ମାରି କୈଳାସ କରିଲାକ ରକ୍ଷା ।
ଲକ୍ଷେ ନୃପତି ଜିଣିଲା ନିଜ ବାହୁବଳେ
ନବଦ୍ୱୀପ ପୃଥ୍ୱୀ ଧରେ ନିଜ ଧନୁବଳେ ।
ଶରେ ଶରେ ସାଗରରେ ସେତୁବନ୍ଧ ବାନ୍ଧି
ହନୁମନ୍ତକୁ ଜିଣିଲା ପ୍ରସନ୍ନ ପ୍ରଯୋଧି ।
ସେହୁ ଅର୍ଜ୍ଜୁନ ପଡ଼ିଲା ତୋହର ଯେ ସଖା
ସ୍ୱାମୀ କ୍ଷଣେ ବିଶ୍ରମିଣ ଯାକୁ କର ରକ୍ଷା ।
ଏହା କହି ଭୀମସେନ କରନ୍ତେ ରୋଦନ
ଏପରି କହିଲେ ତହୁଁ ଧର୍ମଙ୍କ ନନ୍ଦନ ।
କେତେ ତୁ ରୋଦନ କରୁ ବୀର ବୃକୋଦର
ଏ ଯାହା ଦେଖୁଛୁ ସବୁ ଅଟେ ଖେଳଘର ।
କେହି କାହାର ନୁହନ୍ତି ଜୀବନ ଅଚିର
ପଦ୍ମପତ୍ରେ ଢଳ ଢଳ ଯେହ୍ନେ ହୁଏ ନୀର ।
ଆତପେ ତାପିତ ହୋଇ ପଥିକ ସକଳ
ବୃକ୍ଷର ତଳେ ବସନ୍ତି ପାଇଣ ଶୀତଳ ।
ଶାନ୍ତି ସାରି ଚାଲିଯାନ୍ତି ଯେ ଯାହା ବାଟରେ
ସେହିପରି ଜୀବଦଶା ପୃଥ୍ୱୀ ପାଟଣାରେ ।
ଯେ ଯାହା ଆୟୁ ସରିଲେ ଯାନ୍ତି କାଳଆଳେ
ଭଲମନ୍ଦ କଥା ଥାଏ କେବଳ ଶୟଳେ ।
ଯେତେ ଗୁଣ କହିଲୁ ତୁ ସ୍ୱରୂପ ଏ କଥା
ପଛନ୍ତେ ଏହାକୁ ଆଉ କିସ ଅଛି ବ୍ୟଥା ।

ରୋଦନ କରିଲେ ତୁହି ଉର ଶିର ତାଡ଼ି
ତେବେ କି ଅର୍ଜ୍ଜୁନ ଆଉ ଆସିବ ବାହୁଡ଼ି ।
ବାବୁରେ ବହୁତ ପୁଣ୍ୟ ଏଥିପାଇଁ କଲା
ତେଣୁ ସେ ଅର୍ଜ୍ଜୁନ ଏତେ ଦୂରକୁ ଅଇଲା ।
ସର୍ବଦା ଅର୍ଜ୍ଜୁନ ଥିଲା ପର ଉପକାରୀ
ତେଣୁ ସେ ଉଠି ଆସିଲା ଏହି ହିମଗିରି ।
ଅର୍ଜ୍ଜୁନକୁ ଶୁଆଇଣ ଆସ ଆସ ଭାଇ
ଶୋକ କରିଲେ ଆଉ କି ଅର୍ଜ୍ଜୁନକୁ ପାଇ ।
ଭୀମ ବୋଲେ କହ ମୋତେ ଏହାର ସ୍ୱରୂପ
ଅର୍ଜ୍ଜୁନ ପଡ଼ିଲା ଏଥେ କିସ ଥିଲା ପାପ ।
ତାହା ଶୁଣି ଯୁଧିଷ୍ଠିର କରନ୍ତି ଉତ୍ତର
ଅର୍ଜ୍ଜୁନର ପାପ ଥିଲା ବହୁତ ପ୍ରକାର ।
ଆରେ ଭୀମ କରେ ଏହି ପରହିତ ସତ
ମାତ୍ର ଆପଣା ସଉର୍ଯ୍ୟେ କହେ ଅବିରତ ।
ଆପଣାର ପହିଜ କି ଆପଣେ କହନ୍ତି
ଯେ ପଣ୍ଡିତ ସେ ଗୋପ୍ୟାନ କରିଣ ରଖନ୍ତି ।
ବୋଲଇ ମୁଁ ଏକଛତ୍ର କଲଇଁ ମେଦିନୀ
ଆପଣା ପ୍ରତିଜ୍ଞା କହେ ପୁଣି ଫାଲଗୁନି ।
ପୁଣି ବୋଲେ ବଳବୀର୍ଯ୍ୟ ବହୁତ ମୋହର
ଧରଣୀତଳେ ନାହାନ୍ତି ମୋଠାରୁ ସୁନ୍ଦର ।
ଅକାରଣେ ତାହା ପାଇଁ ନ କର ତୁ ତାପ
ସେ ଆଉ ଆମ୍ଭର ନୁହେଁ କହିଲି ସ୍ୱରୂପ ।
ଶୁଣି ଭୀମସେନ ତହୁଁ ଅର୍ଜ୍ଜୁନକୁ ଛାଡ଼ି
ଯୁଧିଷ୍ଠିରଙ୍କ ସଙ୍ଗରେ ଚାଲେ ପଥ ମାଡ଼ି ।
ଭୀମସେନ ବୋଲେ ସ୍ୱାମୀ ମୋତେ ନ ଛାଡ଼ିବୁ
ହିମବନ୍ତ ଶିଖେ ଏକା କେମନ୍ତେ ତୁ ଯିବୁ ।
ହସି ଯୁଧିଷ୍ଠି ବୋଇଲେ ଅତି ଧୀର ବାଣୀ
ମୋହରେ ମୋହିତ ସଦା ହୋଇଥାନ୍ତି ପ୍ରାଣ ।
ପୃଥିବୀରେ ଜାତ ହେଲେ ଅବଶ୍ୟ ସେ ମରେ
ଏ ଦେହ ଘେନି ସ୍ୱର୍ଗକୁ ଯାଇ ତ ନ ପାରେ ।
ପରକୁ ବୃଥାରେ କ୍ରୋଧ କରିଛୁ ତୁ ବାବୁ
ତେଣୁ ଏ ଦେହକୁ ଘେନିଯାଇ ନ ପାରିବୁ ।
ଯୁଧିଷ୍ଠି ବଚନେ ଭୀମ ଶୋକେ କହେ ବାଣୀ
ଏସନକ ଦେବ ଯେବେ ଅଛଇ ନିର୍ମାଣି ।
ସ୍ୱାମୀ ଅନେକ ପ୍ରକାରେ କଲି ତବ ସେବା
ଆମ୍ଭଙ୍କୁ ଛାଡ଼ିଣ ତୁମ୍ଭେ ଏକାହୋଇ ଯିବା ।
ମୋତେ ଛାଡ଼ିବା ପାଇଁକି କେହ୍ନେ ବଳେ ସତ
କେବଣ ଦଇତ ତୋର ହରିଲାକ ଚିତ୍ତ ।
ତାହା ଶୁଣି ଯୁଧିଷ୍ଠିର କଲେ ଆଲିଙ୍ଗନ
ବୋଇଲେ ଶୋକ ନ କର ଭୀମସେନ ।

ପୁଣି ବୋଇଲେ ଶୁଣ ତୁ ବୃକୋଦର
ତୁମ୍ଭେ ଚାରିହେଁ ଅଟ ଯେ ଏକ ଆମ୍ଭା ମୋର ।
ପଞ୍ଚଭୂତ ଆମ୍ଭା ତୁମ୍ଭେ ଅଟରେ ସକଳ
ଏଥିପାଇଁ ଭୀମ କିମ୍ପା ହେଉ ତୁ ବିକଳ ।
ବାବୁ ଯେ ଯାହା ଅର୍ଜଇ ସେହି ଫଳ ପାଇ
ଆପଣାର ପାପ ପୁଣ୍ୟ ପର କି ନିଅଇ ।
ଯଦ୍ୟପି ତୁମ୍ଭେ ମୋହର ଅଟ ପଞ୍ଚଭୂତ
ସବୁରି ହୁଏ କି ଏକା ପ୍ରକୃତ କଳ୍ପିତ ।
ଶୋକ ତ୍ୟାଗ କର ଏବେ ଆରେ ଭୀମସେନ
ତୁହି ଏକ୍ଷଣି ବାବୁରେ ହୋଇବୁ ନିଧନ ।
ଭୀମ ବୋଲେ ସ୍ୱାମୀ ମୋତେ ନିଅ ତୋର ତୁଲେ
ମୁହିଁ ମଲେ ତୁ କେମନ୍ତେ ଥିବୁ ଆଉ ଭଲେ ।
ଅନେକ ବିନୟ ହୋଇ ଖଟଇ ମୁଁ ତୋତେ
ତୁମ୍ଭେ ସମ୍ଭାଳିଣ ନିଅ ଆହେ ଦେବ ମୋତେ ।
ଯୁଧିଷ୍ଠି ବୋଇଲେ ନେବି କେମନ୍ତରେ ଭାଇ
ତୋହର ବଳେ ମୋ ତୁଲେ ନ ପାରିବୁ ଯାଇ ।
ପୁଣି ବୋଇଲେ ଆସି ତୁ ପାରୁ ଯେବେ ଚାଲି
ଶେଷ ହୋଇଲାଣି ହିମ ଅଇଲୁଣି ପେଲି ।
ପବନ ବେଗେ ଯୁଧିଷ୍ଠି ଯାନ୍ତି ଆଗେ ଆଗେ
ଗୋଡ଼ାଇଣ ଭୀମସେନ ଚାଲେ ବେଗେ ବେଗେ ।
ହିମବନ୍ତ ଶିଖଦେଶ ଅଛି ଅଳ୍ପ ଦୂର
ଥାଇଣ ଯୁଧିଷ୍ଠିଦେବ ଉଠିଲେ ଶିଖର ।
ଯୁଧିଷ୍ଠିଙ୍କୁ ଚାହିଁ ଚାହିଁ ଭୀମ ଯାଉଥିଲା
ପାଦ ଖସିଗଲା ସେହୁ ଉଛୁଳି ପଡ଼ିଲା ।
ଭୀମ ପଡ଼ନ୍ତେ ଶୁଭିଲା ବଜ୍ରଘାତ ଜାଣି
ଭୈରବ ଶବଦେ ଶୁଭେ ଯେହ୍ନେ ଘୋର ବାଣୀ ।
ଭୀମ ବୋଲେ କ୍ଷଣେ ମୋତେ ସମ୍ଭାଳି ନିଅସି
ଏଡ଼େକ ନିର୍ଦ୍ଦୟ କିମ୍ପା ହେଉ ରାଜବଂଶୀ ।
ଶୁଣି କରି ଧର୍ମଦେବ ଚାହିଁଲେ ଲେଉଟି
ଶୁଣି ପ୍ରତିବାକ୍ୟ ତାକୁ ଦିଅନ୍ତି ଯୁଧିଷ୍ଠି ।
ଯେ ଯାହାର ପୁଣ୍ୟେ ସ୍ୱର୍ଗଗତି ପାଏ ପ୍ରାଣୀ
ଆସି ଯେବେ ନ ପାରୁ ତୁ ରହିଥାଅ ତୁନି ।
ଦେଖୁ ଦେଖୁ ଭୀମସେନ ହେଲା ମୋହଗତ
ବୋଲେ ଭୋ ଦେବ ମୁହିଁ ତ ରହିଲିଟି ଏଥ ।
ଏହା ବୋଲନ୍ତେ ଯୁଧିଷ୍ଠି ଅନାଇଲେ ପଛ
ଦେଖିଲେ ଉଠି ଆସୁଛି ପବନର ବଛ ।
ବାମଅଙ୍ଗେ ଭରା ଦେଇ ଯାଉଅଛି ପେଲି
ଏହା ଦେଖିଣ ଯୁଧିଷ୍ଠିଦେବ ଦେବ ତାକୁ ବୋଲି ।
ବାବୁ ତୋ ପ୍ରାୟେକ କ୍ଷତ୍ରୀ ନିଶତ ହୋଇଣ
ସ୍ତିରୀଅଙ୍ଗେ ପେଲି ଆସ ଏ ସ୍ୱର୍ଗ ଭୁବନ ।

ଯୁଧିଷ୍ଠିଠାରୁ ଏମନ୍ତ ଶୁଣିଣ ମାରୁତି
ଡାହାଣ ଅଙ୍ଗେ ସେ ଚାଲେ ବୃକୋଦରମୂର୍ତ୍ତି ।
ଡାହାଣ ଅଙ୍ଗେ ପାତନ୍ତେ ପଡ଼ିଲା ବାହୁଡ଼ି
ଜଗତର ମାତା ତାକୁ ବସିଲେକ ମାଡ଼ି ।
ମହାମାୟୀ ଭୀମକୁ ଯେ ମାଡ଼ିଣ ବସନ୍ତେ
ଡାକ ଦିଅଇ ଭାଇ ହେ ସଙ୍ଗେ ନିଅ ମୋତେ ।
ଯୁଧିଷ୍ଠି ବୋଇଲେ କେତେ ବୈକୁଲ୍ୟ ତୁ ହେଉ
ତୁନିହୋଇ ଶୋଇଥାଅ କିମ୍ପା କଥା କହୁ ।
ନିରାଶ ବଚନେ ଭୀମ ପଡ଼ିଲାକ ଲୋଟି
ହିମବନ୍ତ ଶିରରେ ଉଠିଲେ ଯୁଧିଷ୍ଠି ।
ଜୟ ଜୟ ଜଗନ୍ନାଥ ଶରଣ ରକ୍ଷଣ
ଜୟ ହେ ନୀଳାଦ୍ରି ନାଥ ଦୁଃଖ ନିବାରଣ ।
ଆହେ ଦୟାମୟ ହରି ଶଙ୍ଖଚକ୍ରଧାରୀ
ତୁରିତେ ଛେଦନ କର ଦୁରିତ ମୋହରି ।
ଏ ଭବସାଗରେ ପଡ଼ି ନିଶ୍ଚେ ଗଲି ବୁଡ଼ି
ତୁମ୍ଭ ନାମ ନ ଭଜିଲେ ଦିନେ ହେଲେ ହୁଡ଼ି ।
ସର୍ବଦା ପାପ ପଥରେ ମନ ବୁଡ଼ାଇଲି
କେମନ୍ତେ ତରିବି ବୋଲି ଦିନେ ନ ଚିନ୍ତିଲି ।
ତୁମ୍ଭରି ନାମ କେବଳ ସେ ପଥକୁ ଭେଳା
ବାଧାବିଘ୍ନ ଛେଦିପାରି କର ଚକାଡୋଳା ।
ଶୂଦ୍ରମୁନି ଶାରଳାର ଭକତିକୁ ଘେନ
ସୂର୍ଯ୍ୟସୁତ ସହିତରେ ନ ହେଉ ମିଳନ ।

—୦—

## ଯୁଧିଷ୍ଠିରଙ୍କର ନରକ ଦର୍ଶନ ଓ ଛୟାଣୋଇ ସହସ୍ର ରାଜାଙ୍କର ମୁକ୍ତି

ପୁଚ୍ଛା କରିଲେ ବିଲଙ୍କା ଦେଶ ନରପତି
ମୋତେ କହିବା ହେଉନ୍ତୁ ହେ ମୁନି ଅଗସ୍ତି ।
ଭୀମ ପାର୍ଥ ସହଦେବ ନକୁଳ ଦ୍ରୌପଦୀ
ତନୁତ୍ୟାଗ କରିଯାନ୍ତେ ସର୍ବେ ଯଥାବିଧି ।
ଯୁଧିଷ୍ଠିର ହିମଗିରି ଶିଖରେ ଉଠିଲେ
ସେହିଠାରୁ କେଉଁରୂପେ ସୁରପୁର ଗଲେ ।
ଶେଷ ପ୍ରାୟ ହେଲା ତୁମ୍ଭ ଭାରତ ଆଖ୍ୟାନ
ବାକିତକ କହି ମୋର ତୃପ୍ତି କର ମନ ।
କହନ୍ତି ଅଗସ୍ତି ମୁନି ପୁଣି ଶୁଣ ରାଜା
ହିମଗିରି ଶିଖେ ଉଠି ଧର୍ମଙ୍କ ତନୁଜା ।
ପଞ୍ଚାଶ ଯୋଜନ ଉର୍ଦ୍ଧ୍ୱେ ଦିଗକୁ ଉଠିଲେ
ପର୍ବତ ଉପରେ ବସି ଭୀମକୁ ଚାହିଁଲେ ।
ତେତିଶ କୋଟି ଦେବତା ଗତାଗତ ପଥ
ଦେଖି ସାଧୁବାଦ କଲେ ଧନ୍ୟ ତୁ ପର୍ବତ ।
ଦେଖନ୍ତି ଯୁଧିଷ୍ଠିଦେବ ଦେବ ଆକାଶ ସ୍ୱରୂପ
ଦେବ ଦୁନ୍ଦୁଭି ଶୁଭଇ ହୋଇ ମହାଦର୍ପ ।
ମନୁରାଜା ଅଗସ୍ତିଙ୍କୁ ପୁଣି ପଚାରିଲେ
ଯୁଧିଷ୍ଠିର ହିମବନ୍ତ ପର୍ବତେ ଉଠିଲେ ।
ଦେବତାମାନଙ୍କୁ ସେହି ଦେଖିଲେକ ଯେବେ
ଆକାଶକୁ ଚାହିଁଲେ ସେ ଆଉ କେଉଁଭାବେ ।
କହନ୍ତି ଅଗସ୍ତି ମୁନି ମହାବ୍ରହ୍ମବେତ୍ତା
ତୁ ଯାହା ପୁଚ୍ଛିଲୁ ହିମବନ୍ତର ବାରତା ।
ଶୁଦ୍ଧସ୍ଫଟିକ ଯେ ତେଜ ପର୍ବତର ବର୍ଣ୍ଣ
ନବକୋଟି ଆୟତନ ଅଟଇ ସେ ପୁଣ ।
ହିମଗିରି ଆୟତନ ଲକ୍ଷେକ ଯୋଜନ
ସେ ପର୍ବତେ ରହିଥାନ୍ତି ଭାସ୍କର ରାଜନ ।
ତହୁଁ ସେ ଉଦୟ ଯହୁଁ ହୁଏ ଦିନକର
ମର୍ତ୍ତ୍ୟମଣ୍ଡଳ ମଧ୍ୟରୁ ତୁଟଇ ତିମିର ।
ଅନନ୍ତଗିରି ବସଇ ଦକ୍ଷିଣର କୋଣେ
ସେ ପର୍ବତ ଅଟଇ ଯେ ଏହା ପରମାଣେ ।
ତହିଁରେ ବିଜେ ଅନନ୍ତ ଦେବ ନାରାୟଣ
ପଶ୍ଚିମରେ ମେରୁ ଗିରି ଏହୁ ପରମାଣ ।
ସେ ପର୍ବତ ଉପରେ ଯେ ବସେ ସୁରପତି
ଉତ୍ତରରେ ହିମବନ୍ତ ଅଟେ ଏହିମତି ।
ସେହି ପର୍ବତ ଉପରେ ବିଜେ ସଦାଶିବ
ଏ ଚାରି ପର୍ବତ ଅଟେ ଜାଣ ଅଧାସ୍ୱର୍ଗ ।
ଏ ଚାରି ପର୍ବତ ତଳେ ସସାଗରା ପୃଥ୍ୱୀ
ଏହାଙ୍କର ଚାରିଦିଗେ ଆବୋରି ଅଛନ୍ତି ।
ହିମବନ୍ତ ପରବତେ ଯାଇଣ ଯୁଧିଷ୍ଠି
ପର୍ବତ ତଳ ଦେଶକୁ କରିଲେ ସେ ଦୃଷ୍ଟି ।
ଦେଖିଲେ ସେଠାରେ ଅଛି ଏକ ଜୀର୍ଣ୍ଣ କୂପ
ତହିଁ ପଡ଼ିଛନ୍ତି ଛୟାଣୋଇ ସସ୍ର ନୃପ ।
ଯୁଧିଷ୍ଠିର ଦରଶନେ ପାଇ ସଦ୍‌ଗତି
ନର୍କରୁ ତରିଣ ଗଲେ ସେ ସର୍ବ ନୃପତି ।
ଅଗସ୍ତିଙ୍କୁ ପଚାରିଲେ ମନୁ ନୃପନାଥ
କିମ୍ପା ରାଜାମାନେ ନର୍କେ ହୋଇଲେ ପତିତ ।
ଅଗସ୍ତି ବୋଇଲେ ଦୁର୍ଯ୍ୟୋଧନ କତି ଥିଲେ
ଯୁଦ୍ଧର ପ୍ରଥମ ଦିନ ପଳାଇଣ ଗଲେ ।
ଯାଇ ଯୁଧିଷ୍ଠିର ପାଦେ ପଶିଲେ ଶରଣ
ଯୁଦ୍ଧେ ନିସତ ହୋଇଣ ଲଭିଲେ ମରଣ ।
ସେଥିପାଇଁ ଯମରାଜା ହୋଇ କୋପାନ୍ୱିତ
ସ୍ୱର୍ଗରାଜ୍ୟେ ନ ଛାଡ଼ିଲେ ରୁଦ୍ଧ କଲେ ପଥ ।
ପୁଣି ଜୀର୍ଣ୍ଣକୂପେ ତାଙ୍କୁ କରିଲେ କ୍ଷେପଣ
ଯୁଧିଷ୍ଠିଙ୍କୁ ଦେଖି ସର୍ବେ ଲଭିଲେ କାରଣ ।

ସ୍ୱୟଂ ଧର୍ମ ଅବତାର ବଦନକୁ ଦେଖି
ନର୍କରୁ ସେ ତରିଗଲେ ପାପକୁ ଉପେକ୍ଷି ।
ଆକାଶରେ ଥାଇ ସେହୁ ଧର୍ମ ନରପତି
ନର୍କ ଦର୍ଶନ କିମ୍ପାଇଁ କଲେ ହୋ ଅଗସ୍ତି ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମନୁରାୟେ
ସତ୍ୟେ ସଂସାର ପାଳନ କଲେ ଧର୍ମରାୟେ ।
ଧର୍ମରୁ ଆନକଥା ଯେ ନ କହନ୍ତି ବାଣୀ
ତେଣୁ କରି ଭେଟିଥିଲେ ଶଙ୍ଖ ଚକ୍ରପାଣି ।
ଭାରତ ଯୁଦ୍ଧରେ ମହାଯୋଦ୍ଧା ଅଟେ ଦ୍ରୋଣ
ହାତେ ଅସ୍ତ୍ର ଥିଲେ ତାର ନାହିଁଟି ମରଣ ।
ଅଶ୍ୱଥାମା ହତ ବୋଲି ଶୁଣିଲେ ସେ କର୍ଣ୍ଣେ
ତେବେ ସେହୁ ଅସ୍ତ୍ରତ୍ୟାଗ କରିବେ ଯେ ରଣେ ।
ପାଣ୍ଡବେ କୂଟ ଉପାୟ କଲେ ସେହି ରୀତି
ଭୀମ ସେନ ମାଇଲେକ ଅଶ୍ୱଥାମା ହାତୀ ।
ଅଶ୍ୱଥାମା ରଥ ଭୀମ ପୁଣି ଫିଙ୍ଗିଦେଲା
ସରସ୍ୱତୀ ତୀର୍ଥେ ଯାଇ ସେ ରଥ ପଡ଼ିଲା ।
ଅଶ୍ୱଥାମା ହତ ବୋଲି ଶୁଭିଲାକ ବାଣୀ
ପୁତ୍ରକୁ ଲୋଡ଼ିଲେ ଦ୍ରୋଣ ନ ପାଇଲେ ପୁଣି ।
ଅକ୍ରୁରୁ ପାଣ୍ଡବ ଥାଟେ ଗୁରୁ ପଚାରିଲେ
ଅଶ୍ୱଥାମା ଦେଖିନାହୁଁ ସକଳେ ବୋଇଲେ ।
ଯୁଧିଷ୍ଠିଙ୍କୁ ପଚାରିଲେ ଗୁରୁ ଯାଇ ପୁଣି
ସେ କହିଲେ ଅଶ୍ୱଥାମା ହତ ଇତିବାଣୀ ।
ଏହାଛଡ଼ା ଯୁଧିଷ୍ଠିଙ୍କୁ ପାପ ନାହିଁ କିଛି
ଏହି ପାପକୁ ନରକ ଦର୍ଶନ ହୋଇଛି ।
ଶୁଣିଣ ଆନନ୍ଦ ହେଲେ ଧର୍ମ ମହାରାଜା
ବୋଇଲେ ସବୁ ସନ୍ଦେହ ମନୁ ହେଲା ତେଜ୍ୟା ।
ଜୟ ଜୟ ଜଗନ୍ନାଥ ଜଗତପାଳକ
ସକଳ ଜନମାନଙ୍କ ମୁକତି ଦାୟକ ।
ବିଜୟ କରିଛ ପ୍ରଭୁ ମହୋଦଧି ତୀରେ
ଭ୍ରାତା ଭଗିନୀଙ୍କୁ ଘେନି ବଡ଼ ଦେଉଳରେ ।
ସଂସାର ମଧ୍ୟରେ ପ୍ରଭୁ ବିସ୍ତାରିଛ ଯଶ
ତେଣୁ ନରେ ଭକ୍ତିଭରେ ଯାନ୍ତି ତୁମ୍ଭ ପାଶ ।
ଦର୍ଶନ କରିଣ ତବ ପବିତ୍ର ଚରଣ
ସକଳ ପ୍ରକାର ପାପୁଁ ପାନ୍ତି ପରିତ୍ରାଣ ।
ସେ ପଦ କମଳେ ପ୍ରଭୁ ରହୁ ମୋର ମତି
ଶାରଳା ଦାସକୁ ଦିଅ ଅନ୍ତିମ ମୁକତି ।

—୦—

## ଶ୍ୱାନରୂପେ ଧର୍ମଙ୍କର ପ୍ରବେଶ ଓ ଯୁଧିଷ୍ଠିରଙ୍କର ଇନ୍ଦ୍ରଙ୍କୁ ସ୍ତବ

ଏଥୁଅନନ୍ତରେ ପୁଚ୍ଛାକଲେ ମନୁରାଜା
ଅଗସ୍ତିଙ୍କ ପାଦେ ଅର୍ଘ୍ୟଦେଇ କଲେ ପୂଜା ।
ବନ୍ଧୁ ସୋଦର ନାହାନ୍ତି ଏକାକୀ ଯୁଧିଷ୍ଠି
ଆଉ କେଉଁ କୃତ୍ୟ କଲେ ହିମବନ୍ତେ ଉଠି ।
ସେହିକଥା ଶୁଣିବାକୁ ଅଭିଳାଷ ମୋର
କହନ୍ତି ଅଗସ୍ତି ମୁନି ଶୁଣ ନୃପବର ।
ଶୁଣ ଆହେ ମହାରାଜା ଅପୂର୍ବ ଭାରତୀ
ଯୁଧିଷ୍ଠି ବୋଇଲେ ଶୂନ୍ୟ ଶୂନ୍ୟ ଚଉକତି ।
ବୋଇଲେ ବନ୍ଧୁ ସୋଦର ମାରିହେଲି ଏକା
ଶ୍ରୀସମ୍ପଦ ହରାଇ ମୁଁ ଭୁବନରେ ଲେଖା ।
ଯୁଧିଷ୍ଠିର ଖେଦ ଜାଣି ଧର୍ମ ଦଇବତେ
ଶ୍ୱାନ ରୂପରେ ଭେଟିଲା ତାର ନିଜ ସୁତେ ।
ଶୁଣ ଚଇତନ ଶୁକ୍ଳବର୍ଣ୍ଣ ଶ୍ୱାନ କାୟେ
ଧବଳ ଶୁଦ୍ଧ ସ୍ଫଟିକ ହୀରକର ପ୍ରାୟେ ।
ଅଦ୍‌ଭୁତରେ ଯାଇଣ ଛାମୁରେ ସେ ଭେଟି
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଧରମ ଯୁଧିଷ୍ଠି ।
ଏହି ମହାହିମ ଅଟେ ମିଳାଇଲା ଭାଳି
ଏଡ଼େ ହିମସ୍ଥାନେ ଶ୍ୱାନ କେଉଁରୂପେ ମିଳି ।
ଯୁଧିଷ୍ଠି ବୋଇଲେ ମୁହିଁ ଅଟେ ଏବେ ଏକା
ଏହି ଶ୍ୱାନଗୋଟି ମୋର ହୋଇଲାକ ସଖା ।
ତାହାଙ୍କ ଛାମୁରେ ଉଭାହୋଇ ସେହି ଶ୍ୱାନ
ନିରୂପିଣ ଚାହିଁଇ ସେ ତାହାଙ୍କ ବଦନ ।
ଯୁଧିଷ୍ଠିଦେବ ବସିଲେ ଦ୍ରୋଣବଟ ତଳେ
ଚତୁର୍ଦ୍ଦିଗେ ଚାହିଁ ଦେବ ଭାବନ୍ତି ଆକୁଳେ ।
ସଖା ସୋଦର ବାନ୍ଧବ ମୋହର ତ ନାହିଁ
ଦିଗ ନ ଦିଶଇ କିଛି ଆଉ ଯିବି କାହିଁ ।
ଏହିରୂପେ ସୁମରନ୍ତେ ଜାଣି ଦେବ ପିତା
ଅମରନାଥଙ୍କୁ ରାଇ ବୋଇଲେ ବିଧାତା ।
ପୁଷ୍ପକ ବିମାନ ଘେନି ଯାଅ ସୁନାସୀର
ହିମବନ୍ତ ବଟତଳେ ଛନ୍ତି ଯୁଧିଷ୍ଠିର ।
ବିମାନେ ବସାଇ ତାକୁ ବେଗରେ ଅଣାଅ
ଅମର ପୁରରେ ପୂଜା ତାହାଙ୍କୁ ଦିଆଅ ।
ପିତା ଆଜ୍ଞାରେ ଚଳିଲେ ତହୁଁ ସସ୍ରଯୋନି
ହିମବନ୍ତେ ପ୍ରବେଶିଲେ ଯାଇ ତତକ୍ଷଣି ।
ବାସବ ଦେବତାଙ୍କୁ ସେ ଦେଖିଣ ଯୁଧିଷ୍ଠି
ବଟ ତଳରୁ ଆସନ ଛାଡ଼ି ବେଗେ ଉଠି ।
ବାସବଙ୍କୁ ବିନୟରେ କରିଲେ ଭକତି
ଜୟ ତୁ ବାସବ ବୃନ୍ଦାରକ ଚକ୍ରବର୍ତ୍ତୀ ।

ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଏମାନେ ସର୍ବଦା ଥାନ୍ତି ଭୃତ୍ୟପଣେ ତୋର ।
ଅଗ୍ନିବାଣ ବଜ୍ରବାଣ ବଜ୍ରସୂତି ବାଣ
ଆର୍ଦ୍ରାବଳି ବାଣ ପୁଣି ଅର୍ଦ୍ଧଚନ୍ଦ୍ର ବାଣ ।
ଏହି ଅସ୍ତ୍ରମାନ ତୋର ବଚନରେ ଯାଇ
ଅନନ୍ତକୋଟି ଠାକୁର ଦେବ ଅଟୁ ତୁହି ।
ସ୍ୱାମୀ ହେଲେ ଜିଣିଲୁ ତୁ ଶୂନ୍ୟ ଅଣଚାଶ
ତପନ ସାଧନ ନାଡ଼ୀ ପୁଣି ଅବକାଶ ।
ପରମବ୍ରହ୍ମ ସ୍ୱରୂପ ଅଟୁ ଏକ ନାମ
ସର୍ବଦେବଙ୍କ ଉପରେ ଇନ୍ଦ୍ର ତୋର ନାମ ।
ପଚିଶ କୋଟି ଅନନ୍ତ କୋଟି ତୋର ରେଖା
ପଞ୍ଚବିଂଶ ପ୍ରକୃତି ତୁ ଅଟୁ ଦେବ ଶାଖା ।
ତୋହ ବ୍ୟତିରେକେ ଆନ କେ କରିବ ରକ୍ଷା
ପରଂବ୍ରହ୍ମ ମୂର୍ତ୍ତି ଅଟୁ ଜୀବଙ୍କର ସଖା ।
ଏ ସଂସାର ପ୍ରତିପାଳୁ କରାଇଣ ବୃଷ୍ଟି
ମୋହିନୀ ଖଟନ୍ତି ତୋତେ ଚଉଷଠି କୋଟି ।
ମହାନାଗ ଆରୋହିଣ ଗଳେ ପଦ୍ମମାଳ
ବ୍ରହ୍ମାଣ୍ଡର ନାଥ ତୁହି ଦେବ ଆଖଣ୍ଡଳ ।
ସ୍ୱାମୀ ଦିନକର ସଙ୍ଗେ ହରୁ ଋଷିପତ୍ନୀ
ତାହାଙ୍କ ଶାପେ ହୋଇଲା ତୋର ସସ୍ରଯୋନି ।
ସ୍ୱାମୀ ଚଉଷଠି କୋଟି ଘେନି ବିଳାସିନୀ
ତାଙ୍କ ସଙ୍ଗେ କ୍ରୀଡ଼ା କରୁ ଦିବସ ରଜନୀ ।
ସ୍ୱାମୀ କଉଣପଙ୍କର ଅଟୁ ଦର୍ପ ଗଞ୍ଜା
ଗଜରାଜ ଆରୋହିଣ ହୋଇ ମହାତେଜା ।
ସ୍ୱାମୀ ଦେବ ଭୁବନର ନାୟକ ଦେବତା
ତୁହି ଚରାଚର ସୃଷ୍ଟି ପାଳନ୍ତା ରଖନ୍ତା ।
ଶ୍ରୀଇନ୍ଦ୍ର ଦେବତାଙ୍କର ଚରଣକୁ ସେବି
କହେ ଶ୍ରୀ ଶାରଳା ଦାସ ଶୂଦ୍ରମୁନି କବି ।

—o—

## ଯୁଧିଷ୍ଠିରଙ୍କର ଧର୍ମ ପରୀକ୍ଷା ଓ ସ୍ୱଶରୀରରେ ସ୍ୱର୍ଗ ଗମନ

ଏଥୁଅନନ୍ତରେ ବିଲଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ପାଦତଳେ କରି ଦିବ୍ୟପୂଜା ।
ବସନ କୁଣ୍ଡଳ ରତ୍ନମାଳମାନ ଦେଇ
ଶତଦଣ୍ଡ ପ୍ରଣମିତ ପାଦପଦ୍ମେ ହୋଇ ।
ବୋଇଲେ ଶୁଣିଲି ସ୍ୱର୍ଗାରୋହଣର କଥା
କିସ ପ୍ରତ୍ୟୁତ୍ତର ଦେଲେ ସେ ଇନ୍ଦ୍ରଦେବତା ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ଯୁଧିଷ୍ଠିରଙ୍କୁ କୋଳ କଲେ ଯାଇ ସୁରପତି ।
ବୋଇଲେ ପିତାଙ୍କ ଆଜ୍ଞା ଯିବୁ ସ୍ୱର୍ଗବାସ
ପୁଷ୍ପକ ବିମାନେ ଆସି ବେଗେ ହୋଇ ବସ ।
ତୋତେ ବାଟ ଚାହିଁଛନ୍ତି ଚାଲ ଯିବା ବେଗେ
ତେତିଶକୋଟି ଦେବତା ବସିଛନ୍ତି ସ୍ୱର୍ଗେ ।
ଯୁଧିଷ୍ଠି ବୋଇଲେ ମୁଁ ଯେ ନାଶିଲି ସୋଦର
ଏକା ହୋଇଣ କେମନ୍ତେ ଯିବି ମୁଁ ଅମର ।
ଇନ୍ଦ୍ର ବୋଇଲେ ବାବୁରେ ତୋର ସର୍ବଭ୍ରାତେ
ସଭାରେ ବସିଅଛନ୍ତି କୃଷ୍ଣଙ୍କ ସହିତେ ।
ବିମାନେ ବସନ ବିଳମ୍ବେ ପ୍ରୟୋଜନ ନାହିଁ
ତୋହର ଯିବାକୁ ଦେବେ ବାଟ ଛନ୍ତି ଚାହିଁ ।
ଇନ୍ଦ୍ରଦେବତା ବଚନେ ଉଠି ଧାତିକାରେ
ଶୁକ୍ଳାମ୍ବର କୁକୁରକୁ ଧଇଲେ କୋଳରେ ।
ଇନ୍ଦ୍ର ବୋଇଲେ ଏହୁ ତ ଦେଖ ଦେଖ ଶ୍ୱାନ
ଯେତେ ବସ୍ତ୍ରେ ଛୁଇଁ ତେତେ ବସ୍ତ୍ରେ କରି ସ୍ନାନ ।
ଯାତ୍ରା ଯୋଗରେ ଛୁଇଁଲେ ଅଯାତ୍ରା ଅଟଇ
ଯା ପଦରଜ ପଡ଼ିଲେ ଆୟୁଷ ତୁଟଇ ।
ଯୁଧିଷ୍ଠିଦେବଙ୍କ ମନ ବିଡ଼ିବା ନିମନ୍ତେ
ଧର୍ମଭାବ ଜ୍ଞାନ ପାଇଁ ବୋଇଲେ ଏମନ୍ତେ ।
ଇନ୍ଦ୍ର ଜାଣଇ ସେ ଶ୍ୱାନ ଧରମ ଦେବତା
ଧର୍ମ କଷଣ ନିମନ୍ତେ ଏସନକ କଥା ।
ଧର୍ମ ଯୁଧିଷ୍ଠିରଙ୍କର ମନ ବିଡ଼ିବାକୁ
ଅନେକ ଭର୍ତ୍ସନା ସେହୁ କରିଲେ ଶ୍ୱାନକୁ ।
ଏ ଦେବ ବିମାନ ଅଟେ ଦେଖରେ ଯୁଧିଷ୍ଠି
ଏ ଶ୍ୱାନ ପାମର ଯିବ କେଉଁଠାକୁ ଉଠି ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ମଘବାନ
ଏ ବଡ଼ ମହତ୍ତ୍ୱ ଜନ୍ତୁ ପୁଣି ପୁଣ୍ୟବାନ ।
ଅନେକ ବନ୍ଧୁ ସୋଦର ମୋର ଥିଲେ ସାହା
ଏକାଳେ କେହି ନୋହିଲେ କରିବାକୁ ଆହା ।
ମୋର ଧର୍ମ ରକ୍ଷା କଲା ଏହିଗୋଟି ଶ୍ୱାନ
ମୋର ଦୟା ଥିଲେ ଯାକୁ ବସାନ୍ତି ବିମାନ ।
ଦେବ ବିମାନ ବୋଲିଣ କରିଲି ତ୍ୟକତ
ସତେ କି ସେ ସ୍ୱର୍ଗ ଆଉ ହେବ ପରାପତ ।
ଏତେ ବୋଲି ସେ ଶ୍ୱାନକୁ ଧରି ଦୁଇଭୁଜେ
ଦେବ ବିମାନେ ଯୁଧିଷ୍ଠି ଯାଇଁ ହେଲେ ବିଜେ ।
ଇନ୍ଦ୍ରଦେବତା ଦେଖିଣ କରିଲେ ପ୍ରଶଂସା
ସଦା ଜୟ ହେଉ ତୋର ଏମନ୍ତ ମନୀଷା ।
ସତ୍ୟପଣେ ସଂସାର ତୁ ଜିଣିଲୁ ସମସ୍ତ
ପାଷାଣେ ଦେହେ ଲାଗିଲେ ଯେହ୍ନେ ସ୍ୱର୍ଣ୍ଣପତ୍ର ।
ଅଭେଦ୍ୟ ସ୍ନେହରେ ଯେହ୍ନେ ନ ଭେଦଇ ଶର
ଅନେକ ଯେ ହତ୍ୟାଦୋଷ ହୋଇଗଲେ ପାର ।
ସ୍ୱୟଂ କୃଷ୍ଣ ଉତପତ୍ତି ହୋଇଲେ ମେଦିନୀ
ଯାଇ ନ ପାରିଲେ ସ୍ୱର୍ଗେ ନିଜ ଦେହ ଘେନି ।
ତୋର ଧର୍ମବଳେ ଘେନି ତୁହି ଗୋ ଶରୀର
ଯିବା ପାଇଁ କି ସକ୍ଷମ ହେଲୁ ସ୍ୱର୍ଗପୁର ।

ଏହା କହିଣ ବୋଇଲେ ଶୁଣରେ ଯୁଧିଷ୍ଠି
ଚିହ୍ନି ନ ପାରିଲୁ ତୁହି ଏହି ଶ୍ୱାନଗୋଟି ।
ଯୁଧିଷ୍ଠି ବୋଇଲେ ମୋର ଅଟେ ଚର୍ମ ଆଖି
ଶ୍ୱାନ ଛଡ଼ା ଆନ ମୋତେ ନ ଦିଶଇ କିଛି ।
ଇନ୍ଦ୍ର ବୋଇଲେ ଚିହ୍ନିଲା ଯାକୁ ତୋର ମାତା
ନିରାକାର ପୁରୁଷ ଏ ଧରମ ଦେବତା ।
ଶୂନ୍ୟରୁ ଶବଦ ଆସି ଶୁଭଇ ଯାହାର
ଚିହ୍ନବର୍ଣ୍ଣ ନ ଦିଶଇ ସ୍ୱୟଂ ନିରାକାର ।
ଆଦ୍ୟରୁ ଶୂନ୍ୟ ଉତ୍ପତ୍ତି ଶୂନ୍ୟରୁ ପବନ
ପବନରୁ ଜଳ ଜାତ ଜଳରୁ ତପନ ।
ତପନରୁ ହିମ ହେଲା ହିମୁଁ ଦୁଗ୍ଧ ଜାତ
ସେ ଦୁଗ୍ଧ ହୋଇଲା ପୁଣି ଫେଣେ ପରିଣତ ।
ପବନର ମନ୍ଥନେ ଫେଣୁ ଜାତ ହେଲା ଅଣ୍ଡ
ସେ ଅଣ୍ଡ ଗୋଟି ଫୁଟିଣ ବିକଶେ ବ୍ରହ୍ମାଣ୍ଡ ।
ଶୁଦ୍ଧ ସ୍ଫଟିକ ପରାୟେ ଯାର ରୂପଗୋଟି
ସେହି ଏ ଧର୍ମଦେବତା ଚିହ୍ନରେ ଯୁଧିଷ୍ଠି ।
ସଂକ୍ଷେପ କରି କହିଲେ ଯହୁଁ ଦେବରାୟେ
ଶ୍ୱାନରୂପ ତେଜି ଧର୍ମ ଅନ୍ତର୍ଦ୍ଧାନ ହୋଏ ।
ଶୂନ୍ୟରେ ଥାଇ ସଧୀରେ ବିକାଶିଲେ ବାଣୀ
ବିମାନ ଆରୋହି ତୁ ହୋ ଚଳ ନୃପମଣି ।
ଶୂନ୍ୟରେ ଥାଇ ଶବଦ ପୁଣି ଦେଲେ ଧର୍ମ
ସତ୍ୟବାଦୀ ପୁରୁଷ ତୁ ସବୁହୁଁ ଉତ୍ତମ ।
ତୁ ହୋ ହିମବନ୍ତ ଆସି ହୋଇଲୁ ଯେ ଏକା
ଦିଗମ୍ବର ହେଲୁ ବାବୁ କେହି ନାହିଁ ସଖା ।
ଆମ୍ଭେ ଶ୍ୱାନରୂପେ ହୋଇଗଲୁ ତୋର ଆଗେ
ବିମାନେ ବସି ତୁ ଯାଅ ଏ ଅମରସ୍ୱର୍ଗେ ।
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ବୀରେ
ନ ଦେଖି ତୋତେ ସେ ଥିବେ ବିସ୍ମୟ ମନରେ ।
ପ୍ରଳୟ ସଂସାରେ ଯାଇ ପୁଣି ହେଲି ସ୍ଥିତି
ପୁଣି ମୋ ସଂସାରେ ତୁମ୍ଭେ ହେବ ଉତପତ୍ତି ।
ଏତେ ବୋଲିଣ ଗଗନେ ଗଲେ ନିରାକାର
ବିମାନେ ଘେନିଣ ତହୁଁ ବିଜେ ସୁନାସୀର ।
ଶୁଣ ଆହେ ଚଇତନ ଧର୍ମଙ୍କ କୁମର
ସ୍ୱର୍ଗରାଜ୍ୟେ ପ୍ରବେଶିଲେ ଧରି ସ୍ୱଶରୀର ।
ବାସବର ପୁତ୍ରମାନେ ଚଉଷଠି କୋଟି
ବଜାନ୍ତି ତାଳକଂସାଳ ଧରିଣ ଅଧାଟି ।
ଅମରମାନେ କରିଲେ ତହୁଁ ଶଙ୍ଖଧ୍ୱନି
ବେଦ ଉଚ୍ଚାରଣ କଲେ ମିଳି ସର୍ବ ମୁନି ।
ଅମର ବିଳାସିନୀ ଯେ ଚଉଷଠି କୋଟି
ତାଳ ଲୟରେ ନାଚନ୍ତି ହୋଇ ପରିପାଟୀ ।
ମର୍ଦ୍ଦଳ ବିଜୟେ ଘୋଷେ ଦୁନ୍ଦୁଭି ବଜାଇ
ଚାଲନ୍ତେ ସ୍ୱର୍ଗଭୁବନ ସୁନ୍ଦର ଦିଶଇ ।

ଧର୍ମନନ୍ଦନ ବିଜୟ କଲେ ସ୍ୱର୍ଗପଥେ
ଜୟ ଜୟ ଶବଦ ଯେ କରନ୍ତି ସମସ୍ତେ ।
ବିଦ୍ୟାଧରୀମାନେ କରେ ଧରି ଅର୍ଘ୍ୟଥାଳୀ
ସାନନ୍ଦେ ସୁନ୍ଦରୀମାନେ ଦ୍ୟନ୍ତି ହୁଳହୁଳି ।
ପାଦଗତି କଲେ ଦେବ ତେତିଶ ଯେ କୋଟି
ବିହନ୍ତା ପୁରୁଷ ଶୂନ୍ୟେ କଲେ ପୁଷ୍ପବୃଷ୍ଟି ।
ଧର୍ମନନ୍ଦନ ଚାଲନ୍ତେ ଅମର ଶୋଭଇ
ଦିବ୍ୟ ଅବତାରେ ଦେବ ମନକୁ ମୋହଇ ।
ଇନ୍ଦ୍ରଦେବତା ଆକାଶେ କରିଲେ ସମ୍ଭବ
ଅମଚ ସଭାରେ ବିଜେ ଯୁଧିଷ୍ଠିର ଦେବ ।
ଦେବତାଏ ସମୁଦ୍ରକୁ ମନ୍ଥିବାର କାଳେ
ସୁଧା ଜାତ ପାନେ ମତ୍ତ ଯେହ୍ନେ ଦିଗପାଳେ ।
ସେହିପରି ଯୁଧିଷ୍ଠିଙ୍କୁ ଦେଖି ସର୍ବ ଦେବେ
ମାତିଗଲେ କୋଳାହଳ ଆନନ୍ଦ ଉତ୍ସବେ ।
ବିହନ୍ତା ପୁରୁଷ ଦେଲେ ଆସ୍ଥାନକୁ ଛାଡ଼ି
ବସିଲେ ଧର୍ମନନ୍ଦନ ସେ ସ୍ଥାନକୁ ମାଡ଼ି ।
ଏମନ୍ତ କାଳରେ ଭୀମ ପୁଣି ଅରଜୁନ
ନକୁଳ ସହଦେବ ଯେ ହୋଇ ତୋଷମନ ।
ଚାରି ଭାଇଯାକ ଗଲେ ଆନନ୍ଦ ମନରେ
ଯୁଧିଷ୍ଠିଙ୍କୁ ପ୍ରଣମିଲେ ସଭାର ତଳରେ ।
ଯଦ୍ୟପି ଅମରପୁରେ ପାଇଲେ ସେ ପୂଜା
ଏକା ହୋଇ କି କରନ୍ତେ ଯୁଧିଷ୍ଠିର ରାଜା ।
ଭୀମ ଅର୍ଜ୍ଜୁନ ନକୁଳ ସହଦେବ ଦେଖି
ଅତି ପୁଲକିତ ହେଲେ ବ୍ୟାକୁଳ ଉପେକ୍ଷି ।
ଶୁଣି ବୈବସ୍ୱତ ମନୁ ଅଗସ୍ତି ବୋଇଲେ
ଯୁଧିଷ୍ଠିର ଦେବ ଦୁର୍ଯ୍ୟୋଧନକୁ ଦେଖିଲେ ।
ଅନେଶ୍ୱତ ଭ୍ରାତାମାନେ ଗୋବିନ୍ଦ ରାଜାର
ପନ୍ନଗ ନାରାୟଣଙ୍କୁ ନେଲେ ସ୍ୱର୍ଗପୁର ।
ଭୀଷ୍ମ କର୍ଣ୍ଣ ଦ୍ରୋଣ ଶଲ୍ୟ ଆବର ଶକୁନି
ବସିଲେ ସ୍ୱର୍ଗେ ନକ୍ଷତ୍ର ରୂପକୁ ସେ ଘେନି ।
ଭାରତ ଯୁଦ୍ଧେ ପଡ଼ିଲେ ଯେତେ ଯେତେ ଲୋକ
ଶକ୍ତ ଅବା ନିଶକ୍ତାଦି ହୋଇଗଲେ ମୋକ୍ଷ ।
ଶ୍ରୀକୃଷ୍ଣ ସାରଥି ଥିଲେ ଅର୍ଜ୍ଜୁନର ରଥେ
ତାହାଙ୍କୁ ଦେଖି ସମସ୍ତେ ଗଲେ ସ୍ୱର୍ଗପଥେ ।
ରଣଯାଗର କାଳରେ କୃଷ୍ଣ ପରସାଦେ
ବ୍ରାହ୍ମଣ କିବା ଚଣ୍ଡାଳ ସ୍ୱର୍ଗେ ଗଲେ ହାଦେ ।
ସଞ୍ଜୟ ବିଦୂର ପୁଣି ଲକ୍ଷ୍ମଣ କୁମର
ଅଭିମନ୍ୟୁ ସହିତରେ ପାଞ୍ଚୋଟି କୁମର ।
ଘଟୋତ୍କଚ ଅଳମ୍ବୁଷ ଏହି ଆଦି କରି
ସୋମବଂଶକୁ ଦେଖିଲେ ଅମର ନଗରୀ ।
ସମସ୍ତ ବଂଶ ଦେଖିଲେ ରାଜା ଯୁଧିଷ୍ଠିର
କେବଳ ଦେଖା ନ ହେଲା ଧୃତରାଷ୍ଟ୍ରଙ୍କର ।
କୁରୁପାଣ୍ଡବ ପକ୍ଷର ଉଭୟ ସଇନି
ପଡ଼ନ୍ତେ ଲକ୍ଷେ ରାଜାଙ୍କ ଆଦି ଯେତେ ପୁଣି ।

ପୃଥ୍ୱୀରେ ଯେପରି ହେଉଥିଲେ ଆତଯାତ
ସେହି ପ୍ରକାରେ ସ୍ୱର୍ଗରେ ହୋଇଲେ ସମସ୍ତ ।
ଶୁଣ ଆହେ ପୁଣ୍ୟଜନେ ଭାରତ ଭକତି
ପଢ଼ି ଶୁଣି ଏହିରୂପେ ପାଅ ସଦ୍‌ଗତି ।
ଶ୍ରୀମହାଭାରତ ଏହୁ ଅମୃତର ବାଣୀ
ତୃଷାରେ ରୁଚଇ ଯେହ୍ନେ ସୁଶୀତଳ ପାଣି ।
କର୍ଣ୍ଣେ ପିବନ୍ତେ ନିର୍ମଳ ହୋଇଯାଏ କାୟ
ପାପ କଳୁଷ ନ ରହେ ଯମେ କିସ ଭୟ ।
ଯେବଣ ମହାଭାରତ ଚାରିବେଦ ଅର୍ଥ
ମୁହିଁ ତାହା କହିଲଇଁ ସଜ୍ଜନଙ୍କ ହିତ ।
ଯେବଣ ଜନେ ଶୁଣନ୍ତୁ ବିଷ୍ଣୁରସ ବାଣୀ
ନାନାଦି ପାପ ଖଣ୍ଡନ୍ତି ଦେବ ଚକ୍ରପାଣି ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ
ଶ୍ରୀକୃଷ୍ଣଙ୍କ ପାଟରାଣୀ କେବେ ନ ଛାଡ଼ଇ ।
ଅପୁତ୍ରିକ ଶୁଣି ଲଭେ ସନ୍ତାନ ସନ୍ତତି
ଅମୋକ୍ଷ ମୋକ୍ଷ ହୁଅନ୍ତି ପାନ୍ତି ସ୍ୱର୍ଗଗତି ।
ତମ ଦ୍ୱେଷ ହିଂସା ପୁଣି କାମ ମାୟାମୋହେ
ନାଶ ହୋଇଯାନ୍ତି ଜାଣ କଳମଷଚୟେ ।
ଆୟୁ ଧନ ବଢ଼େ ଯେହୁ ଶୁଣେ ଏକଚିତ୍ତେ
ବିଷ୍ଣୁ ଲୋକରେ ବସନ୍ତି ପୁରାଣ ଶୁଣନ୍ତେ ।
ଜୟ ତୁହି ନାରାୟଣ ସୃଷ୍ଟିର କରତା
ଜୟ ଜୟ ନାରାୟଣ ଭକ୍ତଜନ ତ୍ରାତା ।
ଜୟ ତୁହି ଜନାର୍ଦ୍ଦନ କେଶବ ତୋ ନାମ
ଯେବଣ ନାମ ଅଟଇ ସୁଧାରସ ସମ ।
ଖେଳ କଉତୁକେ ପ୍ରଭୁ ଯମୁନାର ତଟେ
ଯାମଳା ବେନି ବୃକ୍ଷକୁ ଭାଙ୍ଗିଲୁ ତୁ ଆଣ୍ଟେ ।
ଶକଟା ବଇରି ଷଣ୍ଢାସୁର ଦର୍ପହନ୍ତା
ବକା ବିଦାରିଣ ନାଥ ମୁଷ୍ଟିକ ମାରନ୍ତା ।
ଅମ୍ବା କଦମ୍ବାକୁ ଦେଲୁ ଅକ୍ଲେଶରେ ନାଶି
ନ ଦେଖି ନ ଚାହିଁ ନାଶଗଲା କଂସକେଶୀ ।
କମଳ ତୋଳନ୍ତେ ନାଥ କାଳିନାଗ ଫେରୁ
ମସ୍ତକେ ନାଚିଲୁ ପ୍ରଭୁ ହେ ଅଭୟ ଗୁରୁ ।
ଅକ୍ରୂରକୁ ଚିରଞ୍ଜୀବୀ କଲୁ ଶିରୀପତି
ତୋ ମୁଖ ଚାହିଁ ପ୍ରାଣୀଏ ପାଆନ୍ତି ସଦ୍‌ଗତି ।
ଧନୁ ଉତ୍ସବରେ ଦେଖି ତୋର ରୂପ କଂସ
ଜଗତିରୁ ଢଳିପଡ଼ି ହୋଇଗଲା ନାଶ ।
ଗୋସିଂହମୟ ଅସୁର ପୁଣି ବସୁବର
ନାଗରାଜା ତାରାକ୍ଷି ଯେ ଆଉ ମୁରାସୁର ।
ଶତଧନୁ ବିବାଦରେ ଲୌହକ ଅସୁର
ନାଶ କରିଲ ହେ ତୁମ୍ଭେ ଦେବ ଚକ୍ରଧର ।
ଜାତ ଅନ୍ତ ମଧ୍ୟେ ତୋର କଉତୁକ ଲୀଳା
ଶ୍ରୀଗୋପାଳ ଚୂଡ଼ାମଣି ଦେବକୀର ବଳା ।
କଳି ନ ପାରିଲି ଏହି ଅନିତ୍ୟ ସଂସାର
ସ୍ଥଳ ବୋଲି ପଶିଲି ମୁଁ ଅଗାଧ ସଂସାର ।
ଦୁଃସହ ସାଗରେ ପଶି ନ ପାଇଲି କୂଳ
କାଳଲହରୀ ଉଠଇ ହୋଇଣ ପ୍ରବଳ ।
ଭେଳା ଭେଳା ହୋଇ ପୁଣି କୁମ୍ଭୀର ମକର
ଚଉଦିଗେ ଘେରିଛନ୍ତି ନାହିଁ ପ୍ରତିକାର ।
ହେଠମୁଖେ ବୁଡ଼ନ୍ତେ ମୁଁ ନ ପାଇଲି ସଖା
ଧର୍ମ ତରଙ୍ଗେ ବୃକ୍ଷକେ ତହୁଁ ଦେଲା ଦେଖା ।
ସେହି ଧର୍ମ ପଦ୍ମବୃକ୍ଷ ଉପରରେ ଉଠି
ଆବର ପାଇଲି ମୁହିଁ ପୁଣି ନାଡ଼ଗୋଟି ।
ତହିଁରେ ବିଶ୍ରାମ କରି ସୁସ୍ଥ କଲି ପ୍ରାଣ
ସେହି ବୃକ୍ଷଗୋଟି ଅଟେ ସ୍ୱୟଂ ନାରାୟଣ ।
ସେହୁ ମୋର ଅନୁବ୍ରତେ ମୁକ୍ତିଗତି ଦାତା
ସେହି ସ୍ୱାମୀଙ୍କ ପ୍ରସନ୍ନେ ନାହିଁ ମୋର ଚିନ୍ତା ।
ହେ ବୁଧେ ଯାବତ ଜୀବ ସବୁ ଶିବ ହରି
ମହାସଙ୍କଟରୁ ସେହୁ କରିଦେବେ ପାରି ।
ଶ୍ରୀନାରାୟଣ ଦେବତା ପଦରେ ଦଇନୀ
ବନ୍ଦନ୍ତି ଶାରଳା ଦାସ କବି ଶୂଦ୍ରମୁନି ।
କୃପାଜଳ ନନ୍ଦିନୀ ନର୍ମଦା ସରସ୍ୱତୀ
ପଶ୍ଚିମେ କୋଶଳ ଦେଶେ ହେଲୁ ଉତପତ୍ତି ।
ସଂସାର ସାଗର ଅଟେ କାଳଫାଶି ଜାଣ
ଯାହାର ନାମ ଧରନ୍ତେ ହୁଅଇ ଛେଦନ ।
ଯେବଣ ଭାରତଗାଥା ବ୍ୟାସମୁନି ବାକ୍ୟ
ମୁହିଁ କି ତାହା ଲେଖନ କରିବାକୁ ଶକ୍ୟ ।
ମାଗୋ ପଣ୍ଡିତ ନୁହଇ ନ ଜାଣଇ ବିଦ୍ୟା
ଜନ୍ମେ ଜନ୍ମେ ମୂର୍ଖ ମୁହିଁ ନୁହଇ ସଂସିଦ୍ଧା ।
ଜପ ମନ୍ତ୍ର କର୍ମମାନ ନ ଜାଣଇ କିଛି
ପ୍ରସନ୍ନରେ ଆଜ୍ଞା ମୋତେ ଦିଅ କମଳାକ୍ଷୀ ।
ହେ ବୁଧେ ଭ୍ରତଖଣ୍ଡର ଉଭ୍ରଷ୍ଟ ମଣ୍ଡଳେ
କନକାବତୀ ନଗର ଚନ୍ଦ୍ରଭାଗା କୂଳେ ।
ଯାହାର ପଶ୍ଚିମେ ପର୍ଶୁରାମର ପାଟଣା
ପର୍ଶୁରାମ ପୂଜା କଲେ କରିଣ ଘଟଣା ।
ସେ ଦେବୀ ବିଜୟ ଯହିଁ ଯା ନାମ ଶାରଳା
ତାଙ୍କୁ ସେବା କରି ମୋର କାଳକ ପାହିଲା ।
ତୁଳସୀମାଳ ପ୍ରାୟ ସେ ମୋର ବକ୍ଷସ୍ଥଳେ
ସବା ଥାନ୍ତି ପୂଜା କରେ ତାଙ୍କ ପାଦତଳେ ।
ହେ ପଣ୍ଡିତଜନେ ମୋର ନ ଘେନିବ ଦୋଷ
ମୂର୍ଖ ଅଜ୍ଞାନ ଅଟଇ ବୁଦ୍ଧି ମୋର କିସ ।
ପ୍ରସନ୍ନ ହୋଇଣ ମୋତେ ଯା ଦିଅନ୍ତି କହି
ମୋର ଦୋଷ ନ ଘେନିବ ମୁଁ ତାହା ଲେଖଇ ।
ଶାରଳା ପାଦେ ଶାରଳା ଦାସର ଶରଣ
ଅଷ୍ଟାଦଶ ପର୍ବ ପୋଥି କଲି ମୁଁ ପୂରଣ ।

**ଇତି ଶ୍ରୀ ମହାଭାରତେ ସ୍ୱର୍ଗାରୋହଣ ପର୍ବ ସଦାଜୟେ ସମ୍ପୂର୍ଣ୍ଣ**

—୦—

# ମହାଭାରତ

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି। କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ। ଏଥିରେ ସତନ୍ତ୍ର କମିଶନ ବ୍ୟବସ୍ଥା ଅଛି।

## ଅଷ୍ଟାଦଶ ପୁରାଣ

- ବ୍ରହ୍ମପୁରାଣ ସେଟ୍
- ପଦ୍ମପୁରାଣ ସେଟ୍
- ମହାବିଷ୍ଣୁ ପୁରାଣ
- ଶିବ ପୁରାଣ ସେଟ୍
- ନାରଦ ପୁରାଣ
- ମାର୍କଣ୍ଡେୟ ପୁରାଣ
- ଅଗ୍ନି ପୁରାଣ
- ଭବିଷ୍ୟ ପୁରାଣ
- ବ୍ରହ୍ମବୈବର୍ତ୍ତ ପୁରାଣ ସେଟ୍
- ଲିଙ୍ଗ ପୁରାଣ
- ବରାହ ପୁରାଣ
- ସ୍କନ୍ଦ ପୁରାଣ
- ବାମନ ପୁରାଣ
- କୂର୍ମ ପୁରାଣ
- ମତ୍ସ୍ୟ ପୁରାଣ
- ଗରୁଡ଼ ପୁରାଣ
- ବ୍ରହ୍ମାଣ୍ଡ ପୁରାଣ
- ଭାଗବତ ସେଟ୍



ପ୍ରକାଶକ-

ଧର୍ମଗ୍ରନ୍ଥ ଷ୍ଟୋର (TM)

ଅଲିଶା ବଜାର, କଟକ-୨

ଫୋନ୍ : (୦୬୭୧)୨୫୦୮୨୯୬

website : www.dharmagranthastore.com